ଶୁଦ୍ରମୁନି ୰ ଶାରଳା ଦାସଙ୍କ କୃତ

# ମହାଭାରତ



ପ୍ରକାଶକ- ଧର୍ମଗ୍ରନ୍ଥ ଷ୍ଟୋର ଅଲିଶା ବଜାର, କଟକ-୨

ଶୂଦ୍ରମୁନି ୰ ଶାରଳା ଦାସଙ୍କ ବିରଚିତ

# ମହାଭାରତ

## ମଧ୍ୟପର୍ବ



(ନୂତନ ମୁଦ୍ରଣ)




: ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ –୭୫୩ ୦୦୨

ଫୋନ୍ : ୦୬୭୧-୨୫୦୮୨୯୬

ମୂଲ୍ୟ: ଏକଶହ ପଞ୍ଚଷଠିଟଙ୍କା ମାତ୍ର

# ମହାଭାରତ ମଧ୍ୟପର୍ବର

# ସୂଚୀପତ୍ର


| ବିଷୟ | ପୃଷ୍ଠାଙ୍କ |
|---|---|
| ମଙ୍ଗଳାଙ୍କ ବନ୍ଦନା | ୨ |
| ରଜଶୃକ୍ର | ୩ |
| ପାଣ୍ଡବଙ୍କର ନିୟମ | ୫ |
| ଅର୍ଜୁନର ବନବାସ | ୮ |
| ଅର୍ଜୁନର ପାଶୁପତ ଅସ୍ତ୍ର ଓ ଅକ୍ଷୟ ତୂଣୀର ଲାଭ | ୧୧ |
| କୃଷ୍ଣଙ୍କର ନବଗୁଞ୍ଜର ରୂପ | ୧୫ |
| ଖାଣ୍ଡବ ବନ ଦାହ | ୧୯ |
| ଇନ୍ଦ୍ର ଓ ଅର୍ଜୁନ ଯୁଦ୍ଧ | ୨୯ |
| ଶୋଷକ ଶରଣ | ୩୧ |
| ଇନ୍ଦ୍ର ପରାଜୟ ଓ ଅର୍ଜୁନର ବରଲାଭ | ୩୩ |
| ଖାଣ୍ଡବ ବନ ଦହନରୁ ଯେଉଁମାନେ ବଞ୍ଚିଲେ ତାହାଙ୍କ ନାମ | ୩୫ |
| ମନ୍ଦପାଳ ସ୍ତୁତି | ୩୬ |
| ତାରାକ୍ଷୀ ଶରଣ | ୩୯ |
| ଖାଣ୍ଡବ ବନର ପୂର୍ବ ବୃତ୍ତାନ୍ତ ବର୍ଣ୍ଣନ | ୪୧ |
| ଚିତ୍ରାଙ୍କୁର ଶରଣ ଓ ବୈରାଜ ରାଜା ମିଳନ | ୪୪ |
| ଚିତ୍ରାଙ୍ଗଦା ପରଣୟ | ୪୯ |
| ଉଲୁପୀ ବିବାହ | ୫୧ |
| ବବ୍ରୁବାହନ ( ) | ୫୨ |
| ସହସ୍ରାଜିତ ଶରଣ | ୫୪ |
| ଶତଧନୁ ଶରଣ | ୬୦ |
| କଙ୍କାସୁର ବଧ | ୭୦ |
| କୁମ୍ଭକ ବଧ | ୭୭ |
| ଗୋସିଂହ ଦୈତ୍ୟ ବଧ | ୮୪ |
| ସୁଭଦ୍ରା ହରଣ | ୯୮ |
| ସୁଭଦ୍ରା ପରିଣୟ | ୧୩୪ |
| କୁଣ୍ଡଳୀ ଦୈତ୍ୟ ବଧ | ୧୪୦ |
| କୌରବ ଓ ପାଣ୍ଡବଙ୍କର ହସ୍ତିନା ପ୍ରବେଶ | ୧୫୩ |
| ନାରକାସୁର ବଧ ଓ ପାରିଜାତ ହରଣ | ୧୫୭ |
| ପୁଷ୍ୟାଭିଷେକ ଓ କାମାକ୍ଷୀବ୍ରତ ବିଧି | ୧୭୧ |
| ସୁଗନ୍ଧିକା ହରଣ ଓ ଅର୍ଜୁନର ଶରରେ ସାଗର ବନ୍ଧନ | ୧୭୪ |
| ନୀଳେନ୍ଦ୍ରି ହରଣ | ୧୯୧ |
| କୁଦ୍ଦାଳସେନ ବଧ | ୨୧୫ |
| କୁନ୍ତୀ ଓ ଗାନ୍ଧାରୀର ବିବାହ | ୨୨୪ |
| ଚନ୍ଦ୍ରାବତୀ ହରଣ | ୨୨୭ |
| ବଳରାମଙ୍କର ହସ୍ତିନା ତାଡ଼ନ ଓ ସିଂହଦ୍ୱାର ବକ୍ର | ୨୪୯ |
| ସରସ୍ୱତୀ ବିଭା ଓ କଟମ୍ବାସୁର ବୃତ୍ତାନ୍ତ | ୨୫୩ |
| ଚନ୍ଦ୍ରାବତୀ ବିବାହ | ୨୫୭ |
| ସୁରେଖା ହରଣ | ୨୬୦ |
| ପ୍ରଦ୍ୟୁମ୍ନର ବନ୍ଦୀମୋଚନ | ୨୬୪ |
| ସୁରେଖା ବିବାହ | ୨୭୦ |
| କୁଠାରସୁର ବଧ | ୨୭୮ |
| ନାରଦଙ୍କ ଆଦେଶେ ଶ୍ରୀକୃଷ୍ଣ ସହିତ ପାଣ୍ଡବଙ୍କ ଧର୍ମଯଜ୍ଞ କରିବାର ମନ୍ତ୍ରଣା | ୨୮୩ |
| ଧର୍ମ ଯଜ୍ଞର ଆୟୋଜନ | ୨୮୮ |
| ରାଜାମାନଙ୍କର ନିମନ୍ତ୍ରଣ | ୨୯୨ |
| ନକୁଳର କୁନ୍ତମୂନେ ପୃଥ୍ୱୀଧାରଣ | ୨୯୫ |
| ଧର୍ମଯଜ୍ଞ | ୨୯୬ |
| ଶୋଭାବତୀ ହରଣ | ୨୯୮ |
| ପ୍ରୌଢ଼ାସୁରର ବରଲାଭ | ୩୨୧ |
| ପ୍ରୌଢ଼ାସୁରର ଦିଗ୍‌ବିଜୟ | ୩୨୪ |
| କୃତକେଶୀ ସହିତ ପୌଢ଼ାସୁରର ଯୁଦ୍ଧ | ୩୩୨ |
| ପ୍ରୌଢ଼ାସୁର ବଧ | ୩୩୫ |
| ଊଷାହରଣ | ୩୪୦ |
| ମୂଢ଼ାସୁରର ବରଲାଭ ଓ ଗଣେଶଙ୍କର ଜନ୍ମ | ୩୪୮ |
| ମୂଢ଼ାସୁରର ସ୍ୱର୍ଗ ଆକ୍ରମଣ | ୩୫୨ |
| ମୂଢ଼ାସୁରର ଏକୋଇଶବାର ସ୍ୱର୍ଗ ଆକ୍ରମଣ ଓ ବିନାଶ | ୩୫୪ |
| ନକୁଳ ଶିରେ ପାଟ ବନ୍ଧନ | ୩୬୪ |
| ଶାନ୍ତିପନି ମଠେ ହରି ଓ ବଳାରାମଙ୍କ ବିଦ୍ୟାପଠନ ଏବଂ ଯମପୁରରୁ ଗୁରୁପୁତ୍ର ଆନୟନ | ୩୬୬ |


—ମଧ୍ୟପର୍ବର ସୂଚିପତ୍ର ସମାପ୍ତ—

# ମହାଭାରତ
# ମଧ୍ୟପର୍ବ

ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।
ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।।

ତଂ ବେଦଶାସ୍ତ୍ର ପରିନିଷ୍ଠି ତଶୁଦ୍ଧବୁଦ୍ଧିଂ
ଚର୍ମାମ୍ବରଂ ସୁରମୁନୀନ୍ଦ୍ରନୂତଂ କବୀନ୍ଦ୍ରଂ ।
କୃଷ୍ଣତ୍ୱିଷଂ କନକପିଙ୍ଗଜଟାକଳାପଂ
ବ୍ୟାସଂ ନମାମି ଶିରସାଂ ତିଳକଂ ମୁନୀନାଂ ।

ଆଦୌ ତଦ୍ଧୃତ ରାଷ୍ଟ୍ରପାଣ୍ଡୁ ଜନନଂ ଲାକ୍ଷାଗୃହେ ଦାହନଂ,
ଦ୍ୟୂତେ ସ୍ତ୍ରୀହରଣଂ ବନେ ବିଚରଣଂ ମତ୍ସାଳୟେ ଗୋପନଂ ।
ଲୀଳା ଗୋ ହରଣଂ ହ୍ୟନେନ ତରଣଂ ସନ୍ଧିକ୍ରିୟା ଜୃମ୍ଭଣଂ,
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନାଦି ଦଳନଂ ଏତନ୍ମହାଭାରତ ।
ଭୀଷ୍ମ ଦ୍ରୋଣ ତଥା ଜୟଦ୍ରଥଜଳା ଗାନ୍ଧାର ନୀଳୋତ୍ପଳା,
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥମା ବିକର୍ଣ୍ଣ ଘୋର ମକରା ଦୁର୍ଯ୍ୟୋଧନାବର୍ତ୍ତିନୀ,
ସୋଽତ୍ତୀର୍ଣ୍ଣା ଖଳୁ ପାଣ୍ଡବୈ ରଣନଦୀ ଯକ୍ରର୍ଣ୍ଣଧାରୋ ହରିଃ ।
ଆଦ୍ୟପର୍ବଂ ସଭାପର୍ବଂ ପର୍ବମାରଣ୍ୟକଂ ତଥା,
ବିରାଟ ପର୍ବଂ ବିଜ୍ଞେୟଂ ଚତୁର୍ଥଂ ତଦନନ୍ତରଂ ।
ଉଦ୍ଯୋଗଂ ପଞ୍ଚମଂ ପର୍ବଂ ଭୀଷ୍ମପର୍ବଂ ତତଃପର,
ସପ୍ତମଂ ଦ୍ରୋଣପର୍ବଂ ସ୍ୟାତ୍ କର୍ଣ୍ଣପର୍ବଂ ତଥାଷ୍ଟମଂ ।
ନବମଂ ଶଲ୍ୟପର୍ବଂସ୍ୟାତ୍ ଗଦାପର୍ବଂ ତତଃପରଂ
ଐଷିକଂ ତୁ ତଥା ପ୍ରୋକ୍ତଂ ଗର୍ଭନାଶନମେବ ଚ ।

ତ୍ରୟୋଦଶଂ ତୁ ସ୍ତ୍ରୀପର୍ବଂ ପ୍ରଦାନମୁଦକସ୍ୟ ତୁ
ଶାନ୍ତିପର୍ବଂ ତତଃ ପ୍ରୋକ୍ତଂ ଅଶ୍ୱମେଧିକମେବ ଚ ।

ସ୍ୱର୍ଗାରୋହଣକଂ ଚୈବ ହରିବଂଶଂ ଚଥୈବ ଚ
ଇତ୍ୟଷ୍ଟାଦଶ ପର୍ବଣାଂ ସଂଖ୍ୟା ଦ୍ୱୈପାୟନେରତା ।

ହେମନ୍ତେ ପ୍ରଥମେ ମାସି ଶୁକ୍ଳପକ୍ଷେ ତ୍ରୟୋଦଶେ
ପ୍ରବୃତ୍ତଂ ଭାରତଂ ଯୁଦ୍ଧଂ ନକ୍ଷତ୍ରେ ଯମଦୈବତେ ।

ଭାରତ ଶ୍ରୁତିମାତ୍ରେଣ ଗଙ୍ଗାସ୍ନାନେନ ମାନବଃ
ବିଷ୍ଣୁ ସ୍ମରଣ ମାତ୍ରେଣ ସର୍ବ ପାପୈଃପ୍ରମୁଚ୍ୟତେ ।

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଳ୍ମଷଂ
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ।

ତତ୍ରୈବ ଗଙ୍ଗା ଯମୁନା ଚ ତତ୍ର ଗୋଦାବରୀ ତତ୍ର ସରସ୍ୱତୀ ଚ
ସର୍ବାଣି ତୀର୍ଥାନି ବସନ୍ତି ତତ୍ର, ଯତ୍ରାଚ୍ୟୁତୋଦାର କଥାପ୍ରସଙ୍ଗଃ ।

## ମଙ୍ଗଳା ବନ୍ଦନା

ଜୟ ତୁ ମଙ୍ଗଳା ମାଗୋ ଜୟ ହରଚଣ୍ଡୀ
ତୋତେ ସୁମରିଲେ ମା ଦୁରିତ ଯାଏ ଖଣ୍ଡି ।
ଆତଙ୍କ କାଳରେ ସୁମରନ୍ତି ଯେଉଁ ଜନ
ମହାଘୋର ସଙ୍କଟୁ ତୁ ଫିଟାଉ ବନ୍ଧନ ।
ଅଦୃଶ୍ୟକୁ ଦୃଶ୍ୟ ହୁଏ ତୋ ନାମ ଧଇଲେ
ବିପତ୍ତି ନ ଥାଇ ମାଗୋ ତୋତେ ଆଶ୍ରା କଲେ ।
ତୋହର ଯେ ନାମମାନ ଯେହୁ ସୁମରଇ
କିଛି ହିଁ ସଙ୍କଟ ମାଗୋ ବିପତ୍ତି ନ ଥାଇ ।
ଅନାଥକୁ ଦୟା ମାଗୋ ଦୁବ କରୁ ଦାରୁ
ସଙ୍କଟ ପଡ଼ିଲେ ମାଗୋ ପ୍ରାଣୀଙ୍କୁ ଉଦ୍ଧାରୁ ।
ଯେତେବେଳେ ପ୍ରାଣୀଙ୍କୁ ଗୋ ପଡ଼ିଥାଏ କଷ୍ଟ
ତୋତେ ସୁମରିଲେ ମାଗୋ ଫିଟଇ ସଙ୍କଟ ।
ଏ ତୋହର ବାରବ୍ରତ ଯେହୁ କରେ ନିତି
ପାଏ ସେହୁ ଧନ ଜନ ଅଚଳ ସମ୍ପତ୍ତି ।

ନମୋ ନାରାୟଣୀ ମାଗୋ ଅପର୍ଣ୍ଣା ପାର୍ବତୀ
ଭ୍ରମଣ ଯେ କରୁ ମାଗୋ ଅର୍ଦ୍ଧନିଶା ରାତି ।
ଚଣ୍ଡୀ ଯେ ଚାମୁଣ୍ଡା ମାଗୋ ଖଟନ୍ତି ଅପାର
ଏମାନଙ୍କୁ ସଙ୍ଗେ ଘେନି ଭ୍ରମଣ ତୋହର ।
ପୟରେ ଅଳତା ଭାଲେ ସିନ୍ଦୂରର ଚିତା
ରଙ୍ଗବସ୍ତ୍ରେ ପାଏ ତୋର ଶ୍ରୀଅଙ୍ଗ ଶୋଭିତା ।
ସିଂହର ପୃଷ୍ଠରେ ମାଗୋ ବିଜେ କରି ଯାଉ
ଯେ ମୁଖେ ପଡ଼ିଲେ ମାଗୋ ନ ବର୍ତ୍ତନ୍ତି ଆଉ ।
ନମସ୍ତେ ଶାରଳା ମାଗୋ ଶଙ୍କର ଭବାନୀ
ଦୟାକର ମୋତେ ମାଗୋ ଦନୁଜ ନାଶିନୀ ।
ଶୁଖିଲା ସମୁଦ୍ରେ ମାଗୋ ବୁଡ଼ିଲା ମୋ ଭେଳା
ଦୁସ୍ତର ପଡ଼ିଲା ମାଗୋ ଉଦ୍ଧର ମଙ୍ଗଳା ।
ସଖା ସହୋଦର ମାଗୋ ବନ୍ଧୁଜନ ନାହିଁ
ବିପତ୍ତି କାଳରେ ସାହା ହୁଅ ମହାମାୟୀ ।
ବିନ୍ଧ୍ୟଗିରିବାସୀ ହିମବନ୍ତର ଦୁହିତା
ଏମନ୍ତ ଦ୍ୱାଦଶ ନାମ ଦେଲେ ଯେ ବିଧାତା ।

ଝଙ୍କଡ଼େ ରହିଲୁ ନାମ ଶାରଳା ବୋଲାଇ
କାକଟପୁରେ ରହିଲୁ ମଙ୍ଗଳା ଯେ ତୁହି ।
ଲହ ଲହ ଜିହ୍ୱା ମା ସିନ୍ଦୂର ମୁଖମଣ୍ଡୀ
କୋଣାରକେ ରହିଲୁ ଅଭୟା ରାମଚଣ୍ଡୀ ।
ପୁରୁଷୋତ୍ତମେ ରହିଲୁ ବିମଳା ବୋଲାଇ
ବାଙ୍କୀରେ ରହିଲୁ ମାଗୋ ନାମ ଚର୍ଚ୍ଚିକାଇ ।
ସମ୍ବଲପୁରେ ରହିଲୁ ନାମ ସମଲାଇ
ଯାଜପୁରେ ରହିଲୁ ଗୋ ନାମ ବିରାଜାଇ ।
ପଶ୍ଚିମେ ରହିଲୁ ମାତ ନାମ ହିଙ୍ଗୁଳାଇ
ଭୁବନେଶ୍ୱରେ ରହିଲୁ ଗଉରୀ ବୋଲାଇ ।
ବାଣପୁରେ ରହିଲୁ ଗୋ ନାମ ଭଗବତୀ
ସକଳ ଅମରେ ତୋତେ କରନ୍ତି ଯେ ସ୍ତୁତି ।
ଉତ୍ତର ଦିଗେ ରହିଲୁ ଚଣ୍ଡୀନାମ ବହି
ଏମନ୍ତ ଦ୍ୱାଦଶ ନାମ ବ୍ରହ୍ମାଗଲେ ଦେଇ ।
ଲହ ଲହ ଜିହ୍ୱା ମାଗୋ ଘୋର ଦନ୍ତପାଟି
ନମୋ ଆଦିମାତା ତୁହି ବିଜେ ସିଂହପିଠି ।
କାତି ଯେ ଖପର ମାଗୋ ଶୋହେ ବାମ କର
ଶଙ୍ଖଚକ୍ର ଗଦା ମାଗୋ ଆୟୁଧ ତୋହର ।
ତ୍ରେତାଯୁଗେ ତୋତେ ମାଗୋ ସୁମରିଲେ ରାମ
ପ୍ରସନ୍ନ ହୋଇଣ ମାତ କଲୁ ପୂର୍ଣ୍ଣକାମ ।
ତୁମ୍ଭରି ଆଜ୍ଞାରେ ରାମ ଲଙ୍କାକଲେ ଜୟ
ରାବଣକୁ ମାରି ସୀତା ଆଣି ରାମରାୟ ।
ନମସ୍ତେ ମଙ୍ଗଳା ମାଗୋ ରକ୍ଷାକର ମୋତେ
ମୁହିଁ ଅରକ୍ଷିତ ଜନ ଆଶ୍ରା କଲି ତୋତେ ।
ଯେତେବେଳେ ଯାହା ମାଗୋ କରୁଥିବି ଇଚ୍ଛା
ତୋ ପାଦ ସ୍ମରଣେ ପୁରୁଥିବ ମନୋବାଞ୍ଛା ।
ତୁମ୍ଭର ଚରଣେ ମୋର ହେଉ ମନସ୍ଥିତ
ଶାରଳା ଦାସକୁ ଯେ ଉଦ୍ଧର ଆଦିମାତ ।

—o—

## ରଜଷ୍ଟକ୍ର

ଜୟ ତୁ ଦେବୀ ଅନାଦି ଆଦି ସିଦ୍ଧକାୟେ
ତ୍ରିଦଶ ଦେବେ ଖଟନ୍ତି ନିତ୍ୟ ତୋର ପାୟେ ।
ଚୌଷଠି ଯୋଗିନୀ ନବକୋଟି କାତ୍ୟାୟନୀ
ତୁହି ସିନା ଅଟୁ ମାଗୋ ମହିଷାମର୍ଦ୍ଦିନୀ ।
ତୁହି ମାଗୋ କଳିକାଳ ଦର୍ପ ବିଧ୍ୱସିନୀ
ଦେବାସୁର ନର ତୋର ଚରଣେ ଦଇନୀ ।
ମୂର୍ଖ ଅପଣ୍ଡିତ ମୁହିଁ ଅଟଇ ଅଜ୍ଞାନୀ
ଏ ସିଦ୍ଧଗ୍ରନ୍ଥକୁ ମୋତେ କହିଲେ ଭବାନୀ ।
ସତ୍ୟ ତ୍ରେତା ଦ୍ୱାପର ଏ କଳିକାଳ ମଧ୍ୟେ
ସଂସାର ଧାରଣା ଅଟୁ ତୁ ଗୋ ସିଦ୍ଧ ସାଧ୍ୟେ ।
ମୋତେ କି ଗୋଚର ଏହିଗ୍ରନ୍ଥ ଲେଖିବାରେ
ତୁ ଗୋ ଭବାନୀ ପ୍ରସନ୍ନ ହୋଇଲୁ ମୋ ଠାରେ ।
ମନୁଷ୍ୟ ହୋଇ ମୁଁ ସିଦ୍ଧ ଦେବୀଙ୍କୁ ଦେଖଇ
ନ ଆସିବାଠାରେ ପଦ ଦେଉଥାନ୍ତି କହି ।
ସେ ଅନାଦି ଦେବୀଙ୍କର ଖଟିଲି ଚରଣେ
ଯାହା ଶୁଣିଲେ ମୁକତ ହେବେ ଜଣେ ଜଣେ ।
ନାନା ପାତକମାନ ଯେ ହେବ ବିନଶ୍ୟତି
ଅପୁତ୍ରିକ ଲୋକ ପୁତ୍ର ହୋଇବ ପ୍ରାପତି ।
ଶ୍ରୀସିଦ୍ଧଚଣ୍ଡୀ ଚରଣେ କରଇ ଦଇନୀ
ମୁକତି ଅର୍ଥେ ଶାରଳା ଦାସ ଶୂଦ୍ରମୁନି ।
ବୈବସ୍ୱତ ମନୁ କଲେ ଅଗସ୍ତିଙ୍କ ପୂଜା
ପାଦ୍ୟାର୍ଘ୍ୟ ଦେଇ ପାଦେ ଖଟି ମହାରାଜା ।
ବସନ କୁଣ୍ଡଳ ଧୂପ ଦୀପ ନଇବେଦ୍ୟେ
ନବରତ୍ନ ମାଳାଦେଇ ଋଷିଙ୍କର ପାଦେ ।
କହିବା ମୁନି ଏ ମଧ୍ୟପର୍ବ ଦିବ୍ୟ ବାଣୀ
ଶରୀର ନିର୍ମଳ ହେବ ତବ ମୁଖୁ ଶୁଣି ।
ଏବେ କେବଣ ଚରିତ କଲେକ ପାଣ୍ଡବେ
କହ ମୁନି ମୋତେ ତାହା କଥାର ପ୍ରସ୍ତାବେ ।
ପାଞ୍ଚ ପୁରୁଷକୁ ହେଲା ଏକଇ ଯୁବତୀ
ସାଂସାରିକ ଧର୍ମ ହେଲା ତାଙ୍କର କି ରୀତି ।
ସଂକ୍ଷେପି କହିବା ହେଉ ମୁନି ତପୋବନ୍ତ
ପାପାଧିପାପ ମୋହର ହେବ ନାଶ ପ୍ରାପ୍ତ ।
କହନ୍ତି ଅଗସ୍ତି ବିଜ୍ଞ ତୁ ପଣ୍ଡିତଜନ
ସାବଧାନେ ଏ ଭାରତ ଶୁଣ ହେ ରାଜନ ।
ବଦୟନ୍ତି ଅଗସ୍ତି ଯେ ପଣ୍ଡିତ ମାର୍ତ୍ତଣ୍ଡ
ଶୁଣ ସାବଧାନେ ଆଦ୍ୟପର୍ବ ମଧ୍ୟଖଣ୍ଡ ।
ହସ୍ତିନା ଈଶାନ ଭାଗ ବାରୁଣୀର କତି
ସୁନ୍ଦର କରି ନଗର ତୋଳାଇ ରହନ୍ତି ।
ସାତଙ୍କ ନିମନ୍ତେ କଲେ ସାତଗୋଟି ପୁର
ଅସ୍ତ୍ରଘର ଧନଘର ଭଣ୍ଡାର ଆବର ।
ଭିନ୍ନ ନବରେ ଦ୍ରୌପଦୀ ରଖି ପାଞ୍ଚଭାଇ
ଆପଣା ଆପଣା ପୁରେ ରହିଲେ ସେ ଯାଇ ।
କୁନ୍ତୀଦେବୀ ରହିଲେ ଯେ ଆପଣା ନଗରେ
ପାଞ୍ଚଭାଇ ଥାନ୍ତି ଦୁର୍ଯ୍ୟୋଧନ ସଙ୍ଗତରେ ।
ମକର ଶୁକ୍ଳ ପକ୍ଷ ଦଶମୀ ଯେ ତିଥି
ରୋହିଣୀ ନକ୍ଷତ୍ର ପୁଣି ବାର ବୃହସ୍ପତି ।
ବାଳବ ନାମେ କରଣ ଶୁଭ ନାମେ ଯୋଗ
ମକର ସଂକ୍ରାନ୍ତି ଚଉବିଂଶ ଦିନ ଭୋଗ ।
ସେଦିନ ପାଞ୍ଚାଳୀ ଦେବୀ ହେଲେ ରଜୋବତୀ
ପୁଷ୍ପବତୀର ଉତ୍ସବ ନବରେ କରନ୍ତି ।

ମିଶ୍ରିତ କରାଇ ଚୂନ ସଙ୍ଗରେ ହଳଦୀ
ମାରନ୍ତି ପିଚିକା ଧରି ପରିହାସେ ଖେଦି ।
ପ୍ରଥମ ରଜ ଗଣନ୍ତି ଧୌମ୍ୟ ପୁରୋହିତେ
ଗଣନ୍ତି ଯେ ରଜଶ୍ଚକ୍ର ପାତି ଗ୍ରହପୁତ୍ରେ ।
ବାର ତିଥି ଋକ୍ଷ ଚନ୍ଦ୍ରକରଣ ରବ୍ୟଂଶ
ସପ୍ତାଙ୍ଗ ଯୋଗ ବିଚାର କରନ୍ତି ବିଶେଷ ।
ଜ୍ୟୋତିଷ ଶାସ୍ତ୍ରମତେ ଶ୍ଳୋକମାନ ପଢ଼ି
ବୁଝାଇ ଅର୍ଥ କହନ୍ତି ବେନିକର ଯୋଡ଼ି ।
ଆଦିତ୍ୟବାରେ ହୁଅଇ ଯେବେ ରଜୋବତୀ
ସ୍ୱାମୀକୁ ଯେ ଗ୍ରହପୀଡ଼ା ସନ୍ତାନ ନୁହନ୍ତି ।
ସୋମବାରେ ଯେବେ ସ୍ତିରୀ ହୁଏ ରଜୋବତୀ
ସେହି ସ୍ତିରୀର ହୁଅଇ ସ୍ୱାମୀର ପୀରତି ।
ମଙ୍ଗଳବାରେ ହୁଅଇ ଯେବେ ରଜୋବତୀ
ବିଧବା ହୁଅଇ ସ୍ୱାମୀ ହୁଏ ବିନଶ୍ୟତି ।
ବୁଧବାରେ ଯେବେ ନାରୀ ହୁଏ ରଜୋବତୀ
ସ୍ୱାମୀରେ ଭକତି ହୁଏ ସଉଭାଗ୍ୟବତୀ ।
ଗୁରୁବାରେ ରଜୋବତୀ ହୁଏ ଯେବେ ନାରୀ
ଧନ ସନ୍ତାନ ବହୁତ ହୁଅଇ ତାହାରି ।
ଶୁକ୍ରବାରେ ରଜୋବତୀ ହୁଏ ଯେବେ ନାରୀ
ବହୁତ ପୁତ୍ର ହୁଅଇ ନୁହେଁ ଅନ୍ୟାଚାରୀ ।
ଯେବେ ଜାଣ ରଜୋବତୀ ହୁଏ ଶନିବାରେ
ପୁତ୍ର ପୁତ୍ରୀ ନ ଉପୁଜେ ସେ ସ୍ତିରୀ ଗର୍ଭରେ ।
ମାଘମାସ ଗୁରୁବାରେ ନକ୍ଷତ୍ର ରୋହିଣୀ
ମାହେନ୍ଦ୍ରଯୋଗେ ହୋଇଲା ପଣ୍ଡିତେ ବଖାଣି ।
ବାର ଚକ୍ରଗୋଟି ଜାଣ ହୋଇଛି ପବିତ୍ର
କହିଲେ ଯେ ତିନିଚକ୍ର ପାତି ଗ୍ରହପୁତ୍ର ।
ପ୍ରତିପଦ ଦିନ ଯେବେ ରଜୋବତୀ ହୋଇ
ଅତି ମହାପାପୀ ତାକୁ ଛୁଇଁବ ଯେ ନାହିଁ ।
ଦ୍ୱିତୀୟା ଦିନ ହୋଇବ ଯେବେ ରଜୋବତୀ
ଏକ ସ୍ୱାମୀରେ ଦିନ ଯିବ ହେବ ପୁତ୍ରବତୀ ।
ତୃତୀୟା ଦିନ ହୋଇବ ଯେବେ ରଜୋବତୀ
ଯୁବତୀ ହୋଇ ପାଇ ସେ ଅନେକ ସମ୍ପତ୍ତି ।
ଚତୁର୍ଥୀଦିନ ହୋଇବ ଯେବେ ରଜୋବତୀ
ସେ ସ୍ତିରୀ ଅଙ୍ଗ ଛୁଇଁଲେ ଦୋଷ ଅପ୍ରମିତି ।
ପଞ୍ଚମ ଦିନ ହୋଇଲେ ରଜୋବତୀ ନାରୀ
ଶତଶ୍ରୀୟା ପ୍ରତ୍ୟକ୍ଷେ ସେ ବଢ଼ଇ ତା ଶିରୀ ।
ଷଷ୍ଠୀଦିନ ଯେବେ ରଜଗ୍ରାହିଣୀ ହୁଅଇ
ଦୁର୍ଭାଗା କଳହୀ ହୋଇ ସେ ସ୍ତିରୀ ରହଇ ।
ସପ୍ତମୀରେ ପୁଷ୍ପବତୀ ହୁଏ ଯା ମାନିନୀ
ତାହାସହ ବାସ କଲେ ହୁଏ ଧନହାନି ।
ଅଷ୍ଟମୀ ଦିନ ହୋଇବ ଯେବେ ରଜୋବତୀ
ପୁତ୍ର ଦୁହିତା ଉପୁଜେ ସୁଭଗା ଯୁବତୀ ।
ନବମୀରେ ରଜୋବତୀ ହୁଏ ଯେବେ ନାରୀ
ବିଧବା ହୁଅଇ ସ୍ୱାମୀ ମରଇ ତାହାରି ।
ଦଶମୀ ଦିନ ହୁଅଇ ଯେବେ ରଜୋବତୀ
ପୁତ୍ର ଦୁହିତା ଉପୁଜେ ବଢ଼ଇ ସନ୍ତତି ।
ଯେଉଁ ନାରୀ ରଜୋବତୀ ହୁଏ ଏକାଦଶୀ
ସ୍ୱାମୀ ନାଶ ଯାଇ ହୁଏ ସେ ଅଘରବାସୀ ।
ଦ୍ୱାଦଶୀ ଦିନ ହୋଇବ ଯେବେ ରଜୋବତୀ
ଏ ସ୍ତିରୀ ଛୁଇଁଲେ ମହାପାପୀ ହେବ ପତି ।
ତ୍ରୟୋଦଶୀ ଦିନ ଯେବେ ହୋଇ ରଜୋବତୀ
ନିଜ ସ୍ୱାମୀ ତେଜି ସ୍ତିରୀ ଦୋଚାରୀ ହୁଅନ୍ତି ।
ଚତୁର୍ଦ୍ଦଶୀ ଦିନ ରଜୋବତୀ ହୁଏ ଯେବେ
ବହୁ ପାତକୀ ହୋଇଣ ମରେ ସଂକୁଟୁମ୍ବେ ।
ରଜୋବତୀ ହୁଏ ଯେବେ ଅମାବାସ୍ୟା ଦିନ
ତାକୁ ଘେନି ଘର କଲେ ହେବ ନିଃସନ୍ତାନ ।
ପୂର୍ଣ୍ଣମୀରେ ଯେବେ ସ୍ତିରୀ ହୁଏ ରଜୋବତୀ
ଗ୍ରହଣ ଖଣ୍ଡିଆ ହୁଏ ତାହାର ସନ୍ତତି ।
ବାମଦେବ କହିଲେ ଏ ରଜଶ୍ଚକ୍ର କଥା
ଦଶମୀରେ ହୋଇଲା ଏ ନିର୍ଦ୍ଦୋଷୀ ବନିତା ।
ପୁଣି ହିଁ ନକ୍ଷତ୍ର ଚକ୍ର ପାତିଲେ ପଣ୍ଡିତେ
ଯେ ନକ୍ଷତ୍ର ଯେଉଁ ଫଳ ହୋଇବ ଯେମନ୍ତେ ।
ଅଶ୍ୱିନୀ ରୋହିଣୀ ପୁଷ୍ୟା ଉତ୍ତରା ଫାଲ୍ଗୁନି
ହସ୍ତା ସ୍ୱାତୀ ଅନୁରାଧା ଧନିଷ୍ଠା ଏ ଘେନି ।
ଶ୍ରବଣା ପୂର୍ବ ଭୋଦ୍ରଅ ଉତ୍ତର ଭୋଦ୍ରଅ
ମୃଗଶିରା ଘେନି ହେଲା ବାର ପୁଣ୍ୟମୟ ।
ଏତେ ନକ୍ଷତ୍ରେ ହୋଇବ ଯେବେ ରଜୋବତୀ
ଧନ ପୁତ୍ରବତୀ ହେବ ପତିରେ ଭକତି ।
କୃତିକା ମଘା ବିଶାଖା ଆରଦ୍ରା ଅଶ୍ଳେଷା
ଆବର ଉତ୍ତରାଷାଢ଼ା ମୂଳା ସାତମିଶା ।
ଏତେ ନକ୍ଷତ୍ରରେ ଜାଣ ଏକଥା ହିଁ ମୂଳ
ରଜୋବତୀ ହେଲେ ସ୍ତିରୀ ନ ରହଇ କୂଳ ।
ଦ୍ୱିଜା ପୂର୍ବାଫାଲଗୁନୀ ଚିତ୍ରା ଜ୍ୟେଷ୍ଠା ତିନି
ପୂର୍ବାଷାଢ଼ା ଶତଭିଷା ରେବତୀ ଏ ଘେନି ।
ଏତେ ନକ୍ଷତ୍ରରେ ସ୍ତିରୀ ହେଲେ ରଜୋବତୀ
ଇହଲୋକେ ସୁଖ ପାଇ ଅନ୍ତେ ସଦ୍‌ଗତି ।
ଏ ନକ୍ଷତ୍ର ଚକ୍ରରେ ଯେ ନାହିଁ ପାପକର୍ମ
ରୋହିଣୀ ନକ୍ଷତ୍ରେ ହେଲା ପାଇଲା ଏ ଧର୍ମ ।
ଯୋଗଚକ୍ରମାନ ତହୁଁ ପାତିଲେ ପଣ୍ଡିତେ
ବିଚାରିଲେ ସେ ସମସ୍ତ ଗୁଣ ଶୁଭଅର୍ଥେ ।

ବିଷ୍କୁମ୍ଭ ଯେ ଆୟୁଷ୍ମାନ ସୌଭାଗ୍ୟ ଶୋଭନ
ବ୍ୟତିପାତ ହରଷଣ ପରିଘ ଯେ ବ୍ରହ୍ମ ।
ବହୁଶୁଭ ଏ ଯୋଗରେ ହେଲେ ରଜୋବତୀ
ଧନ ଜନ ଉପୁଜାଇ ହୁଏ ଭାଗ୍ୟବତୀ ।
ପ୍ରୀତି ଅତିଗଣ୍ଡ ଧୃତି ଶୂଳ ଇନ୍ଦ୍ର ଯୋଗ
ଦୋଚାରୀ ହୁଏ ଯୁବତୀ ଖୋଜେ ରତିଭୋଗ ।
ଶୁକ୍ଳ ଇନ୍ଦ୍ର ବରୀୟାନ ଶ୍ରବ ବଇଧୃତି
ସନ୍ତାନ ହାନି ହୁଅଇ ହେଲେ ରଜୋବତୀ ।
ଶୁଭ ବୃଦ୍ଧି ସିଦ୍ଧ ସାଧ୍ୟ ଅସୃକ ଏ ଯୋଗେ
ରଜୋବତୀ ହେଲେ ନାରୀ ରହେ ସୁଖଭୋଗେ ।
ଗଣ୍ଡ ଅତିଗଣ୍ଡ ଶୂଳ ସୁକର୍ମା ବ୍ୟାଘାତ
ରଜୋବତୀ ହେଲେ କରେ ସର୍ବଂଶ ନିପାତ ।
ଉବୁରିଲାଣି ସକଳ ଦୋଷୁଁ ଏ ଯୁବତୀ
ଶୁଭ ବୋଲି ବାମଦେବ ପଣ୍ଡିତ କହନ୍ତି ।
କରଣ ଚକ୍ରକୁ ପାତି କହନ୍ତି ପଣ୍ଡିତେ
ଯେଉଁ କରଣରେ ଯେଉଁ ଫଳ ହୁଏ ଯେତେ ।
ବବ ବାଳବ କୌଳବ ତୈତିଳ ବାଣିଜ୍ୟ
ଏ ଯୋଗରେ ରଜୋବତୀ ହେଲେ ପାଇ ରାଜ୍ୟ ।
ବିଷ୍ଟି ଶକୁନି କିଂସ୍ତୁଘ୍ନ ଆଉ ଗର ନାଗ
ଚତୁଷ୍ପଦ କରଣ ଏ ଷଷ୍ଟେ ପାପଭୋଗ ।
ପୁଣି ଉପୁଜିଲା ବୋଲି ସପତାଙ୍ଗ ବୁଝି
ପୁଚ୍ଛା କରନ୍ତେ କହିଲେ ବୁଝି ଗ୍ରହ ପାଞ୍ଜି ।
ଗୁରୁ ତୃତୀୟରେ ଅଛି ଚନ୍ଦ୍ରମା ସପ୍ତମେ
ଏକାଦଶେ ବୃହସ୍ପତି ସଉରୀ ନବମେ ।
ରାହୁ ସପତମେ କେତୁ ଏକାଦଶ ବଳ
ସର୍ବାଙ୍ଗ ପ୍ରସିଦ୍ଧ ସର୍ବ ଶୁଭ ଅନୁକୂଳ ।
ବିଚାରିଣ ଅନୁକୂଳ ଦେଲେ ଗ୍ରହପୂତ୍ରେ
ଉତ୍ସବ ବିଧାନମାନ କଲେ ଦିନ ସାତେ ।
ପ୍ରଥମ ଦିନେ ଛୁଇଁଲେ ଚାଣ୍ଡାଳର ସରି
ଯେତେବେଳେ ଛୁଇଁ ତେତେବେଳେ ସ୍ନାନ କରି ।
ଦ୍ୱିତୀୟଦିନ ଛୁଇଁଲେ ଅଶୁଦ୍ଧ ଯୁବତୀ
ସମ୍ବତ୍ସର ଯାଏ ପିତୃ ଜଳ ହିଁ ନ ପାନ୍ତି ।
ରଜୋବତୀକୁ ଛୁଇଁଲେ ତୃତୀୟ ଦିବସେ
ଅବଶ୍ୟ ମଜ୍ଜଇ ସେହୁ ଲିଙ୍ଗଭଗ୍ନ ଦୋଷେ ।
ଚତୁର୍ଥ ଦିବସେ ଯେହୁ ଛୁଏଁ ରଜୋବତୀ
ଅବଶ୍ୟ ତା ପିତୃଲୋକେ ଅନ୍ନ ହିଁ ନ ପାନ୍ତି ।
ପଞ୍ଚମ ଦିନରେ ଯାଇ କରିବ ଯେ ସ୍ନାନ
ପାକଶାଳେ ପଶି ସେହି କରିବ ରନ୍ଧନ ।
ପବିତ୍ର ମୃତ୍ତିକା ଷଷ୍ଠ ଦିବସରେ ଲେପି

ସପତମ ଦିବସେ ଯେ ଯିବ ସ୍ୱାମୀପାଶ
ଏତେ ଜ୍ଞାନ ଥିଲେ ତାର ହରେ ସର୍ବଦୋଷ ।
ଯାହା ବିଚାରି ଲିହିଲେ ଶାସ୍ତ୍ରରେ ପୁରାଣେ
ଲେଖିଛି ମୁଁ ଗୋସାମଣି ଆଜ୍ଞା ପରମାଣେ ।
ବିଚାର କଲେ ଏଥିରେ ଏତେ ଦୋଷ ଅଛି
ଅବିଚାରେ କାର୍ଯ୍ୟେ କଲେ ଧର୍ମ ନାହିଁ କିଛି ।
ବଡ଼ ହିଁ ଦୁର୍ଲ୍ଲଭ ଏ ଯେ ସାଂସାରିକ କର୍ମେ
କେହୁ ନିର୍ମାଣି କହିବ ଏ ମାନବ ଜନ୍ମେ ।
କିଞ୍ଚିତରେ ଆଜ୍ଞାଦେଲେ ଜଗତର ମାତା
ଶାରଳା ଦାସ କହିଲେ ରଜଶୁକ୍ର ବାର୍ତ୍ତା ।
ନ ପଢ଼ିଲି ଅକ୍ଷରେ ମୁଁ ନୁହେଁ ଶାସ୍ତ୍ରବାଦୀ
ନ ବସଇ ପଣ୍ଡିତଙ୍କ ସଙ୍ଗେ ମୁଁ ସମ୍ବାଦି ।
କୁସ୍ଥାନବାସୀ ହୋଇ ନ ପାଇ ବିପ୍ରଗୋଷ୍ଠୀ
ଅଳପ ମତି ମୋହର ବାଲ୍ୟ ବୁଦ୍ଧି ଗୋଟି ।
ପଣ୍ଡିତ ଜନଙ୍କୁ ମୁହିଁ କରଇ ବିନୟ
ମୁକତି ମାଗଇ କରି ନାରାୟଣେ ଲୟ ।
ବାମଦେବ ପଣ୍ଡିତେ ଯା କହେ ଶାସ୍ତ୍ରଯୋଗ
ପଣ୍ଡୁସୁତ ଧର୍ମରାୟ ଯୁଧିଷ୍ଠିଙ୍କ ଆଗ ।

—o—

## ପାଣ୍ଡବଙ୍କ ନିୟମ

ବୋଲନ୍ତି ଅଗସ୍ତି ଶୁଣ ମନୁ ନରପତି
ଜଉତିଷେ କହିଗଲେ ରଜଶୁକ୍ର ପାତି ।
ମୀନମାସ କୃଷ୍ଣପକ୍ଷ ପଞ୍ଚମୀର ତିଥି
ପଣ୍ଡିତ ବାସରେ ମଘାନକ୍ଷତ୍ର ଯୁକତି ।
ଦ୍ରଉପଦୀ ଶୁଦ୍ଧଅଙ୍ଗ ସପ୍ତମ ଦିବସେ
ପୁଷ୍ପବତୀ ବନ୍ଧାପନା ଉତ୍ସବ ଉଆସେ ।
ବିଜୟେ ପଞ୍ଚପାଣ୍ଡବେ ଏକଇ ଆସ୍ଥାନେ
ଦ୍ରଉପଦୀ ଅର୍ଘ୍ୟ ଆଣିଦେଲେ ସନ୍ନିଧାନେ ।
ପ୍ରଥମରେ ଅର୍ଘ୍ୟ ଦେଲେ ସୌମ୍ୟ ପୁରୋହିତେ
ଦ୍ୱିତୀୟରେ ଗାନ୍ଧାରୀଙ୍କୁ ଦେଲେ ସେ ତୁରିତେ ।
ଯୁଧିଷ୍ଠି ବୋଇଲେ ଅନ୍ଧପଟଳ ଉପେକ୍ଷ
ଯାଜ୍ଞସେନୀ ଦ୍ରୌପଦୀର ମୁଖପଦ୍ମ ଦେଖ ।
ଗାନ୍ଧାରୀ ବୋଇଲେ ମୋର ବହୁକାଳ ବ୍ରତ
ତାହା ଉପେକ୍ଷିଲେ ଧର୍ମ ନୋହିବ ପ୍ରାପତ ।
ଏଥକୁ କଟାଳ ବାବୁ ନ କର ତୁ କିଛି
ଦିବ୍ୟଚକ୍ଷୁ ଘେନି ମୁହିଁ ସବୁ ଦେଖୁଅଛି ।
ଚକ୍ଷୁରେ ଚାହିଁଲେ ମୋତେ ସବୁ ହୁଏ ଦୃଶ୍ୟ
ଏମନ୍ତ ଦିଶୁ ଅଛଇ ଭୁବନ ତ୍ରିଦଶ ।
ଏତେକ ବୋଲି ଗାନ୍ଧାରୀ ହସ୍ତେ ଅର୍ଘ୍ୟ ଘେନି

ଚତୁର୍ଥେ ନକୁଳ ସହଦେବ ବେନିଭାଇ
କ୍ଷଣରେ ଦ୍ରୌପଦୀ ଦେବୀ ଶିରେ ଅର୍ଘ୍ୟଦେଇ ।
ଜୟ ଶବଦ ମଙ୍ଗଳ ଶୁଭଧ୍ୱନି ତୋଳି
ସୁଲକ୍ଷଣୀ କନ୍ୟାମାନେ ଦ୍ୟନ୍ତି ହୁଳହୁଳି ।
ବ୍ରାହ୍ମଣମାନେ କରନ୍ତି ତହିଁ ବେଦଧ୍ୱନି
ହୁଳହୁଳି ଦିଅନ୍ତି ଯେ ଅହିଅ କାମିନୀ ।
ହୋଇଲା କୋଟି ସୁବର୍ଣ୍ଣ କୋଟି ରତ୍ନଦାନ
କୋଟି ଦାନ ହୋଇଲାକ ସୁରଙ୍ଗ ବସନ ।
କୋଟିଏକ ଧେନୁ ଦେଲେ ବସ୍ତ୍ରର ସହିତେ
ପୁଷ୍ପ ଉତ୍ସବ ଆହୁତି ଦେଲେ ଯେ ତୁରିତେ ।
ସେହି ଘୃତକୁ ସମସ୍ତେ କଲେକ ପ୍ରାଶନ
ଦେବତାମାନେ ସୁଖରେ ଭୁଞ୍ଜନ୍ତି ସମ୍ପୂର୍ଣ୍ଣ ।
ଚଳିଗଲେ ସ୍ତିରୀମାନେ ବନ୍ଧାପନା ସାରି
ତହୁଁ ଋଷି ବିପ୍ରମାନେ ବେଦ ଯେ ଉଚ୍ଚାରି ।
ପୁତ୍ର ପଉତ୍ର ପ୍ରାପତ ହେଉ ତୋତେ ମାତ
ଯା ବାଞ୍ଛା କରିବୁ ତୋତେ ହେଉ ପରାପତ ।
ଉତ୍ସବ ସାରିଣ ଗଲେ ଯେ ଯାହାର ସ୍ଥାନେ
ନିତ୍ୟକର୍ମ ମଣୋହି ଯେ କଲେ ପାଞ୍ଚଜଣେ ।
ଦ୍ରୌପଦୀ ମଣୋହି କଲେ ପାଣ୍ଡବଙ୍କ ମେଳେ
ଆପଣା ମନ୍ଦିରେ ବିଜେ କଲେ ନିଶାକାଳେ ।
ପରଦିନ ପ୍ରଭାତରେ ମିଳିଲେ ନାରଦ
ପଞ୍ଚପାଣ୍ଡବଙ୍କୁ କଲେ ବହୁ ଆଶୀର୍ବାଦ ।
ଯୁଧିଷ୍ଠି ତାହାଙ୍କୁ କଲେ ବହୁତ ଆଦର
ଗନ୍ଧ ପୁଷ୍ପ ଧୂପ ଦୀପେ ପୂଜିଲେ ପୟର ।
ଏକାନ୍ତେ ନାରଦ ତାଙ୍କୁ କହିଲେ ଏମନ୍ତ
ପାଞ୍ଚଭାଇ ବସି କର ଗୋଟିଏ ଶପଥ ।
ଯେମନ୍ତେ ଭେଦ ନ ହୁଏ ଭାଇରେ ଭାଇରେ
ପାଞ୍ଚଭାଇ କ୍ରୀଡ଼ା କର ଦ୍ରୌପଦୀ ସଙ୍ଗରେ ।
ଏହାକହି ମନଯାନେ ଗଲେ ମହାମୁନି
ଯୁଧିଷ୍ଠି ମୁନିଙ୍କ କଥା ମନେ ମନେ ଗୁଣି ।
ଏକାନ୍ତ ହୋଇ ବସିଲେ ପାଞ୍ଚଗୋଟି ଭାଇ
ଯୁଧିଷ୍ଠିର ପଚାରିଲେ ସେ ଚାରିଙ୍କୁ ଚାହିଁ ।
ବାବୁ ପାକାସ୍ପର୍ଶ ଯେବେ ହୁଅନ୍ତି ଯୁବତୀ
ଛୁଇଁ ନ ଯୋଗାଇ ସାତଦିନ ସାତରାତି ।
ରଜମୁକତ ଉତ୍ତାରେ ତା ସଙ୍ଗ ନ କଲେ
ସେ ଶୋଣିତ ପିତୃଲୋକ ପିଅନ୍ତିଟି ଭଲେ ।
ଏମନ୍ତ ବିଚାର ଅଛି ଶାସ୍ତ୍ରର ସଂଯୋଗେ
ଦ୍ରୌପଦୀ କଥା କରିବା ଏବେ କେଉଁ ବାଗେ ।
ଶୁଣିଲ ତ ଯାହା କହିଗଲେ ସେ ନାରଦ
ବିଚାର କର ନୋହିବ ଯେହ୍ନେ ଭାଇ ଭେଦ ।

କରପତ୍ର ଯୋଡ଼ି ତହିଁ ବୋଲେ ଫାଲଗୁନି
ତୁମ୍ଭେ ବିଜେ କର ଦେବ ଆଜର ରଜନୀ ।
ଭୀମସେନ ଠାକୁରଙ୍କ ପାଳି କାଲି ରାତି
ମୋର ପାଳି ତାର ପର ରାତି ହେ ନୃପତି ।
ତାର ପର ରାତି ହେବ ନକୁଳର ଜାଣ
ତାର ପର ରାତି ସହଦେବର ପ୍ରମାଣ ।
ଯେ ଦିନ ଯେ ଜନ ଥିବ ପାଞ୍ଚାଳୀର ପୁରେ
ଆନ ଜନ ଯେବେ ଯିବ ତାର ପାଶ୍ୱାତରେ ।
ଦ୍ୱାଦଶ ବରଷ ସେହୁ ପଶିବ ଅରଣ୍ୟ
ଏପରି ନିୟମ କଲେ ତହୁଁ ପାଞ୍ଚଜଣ ।
ଏତେ ବୋଲି ଚାରିହେଁ ଯେ ଗଲେ ଆସ୍ଥାନକୁ
ଯୁଧିଷ୍ଠିର ବିଜେ କଲେ ଦୌପଦୀ ପୁରକୁ ।
ପ୍ରାତଃ ଶଯ୍ୟା ଛାଡ଼ିଗଲେ ଦେବ ଧର୍ମସୁତ
ସ୍ନାନ ନିତ୍ୟ କର୍ମ ଆଦି ସାରିଣ ତୁରିତ ।
ବିଜୟ ଧର୍ମ ନନ୍ଦନ ନିତ୍ୟ ସିଂହାସନେ
ଚାରିଭାଇ ଯାଇ ବିଜେ କଲେ ସନ୍ନିଧାନେ ।
ଦ୍ରୌପଦୀ ଦେବୀ ଏମନ୍ତ ମନେ ବିଚାରିଲେ
ଅଗ୍ନିରେ ପଶିଣ ସେହୁ ସ୍ନାହାନ କରିଲେ ।
ଏକର ଉଚ୍ଛିଷ୍ଟ ଆନେ କଦାପି ନ ଦେବି
ତେବେ ଯାଇ ସତୀ ମଧ୍ୟେ ଗଣିତା ହୋଇବି ।
ଏମନ୍ତ ବିଚାର ଦେବୀ ମନରେ ଯେ କରି
ପ୍ରତିଦିନ ଦେବୀ ଅଙ୍ଗ ଅଗ୍ନିରେ ପଖାଳି ।
ନୂତନ କାୟା ଅଗ୍ନିରୁ ବାହାର କରନ୍ତି
ତେବେ ସେ ସ୍ୱାମୀମାନଙ୍କୁ ଅଙ୍ଗ ସମର୍ପନ୍ତି ।
ପ୍ରଥମ ଦିବସ ଯୁଧିଷ୍ଠିଙ୍କୁ ଅଙ୍ଗ ଦେଲେ
ରଜନୀ ଶେଷରେ ଯାଇ ଅଗ୍ନିରେ ପଶିଲେ ।
ସେହି ଅଙ୍ଗଗୋଟି ଦେବୀ ସମର୍ପି ଅଗ୍ନିରେ
ନୂତନ ଶରୀର ତହୁଁ ପୁଣି ଜାତ କଲେ ।
ଦ୍ୱିତୀୟ ରାତ୍ରରେ ବିଜେ କଲେ ଭୀମସେନ
ପାଞ୍ଚାଳୀର ସଙ୍ଗେ କଲେ କେଳି ବିନୋଦନ ।
ସେ ରାତ୍ରେ ଭୀମଙ୍କୁ ଅଙ୍ଗ ସମର୍ପିଲେ ବାଳୀ
ରଜନୀ ଶେଷେ ଅଗ୍ନିରେ ପଶିଲେ ପାଞ୍ଚାଳୀ ।
ତୃତୀୟ ରାତ୍ରରେ ବିଜେ କଲେ ଫାଲଗୁନି
ଅନେକ ପ୍ରୀତି ତା ସଙ୍ଗେ କଲେ ଯାଜ୍ଞସେନୀ ।
ଆଉ ମାନଙ୍କର ତୁଲେ ବାହ୍ୟ ଅଙ୍ଗ ସଙ୍ଗ
ଅର୍ଜୁନକୁ ପ୍ରୀତିପଣେ ସମର୍ପିଲେ ଅଙ୍ଗ ।
ରଜନୀ ଶେଷେ ଉଠିଲେ ତହୁଁ ମହାମାୟୀ
ଅଗ୍ନିରେ ସେହି ଶରୀର ନେଇ ସମର୍ପଇ ।
ନୂତନ କାୟା ଅଗ୍ନିରେ ସେହୁ ଜାତ କଲେ
ନକୁଳ ଚତୁର୍ଥ ଦିନେ ରାତ୍ରେ ବିଜେ କଲେ ।

ରତିରଙ୍ଗେ ଦେବୀ ରାତ୍ର କରିଲେ ଯାପନ
ପ୍ରଭାତ ହୋଇଲେ ଶୁଦ୍ଧ ଅଗ୍ନି ସଂଯୋଗେଣ ।
ପ୍ରଞ୍ଚମ ଦିବସେ ବିଜେ କଲେ ସହଦେବ
ଦ୍ରୌପଦୀଙ୍କ ସଙ୍ଗେ ସେହୁ କଲେ ବହୁ ଭାବ ।
ରତିରଙ୍ଗ ସାରି ସହଦେବ ପ୍ରଭାତରେ
ନିତ୍ୟକର୍ମ ସାରି ବିଜେ କଲେ ଆସ୍ଥାନରେ ।
ଦ୍ରୌପଦୀ ବିଚାରି ପୁଣି ଅଗ୍ନିରେ ପଶିଲେ
ନବତନ କାୟେ ଦେବୀ ଅଗ୍ନିରୁ ଜନ୍ମିଲେ ।
ଅନ୍ୟ ସ୍ତ୍ରୀମାନେ ଜଳେ କରିଥାନ୍ତି ସ୍ନାନ
ଦ୍ରୌପଦୀ ହୁଅନ୍ତି ମାତ୍ର ଅଗ୍ନିରେ ଦହନ ।
ସତୀଙ୍କ ମଧ୍ୟେ ଯେ ଯେଣୁ ଅଟନ୍ତି ପ୍ରଧାନ
ତେଣୁ କରି ଏହାଙ୍କର ପତି ପାଞ୍ଚଜଣ ।
କାହାକୁ କାହା ଉଚ୍ଛିଷ୍ଟ ସେହୁ ନ ଦିଅନ୍ତି
ନୂତନ ଶରୀର ଧରି ଦେହ ସମର୍ପନ୍ତି ।
ଏମନ୍ତ ତିରିଶ ରାତ୍ରରେ ସେ ପୁଣ ପୁଣ
ପାଞ୍ଚରାତ୍ରରେ କରନ୍ତି ବିଜେ ପାଞ୍ଚଜଣ ।
ଏ ରୂପେ ଅଗ୍ନିରେ ନିତ୍ୟ ଅଙ୍ଗ ପଖାଳନ୍ତି
ନୂତନ ଶରୀର ପଞ୍ଚପତିଙ୍କୁ ଦିଅନ୍ତି ।
ଅନ୍ତଃପୁର ମଧ୍ୟରେ ଯେ ଦ୍ରୌପଦୀ ରହନ୍ତି
ଆନଦିନ କେହି ତାଙ୍କ କତିକି ନ ଯାନ୍ତି ।
ଦୋହରା ଅଗ୍ନିରେ ସ୍ନାନ କରେ ଯାଜ୍ଞସେନୀ
ପାଞ୍ଚଙ୍କ ମନ ବିଚାରି ହରଇ ମାନିନୀ ।
ତେବେ ସେ ଛୁଆଁଇ ଯାଇ ଯୁଧିଷ୍ଠିଙ୍କ କାୟ
ସତୀଙ୍କ ମହିମା ଦେଖ ଆହେ ମନୁରାୟ ।
ମାସକେ ଦ୍ରୌପଦୀ ପାକାସ୍ପର୍ଶୀ ହୁଏ ସତୀ
ପାଞ୍ଚକୁ ଦିଅଇ ଶୁଦ୍ଧ ଅଙ୍ଗ ପାଞ୍ଚରାତି ।
ପୁଣି ସେ କାୟା ଦହନ କରେ ଅଗ୍ନିକୁଣ୍ଡେ
ଅଗ୍ନିରୁ ସେ ଉପୁଜଇ ପୁଣି ଆନ ପିଣ୍ଡେ ।
ତେବେ ଯାଇ ଯୁଧିଷ୍ଠିଙ୍କୁ ଦିଏ ଅଙ୍ଗଭୋଗ
ଏସନ ମହିମା ଦେବୀ ଅପର୍ଣ୍ଣାର ଅଙ୍ଗ ।
ମନୁ ପୁଚ୍ଛାକଲେ ଆହେ ଅଗସ୍ତି ମହାତ୍ମା
ଦ୍ରୌପଦୀର କହିଲ ତ ଅସଂଖ୍ୟ ମହିମା ।
ମାସକରେ ଦେବୀ ଦଗ୍ଧ କଲେ ନିଜ କାୟେ
ଅଗ୍ନିରୁ ନବ ଶରୀର ପୁଣି ଜାତ ହୁଏ ।
ସତୀପଣକୁ ତ ବଡ଼ ଦୁର୍ଲ୍ଲଭ ଏ କଥା
ସତ୍ୟଯୁଗେ ଶୁଣା ନାହିଁ ଏସନ ବାରତା ।
ବଦନ୍ତି ଅଗସ୍ତି ମୁନି ଶୁଣ ମନୁରାୟ
ପ୍ରତ୍ୟକ୍ଷରେ ନିରଞ୍ଜନ ଧର୍ମର ତନୟ ।
ଯୁଧିଷ୍ଠି ଦେବଙ୍କୁ ଅଙ୍ଗ ଭୋଗ ସେ ଦିଅଇ
ଆଉମାନେ ଗମନ୍ତି ତ ତାଙ୍କ ଜ୍ଞାନ ନାହିଁ ।
ତାହାଙ୍କୁ ହିଁ ଅଙ୍ଗଭୋଗ ଦିଅଇ ପାଞ୍ଚାଳୀ
କେମନ୍ତେ ଏ ଦେହ ଦେବୀ ଯୁଧିଷ୍ଠିଙ୍କୁ ଭାଳି ।
ଚାରିଜଣ ଲଙ୍ଘନ୍ତି ତ ହୋଇ ଜ୍ଞାନଭ୍ରଷ୍ଟ
ଯୁଧିଷ୍ଠିଙ୍କୁ ଦେବି କେହ୍ନେ ଏହାଙ୍କ ଉଚ୍ଛିଷ୍ଟ ।
ଏତେକ ବିଚାରି ଦେବୀ ଦଗ୍ଧ କରେ ଅଙ୍ଗ
ନବଦହେ ଯୁଧିଷ୍ଠିଙ୍କୁ କରାଏ ଯେ ଭୋଗ ।
ଶୁଦ୍ଧସ୍ନାନ ଏହାଙ୍କର ଅଟଇ ଯେ ଅଗ୍ନି
ଜଳସ୍ନାନ ପ୍ରାୟେ ତାହା ମଣେ ଯାଜ୍ଞସେନୀ ।
ମାସେ ପାଞ୍ଚ ବେଳ ଦେହ କରଇ ଦହନ
ପାଞ୍ଚଥର ହୋଇ ତାର ଦେହ ନବତନ ।
ଶୁଣି ପରମ ଆନନ୍ଦ ହେଲେ ଯୁଗପତି
ଅନେକ ପୂଜା କଲେ ସେ ପଣ୍ଡିତ ଅଗସ୍ତି ।
ସାଧୁ ମହାତମା ତୁହି ବିଜ୍ଞ ଭାଗ୍ୟବନ୍ତା
ତୋହର ମାର୍ଜନା ସିନା ହୋଇଲା ଏ କଥା ।
ଶୁଣିଣ ମଧ୍ୟପର୍ବର ପବିତ୍ର ଏ ବାଣୀ
ଶରୀର ନିର୍ମଳ ହେବ ତବମୁଖୁଁ ଶୁଣି ।
କହନ୍ତି ଅଗସ୍ତି ଘଟରଷିଙ୍କର ବାଳ
ମନୁ କଳ୍ପାନ୍ତରେ ଯାହା ତେଜ ଅନର୍ଗଳ ।
ଭୀମସେନର ଅଟଇ ଦୁଷ୍ଟ ଯେ ପ୍ରକୃତି
ଆହାରେ ସଂଗ୍ରାମେ ନାହିଁ ଶୃଙ୍ଗାରେ ତୃପତି ।
ନିତ୍ୟେ ସେ ବିଜେ କରଇ ଦ୍ରୌପଦୀ ପୁରକୁ
ଭାବେ ସେ ପାଞ୍ଚାଳୀଦେବୀ ଭଣ୍ଡାଏ ତାହାକୁ ।
ବେଳ କାଳ ସଂଯୋଗ ଯେ କିଛି ନ ବିଚାରି
ଅନୁକ୍ଷଣେ ଦ୍ରୌପଦୀଙ୍କୁ ବଳତ୍କାର କରି ।
ସୁନ୍ଦରୀ ଅପର୍ଣ୍ଣା ସେହି ଅତି ଅସହିଣୀ
ଭୀମସେନ ଦେଖି ଭୟ କରେ ଠାକୁରାଣୀ ।
ଯେତେବେଳେ ବୃକୋଦର ପ୍ରତାପେ ଆସଇ
ଭୟେ ଯାଜ୍ଞସେନୀ ଯାଇ ଅଗ୍ନିରେ ପଶଇ ।
ଭୀମସେନ ତାହାଙ୍କର ପୁରଯାକ ଲୋଡ଼ି
ନ ପାଇ ବିରସେ ବୀର ଆସଇ ବାହୁଡ଼ି ।
ଯୁଧିଷ୍ଠି ନକୁଳବୀର ପାର୍ଥ ସହଦେବ
ସମସ୍ତ ପୁର ଲୋଡ଼ଇ ସେ ଚାରି ପାଣ୍ଡବ ।
କେବଣ ସ୍ଥାନେ ନ ପାଇ ସତୀ ଯାଜ୍ଞସେନୀ
ଅଗ୍ନିଙ୍କୁ ଚାହିଁ ରୋଦନ କରଇ ପାବନୀ ।
ଏହି ଅନଳରୁ ଜାତ ହୋଇଲେ ଗୋ ଦେବୀ
ପାଞ୍ଚଙ୍କ ଅର୍ଦ୍ଧୋଳି ସହି ହେଲ ପରଭବୀ ।
ଅନେକ ବିଳାପ ତାର ଦେଖି ଧନଞ୍ଜୟ
ଅଗ୍ନିରେ ବିକାଶ କଲେ ଦ୍ରୌପଦୀର କାୟ ।
ଅତୀତ ହୁଅନ୍ତେ କିଛିକାଳ ଏ ପ୍ରକାରେ
ଚାରି ହେଁ ଯେ ପ୍ରଣିପାତ ଯୁଧିଷ୍ଠି ପୟରେ ।

ଦ୍ରୌପଦୀ ବୋଇଲେ ମୁଁ ଯେ ହୋଇଲେ ବିମୁଖ
ଏକା ଭୀମସେନ ଦେଲା ମୋତେ ମହାଦୁଃଖ ।
ଅଗ୍ନିରେ ପଶିଲି ମୁହିଁ ଭୀମସେନ ଡରେ
ଏହା ଅର୍ଦ୍ଧୋଳି କେ ସହେ ସ୍ତିରୀମାତ୍ର ପୁରେ ।
ଶତଶୃଙ୍ଗ ଗିରି ଯାର ପାଦଲାଗି ଚୂନା
ମୁହିଁ ତ ଅବଳା ଛାର ସ୍ତିରୀମାତ୍ର ସିନା ।
ସ୍ତିରୀଙ୍କର ଋତୁ ବ୍ରତ ଶୁଦ୍ଧଅଙ୍ଗ ଅନ୍ତେ
ପୁରୁଷ ନ ହୁଏ ସପ୍ତରାତ୍ର ପରିଯନ୍ତେ ।
ମାସକେ ଯେ ତିନିବେଳ ଯୋଗ ସ୍ୱାମୀଠାରେ
ତେବେ ସିନା ବଳବପୁ ଥାଇ ଏ ଶରୀରେ ।
ଅମିତ ସହବାସରେ ଆୟୁ ହୁଏ ହାନି
ତାହା ଯେ ଭୀମ ନ ବୁଝି ଆସଇ ଅଜ୍ଞାନୀ ।
ଯୁଧିଷ୍ଠି ବୋଇଲେ ଏହି ନିୟମ ଆମ୍ଭର
ମାସକରେ ପାଞ୍ଚରାତ୍ର ସିନା ପାଞ୍ଚଙ୍କର ।
ଯାହାର ପାଳି ଅଛଇ ଯେବଣ ହିଁ ଦିନ
ଦ୍ୱାରେ ସନ୍ତକ ଥୋଇଣ ପଶିବ ଭବନ ।
ଯେବା ଜ୍ଞାନଭ୍ରଷ୍ଟା ହୋଇ ପଶିବ ଭିତରେ
ସନ୍ତକ ଦେଖି ବାହୁଡ଼ି ଆସିବ ସତ୍ୱରେ ।
ଏକର ଏକାନ୍ତ ଯେବେ ଆରେକ ଦେଖିବ
ଦ୍ୱାଦଶ ବରଷଯାଏ ବନରେ ପଶିବ ।
ଏଥୁ ଆନରାତ୍ରେ କେହି ନ ଯିବ ତା ପୁରେ
ଗଲେ ଦୋରେହା ହୋଇବ ମାତାଙ୍କ ପୟରେ ।
ପାଞ୍ଚରାତ୍ରକ ହିଁ ମୂଳ ଆମ୍ଭ ପାଞ୍ଚଙ୍କର
ମାସକ ମଧ୍ୟରେ ଏହି ନିୟମ ଆମ୍ଭର ।
ଏସନ ନିୟମ ଶୁଣି କଲେ ପାଞ୍ଚବୀରେ
ପାଞ୍ଚେ ହେ ହାତ ଭରିଲେ ଜଳର ଭିତରେ ।
ଆରବେଳେ ଦ୍ରୌପଦୀର ପାଶକୁ ଯେ ଯିବ
ଦ୍ୱାଦଶ ବରଷ ବନବାସ ସେ କରିବ ।
ଏସନକ ନିୟମକୁ କରି ପଞ୍ଚଭ୍ରାତେ
ଆରଦିନେ ନ ଗଲେ ତା ପୁରେ କଦାଚିତେ ।
ଏମନ୍ତ ନିୟମ ପୁଣି କରଇ ପାଞ୍ଚାଳୀ
ଅଗ୍ନିକି ସାକ୍ଷୀ ରଖିଲେ ନ ଲଙ୍ଘିବ ପାଳି ।
ମାସକେ ପାଳି ପଡ଼ଇ ଜାଣ ପାଞ୍ଚଦିନ
ଦୃଢ଼ କରି ପାଳିଥାନ୍ତେ ପାଞ୍ଚେ ଏକ ମନ ।
ଏସନକ ନିୟମରେ ରହି ପାଞ୍ଚ ଭ୍ରାତେ
ଏହିମତି ଗଲା ପାଞ୍ଚବରଷ ପର୍ଯ୍ୟନ୍ତେ ।
ଜୟ ତୁ ଶାରଦା ମାଗୋ ଜୟ ରାମଚଣ୍ଡୀ
ସିନ୍ଦୂରେ ମଥାକୁ ତୋର ଦେଇଥାଉ ମଣ୍ଡି ।
କୁତୁହଳ ନାଚଖଣ୍ଡି ପାଏ ତୋତେ ଶୋଭା
ଜଗତ ଜନନୀ ତୁ ଗୋ ମହେଶ ବଲ୍ଲଭା ।
ତୋର ପାଦତଳେ ସେବି ଶ୍ରୀ ଶାରଦା ଦାସ
ଲେଖଇ ଭାରତ ମଧ୍ୟ ପର୍ବର ରହସ୍ୟ ।

—୦—

## ଅର୍ଜ୍ଜୁନର ବନବାସ

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ବଇଶାଖ କୃଷ୍ଣପକ୍ଷ ଦ୍ୱିତୀୟା ଯେ ତିଥି ।
ସଉରୀବାର ବିଶାଖା ନକ୍ଷତ୍ର ସେଦିନ
ଯୁଧିଷ୍ଠିର ବିଜେ କଲେ ଦ୍ରୌପଦୀ ଭୁବନ ।
ବୈଶ୍ୱାନର ଦେବ ଏଣେ ବ୍ରାହ୍ମଣେକ ହୋଇ
ଅର୍ଜ୍ଜୁନର ସନ୍ନିଧିରେ ପ୍ରବେଶିଲେ ଯାଇ ।
ବେଦଧ୍ୱନି କରିଣ ସେ ବୋଇଲେ କିରୀଟି
ମୋର ଛାମୁକୁ ହକାରି ଆଣ ତୁ ଯୁଧିଷ୍ଠି ।
ଏହିକ୍ଷଣି ଧାଡିକାରେ ଯିବୁ ଅରଜୁନ
ଷଡ଼ ନିଃଶ୍ୱାସେ ଆଣିବୁ ମୋର ସନ୍ନିଧାନ ।
ଯୁଧିଷ୍ଠିକି ନ ଆଣିବୁ ଯେବେ ମୋର କତି
ଏହିକ୍ଷଣି ବିନାଶ ମୁଁ କରିବି ସବୁନ୍ତି ।
ଦ୍ରୌପଦୀ ପୁର ସହିତ ପାଣ୍ଡବ କୌରବେ
ମୋହର ବୋଲେ ଏକ୍ଷଣି ଦଗ୍ଧ ହୋଇଯିବେ ।
ଅନ୍ତଃପୁରେ ଅଛନ୍ତି ସେ ବୋଇଲେ ଅର୍ଜ୍ଜୁନ
କେମନ୍ତେ ମୁହିଁ ଯିବଇଁ କୁହ ହେ ବ୍ରାହ୍ମଣ ।
କି କାର୍ଯ୍ୟ ଅଛି ତୁମ୍ଭର କୁହ ମୋର ଆଗେ
ତାହା ମୁଁ ସାଧ୍ୟ କରିବି ପ୍ରାଣପଣେ ବେଗେ ।
ବ୍ରାହ୍ମଣ ବୋଇଲା ମୋର ଘରେ ପଶି ଚୋର
ଅଡ଼ାଇ ନିଅନ୍ତି ବଳେ ଗୋରୁପଲ ମୋର ।
ରଖି ତୁ ପାରିବୁ ଯେବେ ରକ୍ଷାକର ଯାଇଁ
ନୋହିଲେ ରାଜାକୁ ଆଣ ମୋ ପାଖକୁ ରାଇ ।
ଗୁହାରି କରିବି ସେହି ରାଜା ଆଗେ ବେଗେ
ଚୋରକୁ ଧରି ସେ ଶାସ୍ତି ଦେବ ମୋର ଆଗେ ।
ନ ଆଣିଲେ ପୁରଯାକ କରିବି ଦହନ
ବ୍ରାହ୍ମଣର ବଦନ ଯେ ଅନଳ ସମାନ ।
ଅତି ନିଷ୍ଠୁର ବଚନ ବ୍ରାହ୍ମଣର ଶୁଣି
ଅର୍ଜ୍ଜୁନ ବିଚାରେ ଅସ୍ତ୍ର ଘର ତହିଁ ପୁଣି ।
ଅସ୍ତ୍ର ନ ଆଣିଲେ ଚୋର ଧରିବି କେମନ୍ତେ
ପୂର୍ବରୁ ନିୟମ ଆମ୍ଭେ କରିଛୁ ସମସ୍ତେ ।
ଗଲେ ତ ବାରବରଷ ବନରେ ରହିବି
ଯେବେ ମୁହିଁ ଯୁଧିଷ୍ଠିଙ୍କ ପୁରକୁ ନ ଯିବି ।
ମଧୁ ପିଙ୍ଗଳ ବ୍ରାହ୍ମଣ ଅଟେ ବଡ଼ ତେଜ
ଶାପ ଦେଲେ ବଂଶଯାକ ହୋଇବେ ଦହିର୍ଯ୍ୟ ।
ମୁହିଁ ଏକା ଜଣେ ସିନା ବନବାସ ଯିବି
ବ୍ରାହ୍ମଣକୁ ରହାଇ ମୁଁ ଭିତରେ ମଣିବି ।

ଯୁଧିଷ୍ଠିର ଦ୍ରୌପଦୀଙ୍କ କଥାବାର୍ତ୍ତା ବେଳେ
ପ୍ରବେଶ ହେଲା କିରୀଟି ଯାଇ ସେହିକାଳେ ।
ତାହାକୁ ଦେଖିଣ ପୁଚ୍ଛା କରିଲେ ଯୁଧିଷ୍ଠି
ଏମନ୍ତ କୃତ୍ୟ କେମନ୍ତେ କଲୁରେ କିରୀଟି ।
ଭୀମର ଭୟେ କଲଇଁ ସିନା ଏଡ଼େ କୃତ୍ୟ
ତୁ ବଳେ ପଶିଲୁ ଭାଇ ଲଙ୍ଘିଣ ଶପଥ ।
ବାବୁରେ ଅପର ଦୋଷ ଏକାନ୍ତ ଭାଙ୍ଗିଲେ
ଯେ ପାପ ହୁଏ ଅପୂଜା ଲିଙ୍ଗଭଗ୍ନ କଲେ ।
ଲିଙ୍ଗଭଗ୍ନ କଲେ ବ୍ରହ୍ମହତ୍ୟା ଦୋଷ ପାଇ
ପର ଏକାନ୍ତ ଭାଙ୍ଗିଲେ ଏତେ ଦୋଷ ପାଇ ।
ଅର୍ଜୁନ ବୋଇଲେ ଆନ ନ ଧରନ୍ତୁ ମନେ
ଯାହା ମୁହିଁ କହୁଅଛି ଶୁଣ ସାବଧାନେ ।
ବେଗ ହୋଇ ବାହାରକୁ ବିଜୟ କରିବା
ବ୍ରାହ୍ମଣେକ ଆସିଛନ୍ତି ତା କଥା ବୁଝିବା ।
ଗାଈ ତାର ଚୋରି କରି ନେଉଛନ୍ତି ଚୋରେ
ମୁହିଁ ରଖିଥାନ୍ତି ଅସ୍ତ୍ର ଅଛି ଏହି ପୁରେ ।
ତେଣୁ ମୁହିଁ ଅଇଲଇଁ ଅସ୍ତ୍ର ନେବାପାଇଁ
ବ୍ରାହ୍ମଣର ଗୁହାରି ମୁଁ ତୁମ୍ଭଙ୍କୁ ଜଣାଇ ।
ନ ଆସିଲେ ବିପ୍ରଶାପେ ପୋଡ଼ିଥାନ୍ତା ପୁର
ମୁଁ ପଛେ ବନକୁ ଯିବି ନାହିଁ ମୋର ଡର ।
ବିପ୍ର ବୋଇଲା ରାଜାଙ୍କୁ ବେଗେ ନ ଆଣିଲେ
ପୁର ତୋହର ଦହନ ହେବ ପିଠି କଲେ ।
ନିଷ୍ଠୁର ବାକ୍ୟ କହିଲା ଯହୁଁ ଦ୍ୱିଜବର
ତେଣୁ ଭୋ ଦେବ ଅଇଲି ମୁଁ ଭିତର ପୁର ।
ଆବର ବିଶେଷେ ଦ୍ୱାରେ ସନ୍ତକ ତ ନାହିଁ
ବିଚାରିଲି ଯାଜ୍ଞସେନୀ ପୁରେ ନାହିଁ କେହି ।
ଯୁଧିଷ୍ଠି ବୋଇଲେ ମୋର ପାଣ୍ଡୋଇ ଯେ ଥିଲା
ଜାଣିଲି କୁକୁର ତାକୁ ଘେନି ପଳାଇଲା ।
ଏତେ ବୋଲି ଶାପ ଦେଲେ ଧର୍ମର ସନ୍ତତି
ଆରେ ଆରେ ଶ୍ୱାନ ତୁହି ଅଟୁ ମନ୍ଦଜାତି ।
ଆରେରେ ଅଜ୍ଞାନୀ ମୋତେ ଦେଲୁ ତୁହି ଲାଜ
ଅପର ଦେଖିଲା ପୁଣି ମୋର କ୍ରୀଡ଼ା କାର୍ଯ୍ୟ ।
ତୋହର ରମଣ ଲୋକେ ଦେଖନ୍ତୁ ସଂସାରେ
ଦାଣ୍ଡ ହାଟ ଘାଟେ କ୍ରୀଡ଼ା କର ସବୁଠାରେ ।
ମାର ମାର ବୋଲି କରି ସକଳେ କହିବେ
ପାଣ୍ଡବଙ୍କ ଶାପ ଏହୁ ବୋଲି ବିଚାରିବେ ।
ଏତେ ବୋଲି ପାର୍ଥସଙ୍ଗେ ବାହାର ହୋଇଲେ
କେଉଁଠାରେ ବ୍ରାହ୍ମଣଙ୍କୁ ଖୋଜି ନ ପାଇଲେ ।
ମାୟାବୀ ବ୍ରାହ୍ମଣ ସେହୁ ହେଲା ଅନ୍ତର୍ଦ୍ଧାନ
ଲୋଡ଼ି ନ ପାଇଲେ ତାକୁ ପଣ୍ଡୁର ନନ୍ଦନ ।

ଅର୍ଜୁନ ବୋଇଲେ ଆମ୍ଭେ କଲଇଁ ନିୟମ
ତେଣୁ ଆମ୍ଭଙ୍କୁ କଷଣ ଦେଲେ ଦେବ ଧର୍ମ ।
କଷଣରୁ ପାରି ହୋଇ ପାରନ୍ତି ଯେ ପ୍ରାଣୀ
ସର୍ବସିଦ୍ଧ ବୋଲି ତାକୁ ପ୍ରତ୍ୟକ୍ଷେ ବଖାଣି ।
ମୁହିଁ ଏବେ ଘୋର ବନେ ଯାଉଅଛି ଭ୍ରମି
ସୁଚିତ୍ତେ ଏ ରାଜ୍ୟ ବିଜେ କରିଥିବା ସ୍ୱାମୀ ।
ଯୁଧିଷ୍ଠି ବୋଇଲେ ଏ କିଅଁତ ବାବୁ କଥା
ଅଳପ କଥାକୁ ପୁଣ ବହୁତ ବ୍ୟବସ୍ଥା ।
ଏ କଥାକୁ ଭୀତି ବାବୁ ନ କର ତୁ ମନେ
ନରକେ ପଡ଼ନ୍ତି ପ୍ରାଣୀ ସତ୍ୟର ଲଙ୍ଘନେ ।
ଦ୍ରୌପଦୀ ଦେବୀ ବିକଳ ହେଲେ ତାହା ଶୁଣି
ମୋତେ ଛାଡ଼ି କାହିଁପାଇଁ ଯିବ ପ୍ରାଣମଣି ।
ତୁହି ସିନା ମହାଲାଖ ବିନ୍ଧିଲୁ ଯୁକତେ
ଆପେ ବିଭା ନୋହିଦେଲୁ ଏହାଙ୍କୁ ତୁ ମୋତେ ।
ମୁହିଁ ତୋର ବଲ୍ଲଭୀ ତୁ ମୋର ପ୍ରାଣନାଥ
କ୍ଷଣେ ନ ଦେଖିଲେ ତୋତେ ଲାଗେ ଯୁଗବତ ।
ନିଶ୍ଚେ ସତ୍ୟ ରଖି ତୁହି ବନବାସ ଗଲେ
ମୋତେ ପ୍ରାଣନାଥ ସଙ୍ଗେ ନେଇଯାଅ ଭଲେ ।
ତେତ୍ରାଯୁଗେ ରାମଚନ୍ଦ୍ର ହେଲେ ବନଗାମୀ
ସୀତାଙ୍କୁ ସଙ୍ଗତେ ନେଲେ ରଘୁକୁଳ ସ୍ୱାମୀ ।
ପରମ ସ୍ୱାଧୀ ଖଟିଲା ରାମଚନ୍ଦ୍ରଙ୍କୁ ହିଁ
ପତ୍ନୀ ସଙ୍ଗେ ଥିରେ କିଛି କ୍ଲେଶ ନ ବାଧଇ ।
ପତିର ସଙ୍ଗରେ ପତ୍ନୀ ଥିବାର ଯେ ଧର୍ମ
ନାନା ଶୁଭଯୋଗ ହୋଇ ନ ବାଧେ ଅକର୍ମ ।
ମୁହିଁ ଆନମାନଙ୍କୁ ନ ଜାଣେ ଫାଲଗୁନି
ତୁମ୍ଭଲାଗି ମୋତେ ଜାତ କଲେ ବ୍ୟାସମୁନି ।
ସତ୍ୟଯୁଗେ ବନବାସ ନଳରାଜା କଲେ
ସେ ପୁଣି ଦମୟନ୍ତୀକି ଘେନିଗଲେ ତୁଲେ ।
ଧରମକୁ ଇଚ୍ଛା ଯେବେ କର ଫାଲଗୁନି
ମୋତେ ସଙ୍ଗତରେ ନିଅ ଆହେ ପ୍ରାଣମଣି ।
ଯୁଧିଷ୍ଠିର ବୋଇଲେ ଗୋ ଶୁଣ ତୁ ସୁଦନ୍ତୀ
ସତେ କି ଅର୍ଜୁନ ବନେ ଯିବ କଲୁ ଭୀତି ।
ଅର୍ଜୁନ ବଦନ ଚାହିଁ ବୋଇଲେକ ଧର୍ମ
ସେ ମାହାତ୍ମା ବାକ୍ୟେ ସିନା କଲୁ ତୁ ଏ କର୍ମ ।
କଷଣ ଦେଲା ମାୟାବୀ ସେହି ଦ୍ୱିଜବର
କାମାତୁରେ ନ ପଶିଛୁ ତୁ ଭିତର ପୁର ।
ସ୍ୱାମୀର ବଚନ ଶୁଣି ବୋଲେ ଫାଲଗୁନି
କରପତ୍ର ଯୋଡ଼ିକରେ ବିନୟେ ଦୟିନୀ ।
ପାଦେ ପଡ଼ି ବୋଲେ ତୁମ୍ଭେ ଶୁଣ ଧର୍ମରାୟ
ସତ୍ୟର ସଂସାର ସିନା ହେଉଛି ଉଦୟ ।

ସତ୍ୟ ପ୍ରାଣୀଙ୍କ ନ ଛୁଏଁ ଯମ କଦାଚିତେ
ଆପଣାର କଲାକୃତ୍ୟ ଲଘିଂବି କେମନ୍ତେ ।
ଦ୍ରୌପଦୀକି ତିଆରଇ ଚାହିଁ ଫାଲଗୁନି
କହିଲ ଯେବଣ କଥା ତୁମ୍ଭେ ଯାଜ୍ଞସେନୀ ।
ସୀତା ଦେବୀ ଗଲେ ପୂର୍ବେ ଶ୍ରୀରାମଙ୍କ ତୁଲେ
କାଳେ ପ୍ରମାଦ ପଡ଼ିଲା ରଖି ନ ପାରିଲେ ।
ତୁମ୍ଭେମାନେ ମନେ କେହି ନ ହୁଅ ବିରସ
କିଞ୍ଚିତ ପ୍ରାୟ ମଣେ ମୁଁ ଦ୍ୱାଦଶ ବରଷ ।
ବହୁତ ଦୂରକୁ ମୁଁ ଯେ କାହିଁ ପାଇଁ ଯିବି
ଏହି ନିକଟ ବନରେ ମୁଁ ବାସ କରିବି ।
ମୋତେ ତ ପ୍ରମାଦ କିଛି ନାହିଁ ଘୋର ବନେ
ସୁଖେ ଥିବି ଜଗନ୍ନାଥ ହେବେ ପରସନ୍ନେ ।
ମୋହର କଥାକୁ କିଛି ନ କର ଯେ ଚିନ୍ତା
ଅର୍ଜ୍ଜୁନକୁ କୋଳ କରି ଧରି କୁନ୍ତୀମାତା ।
ବୋଲେ ମୁଁ ଆପଦ ଘେନିଯାଇ ତୋର ପାର୍ଥ
ତୋତେ ନ ଦେଖି ମୋହର ଜୀବନ ଅସ୍ୱାର୍ଥ ।
ତୁହି ସେ କୁଳ ମଣ୍ଡନ ବାବୁ ହସ୍ତିନାକୁ
ଜଗନ୍ନାଥ ଦେବଙ୍କର ଅଟ ବାବୁ ବୁକୁ ।
ତୋ ମୁଖ ନ ଦେଖି ବାର ବରଷ ପର୍ଯ୍ୟନ୍ତ
ମୁହିଁ ଏତେକାଳ ଦେହ ଧରିବି କେମନ୍ତ ।
କହୁଁ କହୁଁ କୁନ୍ତୀ ଦେବୀ ପଡ଼ିଲେକ ଢଳି
ଦ୍ରୌପଦୀ ଦେବୀ ଧରିଲେ କୋଳ କରି ଟେକି ।
ଚେତାପାଇ କୁନ୍ତୀ ବୋଲେ କେଣେ ଗଲୁ ପଣ୍ଡୁ
ସ୍ୱାମୀବିନା ପ୍ରାଣ କିମ୍ପା ନ ଗଲା ମୋ ପିଣ୍ଡୁ ।
ଭର୍ତ୍ତାର ବିହୁନେ ବର୍ତ୍ତି ରହଇ ଯେ ନାରୀ
ଅନେକ ଦୁଃଖ ଲଭଇ ହୁଅଇ ଦୋଚାରୀ ।
ସ୍ୱାମୀଙ୍କି ଛାଡ଼ିଣ ମୁହିଁ ହେଲି ବଡ଼ ଦୁଃଖୀ
ଏ ଶରୀର ଧଇଲି ମୁଁ ସହଦେବ ଦେଖି ।
କରପତ୍ର ଯୋଡ଼ି ତାଙ୍କୁ ଆଶ୍ୱାସଇ ପାର୍ଥ
କିମ୍ପା ଅସାଷ୍ଟମ ତୁମ୍ଭେ ହୁଅ ଆଗୋ ମାତ ।
ଦୁଃଖକୁ ସୁମରି କିମ୍ପା ହେଉଛ ବିମୁଖ
ମୁହିଁ ବନବାସକୁ ଗୋ ମଣେ ବଡ଼ ସୁଖ ।
ଧର୍ମଙ୍କର ପାଦତଳେ ଅର୍ଜ୍ଜୁନ ପ୍ରଣମି
ମୁଁ ବନକୁ ଯିବି ଆଜ୍ଞା ହେଉ ଦେବ ସ୍ୱାମୀ ।
ଉଠି ବେଳେ କୋଳ କଲେ ତାହାକୁ ଯୁଧିଷ୍ଠି
ବାବୁ ନିୟମ ପଡ଼ିଲା ତୋଠାରେ କିରୀଟି ।
ଯଦ୍ୟପି ତୁ ବନବାସେ ଯିବୁ ସବ୍ୟସାଚୀ
ବରଷକ ପାଇଁ ଗଲେ ଦୋଷ ନାହିଁ କିଛି ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ବୁଝିବା ଯୁକତେ
ଯାଉଅଛି ବନବାସେ ଆଜ୍ଞା ହେଉ ମୋତେ ।
ଅର୍ଜ୍ଜୁନକୁ କୋଳେ ଧରି ବୋଲେ ବୃକୋଦର
ଦ୍ୱାଦଶ ବରଷେ ବନୁ ହୋଇବୁ ବାହାର ।
ସଂକଳ୍ପ କରି କୋଟିଏ ତୀର୍ଥ ବାବୁ କରି
ନିୟମ ମେଣ୍ଟାଇ ବାବୁ ଆସିବୁ ତୁ ଫେରି ।
ଆବର ନକୁଳ ସହଦେବ ବେନିଭାଇ
ଅର୍ଜ୍ଜୁନ ପାଦେ ବିନୟେ ପ୍ରଣିପାତ ହୋଇ ।
ଭୀଷ୍ମ ଦ୍ରୋଣ ବିଦୁର ଯେ ଶଲ୍ୟ ଭୂରିଶ୍ରବା
କର୍ଣ୍ଣ ଶକୁନି ଆବର ଯେତେ ରାଜ ଦେବା ।
ଅର୍ଜ୍ଜୁନର ବନବାସ ବାରତା ଯେ ଶୁଣି
ଆଶ୍ୱାସନା କରନ୍ତି ଯେ ଜଣେ ଜଣେ ପୁଣି ।
ଭୀଷ୍ମ ଦ୍ରୋଣ ଶୁଣିକରି କଲେ ବଡ଼ ଚିନ୍ତା
ଧୃତରାଷ୍ଟ୍ର ଗାନ୍ଧାରୀର ମନେ ବଡ଼ ବ୍ୟଥା ।
ବିଦୁର ଶଲ୍ୟ ଏ ଦୁହେଁ ଶୁଣିଣ ବିକଳ
ବାବୁ କେସନ ବନକୁ ଯିବୁ ପଣ୍ଡୁବାଳ ।
ବିଦୁର ବୋଇଲେ ବନେ କି ନିମନ୍ତେ ଯିବୁ
ମହାଘୋର ଦୁଃଖ କହ କେମନ୍ତେ ସହିବୁ ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣ ମୋର ବାଣୀ
ବ୍ରାହ୍ମଣେକ ଆସି ମୋତେ ଭେଟିଲାକ ପୁଣି ।
ବୋଇଲାକ ଯୁଧିଷ୍ଠିଙ୍କୁ ଆଣ ତୋର ରାଇ
ଏହିକ୍ଷଣି ଯିବି ମୁହିଁ ବାରତା ଜଣାଇ ।
ଯୁଧିଷ୍ଠି ଦେବଙ୍କୁ ତୁହି ବେଗେ ନ ଆଣିଲେ
ପୁର ଦହନ ହୋଇବ ମୁହିଁ କୋପ କଲେ ।
ଏମନ୍ତ ବାରତା ଶୁଣି ଆଶ୍ଚର୍ଯ୍ୟ ହୋଇଲି
ଧାତିକାରେ ଅନ୍ତଃପୁରେ ମୁଁ ଯାଇ ପଶିଲି ।
ଯୁଧିଷ୍ଠିର ଦେବ ବିଜେ ଦ୍ରୌପଦୀର ମେଳେ
ବେନିଜନ କ୍ରୀଡ଼ାକୁ ମୁଁ ଦେଖିଲଇଁ ଡୋଳେ ।
ଯୁଧିଷ୍ଠିର କୋଳେ ଦେବୀ ଦ୍ରୁପଦୀ ଥାଇ
ସେ କାଳେ ଆମ୍ଭର ଗୁରୁତୁଲ୍ୟ ମହାମାଇ ।
ଗୁରୁର କ୍ରୀଡ଼ାକୁ ମୁହିଁ ଦେଖିଲଇଁ ଡୋଳେ
ବିକୃତ ପଞ୍ଚମନରେ ରସଭଗ୍ନ ହେଲେ ।
ପରର ଏକାନ୍ତ ଯେଉଁ ପ୍ରାଣୀ ଭଗ୍ନ କରି
ଲଭଇ ପାତକ ଲିଙ୍ଗଭଗ୍ନ ଦୋଷ ସରି ।
ଏତେକ ପାତକ ଦେବ ଅରଜିଲି ମୁହିଁ
ଖଣ୍ଡିବି ଏ ସର୍ବ ପାପ ନାନା ତୀର୍ଥ ଯାଇ ।
ବିଦୁର ପୁଛିଲେ ମନ୍ତ୍ରୀ ସହଦେବେ ଚାହିଁ
ସେହି ବ୍ରାହ୍ମଣକୁ ବାବୁ ଜାଣୁକିରେ ତୁହି ।
ଅର୍ଜ୍ଜୁନକୁ ପଠିଆଇ ଦେଇ କେଣେ ଗଲା
କହ ବାବୁ ସହଦେବ କାହିଁ ନ ଅଇଲା ।
କରତଳକୁ ଚାହିଁଣ କହେ ମହାମନ୍ତ୍ରୀ
ଅଗ୍ନିଦେବତା ଅଇଲେ ଧରି ବିପ୍ର ମୂର୍ତ୍ତି ।

ବୈଶ୍ୱାନର ଦେବତାର ଲୁଦୁବୁଦୁ ବ୍ୟାଧି
ଅର୍ଜ୍ଜୁନ ବନକୁ ଗଲେ ପାଇବ ଔଷଧି ।
ତେଣୁ ସେ ଗୋପନ ରୂପ ଧରି ହୁତାଶନ
ବସିଲେ ତା ଜାଣି ନ ପାରିଲେ ଅରଜୁନ ।
ଅଗ୍ନିଦେବତା ନିମନ୍ତେ ପାର୍ଥ ବନବାସ
ଯଜ୍ଞେ ଘୃତ ଖାଇ ଖାଇ ଅଗ୍ନି ଅସନ୍ତୋଷ ।
ମନ୍ଦ ଅଗ୍ନି ହୋଇଅଛି ସେ ସତ୍ୟଯୁଗହୁଁ
କୌରବେ ଆଶ୍ଚର୍ଯ୍ୟ ଶୁଣି ସହଦେବ ତହୁଁ ।
ଏସନ ବିଚାର ଅଛି ଅଗ୍ନି ଦେବତାର
କିଛି ନ ବିଚାରି ଦେବ ଯାନ୍ତୁ ବନଘୋର ।
ସନ୍ଦେଶ କହିଲା ସେହି ମନ୍ତ୍ରୀ ଚୂଡ଼ାମଣି
ଅଗ୍ନି ଦେବତାର ବ୍ୟାଧି ଖଣ୍ଡିବେ ଫାଲ୍‌ଗୁନୀ ।
ଦୁର୍ଯ୍ୟୋଧନ ରାଜା ଧରି ଅର୍ଜ୍ଜୁନକୁ କୋଳେ
ବୋଲେ ବାବୁ ମୋ କଲ୍ୟାଣ ହେଉ ତତକାଳେ ।
ଅତି ଗହନ ବନକୁ ନ ଯିବଟି ପାର୍ଥ
ଦେଶାଉର ମୁଖୁଁ ବାର୍ତ୍ତା ପାଇଥିବୁ ନିତ୍ୟ ।
ମୀନ ଶୁକ୍ଳ ଚତୁର୍ଦ୍ଦଶୀ ତିଥି ଶନିବାର
ସ୍ୱାତୀ ନକ୍ଷତ୍ରକୁ ତୁଳ ଭୋଗ ସେ ଦିନର ।
ଚଉବିଂଶ ଦଣ୍ଡ ଚିତ୍ର ନକ୍ଷତ୍ର ଯେ ଥିଲା
ବୁଧର ବେଳରେ ସେ ଯେ ବାହାର ହୋଇଲା ।
ଚତୁର୍ଦ୍ଦଶୀ ସ୍ୱାତୀଯୋଗ ଅମୃତ ଅଟଇ
ସପତାଙ୍ଗ ଗଣନାରେ ସନ୍ଦେଶ ଫିଟଇ ।
ମାତା ଗୁରୁ ସୋଦରଙ୍କୁ ନମସ୍କାର କରି
ଦୁର୍ଯ୍ୟୋଧନ ମୁଖ ଚାହିଁ ପୁଣି ସେ ତିଆରି ।
ସ୍ୱାତୀ ତୁମ୍ଭେ ମହାଶ୍ରେଷ୍ଠ ମହା ଭାଗ୍ୟବନ୍ତ
ଯଦ୍ୟପି ଯୁଧିଷ୍ଠି ବଡ଼ ପାଳୁ ତୁ ସମସ୍ତ ।
ସ୍ୱାମୀ ମୁହିଁ ଯାଉଅଛି ଗହନ ବନକୁ
ଭାଇଙ୍କର କଥା ଦେବ ଲାଗଇ ତୁମ୍ଭଙ୍କୁ ।
ସ୍ୱାମୀ କୋପ କରିବଟି ଯେବେ ଭୀମସେନ
ନ ଧରିବୁ ମୁଁ ଆସିବାଯାଏ ତୁ ସେମାନ ।
ଭାଇଙ୍କ ମନ୍ଦ ଚିନ୍ତିବୁ ଯେବେ ଅନିମିତ୍ତେ
ସମସ୍ତେ ନାଶ ଯିବେଟି ମୋହର କୋପନ୍ତେ ।
ଏମନ୍ତ ତିଆରି ଘରୁ ବାହାର ଫାଲଗୁନି
ଦ୍ୱିଜମାନେ କରନ୍ତି ଯେ ମୁଖେ ବେଦଧ୍ୱନି ।
କୁନ୍ତୀର ଚରଣ ଧରି ଧନଞ୍ଜୟ କହେ
ଦ୍ରୌପଦୀଙ୍କି ଦୟା କରିଥିବଟି ମୋ ମାୟେ ।
ଅନେକ ବିନୟୀ ହୋଇ ଅର୍ଜ୍ଜୁନ ବୋଲଇ
ପାତକ ଧ୍ୱଂସି ଆସିବି କାଲି ପ୍ରାୟେ ମୁହିଁ ।
ସବୁଙ୍କୁ ବିନୟେ କହେ ବାସବର ସୁତ
ଜଣେ ଜଣେ ବାହୁଡ଼ଇ ସମ୍ବୋଧିଣ ପାର୍ଥ ।
ନଗର ଛାଡ଼ି ଅର୍ଜ୍ଜୁନ ପଶଇ କାନନେ
ଗଙ୍ଗାକୂଳୁ ବାହୁଡ଼ିଲେ ପଣ୍ଡୁର ନନ୍ଦନେ ।
ହସ୍ତିନା ନଗରେ ଆସି ପ୍ରବେଶ ସକଳ
ଅର୍ଜ୍ଜୁନକୁ ନ ଦେଖିଣ ମନରେ ବିକଳ ।
ମହା ଘୋର ବନସ୍ତରେ ପଶିଲା ଫାଲଗୁନି
କ୍ରୀଡ଼ା କରଇ କିରାତରୂପ ବନେ ଘେନି ।
ମଥାରେ ମୟୂର ଝାଲ କଣ୍ଠେ ଗୁଞ୍ଜାମାଳି
ଚୋପି ଚନ୍ଦନରେ ଚିତା ଅଙ୍ଗରେ ସମ୍ଭାଳି ।
ଧାମଣା କାଠର ଧନୁ କଣ୍ଟାବାଂଶ ଗୁଣ
ଫିରିକି ନାରାଚ ଶୋହେ କନ୍ଧେ ବେନି ଦ୍ରୋଣ ।
ପରଶୁ କୁଠାର ଶୋହେ ବେନି ଦ୍ରୋଣ ଝାଲି
ଏସନ ସ୍ୱରୂପେ ସେହୁ ବନେ କରେ କେଳି ।
କିରାତ ରୂପେ ବିହରେ ବନେ ସବ୍ୟସାଚୀ
ମାରଇ ଜୀବ ନାରାଚ ଧନୁକୁ ଆମଞ୍ଚି ।
ଭାର୍ଗବୀ ନାମରେ ତହିଁ ନଦୀ ଯେ ଗୋଟିଏ
ଭୈରବୀ ଗଙ୍ଗାରୁ ସେହି ଉତ୍ତରାଙ୍ଗେ ବହେ ।
ତୀର୍ଥସ୍ଥାନ ବୋଲି ତହିଁ ରହି ଫାଲଗୁନି
କାଟିଲା ପବିତ୍ର ଭୂମି ଦେଖି ମାସ ତିନି ।
ଜୟ ତୁ ଜାହ୍ନବୀ ମାଗୋ ପରମା ସାଧବୀ
ଭଗୀରଥ ଆଣିଲା ଗୋ ତୋତେ କେତେ ସେବି ।
ମହାଦେବଙ୍କ ମଉଳି ଜଟାରେ ତୁ ଖେଳୁ
ବାହାର ହେଲୁ ବିଷ୍ଣୁଙ୍କ ପାଦ ନଖତଳୁ ।
ତୋହର ମହିମା ମାଗୋ ଦେବେ ଅଗୋଚର
ଶୁଦ୍ରମୁନି ଏ ଶାରଳା ଦାସ ତୋ କୋୟର ।

—୦—

## ଅର୍ଜ୍ଜୁନର ପାଶୁପତ ଅସ୍ତ୍ର ଓ ଅକ୍ଷୟ ତୂଣୀର ଲାଭ

ବଦନ୍ତି ଅଗସ୍ତି ଶୁଣ ମନୁ ଯୁଗପତି
ଏ ମହାଭାରତ ମଧ୍ୟପର୍ବର ଯେ ରୀତି ।
କକଡ଼ା କୃଷ୍ଣ ଦ୍ୱିତୀୟା ତିଥି ଭୌମବାର
ଶ୍ରବଣା ନକ୍ଷତ୍ର ଅର୍ଜ୍ଜୁନକୁ କ୍ଷମା ତାର ।
ସେଦିନ ଅର୍ଜ୍ଜୁନ ବିଜେ କାଶୀ ନଦୀ ତୀରେ
ପଶିଲା ହର ଉଦ୍ୟାନ ନିର୍ଝର କନ୍ଦରେ ।
ସେଦିନ କୈଳାସୁ ବିଜେ ହର ଯେ ପାର୍ବତୀ
ବିହରନ୍ତି ବନେ କ୍ରୀଡ଼ାରଙ୍ଗେ ପଶୁପତି ।
ପ୍ରତ୍ୟକ୍ଷେ ତ ବିଶ୍ୱନାଥ ତପୋଧନ ରୂପ
ପିଙ୍ଗଳା ଜଟା ରୋମାଳି ପିଙ୍ଗଳ ସ୍ୱରୂପ ।
ପିନ୍ଧିଛନ୍ତି କଷାବାସ ତ୍ରିଜଗତ ମାତ
ତପୋଧନ ରୂପେ ବିଜେ ପ୍ରଭୁ ବିଶ୍ୱନାଥ ।

ହସ୍ତରେ ମୟୂର ପୁଚ୍ଛ ଡମ୍ବାମୁଦ୍ରା କଣ୍ଠେ
ଦିଗମ୍ବର ହୋଇ କ୍ରୀଡ଼ା କରନ୍ତି ସେ ବନେ ।
ଏସନକ ଶରୀରକୁ ଧରି ଦେବ ସ୍ୱାମୀ
ଉମା ମହେଶ ଭ୍ରମନ୍ତି ହୋଇ ବନଗାମୀ ।
କାଶୀନଦୀ ତୀରେ ଯାଇ ବିଜୟ ଧୂର୍ଜ୍ଜଟି
ଭାଣ୍ଡୀର ବଟର ତଳେ ପାରିଣ କର୍ପଟି ।
ପାର୍ବତୀ ଜାନୁରେ ସ୍ୱାମୀ ସୀମସ୍ଥାନ ଦେଇ
ଦକ୍ଷିଣକୁ ଶିର କରି ଶୋଇଲେ ଗୋସାଇଁ ।
କ୍ଳେଶ ବିଦାରି ମାରନ୍ତି ଦେବୀ ଶିରୁ କୃମି
ସୁଖପାଇ ସ୍ୱାମୀଙ୍କି ଯେ ଲାଗିଲାକ ଘୁମି ।
ଗଣ୍ଡା ଗୋଟିଏ ସଙ୍ଗରେ ଥିଲେ ପୁଣି ଆଣି
କାଶୀନଦୀ ତୀରେ ସେହି ପିଉଥିଲା ପାଣି ।
ଥିଲେ ଯେ ପାର୍ଥ ଶିଆଳୀଲତା ପାଶ ତଳେ
ଦକ୍ଷିଣ ଭାଗରେ କାଶୀନଦୀ ଉପକୂଳେ ।
ଗଣ୍ଡା ପାଣି ଖାଇଯାନ୍ତେ ଦେଖି ବୀର ପାର୍ଥ
ଅପୂର୍ବ ଜୀବ ଦେଖିଣ ହୋଇ ଧନୁହସ୍ତ ।
ଦକ୍ଷିଣ ଭୁଜରେ ବାଛି ନାରାଚେକ ଘେନି
ଗଣ୍ଡାକୁ କିଞ୍ଚିତ କରି ବିନ୍ଧିଲେ ଫାଲ୍‌ଗୁନି ।
ପାଣିଖାଇ ଗଣ୍ଡା ପୁଣି ଯାଆନ୍ତେ ଲେଉଟି
ଶରାଘାତେ ଗଣ୍ଡା ବାମ ଅଙ୍ଗ ଗଲା ଫୁଟି ।
ଶର ଲାଗିଛି ପଳାଇ ଗଲା ଗଣ୍ଡାଜୀବ
ପଡ଼ିଲା ହର ଛାମୁରେ ଦେଇ ଘୋର ରାବ ।
ପାର୍ବତୀ ବୋଇଲେ ଦେଖ ଦେଖ ହେ ଧୂର୍ଜ୍ଜଟି
କେ ମାଇଲା ଏ ଗଣ୍ଡାକୁ ଶର ଅଛି ଫୁଟି ।
ପ୍ରାଣ ହାରିଣ ପଡ଼ିଛି ବେଗେ ଉଠ ଉଠ
କେ ଗଣ୍ଡା ମାଇଲା ଦେଖ ନ କରିଣ ମଠ ।
ଧାତିକାରେ କୋଳୁ ଉଠିଗଲେ ବିଶ୍ୱନାଥ
ଗଣ୍ଡାକୁ ଦେଖିଣ ସ୍ୱାମୀ ହେଲେ କୋପଚିତ୍ତ ।
କେ ମୋହର ଏ ଗଣ୍ଡାକୁ ପ୍ରାଣେ ନାଶ କଲା
ଅକ୍ଳେଶେ ଶିରୀ ସମ୍ପଦ କାହାର ସରିଲା ।
ଯଦ୍ୟପି ମୁହିଁ ଦେଖିବି ଏକ୍ଷଣି ନୟନେ
ମାରି ବିଷାବଳି ଦେବି ଯିବ ଯମସ୍ଥାନେ ।
ଗଣ୍ଡା ମାରିଣ ଅର୍ଜ୍ଜୁନ ଆସୁଅଛି ଧାଇଁ
ଈଶ୍ୱର ଯେ କୋପ କଲେ ଅର୍ଜ୍ଜୁନକୁ ଚାହିଁ ।
ଆରେରେ ଶବର ବୋଲି ଡାକି ସଦାଶିବ
ନାଶିଲୁ କିମ୍ପାଇଁ ଅନିମିତ୍ତେ ଗଣ୍ଡାଜୀବ ।
ବିପରୀତ ବୁଦ୍ଧି ତୋର ନାଶଯିବା କାଳେ
ପ୍ରତିଜ୍ଞା କରି ଅର୍ଜ୍ଜୁନ ଚାହିଁଲେ ସୁରୁଳେ ।
ବୃକ୍ଷତାଳ ଏକା ଦେବ ଘେନିଣ ବୁଲାଇ
ଅର୍ଜ୍ଜୁନର ଉପରକୁ ଆସୁଅଛି ଧାଇଁ ।

ନାସିକାରେ ହସ୍ତ ଦେଇ ଅର୍ଜ୍ଜୁନ ହିଁ ହସି
ଅକାରଣେ ବାତୁଳ କି ହୋଇଲୁ ତପସ୍ୱୀ ।
ମାଇଲା କଥା ପଚାରୁ କିମ୍ପା ତପୋଧନ
ସୁନ୍ଦରୀ ସ୍ତିରୀକି ଘେନି ଛାଡ଼ି ପଳା ବନ ।
ଯେତେକ ଘଞ୍ଚାଳ ମୋତେ କଲୁଣି ଅଭାବେ
ମାରିବା ବୁଦ୍ଧିକି ତୁହି କଲୁ ଏଇଠାବେ ।
ତୋହର ମଲେ କାହାର କିଛି ହିଁ ନ ଯିବ
ପାର୍ବତୀ ପ୍ରାୟ ଏ ସ୍ତିରୀ ବିଧବା ହୋଇବ ।
ଏହାର ବିକଳ ମୁଁ ଯେ ନ ପାରିବି ସହି
କେତେକ ଝିଙ୍ଗାସ ତୁହି କରୁଛୁ ମୋତେ ହିଁ ।
ଅପାର ପ୍ରତିଜ୍ଞା ଦର୍ପ ଅର୍ଜ୍ଜୁନର ଶୁଣି
ସନ୍ନିଧିରେ କଟାଳିଲେ ଦେବ ଶୂଳପାଣି ।
ହତ୍ୟା ନ ଘେନିବି କିକି ବିଚାରେ ଅର୍ଜ୍ଜୁନ
ସାମାନ୍ୟ ଲୋକ ସମରେ କରିବି ନିଧନ ।
ତୁରେ ତପୋଧନ ଗୋଟି ଅଟୁ ନିରିମାକ୍ଷି
ତୋତେ ନିଧନ କଲେ କେ ପାରିବଟି ରଖି ।
ଏ ରୂପେ କହିଣ ତହୁଁ ବାସବର ସୁନୁ
ସଦାଶିବଙ୍କର ବେକେ ଲଗାଇଲା ଧନୁ ।
ଦକ୍ଷିଣ ଭୁଜରେ ତାକୁ ଅନ୍ତରୀକ୍ଷେ ତୋଳି
ଧନୁ ଧରିଣ ବୁଲାନ୍ତେ ବୁଲନ୍ତି କପାଳୀ ।
ଯେହ୍ନେ କୁରାଳ ବୁଲାଇ ଦିଏ ଚକ୍ରଧରି
ସଦାଶିବଙ୍କୁ ବୁଲାଏ ପାର୍ଥ ସେହିପରି ।
ମୁଖରୁ ରୁଧିର ବହି ପଡ଼େ ବିଶ୍ୱନାଥ
ପରମ ଯୋଗୀ ପୁରୁଷ ଛାଡ଼ି କୋପ ଚିତ୍ତ ।
ବୋଇଲେ କିରାତ ବର ମାଗ ହେଲି ତୃପ୍ତି
ଶୁଣିଣ ଆଶ୍ଚର୍ଯ୍ୟ ପାର୍ଥ ରୁହାଇଲା ଧାତି ।
ଧନୁ ବେକରୁ କାଢ଼ିଣ ପକାଇଲା ଭୂମି
ବର ମାଗ ବୋଲନ୍ତେ ଯେ ବିଶ୍ୱନାଥ ସ୍ୱାମୀ ।
ବର ଦେବା କଥା ଶୁଣି ପାର୍ଥ ଭାବେ ମନେ
ବନଚର ହୋଇ ବର ଯାଚଇ କେସନେ ।
ବ୍ରହ୍ମା ବିଷ୍ଣୁବିନୁ ବର ଯାଚେ କେହୁ ସେ ଯେ
ବିଶ୍ୱନାଥ ଅଟନ୍ତି ବା ଏହୁ ଦେବରାଜେ ।
ପାର୍ବତୀ ଘେନି ଭ୍ରମନ୍ତି ଏ ବନ କ୍ରୀଡ଼ାରେ
ଗଣ୍ଡା ଗୋଟିଏ ଯେ ପେଶିଥାନ୍ତି ଶୂଳଧରେ ।
ମନେ ବିଚାରି ଅର୍ଜ୍ଜୁନ ବିସ୍ମୟ ହୋଇଲେ
ବର ଯାଚିବାର ଦେଖି ଦେବୀ ଟାହିକଲେ ।
କରତାଳି ମାରି ତହୁଁ ହସିଲେ ପାର୍ବତୀ
ସଂଗ୍ରାମରେ ହାରି ବର ଦେଲେ ପଶୁପତି ।
ସଂଗ୍ରାମ କରିଣ ଦେବ ହେଲେ ଅପରାଧି
ମାଡ଼ଖାଇ ସ୍ୱାମୀ ବର ଦେଲେ କିସ ସିଦ୍ଧି ।

ଈଶ୍ୱର ବୋଇଲେ ସାଧୁ ସାଧୁରେ ଶବର
ମୋତେ ଜିଣିବାର ଶକ୍ତି ହୋଇଲା ତୋହର ।
ଯାହା ମାଗିବୁ ମୁଁ ତାହା ଦେବଇଁ ଅବଶ୍ୟ
ଶତ୍ରୁତା ପଣେ ଅର୍ଜିଲୁ ତୁହି ବଡ଼ ଯଶ ।
ପୁଣ ପୁଣ ଯାଚନ୍ତି ଯେ ବର ଦେବରାଜ
ଶୁଣିଣ ବାସବ ତହୁଁ ହୋଇଲେ ଆଶ୍ଚର୍ଯ୍ୟ ।
ଛଳନା କରିଣ ତାଙ୍କୁ ପଚାରଇ ପାର୍ଥ
ନ ଜାଣେ ମୁଁ ତୁମ୍ଭେ କିଏ କହିବା ଯଥାର୍ଥ ।
ତୁମ୍ଭେ କିଏ ବର ମୁହିଁ ମାଗିବି କେସନେ
ରୂପ ବର୍ଣ୍ଣ ଚିହ୍ନି କିଛି ନ ଦେଖି ନୟନେ ।
ପାର୍ବତୀ ବୋଇଲେ ତୁରେ ଶୁଣ ଧନଞ୍ଜୟ
ସ୍ୱରୂପ ଭେଟିଲୁ ତୁ ତ୍ରିଦଶ ଦେବରାୟ ।
ବନକ୍ରୀଡ଼ା କରୁ ଆମ୍ଭେ ଶଙ୍କର ପାର୍ବତୀ
ଶୁଭକ୍ଷଣେ ଭେଟିଲୁ ତୁ ଦେବ ପଶୁପତି ।
ଶୁଣିଣ ଅର୍ଜୁନ ଧନୁଶରକୁ ପକାଇ
ସଦାନନ୍ଦ ଚରଣରେ ଦଣ୍ଡବତ ହୋଇ ।
ସ୍ୱାମୀ ମୁଁ ଅଜ୍ଞାନୀ ହେଲି ଶିବର ଦୋରେହା
ଅପରାଧୀ ହେଲି ବର ମାଗିବି ମୁଁ କାହା ।
ପାର୍ବତୀ ବୋଇଲେ ତୁହି ନ ଭାଳ ଏମନ୍ତ
ଶତ୍ରୁତାପଣେ ତୋଷିଲୁ ସଦାଶିବ ନାଥ ।
ସଂଗ୍ରାମ ବତ୍ସଳ ଏ ଯେ ସଦା ମତି ଭୋଳ
ମାଡ଼ ଖାଇଣ ପ୍ରସନ୍ନ ହୁଅନ୍ତି ସୁତ୍ରଳ ।
ଆରେ ଧନଞ୍ଜୟ ମୁହିଁ କହୁଅଛି ଶୁଣ
ଏ ମହାପୁରୁଷଙ୍କର ଏକ ବିବରଣ ।
ବୈତରଣୀ କୂଳେ ଶିବ ନାମରେ ନଗରୀ
ଶିବଦାସ ବୋଲି ବିପ୍ର ଏକ କୃଷିକାରୀ ।
ନିର୍ମଳ ବୋଲି ତାହାର ତନୟ ଗୋଟିଏ
ବାଳକାଳୁ ରଖଇ ସେ ଗୋଧନ ପଲିଏ ।
ସେ ନଦୀତୀରେ ଅଛନ୍ତି ମଣ୍ଡେଳେଶ ଲିଙ୍ଗ
ଅପୂଜା ଦେବତା ତାଙ୍କୁ ନାହିଁ ଭୋଗ ରାଗ ।
ସେ ପୁତ୍ର ତହିଁ ଗୋଧନ ରଖଇ ଯେ ଏକା
ସେ ଲିଙ୍ଗ ଉପରେ ନିତ୍ୟେ ଲଦୁଥାଇ ଟେକା ।
ଏମନ୍ତ ଟେକା ଲଦନ୍ତେ ଲିଙ୍ଗର ଉପରେ
ଭୀତି ନ କରଇ ଏକା ଥାଇ ସମକ୍ଷରେ ।
କୁମ୍ଭମାସ ଅମାବାସ୍ୟା ତିଥି ରବିବାର
ବିଶାଖା ନକ୍ଷତ୍ର ତୁଳା ଚନ୍ଦ୍ରମିତ୍ର ତାର ।
ଶୁଭନାମେ କରଣ ଯେ ପ୍ରୀତିନାମେ ଯୋଗ
କୁମ୍ଭ ସଂକ୍ରାନ୍ତିର ଚଉବିଂଶ ଦିନ ଭୋଗ ।
ସେଦିନ ସେହି ବାଳକ ଥିଲା କୃଷିକ୍ଷେତ୍ରେ
ଭୁଞ୍ଜି ବସିଲା ସେଦିନ ପିତାର ସଙ୍ଗତେ ।
ଥୋକାଏକ ଅନ୍ନ ଭୁଞ୍ଜିସାରି ସେ ବାଳୁତ
ମନରେ ପଡ଼ିଲା ସେହି ଛାଡ଼ିଲାକ ଭାତ ।
ଟେଳା କେତେଖଣ୍ଡି ତାର ଅଣ୍ଟିରେ ପୂରାଇ
ଉଚ୍ଛିଷ୍ଟ ହାତରେ ସେ ଯେ ଆସୁଅଛି ଧାଇଁ ।
ଲିଙ୍ଗ ସନ୍ନିଧିରେ ଯାଇ ହୋଇଲା ପ୍ରବେଶ
ଟେଳାଗୁଡ଼ିକ କାଢ଼ିଣ ଦେଇ ବାଳଶିଷ୍ୟ ।
ଈଶ୍ୱର ଚରିତ ତୁହୋ ଶୁଣ ବୀରପାର୍ଥ
ସେ ଲିଙ୍ଗେ ଯାଇ ପ୍ରବେଶ ହୋଇ ଶୂଳହସ୍ତ ।
ପାଞ୍ଚବଦନ ତାଙ୍କର ପନ୍ଦର ନୟନ
ସେ ବାଳୁତକୁ ପ୍ରସନ୍ନ ହେଲେ ତ୍ରିଲୋଚନ ।
ବର ମାଗ ବର ମାଗ ବୋଲି ପଶୁପତି
ଲୟମନେ ମୋହଠାରେ କଲୁ ତୁ ଭକତି ।
ସେ ବାଳ ବୋଇଲା ମୋତେ ପ୍ରସନ୍ନ ହୋଇବ
ହେ ପ୍ରଭୁ ମୋତେ ତ ଭୂଇଁ ଖଣ୍ଡିଏକ ଦେବ ।
ସେ ବାଳ ଶିଶୁ ତ କିଛି ନ ଜାଣଇ ଆନ
ମାଗିଲା ଭୋଳେ ସେ ଚାଷି କର୍ମର ବିଧାନ ।
ଶୁଣ ଆହେ ଅରଜୁନ ବଦୟନ୍ତି ଉମା
ଯାହା ମାଗିଲା ପ୍ରତ୍ୟକ୍ଷେ ଦେଲେ ମହାତମା ।
ବାଳୁତ ପୁତ୍ର ମାଗିଲା ଯାହା ପୁରଃସରି
ତେଣୁ ଅଟନ୍ତି ବ୍ରହ୍ମାଣ୍ଡେ ସିନା କୃଷିକାରୀ ।
ସେ ବ୍ରାହ୍ମଣର ହୋଇଲେ ଯେତେକ ସନ୍ତତି
ବେଦମନ୍ତ୍ର ଛାଡ଼ି ସେହି କୃଷିରେ ବଞ୍ଚନ୍ତି ।
ପାର୍ବତୀ ବୋଇଲେ ତୁ ହୋ ଅରଜୁନ ଶୁଣ
ନିତି ଭେଳାମାରି ବୃତ୍ତି ଅର୍ଜିଲା ବ୍ରାହ୍ମଣ ।
ଏମନ୍ତ ଶୁଣି ପ୍ରସନ୍ନ ହୋଇଲେ ମହାତ୍ମା
ଭକତଜନ ବତ୍ସଳ ପୁରୁଷ ଉତ୍ତମା ।
ତୁ ମାନବ ସଙ୍ଗେ ସରି ନୋହୁ ଅରଜୁନ
ଅନେକ ବର ତୋତେଟି ଦେବେ ତ୍ରିଲୋଚନ ।
ଗଉରୀଙ୍କ ବଚନରେ ଅର୍ଜୁନ ପ୍ରଣମି
ମୋର ଅପରାଧ ଜାଣି କୃପାକର ସ୍ୱାମୀ ।
ପାର୍ବତୀ ବୋଇଲେ ସ୍ୱାମୀ ଦେବ ଯେବେ ବର
ଅଶଉଚେ ତା ପ୍ରାପତ ନୋହିବ ନିକର ।
ନଦୀଜଳେ ଯାଇ ସ୍ନାନ କରି କାଶୀବାସୀ
ଅର୍ଜୁନକୁ ବର ଦିଅ ଶୁଚି ହୋଇ ଆସି ।
ପାର୍ବତୀ ବଚନେ ହର ସ୍ନାନ କରି ଗଲେ
ପାର୍ବତୀ ଯେ ଅର୍ଜୁନକୁ ରାଇ ପଚାରିଲେ ।
କି ବର ମାଗିବୁ ସଦାନନ୍ଦ ଦେବତାଙ୍କୁ
ସ୍ୱରୂପ ବଚନ ବାବୁ କହିବା ଆମ୍ଭଙ୍କୁ ।
ଅର୍ଜୁନ ବୋଇଲେ ମାଗୋ ମୁଁ ଅତି ଅଜ୍ଞାନ
ମାଗିବାକୁ ସଙ୍କୁଚିତ ଯେଣୁ ଭକ୍ତିହୀନ ।

ପାର୍ବତୀ ବୋଇଲେ ଭୋଳାନାଥ ମହେଶ୍ୱର
ଏହିକ୍ଷଣି ଦେବେ ତୋତେ ଅଲୌକିକ ବର ।
ବାବୁ ତ୍ରିପୁରାକୁ ବଧ କଲେ ଯେଉଁକାଳେ
ଷାଠିଏ ସହସ୍ର ବର୍ଷ ଯୁଝିଲେ ତା ତୁଲେ ।
ହରି ହର ଚନ୍ଦ୍ର ସୂର୍ଯ୍ୟ ପବମାନ ବହ୍ନି
ଶସ୍ତ୍ର ଗୋଟିଏ ହୋଇଲେ ଦିଗପାଳ ଘେନି ।
ସେହି ଶସ୍ତ୍ର ଘେନି ଦେବ ନାଶିଲେ ତ୍ରିପୁର
ମାଗ ବାବୁ ତାଙ୍କୁ ସେହି ପାଶୁପତ ଶର ।
ଯେ ଶର ତୋହର ହାତେ ଥିବ ଯେତେବେଳେ
ସଂଗ୍ରାମେ ସମ ନୋହିବେ ତୋତେ ଦିଗପାଳେ ।
ସ୍ନାନ ସାରିଣ ଅଇଲେ ଦେବଶୂଳପାଣି
ବର ମାଗ ହେ ଅର୍ଜ୍ଜୁନ ପଣ୍ଡୁ କୁଳମଣି ।
ବାସବୀ ବୋଇଲେ ଦେବ ମାଗିବି ମୁଁ କିସ
ତାହା ନ ଦେବ ପରାହେଁ ମୋତେ ବିଶ୍ୱବାସ ।
ଈଶ୍ୱର ବୋଇଲେ ଦେବି ତୋର ଯେ ଅସାଧ୍ୟ
ମାଗରେ ପାଣ୍ଡବ ଦେବି ତୋର ହେବ ସିଦ୍ଧ ।
ଅର୍ଜ୍ଜୁନ ବୋଇଲେ ଦେବ ଯେ ଶରେ ତ୍ରିପୁର
ନାଶିଲେ ସେ ପାଶୁପତ ଦେବ ବିଶ୍ୱେଶ୍ୱର ।
ଶୁଣିଣ ବିରସ କଲେ ସଦାନନ୍ଦ ମତି
ପାଶୁପତ ଶର ଆଣି ଦେଲେ ପଶୁପତି ।
ଈଶ୍ୱର ବୋଇଲେ ଗିରିସୁତା ମୁଖ ଚାହିଁ
ତୁମ୍ଭେ ନ କହିଲେ ତାର ଏଢ଼େ ଜ୍ଞାନ ନାହିଁ ।
ପାର୍ବତୀ ବୋଇଲେ ପାର୍ଥ ଅଟେ ମହାବିଜ୍ଞ
ଦ୍ୱିତୀୟ ନାରାୟଣ ସେ ଅଟଇ ସର୍ବଜ୍ଞ ।
ଶିବ ଭାଳନ୍ତି ଯା ଯୋଗୁଁ ହେଲା ଆମ୍ଭ କ୍ଷତି
ଦିଆଇବି ଏହା ଅସ୍ତ୍ର ପାର୍ଥକୁ ସମ୍ପ୍ରତି ।
ଦିଆଇବି ଏହାର ମୁଁ ତୂଣୀର ଅକ୍ଷୟ
ଏହାଙ୍କୁ କରିବି ମୁହିଁ ଜଗତେ ଅଜେୟ ।
ଈଶ୍ୱର ବୋଇଲେ ଶୁଣ ଆଗୋ ଦେବୀ ଉମା
ଆମ୍ଭର ପୁତ୍ର ହୋଇଲା ପାର୍ଥ ମହାତମା ।
ତୁମ୍ଭେ ଯେ ପ୍ରସନ୍ନ ହୁଅ ଏହି ଅର୍ଜ୍ଜୁନକୁ
କିଛି ବର ତୁମ୍ଭେ ଏବେ ଦିଅ ଯେ ଏହାକୁ ।
ପାର୍ବତୀ ବୋଇଲେ ବର ମାଗ ଫାଲଗୁନି
ଶିବ ବୋଇଲେ ଗୋ ହିମବନ୍ତର ଦୁଲଣୀ ।
ତୁ ଗୋ ସ୍ନାନ କରି ଆସ କାଶୀନଦୀ ନୀର
ଶଉଚ ହୋଇଣ ଦିଅ ଅର୍ଜ୍ଜୁନକୁ ବର ।
ସ୍ୱାମୀର ବଚନେ ଦେବୀ ଗଲେ ସ୍ନାନ କରି
ଅର୍ଜ୍ଜୁନ ମୁଖକୁ ଚାହିଁ ଈଶ୍ୱର ତିଆରି ।
କି ବର ମାଗିବୁ ତୁହି କହରେ ଅର୍ଜ୍ଜୁନ
ଅର୍ଜ୍ଜୁନ ବୋଇଲେ ଦେବ ମୋର କିସ ଜ୍ଞାନ ।
ସଦାଶିବ ବୋଇଲେରେ ଶୁଣ ପାର୍ଥବୀର
ସତ୍ୟଯୁଗେ ମହାମାୟା ଦୁର୍ଗା ଅବତାର ।
ସହସ୍ରେକ ଭୁଜ ପାଞ୍ଚଶତ ଧନୁ ଘେନି
ଅନୁକ୍ଷଣ ବିନ୍ଧିଲେ ସେ ଦିବସ ରଜନୀ ।
ଅକ୍ଷୟ ତୂଣୀର ବେନି ଅଙ୍ଗୁ କଲେ ଜାତ
ରାତ୍ରି ଦିବସ ବିନ୍ଧିଲେ ନ ସରଇ ଶସ୍ତ୍ର ।
ମହିଷାସୁର ସହସ୍ର ବର୍ଷେ ନାଶ ଗଲା ,
ସେହି ତୂଣୀରୁ ଗୋଟିଏ ଅସ୍ତ୍ର ନ ସରିଲା ।
ଈଶ୍ୱର ବୋଇଲେ ଏହା ଅର୍ଜ୍ଜୁନର ଆଗ
ପାର୍ବତୀ ଦେବୀଙ୍କି ତୁହି ସେ ତୂଣୀର ମାଗ ।
ଏ ରୂପେ ଶିବ ପାର୍ଥକୁ ଦେଲେକ ଶିଖାଇ
ଏହିକାଳେ ମହାସତୀ ଆସିଲେ ଗାଧୋଇ ।
ପାର୍ବତୀ ବୋଇଲେ ବର ମାଗ ହେ ଅର୍ଜ୍ଜୁନ
ଯେ ତୋହର ମନବାଞ୍ଛା ପ୍ରାପ୍ତ ହେଉ ପୂର୍ଣ ।
କରପତ୍ର ଯୋଡ଼ି ବର ମାଗେ ଫାଲ୍‌ଗୁନି
ପ୍ରସନ୍ନେ ଦେବ ଅକ୍ଷୟ ତୂଣୀର ଯେ ବେନି ।
ପାର୍ବତୀ ଦେବୀ ବୋଇଲେ ପାର୍ଥ କଥା ଶୁଣି
ଏହାକୁ କହିଲେ ଏହି ଦେବ ଶୂଳପାଣି ।
ବାମଦେବ ବୋଇଲେ ଯେ ଅଟେ ବଡ଼ ଜ୍ଞାତା
ସମସ୍ତ ଜାଣ କ୍ଷତ୍ରିୟ ମହା ବଳବନ୍ତା ।
ମୁହିଁ ନ କହିଲି ସଖି ମୋର ନାହିଁ ଦୋଷ
ଆମ୍ଭଠାରେ ଅନିମିତ୍ତେ କିମ୍ପା କର ରୋଷ ।
ପାର୍ବତୀ ବୋଇଲେ ଦେବ ମନ୍ଦକୃତ୍ୟ କଲ
ପରକୁ ତ ଆପଣାର ପଣ ଦିଆଇଲ ।
ଅର୍ଜ୍ଜୁନକୁ କହିଦେଲ ଯେବେ ତ୍ରିପୁରାରୀ
ଶତେ ଈଶ୍ୱର ପାର୍ଥକୁ ନୋହିବେକ ସରି ।
ଅକ୍ଷୟ ତୂଣୀର ବେନି ଜଗତ ଜନନୀ
ସାନନ୍ଦେ ଦେଲେ ପାର୍ଥକୁ ନିଜହସ୍ତେ ଘେନି ।
ବାବୁ ସମସ୍ତ ଦେବତା ଅସ୍ତ୍ର ଏଥେ ଅଛି
ତ୍ରୈଲୋକ୍ୟ ଜୟେ ସମର୍ଥ ହେଲୁ ସବ୍ୟସାଚୀ ।
ଅର୍ଜ୍ଜୁନ ବୋଇଲେ ମାଗୋ ଶସ୍ତ୍ର ସମ୍ଭାଳିବି
ଯେ ନିନ୍ଦା କରିବ ତାକୁ ବିନାଶ କରିବି ।
ଯଦ୍ୟପି ଜୀବନେ ତାକୁ ନ ମାରିବି ମୁହିଁ
ଅନଳ ଜାଳି ମରିବି ସତ୍ୟ ମୋର ଏହି ।
ମୃତ ସଞ୍ଜୀବନୀ ମନ୍ତ୍ରେ ଗଣ୍ଡା ଜୀଆଇଲେ
ତୁ ଆମ୍ଭର ପୁତ୍ର ସବ୍ୟସାଚୀ ନାମ ଦେଲେ ।
ଏସନକ ବର ଦେଇ ଦେବ ତ୍ରିଲୋଚନ
ଶଙ୍କର ଗିରିଜା ତହୁଁ ହେଲେ ଅନ୍ତର୍ଦ୍ଧାନ ।
ବିଜେ ସଦାଶିବ ଯାଇଁ କୈଳାସ ଭୁବନେ
ବାସବର ନନ୍ଦନ ଯେ ବିହରଇ ବନେ ।

ଜୟ ଜୟ ସଦାନନ୍ଦ ପରମ ପୁରୁଷ
ଜୟ ଜୟ ସଦାନନ୍ଦ ଜୟ କୃତ୍ତିବାସ ।
ଭୋଳା ମହେଶ୍ୱର ତୁହି ତୋହର ଚରଣ
ଭଜି ଶ୍ରୀ ଶାରଳାଦାସ ପଶିଲା ଶରଣ ।

—୦—

## ଶ୍ରୀକୃଷ୍ଣଙ୍କ ନବଗୁଞ୍ଜର ରୂପ

ପାର୍ଥ ବନବାସ ବାର୍ତ୍ତା ପାଇ ଚକ୍ରପାଣି
ଦ୍ୱାରକାରୁ ହସ୍ତିନାକୁ ବିଜେ ଯଦୁମଣି ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଚଇତ୍ରମାସ ଶୁକଳ ତ୍ରୟୋଦଶୀ ତିଥି ।
ଶତଭିଷା ନକ୍ଷତ୍ର ଯେ କୁମ୍ଭେ ବିଜେ ଶଶୀ
ଗରୁଡ଼ ଚଢ଼ି ବାରୁଣାବନ୍ତେ ବିଜେ ଆସି ।
ଆସ୍ଥାନରେ ବିଜେ କରିଛନ୍ତି ପଣ୍ଡୁସୁତ
ପ୍ରବେଶିଲେ ତହୁଁ ଆସି ଶଙ୍ଖଚକ୍ର ହସ୍ତ ।
ଗରୁଡ଼ ପୃଷ୍ଠୁ ଉତୁରି ପ୍ରଭୁ ନାରାୟଣ
ଭୂମିରେ ଶୋଇଲେ ଧରି ଧର୍ମଙ୍କ ଚରଣ ।
କଲ୍ୟାଣ କରି ତୋଳନ୍ତି ହସ୍ତେ ଧର୍ମପୁତ୍ର
ଆରେ ନକୁଳ ତୁ ଆସି ତୋଳ ପଦ୍ମନେତ୍ର ।
ମାଦ୍ରୀର ନନ୍ଦନ ପାଦେ ପ୍ରଣିପାତ କରି
କୋଳ କରିଣ ଧଇଲେ ତାକୁ ଦେବହରି ।
ଆସ୍ଥାନ ତ୍ୟାଗ କରିଣ ଧର୍ମରାଜ ସୁତ
ଗରୁଡ଼ର ପାଦତଳେ କଲେ ପ୍ରଣିପାତ ।
କଲ୍ୟାଣ ବାଞ୍ଛା କରନ୍ତି ପକ୍ଷୀରାଜ ବୀର
ଏକାଙ୍ଗ କ୍ଷତ୍ରିୟ ହୁଅ ଧର୍ମର କୁମର ।
ଗରୁଡ଼ଙ୍କ କଲ୍ୟାଣେ ଯେ ଆନନ୍ଦ ନୃବର
କୃଷ୍ଣଙ୍କୁ ନେଇଣ ବିଜେ ଆସ୍ଥାନ ଉପର ।
ମାଦ୍ରୀସୁତ ସହଦେବ ପ୍ରଣିପାତ କଲେ
ଦେବ ଦେବ ହରି ତାଙ୍କୁ ଉଠି କୋଳ କଲେ ।
ଚାରିଭ୍ରାତା ଘେନି ଏଥେ ସେନା ସେନାପତି
ରଥୀ ମହାରଥୀ ଆଦି ସମସ୍ତେ ଅଛନ୍ତି ।
ବୀର ମହାବୀର ପୁଣି ରଣରାଜ ପୁତ୍ରେ
ବଳୀ ମହାବଳୀ ଏଥେ ଅଛନ୍ତି ସମସ୍ତେ ।
ଆସ୍ଥାନରେ ବିଜେ କରି ଦେବ ଚକ୍ରଧର
ଯୁଧିଷ୍ଠିର ମୁଖ ଚାହିଁ କରନ୍ତି ଉତ୍ତର ।
ଦେବ ସମସ୍ତେ ଅଛନ୍ତି ନାହିଁ ବୀର ପାର୍ଥ
ଶୁଣି ମଉନ ହୋଇଲେ ଧର୍ମରାଜ ପୁତ୍ର ।
ଶୋକ ଗଦଗଦ ହୋଇ ତହିଁ କୁନ୍ତୀଦେବୀ
ବାବୁ ଅର୍ଜ୍ଜୁନ ଗଲା ଯେ ବନବାସ ସେବି ।
କୁନ୍ତୀ ଦେବୀଙ୍କ ମୁଖରୁ ଏସନକ ଶୁଣି
ମନେ ବିଷାଦ ପାଇଲେ ଦେବ କମ୍ବୁପାଣି ।
ପଚାରନ୍ତି ଯୁଧିଷ୍ଠିରଙ୍କୁ ପ୍ରଭୁ ଯଦୁମଣି
କିମର୍ଥେ ବନକୁ ଗଲା ବୀର ଫାଲଗୁନି ।
ଗୋବିନ୍ଦ ପଚାରନ୍ତି ଯେ ଯୁଧିଷ୍ଠି ବୋଲନ୍ତି
ପଚାରନ୍ତୁ ଏହା ସହଦେବ ଯେ ମନ୍ତ୍ରୀଙ୍କି ।
ଯୁଧିଷ୍ଠିର ବଚନରେ ଦେବ ଚକ୍ରପାଣି
ଅନ୍ତର ହୋଇଲେ ମନ୍ତ୍ରୀ ସହଦେବ ଘେନି ।
ଏକାନ୍ତେ ଗୋବିନ୍ଦ ପୁଚ୍ଛା କଲେ ସେ ମନ୍ତ୍ରୀଙ୍କୁ
କେବଣ ଚରିତ ବାବୁ କହ ତୁ ଆମ୍ଭଙ୍କୁ ।
କିହୋ ମନ୍ତ୍ରୀବର କହ ଅଛଇ କି ଅର୍ଥ
ସଭାରେ ତୁ ନ ଦେଖିଲୁ ବୀରବର ପାର୍ଥ ।
ଠାକୁରଙ୍କୁ ପଚାରିଲୁ ନ କହିଲେ ମୋତେ
ତେଣୁ ସହଦେବ ମୁହିଁ ପଚାରୁଛି ତୋତେ ।
କୃଷ୍ଣଙ୍କର ନିରାଧାର ଶୁଣି ମନ୍ତ୍ରୀବର
କରପଦ୍ର ଯୋଡ଼ି ଧୀରେ କରଇ ଉତ୍ତର ।
ଗୁପତ ନ କରି କହେ ମନ୍ତ୍ରୀ ଚୂଡ଼ାମଣି
ସାବଧାନେ ଶୁଣ ତୁମ୍ଭେ ଶଙ୍ଖଚକ୍ରପାଣି ।
ଆମ୍ଭେ ପାଞ୍ଚଭାଇ ବସି ନିୟମ ଯେ କଲୁ
ଅଗ୍ନିଙ୍କୁ ସାକ୍ଷୀ କରିଣ ଏମନ୍ତ ବୋଇଲୁ ।
ଦ୍ରୌପଦୀ ଗୃହକୁ ଯିବା ପାଳି ଯେ ହୋଇବ
ଅନ୍ୟ ଯେ ଦେଖିବ ବାରବର୍ଷ ବନେ ଯିବ ।
ଦଇବ ଯୋଗେ ଯୁଧିଷ୍ଠି ଠାକୁରଙ୍କ ସଙ୍ଗେ
ଦ୍ରୌପଦୀ ବିଜୟ କରିଥିଲେ କ୍ରୀଡ଼ାରଙ୍ଗେ ।
କପଟେ ଅଗ୍ନି ଦେବତା ଏମନ୍ତ ସମୟେ
ବ୍ରାହ୍ମଣ ରୂପ ଧରିଣ ଦ୍ୱାରେ ଆସି ହୁଏ ।
ପାର୍ଥଙ୍କୁ କହିଲେ କହ ଯୁଧିଷ୍ଠିଙ୍କି ଯାଇ
ବ୍ରାହ୍ମଣ ଜଣେ ଅଛନ୍ତି ଦ୍ୱାରେ ଉଭାହୋଇ ।
ଏମନ୍ତ ବୋଲିଣ ତୁମ୍ଭେ ତାଙ୍କୁ ଘେନିଆସ
ଗୁପତ କଥାଏ ଆମ୍ଭେ କହିବୁ ବିଶ୍ୱାସ ।
ଯେବେ ବିଳମ୍ବ କରିବୁ ତୁ ହୋ ବୀର ପାର୍ଥ
ଭସ୍ମ କରିବି ନଗର ହୋଇବ ଧୂମାନ୍ତ ।
ସେ ମାୟା ନ ଜାଣି ପାର୍ଥ ଭିତରକୁ ଗଲେ
ଯୁଧିଷ୍ଠିର ଦ୍ରୌପଦୀଙ୍କୁ ଏକାନ୍ତେ ଦେଖିଲେ ।
ଅଗ୍ନିଦେବତା ତକ୍ଷଣେ ହେଲେ ଅନ୍ତର୍ଦ୍ଧାନ
ସତ୍ୟ ପାଳିଣ ବନକୁ ଗଲେକ ଅର୍ଜ୍ଜୁନ ।
ଅନେକ ବନ ବୁଲି ସେ ବହୁ ତୀର୍ଥ କରି
ହର ଉଦ୍ୟାନ ବନରେ ଜିଣି ତ୍ରିପୁରାରି ।
ପାଶୁପତ ସେ ଅକ୍ଷୟ ତୂଣୀରକୁ ପୁଣ
ପ୍ରସନ୍ନେ ତାହାଙ୍କୁ ଦେଲେ ଉମା ତ୍ରିଲୋଚନ ।
ପୁତ୍ର କଲେ ତାଙ୍କୁ ହର ପାର୍ବତୀ ଏ ବେନି
ସବ୍ୟସାଚୀ ନାମ ଦେଲେ ତୋଷମନେ ପୁଣି ।

ଈଶ୍ୱର ଦେବତା ଦେଲେ ପାଶୁପତ ଶର .
ପାର୍ବତୀ ଦେଲେ ଯେ ବେନି ଅକ୍ଷୟ ତୂଣୀର ।
ବର ଦେଇ ହରଗୌରୀ ଗଲେ କପିଳାସ
କାଶୀ ନଦୀର ପଶ୍ଚିମେ ପାର୍ଥ କଲେ ବାସ ।
ବିପ୍ର ପ୍ରସାଦ ବୋଲି ଯେ ନଦୀଏ ଅଛଇ
ରହିଥିଲେ ଧନଞ୍ଜୟ ବୀର ଯାଇଁ ତହିଁ ।
ଘୋରବନେ ବୁଲୁଛନ୍ତି ପାଳି ସତ୍ୟବ୍ରତ
ଏବେ ବିଜେ ମଣିଭଦ୍ରା ସର୍ବତ୍ର ପର୍ବତ ।
ଚୌବିଂଶ ନଳ ଅଗୁରୁ ବୃକ୍ଷ ଅଛି ଯହିଁ
ମହତଶିଳା ଉପରେ ବିଜୟ ଗୋସାଇଁ ।
ବୀରବର ବିଭସ ଯେ ମହାଗୁଣ କରି
ଅଗୁରୁ ବୃକ୍ଷରେ ବାନ୍ଧି ଆରଆଡ଼ ଧରି ।
ଆଡ଼େକ ଲଗାଇଛନ୍ତି ନେଇ ବେଣୁ ବୃକ୍ଷେ
ଗୁଣ ବସି ମାଜୁଛନ୍ତି ସେଠାରେ ପ୍ରତ୍ୟକ୍ଷେ ।
ତହିଁରେ ନିମଗ୍ନ ହୋଇ ପାର୍ଥବୀର ଅଛି
ସାବଧାନ ହୋଇ ତୁମ୍ଭେ ଶୁଣିମା ଶ୍ରୀବତ୍ସି ।
ଚାରିବର୍ଷ ଷଡ଼ମାସ ହେଲା ତେରଦିନ
ଆଜକୁ ତ ବନବାସ କଲେକ ଅର୍ଜ୍ଜୁନ ।
ହସିଣ ଶ୍ରୀହରି ମନ ମଧ୍ୟେ ବିଚାରିଲେ
ଦରହସିତ ବଦନେ ଆନନ୍ଦେ ପୁଚ୍ଛିଲେ ।
ମୋ ମନେ ସଂଶୟ ଜାତ ହେଲା ମନ୍ତ୍ରୀବର
କି କାର୍ଯ୍ୟେ କପଟ କଲ ଦେବ ବୈଶ୍ୱାନର ।
ମନ୍ତ୍ରୀ ବୋଇଲେ ସେ ଶ୍ୱେତରାଜା ଯଜ୍ଞକାଳେ
ଶତେ ବରଷ ଅଗ୍ନିରେ ସେ ଆହୁତି ଦେଲେ ।
ଲୋଭରେ ଖାଇଲେ ଘୃତ ସେ ଯଜ୍ଞେ ବହୁତ
ଲୁଦୁବୁଦୁ ବ୍ୟାଧିମନ୍ତ ହେଲେ ବୀତିହୋତ୍ର ।
ଦେବତାଙ୍କୁ ମେଳାଇ ସେ ସାହା ବେଦପତି
ମାଗିଲେ ଖାଣ୍ଡବ ବନ ଇନ୍ଦ୍ର କଲେ ନାସ୍ତି ।
ଘରଛାଡ଼ି ବନବାସ କଲେକ ଅର୍ଜ୍ଜୁନ
ବ୍ରାହ୍ମଣ ରୂପ ଧରିଣ ମାଗିବେ ସେ ଦାନ ।
ତେଣୁ ଯେ ବିବାଦ ପିତା ସଙ୍ଗେ ଆଚରିବେ
ଅଗ୍ନି ଦେବତାଙ୍କୁ ତହିଁ ମହୌଷଧି ଦେବେ ।
ଶୁଣି ଉଠିଲେ ଆସ୍ଥାନ ତେଜି ଦେବରାୟ
ଯୁଧିଷ୍ଠି ଦେବଙ୍କ ପାଦେ କରିଣ ବିନୟ ।
ଆଜ୍ଞା ହେଉ ଦେବ ମୁହିଁ ଯିବି ଦ୍ୱାରାବତୀ
ଯେବେ ମୋର ସଖା ନାହିଁ ଫାଲ୍‌ଗୁନି ଏଥି ।
ଯୁଧିଷ୍ଠି ବୋଲେ ମଣୋହି ସାର ବେଗ କରି
ତଦନ୍ତେ ବିଦାୟ କଲେ ଦେବ ଚକ୍ରଧାରୀ ।
ପୁଣି ହିଁ ବୋଇଲେ ଦେବ ଆକଟ ଯେ ଅଛି
ରହି ନ ପାରିବି ଆଉ ବୋଲନ୍ତି ଶ୍ରୀବତ୍ସି ।

ଯୁଧିଷ୍ଠି ବୋଇଲେ ତୁହୋ ଯାଇ ଚକ୍ରଧାରୀ
ଫେରାଇ ଆଣ ପାର୍ଥକୁ ଆଶ୍ୱାସନା କରି ।
ତୁ ଦେବ ଦେବ ସଂସାର ଜନ ହିତକାରୀ
ମୁହିଁ ତୋତେ କିସ ଅବା ବୋଲିବି ତିଆରି ।
ଗତକଥା ତୋତେ କହିଥିବଟି ବିଶ୍ୱାସି
ଶୁଭଯୋଗେ ଭେଟ ତୁମ୍ଭେ ପାର୍ଥ ଘେନିଆସି ।
ବିନୟ ଭାବ ବହିଣ ବୋଲନ୍ତି ଅଚ୍ୟୁତ
ଆସିବା ପାଇଁ ମୁହିଁ ଯେ ବୋଲିବି ବହୁତ ।
ପ୍ରତିଜ୍ଞା ସାର୍ଥକ ବୀରବର ସେ କିରୀଟି
ନ ପୁଣ ଆସଇ ସେହୁ ବନରୁ ଲେଉଟି ।
ଧର୍ମସୁତ କହିଲେକ ବିଜେ କର ହରି
ମୁହିଁ ଅରକ୍ଷିତ ମୋତେ ଥିବୁ ଦୟାକରି ।
ଗୋବିନ୍ଦ ବୋଇଲେ ମୁହିଁ ଅଟେ ତୁମ୍ଭ ଭୃତ୍ୟ
ଯହିଁକି ଅବଦାନ ମୁଁ ତହିଁକି ଆଗତ ।
ଏତେ ବୋଲି ଦେବ ପାଦେ ପ୍ରଣିପାତ କଲେ
ଭୀମସେନ ନକୁଳକୁ ତୋଷେ କୋଳ ଦେଲେ ।
ପହଣ୍ଡେକ ପାଣ୍ଡବଙ୍କୁ ନ ଦେଲେ ଗୋଡ଼ାଇ
ଗରୁଡ଼ ଚଢ଼ି ବିଜୟେ କମଳାର ସାଇଁ ।
ଆଜ୍ଞାଦେଲେ ହରି ଆହେ ବିନତା କୁମର
ମଣିଭଦ୍ରା ପର୍ବତକୁ ବେଗେ ବିଜେ କର ।
ସତୁରି ସହସ୍ର ଯୂଣ ପଥ ଅତି ଦୂର
ତିନି ନିଃଶ୍ୱାସେ ମିଳିଲେ ତହିଁ ପକ୍ଷୀବର ।
ଯେଉଁରୂପେ କହିଥିଲା ମନ୍ତ୍ରୀ ଚୂଡ଼ାମଣି
ପ୍ରତ୍ୟକ୍ଷ କରି ଦେଖିଲେ ତହିଁ ଚକ୍ରପାଣି ।
ଧନ୍ୟ ତୁ ହେ ସହଦେବ ବୋଲନ୍ତି ଶ୍ରୀଧର
ଦେଖିଲା ପ୍ରାୟେ କହିଲୁ ମୋତେ ମନ୍ତ୍ରୀବର ।
ବିଚାର କରନ୍ତି ମନେ ମନେ ପଦ୍ମ ନେତ୍ର
ଚିହ୍ନି ପାରିବ କି ଆଜ ବୀରବର ପାର୍ଥ ।
ଗରୁଡ଼କୁ ଦେବ ଶୂନ୍ୟମାର୍ଗରେ ରୁହାଇ
ଅର୍ଜ୍ଜୁନ ନିକଟେ ତହିଁ ବିଜେ କଲେ ଯାଇଁ ।
ବିଚିତ୍ର ମୁରତି ଏକ ଧରି ଚକ୍ରଧର
କି ଅବା କାହିଁ ବା ସେହି ରୂପ ପଟାନ୍ତର ।
ଶୁଣ ବୈବସ୍ୱତମନୁ ବଦନ୍ତି ଅଗସ୍ତି
ଏକା ଶରୀର ଧଇଲେ ଦେବ ନବମୂର୍ତ୍ତି ।
ହସ୍ତୀର ଶରୀର ତୁରଙ୍ଗମ ଏକପାଦ
ମୃଗର ଏକ ପାଦ ଯେ ବ୍ୟାଘ୍ର ଏକପାଦ ।
ମୟୁରର କଣ୍ଠ ଅହିପୁଚ୍ଛ ସିଂହକଟୀ
ବୃଷଭର ଚୁଳ କୁକ୍‌କୁଟର ଅଣ୍ଟ ଗୋଟି ।
ହସ୍ତରେ ପଦ୍ମ ଫୁଲେକ ଗଳେ ରତ୍ନହାର
ବିଜେ କଲେ ଯାଇ ଦେବ ଅର୍ଜ୍ଜୁନ ଆଗର ।

ଗୁଣ ମାଳୁଅଛି ବସି ପାଣ୍ଡବ ଅର୍ଜୁନ
ଡିଅଁନ୍ତି ନୃତ୍ୟ କରିବା ପ୍ରାୟ ନାରାୟଣ ।
ଖର ଖର ଶବ୍ଦ ହୁଏ ପାଦେ ପତ୍ର ବାଜି
ଶବଦ ଶୁଭଇ ଯେହ୍ନେ ମେଘ କି ଗରଜି ।
ତହିଁକି ତ ଭୟ ନ କରଇ ବୀର ପାର୍ଥ
ଯେସନେକ ବ୍ରହ୍ମଜ୍ଞାନୀ ବ୍ରହ୍ମରେ ଯୁକତ ।
ଯେ ଯେପରି ନ ଜାଣଇ ରାଜା ବିଜେ କରେ
ଦୃଷ୍ଟି ନ ଦିଅନ୍ତି ସୁଦ୍ଧା ଘୋର ଶବଦରେ ।
ସେହିମତି ଗୁଣେ ଅଛି ପାର୍ଥ ଦୃଷ୍ଟିମନ
ମାୟା ସ୍ୱରୂପକୁ ତେଣୁ ନ ଚାହେଁ ଅର୍ଜୁନ ।
ଯତନେ ଲୋଟି ହୁଅନ୍ତି କମଳାର ସାଇଁ
ଲତା ଭିତରେ ପଶନ୍ତି ପୁଣି ଦେବ ଯାଇଁ ।
ନୃତ୍ୟ କରି ମାରନ୍ତି ସେ ପତ୍ରେ ଆଡ଼ଚିରା
ହଲନ୍ତେ ଶ୍ରୀମୁଖ କିବା ଝଲକନ୍ତି ତାରା ।
ଡିଅନ୍ତି ଯେ ଉକୁଚନ୍ତି ଭୂମିରେ ଲୋଟନ୍ତି
ଚଉଷଠି ତାଳେ ନୃତ୍ୟରସ ସେ କରନ୍ତି ।
ଏସନ କୃତ୍ୟ କରନ୍ତେ ପ୍ରଭୁ ବାସୁଦେବ
ଗୁଣ ଛାଡ଼ି ଦୃଷ୍ଟି ତହିଁ ଦେଲାକ ପାଣ୍ଡବ ।
ଦେଖି ଧନଞ୍ଜୟ ଦିବ୍ୟ ଅପୂର୍ବ ମୁରତି
ଏକଦେହେ ନବରୂପ ଏକ ଏକ କାନ୍ତି ।
ଦେଖିଣ ମଧ୍ୟ ପାଣ୍ଡବ ଚକିତ ହୁଅଇ
ମନେ ବିଚାରଇ ଏତ ଅପୂର୍ବ ଅଟଇ ।
ଏକ ଦେହରେ ଅଛଇ ନବଗୋଟି ରୂପ
ପୃଥିବୀରେ ନ ଦେଖିଲି ଏମନ୍ତ ସ୍ୱରୂପ ।
ମୋହର କି ନ ଦେଖିଲା ନାହିଁ କିଛି ବର୍ଣ୍ଣ
ବୁଲି ଅଛଇ ମୁହିଁ ଯେ ଅନେକ ଅରଣ୍ୟ ।
ଶତଶୃଙ୍ଗ ପରବତ ବାରୁଣା ନଗରୀ
ବଡ଼ ତୁମ୍ବରୁ ପର୍ବତ ନଇମିଷ ଗିରି ।
କାମ୍ୟକ ନାମେ ପର୍ବତ ଗିରି ରଇବତ
ମନ୍ଦର ହର ଅରଣ୍ୟ ତୁରଙ୍ଗ ପର୍ବତ ।
ସାକ୍ଷ ନାମେ ବନ ଗିରି କାଳିଞ୍ଜନ ଶୈଳ
ବଉଦ ନାମେ ଯେ ନଗ୍ର ମହେନ୍ଦ୍ର ଅଚଳ ।
କୋଟିଲିଙ୍ଗ ଘେନି ତହିଁ ବିଜେ ତ୍ରିପୁରାରି
କୈଳାସ ମନ୍ଦର ଶ୍ୱେତ ସ୍ୱର୍ଣ୍ଣମୟ ଗିରି ।
ମେରୁର ପଶ୍ଚିମ ଦିଗ ହୟାନ୍ତ ଯେ ବନ
କାଳ କୁନ୍ଦବନ ଶୁଦ୍ଧ ନାଗାନ୍ତ ଅରଣ୍ୟ ।
ବାରଙ୍ଗ ପର୍ବତ ପୁଣି କୁଣ୍ଡଳୀ କାନନ
କୋଳାହଳ ଲତା ଲୋକା ଲୋକ ନାମେ ବନ ।
ଭାରତ ନାମେ ପର୍ବତ ମନୋହର ଗିରି
ମଳୟନାମେ ପର୍ବତ ଚନ୍ଦ୍ର ନାମେ ଶୈଳି ।

ଅହିମାନେ ଅଛନ୍ତି ତ ତହିଁ ବାସ କରି
ବୁଲି ଅଛଇ ତ ମୁହିଁ ସେ କନ୍ଦର ଗିରି ।
ଗନ୍ଧମାର୍ଦ୍ଦନ ଯେ ପୁରନ୍ଦର ହୟ ମୁଖ
ବକ ପର୍ବତ ଆବର ଆବର ଗିରି ଶିଖ ।
ଏ ରୂପେ ଅଠର ଲକ୍ଷ ଅଟଇ ହେ ଗିରି
ଏତେକ ପର୍ବତ ମୁହିଁ ଆସେ ବୁଲିକରି ।
ଏତେ ପର୍ବତ ଲତାରେ ଜୀବଜନ୍ତୁ ଯେତେ
ସକଳ ଜୀବଙ୍କୁ ଦେଖିଅଛି ଦୃଷ୍ଟିପଥେ ।
ଏମନ୍ତ ସ୍ୱରୂପ ଜୀବ ଦେଖିନାହିଁ ମୁହିଁ
ମାୟା ସ୍ୱରୂପ ପରାୟେ ଦିଶୁଅଛି ଏହି ।
ମାୟାରୂପେ ବିଜେ ଅବା କମଳାର କାନ୍ତ
ମୋତେ କଷଣ ଦେବାକୁ ଆସେ ପଦ୍ମନେତ୍ର ।
ଶୋଇବି ମୁଁ ଏହା ପାଦତଳେ ଗଡ଼ଘାଲି
ଆନଜୀବ ହୋଇଥିଲେ ନିଶ୍ଚେ ଯିବ ଜଳି ।
ଏତେ ବିଚାରି ମଧ୍ୟମ ପାଣ୍ଡବ ଅର୍ଜୁନ
ଗଡ଼ଘାଲି ଶୋଇଲା ସେ ଶ୍ରୀହରି ଚରଣ ।
ପାଦତଳେ ପଡ଼ି ସ୍ତୁତି କରେ ବୀରବର
ଜୟ ତୁ ଅନାଦି ଦେବ ଜୟ ନିରାକାର ।
ତୁ ଦେବ ଦିବ୍ୟ ମୁରତି ରୂପ ଧରିପାରୁ
ଅନାଦି ଅବତାର ତୁ ବାଞ୍ଛା କଳ୍ପତରୁ ।
ତୋହର ଆଜ୍ଞାରୁ ଏ ଯେ ଚତୁର୍ଦ୍ଦଶ ପୁର
ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର ତୋର ପରିଚାର ।
ଚରାଚର ଜୀବଜନ୍ତୁ ସର୍ବେ ତୋର ଭୃତ୍ୟ
ଜୀବ ଅଜୀବରେ ତୁହି ପୂରିତ ସମ୍ଭୁତ ।
ତୋହର ବିହୀନେ ଦେବ ଚରାଚର ନାସ୍ତି
ଅନାହତ ପୁରୁଷ ତୁ ଅଣାକାର ଜ୍ୟୋତି ।
ଯାହାର ମାୟାରେ ଭୁଲିଗଲେ ତ୍ରିଲୋଚନ
ମୁଁ ଛାର ମାନବ ମୋତେ କିମ୍ପା ତୋ କଷଣ ।
ସ୍ତୁତି ଶୁଣି ଉଭାହେଲେ ଦେବ ନାରାୟଣ
ନବୀନ ମୁରତି ଶ୍ୟାମ ଜିଣି ନବଘନ ।
କଟିତଟେ ଶୋଭାପାଏ ପାଏ ପୀତାମ୍ବର
ପଦ୍ମଦଳ ଲୋଚନ ଯେ ଅରୁଣ ଅଧର ।
ଶ୍ରୀବତ୍ସ ଲକ୍ଷଣ ବକ୍ଷେ କଉସ୍ତୁଭ ମଣି
ଏମନ୍ତ ସ୍ୱରୂପରେ ଯେ ବିଜେ ଚକ୍ରପାଣି ।
ଏ ସ୍ୱରୂପ ଗୋଟି ଯହୁଁ ଅର୍ଜୁନ ଦେଖିଲେ
କରପତ୍ର ଯୋଡ଼ି ତହୁଁ ବିନୟେ ଭାଷିଲେ ।
ପୁଣ ପୁଣ ସ୍ତୁତି ସେହୁ କରଇ ବଖାଣ
ଦେଖିଣ ତାଙ୍କୁ ହରଷ ହେଲେ ନାରାୟଣ ।
ମରକତ କୁଣ୍ଡଳ କି ସୂର୍ଯ୍ୟ ଶୀତକର
ନବରତ୍ନ ପଦକ ଯେ ନାନା ମଣିହାର ।

ସପତଶାଖା ମୁକୁଟ ଶିରେ ଶୋଭାବନ
କରେ ଶଙ୍ଖ ଚକ୍ର ଶୋଭା ଜଗତମୋହନ ।
ଦେଖି ଧନଞ୍ଜୟ ଭୟେ ଶୋଭା ଗଡ଼ଘାଲି
କୋଳରେ ଧରିଣ ଦେବ ଦିବ୍ୟ ବାକ୍ୟ ବୋଲି ।
ଅର୍ଜୁନକୁ ଘେନି ମରକତ ଶିଳାପରେ
ବସି ପଚାରନ୍ତେ ଧୀରେ ଧୀରେ ଚକ୍ରଧରେ ।
ଧନ୍ୟ ଧନ୍ୟ ଧନଞ୍ଜୟ ଚିହ୍ନିଲୁ ତୁ ମୋତେ
ତୁ ମୋହର ପ୍ରାଣର ଯେ ଅଟୁ ପଞ୍ଚଭୂତେ ।
ତେଣୁ ସିନା ତୁ ଏ ରୂପ ଚିହ୍ନିଲୁ ମୋହର
ଏତେ ବୋଲି ଦେବ ପୁଣି କଲେ ତାଙ୍କୁ କୋଳ ।
ବୋଲନ୍ତି ଯେ ଅର୍ଜୁନଙ୍କୁ ଚାହିଁ ପୀତବାସ
କି କାର୍ଯ୍ୟେ ତୁ ଧନଞ୍ଜୟ କଲୁ ବନବାସ ।
ସହଦେବଙ୍କୁ ପୁଣି ସେ କରନ୍ତି ପ୍ରଶଂସା
ଦେଖିଲା ପ୍ରାୟ ମୋତେ ସେ କହିଲା ଭବିଷ୍ୟା ।
ଯେଉଁ ସ୍ୱରୂପେ ତୋତେ ମୁଁ ଦେଖେ ପର୍ବତର
ସେ ସ୍ୱରୂପେ କହିଲା ମୋ ଆଗେ ମନ୍ତ୍ରୀବର ।
ଧନ୍ୟ ଆରେ ସହଦେବ ମନ୍ତ୍ରୀ ଅଟୁ ତୁହି
ତୋର ଥାନ୍ତେ ମୋର ସଖା ବନକୁ ଆସଇ ।
ଏସନ ପ୍ରଶଂସା ସହଦେବ କଲେ ହରି
ଅର୍ଜୁନ ହିଁ ମନେ ତାଙ୍କୁ ପ୍ରଶଂସା ହିଁ କରି ।
ଶ୍ରୀହରି ଯେ ପଚାରନ୍ତେ ହସିଲେ ଅର୍ଜୁନ
ସାବଧାନ ହୋଇ ତୁମ୍ଭେ ଶୁଣ ଭଗବାନ ।
ଦ୍ରଉପଦୀ ଦେବୀଙ୍କର ରତିରସ ବିଧି
ଯାହାକି ସେ ଜ୍ୟେଷ୍ଠଭାଇ ଥିଲେକ ସମ୍ପାଦି ।
ଏକର ରମଣ ଯେବେ ଆରେକ ଦେଖଇ
ଦ୍ୱାଦଶ ବରଷ ସେହି ବନବାସ ଯାଇ ।
ଏକଦିନେ କାହୁଁ ଏକ ବ୍ରାହ୍ମଣ ଯେ ଆସି
ବହୁତ କହିଲେ ମୋତେ ଦ୍ୱାରେ ଯେ ନିବେଶି ।
ଏହିକ୍ଷଣି ମୋ ପାଶକୁ ଯୁଧିଷ୍ଠିଙ୍କୁ ଆଣ
ନୋହିଲେ ସମସ୍ତେ ଭସ୍ମ ଯିବ ମୋ କ୍ରୋଧେଣ ।
ଗୁପତ କଥା ଏ ଅଛି ତାଙ୍କୁ ମୁଁ କହିବି
ବେଗେ ଘେନିଆସ ଯାଇ ପାଣ୍ଡବ ବାସବୀ ।
ତାହାଙ୍କର ଆଜ୍ଞାରେ ମୁଁ ଭିତରକୁ ଗଲି
ଯୁଧିଷ୍ଠି ପାଞ୍ଚାଳୀଙ୍କର ଏକାନ୍ତ ଦେଖିଲି ।
ଲେଉଟି ଦୁଆରେ ଆସି ହୁଅନ୍ତେ ସତ୍ୱର
ସେଠାରେ ବ୍ରାହ୍ମଣ କେଣେ ହୋଇଲେ ଅନ୍ତର ।
ସେ ନ୍ୟାୟରୁ ବନବାସ ହୋଇଛି ମୋହର
ବନେ କଷଣ ବହୁତ ହେଲା ଦାମୋଦର ।
ଅର୍ଜୁନ ମୁଖୁ ଶୁଣିଣ ତୋଷ ଭଗବାନ
ମନ୍ତ୍ରୀ କହିଥିଲେ ତାଙ୍କୁ ଯେତେକ ବିଧାନ ।

ଆଜ୍ଞା ଦେଲେ ତାଙ୍କୁ ପୁଣି କମଳାର ପତି
ଚାଲ ଏବେ ଯିବା ବାବୁ ପୁର ଦ୍ୱାରାବତୀ ।
ଅର୍ଜୁନ ବୋଇଲେ ପୁଣି ଯୋଡ଼ି କରପତ୍ର
ଅରଣ୍ୟକୁ ଅଇଲି ମୁଁ ସତ୍ୟ ପଦ୍ମନେତ୍ର ।
ସର୍ବେ ଚାରିବର୍ଷ ଷଡ଼ମାସ ତେରଦିନ
ଏତିକି ଦିନ ସେବିଣ ରହିଲି ଅରଣ୍ୟ ।
ସାତବର୍ଷ ପାଞ୍ଚମାସ ଷୋଳଦିନ ପରେ
କରିବି ଦର୍ଶନ ତୋତେ ଦ୍ୱାରାବତୀ ପୁରେ ।
ଶ୍ରୀହରି ଅର୍ଜୁନ ଦୁହେଁ କରନ୍ତେ ବିଚାର
କହନ୍ତି ଯେ ମନ୍ଦ ମନ୍ଦ ହାସ୍ୟେ ଚକ୍ରଧର ।
ଆଜ ଚଇତ୍ର କୃଷ୍ଣ ପକ୍ଷର ତ୍ରୟୋଦଶୀ
ମହାବାରୁଣୀ ଯୋଗ ଯେ ଗଙ୍ଗାରେ ପଡ଼ିଛି ।
ଯେବେ ଆଜ ଥାନ୍ତେ ଆମ୍ଭେ ଦ୍ୱାରାବତୀପୁରେ
ସ୍ନାନ କରିଥାନ୍ତେ ପାପନାଶିନୀର ନୀରେ ।
ଅର୍ଜୁନ ବୋଇଲେ ହରି ସେହୁ ସୁରେଶ୍ୱରୀ
ଆସିବେ ଏଠାରେ ସ୍ନାନ କର ଚକ୍ରଧାରୀ ।
ହସି ପୁଣି ପଚାରନ୍ତି କମଳାର ପତି
କି ରୂପେ ଏଥେ ଆସିବେ ଧବଳା ମୁରତି ।
ଅର୍ଜୁନ ବୋଇଲେ ଯାର ପାଦରୁ ସମ୍ଭୂତ
ତାହାକୁ ଏହି କଥା କି ଅଟେ ବିପରୀତ ।
ଶ୍ରୀହରି ବୋଇଲେ ସେହି ଅଛନ୍ତି ତ ଦୂରେ
ଭଗୀରଥ ଆଣିଥିଲେ କହିଲେ ପୃଥ୍ୱୀରେ ।
ଆନ କେ ତାହାକୁ ଏଥେ ଆଣିବ ଅର୍ଜୁନ
ଏହା ଶୁଣି ବୋଇଲେ ଯେ ପଣ୍ଡୁର ନନ୍ଦନ ।
ଭୋଦେବ ଏବେ ତୁମ୍ଭର ଆଜ୍ଞା ପରମାଣେ
ଆସିବେ ସେ ଗଙ୍ଗାଦେବୀ କର ଅବଧାନେ ।
ଶୁଣିଣ ହସନ୍ତି ସେ ଯେ କମଳାର ବର
ଭଗୀରଥ ପ୍ରାୟ ଧର୍ମ ଥିବ ହୋ ଯାହାର ।
ତପସ୍ୟା ବଳରେ ତାଙ୍କୁ ଆଣିଲେ ଯେ ରାୟ
ତୁମ୍ଭେ ବା ଆଣିପାରିବ ତାହା ଧନଞ୍ଜୟ ।
ଶୁଣି ବୀରବର ଆଜ୍ଞା ପ୍ରଭୁଙ୍କର ଘେନି
ଧନୁରେ ନାରାଚ ଏକ ବସାଇଲେ ଆଣି ।
ଅରକ୍ଷ ବୋଲି ପିଶାଚ ଥିଲା ଏକ ଜଣ
ଧନୁର୍ବେଦ ତାହାଠାରୁ ପଢ଼ିଲେ ଅର୍ଜୁନ ।
ସେ ପୁଣି ଜଳତରଙ୍ଗ ବୋଲି ଏକ ଶର
ଅର୍ଜୁନଙ୍କୁ ଅନୁଗ୍ରହେ ଦେଇଥିଲା ବର ।
ମନ୍ତ୍ର ସୁମରି ବିନ୍ଧିଲେ ତାହା ବୀରମଣି
ବୋଇଲେ ଘେନି ଆସିବୁ ବରୁଣର ରାଣୀ ।
ସେ ଅଘାନାଶିନୀ ଦେବୀ କରନ୍ତୁ ବିଜୟେ
ତୁମ୍ଭେ ତାଙ୍କ ଆଗେ ଥିବ ପଛେ ଥିବ ମାୟେ ।

ଆଜ୍ଞାରେ ନାରାଚ ତହୁଁ ଚଳିଲା ତକ୍ଷଣ
ନିଃଶ୍ୱାସକେ ଗଲା ତିନିସହସ୍ର ଯୋଜନ ।
ଦେବୀର ଛାମୁରେ ମିଳି କରଯୋଡ଼ି କହି
ହରିଅର୍ଜ୍ଜୁନ ପେଶିଲେ ମୋତେ ମହାମାଈ ।
ତୁମ୍ଭଙ୍କୁ ନେବାକୁ ମାତ କରେ ଅବଧାନ
ମଣିଭଦ୍ରା ପରବତେ ବିଜେ ଦୁଇଜଣ ।
ଶୁଣି ମାତ ଶର ବାଣୀ ହୃଦେ କଲେ ଲୟେ
ଜାଣିଲେ ଯେ ଶ୍ରଦ୍ଧା କରିଛନ୍ତି ଦେବରାୟେ ।
ହରି ଅର୍ଜ୍ଜୁନ ଅଛନ୍ତି ବସି ଏକସ୍ଥାନ
ନ ଗଲେ ତ ବଳେ ଘେନି ଯିବ ଏହି ବାଣ ।
ଏତେକ ବିଚାରି ମନେ ଧବଳାଙ୍ଗୀ ମୂର୍ତ୍ତି
ଆପଣା ମନ ମଧ୍ୟରେ ଲଭିଲେ ତୃପତି ।
ଆମ୍ଭ ଆଗେହୋଇ ବାଟ ବଢ଼ା ଆହେ ବାଣ
ତୁମ୍ଭ ପଛେ ପଛେ ଜାଣ ଆମ୍ଭର ପ୍ରୟାଣ ।
ଆଜ୍ଞାରେ ତ୍ୱରିତ ହୋଇଗଲା ସେହି ଶର
ଏସନ ବିଚିତ୍ର ଶୋଭା କିବା ଅହିବର ।
ସଙ୍ଗମ ପରିଘଲତା କିବା ହେମଲତା
ତାହାର ପଛରେ ବିଜେ ଜଗତର ମାତା ।
ପାତାଳ ଭେଦ କରିଣ ବିଜେ କଲେ ଯହୁଁ
ମଣିଭଦ୍ରା ପର୍ବତରେ ପ୍ରବେଶିଲେ ତହୁଁ ।
ଶ୍ୱେତକଳ୍ପ ନାମେ ଅଛି ଏକ ବୃକ୍ଷବର
ସେ କ୍ରୋଟ ମଧ୍ୟରୁ ସିନ୍ଧୁ ହୋଇଲା ବାହାର ।
ହରି ଅର୍ଜ୍ଜୁନ ଏ ଦୁହେଁ ଦେଖନ୍ତି ଉଭାରି
ଶରପଛେ ବିଜେ କରି ଅଛି ମାହେଶ୍ୱରୀ ।
ଗୋବିନ୍ଦର ପାଦପଦ୍ମେ କଲେକ ଭକତି
ଅନ୍ତର୍ଗତେ ତାହା ଜାଣି ପାରିଲେ ଶ୍ରୀପତି ।
ଶର ତତ୍‌କ୍ଷଣେ ପୁଣ ନିଜରୂପ ହୋଇ
ରଖିଲେ ତୂଣୀରେ ତାକୁ ବାସବୀ ନେଇ ।
ଗଙ୍ଗାର ଚରଣ ତଳେ ପଡ଼ିଲେକ ପାର୍ଥ
ପାଦେ ପଡ଼ି କଲେ କୋଟିଏକ ଦଣ୍ଡବତ ।
ଆନନ୍ଦମନା ହୋଇଲେ ଶଙ୍ଖ ଚକ୍ରଧର
ପାର୍ଥଙ୍କୁ ଘେନି ସଙ୍ଗରେ ପଶିଲେ ଜଳର ।
ସ୍ନାନ ସାରିଲେ ଶ୍ରୀହରି ତାହାଙ୍କର ତୁଲେ
ସନ୍ଧ୍ୟା ତରପଣ କରି ଦେବେ ଜଳ ଦେଲେ ।
ତରଙ୍ଗିଣୀ ବୋଲି ନଦୀ ନାମେ ସେ ଦିଅନ୍ତି
ଦେବାଙ୍ଗ ପାଟ ବାନ୍ଧିଲେ ଶିରରେ ଶ୍ରୀପତି ।
ବୋଇଲେ ସୁରଭି ତୁମ୍ଭେ ଆମ୍ଭ ଆଜ୍ଞା ଶୁଣ
ମହାବାରୁଣୀ ପଡ଼ିବ ଜାଣ ଯେଉଁଦିନ ।
ସତ୍ୟ ତ୍ରେତା ଦ୍ୱାପର ଏ କଳିଯୁଗ ଚାରି
ଏହି ଶର ଆଗେ ଥିବ ଅହିରୂପ ଧରି ।
ମ୍ଳେଚ୍ଛଜନ ମୁକ୍ତି ହେବେ ତୋହର ନିମନ୍ତେ
ଅବଶ୍ୟ ବିଜେ କରିବ ଦେବୀ ଶରପଥେ ।
ଶୁଣି ମାହେଶ୍ୱରୀ ବିଜେ ସାବଧାନେ ପୁଣି
ପାଦରେ ପ୍ରଣାମ କଲେ ଆସି ସୁଲକ୍ଷଣୀ ।
ଭୋ ପ୍ରଭୁ ତୁମ୍ଭର ଆଜ୍ଞା ହେଲା ଯେଉଁରୂପେ
ପାଳିବି ଆଜ୍ଞା ତୁମ୍ଭର ମୁହିଁ କଳ୍ପେ କଳ୍ପେ ।
ପଦ୍ମପାଦେ ପଡ଼ି ଦେବୀ କରିଲେ ବିଜୟେ
ଆପଣା ଗୃହେ ପ୍ର[illegible] ଆସି ଦେବୀ ହୁଏ ।
ଜୟ ତୁ ଜନପାବନୀ ଜହ୍ନୁ ଋଷିସୁତା
ଜଗତର ମାତା ହେମବନ୍ତର ଦୁହିତା ।
ତୋହର ପବିତ୍ର ନୀର ପଡୁ ମୋର ଶିରେ
ଶାରଳା ଦାସକୁ ଭୃତ୍ୟ କର ତୋ ପୟରେ ।

—o—

## ଖାଣ୍ଡବବନ ଦାହ

ଏଥୁ ଅନନ୍ତରେ ମନୁ ଶୁଣ ରସ ବାଣୀ
ବୋଲନ୍ତି ଯେ ଅର୍ଜ୍ଜୁନକୁ ଚାହିଁ ଚକ୍ରପାଣି ।
ତୁହି ବନକୁ ଅଇଲୁ ଯେବେ ଫାଲଗୁନି
ଶତ୍ରୁମୁଖେ ଭାଇ ଦେଇ ହେଲୁ ବନଗାମୀ ।
ଅର୍ଜ୍ଜୁନ ବୋଇଲେ ଦେବ ଏ ବଡ଼ ଦୁର୍ଲ୍ଲଭ
କଉତୁକେ ଜିଣିଲି ମୁଁ ଦେବ ସଦାଶିବ ।
ତୋଷେ ମୋତେ ଶସ୍ତ୍ର ଦେଲେ ଶଙ୍କର ପାର୍ବତୀ
ହସ୍ତିନାରେ ଥିଲେ କାହୁଁ ଏମାନ ପାଆନ୍ତି ।
ଗୋବିନ୍ଦ ବୋଇଲେ ତୁ ଯେ ନିଶ୍ଚିତ ହୋଇଲୁ
ଆମ୍ଭଙ୍କୁ ପାସୋରି ମନୁ କେମନ୍ତେ ମୂର୍ଚ୍ଛିଲୁ ।
ଏହା ଶୁଣିଣ ବୋଇଲା ବୀର ସବ୍ୟସାଚୀ
ସତ୍ୟ ଲଙ୍ଘିଲେ ପ୍ରାଣୀର ମୁହିଁ କାହିଁ ଅଛି ।
ସତ୍ୟ ଯାହାକଲି ତାହା ଲଙ୍ଘିବି କେମନ୍ତେ
ବିଶେଷେ ପୂଜିବଇଁ ମୁଁ ଧର୍ମ ପାଦଗତେ ।
କୃଷ୍ଣ ଅର୍ଜ୍ଜୁନ ହୁଅନ୍ତେ କଥାବାର୍ତ୍ତା ବେନି
ବ୍ରାହ୍ମଣ ଜଣେ ଆସଇ ତମ୍ବାପାତ୍ରୀ ଘେନି ।
ଲୁଦୁବୁଦୁ ଶରୀର ତା ଦେହ ଶଉଳିଆ
ମହାଯୋଗୀ ବଢ଼ିଅଛି ଯକୃତ ଯେ ପ୍ଳୀହା ।
ଖଣ୍ଡେ ଦୂରେ ଆସି ବିପ୍ର ବସେ ଲୋଚିହୋଇ
ଅଶକତ ଅଙ୍ଗଯାକ ଚାଲି ନ ପାରଇ ।
ଦଦରା ଛତା ଖଣ୍ଡିଏ କାନ୍ଧରେ ଗାମୁଛା
ଧୋତି ମଳିନ ଉତ୍ତରୀ ପଇତାହିଁ ଲୋଚା ।
ଦ୍ୱାଦଶ ଚିତା ହୃଦରେ ଶ୍ରୀବତ୍ସ ଲାଞ୍ଛନ
ଦୁର୍ବଳ ଦରିଦ୍ର ଅତି ଅଶକତେ କ୍ଷୀଣ ।
ଗିରି ଉପରକୁ ବିପ୍ର ନ ପାରଇ ଉଠି
ପାଞ୍ଚ ପାହୁଣ୍ଡ ଯାଇ ସେ ବସେ ପୁଣି ଫୁଟି ।

ହରି ଅର୍ଜ୍ଜୁନ ଏ ଦୁହେଁ କଥା ହେଉଥିଲେ
ଅଶକତ ବିପ୍ର ଦେଖି ଲେଉଟି ଚାହିଁଲେ ।
ଅର୍ଜ୍ଜୁନ ବୋଇଲେ ହରି ଦ୍ୱାପର ଯୁଗରେ
ଏଡ଼େ ଦରିଦ୍ର ତ ଦେଖିନାହିଁ ମର୍ତ୍ତ୍ୟପୁରେ ।
ଦେହ ଅଶକତେ ବିପ୍ର ନ ପାରଇ ଚାଲି
ପ୍ରବଳ ରୋଗରେ ଦେବ ପଡୁଅଛି ଢଳି ।
ଏ ମହାକଷ୍ଟ ଅଛଇ ବ୍ରାହ୍ମଣ ଜନକୁ
କିସ ଦ୍ରବ୍ୟ ଦେବା ଏହି ଦରିଦ୍ର ବିପ୍ରକୁ ।
ଏକାଳେ କର ପ୍ରସାରି ଉଭା ସେ ଛାମୁରେ
ବେଦଧ୍ୱନି ଦ୍ୱିଜବର କଲା ଉଚ୍ଚସ୍ୱରେ ।
ତାହା ଶୁଣି ଅର୍ଜ୍ଜୁନ ଯେ ବୋଲଇ ସଧୀରେ
କେବଣ ଦିଗର ତୁହି ଅଟୁ ଦ୍ୱିଜବରେ ।
ବେଦ ଅଧ୍ୟୟନ କର କେବଣ କାରଣ
କିସ ମନୋରଥ ତବ କର ହେ ବଖାଣ ।
ଏସନ ବୋଲି ପଚାରେ ବାସବର ବାଳେ
ଏ ବଚନ ଶୁଣି ବିପ୍ର ବୋଲଇ ବିକଳେ ।
ବୋଇଲେ ଦ୍ୱିଜ କ୍ଷତ୍ରିୟ ତୁ ପରମ ଯୋଗୀ
ମୁହିଁ ଦରିଦ୍ର ଆବର ହେଲି ବଡ଼ରୋଗୀ ।
ଦରିଦ୍ରରେ ଦାନ ବାବୁ ଅତି ବଡ଼ ପୁଣ୍ୟ
ଅପୂଜା ଦେବତା ପୂଜା କରଇ ଯେ ଜନ ।
କ୍ଷୁଧାର୍ତ୍ତୀକି ଅନ୍ନ ଦିଏ ତୃଷାର୍ତ୍ତୀକି ଜଳ
ରୋଗୀକି ଔଷଧ ସେହି ଦିଏ ସଦାକାଳ ।
ଶିର ଛେଦନ କାଳେ ଯେ ପ୍ରାଣୀ ରକ୍ଷାକରି
ଅପ୍ରତିଷ୍ଠା ବାମ୍ପୀ କୂପ ତଡ଼ାଗ ପୋଖରୀ ।
ଏମାନଙ୍କୁ ଯେଉଁଜନ କରଇ ପ୍ରତିଷ୍ଠା
ଗୁରୁଜନ ସନମାନେ ଥାଇ ଯାର ନିଷ୍ଠା ।
ଅନାଥ ଲୋକଙ୍କୁ ଯେହୁ ସମ୍ଭାଳି ରଖଇ
ପର ଦୁଃଖରେ ଦୁଃଖିତ ଯେଉଁ ପୁଣ୍ୟଦେହୀ ।
ଅମୂର୍ତ୍ତି ମୂର୍ତ୍ତି କରଇ ଯେଉଁ ଭାଗ୍ୟବନ୍ତା
ପ୍ରତ୍ୟକ୍ଷେ ଜାଣ ମହାତ୍ମା ସେ ଧର୍ମ ଦେବତା ।
ବଚନ ଅମୃତ ଯେଣୁ କହେ ସର୍ବକାଳେ
ଏମାନେ ସ୍ଥାପିଲେ ଧର୍ମ ରକ୍ଷା ହୁଏ କୁଳେ ।
ତୁମ୍ଭ ଦୁହିଁଙ୍କି ଯେ ମୁହିଁ ନ ପାରିଲି ଚିହ୍ନି
ଏକମୂର୍ତ୍ତି ଏକ ଦେବ ଦିଶୁଅଛ ବେନି ।
ମୁଁ ଦରିଦ୍ର ବିପ୍ର ପୁଣି ଅଟେ ବଡ଼ ଦୁଃଖୀ
ମୋତେ ରକ୍ଷାକଲେ ଧର୍ମ ଯଶ ଯିବ ରଖି ।
ଅର୍ଜ୍ଜୁନ ବୋଇଲେ ଅଶକତ ଦ୍ୱିଜବର
ଆମ୍ଭେ ବେନିଭ୍ରାତା ପୁଣି ଅଟୁ ବଚନର ।
ବ୍ରାହ୍ମଣ ବୋଲେ ଦରିଦ୍ରଜନ ମୁହିଁ ବୋଲି
ଧନବସ୍ତ୍ର କିଛି ମୁହିଁ ମାଗି ନ ଅଇଲି ।
ରୋଗର ପ୍ରବଳେ ମୋର ଅଶକତ କାୟ
ଏତେକ ଭଲରେ ଅଛି ଜୀବନ ଉପାୟ ।
ବଡ଼ଲୋକ ପୁତ୍ର ମୁହିଁ ଅଟେ ବଡ଼ ଜାଣ
ଚାରି ବେଦରେ ମୁହିଁ ଯେ ନିର୍ଜିତ ବ୍ରାହ୍ମଣ ।
ଦାନେ ଶୂରବନ୍ତ ମୁହିଁ ମନ୍ତ୍ରେ ଶୁଚିବନ୍ତ
ମେଣ୍ଟିଣ ନ ଗଲା ମୋର କର୍ମର ଲିଖିତ ।
ଶୋକଭର ହୋଇ ବିପ୍ର କରେ ବେଦଧ୍ୱନି
ପାର୍ଥ ବୋଲେ ଦେହ ଥରେ ତୋର ବେଦ ଶୁଣି ।
କି ମାଗିବ ବେଗେ ମାଗ କିନା ହୋ ପଣ୍ଡାଏ
ଯେବେ ନିର୍ମଳ ହୋଇବ ଏ ତୋହର କାୟେ ।
ଶଙ୍ଖ କମଣ୍ଡଳୁ କାଢ଼ି ପୂରାଇଣ ପାଣି
ପାର୍ଥର ହସ୍ତରେ ବିପ୍ର ନେଇ ଦେଲା ପୁଣି ।
ସଂକଳ୍ପ କରି ମୁଖରେ ବାକ୍ୟକୁ ଉଚ୍ଚାରି
ଅସଂକଳ୍ପେ ଦାନ ଜାଣ ଅର୍ଦ୍ଧେ ପୁଣ୍ୟ ହାରି
ଡାହାଣ ବର୍ତ୍ତକ ଶଙ୍ଖେ ଜଳତିଳ ଭରି
ପୁଷ୍ପ ଚନ୍ଦନ ତୁଳସୀ କୁଶ ମନ୍ତ୍ର ବାରି ।
ଦ୍ୱିଜବର ଦେଲା ନେଇ ଅର୍ଜ୍ଜୁନ ହସ୍ତରେ
ବେଦମନ୍ତ୍ର ସଂକଳପ ପଢ଼ାନ୍ତି ଉଚ୍ଚରେ ।
ଦାନ ଦିଅନ୍ତି ଉପର ହସ୍ତେ ସବ୍ୟସାଚୀ
ତଳହସ୍ତ ପାତିଅଛି ଦ୍ୱିଜ ହୋଇ ଶୁଚି ।
ଉଚ୍ଚାରି ଅଭୟ ନାମ ଗୋତ୍ର ବେନିଜନ
ବିପ୍ର ହସ୍ତେ ଜଳ ଦେଲେ ପାଣ୍ଡବ ଅର୍ଜ୍ଜୁନ ।
ସ୍ୱସ୍ତିକାୟ ଗାୟତ୍ରୀ ସେ ପଢ଼ି ଦ୍ୱିଜବର
ବ୍ରାହ୍ମଣ ସାକ୍ଷୀ କରଇ ଦଶଦିଗପାଳ ।
ସତ୍ୟ ସତ୍ୟ ଉଚ୍ଚାରି ସେ ବୋଇଲା ପାଣ୍ଡବ
ଏ ମୋର ଦୃଢ଼ ବଚନ ମାଗ ବିପ୍ରଦେବ ।
ବ୍ରାହ୍ମଣ ସାକ୍ଷୀ କରଇ ଇନ୍ଦ୍ର ସୂର୍ଯ୍ୟ ଚାହିଁ
ସନକାଦି ଦଶ ବିଶ୍ୱ ଦେବଙ୍କୁ ଅନାଇଁ ।
ସତାଇଶ ନକ୍ଷତ୍ର ଯେ ଆମର ପବନ
ଅସ୍ତୁକାର ପୁରୁଷ ଯେ ଦେବତା ବରୁଣ ।
ଗୋବିନ୍ଦଙ୍କ ମୁଖ ଚାହିଁ ଦାନ ଏବେ ଦେବ
ମୁହିଁ ଦାନ ମାଗୁଅଛି ସାକ୍ଷୀ ହୋଇଥିବ ।
ଗୋବିନ୍ଦ ବୋଇଲେ ଆମ୍ଭେ ହୋଇଲୁ ଯେ ସାକ୍ଷୀ
ମାଗ କିବା ଦ୍ୱିଜବର ସାକ୍ଷୀରେ କି ଅଛି ।
ବ୍ରାହ୍ମଣ ବୋଇଲା ଶୁଣ କ୍ଷତ୍ରିୟ ରାଜନ
ଖାଣ୍ଡବ ବନକୁ ତୁହି ଦେବୁ ମୋତେ ଦାନ ।
ମୋହର ଶରୀରେ ହେଲା ଲୁଦୁବୁଦୁ ବ୍ୟାଧି
ଖାଣ୍ଡବ ବନେ ପଶିଣ ଖାଇବି ଔଷଧି ।
ଅର୍ଜ୍ଜୁନ ବୋଇଲେ ଏହି ଔଷଧ ଛାରକୁ
ଏତେ ଜଣ ସାକ୍ଷୀ ରଖି ମାଗିଲ ଆମ୍ଭଙ୍କୁ ।

ଦରିଦ୍ର ଅବସ୍ଥା ଯେତେବେଳେ ପାନ୍ତି ପ୍ରାଣୀ
ଦାତବ୍ୟ ଶକତି ସେ ତ କେବେ ହେଁ ନ ଜାଣି ।
ଦରିଦ୍ର ଅବସ୍ଥା ପାଇଅଛି ଦ୍ୱିଜମଣି
ଅଦରିଦ୍ର ସମ୍ପଦ ମୁଁ ଦିଅନ୍ତି ଏକ୍ଷଣି ।
ନିଷ୍ଠୁର ବଚନ ଶୁଣି ଅର୍ଜୁନ ବିମୁଖ
ଚାହିଁଲା ସେ ପୁଣି ନାରାୟଣଙ୍କର ମୁଖ ।
ଦେଖିଲେଟିକି ଭୋ ସ୍ୱାମୀ ଭିକ୍ଷୁକ ଚରିତ
ଏ ଛାର କଥାକୁ ପୁଣି ଏଡ଼େ ଦୃଢ଼ବ୍ରତ ।
ଜଗନ୍ନାଥ ବୋଇଲେ ତୁ ଶୁଣ ଫାଲଗୁନି
ଏ ବ୍ରାହ୍ମଣ ଅଟଇ ଯେ କାଳାନଳ ବହ୍ନି ।
ଗୋବିନ୍ଦଙ୍କ ଶ୍ରୀମୁଖରୁ ଏସନକ ଶୁଣି
କରପତ୍ର ଯୋଡ଼ିକରି କହେ ଫାଲଗୁନି ।
ଏ ଅଗ୍ନିଦେବ କେମନ୍ତେ ଜାଣିଲ ଗୋସାଇଁ
ଏଥିର ଚରିତ ମୋତେ କହିବା ବୁଝାଇ ।
ଶ୍ରୀହରି ବୋଇଲେ ସହଦେବ ଯେ କହିଲା
ଏ ଅଗ୍ନି ସକାଶୁ ତୋର ବନବାସ ହେଲା ।
ଏହି ଅଗ୍ନି ଦେବତା ଏ ମାୟାରୂପ ହୋଇ
ଯୁଧିଷ୍ଠିଙ୍କୁ ଆଣ ବୋଲି କଟାଳିଲେ ଯାଇଁ ।
ମାୟା ନ ଜାଣି ତୁ ଅନ୍ତଃପୁରେ ପଶନ୍ତେଣ
ଏଣେ ଏ ଅଗ୍ନିଦେବତା ହେଲେ ଅନ୍ତର୍ଦ୍ଧାନ ।
ସତ୍ୟବାଦୀ ପୁରୁଷ ତୁ ବନକୁ ଅଇଲୁ
କକ୍ଷାବନ୍ତପଣେ ବାବୁ ବନରେ ଭ୍ରମିଲୁ ।
ଗୋବିନ୍ଦଙ୍କ ମୁଖ ଚାହିଁ ଅର୍ଜୁନ ବୋଇଲା
ଅଗ୍ନିଦେବଙ୍କ ଏ ବ୍ୟାଧି କାହିଁପାଇଁ ହେଲା ।
ଏହା ସଂକ୍ଷେପିଣ ମୋତେ କହ ଜନାର୍ଦ୍ଦନ
ତେବେ ମୋହର ପ୍ରତ୍ୟୟ ହୋଇବଟି ଜାଣ ।
ଅର୍ଜୁନକୁ ଚାହିଁ ଦେବ ଶ୍ରୀହରି କହନ୍ତି
ଶ୍ରୀରଙ୍ଗ ଅଧରେ ମନ୍ଦ ମନ୍ଦ ଯେ ହସନ୍ତି ।
ଭବନାମେ ସମ୍ବସରେ ପୂର୍ବେ ସତ୍ୟଯୁଗେ
ଅପାର ଘୃତ ଖାଇଲା ଶ୍ୱେତରାଜା ଯଜ୍ଞେ ।
ଘୃତ ଖାଇ ଖାଇ ପୁଣି ହେଲା ମନ୍ଦଅଗ୍ନି
ଲୁଦୁବୁଦୁ ବ୍ୟାଧି ରହିଗଲା ଯୁଗ ତିନି ।
ଗୋବିନ୍ଦଙ୍କ ବଚନରେ ପ୍ରଣମିଲା ପାର୍ଥ
ଅଟ କି ମହାତ୍ମା ତୁମ୍ଭେ ଅଗ୍ନି ଦଇବତ ।
ବୋଇଲେ ସେ ଦ୍ୱିଜବର ଆମ୍ଭେ ଅଗ୍ନି ଅଟୁ
ଆପଦ ଖଣ୍ଡିବା ପାଇଁ ବନେ ତୋତେ ଭେଟୁ ।
ଅର୍ଜୁନ ବୋଇଲେ ଅଟୁ ତୁ ପରମଯୋଗୀ
କେବଣ ପାତକେ ତୁମ୍ଭେ ହେଲ ବଡ଼ରୋଗୀ ।
ଶୁଣନ୍ତି ପାର୍ଥ କହନ୍ତି ଦେବ ବୈଶ୍ୱାନର
ସତ୍ୟଯୁଗ ଶ୍ୱେତ ବୋଲି ଏକ ନୃପବର ।
ଦେବଯଜ୍ଞ କରିବାକୁ କଲା ସଙ୍କଳପ
ସେ ଯଜ୍ଞ କଲେ ଖଣ୍ଡନ ହୁଏ ମହାପାପ ।
ପିତାମହ ନିକଟକୁ ଗଲା ଆଗ ବେଗେ
ବିନୟ ଭାବରେ ଜଣେ ପୁରୋହିତ ମାଗେ ।
ଭୋ ବିଧାତା ମୋତେ ତୁମ୍ଭେ ପ୍ରସନ୍ନ ହୋଇବ
ଦେବଯଜ୍ଞ କରିବି ମୁଁ ପୁରୋହିତ ଦେବ ।
ବଶିଷ୍ଠ ଯେ ଥିଲେ ପିତାମହଙ୍କ ଛାମୁରେ
ପୁରୋହିତ ହୁଅ ଶ୍ୱେତ ରାଜାର ଯଜ୍ଞରେ ।
ବଶିଷ୍ଠ ଅଇଲେ ଶ୍ୱେତ ରାଜାକୁ ଯେ ଘେନି
ଆମ୍ଭେ ବରଣ କରିବୁ କାଳାନଳ ଅଗ୍ନି ।
ଆବର୍ତ୍ତକ ସମ୍ବର୍ତ୍ତକ ମୋ ଶ୍ରୁବ ପ୍ରୋକ୍ଷଣୀ
କୁଣ୍ଡେ ବରଷିବେ ଘୃତ ହସ୍ତୀ ଶୁଣ୍ଡଜାଣି ।
ଘୃତ ବରଷିବେ ସେହି ବର୍ଷାଧାର ପରି
ଆଗେ ଯାଗନିକ ଆମ୍ଭେ ହୋଇଲୁ ତୋହରି ।
ବଶିଷ୍ଠଙ୍କ ଏ ବଚନେ ଗଲା ରାଜ ଦେବା
ଘୃତ ସମୁଦ୍ରକୁ ବାରବର୍ଷ କଲା ସେବା ।
ପ୍ରସନ୍ନ ହୋଇ ବୋଇଲେ ତାକୁ ରତ୍ନାକର
ମାଗ ଶ୍ୱେତରାଜା ଯେଣେ କାର୍ଯ୍ୟ ଅଛି ତୋର ।
ଭୋଦେବ ରତ୍ନାକର ମୁଁ କରିବଇଁ ଯାଗ
ପୁରୋହିତ ବଶିଷ୍ଠ ଯେ ଦେବେ ହବିର୍ଭାଗ ।
ଯଜ୍ଞ ମୋର ଚଉବିଂଶ ବରଷ ପର୍ଯ୍ୟନ୍ତେ
ବଶିଷ୍ଠଙ୍କ ପ୍ରୋକ୍ଷଣୀକି ଘୃତ ଦେବୁ ମୋତେ ।
ଘୃତ ସମୁଦ୍ର ବୋଇଲା ଯେତେକ ଅଣ୍ଟଇ
ବଶିଷ୍ଠଙ୍କ ଘୃତ ମୁହିଁ ନିଶ୍ଚୟ ଦେବଇଁ ।
ଘୃତ ସମୁଦ୍ରକୁ ରାଜା ସମ୍ମତ କରାଇ
ବଶିଷ୍ଠ ପୁରୋହିତଙ୍କୁ ବରିଲାକ ଯାଇ ।
ସ୍ୱର୍ଗ ଗଙ୍ଗାକୂଳେ ଭୂମି ଚିରିଲେ ଲଙ୍ଗଳେ
କୃଷ୍ଣାତିଳ ନେଇ ତାର ଉପରେ ବୁଣିଲେ ।
କାର୍ତ୍ତିକ ଅନ୍ତେ ଯେ ମାର୍ଗଶିର ପରବେଶ
ଝଡ଼ିପଡ଼ିଲା ମକର ତିଳ ହିଁ ଅଶେଷ ।
ଯାଗଶାଳ ତୋଳାଇଲେ ତହିଁ ନୃପବର
ହୋମର ନିମନ୍ତେ କୁଣ୍ଡ ଖୋଳାଇ ଆବର ।
ଜଟା ହଟୀ ବଟା ବୃକ୍ଷ ଆବର କପଟୀ
ଏ ଚାରି ବୃକ୍ଷରେ ଦ୍ୱାର କଲେ ଚାରିଗୋଟି ।
ବାମଦେବ ଉଦ୍ଦାଳକ ସୁମନ୍ତ ଗୌତମ
ଚାରିଦ୍ୱାରେ ହୋଇଲେ ଏ ଚାରିହେଁ ବରଣ ।
ବ୍ରହ୍ମା ବରଣ ହୋଇଲେ ସୁଦେବ ବ୍ରାହ୍ମଣ
ଆଚାର୍ଯ୍ୟ ହୋଇଲେ ଭରଦ୍ୱାଜ ତପୋଧନ ।
ପୁରୋହିତ ବଶିଷ୍ଠ ଯେ ଯାଜ୍ଞିକ ହୋଇଲେ
ତ୍ରିଦଶ ଘେନିଣ ଯାଗ କୁଣ୍ଡ ନିବାଡ଼ିଲେ ।

ମକର ମାସ ଯେ କୃଷ୍ଣ ପ୍ରତିପଦା ତିଥି
ଅର୍କବାର ଦିନ ମେଘା ନକ୍ଷତ୍ର ପାହାନ୍ତି ।
ଗର ନାମେ କରଣ ଯେ ଶୁଭ ନାମେ ଯୋଗ
ମକର ସଙ୍କରାନ୍ତିର ତିନିଦିନ ଭୋଗ ।
ଅଶ୍ଳେଷା କର୍କଡ଼ାରାଶି ଶ୍ୱେତ ନୃପତିର
ସମ୍ପଦ ତାର ଆବର ଶୁଭ ଚନ୍ଦ୍ର ତାର ।
ବାରତିଥି କରଣ ଯେ ନକ୍ଷତ୍ର ସୁଯୋଗ
ବସିଲେ ମାହେନ୍ଦ୍ରବେଳା ଘେନି ଶୁଭଯୋଗ ।
ପୂର୍ଣ୍ଣକୁମ୍ଭ ସ୍ଥାପିଲେ ସେ ବେଦମନ୍ତ୍ର ପଢ଼ି
ଅଗ୍ନି ଆରୋପଣ କଲେ ଧରଣୀ ଉଦ୍ଧରି ।
ମେଘନ୍ତ ରାଇ ପ୍ରୋକ୍ଷଣୀ କଲେ ମହାରଷି
ଘୃତ ସମୁଦ୍ରରୁ ଆଣି କୁଣ୍ଡରେ ପରଷି ।
ବରଷନ୍ତି ହସ୍ତୀ ଶୁଣ୍ଢ ପ୍ରମାଣେ ସେ ଧାର
ଅବିଶ୍ରାମେ ଦିବରାତି ଅଷ୍ଟ ଯେ ପ୍ରହର ।
ଆମ୍ଭେ ବ୍ରାହ୍ମଣ୍ୟ ଦରିଦ୍ର ଅଟେ ଆମ୍ଭ ଜାତି
ଘୃତ ଖାଇଣ ହୋଇଲୁ ଅନେକ ତୃପତି ।
ଏମନ୍ତେ ଚୌବିଂଶ ବର୍ଷ ପରିଯନ୍ତେ ଗଲା
ଆବର୍ତ୍ତକ ସମ୍ବର୍ତ୍ତକ ଘୃତ ବରଷିଲା ।
ଲୋଭ କରିଣ ଖାଇଲୁ ଅନେକ ଯେ ଘୃତ
ପାର କରି ନ ପାରିଲୁ ସେ ଦେଲା ବହୁତ ।
ମନ୍ଦଅଗ୍ନି ଲୁଦୁବୁଦୁ ବ୍ୟାଧିବନ୍ତ ହେଲୁ
ଅତି ଲୋଭରେ ଶରୀର ଗୋଟି ନାଶ କଲୁ ।
ବାସବ ଦେବଙ୍କୁ ବାବୁ ମାଗିଲୁ ଔଷଧି
ରାଗ କରି ନ ଦେଲା ତା ମୋତେ ଜମ୍ଭଭେଦୀ ।
ବ୍ରହ୍ମା ରୁଦ୍ର ଆଦି ଦେବେ ବୋଇଲେ ମୋ ପାଇଁ
କାହାରି ହିଁ ବଚନ ନ କଲା ସୁରସାଇଁ ।
ଦେବ ଦାନବ ସବୁରି ଗର୍ଭେ ଆମ୍ଭେ ଥାଉଁ
ଯେ ଯାହା ଭକ୍ଷଇ ଆମ୍ଭେ ସେ ସମସ୍ତ ଦହୁଁ ।
ଆମ୍ଭେ ଯେତେବେଳେ ହୋଇଗଲୁ ତେଜହାନି
ଲୁଦୁବୁଦୁ ହେଲେ ସର୍ବେ ବ୍ରହ୍ମାଣ୍ଡ ଯେ ତିନି ।
ଆମ୍ଭର ବ୍ୟାଧି ଛଡ଼ାଇ ଦେଲେ ଧନଞ୍ଜୟ
ବାହୁଡ଼ି ସଂସାରଯାକ ହେବ ତେଜୋମୟ ।
ଜଣେ ରଖିଲେ ସଂସାରଯାକ ହେବ ରକ୍ଷା
ବାବୁ ଯାବତ ଚନ୍ଦ୍ରାର୍କେ ରହିବ ତୋ ଦୀକ୍ଷା ।
ସତ୍ୟ ସତାଇଶ ଲକ୍ଷ ଅଠେଶ ସହସ୍ର
ପାର କରି ନ ପାରିଲୁ ପ୍ଳୀହାରୋଗେ ଲେଶ ।
ତ୍ରେତା ବାରଲକ୍ଷ ଛୟାନବେ ସହସ୍ରବର୍ଷ
ଦ୍ୱାପର ଯେ ଆଠଲକ୍ଷ ଚୌଷଠି ସହସ୍ର ।
ପାର କରି ତ ପାରିଲୁ ପ୍ଳୀହା ମନ୍ଦଅଗ୍ନି
ଉଦ୍ଧର ଅର୍ଜ୍ଜୁନ ମୁହିଁ ତିନିଯୁଗ ରୋଗୀ ।

ଆମ୍ଭ ଆୟୁ ଘେନି ବଢ଼ିଥାଅ ତ ଅର୍ଜ୍ଜୁନ
ଏମନ୍ତ ଅଗ୍ନିଦେବର ବହୁତ କାର୍ପଣ୍ୟ ।
ଏତେ କହି ଅଗ୍ନିଦେବ କରଇ କାରୁଣ୍ୟ
ଉଦ୍ଧର ହେ ସବ୍ୟସାଚୀ ଦରିଦ୍ର ବ୍ରାହ୍ମଣ ।
ଅର୍ଜ୍ଜୁନ ବୋଇଲେ ଶୁଣ ସ୍ୱାମୀ ଦେବହରି
ଖାଣ୍ଡବ ବନଯାଏ କି ଯିବ ବିଜେ କରି ।
ଗୋବିନ୍ଦ ବୋଇଲେ ଆମ୍ଭେ ଗଲେ ତୁମ୍ଭେତୁଲେ
ଇନ୍ଦ୍ର ଅପଖ୍ୟାତି ଦେବ ଆମ୍ଭଙ୍କୁ ଦେଖିଲେ ।
ସେ ତୋହର ତାତ ପୁଣି ତୁ ତାହାର ପୁତ୍ର
କରିବ ସେ ଉପରୋଧ ତୋତେ ପୁରୁହୁତ ।
କୋପ କରିବ ଆମ୍ଭଙ୍କୁ ଦେଖି ସୁରପତି
ତୋତେ ନ ବୋଲିବ ଦେବ ଆମ୍ଭଙ୍କୁ ଆଖ୍ୟାତି ।
ଭଲା ଆମ୍ଭେ ତୋତେ ନେଇ ଅଇଲୁ ଏଠାକୁ
ଅଗ୍ନିଦେବତା କଟାଳ କଲେ ଯେ ତୁମ୍ଭଙ୍କୁ ।
ବେଳୁ ବେଳ ପଶିଲୁ ତୁ କଳହ କଥାରେ
ବିବାଦୀ ହେଲୁ ସୀତାଂଶୁଧର ଯେ ଈଶ୍ୱରେ ।
ଖାଣ୍ଡବ ବନ ଦହନ ଇନ୍ଦ୍ର ନ ସହିବ
ଇନ୍ଦ୍ରସଙ୍ଗେ ନିଶ୍ଚେ ତୋର ବିବାଦ ହୋଇବ ।
ଏତେ ବୋଲି କୃଷ୍ଣ ଖଗ ପୃଷ୍ଠେ କଲେ ବିଜେ
ଦ୍ୱାରକା ପୁରକୁ ଚଳିଗଲେ ଦେବରାଜେ ।
ଅର୍ଜ୍ଜୁନ ବୋଇଲା ସ୍ୱାମୀ ଶୁଣ ବୈଶ୍ୱାନର
ବନ ଦହନେ କୋପିବ ନିଶ୍ଚେ ସୁନାସୀର ।
ଅଗ୍ନି ବୋଇଲେ ସମ୍ପଦ ଘେନି ହେବ ବାଦୀ
ଅପାର ରଣ କରିବ ଆସି ଜମ୍ଭଭେଦୀ ।
ଅର୍ଜ୍ଜୁନ ବୋଲେ କେମନ୍ତେ କରିବଇଁ ମୁହିଁ
ସୁରନାଥ ଜିଣିବାକୁ ମୋର ଶସ୍ତ୍ର ନାହିଁ ।
ଅଗ୍ନି ବୋଇଲେ ବାବୁ ତୁ ରହିଥାଅ ଏଥ
ତ୍ରଇଲୋକ୍ୟ ଜିଣିବାକୁ ଦେବି ଦେବଶସ୍ତ୍ର ।
ଅର୍ଜ୍ଜୁନକୁ ସମ୍ବୋଧିଣ କହିଲେକ ବହ୍ନି
ପାତାଳ ବୈକୁଣ୍ଠେ ବିଜେ ସେହି ରୂପ ଘେନି ।
ନାରାୟଣ ବୋଇଲେ ହେ ଶୁଣ ବୈଶ୍ୱାନର
ଆଜିଯାଏ ତୋର ବ୍ୟାଧି ହୋଇନାହିଁ ପାର ।
ଅଗ୍ନି ବୋଇଲେ ତୋ ଯୋଗଖଣ୍ଡି ବାହୋ ବ୍ୟାଧି
ନାରାୟଣ ଶର ଦେବ ଶର ମନଭେଦୀ ।
ନନ୍ଦିଘୋଷ ରଥ ଦେବ ଗାଣ୍ଡିବ ଯେ ଧନୁ
ଏତେକ ଦେଲେ ତରିବି ମୁଁ ବିପାକ କର୍ମୁ ।
ଶୁଣି ସାନନ୍ଦ ହୋଇଲେ ଦେବ ଯେ ଅନାଦି
ଆମ୍ଭେ ଏହା ଦେଲେ ଯେବେ ତୁଟିବ ତୋ ବ୍ୟାଧି ।
ଏଣେ ମୁଁ ମୁକତ ହେବି ଶୁଣ ହେ ଅନନ୍ତ
ମୋତେ ଦୟାକର ଦାସବତ୍ସଳ ଅଚ୍ୟୁତ ।

ତାହା ଶୁଣିଣ ସନ୍ତୋଷ ହେଲେ ଯୋଗେଶ୍ୱର
ଶସ୍ତ୍ରମାନ ଆଣିଦେଲେ ବେଗେ ଦାମୋଦର ।
ଘେନିଣ ଅଗ୍ନିଦେବତା ବୈକୁଣ୍ଠୁ ବାହାର
ପାତାଳ ପୁରକୁ ଗଲେ ଉଦ୍‌ବେଗ ମନର ।
ବାସୁକି ଭୁବନେ ଯାଇ ହୋଇଲେ ପ୍ରବେଶ
ଦେଖି ନାଗରାଜା ହେଲେ ଅନେକ ସନ୍ତୋଷ ।
ଆହେ ଅଗ୍ନିଦେବତା ତୋ ଦେହେ ହେଲା ବ୍ୟାଧି
ଏଥୁ ତରିବାକୁ କିମ୍ପା ନ କରୁ ଔଷଧି ।
ମୁହିଁ ଉପାୟ କରୁଛି ଏବେ ହୋ ଅନନ୍ତ
ନାଗପାଶ ଶର ଆଣି ଦେବୁ ମୋର ହସ୍ତ ।
ତୋହର ଯେ ଅମୃତାସ୍ତ୍ର ଦେବୁ ତୁ ଆବର
ତେଣୁ ନାଗରାଜା ଆଣି ଦେଲେ ବେନିଶର ।
ରଥେ ଥୋଇଲେ ସେ ବେନିଶର କାଳାନଳ
ପାତାଳୁଁ ଯାଇଁ ଭେଟିଲେ ଆଦିତ୍ୟ ମଣ୍ଡଳ ।
ଆଦିତ୍ୟ ଦେବ ତାହାଙ୍କୁ ବଚନ ସମ୍ବାଦି
ଆରୋଗ୍ୟ ହେବାକୁ ବାବୁ କରୁଅଛ ବୁଦ୍ଧି ।
ସେ ବୋଇଲେ ସୂର୍ଯ୍ୟାବର୍ତ୍ତ ଦେବ ଦିବାକର
ପ୍ରସନ୍ନ ହୋଇ ଅଗ୍ନିକି ଦେଲେ ଦିବାକର
ଚନ୍ଦ୍ରଠାରୁ ହେମଶର ଚନ୍ଦ୍ରାବଳୀ ଗଦା
ତ୍ରୈଲୋକ୍ୟ ଅର୍ଜ୍ଜୁନ ଦେବ ବଚନରେ ସିଦ୍ଧା ।
ବ୍ରହ୍ମାଙ୍କ ଭୁବନେ ଯାଇ ପ୍ରବେଶ ହୋଇଲେ
ବ୍ରହ୍ମଶର ବ୍ରହ୍ମଶକ୍ତି ପିତାଙ୍କୁ ମାଗିଲେ ।
ଅଗ୍ନିର ବଚନ କେହୁ ମେଣ୍ଟିବ ତ୍ରିଲୋକେ
ବ୍ରହ୍ମଶର ବ୍ରହ୍ମଶକ୍ତି ଦେଲେ ବ୍ରହ୍ମବାକ୍ୟେ ।
ଶସ୍ତ୍ରଯାକ ସବୁ ନନ୍ଦିଘୋଷରେ ପୂରାଇ
ଭେଟିଲେ ଅମରାବତୀପୁରେ ଶଚୀସାଇଁ ।
ଇନ୍ଦ୍ର ବୋଇଲେ ତୁ ଅଗ୍ନି ଅତି ଲୋଭ କଲୁ
ତିନିଯୁଗ ହେଲା ପାର କରି ନ ପାରିଲୁ ।
ଭୋଦେବ ଇନ୍ଦ୍ର ତୋହର ଦୟା ମୋତେ ଥିଲେ
ଖଣ୍ଡିବ ବ୍ୟାଧି ନିଶ୍ଚୟେ ବଜ୍ରଶକ୍ତି ଦେଲେ ।
ଇନ୍ଦ୍ର ଅସ୍ତ୍ର ତୋହର ଯେ ମେଘାସ୍ତ୍ର ଆବର
ପୁଷ୍ପକ ବିମାନ ମୋତେ ଦେବୁ ପୁରନ୍ଦର ।
ଅଗ୍ନି ବଚନେ ସାନନ୍ଦ ଦେବ ସୁରପତି
ଦେଲେ ଇନ୍ଦ୍ରାସ୍ତ୍ର ମେଘାସ୍ତ୍ର ଆଣି ବଜ୍ରଶକ୍ତି ।
ପୁଷ୍ପକ ବିମାନେ ସୁରସାଇଁ ତା ପୂରାଇ
ଘେନି ଅଗ୍ନିଦେବ ତାହା ବାହାରି ଆସଇ ।
ବିଶ୍ୱଦେବାଙ୍କୁ ମାଗିଲେ ଅମୋଘ ଯେ ଶକ୍ତି
ସାନନ୍ଦେ ତାହାଙ୍କୁ ଦେଲେ ସେ ବ୍ରହ୍ମଶକତି ।
ସନକାଦି ଦେବଠାରୁ ମାଗି ନୀଳବାଣ
ନନ୍ଦିଘୋଷ ରଥେ ତାହା ଥୋଇଲେ ନେଇଣ ।

ଯମଦେବଙ୍କୁ ମାଗିଲେ କାଳଦଣ୍ଡ ପାଶ
ମୋ ଦେହ ଆରୋଗ୍ୟ ହେଲେ ଦେବି ତୁମ୍ଭପାଶ ।
ବାଳଚକ୍ର କାଳପାଶ ଦେଲେ ନାଶ କର
ଅଗ୍ନିଦେବତା ଥୋଇଲେ ରଥର ଉପର ।
ପବନକୁ ମାଗିଲେ ଯେ ପବନାସ୍ତ୍ର ତାର
ଆବର ମାଗିଲେ ତାକୁ ଅଭୟ ମୁଦ୍‌ଗର ।
ମରୁତ ଦେବତା ଆଣି ଦେଲେ ଶସ୍ତ୍ର ବେନି
ତଳହସ୍ତ କରି ତାହା ବୈଶ୍ୱାନର ଘେନି ।
ବୃହସ୍ପତିଙ୍କି ମାଗିଲେ ଜୀବନ୍ୟାସ ଶର
ତୋଷେ ଦେବଗୁରୁ ଆଣି ଦେଲେ ଅଗ୍ନିକର ।
ମାଗିଲେ ଗଣ ଦେବଙ୍କୁ ଗଦା ବଜ୍ରାବଳୀ
ଅଗ୍ନିଦେବଙ୍କୁ ସନ୍ତୋଷେ ଦେଲେ ସେହୁ ତୋଳି ।
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ତାଙ୍କୁ ମାଗିଲେ ନିର୍ଘାତବାଣ ବଜ୍ରଶର ।
ବହ୍ନି ଦେବତାଙ୍କୁ ତାହା ଦେଲେ ମେଘମାନେ
ରଥରେ ଅଗ୍ନି ଥୋଇଲେ ନେଇ ତୋଷମନେ ।
କୁବେର ଦେବତାଙ୍କର ପୁରେ ସେ ପଶିଲେ
ରତ୍ନାବଳୀ ଗଦା ଅଜଗବକୁ ମାଗିଲେ ।
ରତ୍ନମଣି ମୁକୁଟ ଯେ ଲଲାଟ ଭୂଷଣ
କର୍ଣ୍ଣଭୂଷଣ ମାଗିଲେ ପୁଣି ହୁତାଶନ ।
ବାହୁଟି ତାଡ଼ ତୋଡ଼ରେ ରତ୍ନ ଜଗଦ୍‌ବଳା
ହୃଦୟ ଭୂଷଣ ପୁଣି କଣ୍ଠ ରତ୍ନମାଳା ।
କଟିମେଖଳା ନୂପୁର ଏ ଯୋଗାଡ଼ମାନ
ଅଗ୍ନିକି ଦେଲେ କୁବେର ହୋଇ ତୋଷମନ ।
ଈଶ୍ୱରଙ୍କୁ ମାଗିଲେ ଯେ ଯାଇ ଶୂଳଶକ୍ତି
ପାଶୁପତ ଅଗ୍ନିଶର ଖଟ୍ୱାଙ୍ଗ ସୁଜ୍ୟୋତି ।
ପିନାକ ଶାରଙ୍ଗ ଏହି ଦୁଇଗୋଟି ଧନୁ
ମାଗନ୍ତେ ଈଶ୍ୱର ଦେଲେ ତୋଷେ ତାକୁ ଶାନୁ ।
ବରୁଣ ଦେବତାପୁରେ ପଶିଲେ ଅନଳ
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଅଶ୍ୱ କାମପାଳ ।
ଆବର ଯେ ଜଳଧର ଶସ୍ତ୍ର ଜଳପାଶ
ଦେହ ଭଲହେଲେ ଆଣିଦେବି ତୁମ୍ଭପାଶ ।
ଅଗ୍ନି ଦେବତାଙ୍କ ଦେହ ଆରୋଗ୍ୟ ନିମନ୍ତେ
କଳପି ଅଶ୍ୱଙ୍କୁ ଆଣିଦେଲେ ଜଗନ୍ନାଥେ ।
ଶସ୍ତ୍ରଭେଦ ନୁହେଁ ଯେଉଁ ଅଶ୍ୱଙ୍କର କାୟେ
କାମରୂପୀ ଅଟନ୍ତି ସେ ପୁଣି ହଇହୟେ ।
ନିମିଷେ ଭ୍ରମି ପାରନ୍ତି ସକଳ ଭୁବନ
ମହାପ୍ରଳୟେ ନୁହନ୍ତି ସେ ପୁଣି ନିଧନ ।
ପୃଥ୍ୱୀ ଯେ କାଳେ ପ୍ରଳୟ ଜଳେ ବୁଡ଼ିଯାଇ
ସେ କାଳେ ସେହି ଅଶ୍ୱଙ୍କୁ ଦିବସେ ହୁଅଇ ।

ବରୁଣଙ୍କୁ ମାଗି ତାହା ଆଣି ବୈଶ୍ୱାନର
ଯୋଚିଲେ ସେ ନନ୍ଦିଘୋଷ ଦେବଙ୍କ ରଥର ।
ରତ୍ନାକର ପୁରୁ ଅଗ୍ନି ବାହାର ହୋଇଲେ
ପର୍ବତାସ୍ତ୍ର ହିମବନ୍ତ ରାଜାଙ୍କୁ ମାଗିଲେ ।
ଅଗ୍ନିଦେବତା ଶରୀର ଆରୋଗ୍ୟ ନିମନ୍ତେ
ମାଗନ୍ତେ ଯେବେ ଯେ ଶର ଦେଲେ ତୋଷଚିତ୍ତେ ।
ଦୁର୍ଗାଙ୍କୁ ମାଗିଲେ ଅଗ୍ନି ଅଭେଦ୍ୟ ବିଭୁତି
ଯେବଣ ବିଭୂତି ଥିଲେ ଶସ୍ତ୍ର ନ ଭେଦନ୍ତି ।
ଆର୍ଦ୍ରାବଳୀ ଧନୁ ଦେଲେ ଚକ୍ର କୁଣ୍ଡଳିନୀ
ସ୍ତମ୍ଭନ ମୋହନ ବିଦ୍ୟା ଦେଲେ ପୁଣି ଆଣି ।
ନନ୍ଦିଘୋଷ ରଥରେ ସେ ସବୁ ଶସ୍ତ୍ର ଥୋଇ
ଦେବ ପ୍ରସାଦେ ପାର୍ଥର ପାଶକୁ ସେ ଯାଇ ।
ବୋଲେ ଏ ଶସ୍ତ୍ର ମୁଁ ମାଗି ଆଣିଲିରେ ପାର୍ଥ
ଏ ଦେବ ଶସ୍ତ୍ର ସକଳ ତୋତେ ହେଉ ପ୍ରାପ୍ତ ।
ଅଗ୍ନିଙ୍କ ଚରଣ ତଳେ କରି ପ୍ରଣିପାତ
ଅଗ୍ନି ପାର୍ଥ ଆରୋହିଲେ ନନ୍ଦିଘୋଷ ରଥ ।
ଅଗ୍ନି ସାରଥି ଅର୍ଜୁନ ହୋଇଲେକ ରଥୀ
ଖାଣ୍ଡବ ବନ ସନ୍ନିଧେ ମିଳିଲେ ଝଟତି ।
ପାଦଗୟା ବୋଲି ବହିଯାଏ ନଦୀଗୋଟି
ଖାଣ୍ଡବ ବନ ଭେଦି ସେ ମେଖଳାରେ ଫୁଟି ।
ସେ ନଦୀଗୋଟି ଭେଦିଣ ଖାଣ୍ଡବ ବନକୁ
ସାଗରେ କୁମ୍ଭ ବୁଡ଼ାଇ ସେ ପାଣି ନେବାକୁ ।
ସୁବର୍ଣ୍ଣ ପାଚେରୀ ଯୁଣ ଚୌବିଂଶ ଉହର୍ଗ
ସୁକୋମଳ ଶିଳାମାନ ଲାଗିଛନ୍ତି ସ୍ୱର୍ଗ ।
ପାଚେରୀ ଚାରିକତିରେ ଚାରୋଟି ଜଗତୀ
ରତ୍ନ କଳସମାନ ତା ଉପରେ ବସନ୍ତି ।
ଝଲକନ୍ତି ମାଣିକ୍ୟ ଯେ ମଣିମୁକ୍ତା ହାର
ବାଳ ଆଦିତ୍ୟ ଜିଣି ତା ତେଜ ପରଖର ।
ସହସ୍ରେକ ନବଶତ ଯୋଜନ ସେ ତୋଟା
ଚାରିକାଠି ବିସ୍ତାର ଯେ ଏକ ବୃକ୍ଷଗୋଟା ।
ଅଶୀ ଅର୍ବୁଦ ତୋଟାଳ ତାହାକୁ ଖଟନ୍ତି
ବୃକ୍ଷକେ ଜଣେ ଲେଖାଏଁ ପାଣି ଦେଉଥାନ୍ତି ।
ଅର୍ଜୁନକୁ ଘେନି ଅଗ୍ନି ଦେବତା ଚଳନ୍ତି
ରଥ ରୁହାଇ ଉତ୍ତର କୋଣେ ଯେ ଜଗତି ।
ଦେଖନ୍ତି ତୋଟା ସୁସଞ୍ଚ ବୁଲି ଚଉକତି
ପୁଷ୍ପ ତେଜେ ରାତ୍ର ଦିବା ପରାୟେ ଦିଶନ୍ତି ।
ବୃକ୍ଷଙ୍କର ମୂଳକୁ ସେ ନିରୀକ୍ଷଣ କରି
ଚାରି ଚାରିଦଣ୍ଡ ତହୁଁ ଉହର୍ଗ ଚଉଁରୀ ।
ସୁବର୍ଣ୍ଣରେ ବନ୍ଧା ହୋଇଅଛି ଚାରିକତି
ପୁଷ୍ପଙ୍କର ତେଜେ ତହିଁ ନାହିଁ ଦିବରାତି ।

ଅନବରତେ ବହଇ ମଳୟ ସମୀର
ମଉଷଧି ତେଜଲାଗି ଜୀବେ ଯେ ଅମର ।
କନକ ବନ ପରାୟେ ପୁଷ୍ପ ବିକାଶନ୍ତି
ରସଣିଲା ସ୍ୱର୍ଣ୍ଣପରି ଜନ୍ତୁ ଏ ଦିଶନ୍ତି ।
ଏସନ ମହିମାବନ୍ତ ସେ ଖାଣ୍ଡବ ତୋଟା
ଶତେ ଯୋଜନ ଉହର୍ଗ ଏକା ବନ ଗୋଟା ।
ବିଚାରଇ ଫାଲ୍‌ଗୁନି ଆପଣା ହୃଦଗତେ
ଆକାଶ ସମ୍ପଦ ଏହା ନାଶିବି କେମନ୍ତେ ।
କରପତ୍ର ଯୋଡ଼ି ବୋଲେ ବୀର ଫାଲଗୁନି
କେବଣ ମହୌଷଧିରେ ତୁଟିବ ମାନ୍ଦାଗ୍ନି ।
ଚିହ୍ନାଇ ଦିଅ ଆଣଇ ମୁହିଁ ତାହାକାଟି
ଭକ୍ଷିଣ ଆରୋଗ୍ୟ କର ତୁମ୍ଭ ଦେହଗୋଟି ।
ଅଗ୍ନି ବୋଇଲେ ତୋହର ସଙ୍କଳ୍ପର ବେଳେ
ତୋଟାଯାକ ମାଗିଛି ମୁଁ ସାକ୍ଷୀ ଦିଗପାଳେ ।
ବାବୁ ବୃକ୍ଷଫଳ ଜୀବଜନ୍ତୁ ଯେ ଚଢ଼େଇ
ସବୁହିଁ ଭକ୍ଷିବି ମୁଁ ଜଗିଥିବୁ ତୁହି ।
ତେବେ ତ ତୃପତି ମୁହିଁ ହୋଇବି ଅର୍ଜୁନ
ଭକ୍ଷିବି ଔଷଧି ପାଇଁ ଖାଣ୍ଡବ ବିପିନ ।
ତୁ ଭାରତ ମଲ୍ଲ ମୋତେ ହୋଇଲେ ପ୍ରସନ୍ନ
ପାଷାଣ ରେଖା ସମାନ ତୋହର ବଚନ ।
ଅର୍ଜୁନ ବୋଇଲେ ପଶି ଭକ୍ଷ ବୈଶ୍ୱାନର
ଅଗ୍ନି ବୋଇଲେ ନାରାଚ କରି ପେଶ ତୋର ।
ଖାଣ୍ଡବ ବନ ଦହିବି ତୋର ତେଜ ଘେନି
ନାରାଚ କରି ପେଶିଲେ ମୋତେ ଫାଲ୍‌ଗୁନି ।
ଅର୍ଜୁନ ନାରାଚ କରି ବସାଇଲେ ଚାପେ
ବସିଲା ସେ ବୈଶ୍ୱାନର ଅଗ୍ନିଶର ରୂପେ ।
ଅଗ୍ନି ବୋଇଲେ ବାବୁରେ ଯାଉଅଛି ମୁହିଁ
ମେଘ ବରଷନ୍ତି ନିତି ଇନ୍ଦ୍ର ଆଜ୍ଞା ପାଇ ।
ଆନକୁ ମୋହର ଭୟ ନାହିଁ କଦାଚିତେ
ଜଳ ହିଁ ସେ ଆମ୍ଭ ଦର୍ପ ଭାଙ୍ଗଇ ଯୁକତେ ।
ତାହା ଦୂର କରି ଏକାଥିବୁ ତୁହି ରଖି
ସୁଖେ ପଶି ଅଉଷଧି ପାରଇ ମୁଁ ଭକ୍ଷି ।
ପକ୍ଷୀ ଜନ୍ତୁମାନେ ନିତି ଯାଆନ୍ତି ଗଗନେ
ତାହାଙ୍କୁ ନାରାଚ ତୁହି ବିନ୍ଧିବୁ କେସନେ ।
ବାବୁରେ ପିମ୍ପୁଡ଼ି ମାତ୍ର ନ ଯିବ ଉବୁରି
ତେବେ ସିନା ଦେଲା ଧର୍ମ ହୋଇବ ତୋହରି ।
ଏତେକ ଦୃଢ଼ କରାଇ ଦେବ ବୈଶ୍ୱାନର
ଜଗତୀରେ ଥାଇ ପାର୍ଥ ବିନ୍ଧେ କୋପଭର ।
ତୋଟାମଧ୍ୟେ ପଡ଼ି ଅଗ୍ନି ଦେବେ ଯାଏ କ୍ଷେପି
ବ୍ୟାପିଲା ସେ କାଳାନଳହୋଇ ବିଶ୍ୱରୂପୀ ।

ଅନେକ କାଳର ପତ୍ର ଅଛି ତହିଁ ପଡ଼ି
ସେ ସବୁ ଜଳି ଉଠଇ ଅଗ୍ନିତେଜ ବଢ଼ି ।
ବିକଶିଲା କାଳାନଳ ତେଜ ମହାମୂର୍ତ୍ତି
ତୋଟାକୁ ଦେଖିଣ ମାଡ଼ିପଡ଼ିଲେ ଝଟତି ।
ବାମ୍ପୀରୁ ପାଣି ପୂରାଇ ଆଣି ରତ୍ନଘଟେ
ପକାଇଲେ ଅନଳରେ ନେଇ ସେ ବଳିଷ୍ଟେ ।
ଅଗ୍ନି ଡାକଦେଲା ରଖ ରଖ ସବ୍ୟସାଚୀ
ତୋର ଉପରୋଧ କଲେ ମୋତେ କେହୁ ରଖି ।
ଦଶସହସ୍ର ଅର୍ବୁଦ ଅଛନ୍ତି ତୋଟାଳ
ଶୁଣି ଜଣକେ ଦ୍ୱିଶର ବିନ୍ଧେ କୁନ୍ତୀବାଳ ।
ପଡ଼ିଲା ମାତ୍ରେ ନାରାଚ ଧାତିକାରେ ଭେଦି
ତୋଟାଳଙ୍କ ବେନିଭୁଜ ପକାଇଲା ଛେଦି ।
ହୀରାମଣି କୁଣ୍ଡଳ ଯେ ବିକାଶଇ କାୟେ
ଦିଶନ୍ତି ତୋଟାଳମାନେ ମୁଣ୍ଡା ବୃକ୍ଷପ୍ରାୟେ ।
ଅଗ୍ନିରେ ପଡ଼ିଲେ ଦେବଗଣ ମୁହଁ ମାଡ଼ି
ପଳାଇ ନ ପାରି ସର୍ବେ ମଲେ ତହିଁ ପଡ଼ି ।
ଯେବେ ପଳାଇ ଯିବାକୁ ଲୋଡ଼ଇ ବିକଳେ
ଅଗ୍ନିରେ ପଡ଼ଇ ସେହି ପାର୍ଥ ଶରଜାଳେ ।
ତହିଁର ତୋଟାଳ ଦଶଅର୍ବୁଦ ପ୍ରମାଣ
ଜଣେ ନ ବଞ୍ଚିଲେ ସର୍ବେ ହୋଇଲେ ନିଧନ ।
ତୋଟାରୁ ସେ ଧୂମରାଶି ଉଠିଲା ଗଗନେ
ଗନ୍ଧ ଆମୋଦ ଉଠଇ ଆକାଶ ଭୁବନେ ।
ନାରଦ ଯେ ବିଜେ କଲେ ତୋଟା ସନ୍ନିଧାନେ
ଦେଖିଲେ ଜଗତିପରେ ପାଣ୍ଡବ ଅର୍ଜ୍ଜୁନେ ।
ନାରଦଙ୍କୁ ଦେଖି ପାର୍ଥ ଆସନରୁ ଉଠି
ପ୍ରଣାମ କରି ଚରଣେ ଶୋଇଲା କିରୀଟି ।
ନାରଦ ବୋଇଲେ ଶୁଣ ବାସବର ବାଳ
ନାଶ କରୁଛ ଆକାଶ ସମ୍ପଦର ମୂଳ ।
ଇନ୍ଦ୍ର ଦେବତାର ଅଟେ ଏ ଖାଣ୍ଡବ ବନ
ଅନେକ ଔଷଦ ଏଥେ ହେଉଛି ଦହନ ।
ଅର୍ଜ୍ଜୁନ ବୋଇଲେ ଏଥେ ନୁହଇ ମୁଁ ଦୋଷୀ
ଦିଗପାଳ ହୋଇ ଅଗ୍ନିଦେବ ଯାଏ ନାଶି ।
ଏତେକ ବଚନେ ଗଲେ ସେ କଳହପ୍ରିୟ
ଅମରପୁରେ ଭେଟିଲେ ସୁରାସୁର ରାୟ ।
ତ୍ରିଦଶ ଦେବ ଯେ ବସି ଅଛନ୍ତି ଆସ୍ଥାନେ
ବିଦ୍ୟାଧର ଖଟିଛନ୍ତି ତାଙ୍କ ସନ୍ନିଧାନେ ।
ଏସନ ସମୟେ ସଭା ଆମୋଦର ଗନ୍ଧ
ଆସ୍ଥାନେ ଥାଇ ଦେଖିଲେ ଦେବ ସୁରଇନ୍ଦ୍ର ।
ଆମୋଦଇ କି ଅପୂର୍ବ ଗନ୍ଧ ଏ ଆକାଶେ
ଶରୀର ତ ପଲ୍ଲବିତ ହେଉଛି ସୁବାସେ ।
ନାରଦ ବୋଇଲେ ଶୁଣ ଆହେ ସୁନାସୀର
ଖାଣ୍ଡବ ବନ ଆଜିରେ ନାଶଗଲା ତୋର ।
ଅଗ୍ନି ଦହନ କରୁଛି ତୋଟା ମଧୁବନ
ଶୁଣି କୋପାନଳ ହେଲା ସହସ୍ର ଲୋଚନ ।
ଆସନୁ ଉଠିପଡ଼ିଲା ବଳେ ସୁରରାଜ
ଧୂଆଁରେ ନନ୍ଦନ ମୋର ଐରାବତ ସାଜ ।
ବିଦ୍ୟାଧରଙ୍କୁ ହକାରି ବୋଲେ ସୁରଦେବା
ଧାଇଁଯାଇ ଅନଳକୁ ବେଗ କରି ଲିଭା ।
ତୋଟାଳ ମୋହର ଦଶସହସ୍ର ଅର୍ବୁଦ
ତାହାଙ୍କର ଥାନ୍ତେ କିମ୍ପା ଅଗ୍ନିର ଏ ବାଦ ।
ଧୂଆଁରେ ବିଚିତ୍ରସେନ ଅଙ୍ଗାରପନ୍ନଗ
ତୋଟାଳଙ୍କୁ ଯେ ଅଗ୍ନିରେ ପକାଇବି ଆଗ ।
ବାସବର ଆଜ୍ଞାପାଇ କୁମର ଧାମନ୍ତି
ଯାଇ ମଧୁବନ ତୋଟା ସନ୍ନିଧେ ମିଳନ୍ତି ।
ବାହନ ତେଜ୍ୟା କରିଣ ସମସ୍ତ କୁମରେ
ଅନେକ ନାରାଚ ଅସ୍ତ୍ର ଧରିଛନ୍ତି କରେ ।
ଦିଶନ୍ତି ସେ ବିଦ୍ୟାଧରେ ସୁରନାଥ ପ୍ରାୟେ
ବିରାଜଇ ଅଳଙ୍କାର ବହୁ ତାଙ୍କ କାୟେ ।
ଚଉଷଠି କୋଟି ଜାଣ ବାସବ କୁମର
ସମସ୍ତେ ଧାମନ୍ତି ଚିତ୍ରସେନ ସଙ୍ଗତର ।
ଗନ୍ଧର୍ବ ବିଦ୍ୟାଧରଙ୍କୁ କି ଅବା ପ୍ରଶଂସି
କାମଦେବର ସଦୃଶ ରୂପରେ ସେ ଦିଶି ।
ସୁବେଶ ସର୍ବେ ଅନେକ ଅଳଙ୍କାର କାୟ
ଦିଶନ୍ତି ତ ବିଦ୍ୟାଧର ସୁରନାଥ ପ୍ରାୟ ।
ଅଶୀପଦ୍ମ ଗନ୍ଧର୍ବଙ୍କୁ ଘେନି ଜୟସେନ
ଚାରିଦିଗକୁ ଧାଇଁଲେ ଦିକ୍‌ପାଳ ନନ୍ଦନ ।
ଔଷଧ ଭକ୍ଷି ବିସ୍ତାରି ସେ ଅନନ୍ତ ରେଖା
ବ୍ରହ୍ମାଣ୍ଡେ ପୂରି ଅଛଇ ଅଗ୍ନିତେଜ ଶିଖା ।
ଗଙ୍ଗାକୂଳ ଦେଇ ଧାଇଁ ଗଲେକ କୁମରେ
ଦକ୍ଷିଣ ଦିଗ ଭାଗରେ ପଶିଲେ ତୋଟାରେ ।
ରତ୍ନକୁମ୍ଭେ ପାଣି ବେଗେ ପୂରାଇ ବଳିଷ୍ଟେ
ପକାନ୍ତି ଅଗ୍ନିରେ ନେଇତାହା ଅତିକଷ୍ଟେ ।
ରଖ ହୋ ଅର୍ଜ୍ଜୁନ ବୋଲି ଡାକେ ବୈଶ୍ୱାନର
ଅର୍ଜ୍ଜୁନ ଥାଇ ଶୁଣିଲା ଜଗତୀ ଉପର ।
ପବନାସ୍ତ୍ର ପେଶିଲେକ ବୀର ଫାଲଗୁନି
ଉଡ଼ିଗଲେ ବିଦ୍ୟାଧରେ ଯୋଜନ ଯେ ତିନି ।
ପୁରନ୍ଦର ଦେବତାଙ୍କୁ ନାରଦ କହିଲେ
ତୋହର ସମସ୍ତ ପୁତ୍ର ତହିଁ ନାଶ ଗଲେ ।
ସୁଖେ ପୋଡ଼ଇ ଖାଣ୍ଡବ ବନ ହୁତାଶନ
ଶୁଣି ମହାକୋପଭରେ ଦେବ ମଘବାନ ।

ମେଘକୁ ରାଇଣ ଆଜ୍ଞା ଦେଲେକ ବାସବ
ବେଗହୋଇ ତୁମ୍ଭେମାନେ ଯାଅ ଯେ ଖାଣ୍ଡବ ।
ଆବର୍ତ୍ତକ ସମ୍ବର୍ତ୍ତକ ଦ୍ରୋଣ ଯେ ପୁଷ୍କର
ଖାଣ୍ଡବ ବନରେ ଚାରି ମେଘ ଢାଳନ୍ତୀର ।
ଆଜ୍ଞା ପରମାଣେ ମେଘ ଉଠିଲେ ଗରଜି
ସମୁଦ୍ରରୁ ପାଣି ତୋଳି ଚାରିମେଘ ଖଞ୍ଜି ।
ଘୋଟିଲେ ଖାଣ୍ଡବ ବନ ତୋଟା ଚଉକତି
ଗର୍ଜନ ନାଦ କରିଣ ମେଘ ବରଷନ୍ତି ।
ଅଗ୍ନିଦେବ ଡାକଦେଲେ ଶୁଣ ସବ୍ୟସାଚୀ
ମେଘ ବୃଷ୍ଟି କରେ କାର୍ଯ୍ୟ ନୋହିଲାକ କିଛି ।
ଅଗ୍ନିର ବଚନ ଶୁଣି ବୀର ଫାଲଗୁନି
ବେଗେ ପେଶେ ମନଭେଦୀ ଶରକରେ ଘେନି ।
ଅନୁକ୍ଷଣେ ବାଣ ବିନ୍ଧେ ଯେହ୍ନେ ଜଳଧାରା
ଖାଣ୍ଡବ ବନ ଉପରେ କଲା ଶର ପୀଢ଼ା ।
ଊଣିସହସ୍ର ଯୋଜନ ସେ ଖାଣ୍ଡବ ବନ
ତହିଁ ଶର ପୀଢ଼ା ଶରେ କଲାକ ଅର୍ଜ୍ଜୁନ ।
ବେନିତାଳ ବହଳରେ ପଡ଼ିଲାକ ଶର
ବରଷନ୍ତି ମେଘମାଳ ହୋଇଣ ପ୍ରଖର ।
ଊଣିଶସସ୍ର ଯୋଜନ ଅଟଇ ସେ ବନ
ବରଷନ୍ତି ମେଘକରି ଘୋର ଗରଜନ ।
ଏକତ୍ର ହୋଇ ବ୍ୟାପିଲେ ସେ ଗଗନମାର୍ଗ
ପଚାଶ ଯୋଜନ ଶରପୀଢ଼ର ଉତ୍ସର୍ଗ ।
ଅଗ୍ନିଙ୍କର ତେଜଲାଗି ସର୍ବ ବିନାଶଇ
ପାଚେରୀ ତହିଁକି ସେହି ହେଲା ଗଡ଼ଘାଇ ।
ତୋଟାରେ ପାଚେରୀ ହେଲା ତହିଁ ପୁଣବାଡ଼
ଜୀବଜନ୍ତୁମାନେ କେହି ନୋହିଲେ ବାହାର ।
ବ୍ୟାଘ୍ର ଭାଲୁ ହସ୍ତୀ ଘୋଡ଼ା ଗଣ୍ଡା ଯେ ଶାର୍ଦ୍ଦୁଳ
କେହି ବାହାରି ନ ଗଲେ ଭକ୍ଷିଲା ଅନଳ ।
ବାହୁଟିଆ ହରିଣ ଯେ ମୃଗ ଆଦି କରି
କୁକୁର ଗଧ ଭଲ୍ଲୁକ ଯେ ଗଗନଚାରି ।
ବରାହ ଅଟେ ସମ୍ବର କଟାଶ ବଳିଆ
ଶାଳିଆପତନି ଶଶାକଙ୍କ ଯେ ବିଲୁଆ ।
ନେପାଳୀ ମୂଷା ମର୍କଟ କୁମ୍ଭାଟୁଆ ଆଦି
ମୂଷିକ ସର୍ପ ମାର୍ଜାର ବନ ଗୋରୁ ଗୋଧି ।
ପକ୍ଷୀ ଜନ୍ତୁଏ ଅନେକ ବଣି ସାରୀ ଶୁଆ
ଅସାରଳିଆ ଗୋବରା କୁଆ ପାଣିକୁଆ ।
କନକରେଖା କକ୍ଷରା ପାଣ୍ଡରା ଚଢ଼େଇ
ସାତଭାଇଆ ଭୃଇଁଆ ଯେ କୋଚିଲାଖାଇ ।
ଗୁଣ୍ଡୁରି ମୟୁର ରାଜହଂସ ଭଦଳିଆ
ଆବର ଯେ ରାଜବଣୀ ପକ୍ଷୀ ଭରତିଆ ।
ସାରସ କଜଳପାତି ତିତ୍ତିରୀ ଯେ ପକ୍ଷୀ
ପାଗପିଆ ଦଳଫଙ୍ଗି ହେମାଞ୍ଚଳ ପକ୍ଷୀ ।
ବାଣିହଣା କାଠହଣା ହରଡ଼ ଚଢ଼ାଇ
ଗୁଞ୍ଜର ବଢ଼ ଆକାଙ୍କ ଚକୁଆ ଚକୋଇ ।
କୋକୁଆ କୁକୁଡ଼ା ଦଳ ମାଛରଙ୍କା ଝିଙ୍କ
ବାଦୁଡ଼ି ଘରଚଟିଆ ପକ୍ଷୀ କାଣ୍ଟିବଗ ।
ହଳଦୀବସନ୍ତ ଗୁହୁକାଳିବା ବାଇଆ
ପାଟଭାଜିଆ ନାରଙ୍ଗୀ ପକ୍ଷୀ କାକତୁଆ ।
ଗାଙ୍ଗାଇ ଡୁବାଇ ଆଦି ଯେତେ ପଶୁପକ୍ଷୀ
ସମସ୍ତଙ୍କୁ ହୁତାଶନ ଯାଉଅଛି ଭକ୍ଷି ।
ପକ୍ଷୀଚଟା ଗୋଟିଏ ଯେ ଦ୍ୱାରବାଟେ ଗଲା
ଅଗ୍ନି ଡାକ ଦେଲେ ଧନଞ୍ଜୟ ଗଲା ଗଲା ।
ସେ ପକ୍ଷୀ ଗୋଟିକି ଶର ବିନ୍ଧିଲା ଫାଲଗୁନି
ପକାଇଲା ତଳେ ଯହିଁ କାଳାନଳ ବହ୍ନି ।
ଅନୁକ୍ଷଣେ ଶର ଧରି ବିନ୍ଧଇ ଅର୍ଜ୍ଜୁନ
ତଥାପି ମନରେ ତୋଷ ନାହିଁ ହୁତାଶନ ।
ରାତ୍ରଦିବା ବରଷିଲେ ଧରି ମେଘମାନେ
ନ ପାଇଲା ବିନ୍ଦୁ ଏକ ଜଳ ସେ ଉଦ୍ୟାନେ ।
ସମୁଦ୍ର ପୃଥିବୀ ଏକ ହୋଇଲା ଜଳରେ
ଫୁଟି ରହିଲେ ଯେ ମେଘମାନେ ଗଗନରେ ।
ଯେତେକ ବୃକ୍ଷ ଦହନ ହୋଇଲେ ସମସ୍ତେ
ବାହୁଡ଼ି ମେଘ କହିଲେ ଇନ୍ଦ୍ରର ଅଗ୍ରତେ ।
ସ୍ୱାମୀ ଅଗ୍ନି ଦେବ୍‌ତାର ଦୋଷ ନାହିଁ କିଛି
ବୀରେକ ଖାଣ୍ଡବ ବନ ତୋର ଦହୁଅଛି ।
ଆମ୍ଭେମାନେ ଜଳବୃଷ୍ଟି କଲୁ ଯେତେବେଳେ
ତୋଟାଯାକ ଶରପୀଢ଼ା କଲା ସେତେବେଳେ ।
ସ୍ୱାମୀଦେବ ଅଗୋଚର ତାହାର ମହିମା
କିବା ସେହି ନାରାୟଣ ସଦାଶିବ ବ୍ରହ୍ମା ।
ଇନ୍ଦ୍ର ବୋଲେ ମୁହିଁ ନୁହେଁ ଏହାଙ୍କ ବଇରୀ
ଖାଣ୍ଡବ ବନ ମୋହର ସର୍ବ ଉପକାରୀ ।
ଏତେକ ବିଚାର କରି ଦେବ ପୁରୁହୁତ
ଐରାବତ ପୃଷ୍ଠେ ବିଜେ କଲେ ବଜ୍ରହସ୍ତ ।
ଅମରଗଣଙ୍କୁ ଘେନି ସେ ସହସ୍ର ଯୋନି
ମାରିବି ଯେବେ ସେ ହେବେ ଦିଗପାଳ ତିନି ।
ଅନେକ ଔଷଧି ଅଗ୍ନି ଦେବ ପାନ କରି
ମନ୍ଦ ଅଗ୍ନି ଲୁଦୁବୁଦୁ ଗଲା ତାହାଙ୍କରି ।
ଅନୁକ୍ଷଣେ ଅନଳରେ ସହସ୍ରକ ମୁଖ
ଅଗ୍ନି ଶିଖା ଲାଗୁଅଛି ଯୋଜନ ଦ୍ୱିଲକ୍ଷ ।
ଆକାଶକୁ ବୋଲି ଶରପୀଢ଼ା ଲାଗିଥିଲା
ମହା ଅନଳ ଜ୍ୱାଳାରେ ଦହିର୍ଯ୍ୟ ହୋଇଲା ।

ତିନିଲକ୍ଷ ଯୋଜନକୁ ଲାଗେ ଅଗ୍ନିତେଜ
ଡରେ ଯାଇ ନ ପାରିଲେ ପାଖେ ଦେବରାଜ ।
ଅର୍ଜ୍ଜୁନ ବିଜେ କରିଛି ଦକ୍ଷିଣ ଜଗତୀ
ଆକାଶେ ଥାଇ ଦେଖିଲେ ତାକୁ ସୁରପତି ।
ବାସବ ପୁତ୍ରେ ପବନେ ଉଡ଼ି ଯାଉଥିଲେ
ଔଷଧ ପବନ ବାଜି ଚେତନା ପାଇଲେ ।
ପିତାର ସନ୍ନିଧେ ଯାଇ ହୋଇଲେ ପ୍ରବେଶ
ବୋଇଲେ ଅର୍ଜ୍ଜୁନ ଏକା ତୋଟା କଲା ନାଶ ।
ବାସବ ବୋଇଲେ ତାହା ଜାଣି ନ ପାରିଲି
ଅର୍ଜ୍ଜୁନ ବା ନ ଜାଣଇ ମୋର ତୋଟା ବୋଲି ।
କେତୁ ମହାକେତୁ ଚଣ୍ଡବଳୀ ବୃଦ୍ଧଶ୍ରବା
ଏ ଚାରିଙ୍କୁ ରାଇ ଆଜ୍ଞା ଦେଲେକ ମଘବା ।
ତୋ ପିତା ତୋଟା ଦହନ କରୁଛି କିମ୍ପାଇ
ଅର୍ଜ୍ଜୁନ ଅଗ୍ରତେ କହ ଏମନ୍ତରେ ଯାଇ ।
ଇନ୍ଦ୍ର ବଚନେ ଚଳିଲେ ବିଦ୍ୟାଧର ଚାରି
ଦକ୍ଷିଣ ଭାଗକୁ ଯାଇ ପାର୍ଥକୁ ତିଆରି ।
ବାବୁ କିମ୍ପାଇ ଦହନ କରୁଛ ଖାଣ୍ଡବ
ଆପେ ବିଜେ କରିଛନ୍ତି ତୋ ପିତା ବାସବ ।
ଅଗ୍ନି ଦେବତା ଅଟନ୍ତି ଅଶାନ୍ତି ଅତୃପ୍ତି
ତୁ ଆଡ଼ ହୋଇଯା ଆମ୍ଭେ ଲିଭାଉ ଝଟତି ।
ବୋଲନ୍ତି ଫାଲ୍‌ଗୁନି କୁହ ଯାନ୍ତୁ ପୁରୁହୁତେ
କପଟେ ମାଗିଲା ଅଗ୍ନି ଏ ବନକୁ ମୋତେ ।
ଏଥିପାଇଁ ନ ବୋଲନ୍ତି ଆଉ ସୁରରାଜ
କଥା ହିଁ ରହିବ କିନ୍ତୁ ନ ହୋଇବ କାର୍ଯ୍ୟ ।
ବିଦ୍ୟାଧର ବୋଇଲେ ତୁ ଇନ୍ଦ୍ରରେ ବିବାଦ
ପୁତ୍ର ହୋଇ ନାଶ କରୁ ପିତାର ସମ୍ପଦ ।
ଯଦ୍ୟପି କୋପ କରିବେ ତୋତେ ଦେବରାଜ
ଅର୍ଜ୍ଜୁନ ତୋ ପ୍ରାଣତ୍ୟାଗ ହୋଇ ଯିବ ଆଜ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ କହୁଛ ଅଭାବ
ମୋର ଦୋଷ ନାହିଁ ଅଳପକେ ନାଶଯିବ ।
ମୁହିଁ ନ ଚିହ୍ନେ ପିତାର ତୁମ୍ଭେ ହୁଅ କିସ
ସତ୍ୟବାକ୍ୟ ପାଳନ ମୁଁ କରିବି ଅବଶ୍ୟ ।
ଅଗ୍ନି ଯେ ମାଗିଲେ ମୁହିଁ ନ ପାରଇ ରଖି
ଏଥକୁ ତ ଦେବଧର୍ମ ହୋଇଛନ୍ତି ସାକ୍ଷୀ ।
ଶୁଣି ମହାକୋପ କଲେ ବାସବ କୁମରେ
ମାନବ ହୋଇ ତୁ କହୁ ଏଡ଼େକ ଦର୍ପରେ ।
କୋପେଣ ବୀର ଯେ କରେ ପରିଘ ବୁଲାଇ
ଅର୍ଜ୍ଜୁନର ନିକଟକୁ ବେଗେ ଗଲେ ଧାଇଁ ।
ଦେଖି ହସିଲେ ପାଣ୍ଡବ ବୀର ଫାଲଗୁନି
କୋପେଣ ବିନ୍ଧିଲେ ପାର୍ଥ ଲଘୁଶର ଘେନି ।
କାଳାନ୍ତକ ଶର ବୀରେ ହୃଦଗତେ ପାଇ
ଚାରି କୁମର ପଡ଼ିଲେ ସେଠାରେ ଘୁମାଇ ।
ବାସବଙ୍କ ଅଗ୍ରତେ ଯେ ନାରଦ କହିଲେ
ଅର୍ଜ୍ଜୁନ କୋପେ ତୋ ଚାରିପୁତ୍ର ନାଶ ଗଲେ ।
ଶୁଣି ବିଷାଦ ପାଇଲେ ଦେବ ଆଖଣ୍ଡଳ
ଆଜି ସେହୁ ପାମରର ପୂରାଇବି କାଳ ।
ଟିପାଇ ଚଳାଇ ଦେଲେ ଐରାବତ ଗଜ
ମିଳିଲେ ଅର୍ଜ୍ଜୁନ ପାଶେ ଯାଇ ଦେବରାଜ ।
ଓହ୍ଲାଇଲେ ନନ୍ଦିଘୋଷ ରଥୁ ଧନଞ୍ଜୟ
ବାସବ ଚରଣ ତଳେ କଲାକ ବିନୟ ।
ବାସବ ବୋଇଲେ ହେଉ ତୋର ବାଞ୍ଛାସିଦ୍ଧି
ସୁଖେ ରାଜ୍ୟ ଭୋଗ କର ଶତ୍ରୁଗଣ ସାଧି ।
ବାବୁ ସତ୍ୟଯୁଗେ ବିଷ୍ଣୁ ପାଇ ପରାଭବ
ସବୁରି ଜୀବଙ୍କ ରୂପ ଧରି ଆଦିଦେବ ।
ଆକାଶ ଗଙ୍ଗାକୂଳେ ଏ ତୋଟା ମଧୁବନ
ଏଥେ ରୋପିଲେ ଅନେକ ବୃକ୍ଷ ଭଗବାନ ।
ତୁ ଏହା ଦହନ କରୁଅଛୁ ଅନିମିତ୍ତେ
ତ୍ରିଦଶ ଦେବତା କୋପ କରିବେଟି ତୋତେ ।
ଆକାଶ ଗଙ୍ଗାକୂଳରେ ଏ ଖାଣ୍ଡବ ବନ
ଦେବତାମାନଙ୍କର ଏ ଅଟେ ତୀର୍ଥସ୍ଥାନ ।
ଅର୍ଜ୍ଜୁନ ବୋଇଲେ ଶୁଣ ଦେବ ସୁରଈଶ
ଅଗ୍ନିଦେବ କରାଇଲେ ମୋତେ ବନବାସ ।
କପଟେ ମାଗିଲେ ତାକୁ ବିପ୍ରରୂପ ହୋଇ
ନ ଜାଣିବା ପଣେ ତୋତେ ସତ୍ୟକଲି ମୁହିଁ ।
ମୁହିଁ ଜଳ ଦେଲି ହସ୍ତେ ଘେନିଲେ ଯେ ଦାନ
ସତ୍ୟ କରାଇ ବୋଇଲେ ଦେବୁ ଇନ୍ଦ୍ରବନ ।
ଖାଣ୍ଡବ ବନ ମାଗିଲେ ମୁଁ ଯେ ସତ୍ୟକଲି
ଅଗ୍ନିର ଚରିତ୍ର ଦେଖି ଆଶ୍ଚର୍ଯ୍ୟ ହୋଇଲି ।
ବାସବ ବୋଇଲେ ତୁହି ସତ୍ୟ କଲୁ ବାଳ
ଖାଣ୍ଡବ ବନକୁ ସିନା ମାଗିଲା ଅନଳ ।
ବ୍ରାହ୍ମଣ ହୋଇ ଅଟଇ ସେହି ବଡ଼ଲୋଭୀ
ଲୋଭେ ଘୃତ ଖାଇ ହେଲା ବ୍ୟାଧି ପରାଭବୀ ।
ବାସବ ବୋଲନ୍ତି ସେହୁ ଭୋଜନେ ଅତୃପ୍ତି
ପୃଥ୍ୱୀଯାକ ଖାଇଲେ ସେ ନ ହୁଅଇ ଶାନ୍ତି ।
ବାବୁ ଧର୍ମ ଅର୍ଥେ ଶ୍ୱେତରାଜା ଯାଗକଲା
ଘୃତ ସମୁଦ୍ରରୁ ଘୃତଯାକ ବରଷିଲା ।
ଚାରିଲକ୍ଷ ଯୋଜନ ଯେ ଓସାର ଦ୍ୱିଲକ୍ଷ
କୁଣ୍ଡର ଗଭୀର ଲକ୍ଷେ ଯୋଜନ ପ୍ରତ୍ୟକ୍ଷ ।
ମେଘକୁ ପ୍ରୋକ୍ଷଣୀ କରି ବଶିଷ୍ଠ ବସିଲା
ଲୋଭେ ଏ ଚଣ୍ଡାଳ ଅଗ୍ନି ସମସ୍ତ ଭକ୍ଷିଲା ।

ତେଡ଼େ ଘୃତ ସମୁଦ୍ରକୁ ଭକ୍ଷିଲା ଏ ଲୋଭୀ
ମନ୍ଦ ଅଗ୍ନି ହୋଇଲା ଯେ ହେଲା ପରାଭବୀ ।
ମୋତେ ମାଗିଲା ସେ ଆସି ଅମର ଔଷଧି
ରାଗେ ମୁଁ ବୋଇଲି ତୋର ନତୁଟୁ ଏବ୍ୟାଧି ।
ବ୍ରହ୍ମାଙ୍କୁ କହି ଆଣିଲା ମୋହର ତହିଁକି
ତଥାପି ଔଷଧ ମୁହିଁ ନ ଦେଲି ଲୋଭୀ କି ।
ବାବୁ ତ୍ରେତାଯୁଗେ ଡାକିଆଣି ଈଶ୍ୱରଙ୍କୁ
ସେ କହିଲେ ଔଷଧ ମୁଁ ନ ଦେଲି ତାହାକୁ ।
ଦ୍ୱାପର ଯୁଗେ ଆଦିତ୍ୟ ଦେବଙ୍କୁ ଆଣିଲା
ତାହାଙ୍କ ବାକ୍ୟେ ନ ଦେଲେ ସେ ବାହୁଡ଼ିଗଲା ।
ଚନ୍ଦ୍ର କୁବେର ବରୁଣ ବୃହସ୍ପତି ଚାରି
ଲାଜ ପାଇଗଲେ ବାବୁ ସମସ୍ତେ ବାହୁଡ଼ି ।
ବାବୁ ଏତେକାଳେ ଆସି ପାଇଲା ଭରସା
ତୋତେ ବନଦାନ ମାଗି ପୂରାଇଲା ଆଶା ।
ବାସବ ଅର୍ଜ୍ଜୁନ କଥା ହୁଅନ୍ତେ ଯେ ତହିଁ
ପକ୍ଷୀମାନେ ପଳାନ୍ତେ ଯେ କୋଳାହଳ ହୋଇ ।
ଅଗ୍ନି ଉଚ୍ଚେ ଡାକଦେଲେ ପୁଣି ସବ୍ୟସାଚୀ
ପକ୍ଷୀ ପଳାଇଲେ ସତ୍ୟଭଗ୍ନ ହେଉଅଛି ।
କୀଟପତଙ୍ଗ ଗୋଟିଏ ହୋଇଲେ ଅନ୍ତର
ଦାନ କଲା ଧର୍ମନାଶ ଯିବଟି ତୋହର ।
ତୁ ଯେ ପାର୍ଥ ଅଟୁ ତୁହି ଭାରତର ମଲ୍ଲ
ପାଷାଣର ରେଖା ପ୍ରାୟ ଏ ତୋହର ବୋଲ ।
ଅଗ୍ନିଦେବତା ବିନୟ ବାକ୍ୟ ପାର୍ଥ ଶୁଣି
ବିନ୍ଧିଲା ନାରାଚ ଧରି ବୀର ଚୂଡ଼ାମଣି ।
ଅନେକ ପକ୍ଷୀ ପଳାଇ ଶୂନ୍ୟେ ଯାଉଥିଲେ
ଶରାଘାତେ ସେ ସମସ୍ତେ ଅଗ୍ନିରେ ପଡ଼ିଲେ ।
ଇନ୍ଦ୍ର ବୋଇଲେ ତୁ ଦେଲୁ ଖାଇଲାକ ଅଗ୍ନି
ସଂକଳ୍ପ ପୂରିଲା ଏବେ ଯାଅ ଫାଲଗୁନି ।
ମୁହିଁ ଲିଭାଇବି ଏବେ ଖାଣ୍ଡବ କାନନ
ବାରଶତ ଯୋଜନ ତ ହେଲାଣି ଦହନ ।
ଅର୍ଜ୍ଜୁନ ବୋଲେ ସାକ୍ଷାତେ ଦେଖିଲ ତ ତାତ
ଚଢ଼ାଇ ଏକ ଗଳାରୁ ବୋଲଇ କେମନ୍ତ ।
ଅମରାଧିନାଥ ତୋର ପାଦେ ମୋର ସେବା
କଥା ନ କହିବ ତାତ ବାହୁଡ଼ିଣ ଯିବା ।
ଐରାବତ ଗଜ ପୃଷ୍ଠୁ ଉତୁରି ବାସବ
ଅର୍ଜ୍ଜୁନର ହାତ ଧରି ପେଶିଲେ ଖାଣ୍ଡବ ।
ବାବୁ ଯେ ପଦାର୍ଥମାନ ହେଉଛି ଦହନ
ତାହା ଦେଖାଇ ଚିହ୍ନାଇ ଦେବାରେ ଅର୍ଜ୍ଜୁନ ।
ଖାଣ୍ଡବ ବନେ ପଶିଲେ ଅମରାଧି ନାଥ
ଅର୍ଜ୍ଜୁନକୁ ଦେଖାଇଲେ ଔଷଧି ସମସ୍ତ ।

ତ୍ରେତାଯୁଗ ହେଲା ରାମ ରାବଣ ସମର
ଲକ୍ଷ୍ମଣଙ୍କୁ ବ୍ରହ୍ମଶକ୍ତି ମାଇଲା ଅସୁର ।
ପଚିଶ ଯୂଥପତି ଯେ ପଞ୍ଚାଶତ ସେନା
ଅଠର ପଦ୍ମ ବାନର ପଡ଼ିଲେ ଗଣନା ।
ପତ୍ରଗୁଡ଼ିଏ ଏଥିରୁ ନେଲା ହନୁମନ୍ତ
ଘଷନ୍ତେ ପତ୍ର ସମସ୍ତେ ହୋଇଲେ ଜୀବିତ ।
ବିଶଲ୍ୟକରଣୀ ଜାଣ ଏହି ବୃକ୍ଷଗୋଟି
ଏହା ମୂଳୁ ହନୁମାନ ନେଲା ପାଣି ଫୁଟି ।
କମଣ୍ଡଳୁ ପାଣି ଭରି ସିଞ୍ଚିଲା ଝଟତି
ପଚିଶ କୋଟି ସଇନ୍ୟ ଘେନିଣ ସେ ବର୍ତ୍ତି ।
ଆରେକ ବୃକ୍ଷ ହିଁ ତୋତେ ଦେବାକ ଚିହ୍ନାଇ
ମୃତ ସଞ୍ଜିବନୀ ବୋଲି ଏହା ନାମ ହୋଇ ।
ହନୁମନ୍ତ ଏଥୁ ପୁଷ୍ପ ଗୋଟିଏ ଯେ ନେଲା
ସବୁରି ନାଶିକାରେ ଏ ପୁଷ୍ପ ଶୁଙ୍ଘାଇଲା ।
ସେହି ରୂପେ ଅଛି ଅମଳାନ ପୁଷ୍ପ ଗୋଟି
ଏହି ପୁଷ୍ପ ବାସନାରେ ସମସ୍ତେ ହେ ଉଠି ।
ଆରେକ ବୃକ୍ଷ ଦେଖ ଏ ସାମାନ୍ୟ ଦିଶଇ
ଏ ପାଣି ପାଇଲେ ଧଳାକେଶ କଳାହୋଇ ।
ଏ ବୃକ୍ଷରୋଗ ନାଶନ ନାମ ମଉଷଧି
ଏ ପାଣି ପିଇଲେ ଖଣ୍ଡେ ଦେହୁ ସର୍ବବ୍ୟାଧି ।
ପୁରମୋହନ ବୋଲି ଏ ବୃକ୍ଷ ନାମଗୋଟି
ସ୍ନାନ କରି ପିଇଲେଟି ଏଥୁ ପାଣି ପାଟି ।
ଶରୀର ନୋହିବ ତାର ରେତ ବିଗଳିତ
ଦିନେ ପାନ କରି ଚାରିଯୁଗଯାଏ ବର୍ତ୍ତ ।
ଏ ବୃକ୍ଷର ନାମ ବାବୁ ଅଟଇ ଉଦ୍ୟାନ
ଏ ଫଳ ଭକ୍ଷିବା ତୁଳ ସଂକରାନ୍ତି ଦିନ ।
କାମଦେବ ପ୍ରାୟେ ତାର ଉପୁଜଇ ପୁତ୍ର
ଅପୁତ୍ରିକ ଦୋଷ ନାଶ ଯିବ ଯୁଗ ସାତ ।
କ୍ଳେଶ ବିନାଶନ ବୋଲି ଏହି ବୃକ୍ଷଗୋଟି
ଦେହଯାକ ବୋଳିଦେବ ଏହା ମୂଳକାଟି ।
ତୁଟିବ ଗଳିତ କୁଷ୍ଠ ବ୍ୟାଧି ଯେ ଏହାରେ
ଗର୍ଭ କଷ୍ଟ ନ ରହିବ ଏ ବୃକ୍ଷ ଯୋଗରେ ।
କନକ ବିନ୍ଦୁ ବୋଲିଣ ଯେ ବୃକ୍ଷର ନାମ
ପୁତ୍ର ଭକ୍ଷିଲେ ଅକ୍ଷୟ ତୃତୀୟାର ଦିନ ।
ମନୁଏକ ପରିଯନ୍ତେ ତା ଶରୀର ଥାଇ
ପଚିଶ ବରଷ ପ୍ରାୟ ସେ ଜନ ଦିଶଇ ।
ବାବୁରେ ମୋହିନୀ ନାମେ ଏକ ଅଛି ଲତା
କପାଳରେ କରିବ ଯେ ଏହା କ୍ଷୀର ଚିତା ।
ଗଗନ ସୁନ୍ଦର ସେହି ଚାଲନ୍ତେ ମୋହଇ
ଦେବ ଦାନବ ତାହାକୁ ଦେଖି ମୋହଯାଇ ।

ବାବୁ ରତି ଧାରଣାଟି ଏହି ବୃକ୍ଷଗୋଟି
ସିକଡ଼ ଖଣ୍ଡିଏ ଏଥୁ ବାନ୍ଧିବ ଯେ କଟୀ ।
ସହସ୍ର ଯୁବତୀ ରାତ୍ରଦିନେ ବିଳସିବ
ସେ ପୁରୁଷ ତହୁଁ ତିଳେ ବିନ୍ଦୁ ନ ଖସିବ ।
ଦେଖାନ୍ତି ଅର୍ଜ୍ଜୁନ ହସ୍ତେ ଧରି ଆଖଣ୍ଡଳ
ଦେବତା ତପ କରନ୍ତି ଏ ବୃକ୍ଷର ତଳ ।
ସିଦ୍ଧକଳ୍ପ ବୋଲି ଏହି ବୃକ୍ଷ ନାମଗୋଟି
ତୁଳ ସଂକରାନ୍ତି ଦିନ ଏଥୁ ପାଣି ଫୁଟି ।
ପିଇଲେ ବତ୍ସର ଯାଏ ନ ଲାଗିବ କ୍ଷୁଧା
ଭୋକ ଶୋକ ମଳମୂତ୍ର ନାହିଁ ବ୍ୟାଧି ବାଧା ।
ନାଶ କରାଇଲୁ ବାବୁ ତୁହି ଏହି ବନ
ଦେବଙ୍କର କୋପ ତୋତେ ହୋଇବ ଅର୍ଜ୍ଜୁନ ।
ବାବୁ ଯେ ପଦାର୍ଥ ଏହି ଦହନ ହୋଇଲା
ଅଗ୍ନି ଦେବତାର ମନ୍ଦଅଗ୍ନି ପାରଗଲା ।
ତୁ ଏଥୁ ଅନ୍ତର ହୁଅ ଆରେ ଫାଲଗୁନି
ମୁହିଁ ଲିଭାଇବି ଏହି କାଳାନଳ ବହ୍ନି ।
ବାବୁ ଅଶୀଲକ୍ଷ ଏଥେ ଅଛଇ ଚନ୍ଦନ
ତିନିଶତ ଅଛି ବାବୁ ଅଗୁରୁ ଚନ୍ଦନ ।
କସ୍ତୁରୀ ଯୁଆଦ ଆଦି ଭୂଷଣ ଏ ସର୍ବ
ଗଣନା ହୋଇ ଅଛଇ ଜାଣ ଦଶଖର୍ବ ।
ବାସବ ବଚନ ଶୁଣି ଅର୍ଜ୍ଜୁନ ପ୍ରଣମି
ବଧିର ଶୁଣେ କି କର୍ପୁରସ ବାଣୀ ସ୍ୱାମୀ ।
ମୋହର ବୋଲେ ହେ କିଛି ନୋହିବାକ କାର୍ଯ୍ୟ
ଅଗ୍ନିଦେବତାଙ୍କୁ ତୁମ୍ଭେ ବୋଧ ଦେବରାଜ ।
ଅର୍ଜ୍ଜୁନକୁ ଘେନି ତହୁଁ ଗଲେ ମଘବାନ
ଦେଖିଲେ ଅଗ୍ନିର ତେଜ ବେଳୁବେଳ ଆନ ।
ଅନେକ ଔଷଧ ବୃକ୍ଷ ବହୁ ଦ୍ରବ୍ୟ ଖାଇ
ବୈଶ୍ୱାନର ଦେବତା ଯେ ପଡୁଅଛି ଧାଇଁ ।
ଅଗ୍ନିତେଜ ଅନ୍ତରାଳେ ଯହୁଁ ସେ ଦେଖିଲେ
ଇନ୍ଦ୍ରଦେବତା ପ୍ରଣାମ କରିଣ ଶୋଇଲେ ।
ଜୟ ତୁ ଜୟ ତୁ ଦେବ କାଳାନଳ ଅଗ୍ନି
ଜୟ ତୁ ଜୟ ତୁ ଦେବ ମହା ପିଙ୍ଗଳାଗ୍ନି ।
ଜୟ ତୁ ଜୟ ତୁ ଦେବାକ୍ଷଣ ବିଶ୍ୱବ୍ୟାପୀ
ଜୟ ତୁ ଜୟ ତୁ ଦେବ କ୍ଷଣକ୍ଷଣ କୋପୀ ।
ଜୟ ତୁ ଜୟ ତୁ ଦେବ ଦହନ ପ୍ରବଳ
ଜୟ ତୁ ଜୟ ତୁ ଦେବ ମହାକାଳାନଳ ।
ଜୟ ତୁ ଜୟ ତୁ ଦେବ ଅଶାନ୍ତି ଅତୃପ୍ତି
ଜୟ ତୁ ଜୟ ତୁ ଦେବ ବିଶ୍ୱ ତେଜୋମୂର୍ତ୍ତି ।
ଜୟ ତୁ ଜୟ ତୁ ଦେବ ସର୍ବ ଦର୍ପ ଧ୍ୱଂସୁ
ଜୟ ତୁ ଜୟ ତୁ ଦେବ ସର୍ବ କରୁ ପାଂଶୁ ।
ଦେବ ଦାନବ ମାନବ ଆଦି ଅଛ ଧରି
ତୋହର ସୃଷ୍ଟିରେ ଦେବ ସକଳ ଆବୋରି ।
ଆଦିହୁଁ ଜଳ ସ୍ଥାପିତ ଅଟୁ ଆଦି ତୁହି
ଯେ ତୋତେ ସ୍ଥାପଇ ହିତ ତୁହି ତାହାକୁ ହିଁ ।
ଦକ୍ଷର ଯଜ୍ଞେ ଦେଖିଲେ ଯହୁଁ ତୋର ମୂର୍ତ୍ତି
ଡରେ ସ୍ୱାହା ସ୍ୱାହା ତୋତେ ଦେଲେ ପ୍ରଜାପତି ।
ଏମନ୍ତେ ପାର ନ ଗଲା ତୋତେ ଯଜ୍ଞକାଳେ
ଉମାର ଧ୍ୱଂସନେ ତୋତେ ଶିବ କୋପ କଲେ ।
କୋପେ ପ୍ରଜାପତି ତୋତେ ଦେଲେ ଅଭିଶାପ
ଯାଅ ତୁହି ଛାରଖାର ହୋଇଥାଅ ଗୋପ୍ୟ ।
ବିଚିତ୍ର ଅନଳ ତୁହି ତୋର ମହାତେଜ
ଅଖାଦ୍ୟ ଖାଦ୍ୟକୁ ତୁହି କରୁ ଯେ ଦହିର୍ଯ୍ୟ ।
ବୈଶ୍ୱାନର ନାଥ ତୁହି ଅଭୟ ଦୋହରା
ସମସ୍ତ ଦହି ଭକ୍ଷଣ କରୁ ତୁହି ସୁରା ।
ଶୁଭ କି ଅଶୁଭ ସର୍ବ ମଙ୍ଗଳ ହିଁ ତୁହି
ସଂହାର କାଳେ ସଂସାର ପାରୁ ଏକାଦହି ।
ଆଦି ତୁ ଅନାଦି ମହା ପ୍ରଳୟ ପୁରୁଷ
ସକଳ ଦହୁ ସକଳ ଭୂତେ ତୋର ବାସ ।
ଜୟ ତୁ ଜୟ ଦେବ ସର୍ବପୁରେ ପଶୁ
ପାପୀମାନଙ୍କର ପାପ କରିପାରୁ ପାଂଶୁ ।
ଦେବ ଦାନବ ମାନବ ଜନ ଆଦି କରି
ସମସ୍ତ ଦେବ ତୋହର ଉଚ୍ଛିଷ୍ଟ ଆହାରି ।
ପରଂବ୍ରହ୍ମ ପୁରୁଷ ତୁ ଚନ୍ଦ୍ର ସୂର୍ଯ୍ୟ ଆଦି
କେ ବଞ୍ଚିପାରିବ ହୋଇ ତୋର ପ୍ରତିବାଦୀ ।
ଆହାର ପାଇ ଦ୍ୱିଗୁଣ ବଢ଼େ ତୋର ଜ୍ୟୋତି
ଅନବରତେ ଭୋଜନ ତୋର ଅତୃପତି ।
ସ୍ୱାହାର ବଲ୍ଲଭ ତୁହି ସ୍ୱାହା ପ୍ରାଣଗୁରୁ
ବଦନ୍ତି ଶାରଳା ଦାସ ଅଗ୍ନି ଦୟାକରୁ ।

—o—

## ଇନ୍ଦ୍ର ଅର୍ଜ୍ଜୁନ ଯୁଦ୍ଧ

ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଆଖଣ୍ଡଳ କଲେ ଯହୁଁ ଏସନକ ସ୍ତୁତି ।
ପ୍ରଣାମ କରି ଶୋଇଲେ ଅଗ୍ନି ପାଦ ତଳେ
କେବେ ହେଁ ନୋହିଲା ଶାନ୍ତି ସେହି କାଳାନଳ ।
ଦ୍ୱିଗୁଣ ବ୍ୟାପିଲା ମହା ମଉଷଧି ପାନେ
ଭୟ ପାଇ ଘୁଞ୍ଚିଗଲେ ଦେବ ମଘବାନେ ।
ଦେଖି ମହାକୋପ କଲେ କଶ୍ୟପ ନନ୍ଦନ
ବ୍ରହ୍ମ ଦୈବତ ପୁରୁଷ ହୋଇଲେ ଅଜ୍ଞାନ ।
ମୋହର ବିନୟ ଯେବେ ନ ଘେନିଲୁ ଚିତ୍ତେ
ଆଉ କାହାବୋଲେ ତୃପ୍ତ ହୋଇବୁ ଜଗତେ ।

ମୋହର ଶାପ ପ୍ରତ୍ୟକ୍ଷ ଫଳୁ କିନା ତୋତେ
ଦରିଦ୍ରପଣେ ତୋହର ଦିନଯାଉ ନିତ୍ୟେ ।
ଏତେ ବୋଲି ବାହୁଡ଼ିଲେ ଦେବ ପୁରନ୍ଦର
ଅର୍ଜ୍ଜୁନର ମୁଖ ଚାହିଁହେଲେ କୋପଭର ।
ଅଗ୍ନି ଛାର ବଳେ କି ମୋ ତୋଟା ହୁଏ ଧ୍ୱଂସି
ତିନିଯୁଗ ହେଲା ବ୍ୟାଧି ରହିଅଛି ବସି ।
ତୁହି ଯେ ଯଥାର୍ଥ ଅଟୁ ମୋହର ବଇରୀ
ତୁ ଯେ ନାଶକରୁ ମୋର ଆକାଶର ଶିରୀ ।
ଏହିକ୍ଷଣି ତୁହି ଏଥୁ ଆଡ଼ହୋଇ ଗଲେ
କ୍ଷଣକେ ଅଗ୍ନି ଲିଭନ୍ତା ମେଘ ବରଷିଲେ ।
ତୋହର ମୁଖକୁ ଚାହିଁ ସରିଲା ମୋ ବୁଦ୍ଧି
କହୁଁ କହୁଁ ମହାକୋପ କଲା ଜମ୍ଭଭେଦୀ ।
ପୁତ୍ରଜାତ ହୋଇ ଦୁଷ୍ଟ ମୂର୍ଖ ହିଁ ହୋଇଲେ
ପାତକ ନ ଲାଗଇ ସେ ପୁତ୍ର ବଧ କଲେ ।
ବାସବର ବଚନରେ ବୋଲେ ଧନଞ୍ଜୟ
ବୁଦ୍ଧି ହରାଇଲୁ ତାତ ଆଉ କି ଉପାୟ ।
ପୁଣି କୋପାନଳ ମୂର୍ତ୍ତି ଦେବ ଆଖଣ୍ଡଳ
ଆଜରେ ପାଣ୍ଡବା ତୋର ପୂରିଲାଟି କାଳ ।
ହସ୍ତରେ ଯେ ଥିଲା ତାର ବଜ୍ର ମୁଦୁଗର
ରାଗେଣ ନେଇ ପିଟିଲା ଅର୍ଜ୍ଜୁନ ଉପର ।
ଶତ୍ରୁପଣେ ଯେବେ ତୁହି କହୁ ଫାଲଗୁନି
ତୋତେ ନାଶ କରି ପଛେ ଲିଭାଇବି ଅଗ୍ନି ।
ଅଗ୍ନି ଦେଇଥିଲେ ପାର୍ଥେ ଯେ ବଜ୍ର ବିଭୂତି
ବାସବ ମୁଦ୍‌ଗର ଦେହେ ପଡ଼ିଗଲା ତୁଟି ।
କୋପେ ପ୍ରଜ୍ୱଳିତ ହେଲେ ଅମରାଧିନାଥ
ଅଜଗବ ଧନୁ ଇନ୍ଦ୍ର ଧରି ନିଜ ହାତ ।
ଲକ୍ଷେ ନାରାଚ ବାସବ ଏକାଠି ପୂରାଇ
ଅର୍ଜ୍ଜୁନର ଉପରକୁ ବିନ୍ଧିଲେ ନିଠାଇ ।
ଅନୁକ୍ଷଣେ ବାଣ ପଡ଼େ ଅର୍ଜ୍ଜୁନ ଉପର
ବଜ୍ରଅଙ୍ଗେ ସେ ନାରାଚ ବାଜି ହେଲେ ଚୁର ।
ଅର୍ଜ୍ଜୁନର ନାମ ଧରି ଡାକେ ବୈଶ୍ୱାନର
ବାବୁରେ ସର୍ବେ ପଳାଇ ପଶିଲେ ବିବର ।
ଇନ୍ଦ୍ର ସଙ୍ଗତେ ସମର କରନ୍ତି ଫାଲଗୁନି
ଭୂମିକି ନାରାଚ ଫିଙ୍ଗିଦେଲେ ଲକ୍ଷ ତିନି ।
ସର୍ପମଣ୍ଡୁକୀ ବିବରେ ଯେତେ ପଶୁଥିଲେ
ଅର୍ଜ୍ଜୁନର ଶରାଘାତେ ସମସ୍ତେ ଛିଡ଼ିଲେ ।
ମାଇଲେ ଯେ ଅନିର୍ବାର ଶର ପୁରନ୍ଦର
ଅର୍ଜ୍ଜୁନ ବୋଇଲେ ତାତ ନକର ସମର ।
ତୋଟା ତୋର ଭକ୍ଷିଲାଣି ଆବର କି ଅଛି
ପିତା ପୁତ୍ରେ କି ସମର ଯାଅ ତୁମ୍ଭେ ଘୁଞ୍ଚି ।
ବାସବ ବୋଇଲେ ଆରେ ତୋତେ ନାଶ କଲେ
ଖାଣ୍ଡବ ବନର ଦୁଃଖ ସରିବ ତୁ ମଲେ ।
ଆକର୍ଷି ଧନୁ ଧଇଲେ ପୁଣି ପୁରନ୍ଦର
କୋପେ ଅର୍ଜ୍ଜୁନ ଧଇଲେ ସଂମୋହନ ଶର ।
ଅର୍ଜ୍ଜୁନ ସାକ୍ଷୀ କରଇ ଦିକ୍‌ପାଳମାନଙ୍କୁ
ପିତା ବଧ ଦୋଷ ଆଉ ନ ଦେବ ଆମ୍ଭଙ୍କୁ ।
ସାକ୍ଷୀ ଦେଇକରି ସେହି ପଣ୍ଡୁରାଜ ବଳା
ଧଇଲା ଗାଣ୍ଡିବ ଧନୁ ତେଜ ଅନର୍ଗଳା ।
ମୋହର ଶରକୁ ଦେଇଅଛନ୍ତି ଯେ ଅଗ୍ନି
ଆକର୍ଷି ଧଇଲା ତାହା ବୀର ଫାଲଗୁନି ।
ବାସବର ସଙ୍ଗତରେ ଗନ୍ଧର୍ବେ ଯେ ଥିଲେ
ସଂମୋହନ ଶରାଘାତେ ସର୍ବେ ନିମଜ୍ଜିଲେ ।
ପଡ଼ିଲେ ଗନ୍ଧର୍ବବଳ ଗଙ୍ଗାକୂଳ ମାଡ଼ି
ବାସବଦେବ ବିନ୍ଧିଲେ ଉପରୋଧ ଛାଡ଼ି ।
କୃତାନ୍ତକ ଶର ଘେନି ଦେବାସୁର ରାୟେ
ବିଶ୍ୱରୂପ ଭେଦ କରି ଅର୍ଜ୍ଜୁନର କାୟେ ।
କଳାମେଘ ପ୍ରାୟ ଦେଖାଗଲେ ସସ୍ତ୍ରଯୋନି
ବ୍ରହ୍ମାଣ୍ଡ ଅନ୍ଧାର ହେଲା ସେହିରୂପ ଘେନି ।
ଦେଖି ମନେ ବିଚାରଇ ବୀର ଅରଜୁନ
ସାଧୁ ସାଧୁ ବାସବ ହୋ ମହିମା ତୋ ଧନ୍ୟ ।
କାଳାନଳ ପ୍ରାୟ ହେଲା ଶସ୍ତ୍ରଙ୍କର ଜ୍ୟୋତି
ବ୍ରହ୍ମାଣ୍ଡ ଅନ୍ଧାର କଲା କୃତାନ୍ତକ ମୂର୍ତ୍ତି ।
ବିନ୍ଧିଲେକ ସୂର୍ଯ୍ୟାବର୍ତ୍ତ ଶର ସବ୍ୟସାଚୀ
ବାସବର ଶରସବୁ ପକାଇଲେ ଲେଛି ।
ସାଧୁ ଧନଞ୍ଜୟ ସାଧୁ ମହିମା ତୋହର
ବିକାଶିଲା ତୋର ଏହି ଯଶ ତିନିପୁର ।
ବାସବ ଦେବତା ତହିଁ ତ୍ରାସିଲେ ତ ଦେଖି
ପୃଥ୍ୱୀଭେଦି ଶର ସନ୍ଧି ଉପ୍ରୋଧ ଉପେକ୍ଷି ।
ଏକଶରେ ଭେଦିଲାକ ସପତ ଭୁବନ
ରହିବାକୁ ଏକା ତହିଁ ସମର୍ଥ ଅର୍ଜ୍ଜୁନ ।
କୋପେ ପେଶଇ ନାରାଚ ଇନ୍ଦ୍ରର ନନ୍ଦନ
ପାଶୁପତ ନାରାଚ ଯେ ଈଶ୍ୱର ସମାନ ।
ଚଳଇ ନାରାଚ ତେଜେ ବିଜୁଳିକି ଜିଣି
ଛେଦିଲା ବାସବ ଶସ୍ତ୍ରମାନ ବୀରମଣି ।
ତାହା ଦେଖି ପ୍ରଜ୍ୱଳିତ ହୋଇଲେ ମଘବା
ନିଘାତ ବାଣ ମାଇଲେ ଉପମା କି ଦେବା ।
କ୍ଷଣକେ ବିଶ୍ରାମ ନାହିଁ ଦୁହିଁଙ୍କ ସମର
ପିତା ପୁତ୍ରଙ୍କର ହେଲା ଯୁଦ୍ଧ ମହାଘୋର ।
ବାସବ ଦେଖିଲେ ଯହୁଁ ଯୁଦ୍ଧ ଅବିଶ୍ରାମ
ଅଙ୍ଗୁ ତ୍ରିପଣ୍ଡ ଗଳିତ ହେଲା ମହାଘର୍ମ ।

ପିତାର ସମର ଦେଖି ଅଙ୍ଗାରପନ୍ନଗ
ଶତେକ ସହସ୍ରବଳ ଧନୁ ଧରି ଆଗ ।
ଆରେରେ ପାଣ୍ଡବା ବୋଲି ଉଚ୍ଚସ୍ୱରେ ଡାକି
ପାର୍ଥ ମଲା ଦିଗପାଳମାନେ ହୁଅ ସାକ୍ଷୀ ।
ସହସ୍ରେ ନାରାଚ ତେଜ ଅନର୍ଗଳ ଜାଣି
ଅର୍ଜୁନକୁ ନିରୋଧିଲା ସେ କୁମର ମଣି ।
ନାରାଚ ପୂରାନ୍ତେ ତାହା ଦେଖି ସବ୍ୟସାଚୀ
ଆକାଶ ସମ୍ପଦ ସାର ଆବର କି ବାଛି ।
ପାଶୁପତ ଶର ଯାହା ଈଶ୍ୱରଙ୍କୁ ଦେଲା
ଅନ୍ଧକ ତ୍ରିପୁର ଯେଉଁ ଶରେ ନାଶଗଲା ।
ସେହି ପାଶୁପତ ଶର ପେଶଇ ଫାଲଗୁନି
ଅଙ୍ଗାରପନ୍ନଗ ରଣେ ପଡ଼ିବାର ପୁଣି ।
ଅଙ୍ଗାରପନ୍ନଗ ରଣେ ପଡ଼ିବାର ଶୁଣି
ମହାନାଗ ଆରୋହିଣ ବିଜେ ବଜ୍ରପାଣି ।
ଅର୍ଜୁନକୁ ପେଶଇ ଯେ ଶର ମଘବାନ
କରପଦ୍ର ଯୋଡ଼ି ଆଗେ ବୋଲେ ଜୟସେନ ।
ଭୋ ସ୍ୱାମୀ ଅର୍ଜୁନଠାରେ ନକର ସେନେହ
ଅଗ୍ନିର ନିମନ୍ତେ ପାର୍ଥ ଛାଡ଼ିଲାଣି ମୋହ ।
କ୍ଷଣକେ ସଂଗ୍ରାମ ଛାଡ଼ି ଯାଅ ଦେବ ଘୁଞ୍ଚି
ଜୟସେନ ଆବୋରିଲା ରହେ ସବ୍ୟସାଚୀ ।
ବୈଶ୍ୱାନର ଡାକଦେଲେ ଶୁଣ ଫାଲଗୁନି
ମଣିନାଗ ପଳାଉଛି ବଂଶ ତାର ଘେନି ।
ଶୁଣି ନାରାଚ ବିନ୍ଧିଲା ବୀରବର ପାର୍ଥ
ଛେଦନ୍ତେ ଅଗ୍ନିରେ ନାଗେ ପଡ଼ିଲେ ସମସ୍ତ ।
ଉରଗ ନାଗର ପୁତ୍ର ଅଟେ ମଣିନାଗ
ମଣିନାଗ ପୁତ୍ରନାମ ଅଟେ ମହୀନାଗ ।
ମହୀନାଗ ପୁତ୍ର ଅଟେ ଶାର୍ଦ୍ଦୂଳ ଉରଗ
ଶାର୍ଦ୍ଦୂଳ ପୁତ୍ର ବିନୟ ଚନ୍ଦ୍ରନାମେ ନାଗ ।
ଏହାର ନନ୍ଦନ ଅଟେ କଳିଙ୍ଗ ଉରଗ
ଏ କଳିଙ୍ଗ ଉରଗର ପୁତ୍ର କାଳି ନାଗ ।
କାଳିନାଗର ନନ୍ଦନ ଅଟେ ଆର୍ଦ୍ରାବଳୀ
ଆର୍ଦ୍ରାବଳୀର ନନ୍ଦନ ଅଟେ କୃତବଳୀ ।
ଉରଗ ବଂଶ ଗରୁଡ଼ ଭୟେ ପଳାଇଲେ
ଖାଣ୍ଡବ ବନେ ଆଶ୍ରମ କରିଣ ରହିଲେ ।
ଦହନକାଳେ ପଳାଉଥିଲେ ଶୂନ୍ୟେ ଉଡ଼ି
ଅର୍ଜୁନର ଶରାଘାତେ ଅଗ୍ନି ମଧ୍ୟେ ପଡ଼ି ।
ଶୋଷକ କାଳସର୍ପ ଯେ କୁଳିକର ପୁତ୍ର
ଉଡ଼ିଲା ଯେ ଅର୍ଜୁନର ଦେଖି ଶରପତ୍ର ।
ଆଉ ସର୍ପମାନେ ଶରେ ପଡ଼ିଲେକ ଛିଡ଼ି
ଶୋଷକ ସର୍ପ ସମୁଦ୍ର ମଧ୍ୟେ ଯାଇ ପଡ଼ି ।
ସେ କାଳସର୍ପ ଯମୁନା ଧାରେ ଧାରେ ଗଲା
ହସ୍ତିନା ରାଜ୍ୟ ବାରୁଣା ବନ୍ତରେ ରହିଲା ।
ଜୟ ତୁ ଶାରଳା ମାଗୋ ସିଂହ ତୋ ବାହନ
ଦୁର୍ଗାରୂପେ କଲୁ ମାତ ମଣିଷ ନିଧନ ।
କାଳିକା ରୂପରେ କଲୁ ରକ୍ତବୀର୍ଯ୍ୟ କ୍ଷୟ
ଚଣ୍ଡୀରୂପେ କଲୁ ମାତ ଚଣ୍ଡମୁଣ୍ଡ ଜୟ ।
ଶାକମ୍ଭରୀ ରୂପେ କଲୁ ଘୋର ଦୈତ୍ୟବଧ
କାତ୍ୟାୟନୀ ରୂପେ କଲୁ ଅସୁରକୁ ସାଧ୍ୟ ।
ଶୁମ୍ଭ ନିଶୁମ୍ଭ ଅସୁର ମାଇଲୁ ଗୋ ମାଏ
ଶାରଳା ଦାସ ସେବଇ ନିତ୍ୟେ ତୋର ପାୟେ ।

—o—

## ଶୋଷକ ଶରଣ

ମନୁ ପଚାରନ୍ତି ଶୁଣ ଅଗସ୍ତି ମୁନି ହେ
ଏଠାରେ ପଡ଼ିଲି ମୁହିଁ ବିଷମ ସନ୍ଦେହେ ।
ଶୋଷକ କାଳସର୍ପ ଯେ ଗଲାକ ପଳାଇ
ବଂଶ ତାର ନାଶଗଲା ଏକାହୋଇ ଯାଇ ।
କାହିଁ ରହିଲା କେ ତାକୁ ରଖିଲା ତା କହ
ତା ଦହିଲା କିମ୍ବା କାଳାନଳ ଧନଞ୍ଜୟ ।
ଅର୍ଜୁନ ନାରାଚ ତାକୁ ଛାଡ଼ିଲା କେମନ୍ତେ
ଏ ବଡ଼ ସଂଶୟ ଜାତ ହେଲା ମୋର ଚିତ୍ତେ ।
ମାଛି ଉଡ଼ିଗଲେ ଅଗ୍ନି ଡାକଇ ପାର୍ଥକୁ
ଛାଡ଼ି ନ ଦିଏ ଅର୍ଜୁନ ମଶା ପିମ୍ପୁଡ଼ିଙ୍କୁ ।
ଶୋଷକ ପଳାଇଗଲା ଏ ବଡ଼ ବିଚିତ୍ର
ବିସ୍ତାରି କହ ହେ ମୁନି ଏଥିର ଚରିତ ।
କହନ୍ତି ଅଗସ୍ତି ଶୁଣ ମନୁ ଜ୍ଞାନବନ୍ତ
ବାରୁଣାବନ୍ତରେ ଦିନେ କର୍ଣ୍ଣ ବଳବନ୍ତ ।
ବୁଲି ଆସିଥିଲା ତହିଁ ଯାଉଥିଲା ଫେରି
ଶୁଣ ଯୁଗପତି ବେନି ଶ୍ରବଣକୁ ଡେରି ।
ଅନ୍ତରାଳ ହୋଇ ବୁଲୁଥିଲା ସେହି ଅହି
ଶରଣ ପଶିଲା କର୍ଣ୍ଣ ପାଦତଳେ ଯାଇ ।
ସେ ସର୍ପ ବୋଇଲା ରଖ ରଖ ଆହେ କର୍ଣ୍ଣ
କ୍ଷତ୍ରିୟବର ଦେଖିଣ ପଶିଲି ଶରଣ ।
ଅଗ୍ନି ଦହନ କରୁଛି ଖାଣ୍ଡବ ବନକୁ
ମାରି ପକାଉଛି ପାର୍ଥ ସମସ୍ତ ଜୀବକୁ ।
ପଡ଼ିଲେଣି ମୋର ବଂଶଯାକ ଦହନରେ
ଶର ପବନଘାତରେ ଉଡ଼ିଲି ଶୂନ୍ୟରେ ।
ନ ପୁଣ ଜାଣଇ ସେହି ବୈଶ୍ୱାନର ଅଗ୍ନି
ଏକ୍ଷଣି ନାରାଚ ମୋତେ ବିନ୍ଧବ ଫାଲଗୁନି ।
ପାରୁଯେବେ ରାଧେ ମୋତେ ରକ୍ଷାକର
ଦାନଶୂର ବୀରଶୂର ବୋଲି ମୁଁ ତୋହର ।

ଶରଣ ପଶିଲି ତୁହି ରକ୍ଷାକର ମୋତେ
କେହି ରଖି ନ ପାରିଲେ ଏ ତିନି ଜଗତେ ।
ମୋର ମାତାର ଭଗିନୀ ଅଟେ ବସୁମତୀ
ଶତ ଭାର ସ୍ୱର୍ଣ୍ଣ ତୋତେ ଦିଅଇ ସେ ନିତି ।
ତେଣୁ ଭରସା କଲଇଁ ତୋତେ ଆରେ ବାବୁ
ନାଗବଂଶ ଥିଲେ ତୁହି ସ୍ୱର୍ଣ୍ଣ ପାଉଥିବୁ ।
ସମୟରେ କରିବି ମୁଁ ତୋର ଉପକାର
ଏମନ୍ତ କହି ଶୋଷକ ପଡ଼ିଲା ପୟର ।
କର୍ଣ୍ଣ ବୋଇଲା ତୁ ସର୍ପ ନ ହୁଅ କାତର
ରହିଥାଅ ସୁଖେ ମୋର ରଥର ମଧ୍ୟର ।
ଅର୍ଜ୍ଜୁନ କୋପକୁ ଆମ୍ଭେ କରାଇବା ଶାନ୍ତି
ରହିଥା ରଥରେ ମୋର ନ କର ତୁ ଭୀତି ।
ଯେବେ ଅର୍ଜ୍ଜୁନ ଆମ୍ଭର ବୋଲ ନ ମାନିବ
ଆମ୍ଭର ନାରାଚେ ତାର ପ୍ରାଣ ନ ରହିବ ।
ନିଶ୍ଚିନ୍ତେ କର୍ଣ୍ଣର ରଥେ ରହିଲା ଶୋଷକ
ଛାଡ଼ିଦେଲା ସେହି କାଳ ସର୍ପକୁ ପାବକ ।
ହସ୍ତିନାକୁ କର୍ଣ୍ଣ ଯାଇ ଦୁର୍ଯ୍ୟୋଧନ ଆଗେ
କହିଲା ମଇତ୍ର ଶୁଣ ହୁତାଶନ ରାଗେ ।
କପଟରେ ଅର୍ଜ୍ଜୁନକୁ କରାଇଲା ସତ୍ୟ
ଲୁଦୁବୁଦୁ ବ୍ୟାଧି ନାଶ ହୋଇବା ନିମିତ୍ତ ।
ଇନ୍ଦ୍ରର ଖାଣ୍ଡବ ବନ ମାଗିଲା ପାର୍ଥକୁ
ପାର୍ଥ ସେହି ବନ ଦେଲା ଖାଇବାକୁ ତାକୁ ।
ରାଗରେ ଖାଣ୍ଡବ ବନ ପୋଡ଼ଇ ଅନଳ
ପୂର୍ବେ ଦେଇ ନ ଥିବାରୁ ଦେବ ଆଖଣ୍ଡଳ ।
ଯେତେ ଜୀବଜନ୍ତୁ ରହିଥିଲେ ସେହି ବନେ
ଅର୍ଜ୍ଜୁନ ତାହାକୁ ଛେଦି ପକାଉଛି ବାଣେ ।
ଜଣେ ନ ଛାଡ଼ଇ ସର୍ବେ ପଡ଼ନ୍ତି ଅନଳେ
ଦେବତା ଗନ୍ଧର୍ବ ଯକ୍ଷ ନାଗ ଅସ୍ତ୍ର ବଳେ ।
ରଥ ଧନୁ ଶସ୍ତ୍ର ସବୁ ଆଣି ହୁତାଶନ
ଦେଉଛନ୍ତି ଅର୍ଜ୍ଜୁନକୁ ହେ କୁରୁରାଜନ ।
ମଘବା ସଙ୍ଗେ ସମର ଘୋର ଅର୍ଜ୍ଜୁନର
ପଳାଇ ଆସି ଏ ସର୍ପ କହେ ମୋ ଆଗର ।
ଭୟରେ ଶରଣ ଆସି ମାଗିଲାକ ମୋତେ
ମୁଁ ଏହାକୁ ରଖିଅଛି ଦେଖ ମୋର ରଥେ ।
ଶୁଣିଣ ବିରସ ହେଲା ରାଜା ଦୁର୍ଯ୍ୟୋଧନ
ବୋଲନ୍ତି ଅଗସ୍ତି ଶୁଣ ହେ ମନୁ ରାଜନ ।
ଯେତେବେଳେ ଫାଲଗୁନି ମାଇଲାକ ଶର
କାଟି ପକାଇଲା ସବୁ ସର୍ପଙ୍କର ଶିର ।
ପବନାଶର ତାହାଙ୍କୁ ଆଣଇ ଉଡ଼ାଇ
ଅନଳ ମଧ୍ୟରେ ନେଇ ଦିଅଇ ପକାଇ ।
ସେହି ନର ପବନର ଘାତେ ଏ ଶୋଷକ
ଉଡ଼ିଲା ଭଉଁରୀ ଦେଇ ଶୂନ୍ୟପୁରଯାକ ।
ଉଡ଼ି ଉଡ଼ି ପଡ଼ିଲା ସେ ସମୁଦ୍ର ମଧ୍ୟରେ
ପୁତ୍ରକୁ କୁଳିନ ନାଗ ଧଇଲା କୋଳରେ ।
ପଚାରିଲେ ସ୍ନେ ପୁତ୍ରକୁ ସଚେତ କରାଇ
ଆରେ ପୁତ୍ର ଏଥେ ଆସି ପଡ଼ିଲୁ କିମ୍ପାଇ ।
ଶୋଷକ ବୋଲଇ ତାତ ତୋର ବଂଶଯାକ
ଅର୍ଜ୍ଜୁନର ବାଣେ ମଲେ ଭକ୍ଷିଲା ପାବକ ।
ମୁହିଁ ଶର ପବନରେ ଉଡ଼ି ଉଡ଼ି ଆସି
ପଡ଼ିଲି ସମୁଦ୍ରମଧ୍ୟେ ଆମ୍ଭେ ନୋହୁ ଦୋଷୀ ।
ଚଉଦ ବ୍ରହ୍ମାଣ୍ଡେ ବୁଲେ ଅର୍ଜ୍ଜୁନର ଶର
କେମନ୍ତେ ରହିବ ପ୍ରାଣ କୁହ ହେ ପିଅର ।
ସର୍ବଜ୍ଞ ପୁରୁଷ ଅଗ୍ନି କହିଦେବ ତାକୁ
ଏହିକ୍ଷଣି ବାଣେ ନେଇ ଦେବ ଅନଳକୁ ।
କୁଳିନ ବୋଇଲା ପୁତ୍ର ନ ହୁଅ କାତର
ପୂର୍ବରୁ ଅନଳ ମିତ୍ର ଅଟଇ ମୋହର ।
ଖତାବର ଭୟରୁ ସେ ରଖିଥିଲା ତୋତେ
ତୁ ମୋହର ପୁତ୍ର ବୋଲି ଜାଣଇ ସେ ତୋତେ ।
କଦାପି ସେ ନ କହିବ ଅର୍ଜ୍ଜୁନ ଆଗରେ
ପଶ ତୁ ଶରଣ ଯାଇ କର୍ଣ୍ଣର ପୟରେ ।
ଅର୍ଜ୍ଜୁନ ମୋହର ବଂଶ କଲାକ ନିପାତ
କର୍ଣ୍ଣର ପାଶକୁ ପୁତ୍ର ଯାଅ ଯେ ତୁରିତ ।
ଭାରତ ଯୁଦ୍ଧରେ ତୁହି ଶରରୂପେ ଯିବୁ
ନନ୍ଦିଘୋଷ ରଥସହ ପାର୍ଥକୁ ଗିଳିବୁ ।
ତେବେ ନାଗବଂଶ ବାବୁ କରିବୁ ଉଦ୍ଧାର
କର୍ଣ୍ଣ ସଙ୍ଗେ ଅର୍ଜ୍ଜୁନର ହୋଇବ ସମର ।
ମହାବଳବନ୍ତ କପି ପେଶିବ ସେକାଳେ
ତୁହି ବଳବନ୍ତ ହେବୁ ତାର ମନ୍ତ୍ରବଳେ ।
ପିତାର ବାକ୍ୟେ ଶୋଷକ ସମୁଦ୍ର ଅଇଲା
ଯମୁନା ନଦୀର କୂଳେ ଯାଇଁ ଉତୁରିଲା ।
କର୍ଣ୍ଣର ପାଦରେ ଯାଇ ପଶିଲା ଶରଣ
ଏ କାରଣୁ ଛାଡ଼ିଦେଲା ତାକୁ ହୁତାଶନ ।
ଜୟ ତୁ ଜୟ ତୁ ମାଗୋ ଶ୍ରୀଚଣ୍ଡୀ ଶାରଳା
ତୁହି ଯାହାକୁ ପ୍ରସନ୍ନ ହେଉ ଗୋ ମଙ୍ଗଳା ।
ତାହାର ଦୁଃଖ କ୍ଷଣକେ ହୋଇଯାଏ ଦୂର
ଶୂଦ୍ରମୁନି ଏ ଶାରଳାଦାସ ତୋ କୋୟର ।

—୦—

## ଇନ୍ଦ୍ରର ପରାଜୟ ଓ ଅର୍ଜ୍ଜୁନର ବର ଲାଭ

ଅଗସ୍ତିଙ୍କି ବୈବସ୍ୱତ ମନୁକଲେ ସେବା
ପିତା ପୁତ୍ର ଦୁହିଁଙ୍କର ସଂଗ୍ରାମ କହିବା ।
ଶୁଣ ବାବୁ ତ୍ରିଇଲୋକ୍ୟେ ବଡ଼ଇ ଦୁର୍ଲ୍ଲଭ
କର୍ଣ୍ଣକୁ ଲାଗୁଛି ସ୍ୱାଦୁ ଆବର ସୁଲଭ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ମହାଭାରତର ମଧ୍ୟପର୍ବ ଗର୍ଭରୀତି ।
ଶୁଣନ୍ତେ ଅତି ସୁସ୍ୱାଦୁ ସୁଧାପାନ ଜିଣି
ତୃଷାରେ ରୁଚଇ ଯେହ୍ନେ ଶୁଶୀତଳ ପାଣି ।
ନିର୍ଘାତ ବାଣ ମାଇଲେ ଯହୁଁ ବଜ୍ରପାଣି
ତିନିପୁର କମ୍ପିଲା ସେ ବାଣ ଶବ୍ଦ ଶୁଣି ।
ଅଗ୍ନିଦେବତା ଡାକିଲେ ନକର ତୁ ଭୀତି
ବଜ୍ର ପରଶୁ ଘେନିଣ କାଟ ତୁ ବିକୋଟି ।
ହେମଶର ପେଶ ତୁହି ନିର୍ଘାତ ଉପରେ
ଅଗ୍ନିଙ୍କ ବାକ୍ୟେ ମାଇଲେ ପାର୍ଥ ହେମଶରେ ।
ହେମଶରେ ସେ ନିର୍ଘାତ ଶର ନାଶ ଗଲା
ସାଧୁ ସାଧୁ ଅର୍ଜ୍ଜୁନ ଏ ଶବଦ ଶୁଭିଲା ।
ଇନ୍ଦ୍ରଦେବତା ମାଇଲେ ରାଗେ ବଜ୍ରସୂଚୀ
ବଜ୍ର ପରଶୁ ଘେନିଣ ଅର୍ଜ୍ଜୁନ ତା ନାଶି ।
ଇନ୍ଦ୍ର ପ୍ରହାର କଲେକ ପୁଣି ବଜ୍ରଶକ୍ତି
ଅମୋଘ ଶକତି ଘେନି ଅର୍ଜ୍ଜୁନ ନିପାତି ।
ପର୍ବତାଶର ପେଶିଲେ ପୁଣି ଜମ୍ଭଭେଦୀ
ବଜ୍ରଶରେ ଧନଞ୍ଜୟ ବୀର ତାହା ଛେଦି ।
ସଂଗ୍ରାମେ ବିମୁଖ ପାଇ ବୀରବର ପାର୍ଥ
ମନଭେଦି ନାରାଚକୁ ଧଇଲେକ ହସ୍ତ ।
ଗୁଣେ ବସାଇ ତିଆରି ତାକୁ ଧନଞ୍ଜୟ
ବୋଲେ ଅଟଇ ପିତା ମୋ ଏହି ଦେବରାୟ ।
ରୋମକେ ନାରାଚ ହୋଇ ପଡ଼ିବୁ ତା ଦେହେ
ପ୍ରାଣେ ନ ମାରିବୁ ସେହି ପଡ଼ିଥିବ ମୋହେ ।
ଅର୍ଜ୍ଜୁନ ଆଜ୍ଞାରେ ଗଲା ଶର ମନଭେଦି
ଇନ୍ଦ୍ରଦେବତା ଶରୀରେ ରୋମେ ରୋମେଭେଦି ।
ଯେସନେ ଭୟରେ ସର୍ପ ପଶଇ ବିବରେ
ଭେଦିବେ ନାରାଚ ତେହ୍ନେ ବାସବ ଶରୀରେ ।
ରୁଧିରରେ ଜର ଜର ହେଲା ଇନ୍ଦ୍ରକାୟ
ଐରାବତ ପୃଷ୍ଠେ ଢଳିପଡ଼େ ଦେବରାୟ ।
ଏଣେ ଜଗତୀ ଉପରେ ବିଜେ ଫାଲଗୁନି
ଖାଣ୍ଡବ ବନ ଦହନ ସୁଖେ କରେ ଅଗ୍ନି ।
ସହସ୍ର ନବ ଯୋଜନ ଯେ ଖାଣ୍ଡବ ବନ
ତିନିରାତ୍ର ତିନିଦିନ କଲେକ ଦହନ ।
ଖାଣ୍ଡବ ବନ ସମସ୍ତ ଦହନ ହୋଇଲା
ଉନବିଂଶ ଯୁଗଯାଏ ଅନଳ ଦହିଲା ।
ସମସ୍ତ ପାଦପ ରସ ପିଇ ବୈଶ୍ୱାନର
ଖଣ୍ଡିଲାକ ମହାବ୍ୟାଧି ଆରୋଗ୍ୟ ଶରୀର ।
ଇଚ୍ଛାରେ ଅନଳ ତହୁଁ ଭକ୍ଷି ମହୌଷଧି
ହେଲେ ନିଷ୍କଳଙ୍କ ଗଲା ଲୁଦୁବୁଦୁ ବ୍ୟାଧି ।
ଭୁଞ୍ଜି ତୃପ୍ତହେଲେ କଲେ ଉଦରକୁ ପୁଷ୍ଟ
ଧଇଲେ ସେ ଶାନ୍ତରୂପ ଛାଡ଼ି ମତିଭ୍ରଷ୍ଟ ।
ତ୍ରିକଚ୍ଛ କରି ବସନ ଖଣ୍ଡିଏ ସେ ପିନ୍ଧି
ଲମ୍ବିତ କରିଣ ଶିରେ ଜଟା ଏକ ବାନ୍ଧି ।
କାନ୍ଧେ ପଇତା ଲୋହିତ ବର୍ଣ୍ଣ ଦିଶେ ଜ୍ୟୋତି
ଅତ୍ୟନ୍ତ ସୁନ୍ଦର ଦିଶେ ତାଙ୍କ ବର୍ଣ୍ଣ କାନ୍ତି ।
ମିଷ୍ଟ ଭୋଜନେ ଯେସନେ ବ୍ରାହ୍ମଣ ତୃପତି
ଆଶ୍ୱାସି କହନ୍ତି ବସି ଅର୍ଜ୍ଜୁନର କତି ।
ମହାଔଷଧି ଅକ୍ଷତ ଘେନିଣ ହସ୍ତରେ
ଦୁର୍ବାକ୍ଷତ ଦେଲେ ନେଇ ପାର୍ଥ ଲଲାଟରେ ।
ସୁବର୍ଣ୍ଣର ଫରୁଆ ଯେ ଅଷ୍ଟରତ୍ନେ ଖଚି
ସମ୍ଭାଳ ଫାଲଗୁନି ଏଥେ ତୋର କାର୍ଯ୍ୟ ଅଛି ।
ପାରିଜାତକ ପତ୍ରେ ଯେ ଶୁଭ ଅନୁକୂଳେ
ଏହି ଔଷଧ ଅକ୍ଷତ ଘେନିବୁ କପାଳେ ।
ଜଳେ ଅନଳେ ନୋହିବ ତୋର ପରାଜୟ
ତ୍ରଇଲୋକ୍ୟ ଜିଣିବୁ ତୁ ଆରେ ଧନଞ୍ଜୟ ।
ସ୍ତମ୍ଭନ ମୋହନ ବିଦ୍ୟା ବଶ୍ୟ ଉଚ୍ଚାଟନ
ଗୁଟିକା ଅଞ୍ଜନ ଆଦି ଧାରଣ ବିଧାନ ।
ପୁଣି ଅର୍ଜ୍ଜୁନକୁ ଦେଲେ ଏକ ମହୌଷଧି
ଏହାର ଭସ୍ମ ଲେପିଲେ ଯିବ ମନବ୍ୟାଧି ।
ଦେଲେ ପୁଣି ମହୌଷଧି ଦହନ ବିଭୁତି
ଅଙ୍ଗେ ଥିଲେ ନ ଭେଦିବ ବଜ୍ରଶର ଶକ୍ତି ।
ମହାମନ୍ତ୍ର ପଢ଼ି ଆପେ କଲେକ ଆଶିଷ
ତ୍ରଇଲୋକ୍ୟ ବାବୁ ତୋତେ ପ୍ରାପ୍ତହେଉ ଯଶ ।
ଯାବତ ଅସାଧ୍ୟ ମନ୍ତ୍ର ସାଧ୍ୟ ହେଉ ତୋର
କର୍ଣ୍ଣରେ ଅଜପା ମନ୍ତ୍ର କହିଲେ ଆବର ।
ନାରାଚ ପେଶିବୁ ବାବୁ ଏ ମନ୍ତ୍ରକୁ ପଢ଼ି
ଏକ ବାଣ ପେଶିଲେ ଯେ ହେବ ଶରଚାରି ।
ଅରୁଣ କିରଣ ନାମେ ମଣି ଏକ ଘେନି
ଅର୍ଜ୍ଜୁନର କରେ ଦେଲେ ବୈଶ୍ୱାନର ବହ୍ନି ।
ଏ ମଣି ଥିଲେ ବାବୁରେ ନ ପୀଡ଼ଇ ବ୍ୟାଧି
ହରଇ ବିପତ୍ତି ବାବୁ ପ୍ରସରଇ ବୁଦ୍ଧି ।
ଯାହା ବାଞ୍ଛା କରିବୁ ସେ ହୋଇବ ପ୍ରାପତ
ଯାବତ ଚନ୍ଦ୍ରାର୍କେ ସିଦ୍ଧି ହୋଇବ ସମସ୍ତ ।

ଯେତେବେଳେ ସଂଗ୍ରାମକୁ ଯିବୁ ଆରେ ବାବୁ
ତୋର ଦକ୍ଷିଣ ଖମ୍ଭରେ ଆମ୍ଭେ ରହିଥିବୁ ।
ଯେତେ ଧନୁଶର ଆଣିଦେଲି ମୁହିଁ ମାଗି
ବାଞ୍ଛା ସିଦ୍ଧ ହେଲା ବାବୁ ଦିଅ ତାହା ବେଗି ।
ଖାଣ୍ଡବ ବନ ଦହିଲେ ଅଗ୍ନିକରି ବାଦ
ରାଗେ ସେହି ହରି ନେଲେ ଇନ୍ଦ୍ରଙ୍କ ସମ୍ପଦ ।
ତିନିଯୁଗ ଯାଏ ମନ୍ଦଅଗ୍ନି ହୋଇଥିଲା
ଅର୍ଜୁନ ପ୍ରସାଦେ ଅଗ୍ନି ତେଜୋବନ୍ତ ହେଲା ।
ପୁଣି ସୁପ୍ରସନ୍ନ ହୋଇ ବୋଇଲେ ହୁତାଶ
ତିନିଯୁଗର ମୋ ବ୍ୟାଧି କଲୁ ତୁ ନିଃଶେଷ ।
ଯେସନେକ ନିଷ୍କଳଙ୍କ ହେଲା ମୋର କାୟ
କଳଙ୍କ ନ ଲାଗୁ ତୋର ବଂଶେ ଧନଞ୍ଜୟ ।
ଏ ସକଳ ବ୍ରହ୍ମାଣ୍ଡର ମୁହିଁ ଅଟେ ମୂଳ
ମୁହିଁ ଦହନ କରଇ ଦୁରିତ ସକଳ ।
ନିଷ୍କଳଙ୍କ ହେଲି ବାବୁ ତୋର ପରସାଦେ
ମୋହର କଲ୍ୟାଣ ବାବୁ ନ ପଡ଼ ପ୍ରମାଦେ ।
ଜଳ ଅନଳ ଖଡ଼ଗେ ନ ତୁଟୁ ତୋ କାୟ
ସଂଗ୍ରାମରେ ପାଇବୁ ତୁ ସବୁଠାରେ ଜୟ ।
ବୈବସ୍ୱତ ମନୁ ତହୁଁ ମୁନିଙ୍କି ପୁଚ୍ଛିଲେ
ଇନ୍ଦ୍ରଦେବ ମୋହ ଛାଡ଼ି କେଉଁଆଡ଼େ ଗଲେ ।
ଅଗସ୍ତି କହନ୍ତି ଶୁଣ ଏଥିର ଚରିତ
ଯାହା ଶୁଣନ୍ତେ କଲୁଷ ନ ରହଇ ଗାତ୍ର ।
ପିତା ପୁତ୍ର ଦୁହିଁଙ୍କର ଯୁଦ୍ଧ ସୂଚୀ ପୁଣି
ପୁଷ୍ପକ ବିମାନେ ବିଜେ କଲେ ଗୋସାମଣି ।
ଇନ୍ଦ୍ରଙ୍କୁ ସଚେତ କରି ପଚାରନ୍ତି ବାଣୀ
ତୁମ୍ଭେ ଚିହ୍ନି ନ ପାରିଲ ପୁତ୍ର ଫାଲଗୁନି ।
ସ୍ୱାମୀ ଅର୍ଜୁନଙ୍କୁ କୋପକଲ ଦେବରାୟ
ଅଗ୍ନିଦେବ ଭିଆଇଲେ ଏସନ ଉପାୟ ।
ଶାସ୍ତ୍ରମତେ ପରାଜୟ ହୋଇଲା ତୁମ୍ଭଙ୍କୁ
ଭଲା ପ୍ରମାଦ ଚିନ୍ତିଲ ତୁମ୍ଭେ ଅର୍ଜୁନକୁ ।
ଖାଣ୍ଡବ ବନର ଲାଗି ଚିନ୍ତା ଯେ ନକର
କରିବ ଏ ରୂପ ତୋଟା ପାର୍ଥ ପୁନର୍ବାର ।
ଅର୍ଜୁନକୁ ଶଚୀଦେବୀ କୋଳରେ ବସାଇ
ବହୁତ କଲ୍ୟାଣ ତାକୁ କଲେ ମହାଦେଈ ।
କିମ୍ପା ତୁରେ ଫାଲଗୁନି ଏଡ଼େ କଥାକଲୁ
ଅନଳେ କେତେ ପଦାର୍ଥ ଧ୍ୱଂସ କରିଦେଲୁ ।
ଅର୍ଜୁନ ବୋଇଲେ ମାତ ମୋର ଦୋଷ ନାହିଁ
କପଟେ ଅଗ୍ନିଦେବତା ସତ୍ୟ ଯେ କରାଇ ।
ଅଗ୍ନି ଛନ୍ଦ ମାୟା ମୁହିଁ ଜାଣି ନ ପାରିଲି
ଦରିଦ୍ର ବ୍ରାହ୍ମଣ ପ୍ରାୟ ମଣି ସତ୍ୟ କଲି ।

କାଳେ ହୋଇଲାକି ଆସି ଏସନକ କୃତ୍ୟ
ନ ଜାଣି ଦ୍ୱନ୍ଦ୍ୱକଲେ ମୋ ତୁଲେ ପୁରୁହୁତ ।
ଶଚୀ ବୋଲେ ଅରଜୁନ କେମନ୍ତେ ଯେ ହେବ
ଏବେ ପୁତ୍ରମାନେ ମୋର ନାଶ ଗଲେ ସର୍ବ ।
ଏଥକୁ ଉପାୟ ତୁହି କର ହୋ ବିବସ୍ୱ
ତୁ ଦିଶୁ ଆମ୍ଭଙ୍କୁ ବିଷ୍ଣୁ ଦୈବତ ସାକ୍ଷାତ ।
ତୋହର ବୁଦ୍ଧିରେ ବାବୁ ସମସ୍ତେ ଜୀଇବେ
ପାଇଲେ ଯେ ଯାହା ଦୋଷେ ଏଡ଼େ ପରାଭବେ ।
ଯହୁଁ ବହୁତ ବିନୟ ହେଲେ ଠାକୁରାଣୀ
ଶୁଣି ଦୟାକଲେ ତାକୁ ବୀର ଫାଲଗୁନି ।
ଅମୃତାଶରକୁ ଅଗ୍ନି ତାକୁ ଦେଇଥିଲେ
ତକ୍ଷଣେ ସେ ଶର ପାର୍ଥ ଗୁଣେ ବସାଇଲେ ।
ମନ୍ତ୍ର ପଢ଼ି ଅରଜୁନ ବୋଲେ ବାଣ ଯିବୁ
ଇନ୍ଦ୍ରର ପୁତ୍ରଙ୍କୁ ତୁହି ଜୀବଦାନ ଦେବୁ ।
ଯହୁଁ ପେଶିଲେ ଅମୃତ ଶର ଅରଜୁନ
ସଚେତ ହୋଇ ସମସ୍ତେ ବସିଲେକ ପୁଣ ।
ପୁତ୍ରମାନେ ସମସ୍ତେ ଯେ ସଚେତ ହୋଇଲେ
ଯାଇଣ ଇନ୍ଦ୍ର ରାଜାର ସନ୍ନିଧେ ବସିଲେ ।
ଇନ୍ଦ୍ର ର ।ଜା ନିଉନତା ସର୍ବ ଦେବେ ଶୁଣି
ପ୍ରବେଶ ହୋଇ ଆଶିଷ ସର୍ବେ କଲେ ପୁଣି ।
ତୋଟାଭଗ୍ନ ଦେଖି ସର୍ବେ ବ୍ୟାକୁଳ ହୋଇଲେ
କି କର୍ମ କଲୁ ପାର୍ଥକୁ ସମସ୍ତେ ବୋଇଲେ ।
ପାର୍ଥ ବୋଲେ ତୁମ୍ଭେ କିମ୍ପା ହେଉଛ ବିକଳ
ସର୍ବଦେବେ ତୁଣ୍ଡେ ଏବେ କିଛି ହିଁ ନ ଭାଳ ।
ଏତେ କହି ପାର୍ଥ ଅଗ୍ନି ଦେବ ମୁଖ ଚାହିଁ
କେଉଁ ବିଚାର କରିବି କହ ଦେବସାଇଁ ।
ଅଗ୍ନିଦେବତା ବୋଇଲେ ମୋତେ କି ପଚାର
ଯେମନ୍ତ ପାର ତେମନ୍ତ ଦେବକାର୍ଯ୍ୟ କର ।
ଅଗ୍ନିଙ୍କଠାରୁ ଏସନ ବଚନ ଶୁଣିଣ
ଦେବତାଙ୍କ ଆଦେଶ ସେ କଲେକ ପାଳନ ।
ବିନ୍ଧିଲେ ଅମୃତାଶର ପୁଣି ସବ୍ୟସାଚୀ
ସମସ୍ତ ବୃକ୍ଷମାନ ଯେ ଯାହାଠାରେ ସଞ୍ଚି ।
ପୂର୍ବପରି ବୃକ୍ଷମାନେ ମେଲିଲେକ ଶାଖା
ଫଳପୁଷ୍ପମାନ କେହୁ କରିପାରେ ଲେଖା ।
ଦେଖିକରି ସର୍ବଦେବେ ଆନନ୍ଦ ହୋଇଲେ
ଧନ୍ୟ ଧନ୍ୟ ଅରଜୁନ ବୋଲିଣ ବୋଇଲେ ।
ଅର୍ଜୁନକୁ କୋଳକରି ଧରି ପୁରନ୍ଦର
ବହୁତ ଆନନ୍ଦ ସେହୁ ହେଲେ ବଜ୍ରଧର ।
ଆବର ଶଚୀଦେବୀ ଯେ ବହୁତ ଆନନ୍ଦ
ମୁଖ ବିକାଶଇ କିବା ପୂର୍ଣ୍ଣିମାର ଚାନ୍ଦ ।

ଅର୍ଜ୍ଜୁନ ମୁଖକୁ ଚାହିଁ ସହସ୍ର ଲୋଚନ
ବର ମାଗ ବାବୁ ମୁହିଁ ହୋଇଲି ପ୍ରସନ୍ନ ।
ଅର୍ଜ୍ଜୁନ ବୋଇଲେ ତାତ ଯେବେ ଦେବ ବର
ଅଗ୍ନି ଦେଇଛନ୍ତି ଯେତେ ଯେତେ ଦେବଶର ।
ସେ ମୋତେ ପ୍ରାପତ ହେଉ ମନ୍ତ୍ର ସହିତରେ
କୃଷ୍ଣ ସଙ୍ଗେ ପ୍ରୀତି ମୋର ଥାଉ ନିରନ୍ତରେ ।
ତଥାସ୍ତୁ ହେଉ ବୋଇଲେ ସହସ୍ର ଲୋଚନ
ସ୍ୱରଗକୁ ଯିବାପାଇଁ ଉଦବେଗ ମନ ।
ପୁଷ୍ପକ ବିମାନେ ନେଇ ଇନ୍ଦ୍ରକୁ ବସାଇ
ଅମର ବାରସ୍ୱତୀରେ ବିଜେ ଦେବୀ ଯାଇ ।
ଆବର ଅର୍ଜ୍ଜୁନେ ବର ଦେଇ ହୁତାଶନ
ଚାହୁଁ ଚାହୁଁ କେଣେ ହୋଇଗଲେ ଅନ୍ତର୍ଦ୍ଧାନ ।
ଅର୍ଜ୍ଜୁନ ସେଠାରୁ ଶସ୍ତ୍ରମାନ ଘେନିଗଲେ
ସେ ଦେବ ଶରକୁ ନେଇ କୈଳାସେ ଥୋଇଲେ ।
ନନ୍ଦିଘୋଷ ରଥ ଚାରିଅଶ୍ୱଙ୍କ ସହିତ
ସେ ସମସ୍ତ ସମ୍ଭାଳିଲେ ଜଗତର ମାତ ।
ଗଉରୀଙ୍କ ପାଦତଳେ ପଡ଼ି ଧନଞ୍ଜୟ
ସୁମରିଲେ ଦେବୁ ମାତା ଶସ୍ତ୍ର ରଥ ଦ୍ୱୟ ।
ଲୟ ବୋଧନ ଏ ମନ୍ତ୍ର ଦେଲେକ ପାର୍ବତୀ
ଲୋଡ଼ାବେଳେ ମନ୍ତ୍ର ପଢ଼ି ସୁମରିବୁ ଧାତି ।
ଦ୍ୱିତୀୟ ପିନାକ ଧନୁ କରେ ଘେନିଅଛି
ତୂଣୀରେକ ଘେନି ତହିଁ ଚଳେ ସବ୍ୟସାଚୀ ।
ତପୋଧନ ରୂପ ଦେଖି ଗଲା ଫାଲଗୁନି
ଶିରେ ବାନ୍ଧିଲେ ପିଙ୍ଗଳ ଜଟାଗୋଟି ତିନି ।
ବିଭୂତି ଭୂଷଣ ମୁଦ୍ରା ସ୍ଫଟିକର କର୍ଣ୍ଣେ
ତାମ୍ର ବସନ ଆରୋପି ଶରୀର ଉଦ୍ୟାନେ ।
ପ୍ରବାଳ ଡୋରେ ଗୋଟିଏ ଭିଡ଼ିଦେଇ କଟୀ
ଗଣ୍ଡସ୍ଥଳରେ ଉରଗ କାଛଟା କର୍ପଟି ।
ଏସନକ ସ୍ୱରୂପ ଯେ ରୁଦ୍ରରୂପ ଚିହ୍ନ
ସତ୍ୟରକ୍ଷା ଅର୍ଥେ ପାର୍ଥ ବୁଲେ ଘୋରବନ ।
ଅନେକ ସାନନ୍ଦ ବୀର ମନରେ ହରଷ
ଯେତିକି ଗହନ ବନ ତେତିକି ସନ୍ତୋଷ ।
ଏମନ୍ତ ପାର୍ଥ ଅନେକ ତୀର୍ଥ ଭ୍ରମି ଭ୍ରମି
ବହୁତ ଗିରି କନ୍ଦର କାନନକୁ ଗମି ।
ଏମନ୍ତ ଯେ ବନବାସ ଦ୍ୱାଦଶ ବରଷ
ତହିଁ ଶୁଭେ ଗଲା ନବବର୍ଷ ସାତମାସ ।
ଶ୍ରୀଚଣ୍ଡୀ ଶାରଳାଙ୍କର ଚରଣେ ଦଇନି
ଦୟାକରି ଯାହା ମୋତେ କହେ ଯାଜ୍ଞସେନୀ ।
ତାହା ଶୁଣି ମୁହିଁ ଗ୍ରନ୍ଥେ କରଇ ଲିଖନ
ନୋହିବାକୁ କଥା ଲଜ୍ଜା ନାହିଁ ମୋର ମନ ।
ଶାରଳା ଦାସକୁ ପାଖେ ରଖ ଜଗନ୍ନାଥେ
ଜନ୍ମେ ଜନ୍ମେ ଶରଣ ମୁଁ ତୁମ୍ଭ ପାଦଗତେ ।



## ଖାଣ୍ଡବ ବନ ଦହନରୁ ଯେଉଁମାନେ ବଞ୍ଚିଲେ ସେମାନଙ୍କ ନାମ

କରପତ୍ର ଯୋଡ଼ି ପୁଚ୍ଛେ ବୈବସ୍ୱତ ମନୁ
ପାଦ୍ୟ ଅର୍ଘ୍ୟଦେଇ ପୂଜାକରି ଘଟସୂନୁ ।
ଶୁଣିଲି ମହାତ୍ମା ହେଲା ଖାଣ୍ଡବ ଦହନ
ମହାପାତକ ମୋହର ହୋଇଲା ଖଣ୍ଡନ ।
ସବୁ ପୋଡ଼ିଗଲେ କି କେ ରହିଲେ ଉବୁରି
ସେ କଥା ମୁନି ମୋ ଆଗେ କହ ହେ ବିସ୍ତାରି ।
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ଶୋଷକ କାଳସର୍ପ ଯେ କୁଳିକ କୁମର ।
କର୍ଣ୍ଣରେ ଶରଣ ପଶି ସେ ରକ୍ଷା ପାଇଲା
ମିତ୍ର ପୁତ୍ର ବୋଲି ତାକୁ ଅଗ୍ନି ଛାଡ଼ିଦେଲା ।
ତାରାକ୍ଷୀ ନାମରେ ଥିଲା ଗୋଟିଏ ଚଢ଼େଇ
ସେହି ଶରଣ ପଶିଲା ଗର୍ଭବତୀ ହୋଇ ।
ରଖିଲେ ସେ ଚଢ଼େଇକୁ ଅଗ୍ନି ଦୟାବହି
ସେ ପୁଣି ପ୍ରାଣ ପାଇଲା ଅଗ୍ନିପାଶେ ଥାଇ ।
ଚକ୍ରବାକ ଅଗ୍ନିରେ ଯେ ଶରଣ ପଶିଲା
ଦୟାକରି ଅଗ୍ନି ତାର ଶରଣ ରଖିଲା ।
ତାମ୍ରଚୂଡ଼ା ନାମେ ଥିଲା ଚଢ଼େଇ ଗୋଟିଏ
ଶ୍ରୀରାମଙ୍କ ମୁକୁଟ ତା ଶିରପରେ ଥାଏ ।
ଦେଖି ତାହାକୁ ଛାଡ଼ିଲେ ଧନଞ୍ଜୟ ବୀର
ଆବର ଦୟା ହିଁ ତାକୁ କଲେକ ଅପାର ।
ବିଷ୍ଣୁ ପ୍ରସାଦ ନାମରେ ଚଢ଼େଇ ଗୋଟିଏ
ଶ୍ରଦ୍ଧାରେ ପାର୍ଥ ତାହାକୁ ଆଡ଼ କରି ଦିଏ ।
ବିଷ୍ଣୁ ପ୍ରସାଦ ନାମେ ଯେ ବିଷ୍ଣୁ ବୃକ୍ଷ ଥିଲା
ଅଗ୍ନି ଦେବତା ତାହାକୁ ତା ଭାଗେ ରଖିଲା ।
ରଖିଲେକ ପାଳଧୂଆ ଗଛ ବୈଶ୍ୱାନର
ତାଠାରେ ଶ୍ରଦ୍ଧା ଥିବାରୁ ଅଗ୍ନି ଦେବଙ୍କର ।
ବିଷ୍ଣୁ ପ୍ରସାଦ ବୋଲି ଯେ ଏକ ଅଶ୍ୱ ଥିଲା
ଅଗ୍ନି ଦେବତା ତାହାକୁ ଶ୍ରଦ୍ଧାରେ ରଖିଲା ।
ନୀଳକଣ୍ଠ ଚଢ଼େଇକି ପାର୍ଥ ରକ୍ଷା କଲେ
ତା ଶରୀରେ ଯହୁଁ ରୁଦ୍ର ଚିହ୍ନକୁ ଦେଖିଲେ ।
ପୁଷ୍ପକ ମଧ୍ୟରେ ରକ୍ଷା ପାଇଲା ବକୁଳ
ଦେବେ ସ୍ତୁତିକଲେ ଯହୁଁ ରଖିଲେ ଅନଳ ।
ଜବା କୁସୁମ ଆଦିତ୍ୟ ଦେବ ମାଗିନେଲେ
ତେଣୁ ତାହାକୁ ଅନଳଦେବତା ରଖିଲେ ।

ତରାଟ ପୁଷ୍ପକୁ ମାଗିନେଲେ ପିତୃଗଣ
ମୟ ଦାନବ ମାଗିଲା ପାର୍ଥଙ୍କୁ ଶରଣ ।
ତାହାକୁ ରଖିଲେ ଅଗ୍ନି ପାଣ୍ଡବଙ୍କ ହିତେ
ସାରଙ୍ଗପକ୍ଷୀ ଯେ ଚାରିପୁତ୍ରଙ୍କ ସହିତେ ।
ବଞ୍ଚିଲେ ଖାଣ୍ଡବ ବନେ ରଖିଲେ ଅନଳ
ଯହୁଁ ସ୍ତୁତି କଲେ ତାଙ୍କୁ ଋଷି ମନ୍ଦପାଳ ।
ଶୋଷକ ସର୍ପ ତାରାକ୍ଷୀ ତାମ୍ରଚୂଡ଼ ପକ୍ଷୀ
ବିଷ୍ଣୁ ପ୍ରସାଦ ଚଢ଼ାଇ ଅଶ୍ୱବୃକ୍ଷ ଲେଖି ।
ସାରଙ୍ଗ ତା ଚାରିପୁତ୍ର ପକ୍ଷୀ ନୀଳକଣ୍ଠ
ମୟ ଦାନବ ବକୁଳ ଜବା ଯେ ତରାଟ ।
ଏହି ପନ୍ଦର ପଦାର୍ଥ ମାତ୍ର ରକ୍ଷା ହେଲା
ଆଉ ସବୁ ରାଗେ ଅଗ୍ନି ଦେବତା ଦହିଲା ।
ଯେତେବେଳେ ବର ଦେଇ ଗଲେକ ବାସବ
ଅର୍ଜ୍ଜୁନଙ୍କ ପାଦେ ପଡ଼ି ମୟ ଯେ ଦାନବ ।
ବୋଇଲା ଶିଳିପ ଶାସ୍ତ୍ର ପଢ଼ାଅଛି ମୋର
ଲୋଡ଼ାହେଲେ ଗଢ଼ିଦେବି ତୁମ୍ଭର ନଗର ।
ତୁମ୍ଭେ ମୋତେ ଜୀବଦାନ ଦେଲେ ହେ ଅର୍ଜ୍ଜୁନ
ଦେବଦତ୍ତ ନାମେ ଶଙ୍ଖ ଦେଉଛି ମୁଁ ଘେନ ।
ଏ ଶଙ୍ଖ ଶବଦ ଶୁଣି ଶତ୍ରୁ ଯିବେ କ୍ଷୟ
ତାହାଙ୍କର ହୃଦେ ଜାତ ହେବ ମହାଭୟ ।
ବରୁଣର ଶଙ୍ଖ ସେହି ଦେଇଥିଲେ ମୋତେ
ତୁମ୍ଭଙ୍କୁ ଏ ଶଙ୍ଖ ମୁହିଁ ଦେବଇଁ ସୁଚିତେ ।
ଆନନ୍ଦ ମନରେ ନେଲେ ସେ ଶଙ୍ଖ ଅର୍ଜ୍ଜୁନ
ଫୁଙ୍କନ୍ତେ ତହିଁରୁ ଜାତ ହେଲା ମହାସ୍ୱନ ।
ମୟକୁ ଚାହିଁ ଅର୍ଜ୍ଜୁନ କହିଲେ ସନ୍ତୋଷେ
ଲୋଡ଼ିବା ମାତ୍ରେ ଆସିବ ତୁମ୍ଭେ ଆମ୍ଭ ପାଶେ ।
ଏହିପରି ଥିବ ତୁମ୍ଭ ଆମ୍ଭର ପୀରତି
ମୟ ତହୁଁ ଗଲା ତାଙ୍କୁ କରିଣ ବିନତି ।
ଶ୍ରୀଚଣ୍ଡୀ ଶାରଳାଦେବୀ ପାଦେ ନିତି ସେବେ
ଶାରଳା ଦାସଙ୍କୁ ଗତି ମୁକତି ଯେ ଦେବେ ।
ବନ୍ଦଇ ଶ୍ରୀଦୁର୍ଗା ମାଗୋ ଦୁର୍ଗତି ତାରିଣୀ
ଦୁଷ୍ଟଜନଙ୍କୁ ଖର୍ପରେ ପକାଉ ତୁ ହାଣି ।
ସୁଜନ ଜନମାନଙ୍କୁ ସୁଗତି ତୁ ଦେଉ
ସର୍ବଦା ପ୍ରାଣୀଙ୍କୁ ମାଗୋ ଦୟା କରିଥାଉ ।
ମହିଷା ସୁରକୁ ମାଗୋ ମାଇଲୁ ଯେ ବେଳ
ତୋର ହସ୍ତେ ତେତେବେଳେ ଥିଲା ଯେ ତ୍ରିଶୂଳ ।
ସଂସାର ଜନଙ୍କ ହିତେ ରହିଲୁ ଉଲଗ୍ନେ
ସିଂହ ପୃଷ୍ଠେ ଉଭାହେଲୁ ବସ୍ତ୍ର ନାହିଁ ଅଙ୍ଗେ ।
ଚଣ୍ଡମୁଣ୍ଡ ଅସୁରଙ୍କୁ ମାୟାରୂପେ ଭଣ୍ଡି
ଭକ୍ଷିଲୁ ତା ମାଂସଖଣ୍ଡି ନାମ ବହି ଚଣ୍ଡୀ ।
ରକତବୀର୍ଯ୍ୟ ରୁଧିର ଶୋଷିଲୁ ଗୋ ମାଏ
ନିରକ୍ତ ହୋଇ ଦନୁଜବର ଗଲା କ୍ଷୟେ ।
ଏମନ୍ତ କରି ରକତବୀର୍ଯ୍ୟକୁ ବିନାସ
ଭାବେ ଈଶ୍ୱରଙ୍କୁ ସେହି ରସେ କଲୁ ବଶ ।
ମୁହିଁ ଯେ ଶାରଳା ଦାସ ଅରକ୍ଷିତ ଜନ
ଜନ୍ମେ ଜନ୍ମେ ତୋ ଚରଣ କରଇ ବନ୍ଦନ ।

—୦—

## ମନ୍ଦପାଳ ସ୍ତୁତି

ଏଥିଅନ୍ତେ ସେ ବିଲଙ୍କା ଦେଶ ମନୁରାଜା
ଅଗସ୍ତି ଚରଣ ତଳେ କଲେ ଦିବ୍ୟପୂଜା ।
ସାବଧାନ ହୋଇ ତୁମ୍ଭେ ଶୁଣିମା ଗୋସାଇଁ
ଆବର କଥାଏ ମୁହିଁ ଛାମୁରେ ଜଣାଇ ।
ଖାଣ୍ଡବ ବନ ଦହନ ଶୁଣିଲି ଶ୍ରବଣେ
ପାପ ଭାରକୁ ମୋହର ଖଣ୍ଡିଲି ତକ୍ଷଣେ ।
ସାରଙ୍ଗୀ ତା ଚାରିପୁତ୍ର ବଞ୍ଚିଲେ କେମନ୍ତେ
କିମ୍ପା ତାଙ୍କୁ ନ ଭକ୍ଷିଲେ ବଳେ ବୀତହୋତ୍ରେ ।
ତାହାଙ୍କୁ ରଖିଲେ ଦେବୀ କେଉଁ ଉପାୟରେ
ପକ୍ଷୀହୋଇ ମନୁଷ୍ୟ ଯେ କେହ୍ନେ ଜାତ କରେ ।
ଏଥିର ଚରିତ କହ ଶୁଣେ ଦିବ୍ୟକଥା
ଅଗସ୍ତି କହିଲେ ଶୁଣ ଏଥିର ବ୍ୟବସ୍ଥା ।
ମନ୍ଦପାଳ ବୋଲି ଋଷି ବଡ଼ ତପୀ ସେହି
ଊର୍ଦ୍ଧ୍ୱରେତ ହୋଇ ନିତ୍ୟ ଜପ କରୁଥାଇ ।
ଅପୁତ୍ରିକ ହୋଇ ଋଷି ଶରୀର ଛାଡ଼ିଲା
ପିତୃଲୋକଙ୍କର ପାଶେ ଯାଇଣ ବସିଲା ।
ତପବଳେ ମହାଋଷି ପାଇଲେକ ଧର୍ମ
ଭରସା ନ ପାଇ ତାକୁ ଛାଡ଼ିଦେଲା ଯମ ।
ଋଷି ବୋଇଲେ କଠୋର ତପ ମୁହିଁ ସାଧେ
ତେଣୁ ପାଇଲି ଉତ୍ତମ ଫଳ ହେ ବିବୁଧେ ।
ଯମଦେବ ବୋଇଲେ ହେ ଶୁଣ ମନ୍ଦପାଳ
ମାନବ ଦେହରେ ଜାତ ହୋଇ ରବିତଳ ।
ଅବଶ୍ୟ ପାଳିବ ସେହି ଜାଣ ବେଦବାକ୍ୟ
ଉପୁଜାଇବ ସେ ଯାଗ କରି ପୁତ୍ର ଏକ ।
ଅପୁତ୍ରିକ ଜନ ପାଏ ଯମ ଅଧିକାର
ଉତ୍ତମ ଲୋକରେ ବାସ ନ ହୁଅଇ ତାର ।
ଯମଦେବତା ମୁଖରୁ ଏସନକ ଶୁଣି
ବଡ଼ ଚିନ୍ତା ପାଇଲେ ସେ ମନ୍ଦପାଳ ମୁନି ।
ଋଷି ଚିନ୍ତାଭର ହେବା ଦେଖି ଦେବଗଣେ
ବୋଲନ୍ତି ଶୁଣ ହୋ ମନ୍ଦପାଳ ମହାମୁନେ ।
ଏବେ ତୁମ୍ଭେ ମର୍ତ୍ତ୍ୟପୁରେ ଯାଅସି ଯେ ବେଗେ
କୌଣସି ଜୀବଠୁଁ ପୁତ୍ର ଜାତ କର ଏବେ ।

ଶୁଣି ମନ୍ଦପାଳ ଋଷି ଅଇଲେକ ବେଗେ
ତୁରିତେ ମିଳିଲେ ଯାଇ ମର୍ତ୍ତ୍ୟପୁର ଭାଗେ ।
ମୁନି ଭାଳେ ପୁତ୍ର ହେବ କେବଣ ହିଁ ବାଗେ
ଏତେକ ବିଚାରି ସେହୁ ବସି ଯୋଗମାର୍ଗେ ।
ତହୁଁ ମର୍ତ୍ତ୍ୟପୁରେ ଆସି ମିଳିଲେ ବହନ
ସ୍ୱର୍ଗ ଗଙ୍ଗାକୂଳେ ଦେଖେ ସେ ଖାଣ୍ଡବ ବନ ।
ଏଥିମଧ୍ୟେ ମୁନି ବେଗେ ପଶିଲେକ ଯାଇ
ଦେଖିଲେ ସାରଙ୍ଗୀ ପକ୍ଷୀ ବସିଣ ଅଛଇ ।
ତାହାର ଦିବ୍ୟରୂପକୁ ଦେଖି ମୁନିବର
ମୁନିରୂପ ଛାଡ଼ି ହେଲେ ପକ୍ଷୀର ଶରୀର ।
ସାରଙ୍ଗୀ ପକ୍ଷୀର ସଙ୍ଗେ ମନ୍ଦପାଳ ମୁନି
କାମରଙ୍ଗେ କ୍ରୀଡ଼ା କଲେ ସେହି ତପୋଧନୀ ।
ରମଣ କେଳି କୌତୁକ କଲେ ତାର ତୁଲେ
ତାର ତହୁଁ ଚାରିପୁତ୍ର ଉପୁଜିଲେ ଭଲେ ।
ମନୁଷ୍ୟ ଶରୀର ତାଙ୍କ ଅଙ୍ଗେ ପକ୍ଷ ହୋଇ
ପିତାର ଗୁଣରେ ସେହୁ ନରରୂପ ପାଇ ।
ମାତା ଗୁଣ ଘେନି ତାଙ୍କ ପକ୍ଷ ଅଛି ଅଙ୍ଗେ
ଶୁଣ ତୁମ୍ଭେ ମନୁରାୟେ ଏ କଥା ସୁବାଗେ ।
ବୈବସ୍ୱତ ପଚାରିଲେ ମୁନି ମୁଖ ଚାହିଁ
ପକ୍ଷୀ ଚାରିପୁତ୍ରେ କିସ କଲେ ତପୀସାଇଁ ।
ରାଜା ପଚାରନ୍ତେ ତହିଁ କହେ ମୁନିବର
ଏକମନେ ଶୁଣ ଆହେ ମନୁ ନୃପବର ।
ସେ ଚାରିପୁତ୍ରଙ୍କୁ ମାତା ନିକଟରେ ଥୋଇ
ସ୍ୱରଗ ଭୁବନେ ମୁନି ପ୍ରବେଶିଲେ ଯାଇ ।
ଅଗସ୍ତି ବୋଲନ୍ତି ବନ ଦହନ ହୁଅନ୍ତେ
ବ୍ୟାକୁଳ ହେଲା ସାରଙ୍ଗୀ ପୁତ୍ରଙ୍କ ନିମନ୍ତେ ।
ବିକଳେ ସେ ପୁତ୍ରଙ୍କର ପାଶେ ଅଛି ରହି
କେମନ୍ତେ ବା ଛାଡ଼ିଯିବ ବାଳକ ତ ଏହି ।
ଯୋଗବଳେ ମନ୍ଦପାଳ ତା ଜାଣି ଭାଳଇ
ନିଶ୍ଚୟ ପୁତ୍ରଙ୍କୁ ମୋର ଅନଳ ଦହଇ ।
ଆଶ୍ରମରେ ଥାଇ ସ୍ତୁତି କଲେ ମନ୍ଦପାଳ
ତ୍ରାହି କର ତ୍ରାହି କର ବିଶାଳ ଅନଳ ।
ଭୋ ଅଗ୍ନି ତୁ ସର୍ବଜନ ଭକ୍ଷ ସର୍ବମୁଖ୍ୟ
ଭୋ ବୈଶ୍ୱାନର ଦେବତା ମୋ ପୁତ୍ରଙ୍କୁ ରଖ ।
ଭୋ ହୁତାଶନ ତୁ ସର୍ବପ୍ରାଣୀ ହୃଦେ ଥାଉ
ବିବୁଧଙ୍କ ମଧ୍ୟେ ତୁହି ଶ୍ରେଷ୍ଠ ଯେ ବୋଲାଉ ।
ଜ୍ଞାନରେ ତୁ ଦେବ ହେଉ ଅଷ୍ଟ ପରକାର
ତୁହି କୋପ କଲେ ଧ୍ୱଂସ ହୁଅଇ ସଂସାର ।
ତୁହି କ୍ଷମା କଲେ ମହା ଉତ୍ତମ ହୁଅଇ
ବିସର୍ଗ ଆଦାନ ଗତି ତୁ ସିନା କରାଇ ।
ତୁ ସିନା ଧାତା ବିଧାତା ଅଟୁ ପ୍ରଜାପତି
ଏସନକ ସ୍ତୁତି ଶୁଣି ଅଗ୍ନି ତୋଷମତି ।
ବୋଇଲେ ପାବକ ମନ୍ଦପାଳ ବର ମାଗ
କହେ ମନ୍ଦପାଳ ହୁଅ ତୁ ପ୍ରସନ୍ନ ଆଗ ।
ଖାଣ୍ଡବ ବନେ ଅଛନ୍ତି ମୋର ନାରୀ ପୁତ୍ର
ତୁ ତାହାଙ୍କୁ ନ ଦହିବୁ ଆହେ ବୀତିହୋତ୍ର ।
ଶୁଣି ତାହା ବୈଶ୍ୱାନର କଲେ ସନମତି
ଛାଡ଼ିଯିବି ନ ଦହିବି ତୋ ପୁତ୍ର ଯୁବତୀ ।
ଏମନ୍ତେ ଖାଣ୍ଡବ ବନ ଦହି ଆସେ ଅଗ୍ନି
ପକ୍ଷୀଏ ଶୋକ କରନ୍ତି କରି ଘୋର ଧ୍ୱନି ।
ଚାରି ପୁତ୍ରଙ୍କ ଜନନୀ ନାମ ଯେ ଜରିତା
ବିଳାପ କରି ବୋଲଇ ପାଇ ଘୋର ଚିନ୍ତା ।
ବାବୁରେ ଅଗ୍ନି ସକଳ ଦହି ଆସୁଅଛି
ଶୋକେ ସନ୍ତାପିତ ହୋଇ ସେ ପକ୍ଷୀ କହୁଛି ।
ପୁତ୍ରଙ୍କ ମରଣ ମୋର ଜୀବନ ଅସାର
କେମନ୍ତେ ଏ ପୋଏ ମୋର ଏଥୁ ହେବେ ପାର ।
ଏହାଙ୍କୁ ଘେନି ଏଠାରୁ ଯାଆନ୍ତି ପଳାଇ
ନେବାକୁ ମୋର ଶରୀରେ ପରାକ୍ରମ ନାହିଁ ।
ଛାଡ଼ି କେମନ୍ତେ ଯିବି ମୁଁ ହୃଦେ ଗୁରୁଚିନ୍ତା
ବ୍ୟାକୁଳେ ପୁତ୍ରଙ୍କ ଆଗେ କହଇ ସେ ମାତା ।
ବାବୁରେ ତୁମ୍ଭଙ୍କୁ ଛାଡ଼ି ଯିବଇଁ ମୁଁ କାହିଁ
ତୁମ୍ଭର ଶୋକେ ହୃଦୟ ପକାଇବି ଦହି ।
ତୁମ୍ଭଙ୍କୁ କୋଳରେ ଧରି ପଛକେ ମରିବି
ତୁମ୍ଭଙ୍କୁ ଅଗ୍ନିରେ ଦେଇ ଯାଇ ନ ପାରିବ ।
ବାବୁ ତୁମ୍ଭ ପିତା ବଡ଼ ନିର୍ଦ୍ଦୟରେ ପୁତ୍ରେ
ଛାଡ଼ିଗଲେ ତାଙ୍କୁ ଶୋକ ନ ଲାଗେ କିଞ୍ଚିତେ ।
ପୁତ୍ରଙ୍କ ଶୋକ ଆକୁଳେ ସାରଙ୍ଗୀ ଜରିତା
ପୁତ୍ରଙ୍କର ନାମ ଧରି କରେ ଗୁରୁଚିନ୍ତା ।
ଶିରଶିଖ ସ୍ତମ୍ଭଶିଖ ଦ୍ରୋଣଚିତ୍ର ଶିଖ
ଏମନ୍ତ ବୋଲି ଜରିତା ଡାକଇ ଅନେକ ।
ତୁମ୍ଭ ପିତା ମନ୍ଦପାଳ ଗଲେ ଏଥି ଥୋଇ
ଆମ୍ଭର କର୍ମରେ ଏହା ଥିଲା ଲେଖାହୋଇ ।
ଚାରିପୁତ୍ରେ ବୋଇଲେକ ଶୁଣ ଗୋ ଜନନୀ
ଛାଡ଼ିଯାଅ ଆମ୍ଭଙ୍କୁ ତୁ ଆସୁଅଛି ଅଗ୍ନି ।
ଜରିତା ବୋଇଲା ବାବୁ ମୂଷାଗାତେ ପଶ
ତୋର ଥିଲେ ଆମ୍ଭକୁଳ ନୋହିବ ଯେ ନାଶ ।
ଅଗ୍ନି ଭୟ ନୋହୁ ମୁଖେ ଧୂଳି ମୁଁ ଦିଅଇ
ପୁତ୍ରମାନେ ବୋଇଲେ ଯେ ମାତାଙ୍କୁ ଅନାଇଁ ।
ମାଗୋ ମୂଷା ଭକ୍ଷିବ ତ ବିବରେ ପଶନ୍ତେ
ମୁକତି ହୋଇବୁ ସିନା ଦହନ ଦହନ୍ତେ ।

ବୋଲଇ ଜନନୀ ଶୁଣ ଆରେ ଚାରିବତ୍ସ
ମୂଷାକୁ ସଞ୍ଚାଣ ନେଲା ଦେଖିଲି ପ୍ରତ୍ୟକ୍ଷ ।
ମୁଁ ଏହା ଦେଖିଛି ତୁମ୍ଭେ ଭୟ ଯେ ନ କର
ଶୀଘ୍ର ଯାଇ ପଶ ବାବୁ ବିବର ଭିତର ।
ପୁତ୍ରେ ବୋଇଲେ ଶୁଣସି ତୁହି ଆଗୋ ମାୟେ
ଗୋଟିଏ ମୂଷା ମଲେ କି ଆରେକ ନ ଥାଏ ।
ଭୁଞ୍ଜିବୁ ନାହିଁକି ଆମ୍ଭେ କର୍ମ ଫଳାଫଳ
ବିବରେ ମୂଷା ଉପରେ ଭକ୍ଷିବ ଅନଳ ।
ତୁହି ବେଗେ ଯାଅ ମାତା ତୋର ଭର୍ତ୍ତା ପାଶ
ଆମ୍ଭେ ଚାରିହେଁ ଅଗ୍ନିରେ ହୋଇବୁ ନା ଧ୍ୱଂସ ।
ପାବକ ଭକ୍ଷିବ ଯେବେ ଆମ୍ଭର ଏ ଗାତ୍ର
ସ୍ୱର୍ଗରେ ବସିବୁ ଆମ୍ଭେ ସହସ୍ରେକ ରାତ୍ର ।
ଜରିତା ସେଠାରେ ଥିଲା ଅଗ୍ନି ଅଛି ଯହିଁ
ବିକଳେ ଭାଳଇ ବସି ପୁତ୍ରମୁଖ ଚାହିଁ ।
ସେ ମରିବେ ବୋଲି ଅଗ୍ନି ନ ଚାହେଁ ତାହାଙ୍କୁ
ପକ୍ଷୀଏ ବୋଲନ୍ତି ବଡ଼ଭାଇ ଯେ ଦ୍ରୋଣଙ୍କୁ ।
ତୁମ୍ଭେ ବଡ଼ଭାଇ କର ଆମ୍ଭଙ୍କୁ ଯେ ପାର
ବାବୁ ଜ୍ୟେଷ୍ଠଭାଇ ଅଟେ ଜ୍ୟେଷ୍ଠ ଶ୍ରେଷ୍ଠ ସାର ।
କନିଷ୍ଠ ଭାଇମାନଙ୍କ କଷ୍ଟ ଯେ ଫେଡ଼ଇ
ଦ୍ରୋଣ କରଯୋଡ଼ି ସ୍ତୁତି ଅଗ୍ନିକି କରଇ ।
ଶିଖ ଶିଖ ଭାଇ ଆଦି କଲେ ଅଗ୍ନି ସ୍ତୁତି
ଜୟ ଜୟ ବୈଶ୍ୱାନର ପ୍ରଚଣ୍ଡ ମୂରତି ।
ସକଳ ଭକ୍ଷ ନ ଆସ ତୁମ୍ଭେ ଆମ୍ଭ ପାଖ
ଆମ୍ଭେ ଚାରି ହେଁ ବାଳକ ଆମ୍ଭଙ୍କୁ ତୁ ରଖ ।
ତୁମ୍ଭ ବିନା ପିତାମାତା ଆମ୍ଭର କେ ନାହିଁ
ପକ୍ଷ ଡେଣା ହୋଇନାହିଁ ଯିବୁ ଆମ୍ଭେ କାହିଁ ।
ଆନ ରକ୍ଷାକାରୀ ନାହିଁ ଶରଣ ଆମ୍ଭର
ତୋ ବିନୁ ଆମ୍ଭର କିଛି ନାହିଁ ପ୍ରତିକାର ।
ତୋ ବିନୁ ଆମ୍ଭର କେହି ନାହିଁ ଜୀବଦାତା
ତୁହି ଯେ ଅଗ୍ନି ସକଳ ଜନ ରକ୍ଷାକର୍ତ୍ତା ।
ତୋହର ଚରଣେ ଆମ୍ଭେ ପଶିଲୁ ଶରଣ
ଆମ୍ଭଙ୍କୁ ରଖି ଏଠାରୁ କର ତୁ ପ୍ରୟାଣ ।
ଭୋ ଅଗ୍ନି ସକଳ ଜନ କରୁ ତୁ ଉଦ୍ଧାର
ଆମ୍ଭମାନଙ୍କୁ ତୁ ବେଳେ ଏଥୁଁ ପାରିକର ।
ତୁ ଅଗ୍ନି ବିଷ ଅମୃତ ଆଦି କରୁ ପାନ
ତୁହି ତୁଷ୍ଟ ପୁଷ୍ଟ କରି ପାଳୁ ପ୍ରଜାଜନ ।
ତୋହର ମହିମା ଅନ୍ତ କେ କରି ପାରଇ
ଦେବତାଏ ସ୍ତୁତି ତୋତେ କରନ୍ତି ଗୋସାଇଁ ।
ଚକ୍ଷୁ ପିଙ୍ଗଳ ଲୋହିତବର୍ଣ୍ଣ ହିଁ ତୋହର
ଯେସନେ ସୁଚ୍ଛେ ରକ୍ଷଇ ଆମ୍ଭର ଶରୀର ।
ତେସନ କରି ଦେବ ତୁ ଆମ୍ଭଙ୍କୁ ସମ୍ଭାଳ
ଆମ୍ଭେ ତୋହର ଶରଣ ବାରେ ପ୍ରତିପାଳ ।
ସନ୍ତୋଷେ ବୋଇଲେ ତାଙ୍କୁ ଦେବ ହୁତାଶନ
ତୁମ୍ଭର ସ୍ତୁତିରେ ମୁହିଁ ହୋଇଲି ପ୍ରସନ୍ନ ।
ଭୟ ନ କରିଣ ତୁମ୍ଭେ ଥାଅ ନିଜ ଘରେ
ତୁମ୍ଭ ପିତା ବୋଲିଛନ୍ତି ସ୍ତୁତି ବଚନରେ ।
ଏବେ ତୁମ୍ଭ ସ୍ତୁତି ତହୁଁ ଅଧିକ ହୋଇଲା
ଏତେ ବୋଲି ଅଗ୍ନି ତହୁଁ ଆଡ଼ ହୋଇଗଲା ।
ଶୁଣ ହେ ରାଜନ ତୁମ୍ଭେ ଏଥୁଅନନ୍ତରେ
ପାଞ୍ଚପକ୍ଷୀ ନ ଭକ୍ଷିଲା ମୁନିଙ୍କ ସ୍ତୁତିରେ ।
ମନ୍ଦପାଳ ଋଷି ସେହି ପୁତ୍ରଙ୍କର ଶୋକେ
ନିଜ ଭାର୍ଯ୍ୟା ଲଳିତାକୁ ବୋଲେ ଦୃଢ଼ ବାକ୍ୟେ ।
କେଉଁପରି ଉଧୁରିବେ ମୋର ପୁତ୍ର ଚାରି
ପୁତ୍ରଙ୍କ ଶୋକେ ବୋଇଲେ ଲଳିତା ସୁନ୍ଦରୀ ।
ତୁମ୍ଭେ ପୂର୍ବେ ସ୍ତୁତି କରିଅଛ ମନ୍ଦପାଳ
ପ୍ରସନ୍ନେ ତୁମ୍ଭଙ୍କୁ ବର ଦେଇଛି ଅନଳ ।
ଶୋକେ ମନ୍ଦପାଳ ବୋଲେ ଭାଳି ହୃଦଗତେ
ଭୋ ଧର୍ମ ମୋ ପୁତ୍ରକଥା ଲାଗଇ ନା ତୋତେ ।
ମୋ ପ୍ରାୟେ ସଂସାରେ ମନ୍ଦ ନାହିଁ ଆନପ୍ରାଣୀ
ବାଳକୁମରକୁ ଛାଡ଼ି ଅଇଲି ନ ଜାଣି ।
ଅଗ୍ନିଦେବତା ସେ ସ୍ଥାନ ଛାଡ଼ି ତହୁଁ ଗଲା
ଜରିତା ମାତା ଯାଇ ତା ପୁତ୍ରକୁ ଦେଖିଲା ।
ପୁତ୍ରେ ଅଛନ୍ତି ଅଗ୍ନିରେ ନୋହି ଦଗ୍ଧ ତନୁ
ନୟନ ଦେଖି ଛାଡ଼ିଲା ଦୁଃଖ ପଞ୍ଚମନୁ ।
ମନ୍ଦପାଳ ଋଷି ତାହା ଦେଖିଲାକ ଯାଇ
ପୁତ୍ର ଭାରିଯାଙ୍କୁ ଦେଖି ସନ୍ତୋଷ ହୁଅଇ ।
ଜରତାକୁ ଚାହିଁ ବୋଲେ ଋଷି ମନ୍ଦପାଳ
ବେଗେ ଚାରିପୁତ୍ର ଆଣି ଦିଅ ମୋର କୋଳ ।
ଏହାଙ୍କୁ ଅଗ୍ନିରୁ ମୁହିଁ ରଖିଲି ପ୍ରତ୍ୟକ୍ଷେ
ଦିଅ ଆଣି ଲଗାଇବି ମୋ ପୁତ୍ରଙ୍କୁ ବକ୍ଷେ ।
ପୁତ୍ର ନ ଥିବାରୁ ନିନ୍ଦା ପାଇଲି ମୁଁ ସ୍ୱର୍ଗେ
ଜରିତା ବୋଇଲା ତୁମ୍ଭେ ପିତା କେଉଁମାର୍ଗେ ।
ତୋହର ଏ ପୁତ୍ରଙ୍କର କିସ ଅଛି କହ
ଛାଡ଼ିଗଲ ନାରୀପାଶେ ଆହେ ପୁଣ୍ୟଦେହ ।
ଜରିତା ଭାରିଯା ତୋର ଅଟେ ଧର୍ମ ଅଙ୍ଗ
ତାହାକୁ ଭଜିଲୁ ସ୍ୱାମୀ ଛାଡ଼ି ପୁତ୍ର ସଙ୍ଗ ।
ଋଷି ବୋଲେ ସ୍ତିରୀଠାରେ ବିଶ୍ୱାସ ହିଁ ନାହିଁ
ହିଂସାଭାବ କଥା ତୁହି କହିଲୁ କିମ୍ପାଇଁ ।
ଅଗ୍ନିରୁ ମୁକତ କଲି ମୁହିଁ ପୁତ୍ର ଚାରି
ପୁତ୍ରଙ୍କୁ ମୁଁ ବଞ୍ଚାଇଲି ଅଗ୍ନିତୋଷ କରି ।

ସାବତ ହିଂସା ଭାବକୁ ବହିଲୁ କେମନ୍ତେ
ଏବେ ବେଗେ ଚାରିପୁତ୍ର ଦିଅ ଆଣି ମୋତେ ।
ପୁତ୍ରଙ୍କୁ କୋଳରେ ଧରି ମନ୍ଦପାଳ ଋଷି
ମୁଖରେ ଚୁମ୍ବନ ଦେଇ ବଚନ ପ୍ରକାଶି ।
ଆରେ ପୁତ୍ର ଅଟ ତୁମ୍ଭେ ସୁଗୁଣୀ ବିଶେଷ
ତୁମ୍ଭ ଧର୍ମେ ବାବୁ ତୁମ୍ଭେ ନ ଗଲ ତ ନାଶ ।
ଏସନକ ବୋଲି ତହୁଁ ମନ୍ଦପାଳ ଋଷି
ମୁଖରେ ଚୁମ୍ବନ ଦେଇ ବଚନ ଆଶ୍ୱାସି ।
ହେ ପୁତ୍ରେ ଅଟରେ ତୁମ୍ଭେ ଗୁଣରେ ବିବେକ
ତୁମ୍ଭଙ୍କୁ କେ ପଟାନ୍ତର ନାହିଁ ତ୍ରଇଲୋକ ।
ଏସନକ କହି ସେହି ମନ୍ଦପାଳ ମୁନି
ସ୍ୱର୍ଗ ଭୁବନକୁ ଗଲା ଭାରିଯାକୁ ଘେନି ।
ତୁଳସୀ ବଲ୍ଲଭର ଶ୍ରୀଚରଣରେ ଆଶ
ନିରକ୍ଷଜନ ଅଟଇ ମୁଁ ଶାରଳା ଦାସ ।
ଦୟାରେ କହଇ ଯାହା ଶ୍ରୀଚଣ୍ଡୀ ଶାରଳା
ମୋହର କଣ୍ଠରେ ସେହି ପଦକରେ ଖେଳା ।
ମୁହିଁ ତାହା ହିଁ ଲେଖଇ ନାହିଁ ମୋର ଦୋଷ
ଭଲମନ୍ଦ ନ ବାଛିବ ସୁଜ୍ଞାନୀ ବିଦୁଷ ।

—0—

## ତାରାକ୍ଷୀ ଶରଣ

ଅଗସ୍ତିଙ୍କି ବୈବସ୍ୱତ ମନୁ ପୁଚ୍ଛାକଲା
ତାରାକ୍ଷୀ ପକ୍ଷୀ କେମନ୍ତେ ଶରଣ ପଶିଲା ।
ଏଡ଼େ ବଡ଼ ପ୍ରମାଦରୁ କେମନ୍ତେ ସେ ବର୍ତ୍ତି
ଏକେ ତ ପକ୍ଷୀ ଦ୍ୱିତୀୟେ ଥିଲା ଗର୍ଭବତୀ ।
ଏହି ତାରାକ୍ଷୀ ପକ୍ଷୀର ପାଶେ ପତି ନାହିଁ
ପୁତ୍ର ଦୁହିତା ତାହାର ନ ଥିଲେ ତ କେହି ।
ଏଥିର ଚରିତ ମୋତେ କହ ମୁନିବର
ତେବେ ଯେ ମନରୁ ଭ୍ରାନ୍ତି ଫିଟିବ ମୋହର ।
ଶୁଣିଣ ଅଗସ୍ତି ମୁନି ଅଳପ ହସିଲେ
ବହୁତ ପ୍ରଶଂସା ତାକୁ ମନେ ମନେ କଲେ ।
ଆନନ୍ଦ ମନେ କହନ୍ତି ସେ ଅଗସ୍ତି ମୁନି
ସାବଧାନ ହୋଇ ଶୁଣ ନୃପଚୂଡ଼ାମଣି ।
ତାରାକ୍ଷୀ ଚରିତ କର ଶ୍ରବଣରେ ପାନ
ତୋହର ନାନା ପାତକ ହୋଇବ ଦହନ ।
ପୂର୍ବେ ଯେ ତାରାକ୍ଷୀ ପକ୍ଷୀ ଥିଲା ବଡ଼ କ୍ଷମ
ଶାପ ପାଇ ମର୍ତ୍ତ୍ୟପୁରେ ଲଭିଲା ଜନମ ।
ସ୍ୱର୍ଗର ଗନ୍ଧର୍ବୀ ସେହି ପକ୍ଷୀରୂପେ ଆସି
ଗୁପତ ହୋଇ ଖାଣ୍ଡବ ବନେ ଥିଲା ବସି ।
ଏହା ଶୁଣି ବୈବସ୍ୱତ ମନୁ ପଚାରଇ
ଏଥିର ଚରିତ ମୋତେ କହିବା ବୁଝାଇ ।

କହନ୍ତି ଅଗସ୍ତି ମୁନି ସନ୍ତୋଷ ଚିତ୍ତରେ
ତାରାକ୍ଷୀର ପୂର୍ବକଥା କହିବା ସଧୀରେ ।
ତିଳୋତ୍ତମା ନାମେ ଥିଲା ଏକ ଅପସରୀ
ବହୁତ ବିଶ୍ୱାସ ତାକୁ କଲେ ବଜ୍ରଧାରୀ ।
ନୃତ୍ୟ ନବରଙ୍ଗ ରସେ ସେହି ପ୍ରତିଦିନ
ହରଣ କରଇ ଇନ୍ଦ୍ରଦେବଙ୍କର ମନ ।
ଏହିପରି ଗଲା ପୁଣି କେତେକାଳ ବହି
ତିଳୋତ୍ତମା ଖଟିଥାଇ ଇନ୍ଦ୍ର ପାଶେ ରହି ।
ଏକଦିନେ ରାତ୍ରକାଳେ ବୈଶାଖ ମାସରେ
ନିର୍ମଳ ଚନ୍ଦ୍ର ଉଦୟ ଶୁକଳ ପକ୍ଷରେ ।
ମଳୟ ପବନ ଧୀରେ ବହେ ଗନ୍ଧ ଘେନି
ଏମନ୍ତ ବେଳେ ଆସ୍ଥାନେ ସେ ସହସ୍ର ଯୋନି ।
ତିଳୋତ୍ତମା ସୁନ୍ଦରୀକୁ ଆଣିବା ନିମନ୍ତେ
ବୃଦ୍ଧଶ୍ରବା ଗନ୍ଧର୍ବକୁ ପେଶିଲେ ଗୁପତେ ।
ଇନ୍ଦ୍ରର ଆଜ୍ଞାରେ ସେହି ଗନ୍ଧର୍ବ ଚଳିଲା
ତିଳୋତ୍ତମା ଅପସରା ପାଶରେ ମିଳିଲା ।
ଇନ୍ଦ୍ରର ଆଜ୍ଞା ତାହାକୁ କହିଲା ବୁଝାଇ
ବୃଦ୍ଧଶ୍ରବା ବୋଇଲା ତୁ ଆସ ବେଗହୋଇ ।
ଇନ୍ଦ୍ରର ଆଜ୍ଞା ଶୁଣିଲା ଯହୁଁ ସେହି ବାଳୀ
ବେଶଭୂଷା ହୋଇ ବେଗ ବେଗ ଯାଇ ଚଳି ।
ବୃଦ୍ଧଶ୍ରବା ତାକୁ ଘେନି ଯାଉଁ ଯାଉଁ ବାଟେ
ବିହ୍ୱଳ ହେଲା ତା ମନ କାମର ଉଚ୍ଚାଟେ ।
ଏକେତ ଗନ୍ଧର୍ବୀ ପୁଣି ଦ୍ୱିତୀୟେ ସୁନ୍ଦର
ବେଶ ଭୂଷଣ ସେ ପୁଣ ଘେନିଛି ଅପାର ।
ତିଳୋତ୍ତମା ରୂପ ଦେଖି ତା ଚିତ୍ତ ଟଳିଲା
ଗୁରୁ ଗଉରବ ତହିଁ କିଛି ନ ମାନିଲା ।
ଇନ୍ଦ୍ରକୁ ଭୟ ତାହାର ନୋହିଲା ମନରେ
ତିଳୋତ୍ତମାକୁ ସେ ବଳେ ଧଇଲା କୋଳରେ ।
ତିଳୋତ୍ତମା ବୋଇଲା ତୁ ଛାଡୁ କିନା ମୋତେ
ଇନ୍ଦ୍ର ଶୁଣିଲେ ତ କୋପ କରିବଟି ତୋତେ ।
ଉଚ୍ଛୁର ହୋଇଲେ ଜଳି ହେବେ ସୁରରାଣ
ଛାଡ଼ ମୋତେ ବୃଦ୍ଧଶ୍ରବା ଚଳିବା ବହନ ।
ମଦନରେ ଉନମତ୍ତ ହୋଇ ବୃଦ୍ଧଶ୍ରବା
ବୋଇଲା ସୁନ୍ଦରୀ ଚାଲ ଆମ୍ଭେ ବନେ ଯିବା ।
ମଦନାତୁରେ ନମଣେ କିଛି ବୃଦ୍ଧଶ୍ରବା
ବଳେ ହରିବାକୁ ମନେ ବଡ଼ ତାର ଅବା ।
ତା କଥାରେ ସନମତ ନ କଲା ସୁନ୍ଦରୀ
ବେଳୁବେଳ ବୃଦ୍ଧଶ୍ରବା ମଦନେ ଆତୁରି ।
ବୋଇଲା ସୁନ୍ଦରୀ ମୋତେ ତୁ ନିରାଶ କଲୁ
ପକ୍ଷୀ ଜନ୍ତୁ ପ୍ରାୟେ ତୁହି ଫୁରୁଫୁରୁ ହେଲୁ ।

ଏଡ଼େକ ନିରାଶ ସଖି କଲ ଯେବେ ମୋତେ
ଘେନ ଅଭିଶାପ ମୁହିଁ ଦେଉଅଛି ତୋତେ ।
ପକ୍ଷୀଜନ୍ତୁ ହୋଇ ତୁହି ମର୍ତ୍ତ୍ୟେ ହୁଅ ଜାତ
ଦ୍ୱାପରଯୁଗ ଅନ୍ତେ ତୁ ହୋଇବୁ ମୁକତ ।
ତାରାକ୍ଷୀ ପକ୍ଷୀ ହୋଇବ ତୋର ନାମ ଜାଣ
ମୋହର କଥା କଦାପି ନ ହୋଇବ ଆନ ।
ଖାଣ୍ଡବ ବନେ ତୁ ପକ୍ଷୀରୂପ ଧରିଥିବୁ
ଯୁଗଶେଷ କାଳେ ନିଜ ତନୁକୁ ଧରିବୁ ।
ଏହି ଅଭିଶାପ ଯହୁଁ ଦେଲାକ ଗନ୍ଧର୍ବ
ଦଇବ ଲିଖନ କେହୁ ଅନ୍ୟଥା କରିବ ।
ଗନ୍ଧର୍ବ ସେଠାରୁ ତାକୁ ବେଗେ ଗେନିଗଲା
ତିଳୋତ୍ତମାକୁ ଇନ୍ଦ୍ରର ସନ୍ନିଧିରେ ଦେଲା ।
ଅପସରାକି ଅନାଇ ଇନ୍ଦ୍ର ପଚାରଇ
ଏତେକ ଉଛୁର ତୁହି କଲୁ କାହିଁପାଇଁ ।
ତିଳୋତ୍ତମା କହିଲା ନେ ସମସ୍ତ ଚରିତ
ଶୁଣିଣ ବହୁତ କ୍ରୋଧ କଲେ ସୁରନାଥ ।
ବୋଇଲେ ଏଡ଼େ ଅନ୍ୟାୟ ତୁହି ଆଚରିଲୁ
ତିଳୋତ୍ତମାକୁ ତୁ ବାଟେ ବଳେ ହରୁଥିଲୁ ।
ଧର୍ମକୁ ସେ ନ ଲଙ୍ଘିଣ ତୋତେ କଲା ନାହିଁ
ବିନାଦୋଷେ ଶାପ ଦେଲୁ ଏହାକୁ କିମ୍ପାଇଁ ।
ଏବେ ଆମ୍ଭ ଶାପ ତୋତେ ହେଉ ପରାପତ
ତୁହି ଯାଇ ମର୍ତ୍ତ୍ୟେ ହୁଅ ପକ୍ଷୀରୂପେ ଜାତ ।
ସେହି ଖାଣ୍ଡବ ବନରେ ଦୁହେଁ ରହିଥିବ
ଯୁଗଶେଷ ହେଲେ ଯାଇ ମୁକତି ପାଇବ ।
ବୃଦ୍ଧଶ୍ରବା ହୋଇବ ଯେ ନୀଳକଣ୍ଠ ପକ୍ଷୀ
ତୋହର ନାମ ହୋଇବ ପକ୍ଷୀ ଯେ ତାରାକ୍ଷୀ ।
ଦଇବର ବଳେ ଦୁହେଁ ଶାପ ଯେ ଲଭିଲେ
ଖଣ୍ଡବ ବନରେ ପକ୍ଷୀ ପକ୍ଷିଣୀ ହୋଇଲେ ।
ଶୁଣିଣ ସେ ବୃଦ୍ଧଶ୍ରବା ବିକଳ ହୋଇଲା
ତିଳୋତ୍ତମାକୁ ଘେନିଣ ଖାଣ୍ଡବକୁ ଗଲା ।
ପକ୍ଷୀରୂପ ଧରି ଦୁହେଁ ରହିଲେକ ତହିଁ
ଏହିରୂପେ ତହିଁ କେତେକାଳ ଗଲା ବହି ।
ବୃଦ୍ଧଶ୍ରବା ଗନ୍ଧର୍ବ ଯେ କଷ୍ଟରେ ରୋଦଇ
କଷ୍ଟ ଫେଡ଼ କଷ୍ଟ ଫେଡ଼ ଇନ୍ଦ୍ରଙ୍କୁ ଡାକଇ ।
ତାରାକ୍ଷୀ ସର୍ବଦା ଧର୍ମ ଧର୍ମ ସୁମରଇ
ତାହା ତୁଣ୍ଡୁ ଧର୍ମବିନା ଆନ ନ ଆସଇ ।
ଶୁଣିଲ ହେ ମନୁରାଜ ପଚାରିଲ ଯାହା
ଏ ଉତ୍ତାରେ ଯାହା ହେଲା ଶୁଣ ଏବେ ତାହା ।
ଯେ କାଳେ ଅଗ୍ନି ଖାଣ୍ଡବ ବନକୁ ଦହିଲେ
ପ୍ରଚଣ୍ଡ ହୋଇ ସେ ଶିଖା ଉର୍ଦ୍ଧ୍ୱକୁ ଟେକିଲେ ।

ଏମନ୍ତେ ଅଗ୍ନି ଆସି ତା ବସାର ନିକଟେ
ତହୁଁ ଅଧିକ ପ୍ରଚଣ୍ଡ ହୋଇ ଜଳିଉଠେ ।
ଦେଖିଲେ ଅଗ୍ନିର ତେଜ ଯହୁଁ ପକ୍ଷୀ ବେନି
ବୁଝିଲେ ପକ୍ଷୀ ଦମ୍ପତି ତାହା ପରିମାଣି ।
ଇନ୍ଦ୍ରର ନିରାଶ ଯେହୁ ଅଗ୍ନି ଦଇବତେ
ଅର୍ଜ୍ଜୁନକୁ ସତ୍ୟ କରି ମାଗିଲେ ଗୁପତେ ।
ତେଣୁକରି ଅଗ୍ନି ହୋଇଛନ୍ତି ତେଜୋବନ୍ତ
ନିଶ୍ଚେ ଖାଣ୍ଡବ ବନକୁ କରିବେ ଧୂମାନ୍ତ ।
ଏତେ ବିଚାରି ସେ ଦୁହେଁ ଗଗନେ ଉଡ଼ିଲେ
କଷ୍ଟଫେଡ଼ କଷ୍ଟଫେଡ଼ ବୋଲିଣ ବୋଇଲେ ।
ତାରାକ୍ଷୀ ପକ୍ଷୀ ଯେ ଧର୍ମ ଧର୍ମ ସୁମରଇ
ଏ ଶବଦ ଅର୍ଜ୍ଜୁନର କର୍ଣ୍ଣରେ ସମ୍ଭାଇ ।
ଅଗ୍ନି ଡାକଦେଲେ ପକ୍ଷୀ ଉଡ଼ିବାର ଦେଖି
ଶବ୍ଦ ଶୁଣି ସବ୍ୟସାଚୀ ଯାଉଅଛି ପକ୍ଷୀ ।
ଏହାଙ୍କର ଶବଦକୁ ଅର୍ଜ୍ଜୁନ ଶୁଣିଲେ
ମନଭେଦୀ ପେଶି ତାଙ୍କୁ ଶୂନ୍ୟରୁ ଆଣିଲେ ।
ତାରାକ୍ଷୀ ପକ୍ଷୀର ଗର୍ଭବାସ ହେବା ଦେଖି
ମନେ ମନେ ଅର୍ଜ୍ଜୁନ ତ ହେଲା ବଡ଼ ଦୁଃଖୀ ।
ଆବର ଡାକୁଅଛି ଯେ ଧର୍ମନାମ ଧରି
ଆର ପକ୍ଷୀ ଡାକେ କଷ୍ଟ ଫେଡ଼ ବୋଲିକରି ।
ଏକଥା ଭାଳି ତାହାକୁ ଅର୍ଜ୍ଜୁନ ରଖିଲା
ତାଙ୍କଠାରେ ଅଗ୍ନିଙ୍କର ତେଜ ନ ଲାଗିଲା ।
ପକ୍ଷୀ ପକ୍ଷିଣୀ ସେ ଦୁହେଁ ପାର୍ଥକୁ ଦେଖିଲେ
ଅନେକ ପ୍ରକାରେ ତାଙ୍କୁ ସ୍ତୁତି ବଖାଣିଲେ ।
ଅର୍ଜ୍ଜୁନ ତାହାଙ୍କ ସ୍ତୁତିବାକ୍ୟେ ଶାନ୍ତ ହେଲେ
କେଡ଼େ ପ୍ରମାଦରୁ ପକ୍ଷୀ ପକ୍ଷିଣୀ ରହିଲେ ।
ତୁ ଯେ ପଚାରିଲୁ ମୋତେ ମନୁ ମହାରାଣ
ଏସନ ଅଟେ ତାରାକ୍ଷୀ ପକ୍ଷୀର ପ୍ରମାଣ ।
ଶୁଣି ମନୁ ମହାରାଜା ଆନନ୍ଦ ହୋଇଲେ
ମୁନିବରକୁ ବହୁତ ବିନୟେ କହିଲେ ।
ତୁମ୍ଭର ପ୍ରସାଦେ ଏହା ଶୁଣିଣ ଶ୍ରବଣେ
ମହାପାତକ ସକଳ ହାରିଲଇଁ ଏଣେ ।
ନମସ୍ତେ ଶାରଳା ମାଗୋ ତୁ ସିଂହବାହିନୀ
ସିଦ୍ଧସ୍ଥାନେ ବାସ କରିଅଛୁ ଗୋସାମଣି ।
କାତି ଖପରକୁ ଧରିଥାଉ ତୁହି କରେ
ସିଂହବାହିନୀ ତୁ ମାତ ଭ୍ରମୁ ତିନିପୁରେ ।
ଛାଗଳ ମହିଷ ବୋଦା ଆଦି ତୁହି ଖାଉ
ରୁଧିର ଆହାରେ ଭୋଳମତି ହେଉଥାଉ ।
ଦିନେ ମାତ୍ର ଭୋଗ ତୋର ପଡ଼ିଆ ଗୃହର
ଜନ୍ମେ ଜନ୍ମେ ମୁହିଁ ଅଟେ ସେବକ ତୋହର ।

ମୁହିଁ ଯେ ଶାରଳା ଦାସ ଅଟଇ ନିରେଖ
ତୁ ଜଗତମାତ ତୋର ପାଦତଳେ ରଖ ।

—o—

## ଖାଣ୍ଡବ ବନର ପୂର୍ବ ବୃତ୍ତାନ୍ତ

ଏଥୁ ଅନନ୍ତରେ ପୁଣି ମନୁ ମହାରାଜା
ଅଗସ୍ତି ମୁନିଙ୍କ ପାଦେ କରି ଦିବ୍ୟ ପୂଜା ।
ବୋଇଲେ ଭୋ ମୁନି କଥା ଏକ ପଚାରଇ
ଖାଣ୍ଡବ ବନ ସେ ନାମ ହୋଇଲା କିମ୍ପାଇ ।
କି ଅଶୁଭବେଳାରେ ସେ ହୋଇଲା ସ୍ଥାପନ
ଅନଳରେ ପୋଡ଼ିଗଲା କେଡ଼େ ବଡ଼ ବନ ।
ବ୍ରହ୍ମା ଇନ୍ଦ୍ର ବୃହସ୍ପତି ଗ୍ରହ ତାରା ଯହିଁ
ଅନୁକୂଳେ ଘେନିଥିଲେ ପୋଡ଼ିଗଲା ସେହି ।
ଏଥିରେ ସଂଶୟ ମୁନି ଲାଗଇ ତ ମୋତେ
ବିସ୍ତାରି କହନ୍ତୁ ତାହା ମୋହର ଅଗ୍ରତେ ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ତିନିଯୁଗର ଏକଥା ଶୁଣ ଦିବ୍ୟରୀତି ।
ସତ୍ୟଯୁଗେ ବ୍ରହ୍ମା ବୃହସ୍ପତିଏ ବସିଲେ
ନାନା କଥାମାନ ତହିଁ କୁହା କୁହି ହେଲେ ।
ଇନ୍ଦ୍ରଦେବତା ବୋଇଲେ ବ୍ରହ୍ମା ମୁଖ ଚାହିଁ
କଥା ଏକ ପଚାରିବି ଶୁଣିମା ଗୋସାଇଁ ।
ତୋଟା ଗୋଟିଏ ରୋପିବା ପାଇଁ ହୁଏ ମନ
ଏଥିରେ ଯେ ଶୁଭଦିନ ଅନୁକୂଳ ଘେନ ।
ବ୍ରହ୍ମା ବୋଇଲେ ତୁ ବୃହସ୍ପତିଙ୍କୁ ପଚାର
ସେ ଦିଅନ୍ତୁ ଅନୁକୂଳ ବୁଝି ଦିନବାର ।
ଇନ୍ଦ୍ର ବୋଇଲେ ଯେ ବୃହସ୍ପତିଙ୍କୁ ଅନାଇ
ବୁଝି ଅନୁକୂଳ ଦିନ ଶୁଭ ଦେବାପାଇଁ ।
ଲକ୍ଷେକ ଗ୍ରନ୍ଥ ଅଛଇ ଜଉତିଷ ଶାସ୍ତ୍ର
ବୃହସ୍ପତି ଅନୁକୂଳ ଖୋଜିଲେ ବିଶେଷ ।
ଖୋଜିଲେ ଉତ୍ତମ ଯୋଗ ଲଗ୍ନ ବୃହସ୍ପତି
ନାଡ଼ି ନକ୍ଷତ୍ରକରଣ ଯୋଗ ବାର ତିଥି ।
ଇନ୍ଦ୍ରଙ୍କୁ ବୋଇଲେ ହେଲା ହେଲା ଅନୁକୂଳ
ବ୍ରହ୍ମାଙ୍କୁ ଘେନିଣ ବେଗେ ଶୁଭ ଦେବା ଚାଲ ।
ଆକାଶ ଗଙ୍ଗାର କୂଳେ ତୋଟା ଆରମ୍ଭିଲେ
ଦୀର୍ଘପ୍ରତି ମାପି ଶୁଭ ଅନୁକୂଳ ଦେଲେ ।
ଜଗନ୍ନାଥ ପ୍ରଭୁଙ୍କର ନାମକୁ ଉଚ୍ଚାରି
ଶୁଭ ଅନୁକୂଳ ତାହା ମନରେ ସୁମରି ।
ପ୍ରଥମେ ସେ ବିଷ୍ଣୁ ବୃକ୍ଷ ସ୍ଥାପିଲେକ ନେଇ
ଆପେ ହସ୍ତେ ଇନ୍ଦ୍ର ରାଜା ଖାତେକ ଖୋଳାଇ ।
ଆପେ ଇନ୍ଦ୍ର ବିଷ୍ଣୁ ବୃକ୍ଷ କଲେକ ସ୍ଥାପିତ
ମୂଷଳ ମୃତ୍ତିକା ଦେଇ ସ୍ଥାପେ ପୁରୁହୁତ ।
ବୃକ୍ଷ ସ୍ଥାପି ଇନ୍ଦ୍ର ବ୍ରହ୍ମା ବୃହସ୍ପତି ତିନି
ବଇକୁଣ୍ଠ ଭୁବନକୁ ଗଲେ ଅର୍ଘ୍ୟ ଘେନି ।
ବିଷ୍ଣୁ ପାଦେ ଅର୍ଘ୍ୟଦେଇ ବୋଲନ୍ତି ବାସବ
ଖଣ୍ଡନ ନୋହିବ ମୋର ତୋଟା ଦେବଦେବ ।
ଅଖଣ୍ଡ କରି ସେ ଯେଣୁ ଲଗାଇଲା ବୃକ୍ଷ
ଖାଣ୍ଡବ ବନ ତା ନାମ ଦେଲେ ସହସ୍ରାକ୍ଷ ।
ଅମର ଔଷଧି ଆଦି ନାନା ବୃକ୍ଷମାନ
ଲଗାଇଲେ ସେ ତୋଟାରେ ସହସ୍ରଲୋଚନ ।
ସ୍ତମ୍ଭନ ମୋହନ ବଶ୍ୟ ଉଚ୍ଚାଟନ ବୃକ୍ଷ
ଲଗାଇଲେ ସେ ଖାଣ୍ଡବ ବନେ ସହସ୍ରାକ୍ଷ ।
ନାନା ବୃକ୍ଷମାନ ଆଣି ତହିଁରେ ରୋପିଲେ
ଆକାଶ ଗଙ୍ଗାରୁ ପାଣି ତହିଁ ଛଡ଼ାଇଲେ ।
ନାନାଦି ବୃକ୍ଷର ଫଳ ସେ ବନେ ଫଳିଲା
ଦେଖି ଇନ୍ଦ୍ରରାଜା ମନେ ହରଷ ହୋଇଲା ।
ଶୁଣ ଆହେ ମନୁରାୟ ଖାଣ୍ଡବ ଚରିତ
ଏହାରୂପେ ଗଲା ତିନିଯୁଗ ପରିଯନ୍ତ ।
ବସନ୍ତ ବାତ ସେ ବନେ ନିରତେ ବହଇ
ନିରନ୍ତର ସେ ତୋଟାରେ କୋକିଳ ଭାଷଇ ।
ତହିଁରେ ଯେତେକ ଜୀବ ସର୍ବେ ଉନମତ୍ତା
ଶୁକ ଶାରୀଏ ରାବନ୍ତି ନାହିଁ କିଛି ଚିନ୍ତା ।
ଶୁଖିଲା ପତ୍ର ଯେତେକ ଭୂମିରେ ପଡ଼ଇ
ପବନର ଘାତେ ତହୁଁ ସବୁ ଉଡ଼ିଯାଇ ।
ନ କରନ୍ତି ପଶୁପକ୍ଷୀ ତହିଁ ମୂତ୍ର ମଳ
କରୁଥାନ୍ତି ସର୍ବଦା ସେ ବନେ କୋଳାହଳ ।
ଇନ୍ଦ୍ରର ତୋଟାକୁ ଦେବା କିସ ପଟାନ୍ତର
ତିନି ଭୁବନରେ ନାହିଁ ଉପମା ତାହାର ।
ସହସ୍ର ଗନ୍ଧର୍ବ ସେହି ତୋଟା ରଖିଥାନ୍ତି
ଶୁଣିଲୁ ତୋଟା ମହିମା ମନୁ ମହୀପତି ।
ତୋଟା ଦେଖି ସୁରପତି ମନ ଉଲ୍ଲସଇ
ରକ୍ଷ ଗନ୍ଧର୍ବଙ୍କୁ ଶାଢ଼ୀ ପ୍ରସାଦ ଦିଅଇ ।
ବସନ୍ତ କାଳରେ ନିତ୍ୟ ଇନ୍ଦ୍ର ବିଳସଇ
ଇଚ୍ଛା ହେଲେ ସେ ଅମରାବତୀକି ଗମଇ ।
ଶୁଣି ମନୁରାଜା ବଡ଼ ସନ୍ତୋଷ ହୋଇଲା
ଅଗସ୍ତି ମୁନିଙ୍କ ବେନିପାଦ ପୂଜା କଲା ।
ବୋଇଲା କଥାଏ ପଚାରିବି ଆଉ ମୁହିଁ
ତାହା ଶୁଣି ମନେ ମୋର ସଂଶୟ ଲାଗଇ ।
ଶୁଣିବାକୁ ଅସମ୍ଭବ ଏ ବଡ଼ ବିଚିତ୍ର
ଏହାଶୁଣି ମନକୁ ମୋ ଲାଗେ ଆଚମ୍ବିତ ।
ସେ ତୋଟାରେ ଅନୁକୂଳ ଦେବଗୁରୁ ଦେଲେ
ଆବର ଇନ୍ଦ୍ର ସ୍ୱହସ୍ତେ ବୃକ୍ଷ ଆରୋପିଲେ ।

ସେ ତୋଟା ଅନଳେ କିମ୍ପା ହୋଇଲା ଦହନ
ଏକଥା କହିବା ହେଉ ଆହେ ତପୋଧନ ।
ମନୁ ପଚାରନ୍ତେ ମୁନି ଅଗସ୍ତି ହସିଲେ
ଏ ସଂଶୟ କଥା ଶୁଣି ପୁରାଣ ଫେଇଲେ ।
କହନ୍ତି ଯେ ପୁରାଣକୁ ଚାହିଁ ମୁନିବର
ମହାଭାରତ ମହିମା ଅତି ଅଗୋଚର ।
ଯେତେକ ଦୃଶ୍ୟ ହୋଇଲା ତେତେ ସିନା କହି
ଅଦୃଷ୍ଟ ଯେ ଅଗୋଚର ଜାଣିବା ବା କାହିଁ ।
କହନ୍ତି ଯେ ଯୋଗଲୟେ ବସି ତପୋବନ୍ତ
ଶୁଦ୍ଧଚିତ୍ତ ହୋଇ ଶୁଣ ଆହେ ନରନାଥ ।
ତୁହି ଯେ ପଚାରି ପାରୁ ଏହି ସନ୍ଧିମାନ
ଏହା ପୁଛିବାକୁ ଶକ୍ୟ ନୋହିଲେଟି ଆନ ।
ଯହୁଁ ତୋହର ଚରିତ ନିର୍ମଳ ଜାଣିଲୁ
ଯୋଗଲୟେ କରି କହି କଥା ବଖାଣିଲୁ ।
ଖାଣ୍ଡବ ବନ ଦହନ ଅନନ୍ତରେ ପୁଣ
ଇନ୍ଦ୍ର ଡାକି ବ୍ରହ୍ମା ବୃହସ୍ପତି ଦୁଇଜଣ ।
ଅମର ଆସ୍ଥାନେ ବ୍ରହ୍ମା ବୃହସ୍ପତି ବସି
ଡାକିଲେ ବସିଲେ ଇନ୍ଦ୍ର ରାଜା ହସି ହସି ।
ଦେବତାମାନେ ସମସ୍ତେ ସଭାରେ ବସିଲେ
ଇନ୍ଦ୍ର ବ୍ରହ୍ମା ବୃହସ୍ପତି ଦୁହିଙ୍କୁ ପୁଛିଲେ ।
ବୋଇଲେ ହେ ଦେବଗୁରୁ ବୃହସ୍ପତି ଶୁଣ
ପଚାରିଲେ ନ ଧରିବ ମନେ ଅବିଗୁଣ ।
ତୁମ୍ଭେ ବୃହସ୍ପତି ନିଜେ ଅନୁକୂଳ ଦେଲ
ଜଗତର ପିତା ନିଜେ ଅର୍ଘ୍ୟଦାନ କଲ ।
ମୁହିଁ ନିଜେ ଇନ୍ଦ୍ର ତହିଁ ବୃକ୍ଷକୁ ପୋତିଲି
ଏଡ଼େ ଅନୁକୂଳେ ତୋଟା କିମ୍ପା ଗଲା ଜଳି ।
ମୋହର ବିଚାରେ ଏଥି ଅଗ୍ନିର ଯେ ଦୋଷ
ଆବର ଅର୍ଜୁନ ଏହି ତୋଟା କଲା ନାଶ ।
ମୋହର ବଇରୀ ଅଗ୍ନି ଅର୍ଜୁନ ହୋଇଲେ
ତୋଟା ଜାଳି ମୋର ମନ ବିହ୍ୱଳିତ କଲେ ।
କିମ୍ପା ଏଡ଼େ ଯୋଗରେ ସେ ତୋଟା ଗଲା ନାଶ
ଏତେ ଅନୁକୂଳେ କିମ୍ପା ତୋଟା ହେଲା ଧ୍ୱଂସ ।
ଏଥିର ତଦନ୍ତ କହ ବୁଝାଇଣ ମୋତେ
ତେବେ ନ ପାସୋରଯିବ ନ ରହିବ ଚିତ୍ତେ ।
ଶୁଣି ବ୍ରହ୍ମା ବୃହସ୍ପତି ବସିଣ ଭାଳିଲେ
ବ୍ରହ୍ମା ମୁଖ ଚାହିଁ ଗୁରୁ ବଚନ ଭାଷିଲେ ।
ଅଗ୍ନି ଅର୍ଜୁନର ଏଥି କିଛି ନାହିଁ ଦୋଷ
ଏଥିରେ ପୂର୍ବରୁ ଅଛି ବିଶେଷ ଭବିଷ୍ୟ ।
ଲକ୍ଷେକ ଜ୍ୟୋତିଷ ଗ୍ରନ୍ଥ ଶାସ୍ତ୍ର ମୁଁ ଖୋଜିଲି
ତହିଁରେ ଅଶୁଭ କିଛି ଦେଖି ନ ପାରିଲି ।
ବୃହସ୍ପତି ବୋଲନ୍ତି ଏ ଗୋଚର ନୋହିଲା
କିମର୍ଥେ ଖାଣ୍ଡବ ବନ ଦହନ ହୋଇଲା ।
ପୁଣି ହିଁ ସେ ବୃହସ୍ପତି କହନ୍ତି ଏସନ
କଥାଏ କହିବୁ ଶୁଣ ହୋଇ ସାବଧାନ ।
କଇଳାସ ପର୍ବତକୁ ଚାଲ ସର୍ବେ ଯିବା
ପାର୍ବତୀଙ୍କୁ ଏହିକଥା ଯାଇ ପଚାରିବା ।
ତେବେ ଯେ ଆମ୍ଭ ମନରୁ ଫିଟିଯିବ ଭ୍ରାନ୍ତି
ଲକ୍ଷେକ ଜ୍ୟୋତିଷ ଗ୍ରନ୍ଥ ଦେବୀ ପଢ଼ିଛନ୍ତି ।
ତାହାଙ୍କୁ ପୁଛିଲେ କଥା ସନ୍ଧି ସେ କହିବେ
ସେହି ଯେ ଆମ୍ଭମାନଙ୍କ ଚିତ୍ତକୁ ବୋଧିବେ ।
ବୃହସ୍ପତି କହୁଁ ଧାତା ଇନ୍ଦ୍ର ଯେ ହସିଲେ
ଯିବା ବୋଲି ସେହିକ୍ଷଣି ଅନୁମତି ଦେଲେ ।
ବ୍ରହ୍ମା ବୃହସ୍ପତି ହଂସବାହନେ ବସିଲେ
ଐରାବତ ହସ୍ତୀ ପୃଷ୍ଠେ ଇନ୍ଦ୍ର ବିଜେ କଲେ ।
ତିନିଜଣ କଇଳାସ ପୁରକୁ ଚଳନ୍ତି
ଶଙ୍କରଙ୍କ ପୁର ଦ୍ୱାରେ ମିଳିଲେ ଝଟତି ।
ଅଛନ୍ତି ଦକ୍ଷିଣଦ୍ୱାରେ ହରଙ୍କ ନନ୍ଦନ
ଗଣେଶ କଲେ ବ୍ରହ୍ମାଙ୍କ ଚରଣ ବନ୍ଦନ ।
ଭିତରକୁ ଯାଅ କହି ବାଟ ଛାଡ଼ିଦେଲେ
ସେହି ତିନିଜଣ ଯାଇ ଭିତରେ ପଶିଲେ ।
ପ୍ରଥମେ ଭେଟିଲେ ଯାଇ ଗିରିରାଜ ସୁତା
ଦେଖି ବାହନ ତେଜିଲେ ସର୍ବଜନ ପିତା ।
ବ୍ରହ୍ମାଙ୍କୁ ଦେଖିଣ ଦେବୀ ଆସନ ତେଜିଲେ
ନମସ୍କାର କରି ତାଙ୍କ ଚରଣେ ନମିଲେ ।
ବିଧିରେ କଲ୍ୟାଣ ତାଙ୍କୁ କଲେ ବେଦବର
ବୃହସ୍ପତି ପ୍ରଣମିଲେ ଦେବୀଙ୍କ ପୟର ।
ଇନ୍ଦ୍ର ହିଁ ଚରଣ ତଳେ କଲେ ପ୍ରଣିପାତ
ଦେବୀ ପଚାରନ୍ତି ମୋତେ କହ ଲୋକତାତ ।
କାହିଁପାଇଁ ଆସିଅଛ ସଙ୍ଗେ ଇନ୍ଦ୍ର ଘେନି
ଆବର ସଙ୍ଗତେ ଛନ୍ତି ସୁରଗୁରୁ ପୁଣି ।
ଗୁରୁ ବୋଇଲେ ଅଇଲୁ ଆମ୍ଭେ ଯହିଁପାଇଁ
ତାହା ପଚାରୁଛୁ କହ ସଂଶୟ ଫିଟାଇ ।
କି ପଚାରିବ ପଚାର ବୋଲନ୍ତି ଗଉରୀ
ଜାଣିଥିଲେ କହିବା ନା ଆମ୍ଭେ ତା ବିଚାରି ।
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ତିନିହେଁ ପୁଛିଲେ
ସାବଧାନେ ହୈମବତୀ ଶୁଣ ଗୋ ବୋଇଲେ ।
ଲକ୍ଷେ ଜଉତିଷ ଗ୍ରନ୍ଥ ଶାସ୍ତ୍ର ମୁଁ ଦେଖିଲି
ଶୁଭଲଗ୍ନେ ଖାଣ୍ଡବର ଅନୁକୂଳ ଦେଲି ।
ଇନ୍ଦ୍ର ଯେ ପୋତିଲେ ବୃକ୍ଷ ବ୍ରହ୍ମା ଅର୍ଘ୍ୟ ଦେଲେ
ତୋଟାଯାକ ପୋଡ଼ିଗଲା କିମ୍ପାଇ ଅନଳେ ।

ଏଥିପାଇଁ ଇନ୍ଦ୍ରରାଜା କଟାଳ କରନ୍ତି
ଫିଟିଯିବ ତୁମ୍ଭ ବୋଲେ ତାଙ୍କ ମନୁ ଭ୍ରାନ୍ତି ।
ଶୁଣିଣ ପାର୍ବତୀ ଦେବୀ ଅଳପ ହସିଲେ
ଲକ୍ଷେ ଗ୍ରନ୍ଥ ଜଉତିଷ ଶାସ୍ତ୍ର ଯେ ଖୋଜିଲେ ।
ଖାଣ୍ଡବ ବନ ଅଶୁଭ ଲଗ୍ନ ସେ ନ ଦେଖି
ପାର୍ବତୀ ଦେବୀ ମନରେ ସଂଶୟକୁ ରଖି ।
ଖାଣ୍ଡବ ବନ ଜଳିବା କଥା ଅଗୋଚର
ଏହା ତୁମ୍ଭେ ଯାଇ ବିଶ୍ୱନାଥଙ୍କୁ ପଚାର ।
ପଚାରିଲେ କହିବେ ସେ ଏଥିର ବୃତ୍ତାନ୍ତ
ତାଙ୍କ ଗର୍ଭେ ଅଛି ଲକ୍ଷେ ଜଉତିଷ ଗ୍ରନ୍ଥ ।
ଏହା ଶୁଣି ବୃହସ୍ପତି ଇନ୍ଦ୍ର ଉଠିଗଲେ
ବ୍ରହ୍ମାଙ୍କ ସଙ୍ଗେ ଈଶ୍ୱର ଛାମୁରେ ମିଳିଲେ ।
ଅଛନ୍ତି ପରମ ଆତ୍ମା ଲୟେ ବିଶ୍ୱନାଥ
ଏହାଙ୍କ ଆସିବା କଥା ଜାଣି ସେ ତୁରିତ ।
ଯୋଗ ଲୟ ତ୍ୟାଗ କରି ଦେବ ପଞ୍ଚାନନ
ବ୍ରହ୍ମାଙ୍କୁ ଦେଖି ସେ କଲେ ଯଥାବିଧି ମାନ୍ୟ ।
ଇନ୍ଦ୍ର ଈଶ୍ୱରଙ୍କ ପାଦେ କଲେ ନମସ୍କାର
ବସ କହିଣ ଆସନ ଦେଲେ ଦିଗମ୍ବର ।
ବସିଲେକ ଗଉରବ ପାଇ ତିନିଜଣ
ବିଶ୍ୱନାଥ ପଚାରନ୍ତି ଆସିବା କାରଣ ।
ଆମ୍ଭଙ୍କୁ ବା ସଙ୍ଖୋଳିବା ପାଇଁ ଅଇଲ କି
ନୋହିଲେ ତୁମ୍ଭର କିଛି କଥା ଅଛଇ କି ।
ପଚାରନ୍ତି ବୃହସ୍ପତି ଆହେ ତ୍ରିଲୋଚନ
କଥା ଏକ ପଚାରିବୁଁ କର ଅବଧାନ ।
ବୃଷ ଥାପିଥିଲୁ ଆମ୍ଭେ ଶୁଭ ଅନୁକୂଳେ
କିମ୍ପାଇ ସେହି ଦହନ ହୋଇଲା ସମୂଳେ ।
ପାର୍ବତୀଙ୍କୁ ପଚାରିଲୁ ତାଙ୍କୁ ଅଗୋଚର
ସେ ବୋଇଲେ ତୁମ୍ଭେ ଯାଇ ଶିବଙ୍କୁ ପଚାର ।
ଈଶ୍ୱରଙ୍କ ଗର୍ଭେ ଲକ୍ଷେ-ଗ୍ରନ୍ଥ ଜଉତିଷ
ତାଙ୍କୁ ପୁଚ୍ଛିଲେ ଫିଟିବ ଏହାର ସନ୍ଦେଶ ।
ତେଣୁ ଆମ୍ଭେମାନେ ଆସି ପଚାରୁ ତୁମ୍ଭଙ୍କୁ
ସଂଶୟ ଫିଟାଇ ଦେବ କହିବେ ଆମ୍ଭଙ୍କୁ ।
ଈଶ୍ୱର ବୋଇଲେ ତୁମ୍ଭେ କ୍ଷଣେ ହୁଅ ସ୍ଥିର
ଧ୍ୟାନରେ ବସିଲେ ଏହା କହି ଦିଗମ୍ବର ।
ଗର୍ଭକୁ ଚାହିଁ ସେ ଖୋଜି ଖୋଜି ଠାବ କଲେ
ଇନ୍ଦ୍ର ବ୍ରହ୍ମା ବୃହସ୍ପତି ତିନିଙ୍କି କହିଲେ ।
ଖାଣ୍ଡବ ବନ ଯେ ହେତୁ ହୋଇଲା ଦହନ
ତାହାର କାରଣ ଶୁଣ ହୋଇ ସାବଧାନ ।
କାମକଳା ପରିବନ୍ଧ ଜାଣନ୍ତି ଚନ୍ଦ୍ରମା
ତେଣୁ ତାଙ୍କୁ ଦକ୍ଷ ଦେଲେ ସତାଇଶ କନ୍ୟା ।
ସେହି କନ୍ୟାଙ୍କର ଅଟେ ସତାଇଶ ନାମ
ଏକକୁ ଅଢ଼ାଇ ଦିନେ ଭୁଞ୍ଜନ୍ତି ଜାଣିମ ।
ଉତ୍ତରଭାଦ୍ର କନ୍ୟାର ପୁରେ ଇନ୍ଦ୍ର ଥିଲେ
ରତିକାଳ ସାରି ତହୁଁ ବାହାର ହୋଇଲେ ।
ଉତ୍ତର ଭାଦ୍ରର ସ୍ତନ ଅଟଇ ଦୁର୍ବଳ
ରେବତୀ କନ୍ୟାର ସ୍ତନ ଅଟଇ ସବଳ ।
ତା ଉପରେ ଇନ୍ଦ୍ରଙ୍କର ନୟନ ପଡ଼ିଲା
ଚନ୍ଦ୍ରଙ୍କ ହୃଦରେ କାମ ଅନଳ ବାଜିଲା ।
ଉତ୍ତର ଭାଦ୍ରର ପୁରୁ ବାହାର ସମୟେ
ରେବତୀର ସ୍ତନେ ଦୃଷ୍ଟି ଚନ୍ଦ୍ରଙ୍କର ଥାଏ ।
ଏ ସମୟରେ ଖାଣ୍ଡବ ଅନୁକୂଳ ଦେଲ
ସେ ହେତୁ ଖାଣ୍ଡବ ବନ ଭକ୍ଷିଲା ଅନଳ ।
ଚନ୍ଦ୍ର କାମଦୋଷୁ ବନଗଲା ବେଦବର
ପାର୍ଥଠାରେ ତୁମ୍ଭେ ଇନ୍ଦ୍ର କିମ୍ପା ଦୁଃଖ କର ।
ଅଗ୍ନି ଦେବଙ୍କ ଦୁର୍ଦ୍ଦଶା ଗଲା ପାର ହୋଇ
ଏଥିରେ ଅର୍ଜୁନର ଯେ କିଛି ଦୋଷ ନାହିଁ ।
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ତହୁଁ ଗଲେ ଉଠି
ଆନନ୍ଦ ହୋଇ ମନରୁ ଭ୍ରାନ୍ତ ଗଲା ଫିଟି ।
ବାସବ ଅର୍ଜୁନଠାରେ ଦୁଃଖ କରୁଥିଲେ
ଈଶ୍ୱରଙ୍କଠାରୁ ଶୁଣି ତାହା ପାସୋରିଲେ ।
ଶୁଣି ତାହା ଶୁରଗଣ ଆନନ୍ଦ ହୋଇଲେ
ବ୍ରହ୍ମା ବୃହସ୍ପତି ଘେନି ସ୍ୱର୍ଗପୁରେ ଗଲେ ।
ଶୁଣିଲଟି କି ହୋ ଏହା ମନୁ ମହାରଥା
ଖାଣ୍ଡବ ବନ ଦହନ ପୂର୍ବର ବାରତା ।
ଶ୍ରୀଚଣ୍ଡୀ ଶାରଳା ଦେବୀ ଚରଣେ ମୋ ଆଶ
ଅରକ୍ଷିତ ଶୂଦ୍ର ମୁନି ଶ୍ରୀ ଶାରଦା ଦାସ ।
ମୂର୍ଖ ଅପଣ୍ଡିତ ବିଦ୍ୟା ନ ଜାଣଇ କିଛି
ଆଜନ୍ମହୁଁ ଧର୍ମ ଶାସ୍ତ୍ର କିଛି ନ ପଢ଼ିଛି ।
ଶ୍ରୀଚଣ୍ଡୀ ଶାରଳା ପାଦେ ଅରକ୍ଷ ନମଇଁ
ଦୟା କରିବାରୁ ତୁହି ସିନା ମହାମାୟୀ ।
ତୋହର କୃପାରୁ ଦୃଶ୍ୟ ହୋଇଲା ଏ ସର୍ବ
ଶ୍ରୀ ମହାଭାରତ ଶାସ୍ତ୍ର ଅଟେ ଅସମ୍ଭବ ।
ଅକଳିତ ସମୁଦ୍ର ସେ କଳିତ ନୁହଇ
ତୋର ଦୟାକୁ ଭରସା କରିଅଛି ମୁହିଁ ।
ହୀନ ଅରକ୍ଷିତ ଅଟେ ମୁଁ ଶାରଳା ଦାସ
ତୋର ପାଦ ପଦ୍ମବିନୁ ନାହିଁ ଆନ ଆଶ ।

—o—

## ଚିତ୍ରାଙ୍କୁର ଶରଣ ଓ ବୈରାଜ ରାଜା ମିଳନ

ପୁଚ୍ଛାକଲେ ବୈବସ୍ୱତ ହେ ମୁନି ଅଗସ୍ତି
ବନରେ ଅର୍ଜୁନ ତହୁଁ ଗଲେ କେଉଁ କତି ।
ଅଗସ୍ତି ବୋଇଲେ ଶୁଣ ମନୁ ନୃପବର
ଭ୍ରମିଲେ ପାର୍ଥ ବହୁତ ପର୍ବତ ଡିଙ୍ଗର ।
କାଶୀ କଉଶିକ ତୁଙ୍ଗଭଦ୍ରା ଯେ କାବେରୀ
ନର୍ମଦା ଆବର ସରସ୍ୱତୀ ଗୋଦାବରୀ ।
ରାମଘାଟ କୃଷ୍ଣାବେଣୀ ମଣିକର୍ଣ୍ଣିକାଦି
ଯମୁନା ଆବର ଋଷିକୁଲ୍ୟା ଗଙ୍ଗାନଦୀ ।
ସରଯୂ ପୁଲକୀ ପଞ୍ଚନଦ ଗୟାତୀର୍ଥ
ଏମନ୍ତ ଅନେକ ତୀର୍ଥ ବୁଲି କୁନ୍ତୀସୁତ ।
ପାଦଶ୍ରମ ପାଇ ବୀର ବିଚାରଇ ମନେ
ଥୋକାଏ ଦିନ ବିଶ୍ରାମ କରିବା କାନନେ ।
ଏମନ୍ତ ବିଚାରି କଲା ସେଠାରୁ ପ୍ରୟାଣ
ଏକାମ୍ର କାନନେ ଯାଇ ମିଳିଲା ଅର୍ଜୁନ ।
ମହାସୁଖ ହୋଇ ତହିଁ ଫଳମୂଳ ଖାଇ
ହସ୍ତିନା ପାଶୋରି ବୀର ରହିଲାକ ତହିଁ ।
ତିନିମାସ କଟାଇଲା ରହି ମହାବୀର
ଅଗସ୍ତି ବୋଇଲେ ଶୁଣ ଆହେ ନୃପବର ।
କୁମ୍ଭ ଶୁକଳ ଚଉଠି ତିଥି ଗୁରୁବାରେ
ମୂଳ ନକ୍ଷତ୍ର ଯେ ଧନୁ ଚନ୍ଦ୍ର ସେଦିନରେ ।
ବବନାମେ କରଣ ଯେ ବ୍ୟତିପାତ ଯୋଗ
କୁମ୍ଭ ସଂକ୍ରାନ୍ତି ପଚିଶ ଦିନଯାକ ଭୋଗ ।
ପିପ୍‌ପଳ ବୃକ୍ଷର ମୂଳେ ବସିଛି ଅର୍ଜୁନ
ଆଗରେ ଥୋଇ ଅକ୍ଷୟ ତ୍ରୋଣ ଶରମାନ ।
ଏସନ ସମୟେ ଦେଖେ ଏକଇ ପୁରୁଷେ
କେଶ ବାସ ଅସମ୍ଭାଳେ ପଳାଉଛି ତ୍ରାସେ ।
ଗହନ କାନନେ ଯାଉଥିଲା ଦେଇ ଧାପ
ଅର୍ଜୁନକୁ ଦେଖି ଆସେ ତାହାର ସମୀପ ।
କ୍ଷତ୍ରିୟ ବୃତ୍ତି ତାହାର ଦେଖିଲା ଯେ ଯହୁଁ
ଶରଣ ଶରଣ ବୋଲି ଉଚ୍ଚାରିଲା ତହୁଁ ।
ଏହା ଶୁଣି ପଚାରିଲେ ମନୁ ନରରାୟ
ଭୋ ମୁନି ଲାଗିଲା ଏଥେଁ ବଡ଼ହିଁ ସଂଶୟ ।
କାହୁଁ ଅଭୁତେ ଅଇଲା ସେ ବନେ ପୁରୁଷ
କେବଣ ମହାତ୍ମା କଲା ତା ଉପରେ ରୋଷ ।
ଏହା ସଂକ୍ଷେପି କହିବା ହେଉ ମହାମୁନି
ଶୁଣ ହୋ ମନୁ ବଦନ୍ତି ମୁନି ମହାଜ୍ଞାନୀ ।
ଯଶୋମତୀ ନାମେ ଥିଲା ଏକଇ ନଗରୀ
ଉତ୍ତର ପାଖେ ଜମ୍ଭାଳ ନାମେ ଅଛି ଗିରି ।
ବହଇ ଚିତ୍ରାଙ୍ଗୀ ନଦୀ ଉତ୍ତର ମୂରତି
ଚିତ୍ରାଙ୍କୁର ବୋଲି ତହିଁ ଥିଲା ନରପତି ।
ଅୟୁତେକ ଘର ତହିଁ ବସଇ ପାଟଣା
ଅତି ହିଁ ସୁସଙ୍ଗ ସେହି ପୁରକୁ ଘଟଣା ।
ଅର୍ବୁଦେକ ହସ୍ତୀ ଅଶ୍ୱ ଶତେକ ଅର୍ବୁଦ
ଦ୍ୱାବିଂଶତି ଅକ୍ଷୌହିଣୀ ବଳ ରଥବୃନ୍ଦ ।
ହିଙ୍ଗୁଳା ଲକ୍ଷ୍ମୀ ନାମରେ ତାର ମହାଦେହୀ
ଲମ୍ବିତା ଯେ ଚିତ୍ରାଙ୍ଗଦା ନାମେ କନ୍ୟା ଦୁଇ ।
ଚିତ୍ରଧ୍ୱଜ ନାମେ ତାର ଅଟଇ କୁମର
ମୃଗୟା ବିନୋଦେ ସେହି ହୋଇଲା ବାହାର ।
ବାରକୋଟି ଅଶ୍ୱ ତୁଲେ ରାଜାର ନନ୍ଦନ
ସାତକ୍ଷଉଣୀ ପଦାତି ଘେନି ଭ୍ରମେ ବନ ।
ଗହନ ଅଟବୀ ମଧ୍ୟେ ପଶିଲା ଯେ ଯାଇ
ଦଇବଙ୍କ ଯୋଗେ ରାଜପଥ ବଣାହୋଇ ।
ପାଞ୍ଚଦଶ ଯୋଜନ ସେ ଅରଣ୍ୟରେ ଗଲା
ପରମହଂସ ନାମକ ଗ୍ରାମରେ ମିଳିଲା ।
ପରଭୃତ ନନ୍ଦ ନାମେ ଏକଇ ଶଇଳ
ବହଇ ପିପ୍ପଳା ନାମେ ନଦୀ ପରିମଳ ।
ବାରଲକ୍ଷ ଘର ସେହି ରାଜ୍ୟରେ ବସଇ
ସେହି ନଗରେ ବୈରାଜ ନାମେ ନରସାଇଁ ।
ବିମ୍ବମାଳୀ ନାମେ ଅଛି ତାହାର ଦୁହିତା
ପିତାଘରେ ଥାଇ ଅବିବାହୀ ସେ ବନିତା ।
ଦାସୀଗଣଙ୍କୁ ସଙ୍ଗରେ ଘେନି ସେ କୁମାରୀ
ପିପ୍ପଳା ନଦୀରେ ସ୍ନାନ କରଇ ସୁନ୍ଦରୀ ।
ଏମନ୍ତବେଳେ ମିଳିଲା ତହିଁ ଚିତ୍ରଧ୍ୱଜ
ପଚାରଇ ସୁନ୍ଦରୀକି ଏ କେବଣ ରାଜ୍ୟ ।
କାହାର ଦୁହିତା ତୁହି କାହାର ଗୋ ନାରୀ
ବିଭା ନୋହିଥିଲେ ମୋତେ ବର ଗୋ ସୁନ୍ଦରୀ ।
ମୁହିଁ ଚିତ୍ରଧ୍ୱଜ ଚିତ୍ରାଙ୍କୁରର କୁମର
ଯଶୋବତୀ ନଗରୀରେ ଅଟେ ମୋର ଘର ।
ଇଚ୍ଛାକଲେ ଆସି ଅଶ୍ୱେ ବସରେ ତରୁଣୀ
ଶୁଣି ଅପସରି ଯାଏ ବୈରାଜ ଦୁଲଣୀ ।
ଲୋହିତା ନାମେ ତା ଦାସୀ କରଇ ଉତ୍ତର
ଶୁଣ ଆହେ ଚିତ୍ରଧ୍ୱଜ ଆମ୍ଭର ବିଚାର ।
ଯାହା ପଚାରଲି ତୁମ୍ଭେ ଏ ଦେଶର ନାମ
ପରମହଂସ ନାମରେ ବିଦିତ ଏ ଗ୍ରାମ ।
ବାରଲକ୍ଷ ଘର ଏହି ରାଜ୍ୟର ପରଜା
ବୈରାଜ ନାମେ ଅଟଇ ଏ ପୁରର ରାଜା ।
ତାହାର ଦୁହିତା ଏହା ନାମ ବିମ୍ବମାଳୀ
ସ୍ନାନ କରିବାକୁ ଏଥେଁ ଆସିଅଛି ବାଳୀ ।

ତୁମ୍ଭେ ଯେବେ ଏହାଠାରେ ବଳାଇଲ ମନ
ରାଜାକୁ ମାଗ ସେ କରୁ କନ୍ୟାକୁ ପ୍ରଦାନ ।
ପିତାଦତ୍ତ କନ୍ୟା ସିନା ରାଜଦତ୍ତ ଭୂଇଁ
କେମନ୍ତେ କରିବ ସ୍ନାନଘାଟେ ଜେମାଦେଈ ।
ସେ କନ୍ୟାକୁ ଚିତ୍ରଧ୍ୱଜ ମୁରୁଛି ନ ପାରି
ଦାସୀଙ୍କ ମଧ୍ୟେ ପଶିଲା ଘୋଡ଼ାରୁ ଉତୁରି ।
ଧଇଲା ଯାଇ ସେ ବିମ୍ବମାଳୀ କନ୍ୟା ଭୁଜ
ଅଶ୍ୱ ଉପରେ ବସାଇ ଗଲା ନିଜ ରାଜ୍ୟ ।
ସଙ୍ଗେ ସଙ୍ଗେ ଗୋଡ଼ାଇଲେ ତାର ଥାଟ ଯେତେ
ଯଶୋବତୀପୁରେ ଯାଇ ମିଳିଲେ ତୁରିତେ ।
ପୁତ୍ରକୁ ଦେଖିଣ ପୁଚ୍ଛାକଲେ ନରପତି
କାହୁଁ ତୁ ଆଣିଲୁଁ ଅବିବାହିତା ଯୁବତୀ ।
ଅଧର୍ମ କଲୁରେ ବାବୁ ବୋଲେ ଦଣ୍ଡଧାରୀ
କାହା ଦୁହିତା ଆଣିଲୁ କାହୁଁ ଚୋରିକରି ।
କୁମର ବୋଇଲେ ତାତ ବରିଲାକ ମୋତେ
ଶୁଣି ନୃପତି ରହିଲେ ଆନନ୍ଦିତ ଚିତ୍ତେ ।
କନ୍ୟାକୁ ନେଇ ଥୋଇଲା ନିଜ ଅନ୍ତଃପୁରେ
ସେମାନେ ଗଲେକ ତର୍ହୁ ଯେ ଯାହା ନଗରେ ।
କନ୍ୟା ଯହୁଁ ହରିନେଲା ଚିତ୍ରଧ୍ୱଜ ବୀର
ବିଷାଦ ଲଭି ଦାସୀଏ ଗଲେ ନିଜପୁର ।
ରାଜାର ନିଅବକାଶେ ମିଳିଲେ ସେ ବେଗେ
କରଯୋଡ଼ି ଜଣାଇଲେ ବୈରାଜର ଆଗେ ।
ଆହେ ଦେବ ରାଜେଶ୍ୱର ଶୁଣିମା ଗୁହାରି
ସ୍ନାନ ଅର୍ଥେ ଯାଇଥିଲେ ତୁମ୍ଭର କୁମାରୀ ।
ଜଳେ ପଶି ଆପଣାର ଅଙ୍ଗ ପଖାଳନ୍ତେ
ଚିତ୍ରାଙ୍କୁର ରାଜପୁତ୍ର ମିଳିଲା ତୁରିତେ ।
ଚିତ୍ରଧ୍ୱଜ ନାମ ଦେବ ଅଟଇ ତାହାରି
ବଳେ ଧରି ଘେନିଗଲା ତୋହର କୁମାରୀ ।
ଶୁଣି ସେ ରାଜନ କୋପେ ହୋଇଣ ପ୍ରଚଣ୍ଡ
ମନ୍ତ୍ରୀକି କହିଲା ବେଗେ ସାଜ ସମଦଣ୍ଡ ।
ତତକ୍ଷଣେ ସଜ ହେଲେ ସେନା ସେନାପତି
ରଥ ଗଜ ଅଶ୍ୱ ସଜ ହୋଇଲେ ପଦାତି ।
ଦିଗ ଗଜ ଜିଣି ତିନି ଅୟୁତ ଯେ ହସ୍ତୀ
ଦୁଇ ସହସ୍ର ଅଇଲେ ସଜହୋଇ ରଥୀ ।
ସାତକୋଟି ଅଶ୍ୱ ପଞ୍ଚାଶତ କୋଟି ବଳ
ସୈନ୍ୟସାଜନ୍ତେ ମେଦିନୀ ହେଲା ଟଳମଳ ।
ଏକାଦଶ ବୃନ୍ଦ ସେହି ସାଜିଲାକ ଓଟ
ସମ୍ଭାଳି ଥିଲା ବୈରାଜ ଏତେକ ଯେ ଥାଟ ।
ଲକ୍ଷେକ ଶଙ୍ଖ ତା ଆଗେ ସ୍ଫୁରେ ଘନ ଘନ
ରଥିମାନେ ଆରୋହିଲେ ଯେ ଯାହାର ଯାନ ।
ସେନାପତି ଯାକ ତାର ହେଲେ ଆଗୁଆଣି
ପାଦଭରେ ଟଳମଳ ହୁଅଇ ଧରଣୀ ।
ଢୋଲ ଦମା ଟମକ ଯେ ବାଜଇ ନିଶାଣ
ହସ୍ତୀଙ୍କର ଗରଜନ ଘୋଡ଼ା ହ୍ରେଷା ସ୍ୱନ ।
ପଦାତିର ମୁଖରାବ ଧନୁର ଟଙ୍କାର
ଗଜଅଶ୍ୱ ଘଣ୍ଟା ଶବ୍ଦ ଶୁଭଇ ଅପାର ।
ଦେଖି ବଇରାଜ ରାଜା ଛାଡ଼ିଲାକ ଚିନ୍ତା
ଆପେ ସଜ ହୋଇ ଆସେ ମହାବଳବନ୍ତା ।
ବର୍ତ୍ତୁଳ ମୁକୁତା ମାଳା ଗଳେ ଶତସରି
ନାନା ବର୍ଣ୍ଣର ପଦକ ହୃଦୟରେ ଭରି ।
ଅନର୍ଗଳ ତୋଡ଼ର ସେ ବାନ୍ଧିଲାକ ପାଦେ
ଚରଣ ଶୋଭା ପାଇଲା ନୂପୁର ନିନାଦେ ।
କଟୀରେ କଟିମେଖଳା ବାମେ ଯମଦାଢ଼
ବେନି ବାହୁରେ ବାହୁଟି ସୁବର୍ଣ୍ଣର ତାଡ଼ ।
ଶିରେ ଖଞ୍ଜିଲା ମୁକୁଟ ରତ୍ନ ମଣିମୟ
ଲଲାଟେ ସୁବର୍ଣ୍ଣ ଚିତା ପିନ୍ଧି ନରରାୟ ।
କର୍ଣ୍ଣ କୁଣ୍ଡଳ ଝଟକ ବିଜୁଳିକି ଜିଣି
ଲଲାଟରେ ପ୍ରକାଶନ୍ତି ହୀରା ରତ୍ନମଣି ।
କେଶରେ କୁସୁମ ଦେଇ ବାନ୍ଧିଲାକ ଜୁଡ଼ା
ପୟରେ ଖଞ୍ଜିଲା ଚାରୁ ଚମ ଯୋତା ଯୋଡ଼ା ।
କପାଳେ ଘେନି ଚନ୍ଦନ ଗୋରଚନା ଚିତା
ନୟନ ତେଜ ପ୍ରତ୍ୟକ୍ଷେ ସୌଦାମିନୀ ଲତା ।
ଦାଢ଼ି ଫୁଲାଇ ହରଷେ ଚାଲଇ ରାଜନ
ସାରଥି ତାହାର ସାଜି ଆଣିଦେଲା ଯାନ ।
ହରଷେ ସେ ରଥେ ବିଜେ କଲା ମହାରାଜ
ବାମକରେ ଧନୁ ତାର ଦକ୍ଷିଣେ ନାରାଚ ।
ସୈନ୍ୟ ଘେନି ସମାରୋହେ ଚଳଇ ରାଜନ
ଆଗରେ ପଛରେ ଅଛି ରାଜାର ଗହଣ ।
ମୀନମାସ କୃଷ୍ଣପକ୍ଷ ସପତମୀ ତିଥି
ବିଷ୍ଟିକରଣ ଆବର ଯୋଗ ବଇଧୃତି ।
ଦ୍ୱିଜା ଋକ୍ଷ ମେଷ ଚନ୍ଦ୍ରଠାରେ ସେହିଦିନ
ଯାତ୍ରା କଲା ଯୋଗିନୀର ମୁଖେ ସେ ରାଜନ ।
ସୈନ୍ୟର ଗହଳେ ତିଳେମାତ୍ର ଠାବ ନାହିଁ
ଧୂଳିରେ ଅଦୃଶ୍ୟ ହେଲେ ଛାୟାଦେବୀ ସାଇଁ ।
ଟମକ ନିଶାଣ ବାଜେ ବୀରଦୃଢ଼ ଭେରୀ
ପାଦରେ ବନ କନ୍ଦର ହେଉଅଛି ଚୂରି ।
ଅତି ହିଁ ସମାରୋହରେ ଚଳେ ଥାଟ ଗୋଟି
ପ୍ରହରକ ମଧ୍ୟେ ଗିରି ଜମ୍ଭାଳକୁ ଭେଟି ।
ମୁଖରାବ ଶବଦରେ କମ୍ପଇ ବ୍ରହ୍ମାଣ୍ଡ
ଚିତ୍ରାଙ୍ଗୀ ନଦୀର ତୀରେ ମିଳେ ସମଦଣ୍ଡ ।

ଶୁଣ ଆହେ ବୈବସ୍ୱତ ମନୁ ନରସାଇଁ
ଚିତ୍ରାଙ୍କୁର ଆଗେ ଚାର ଜଣାଇଲା ଯାଇ ।
ଆହେ ସ୍ୱାମୀ ପରଦେଶୀ ରାଜା ବଇରାଜ
ତୋର ପୁରକୁ ବାହିଲା ତାର ଥାଟ ଆଜ ।
ଚିତ୍ରାଙ୍ଗୀ ନଦୀର କୂଳେ ଆସିଣ ରହିଲା
ସମ୍ଭାଳ ରାଜ୍ୟ ତୋହର ଚାର ଜଣାଇଲା ।
ନ ଶୁଣି ରାଜ୍ୟରେ ତୋର ପଶଇ ଧସାଇ
ବିଳମ୍ବ ନ କରି ଉଠ ବେଗେ ନରସାଇଁ ।
ଏତେକ କହି ସେ ଚାର ପଛଘୁଞ୍ଚା ଦେଲା
ଶୁଣି ରାଜନ ନୟନ ତରାଟି ଚାହିଁଲା ।
ଅଧର ସେ ଦାନ୍ତ ଚାପି ବୋଇଲାକ ଆଗେ
ପେଚାର ଗାରିମା କିରେ ବାୟସର ଆଗେ ।
ବାହାସ୍ଫୋଟ ମାରି ପୁଣି ଉଠି କହେ ବେଗେ
ମଣ୍ଡୁକୀ ରହଇ କିରେ କାଳସର୍ପ ସଙ୍ଗେ ।
ତର୍ଜନ ଗର୍ଜନ କରି ଉଠିଲା ରାଜନ
ମନ୍ତ୍ରୀକି ବୋଇଲା ସାଜ ସାଜ ମୋର ସୈନ୍ୟ ।
ଆପେ ହେଲା ସଂଗ୍ରାମକୁ ସଜ ନୃପବର
ଶିରେ ଜରିଲଗା ପାଗ ସୀମନ୍ତ ଆବର ।
କରେ କଙ୍କଣ ବାହୁଟି ସ୍ୱର୍ଣ୍ଣ ଜଗଦ୍‌ବଳା
ହୃଦୟରେ ଆଭରଣ ମୁକୁତାର ମାଳା ।
ଶ୍ରବଣେ କୁଣ୍ଡଳ ବାମକରେ ଶରାସନ
ଡାହାଣ କରେ ନାରାଚ ଦିଶଇ ଶୋଭନ ।
ଅନର୍ଗଳ ତୋଡ଼ର ଯେ ବାନ୍ଧିଲାକ ପାଦେ
ଶୋଭା ପାଇଲା ଚରଣ ନୂପୁର ନିନାଦେ ।
ଦାଢ଼ି ମୋଡ଼ି ରାଜା ରଥେ ବସିଲାକ ଯାଇ
ଚିତ୍ରଧ୍ୱଜ ବାହାରିଲା ବେଗେ ସଜ ହୋଇ ।
କପାଳେ ତିଳକ ଘେନି ଶିରେ ପାଗ ବାନ୍ଧି
ସରୁ ଚାରୁ କାଛେଣି ସେ ବୀରବେଶ ପିନ୍ଧି ।
ଚରଣେ ନୂପୁର ବେନି ରୁଣୁଝୁଣୁ ବାଜେ
ହୃଦରେ ପଦକ ରତ୍ନ ମଣିହାର ସାଜେ ।
ପୀତବସନ ପକାଇ କରିଣ ଦୋସରା
ବାହୁଟି କଟଟି ମୁଦି ଦିଗ ଜଗଦ୍‌ବଳା ।
ତାଡ଼ ତୋଡ଼ର ଯେ ଯମଦାଢ଼ ବାମଭାଗେ
କସ୍ତୁରୀ ଲେପନ କରି ଅଛଇ ସର୍ବାଙ୍ଗେ ।
ବେନି କର୍ଣ୍ଣରେ ସୁବର୍ଣ୍ଣ ନୋଳି ଶୋଭାବନ
କସ୍ତୁରୀ ଉପରେ କରି ଚନ୍ଦନ ଲେପନ ।
ଡାହାଣେ ନାରାଚ ବାମକରେ ଶରାସନ
ସାରଥି ସାଜି ଆଣିଲା ଏକ ଦିବ୍ୟଯାନ ।
ତାହାର ଉପରେ ଯାଇ ଆରୋହିଲା ବୀର
ପ୍ରବେଶ ହୋଇଲା ସେହି ପିତାର ଛାମୁର ।
ତାକୁ ଦେଖିଣ ହରଷ ହୋଇଲେକ ରାୟ
ଦିଶଇ କୁମର ମୀନକେତନ ପରାୟ ।
ସଜ ହୋଇଣ ଅଇଲେ ଅୟୁତେକ ରଥୀ
ଦ୍ୱାବିଂଶତି ଅକ୍ଷୌହିଣୀ ଅଇଲେ ପଦାତି ।
ଅର୍ବୁଦେକ ଗଜ ଶତଷଠି କୋଟି ଅଶ୍ୱ
ଢୋଲ ଟମକ ନିଶାଣ ବାଜେ ବିଜିଘୋଷ ।
ସୈନ୍ୟଙ୍କର ସମାରୋହ କହି ନ ସରଇ
ଅନୁକୂଳ କଲେ ଜୟ ଶଙ୍ଖକୁ ବଜାଇ ।
ଥାଟ ସୈନ୍ୟ ଘେନି ବଇରାଜ ନରସାଇଁ
ନଗରେ ପଶିଣ କୋପେ ଆସଇ ଧସାଇ ।
ହାଟ ପେଣ୍ଠ ଆଦି ଘୋଷ ପାଟଣା ଉଜାଡ଼ି
ବଣ ବଣିଜାର ଆଦି ଲୋକଙ୍କୁ ଘଉଡ଼ି ।
ଘରେ ଘରେ ପଶି କଲେ ଦ୍ରବ୍ୟମାନ ଚୂର
ବୃକ୍ଷମାନଙ୍କୁ କଟାଇ ପୋଡ଼ିଦେଲେ ଘର ।
ଏକାଳେ ନଗରୁ ଆସି ଚିତ୍ରାଙ୍କୁର ବୀର
ଥାଟ ଘେନି ଆଗେ ଭେଟ ପଡ଼ିଲା ତାହାର ।
ଶୁଭିଲାକ ମାର ମାର ଧ୍ୱନି ଦୁଇକୁଳେ
ଏକୁ ଆରେକ ସମର ଆବୋରିଲେ ବଳେ ।
ଗଜେ ଗଜ ରଥେ ରଥ ଯୋଦ୍ଧା ସଙ୍ଗେ ଯୋଦ୍ଧା
ପଦାତି ପଦାତି ହେଲେ ମରାମରି ବିଧା ।
ଲାଗିଲାକ ହଣାହଣି ରଣେ ଦୁଇଦଳ
ଦେଖି ମହାକୋପ କଲା ବୈରାଜ ଭୂପାଳ ।
ଭେଟରେ ପଡ଼ିଲା ତାର ଆସି ଚିତ୍ରଧ୍ୱଜ
ହୁଙ୍କାରେ ସପତ ଶର ବିନ୍ଧିଲା ବୈରାଜ ।
ନିବାରି ହିଙ୍ଗୁଳାଲକ୍ଷ୍ମୀ ସୁର ସେହି ଶର
ବାଇଶ ବାଣ ବିନ୍ଧିଲା ପୁଣି ତାକୁ ବୀର ।
ଦଶବାଣେ ଛେଦିଲା ତା ନୃପତି ବୈରାଜ
ଚାଳିଶ ବାଣ ମାଇଲା ପୁଣି ଚିତ୍ରଧ୍ୱଜ ।
ପାଞ୍ଚବାଣେ ବଇରାଜ ସେ ଶର ନିବାରି
ଚିତ୍ରଧ୍ୱଜ ସଙ୍ଗେ ଯୁଦ୍ଧକଲା ଦଣ୍ଡଧାରୀ ।
ଚିତ୍ରାଙ୍କୁର ରାଜା ବାମକରେ ଧନୁ ଧରି
ନାରାଚ ବିନ୍ଧେ ଆକର୍ଷି ଘୋର ନାଦ କରି ।
ବୈରାଜ ସୈନ୍ୟ ଧାଇଁଲେ ସମରେ ଗରଜି
ସମର କରଇ ରାଜା ଥାଇ ତାଙ୍କ ମଝି ।
ଦଶ ନାରାଜ ବିନ୍ଧିଲା ଚିତ୍ରାଙ୍କୁର ବୀର
ଛେଦିଲା ଦଶସହସ୍ର ସେନାଙ୍କର ଶିର ।
ପଡ଼ିଲେକ ଦ୍ୱାବିଂଶତି ଅକ୍ଷୌହିଣୀ ବଳ
ତିରିଶ ସହସ୍ର ଅଶ୍ୱ ଗଜ ଯେ ଆବର ।
କୋପ କଲା ଦେଖି ତାହା ବୀର ବଇରାଜ
ବାଛି ବାଛି ବିନ୍ଧିଲାକ ଶତେକ ନାରାଚ ।

ଚିତ୍ରାଙ୍ଗର ସୈନ୍ୟ ହୋଇଗଲେ ନାରଖାର
ବେଳୁ ବେଳ ଅପ୍ରମିତ ହୋଇଲା ସମର ।
ତିନିଅୟୁତ ନାରାଚ କୋପେ ସେ ପୂରାଇ
ଚିତ୍ରଧ୍ୱଜ ଉପରକୁ ମାଇଲା ନିଠାଇ ।
ପଡ଼ିଲା ନାରାଚ ଘାତ ପାଇ ବୀରମଣି
ଅଶ୍ୱ ସାରଥି ତାହାର ପଡ଼ିଲେ ଧରଣୀ ।
ଘାଏ ଅସାଷ୍ଟମ ହୋଇ ଧର୍ମର ନନ୍ଦନ
ଧାତିକାରେ ରାଜା ତାକୁ କଲାକ ବନ୍ଧନ ।
ଚିତ୍ରଧ୍ୱଜକୁ ଧରି ସେ କ୍ରୋଧରେ ଧାଇଁଲା
ନାରାଚ ସନ୍ଧାନ କରି ଘୋର ନାଦ କଲା ।
ଦେଖି ତାଙ୍କୁ ଓଗାଳିଲା ଚିତ୍ରାଙ୍ଗର ବୀର
ବେନି ନୃପତି ସମର କରନ୍ତି ଅପାର ।
ଅଶୀ ବାଣ କୋପଚିତ୍ତେ ଚିତ୍ରାଙ୍ଗର ପେଶି
ଚାଳିଶ ନାରାଚେ ତାହା ବଇରାଜ ନାଶି ।
କେ ଶତ ସହସ୍ର ଲେହୁ ଅର୍ବୁଦ କେ ଲକ୍ଷ
ସମରେ ଅଟନ୍ତି ବଇରାଜ ସମକକ୍ଷ ।
ଅଟନ୍ତି ସେ ମହା ଧନୁର୍ଦ୍ଧର ବେନି କ୍ଷତ୍ରି
ଏକ ଶରେକ ଆରେକ ମାରି ନିବାରନ୍ତି ।
ଏହିରୂପେ ନବଘଡ଼ି ଯାଏ ହେଲା ରଣ
ଚିତ୍ରାଙ୍ଗର ବିନ୍ଧିଲେ ଯେ ତିନିଶତ ବାଣ ।
ଭେଦିଲା ସେ ଯାଇ ବଇରାଜର ଶରୀର
ଆଘାତ ପାଇ ସେ ରାଜା କୋପ ଗୁରୁତର ।
ଶତେକ ନାରାଚ ସେହି ଧନୁରେ ପୂରାଇ
ରଥ ଉପରକୁ ବୀର ବିନ୍ଧିଲା ନିଠାଇ ।
ସାରଥିକୁ ଶତ ଚାରିଅଶ୍ୱେ ଚାରିଶତ
ଧନୁ ଛେଦିବାକୁ ସେହୁ ବିନ୍ଧିଲା ଅୟୁତ ।
ହୁଙ୍କାରି ନାରାଚ ରାଜା ବିନ୍ଧେ କୋପକରି
ପକାଇଲା ଚିତ୍ରାଙ୍ଗର ରଥକୁ ବିଦାରି ।
ଧନୁ ସହିତ ପଡ଼ିଲା ହୟ ଯେ ସାରଥି
ଭୂମିରେ ଉଭା ହୋଇଲା ସେ ରାଜା ବିରଥି ।
ଖଡ଼ଗ ଫଳାକୁ ଘେନି ଧାଇଁଲାକ ବେଗେ
ତାହାଙ୍କୁ ସେ ବଇରାଜ ଛେଦିଲାକ ଆଗେ ।
ହତ ଆୟୁଧ ହୋଇଣ ପଳାଇଲା ବୀର
ପଛେ ଗୋଡ଼ାଇଲା ବଇରାଜ ନୃପବର ।
କେଶବାସ ଅସମ୍ଭାଳେ ଧାମଇ ନୃପତି
ପଛକୁ ନ ଚାହିଁ ସେହି ପଳାଏ ଝଟତି ।
ଅନେକ ବନ କନ୍ଦର ଗଲା ପାର ହୋଇ
ଏକାମ୍ରବନେ ପ୍ରବେଶ ହୋଇଲା ସେ ଯାଇ ।
ଝାଳରେ ବୁଡ଼ି ଅଛଇ ରାଜାର ଶରୀର
ଖରତର ହୋଇ ବହେ ନିଃଶ୍ୱାସ ତାହାର ।

ବଦନ୍ତି ଅଗସ୍ତି ମୁନି ଶୁଣ ନରରାୟ
ଭେଟିଲା ସେ ବନେ ଯାଇ ରାଜା ଧନଞ୍ଜୟ ।
ସ୍ୱଭାବେ ଅର୍ଜୁନ ଧରିଛନ୍ତି ରୁଦ୍ରବେଶ
ଜଟାକରି ଶିରେ ବାନ୍ଧି ଅଛି ନିଜ କେଶ ।
କପାଳେ ବିଭୁତି କର୍ଣ୍ଣେ ତମ୍ବାର କୁଣ୍ଡଳ
ହୃଦରେ ରୁଦ୍ରାକ୍ଷ ସଙ୍ଗେ ସ୍ଫଟିକର ମାଳ ।
କଷାକୌପୀନ କସ୍ତୁରୀ ରେଖ ଯମବାଡ଼ି
କଟିରେ ଅଛଇ ସୂତ୍ରଡ଼ୋର ଏକ ଭିଡ଼ି ।
ପିଠିରେ ପଡ଼ିଅଛଇ ଅକ୍ଷୟ ତୂଣୀର
ଗାଣ୍ଡୀବ ନାମେ ଯେ ଧନୁ ଅଛି ବାମକର ।
ଦକ୍ଷିଣ ଭୁଜରେ ତାର ଶୋହଇ କୁଠାର
ଦେଖି ମନେ ବିଚାରଇ ଚିତ୍ରାଙ୍ଗର ବୀର ।
କେବଣ ମହାତ୍ମା ଏହି ତପୀବେଶ ଘେନି
ଆବର ବିଶେଷ ଶୋଭା ଧନୁଃଶର ବେନି ।
ଏ ରୂପକୁ ପର୍ଯ୍ୟନ୍ତର ତିନିପୁରେ ନାହିଁ
ନିର୍ଦ୍ଧୂମ ଅନଳ ପ୍ରାୟ ନୟନ ତେଜ ହିଁ ।
ନିଶ୍ଚେ ଏ ପରଶୁରାମ ରେଣୁକା ନନ୍ଦନ
ମୋହର କଷ୍ଟ ଫେଡ଼ିବ ଏହି ଆଜଦିନ ।
ଏତେ ବିଚାରି ସେ ବୀର ନିକଟକୁ ଗଲା
ଭୋ ସ୍ୱାମୀ ଶରଣ ବୋଲି ଦଣ୍ଡବତ କଲା ।
କର ଧରି ପାର୍ଥ ତାକୁ ବସାଇଲା କତି
ତୁରିତେ ମିଳିଲେ ଯାଇ ବୈରାଜ ନୃପତି ।
ଅର୍ଜୁନକୁ ବୋଇଲା ଏ ମୋହର ବଇରୀ
ଛାଡ଼ିଦିଅ ଏହାକୁ ମୁଁ ପକାଇବି ମାରି ।
ଏହାର ରକତ ମୁହିଁ କରିବି ତର୍ପଣ
ତେବେ ସିନା ରହିବ ଯେ କ୍ଷତ୍ରିୟର ପଣ ।
ଅର୍ଜୁନ ବୋଇଲେ ରହ ରହ ମହାତମା
ଏହାର ତୋହର ଦ୍ୱନ୍ଦ କିମ୍ପାଇ ଜାଣିମା ।
ଏ ତୋର କିମ୍ପାଇ ଦୋଷୀ କିମ୍ପା ତୋର ରାଗ
ବସ ହୋ ନୃପତି କୋପ କରି ପରିତ୍ୟାଗ ।
ତୁହି ଯେ ବୋଇଲୁ ଛାଡ଼ ମାରିବି ଏହାକୁ
ପୁଣି ଭୟେ ଅଇଲା ଏ ବୀର ମୋ ପାଶକୁ ।
ଶରଣ ଉଦ୍ଧାରଣ ମୁଁ ଅଟଇ ଯୁକତେ
କ୍ଷତ୍ରିୟ ହୋଇ ଶରଣ ଛାଡ଼ିବି କେମନ୍ତେ ।
ଶୁଣି ମହାକୋପ କଲା ବୈରାଜ ନୃବର
ଜାଣିଲି ଯୋଗିଆ କାଳ ପୂରିଲାଣି ତୋର ।
ଏତେ ବୋଲି ବୀର ଆଗେ ଧନୁ ଆମଞ୍ଚିଲା
ଅର୍ଜୁନର ଉପରକୁ ନାରାଚ ବିନ୍ଧିଲା ।
କୋଡ଼ିଏ ବାଣ ମାଇଲା ସେହି କୋପଭରେ
ଅର୍ଜୁନ ତା ନିବାରିଲା କିଞ୍ଚିତ ପ୍ରକାରେ ।

ନାରାଚ ବିଫଳ ଦେଖି ପୁଣି ସେ ବିନ୍ଧଇ
ଅର୍ଜୁନ ଡାକ ଦିଅଇ ରହ ରହ ଭାଇ ।
ଅକାରଣେ ମରିବୁ ତୁ କହ କି ନିମନ୍ତେ
ସାମାନ୍ୟ ଜନପରାୟେ ନ ମଣ ତୁ ମୋତେ ।
ଏ ମର୍ତ୍ତ୍ୟପୁରେ ଅଛନ୍ତି ଯେତେ ଅସ୍ତ୍ରଧାରୀ
ମୋର ମୁଖ ଦେଖି ଧନୁ ନ ପାରନ୍ତି ଧରି ।
ତୁ ଅବା ନ ଜାଣି ଯେବେ କରିବୁ ସମର
କାର୍ଯ୍ୟ ନ ପାଇବୁ ନିଶ୍ଚେ ଯିବୁ ଯମପୁର ।
ଶୁଣି କୋପଭର ହୋଇ ରାଜା ବଇରାଜ
ବେଢ଼ିଲାକ ଯାଇ ଘେନି ରଥ ଅଶ୍ୱ ଗଜ ।
ତିରିଶ ସହସ୍ର ରାଜା ସଙ୍ଗେ ମତ୍ତହସ୍ତୀ
ସତୁରି ଅର୍ବୁଦ ଅଶ୍ୱ ବହୁତର ରଥୀ ।
ଏକାଦଶ ବୃନ୍ଦ ଓଟଚଢ଼ା ବୀର ତାର
ଏକାବନ କୋଟି ବଳ ପଦାତି ଆବର ।
ଏତେ ସୈନ୍ୟ ଘେନିରାଜା ପାର୍ଥକୁ ବେଢ଼ିଲା
ନାରାଚମାନ ଅର୍ଜୁନ ଉପରେ ବିନ୍ଧିଲା ।
କିଅବା ନାଶେ ବିଚିତ୍ରବୀର୍ଯ୍ୟର ସେ ନାତି
ନାରାଚ ପେଶନ୍ତି ସେହି ବେଢ଼ି ଚଉକତି ।
କେ ଶତେ କେ ସହ୍ସ୍ରେ କେ ଲକ୍ଷେକ ଅୟୁତେ
କେ ଶାବଳ ବାଙ୍କିଆକେ ବିନ୍ଧଇ ତୁରିତେ ।
କେହି ଦଶବିଂଶ କେହି ବାଣମାରେ ଚାରି
କେବଣ ଯୋଦ୍ଧା ବିନ୍ଧଇ ନାରାଚ ସତୁରୀ ।
କେ ପାଞ୍ଚପଚିଶ ବାଣ ବିନ୍ଧେ ଗର୍ଜିଉଠି
କେ ପନ୍ଦର କେ ଏଗାର କେ ସତୁରି କାଠି ।
କୋପେ ବାସବୀ କତୁରୀ ବାଣ ଏକ ପେଷି
ସମସ୍ତଙ୍କ ଶରକୁ ସେ ପକାଇଲା ନାଶି ।
ଏ ବିଧି ସମର ହେଲା ବେନି ଘଡ଼ିଯାଏ
ଶସ୍ତ୍ର ସଂହରି ଅର୍ଜୁନ ବିଚାରେ ହୃଦୟେ ।
ହେଳାଯୁଦ୍ଧ କରିବାରେ ନାହିଁ ପ୍ରୟୋଜନ
ଏତେ ବୋଲି ପାର୍ବତୀଙ୍କୁ ସୁମରି ଅର୍ଜୁନ ।
କଇଳାସେ ଥାଇ ତାହା ଜାଣିଲେ ଗଉରୀ
ମନଭେଦୀ ଶର ଦେଲେ ଅର୍ଜୁନ ତା ଧରି ।
ଧନୁରେ ବସାଇ ତାକୁ ତିଆରଇ ବୀର
ମୂହିଁ ନ ଜାଣଇ ଏ ଯେ କେଉଁ ନୃପବର ।
ସୈନ୍ୟସଙ୍ଗେ ମୋହକନି ପକାଅ ତୁ ଯାଇ
ଏତେ ବୋଲି ନାରାଚକୁ ପେଷିଦେଲା ସେହି ।
ସେ ନାରାଚ ଗୋଟି ତହୁଁ ବେଗେ ଚଳିଗଲା
ବଇରାଜ ରାଜାକୁ ସେ ବାନ୍ଧି ପକାଇଲା ।
ବୈରାଜ ନୃପତି ମନ୍ତ୍ରୀନାମ ଧୀରମତି
ଅର୍ଜୁନକୁ ଚାହିଁ ସେହି କଲା ବହୁ ସ୍ତୁତି ।
କାର୍ପଣ୍ୟ ହୋଇ ଶୋଇଲା ତାହାଙ୍କର ପାୟେ
ଉଠ ଉଠ ବୋଇଲାକ ତାକୁ ଧନଞ୍ଜୟେ ।
ଆହେ ମହାତମା ଉଠି କହ ମୋ ଆଗର
କେବଣ ଦେଶର ଅଟେ ଏହି ଦଣ୍ଡଧର ।
କି ନିମନ୍ତେ ଏହାଙ୍କର ହୋଇଲା ଅପ୍ରୀତି
କରଯୋଡ଼ିଣ କହଇ ମନ୍ତ୍ରୀ ଧୀରମତି ।
ବୈରାଜ ରାଜା ମରମହଂସେ ଏହାଘର
ଯଶୋବତୀପୁର ରାଜା ଏହି ଚିତ୍ରାଙ୍କର ।
ବଇରାଜ ଦୁହିତାକୁ ଏହାର କୁମର
ବଳେ ଧରି ଆଣିବାରୁ ବଇରାଜବୀର ।
କ୍ରୋଧଭରେ ଥାଟ ଘେନି ମିଳିଲା ତା ଦେଶେ
ଅନେକ ସମର କଲେ ଦୁଇବୀର ରୋଷେ ।
ପୁତ୍ର ଚିତ୍ରଧ୍ୱଜକୁ ସେ ରଣେ ବନ୍ଦିକଲା
ଯୁଦ୍ଧେ ହାରି ଚିତ୍ରାଙ୍କର ଭୟେ ପଳାଇଲା ।
ଏଥେ ଆସି ତୋର ପାଦେ ପଶିଲା ଶରଣ
କୋପେ ଗୋଡ଼ାଇଣ ଥିଲା ଏହି ନରରାଣ ।
ତୋହର ସଙ୍ଗତେ ଦେବ ଅପ୍ରୀତି ହୋଇଲା
ତୋତେ ଜିଣି ନ ପାରି ସେ ବନ୍ଧନେ ପଡ଼ିଲା ।
ସ୍ୱାମୀ ମୁଁ ଏହାର ମନ୍ତ୍ରୀ କହିଲା ଛାମୁରେ
ଦୋଷ କ୍ଷମାକର ବୋଲି ପଡ଼ିଲା ପୟରେ ।
ତାହା ଶୁଣିଣ ଅର୍ଜୁନ ହୋଇଲେ ପ୍ରସନ୍ନ
କଲେ ରାଜା ବୈରାଜର ବନ୍ଧନ ମୋଚନ ।
ଜୀବନ୍ୟାସ ଶରବେଗେ ପେଶି ବୀରପାର୍ଥ
ଜୀଆଇଁଲେ ତାର ସୈନ୍ୟ ଗଜ ଅଶ୍ୱରଥ ।
ଅର୍ଜୁନ ଯେ ପଚାରନ୍ତି ବୈରାଜକୁ ଚାହିଁ
ଦେଖିବା ତୋ ଦୁହିତାକୁ ଆଣ ନରସାଇଁ ।
ନୃପତି ବୋଇଲା ଦେବ ମୋହର କୁମାରୀ
ସ୍ନାନ ଘାଟୁ ଚିତ୍ରଧ୍ୱଜ ବୀର ନେଲା ହରି ।
ରଖିଅଛି ତାକୁ ନେଇ ନିଜ ଅନ୍ତଃପୁରେ
ସେଦିନୁ ଅଛଇ କନ୍ୟା ତାହାର ମନ୍ଦିରେ ।
ବନ୍ଦିରେ ରଖିଛି ନେଇ ବୀର ଚିତ୍ରଧ୍ୱଜ
ଆଜ୍ଞାଦେଲେ ଆଣିଦେବି କହିଲା ବୈରାଜ ।
ପାର୍ଥ ବୋଇଲେକ ତୁମ୍ଭେ ଆଣ ସେ ଦୁହିଁଙ୍କି
ତତକ୍ଷଣେ ବଇରାଜ ଚାହିଁଲା ମନ୍ତ୍ରୀକି ।
ରାଜା ସନମତ ଜାଣିଲାକ ମନ୍ତ୍ରୀବର
ମିଳିଲା ସେ ଚିତ୍ରାଙ୍କର ରାଜାର ମନ୍ଦିର ।
କହିଲା ଏ ସବୁକଥା ତାର ମନ୍ତ୍ରୀ ଆଗେ
ବନ୍ଦିରୁ ମୁକତ କରି ଚିତ୍ରଧ୍ୱଜ ବେଗେ ।
ଅନ୍ତପୁରୁ ବିମ୍ବମାଳୀ କନ୍ୟାକୁ ଆଣିଲେ
ରଥରେ ବସାଇ ଦୁଇମନ୍ତ୍ରୀ ଘେନିଗଲେ ।

ଅର୍ଜ୍ଜୁନଙ୍କ ଆଗେ ନେଇ ଥୋଇଲେ କୁମାରୀ
ସେ ଦୁଇରାଜାଙ୍କୁ ଚାହିଁ ଅର୍ଜ୍ଜୁନ ପଚାରି ।
ଆହେ ବଇରାଜ ନୃପ ଶୁଣ ମୋର ବାଣୀ
ଚିତ୍ରଧ୍ୱଜେ ବିଭାକର ତୋହର ଦୁଲଣୀ ।
ଶୁଣି ନୃପତି ତହିଁରେ ସନମତ କଲା
ତୋହର ମନକୁ ଯେବେ ଏହା ଯୋଗାଇଲା ।
ଶୁଣ ଆହେ ମନୁରାୟେ ଅଗସ୍ତି କହିଲେ
ଚିତ୍ରଧ୍ୱଜ ବିମ୍ବମାଳୀ ବିଭା କରାଇଲେ ।
ଜୟ ତୁ ଶାରଳା ମାଗୋ ଅଟୁ ମହାମାୟୀ
ସମ୍ବଲପୁରେ ବୋଲାଉ ତୁହି ସମଲାଇ ।
ଗହନ ବନସ୍ତେ ତୋର ନାମ ହିଙ୍ଗୁଳାଇ
ଚର୍ଚ୍ଚିକା ନଗରେ ତୋର ନାମ ଚର୍ଚ୍ଚିକାଇ ।
ଗ୍ରାମେ ଗ୍ରାମେ ବୋଲାଉ ତୁ ରୂପାଇ ସୁନାଇ
କୋଠରୀ ଯେ ବରୁଣାୟୀ ଚଣ୍ଡୀ ଜାଗୁଳାଇ ।
ଜନ୍ମେ ଜନ୍ମେ ମୁହିଁ ତୋର ପାଦତଳେ ଦାସ
ଅପଣ୍ଡିତ ଶୂଦ୍ରମୁନି ଏ ଶାରଳା ଦାସ ।

—o—

## ଚିତ୍ରାଙ୍ଗଦା ପରିଣୟ

ଏଥୁଅନନ୍ତରେ ମନୁ ବୈବସ୍ୱତ ରାଜା
ଧୂପଦୀପ ଦେଇ କଲେ ମୁନି ପାଦପୂଜା ।
ଭୋ ମୁନି କହ ଏଠାରୁ ହେଲା କେଉଁ ରସ
ପାର୍ଥର ଏ ବନବାସ ଅପୂର୍ବ ରହସ୍ୟ ।
ଅଗସ୍ତି ବୋଇଲେ ଶୁଣ ମନୁ ଦଣ୍ଡଧର
ସେଠାବରେ ଶେଷହେଲା ଯହୁଁ ବିଭାଘର ।
ଅନେକ ସାନନ୍ଦ ହୋଇ ତହୁଁ ବେନି ରାଜା
ଅର୍ଜ୍ଜୁନ ଚରଣେ କଲେ ପୁଣ ପୁଣ ପୂଜା ।
ଭୋ ସ୍ୱାମୀ ତୁମ୍ଭେ ଯେ ଏହା କହିବା ବିଚାରି
ମାନବ ଦୃଷ୍ଟିରେ ଆମ୍ଭେ ଚିହ୍ନିତ ନ ପାରି ।
ହରିହର କିବା ସ୍ୱାମୀ ଅଟ ପୁରନ୍ଦର
କିବା ଯମଦଗ୍ନି ସୁତ ବୀର ପର୍ଶୁଧର ।
କିବା ଧର୍ମ ବିଜେ କରିଅଛ ଅଦ୍ଭୁତେ
ଆମ୍ଭଙ୍କୁ ଯେ ସାବଧାନ କରିବା ନିମନ୍ତେ ।
ହସି ତାହାଙ୍କୁ କହଇ ପାଣ୍ଡବ ସୁନ୍ଦର
ସାବଧାନ ହୋଇ ଶୁଣ ବେନି ନୃପବର ।
ନୁହଇ ମୁଁ ହରିହର ଇନ୍ଦ୍ର ମୋର ତାତ
ମୋହର ତ ଅଜାଗୁରୁ ରେଣୁକାର ସୁତ ।
ପଣ୍ଡୁର ନନ୍ଦନ ମୋର ନାମ ଫାଲ୍‌ଗୁନି
ମାତା ନାମ କୁନ୍ତୀ କୁନ୍ତଭୋଜର ଦୁଲଣୀ ।
ଶୁଣି ଚରଣେ ପଡ଼ିଲେ ବେନି ନରମଣି
ଉଠି ବଇରାଜ ରାଜା ମାଗଇ ମେଲାଣି ।

ଅଇଲି ମୁଁ ବହୁଦିନ ହେଲା ରାଜ୍ୟ ଛାଡ଼ି
ଆଜ୍ଞା ହୋଇଲେ ମୁଁ ଯିବି ଥାଟକୁ ସଜାଡ଼ି ।
ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ମେଲାଣି ଘେନି ଚଳିଲା ବୈରାଜ ନୃପତି ।
ଏଥୁ ଅନନ୍ତରେ ରାଜା ଚିତ୍ରାଙ୍କୁର ବୀର
କରଯୋଡ଼ି ଉଭାହୋଇ ଅର୍ଜ୍ଜୁନ ଆଗର ।
ପାତ୍ରମନ୍ତ୍ରୀ ଘେନି ସଙ୍ଗେ ପାର୍ଥପାଦେ ଖଟି
ପୁତ୍ରବଧୂ ସହିତରେ ଭୂମିପରେ ଲୋଟି ।
ଉଠ ବୋଇଲେ ବିଚିତ୍ରବୀର୍ଯ୍ୟଙ୍କର ନାତି
ଆଜ୍ଞା ପ୍ରମାଣେ ତୁରିତେ ଉଠିଲା ନୃପତି ।
ସ୍ତୁତିକଲା ଶିରେ ବେନିକରକୁ ନିବେଶି
ସ୍ୱାମୀ ମହୀ ଉଦ୍ଧାରଣ ଅର୍ଥେ ବନବାସୀ ।
ସ୍ୱାମୀ ଅଙ୍ଗାରପନ୍ନଗ ଜିଣିଲୁ ବନସ୍ତେ
ସ୍ୱାମୀ ଲାଖ ବିନ୍ଧିଲୁ ତୁ ରାଜାଙ୍କ ଅଗ୍ରତେ ।
ସ୍ୱାମୀ ଲକ୍ଷେ ରାଜା ଜିଣି ଆଣିଲୁ ଦ୍ରୌପଦୀ
ସ୍ୱାମୀ ହରିଲୁ ଅଗ୍ନିଙ୍କ ଲୁଦୁବୁଦୁ ବ୍ୟାଧି ।
ସ୍ୱାମୀ ଇନ୍ଦ୍ରଙ୍କୁ ଜିଣିଣ ପାଇଅଛୁ ବର
ସ୍ୱାମୀ ତୁ କିରାତରୂପେ ଜିଣିଲୁ ଶଙ୍କର ।
ସ୍ୱାମୀ ତୋତେ ବରଦେଲେ ହରଉମା ଯାଚି
ପୁତ୍ର କଲେ ତୋର ନାମ ଦେଇ ସବ୍ୟସାଚୀ ।
ସ୍ୱାମୀ ତୋହର ମହିମା ଅଟଇ ଅପାର
ସ୍ୱାମୀ ଶରଣଜନଙ୍କୁ କରୁ ତୁ ଉଦ୍ଧାର ।
ବିରଥ ହତ ଆୟୁଧେ ନମାରୁ ସମରେ
ହରିହର ସଖା ମୋତେ ଦୟାକର ବାରେ ।
ଏମନ୍ତ ଅନେକ ସ୍ତୁତି କଲା ନୃପମଣି
ପ୍ରସନ୍ନ ହେଲେ ଗାଣ୍ଡୀବପାଣି ତାହା ଶୁଣି ।
ହସି ଅର୍ଜ୍ଜୁନ କହନ୍ତି ଏ ସତ୍ୟ ବଚନ
ମାଗ ହୋ ନୃପତି ଯାହା ହୁଏ ତୋର ମନ ।
ଅର୍ଜ୍ଜୁନ ପ୍ରସନ୍ନ ହେବା ଜାଣି ନୃପବର
କପାଳେ କର ନିବେଶି କରଇ ଉତ୍ତର ।
ସ୍ୱାମୀ ଯେବେଟି ମୋହର ଘେନିଲେକ ସେବା
ମୋହର ରାଜ୍ୟକୁ ଏବେ ବିଜୟ କରିବା ।
ଦୁହିତା ଗୋଟିଏ ମୋର ଅଛି ଅବିବାହୀ
ତାକୁ ପ୍ରଦାନ କରିବି ମୁହିଁ ତୁମ୍ଭଙ୍କୁ ହିଁ ।
ଆବର ଅଶେଷ ଜାଣ ମୋର ପୁରଜନ
ଦ୍ୱିତୀୟ କୃଷ୍ଣଙ୍କୁ ନେତ୍ରେ କରିବେ ଦର୍ଶନ ।
ଶୁଣିଣ ହରଷ ହୋଇ ପଣ୍ଡୁର କୁମର
ତୁରିତେ ଆସନ ଛାଡ଼ି ହୋଇଲେ ବାହାର ।
ଅର୍ଜ୍ଜୁନଙ୍କୁ ଆଗେ ଘେନି ଚଳଇ ନୃପତି
ଯାଇ ଆପଣା ନଗର ନିକଟେ ମିଳନ୍ତି ।

ରାଜାର ଯେ ଅଙ୍ଗବଳ ପଳାଇ ସମସ୍ତ
ଭୟେ ଲୁଚି ରହିଥିଲେ ଜମ୍ବାଳ ପର୍ବତ ।
ରାଜାର ଆସିବା ଜାଣି ସମସ୍ତେ ଅଇଲେ
ସମାରୋହେ ରାଜା ଯାଇ ନଗରେ ପଶିଲେ ।
ଅର୍ଜ୍ଜୁନକୁ ରଖିଲା ସେ ସ୍ୱର୍ଣ୍ଣମୟପୁରେ
ବସାଇଲା ଗଜଦନ୍ତ ପଲଙ୍କ ଉପରେ ।
ଜଉତିଷଙ୍କୁ ଡକାଇ ବୋଇଲା ରାଜନ
ବିଚାରିଣ ଧର ବିଭାଲଗ୍ନ ଶୁଭଦିନ ।
ଜ୍ୟୋତିଷେ ବୋଇଲେ ଦେବ ଆଜ ଶନିବାର
ଆସନ୍ତା ମଙ୍ଗଳବାରେ ବିଭାଘର କର ।
ଯୋଗାଇଲା ସପତମୀ ଦିନ ବିଚାରକୁ
କୁମ୍ଭ କୃଷ୍ଣପକ୍ଷ ଏହିଯୋଗ ଏ ବିଭାକୁ ।
ନକ୍ଷତ୍ର ଯେ ପୁନର୍ବସୁ କକଡ଼ାରେ ଶଶି
ଶୁକ୍ଳନାମେ ଯୋଗ ନବକରଣ ପ୍ରକାଶି ।
ତାରବଳ ଚନ୍ଦ୍ରବଳ ବୁଝିଲେ ଆବର
ଖଡ଼ିକାଢ଼ି ଗ୍ରହ କୋଠି କାଟି ଦିନବାର ।
ସପ୍ତଶାଳାକାଦି ନାଗନାଡ଼ୀ ଯେ ବୁଝିଲେ
ଦୁଇଦିନ ଛାଡ଼ି ବିଭାକର ହୋ ବୋଇଲେ ।
ଶୁଣିଣ ନୃପତି କଲା ଉଦବେଗ ମନ
ମନ୍ତ୍ରୀକି ଚାହିଁ ବୋଇଲେ ଏମନ୍ତ ବଚନ ।
ନଗର ପୁର ସମସ୍ତ ତୁରିତେ ମଣ୍ଡାଇ
ବିଭାଘରର ଯୋଗାଡ଼ମାନ କର ଯାଇ ।
ମେଢ଼ ମଣ୍ଡପ ମଣ୍ଡାଇ ଦେଉଳ ଜଗତୀ
ପନ୍ତି ପନ୍ତି ସୁବର୍ଣ୍ଣର କଳସ ବସାନ୍ତି ।
ବିଚିତ୍ର ଚିରାଳମାନ ଉଡ଼େ ଫର ଫର
ଚିତ୍ର ଲେଖନ କରନ୍ତି ସମସ୍ତଙ୍କ ଘର ।
ସ୍ଫଟିକ ଫାବଚ୍ଛମାନ ବାନ୍ଧି ଦ୍ୱାରେ ଦ୍ୱାରେ
ସାଧୁତାଜନ ବାଣିଜ୍ୟ ଘର ବଣିକାରେ ।
ଦାଣ୍ଡ ପହରାଇ ପାଣି କର୍ପୂର ଯେ ସିଞ୍ଚି
ବନ୍ଦନ ଛେରା ସୁବାସ ପୁଷ୍ପମାନ ବିଞ୍ଚି ।
ନଗ୍ର ପୁର ପରିମଳ ଦେଖନ୍ତି ରାଜନ
ସାଧୁ ସାଧୁ ମନ୍ତ୍ରୀକି ଯେ ବୋଲନ୍ତି ବଚନ ।
ଏସନ ମଝିରେ ଯହୁଁ ଦୁଇଦିନ ଗଲା
ସମସ୍ତ ଯୋଗାଡ଼ ରାୟ ବୁଝି ସଜାଡ଼ିଲା ।
ମଙ୍ଗଳ ବେଳାକୁ ଧରି ଅହିଅ ଯୁବତୀ
ଗ୍ରାମଦେବତାଙ୍କୁ ଶୁଭେ ମଙ୍ଗୁଳିଣ ଯାନ୍ତି ।
କେହି ଦୁର୍ବାକ୍ଷତ କେବା ଧୂପଦୀପ ଘେନି
ଶୁଭ ଗୀତଗାଇ ଦାଣ୍ଡେ ଚାଲନ୍ତି କାମିନୀ ।
ବୁଲନ୍ତି ସେ ପରିମଳ ରାଜଦାଣ୍ଡ ବାଟେ
ବେଳୁବେଳ ଶୋଭାରାଶି ବିକାଶିଲା ରାଷ୍ଟ୍ରେ ।

ଦେବତାଙ୍କୁ ମଙ୍ଗୁଳି ଯେ ନିଜପୁରେ ଆସି
ଦାଣ୍ଡେ ବୁଲନ୍ତି ମଙ୍ଗଳ ଗୀତ ଭାଷି ଭାଷି ।
ସୁବର୍ଣ୍ଣର କଟରାରେ କୁଙ୍କୁମ ଆଣନ୍ତି
ଅର୍ଜ୍ଜୁନଙ୍କ ଅଙ୍ଗେ ନେଇ ହଳଦୀ ବୋଳନ୍ତି ।
ନାନାବିଧ ଅଳଙ୍କାରେ କରନ୍ତି ମଣ୍ଡନ
ଏହି ବିଧିରେ କନ୍ୟାଙ୍କୁ କରନ୍ତି ଭୂଷଣ ।
ରଜନୀ ହୁଅନ୍ତେ ପୁଣି ଯୁବତୀଏ ଆସି
କାଖେ ଘେନି ଶତମୁଖ ସୁବର୍ଣ୍ଣ କଳସୀ ।
ଦାଣ୍ଡେ ବୁଲନ୍ତି ମଙ୍ଗଳ ଗୀତ ପୁଣି ଗାଇ
ଦ୍ୱାରେ ଦ୍ୱାରେ ବୁଲି ପାଣି ମାଗନ୍ତି ସେ ଯାଇ ।
ଘରେ ଥିବା ଲୋକେ ଜାଣି ବୋଲନ୍ତି ତ ବାଳୀ
ଅଇଲେଣି ଦ୍ୱାରେ ଦ୍ୱାରେ ବୁଲି ପାଣିତୋଳି ।
ଅହିଅ ଯୁବତୀମାନେ ଶୁଚିମନ୍ତ ହୋଇ
ପବିତ୍ର ଜଳ ଆଣିଣ ଦିଅନ୍ତି ବଢ଼ାଇ ।
ଏମନ୍ତେ ଯୁବତୀମାନେ ଜଳ ଆଣିଦେଲେ
ରାଜାର ମୁଦୁସୁଲୀଏ ତାହା ଘେନିଗଲେ ।
ସାତକୁମ୍ଭ ଯହୁଁ ଶୁଭ ପଶିଲାକ ପାଣି
ବାହୁଡ଼ି ଆସନ୍ତି ତହୁଁ ସକଳ ତରୁଣୀ ।
ରାତିଯାକ ବୁଲି ଯହୁଁ ସେ ପାଣି ଆଣନ୍ତି
ତେଣୁ ତାକୁ ଚୋରୀପାଣି ଲୋକେ ଯେ ବୋଲନ୍ତି ।
ସୁବର୍ଣ୍ଣ ପିଢ଼ାରେ ନେଇ କନ୍ୟାକୁ ବସାଇ
ଗ୍ରହ ଔଷଧି ସୁଗନ୍ଧ କେଶରେ ଲଗାଇ ।
ସେହି ଚୋରି ପାଣି ଘେନି ଅଭିଷେକ କଲେ
ତହିଁ ଉତ୍ତାରୁ ସେ ପୁଣି ଅଏଁଳା ବୋଳିଲେ ।
ସୁବାସିତ ଜଳେ ସ୍ନାନ କରାଇଲେ ପୁଣି
କେଶ ପୋଛିଦେଲେ ସରୁ ନବବସ୍ତ୍ର ଆଣି ।
ବରକନ୍ୟାଙ୍କୁ ପୋଛିଲେ ଝୀନବସ୍ତ୍ର ଘେନି
ବରକନ୍ୟା କେହୁ ପାଣି ଛଡ଼ାଇ କାମିନୀ ।
ଦେବାଙ୍ଗ ପଟନୀ ନେଇ ବରକୁ ପିନ୍ଧାଇ
ସରୁ ରଙ୍ଗପାଟେ କନ୍ୟା ସର୍ବାଙ୍ଗ ଘୋଡ଼ାଇ ।
ପଞ୍ଚଗ୍ରାସୀ କରନ୍ତି ଯେ ଆଣି ଚୋରିଭାତ
ଏମନ୍ତ ସମୟେ ଆସି ହୋଇଲା ପ୍ରଭାତ ।
ପୁଚ୍ଛନ୍ତି ଜଉତିଷଙ୍କୁ ଚାହିଁ ନରସାଇଁ
ଜାଣି କହିଦେବ ଅନୁକୂଳ ବେଳ ସେହି ।
ମଣାଇ ଛାୟା ମଣ୍ଡପ ବେଗେ ଦଣ୍ଡଧାରୀ
ଖଞ୍ଜି ହୀରାନୀଳା ଗଜଦନ୍ତ ପିଢ଼ା ପାରି ।
ବରବେଶ ହୋଇ ବିଜେ ପାଣ୍ଡବ ସୁନ୍ଦର
ଯାଇ ସେ ବସିଲେ ଶୁଭେ ବେଦୀର ଉପର ।
ଏମନ୍ତବେଳେ ଆସଇ ରାଜାର ଦୁହିତା
ହୁଳହୁଳି ଦିଅନ୍ତି ଯେ ଅନେକ ବନିତା ।

ବେଦୀ ଉପରେ ବସିଛି ପଣ୍ଡୁରାଜା ଶିଷ୍ୟ
ତାଙ୍କ ଉପରେ ଉହାଡ଼ କଲେ ନବବାସ ।
ଅଞ୍ଚଳେ ଲବଣ ଗୁଡ଼ କନ୍ୟା ଧରିଥିଲା
ଅର୍ଜ୍ଜୁନର ଉପରକୁ ବିଞ୍ଚି ଫିଙ୍ଗିଦେଲା ।
ହରଷେ ଯୁବତୀମାନେ ଗାଇଲେ ମଙ୍ଗଳ
କହନ୍ତି ଅଗସ୍ତି ଶୁଣ ମନୁ ମହୀପାଳ ।
ସୁଜାଣେଶ୍ୱର ନାମରେ ରାଜା ପୁରୋହିତ
ବିଭା ନିମନ୍ତେ ବେଦୀରେ ବସିଲା ତୁରିତ ।
ବାକ୍ୟ କରାନ୍ତି ସେ ବସି ଅର୍ଜ୍ଜୁନ ଆଗରେ
ବସାଇଲେ ଅର୍ଜ୍ଜୁନକୁ ନେଇ ସେ ବିଷ୍ଟିରେ ।
ଅଣାଇଥିଲା ସେ ରାଜା ଅତୁଠରୁ ପାଣି
ବରପାଦ ଧୋଇଦେଲା ଚିତ୍ରଧ୍ୱଜ ପୁଣି ।
ପ୍ରଥମେ ବରଣ ପାଞ୍ଚି ଦେଲେକ ପିନ୍ଧାଇ
ବୋଇଲେ କନ୍ୟାକୁ ଆଣ ବସନ ପିନ୍ଧାଇ ।
ସେହି ବସ୍ତ୍ରକୁ ପିନ୍ଧିଣ ରାଜାର ଦୁଲଣୀ
ବେଦୀ ଉପରେ ବସିଲା ଯାଇ ସୁଲକ୍ଷଣୀ ।
ମହାବାକ୍ୟ ଉଚ୍ଚାରଣ କଲେ ପୁରୋହିତ
କୁଶରେ ବାନ୍ଧିଲା ବରକନ୍ୟାଙ୍କର ହସ୍ତ ।
ଯୁବତୀଗଣ ମିଳିଣ କରନ୍ତି ମଙ୍ଗଳ
ଶଙ୍ଖେ କୁଶପାଣି ତୋଳି ବୋଲେ ମହୀପାଳ ।
ସ୍ୱାମୀ ଆଜ୍ଞୁ ସୋମବଂଶେ ପଶିଲି ଶରଣ
ବନ୍ଧୁତା ପଣକୁ ମୁହିଁ ନୁହଇ ଭାଜନ ।
କଉତୁକ ହେଲା ଚିତ୍ରାଙ୍ଗଦା ନାମେ ଦାସୀ
ଧନରତ୍ନ ଆଦି ଦେଇ ଅର୍ଜ୍ଜୁନକୁ ତୋଷି ।
ଲାଜାହୋମ ଶେଷକଲେ ପୁଣି ସେହି ରାତି
ବରକନ୍ୟା ମଧୁଶଯ୍ୟା ପୁରକୁ ଗମନ୍ତି ।
ରଜନୀ ପ୍ରଭାତୁ ବେଗେ ନିତ୍ୟକର୍ମ ସାରି
ଆସ୍ଥାନ ମଣ୍ଡପେ ବିଜେକଲେ ଦଣ୍ଡଧାରୀ ।
ଦିବସରେ ଆସ୍ଥାନରେ ବସନ୍ତି ଅର୍ଜ୍ଜୁନ
ରାତ୍ରେ ଘରଣୀ ସଙ୍ଗରେ କଟାନ୍ତି ସେଦିନ ।
ଅର୍ଜ୍ଜୁନ ତହିଁ ରହିଲା ଷାଠିଏ ଦିବସ
ଅର୍ଜ୍ଜୁନର ଦୀର୍ଯ୍ୟେ ବାଳୀ ହେଲା ଗର୍ଭବାସ ।
ଦିନେ ସେ ରାଜାର ପାଶେ କହଇ ଅର୍ଜ୍ଜୁନ
ସାବଧାନ ହୋଇ ଏବେ ଶୁଣ ହେ ରାଜନ ।
ସମ୍ଭାଳିଥାଅ ଦୁହିତା ଗୋଟିକି ତୁମ୍ଭର
ମୁହିଁ ଯାଉଅଛି ଏବେ ଅରଣ୍ୟ ଭିତର ।
ତାହା ଶୁଣନ୍ତେ ବିରସ କଲା ରାଜା ମତି
କି କାରଣେ ବନେ ଯିବ ବୋଲଇ ନୃପତି ।
ସେବା କରିବାକୁ ମୁଁ କି ନୋହିଲି ଭାଜନ
କ୍ଷମାକର ମୋତେ ଅପରାଧକୁ ନ ଘେନ ।
କିବା ଅପରାଧ କଲା ମୋହର କୁମାରୀ
ମୁହିଁ ଶରଣରେ ବାବୁ ପୟରେ ତୋହରି ।
ତୁ ତାହାର ନାଥ ଦୋଷ କରିବୁ ନା କ୍ଷମା
ତୁ ତ କ୍ଷତ୍ରିୟବର ସେ ଅଲିଅଳ ଜେମା ।
ଅର୍ଜ୍ଜୁନର ପ୍ରତିବାକ୍ୟ ଶୁଣି ହେ ରାଜନ
ଦ୍ୱାଦଶ ବରଷ ହେଲା ଅଇଲି ମୁଁ ବନ ।
ଦୋଷ ନାହିଁ ତୁମ୍ଭର କି ତୁମ୍ଭ ଝିଅଙ୍କର
ସତ୍ୟ ଲଙ୍ଘି ନ ପାରିବି ଆହେ ନୃପବର ।
ଦ୍ୱାଦଶ ବରଷ ଶେଷ କରିବଇଁ ବନେ
ତୋହର ଦୁହିତା ଥାଉ ତୋହର ଭୁବନେ ।
ସନ୍ତୋଷ ହୋଇଲା ରାଜା ଚିତ୍ରାଙ୍କୁର ଶୁଣି
ଚିତ୍ରାଙ୍ଗଦାକୁ ସେ ରାତ୍ରେ ବୋଧି ନୃପମଣି ।
କେଶବ ସୁମରି ପାର୍ଥ ପାଦ ବଢ଼ାଇଲା
ଗହନ ଅରଣ୍ୟେ ପଶିରଥ ବାହିଗଲା ।
ଝଙ୍କଡ଼ପୁରେ ତୋ ଘର ଜୟ ତୁ ଶାରଳା
ତୁହି ସର୍ବ ମଙ୍ଗଳା ତୁ ବୋଲାଉ ହିଙ୍ଗୁଳା ।
ତୁହି ରାତ୍ରେ ଆସି ମୋତେ କହୁ ଯେ ସ୍ୱପନେ
ମୁହିଁ ତାହା ଲେଖଇଗୋ ପତ୍ରରେ ଲେଖନେ ।
ଜନ୍ମେ ଜନ୍ମେ ମୁହିଁ ତୋର ଅଟଇ ଶରଣ
ଶାରଳା ଦାସ ସେବଇ ତୋହର ଚରଣ ।

—o—

## ଉଲୁପି ବିବାହ

ବଦନ୍ତି ଅଗସ୍ତି ଆହେ ଶୁଣ ନୃପବର
ବନଶୋଭା ଦେଖି ଦେଖି ଯାଏ ଧନୁର୍ଦ୍ଧର ।
ଜମ୍ବୁ ଜମ୍ବୀର ଜେଉଟ ଜମ୍ବିଳ କରଞ୍ଜ
ଯଜାଙ୍ଗ ଜୟନ୍ତୀ ଯାଷ୍ଟିମଧୁ ପୁଞ୍ଜ ପୁଞ୍ଜ ।
କରମଙ୍ଗା କୁରୁବେଲୀ କେରନ୍ଦା କଇଁଥ
ଶାଳ ପିଆଶାଳ ତାଳ ତମାଳ ବହୁତ ।
ନାରଙ୍ଗ ନଡ଼ିଆ ନିମ୍ବ ବୃକ୍ଷ ଆଦି ଦେଖେ
ପଶୁପକ୍ଷୀ ଖେଳୁଛନ୍ତି ତହିଁ ଅତି ସୁଖେ ।
ଏମନ୍ତେ ବନସ୍ତ ଶୋଭା ଦେଖି ଦେଖି ଗଲା
ସରଯୁ ନଦୀର କୂଳେ ପ୍ରବେଶ ହୋଇଲା ।
ପୁଇ ଚାନ୍ଦିଆ ମୂଳରେ ଧନୁ ତୂଣ ଥୋଇ
ନଦୀଜଳେ ପଶି ବୀର ସ୍ନାନକଲା ଯାଇ ।
ଉଲୁପୀ ନାମରେ ଏକ ନାଗକନ୍ୟା ଆସି
ଅର୍ଜ୍ଜୁନ ବୁଡ଼ିବାବେଳେ ଜଳମଧ୍ୟେ ପଶି ।
ଅର୍ଜ୍ଜୁନକୁ ଘେନି ବାଳୀ ଜଳେ ଜଳେ ଗଲା
ଆପଣାର ପୁରେ ଯାଇ ପ୍ରବେଶ ହୋଇଲା ।
ମଣିମୟ ପୁର ତହିଁ ବିଚିତ୍ର ମନ୍ଦିର
ଆଚମ୍ୱିତ ହେଲା ପୁର ଦେଖି ମହାବୀର ।

ମନେ ବିଚାରିଲା ମୁହିଁ କରିଥିଲି ସ୍ନାନ
କେମନ୍ତେ ପାଇଲି ଏବେ ଏ ଦିବ୍ୟ ଭୁବନ ।
ଧନୁ ତୂଣୀରକୁ ରଖିଅଛି ନଦୀକୂଳେ
ସ୍ନାନ କରୁଥିଲି ପଶି ମୁଁ ସରଯୁ ଜଳେ ।
କେମନ୍ତେ ଅଇଲି କିଏ ଆଣିଲାକ ଏଥେ
ଏମନ୍ତେ ଭାଳୁ କନ୍ୟାକୁ ଦେଖେ ନେତ୍ରପଥେ ।
ନବ ଯଉବନୀ ସେ ଯେ ପରମା ସୁନ୍ଦରୀ
ରୂପେ ଲକ୍ଷ୍ମୀ ଠାକୁରାଣୀ ନୋହିବେକ ସରି ।
ସୁନ୍ଦର ଅଙ୍ଗକୁ ତାର ନାହିଁ ପଟାନ୍ତର
କଟାକ୍ଷ ସେ ସୁନ୍ଦରୀର କାମ ପଞ୍ଚଶର ।
ହସିବା ଚାହିଁବା ତାର ଯୋଗୀ ଯୋଗଭାଙ୍ଗେ
ଉଭା ହୋଇଅଛି ବାଳୀ ଅର୍ଜୁନର ଆଗେ ।
ପାର୍ଥ ବୋଲଇ ସୁନ୍ଦରୀ ଏ କାହାର ପୁର
କାହାର କୁମାରୀ ତୁମ୍ଭେ କେ ତୁମ୍ଭ ପିଅର ।
ସ୍ନାନ କରୁଥିଲି ମୁହିଁ ଅଇଲି କେମନ୍ତେ
ଜାଣିଥିଲେ ସୁନ୍ଦରୀ ଗୋ କହ ତାହା ମୋତେ ।
ଉଲୁପୀ କହଇ ପୁର ଗୋଟି ଯେ ମୋହର
ମୁହିଁ ଅଟେ ନାଗକନ୍ୟା ଆହେ ବୀରବର ।
ଉଲୁପୀ ବିଦ୍ୟାର ବଳେ ଆଣିଲି ତୁମ୍ଭଙ୍କୁ
ତୁମ୍ଭେ ଜାଣି ନ ପାରିଲ ଅଇଲ ଏଠାକୁ ।
ମୋହର ନାମ ଉଲୁପୀ ମୁହିଁ ଅବିବାହୀ
ତୁମ୍ଭଙ୍କୁ ମୁଁ ଜଳ ମଧ୍ୟେ ଆଣିଲି ବୁଡ଼ାଇ ।
ଅର୍ଜୁନ ବୋଇଲେ ଆଣିଅଛ କି ନିମନ୍ତେ
କି କାର୍ଯ୍ୟ କରିବି ତାହା କହ ମୋ ଅଗ୍ରତେ ।
ଉଲୁପୀ କହିଲା ବୀର ରୂପ ଦେଖି ତୋର
କାମ ବିଶିଖେ ମୋହର ଶରୀର ଅସ୍ଥିର ।
ତେଣୁ ଆଣିଛି ତୁମ୍ଭଙ୍କୁ ମୋହର ଭୁବନେ
ମୋତେ ବିଭାହୋଇ ଏଥେଁ ରହି କିଛିଦିନେ ।
ପୁଣି ଘୋର ଅରଣ୍ୟକୁ ଯାଅ କିନା ନାଥ
ତା କଥାରେ ସନମତ କଲେ ବୀରପାର୍ଥ ।
ବିଭାହୋଇ ରହିଲେକ ତାହାର ମନ୍ଦିରେ
ଶିଖିଲେ ଉଲୁକ ବିଦ୍ୟା ରହି ତାର ପୁରେ ।
ଅଞ୍ଜନ ଗୁଟିକା ଆଦି ଧାରଣା ଯେତେକ
ଶିଖିଲେ ନାଗାନ୍ତବିଦ୍ୟା ତାଠାରୁ ଅନେକ ।
ଦିନାକେତେ ତାରପୁରେ ରହି ଧନଞ୍ଜୟ
ବୋଇଲେ ଗୋ ସଖି ଯିବି ଆଜ୍ଞାମୋତେ ଦିଅ ।
ଉଲୁପୀ କହିଲା ତୁମ୍ଭେ ଯାଉଅଛ ନାଥ
ତୁମ୍ଭର ବିହୀନେ ମୁହିଁ ହୋଇବି ଅନାଥ ।
ଜାତିରେ କ୍ଷତ୍ରିୟ ତୁମ୍ଭେ ଅଟ ଶସ୍ତ୍ରଧାରୀ
ଏ ଜୀବନ ସିନା ଅଟେ କ୍ଷଣିକ ମୋହରି ।
କେମନ୍ତେ ଜାଣିବି ତାହା କହ ପ୍ରାଣେଶ୍ୱର
ଜାଣିଲେ ସିନା ଅନଳେ ଦହିବି ଶରୀର ।
ଅର୍ଜୁନ ବୋଇଲେ ମୋର ପ୍ରତିରୂପ ରଖ
ଦୁଃଖ ହରୁଥିବ ସଖି ଦେଖି ତାର ମୁଖ ।
ଯେଉଁଦିନ ଦିଶିବ ଯେ ରୂପଗୋଟି କଳା
ସେଦିନ ମୋହର ମୃତ୍ୟୁ ଜାଣିବୁରେ ବାଳା ।
ଏହାକହି ପ୍ରତିମୂର୍ତ୍ତି ରଖି ତାହା ପୁରେ
ଉଲୁକ ବିଦ୍ୟାର ବଳେ ପଶିଲେ ଜଳରେ ।
ମିଳିଲେ ସରଯୂକୂଳେ ବୁଡ଼ି ବୁଡ଼ି ଆସି
ସ୍ନାନ ତରପଣ ଶେଷକଲେ ଜଳେ ପଶି ।
ପିତୃ ତରପଣ ସାରି କୂଳରେ ମିଳିଲେ
ଫଳମୂଳ ଖାଇ ଦେହ ସୁସ୍ଥ କରାଇଲେ ।
ଧନୁଶର ଘେନି ବନ ଭ୍ରମି ସେ ଆସନ୍ତି
ରାମ ନାମ ସୁମରିଣ ବନସ୍ତେ ବାଞ୍ଛନ୍ତି ।
ଦଶମାସ ତହିଁ ରହି ପଣ୍ଡୁର କୁମର
ପୁଣି ସେହି କାନନକୁ ଉପେକ୍ଷିଲା ବୀର ।
ଯାଉଁ ଯାଉଁ ଏଥେ ଏକ ପର୍ବତ ଦେଖିଲେ
ସେହି ପର୍ବତ ଉପରେ ପୁଣି ସେ ରହିଲେ ।
ମଣିଭ୍ରଦା ନାମ ଜାଣ ଅଟଇ ତାହାର
ତହିଁରେ ସୁଖେ ରହିଲେ ପାଣ୍ଡବ ସୁନ୍ଦର ।
ତୁଳସୀର ବଲ୍ଲଭ ଶ୍ରୀଚରଣରେ ଆଶ
ବଦନ୍ତି ଶୂଦ୍ରମୁନି ଶ୍ରୀ ଶାରଳା ଦାସ ।

—o—

## ବଭ୍ରୁବାହନ ଜନ୍ମ

ଏମନ୍ତ ଶୁଣି ବିଲଙ୍କା ଦେଶ ମହାରାଜା
ଅଗସ୍ତି ମୁନି ଚରଣେ କଲେ ଦିବ୍ୟପୂଜା ।
ଆହେ ମୁନି ସାବଧାନେ ହୋଇଣ ଶୁଣିମା
ଚିତ୍ରଙ୍ଗଦା କନ୍ୟା ସେହୁ ଚିତ୍ରାଙ୍କୁର ଜେମା ।
ଅର୍ଜୁନ ବୀର୍ଯ୍ୟେ ସେ ହୋଇଥିଲା ଗର୍ଭବତୀ
ପୁତ୍ର କି ଦୁହିତା ତାର ହେବ ଉତପତି ।
ଏହା ସଂକ୍ଷେପି କହିବା ହେଉ ମୁନିବର
ବଦନ୍ତି ଅଗସ୍ତି ଶୁଣ ଆହେ ଦଣ୍ଡଧର ।
ଯେତେବେଳେ ପାର୍ଥ କହିଗଲା ଘୋରବନ
ଚିତ୍ରାଙ୍ଗଦା ବୋଇଲା ଯେ ଶୁଖାଇ ବଦନ ।
ଦେଖୁଛ ତ ନାଥ ମୋର ଗର୍ଭର ଲକ୍ଷଣ
କି ନାମ ଦେବି ତାହାର ହୋଇଲେ ନନ୍ଦନ ।
ପାର୍ଥ ବୋଇଲେ ଶ୍ୱେତାଶ୍ୱବାହନ ମୋ ନାମ
ବାଛି ନାମ ଦେବୁ ଥିବ ତା ଶେଷ ବାହନ ।
ଏମନ୍ତ ବୋଧି ଅର୍ଜୁନ ଅରଣ୍ୟକୁ ଗଲା
ଦୁହିତା ଗୋଟିକି ରାଜା ନିଜପୁରେ ନେଲା ।

ଶତେକ ଦାସୀ ଖଟିଲେ ପାଦରେ ତାହାର
ଗର୍ଭର ଲକ୍ଷଣ ତାର ଦେଖି ନୃପବର ।
ନିଶ୍ଚିନ୍ତରେ ଅନ୍ତଃପୁରେ ରଖିଲେ କୁମାରୀ
ଦିନକୁ ଦିନ ନାରୀର ହେଲା ଗର୍ଭଭାରି ।
କ୍ରମମାଷେ ଚିତ୍ରାଙ୍ଗଦା ହେଲା ଗର୍ଭବାସ
ବିଛା ପ୍ରବେଶ ହୋଇଲା ପୂର୍ଣ୍ଣ ଦଶମାସ ।
ମାର୍ଗଶିର ମାସ ଶୁକ୍ଳପକ୍ଷ ଗୁରୁବାର
ପଞ୍ଚମୀ ତିଥି ରୋହିଣୀ ନକ୍ଷତ୍ର ଆବର ।
ବୃଷଚନ୍ଦ୍ର ଶୁଭଯୋଗ କରଣ ଯେ ଭବ
ଚିତ୍ରଙ୍ଗଦା ବାଳୀ କଲା ସେଦିନ ପ୍ରସବ ।
ପାଦରେ ଖଟି ଅଛନ୍ତି ଶତ ବିଳାସିନୀ
ପୁତ୍ର ଜାତ କି ଦ୍ୱିତୀୟା ଜିଣି ଚକ୍ରପାଣି ।
ମକରଧ୍ୱଜ ପ୍ରାୟେକ ଦିଶଇ ନନ୍ଦନ
ନାଭିକୁ ଛେଦି ତୁରିତେ କରାଇଲେ ସ୍ନାନ ।
ଅନ୍ତୁଡ଼ି ଲଗାଇ ବେଗେ ଧାତ୍ରୀଏ ସେକନ୍ତି
ତୂଳା ବୁଡ଼ାଇ କ୍ଷୀର ତା ମୁଖରେ ଦିଅନ୍ତି ।
ବସାଇଲେ ତା ବାଳୀକି ସତେଜ କରାଇ
ଶାସ୍ତ୍ରବିଧି ମତେ ତାଙ୍କୁ ଗଣ୍ଡୁଷେ ଶୁଆଇ ।
ପଞ୍ଚୁଆତି ଷଷ୍ଠୀ ପୂଜା ଉଠିଆରୀ ଗଲା
ଚିତ୍ରାଙ୍କୁର ଏକବିଂଶ ଦିନେ ବିଜେ କଲା ।
ଦୋଳିରେ ସେ ଦୁହିତାର ପୁତ୍ରକୁ ଦେଖିଲା
ଆପେ କି ଅର୍ଜ୍ଜୁନ ପୁତ୍ର ରୂପେ ଉପୁଜିଲା ।
ପରମ ଆନନ୍ଦ ଜାତ ହେଲା ରାଜା ଚିତ୍ତେ
ବହୁତ ଧନ ବଧାଇଦେଲା ସେ ତୁରିତେ ।
କୁମାରୀର ମୁଖ ଚାହିଁ ପଚାରଇ ରାୟେ
କି ନାମ ପୁତ୍ରକୁ ତୋର ଦେବୁଟି ଗୋମାୟେ ।
ଚିତ୍ରାଙ୍ଗଦା ବୋଇଲାକ ଶୁଣିବ ଭୋ ତାତ
ଏହି ଶ୍ୱେତାଶ୍ୱବାହନ ଅର୍ଜ୍ଜୁନର ସୁତ ।
ତାହାର କୁମର ଏହି ଅଟେ ବିଦ୍ୟମାନ
ଏଣୁ ଯେ ବବ୍ରୁବାହନ ଦିଅ ଏହା ନାମ ।
ସ୍ୱଭାବେ ବୃଷ ରାଶିରେ ଜନମ ହୋଇଲା
ବବ୍ରୁବାହନ ନାମଟି ଏହାକୁ ଶୋଭିଲା ।
ଶୁଣିଣ ଅତି ସନ୍ତୋଷ ହୋଇଲା ନୃପତି
ବବ୍ରୁବାହନ ବୋଲିଣ ସମସ୍ତେ ଡାକନ୍ତି ।
ଦିନକୁ ଦିନ ବଢ଼ଇ ଯେଣୁ ସେ ବାଳୁତ
କାଳେ ସେ ଅନେକ ବିଦ୍ୟା ପାଇଲା ପ୍ରାପତ ।
ଶସ୍ତ୍ର ଶାସ୍ତ୍ର ବିଦ୍ୟାରେ ସେ ହୋଇଲା ବିଦ୍ୱାନ
ଯାହାର ପିଅର ଅଟେ ବାସବ ନନ୍ଦନ ।
କେ କହିପାରିବ ଅବା ତାର କ୍ଷେତ୍ରିବୃତ୍ତ
ଅଗୋଚର ଅସଂଖ୍ୟ ଏ ଶ୍ରୀମହାଭାରତ ।

ଗଙ୍ଗାକୂଳ ରେଣୁମାନ ଗଣି କି ପାରିବା
ନଉକା ଯାନେ କି ଅବା ସାଗର ତରିବା ।
ଆକାଶକୁ ଲଗାଇଲେ ନିଶୁଣି କି ପାଇ
ଶ୍ରୀହରିହର ମହିମା ଗୋଚର ନୁହଇ ।
କେବଳ କରୁଣା କଲେ ଝଙ୍କଡ଼ବାସିନୀ
ସେ ଦେବୀ କହିଦିଅନ୍ତି ପୂର୍ବଭାବ ଘେନି ।
ତେଣୁ ଠିକ ଠିକ କଥା କହଇ ବଞ୍ଚାଇ
ଶାରଳା ଦାସ ସେବକ ଦୁର୍ଗା ମହାମାଈ ।
ବନ୍ଦଇ ବାମନ ଦେବ କଶ୍ୟପ କୁମାର
ଦେବଙ୍କ ଛଳେ ଜନ୍ମିଲୁ ଅଦିତି ଉଦର ।
ବାମନ ନାମେ ତୋହର ଖର୍ବ କଳେବରେ
ଧୋତି ଛତା ନବଗୁଣ ପଇତା କାନ୍ଧରେ ।
ଦେବଙ୍କ ହିତେ ଯାଗକୁ ଗଲୁ ଦାନମାଗି
ଧ୍ୟାନେ ଚିହ୍ନି ନ ପାରନ୍ତି ତୋ ରୂପକୁ ଯୋଗୀ ।
ହସ୍ତେ ତୋର କୁଶବଟୁ ତମ୍ବାପାତ୍ର ସାର
ସାମ ଗାନ କଲେ ବଳିରାଜା ସିଂହଦ୍ୱାର ।
ଉଚ୍ଚାରିଲେ ଗହଗହ ଶବ୍ଦେ ବେଦଧ୍ୱନି
ଯଶୋବନ୍ତୀ ପୁରେ କମ୍ପମାନ ପଦ୍ମଯୋନି ।
ବଳିରାଜା ଥିଲା ନିଜ ଆସ୍ଥାନରେ ବସି
ବାମନ ରୂପକୁ ଦେଖି କିଞ୍ଚିତରେ ହସି ।
ଏ କି ହରିହର ବ୍ରହ୍ମା ବହ୍ନି ସୁରପତି
ଏ ମର୍ତ୍ତ୍ୟଭୁବନେ ଦେଖିନାହିଁ ଏ ମୂରତି ।
ଅନେକ ପୁଣ୍ୟଥିଲେ ଯେ ଦେବାଆମ୍ଭେ ଦାନ
ଅଲଭ୍ୟରେ ମିଳିବ ତ ବଇକୁଣ୍ଠ ସ୍ଥାନ ।
ମାଗ ମାଗ ବ୍ରାହ୍ମଣ ହେ ଯେ ତୋହର ଇଚ୍ଛା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଯହିଁ ତୋର ବାଞ୍ଛା ।
ଡାହାଣବର୍ତ୍ତ ଶଙ୍ଖରେ କୁଶ ଜଳ ଭରି
ଉପର ହସ୍ତରେ ଦିଏ ରାଜା ସତ୍ୟକରି ।
ଦାନ ଦେଲାବେଳେ ତାକୁ ନିରୋଧିଲା ପୁତ୍ର
ତୁମ୍ବର କୋପରେ ହେଲା ତା ନୟନ ବକ୍ର ।
ଦିଗପାଳଙ୍କୁ ଆପଣ ସାକ୍ଷୀ ଯେ କରାଇ
ବୋଇଲୁ ତୁ ଦାନ ଦେବୁ ତିନି ପାଦଭୂଇଁ ।
ବଳି ବୋଲେ ଏ କେବଣ ବୁଦ୍ଧି ହେ ତୁମ୍ଭର
ଧନ ଭଣ୍ଡାର ଛାଡ଼ିଣ ମାଗ ଏହି ଛାର ।
ଆପଣ ବୋଇଲେ ମୁହିଁ ନୁହଇ ତ ଲୋଭୀ
ଅଳପକେ ବହୁଦାନ କେମନ୍ତ ମାଗିବି ।
ବଳି ବୋଲେ ବଢୁ ତୋର ଚରଣ ଯୁକତେ
ତକ୍ଷଣେ ବଢ଼ିଲା ନବଦ୍ୱୀପ ପରିଯନ୍ତେ ।
ଦେଖି ବଳି ରାଜାର ଯେ ଉଡ଼ିଲା ସାହସ
ପାଦକେ ପୃଥିବୀ ଆର ପାଦରେ ଆକାଶ ।

ବଳି ବୋଇଲା ତୋହର ଆଉ ପାଦ କାହିଁ
ନାଭିରୁ ପାଦେକ ଜାତ କଲେ ଯେ ଗୋସାଇଁ ।
ଦେଖିଣ ତା ବଳି ରାଜା ପାତିଦେଲା ମାଥ
ଛେଦିଲେ ସକଳ ପାପଭାର ଜଗନ୍ନାଥ ।
ଆଦି ସତ୍ୟଯୁଗେ ଯେ ଦେବୀ ସୁରେଶ୍ୱରୀ
ଅଭିଷେକ ଅର୍ଥେ ବ୍ରହ୍ମା କମଣ୍ଡଳେ ଭରି ।
ଯେଉଁ ପାଦପଦ୍ମ ହେଲା ନାଭିରୁ ବାହାର
ସେ ପାଦପଦ୍ମ ଢାଳିଲେ ନେଇ ବେଦବର ।
ଦକ୍ଷିଣ ପାଦେ ଅଙ୍ଗୁଷ୍ଠି ଯବ ଅର୍ଦ୍ଧକୋଣେ
ନ ତିନ୍ତି ଗଙ୍ଗା ରହିଲା ତିଳାର୍ଦ୍ଧ ପ୍ରମାଣେ ।
ମନେ ଲଜ୍ଜା ପାଇଲା ତା ଦେଖି ଲୋକତାତ
ବିକ୍ରମ ମୂରତି ଧରିଛନ୍ତି ଜଗନ୍ନାଥ ।
ମୁକତ ହୋଇଲା ବଳି ତୁମ୍ଭ ପାଦଲାଗି
ଈଶ୍ୱରଙ୍କ ଶିରେ ବିଜେ କଲେ ଧବଳାଙ୍ଗୀ ।
ସେ ମାନବ ଚରଣରେ ଶରଣ ମୋ ନିତ୍ୟେ
ଶାରଳାଦାସ କହିଲା ସର୍ବଜନ ହିତେ ।
ଚିତ୍ରଉତ୍ପଳା ନଦୀର ଉତ୍ତର ଯେ ଠଣା
ଝଙ୍କଡ଼ ପୁର ନାମରେ ବସାଇ ପାଟଣା ।
କନକପୁର ପାଟଣା ଘର ପର୍ଶୁରାମ
ତାର ଅନୁଜ ଶାରଳା ଦାସ ମୋର ନାମ ।
କୃଷ୍ଣ ଦର୍ଶନ ନିମନ୍ତେ ଥାଏ ମନେ ଭାବି
ଗୋପପୁରେ ନନ୍ଦଘରେ ଯେହୁ ଜନ୍ମ ଲଭି ।
ଏମନ୍ତ ତହିଁରେ କିଛିଦିନ ଗଲା ବହି
ପିତା ଶାପ୍ୟେ ମହାମାୟା ବିଜେ କଲେ ତହିଁ ।
ବାଛୁରୀ ଚରାନ୍ତେ ଗୋପସୁତ ଘେନି ହରି
ଜାଣେ କେଶବ ତାହାଙ୍କୁ ଏକାଳେ ତିଆରି ।
ଜନ୍ମ ଲଭି ସର୍ଜିଲୁ ଗୋ ବଳ ମହାମାୟେ
କନକପୁର ପାଟଣା କର ଗୋ ବିଜୟେ ।
ବିଷ୍ଣୁର ବଚନେ ଯହୁଁ ବିଜେ ତତକ୍ଷଣେ
ରହିଲେ ଅର୍କ ତୀର୍ଥର ଦକ୍ଷିଣ ଯେ କୋଣେ ।
ନର୍ମଦା ଯେ କୃପାଜଳମୟ ସରସ୍ୱତୀ
ଗିରିଜା ଅଂଶେ ଶ୍ରୀଚଣ୍ଡୀ ଶାରଳା ମୂରତି ।
ସେ ମୋତେ ପ୍ରସନ୍ନହୋଇ କହିଲେ ଏ ଗ୍ରନ୍ଥେ
ମୁହିଁ ତାହା ଲେଖିଲଇଁ ସର୍ବଜନ ହିତେ ।
ହେ ସାଧୁଜନେ ମୋହର ନ ଘେନିବ ଦୋଷ
ଜାତିରେ ମୁଁ ଶୂଦ୍ର ବୁଦ୍ଧି ମୋହର ବା କିସ ।
ଶରଣ ମୋ ଶ୍ରୀ ଶାରଳା ପରମ ବୈଷ୍ଣବୀ
ତାର ନିଜପୁତ୍ର ମୁହିଁ ଜନ୍ମେ ଜନ୍ମେ ସେବି ।

—o—

## ସହସ୍ରାଜିତ ଶରଣ

ଏଥୁ ଉତ୍ତାରେ ପୁଣି ସେ ମନୁ ମହାରାଣ
ଅଗସ୍ତିଙ୍କ ଚରଣରେ ପଡ଼ି ପୁଣ ପୁଣ ।
ଖାଣ୍ଡବ ବନ ଚରିତ ଶୁଣିଲି ଗୋସାଇଁ
ତୁମ୍ଭର ପ୍ରସାଦେ ମୋର ପାପ ଛେଦିବଇଁ ।
କଥା ଏକ ପଚାରିବି ପଡ଼ିଲା ମୋ ମନେ
କୋପ ନ କରି ଶୁଣିମା ହେଉ ସାବଧାନେ ।
ସ୍ୟମନ୍ତକ ମଣି ଯୋଗେ ସେ ପ୍ରସନ୍ନାଜିତ
ବନସ୍ତରେ ତାକୁ ଏକ ସିଂହ କଲା କ୍ଷତ ।
ଶତଧନୁ ବଳେ ଶକ୍ରାଜିତକୁ ମାଇଲା
ସହସ୍ରାଜିତ କେମନ୍ତେ ଏଥୁ ପଳାଇଲା ।
ଶତଧନୁ କେଉଁପରି ଗଲାକ ପଳାଇ
ସୁଦର୍ଶନ ଚକ୍ର ଯଦି ନିରତେ ଭ୍ରମଇ ।
ଏହା ସଂକ୍ଷେପି କହିବା ହେଉ ମୁନିବର
ତେବେ ସେ ଭ୍ରାନ୍ତି ଫିଟିବ ମନରୁ ମୋହର ।
ବହୁତ ପ୍ରଣାମ ମୁନି ଚରଣେ କରଇ
କୃତ୍ୟ କୃତ୍ୟ ହୋଇ ତାଙ୍କ ଛାମୁରେ ବସଇ ।
ରାଜାର ବିନୟ ଦେଖି କୁମ୍ଭଋଷି ସୁତ
ବୋଇଲେ ଶୁଣ ହେ ଧୀରେ ମନୁମହାରଥ ।
ଶ୍ରୀ ମହାଭାରତ ମଧ୍ୟପର୍ବର ବାରତା
ବଦନ୍ତି ଅଗସ୍ତି ଶୁଣ ମନୁ ମହାଜ୍ଞାତା ।
ଯେତେବେଳେ ଶକ୍ରାଜିତ ହୋଇଲା ବିନାଶ
ବାରତା ପାଇଣ କୋପକଲେ ପୀତବାସ ।
ସହସ୍ରାଜିତ ଅକ୍ରୁର ଗଲା କହ କାହିଁ
ତା ବୁଦ୍ଧିରେ ଶକ୍ରାଜିତ ସିନା କ୍ଷୟପାଇ ।
ଆଗ ସହସ୍ରାଜିତକୁ କରିବି ମୁଁ କ୍ଷୟ
ପଛେ ଯାଇଁ ଛେଦିବଇଁ ଶତଧନୁ କାୟ ।
ଏସନ ବାରତା ପାଇ ସେ ସହସ୍ରାଜିତ
ବୋଲେ ମୋତେ ରଖିବାକୁ ନାହିଁ ତ୍ରିଜଗତ ।
କାହିଁ ପଶିବି କାହାକୁ କହିବଇଁ ଯାଇ
କେ ମୋତେ ରଖିବ ଅବା ପ୍ରାଣ ଦାନ ଦେଇ ।
ଏମନ୍ତେ ସହସ୍ରାଜିତ ବ୍ୟାକୁଳିତ ମତି
ପଞ୍ଚଭୂତ ଆତ୍ମାରେ ସେ କରେ ବଡ଼ଭୀତି ।
ଏମନ୍ତେ ବିଚାରୁ ରାତ୍ର ହୋଇଲା ପ୍ରହରେ
ଅକ୍ରୁରର ସନ୍ନିଧିକି ଚଳିଗଲା ଖରେ ।
ବୋଇଲା ଶ୍ରୀକୃଷ୍ଣ କୋପ କରିଛନ୍ତି ମୋତେ
ମୋ ଶିର ଛେଦିବେ ଚକ୍ରପେଶି ଜଗନ୍ନାଥେ ।
ଅକ୍ରୁର ବୋଲଇ ତୋତେ ନ ପାରଇ ରଖି
ଚକ୍ଷୁରେ ଶ୍ରୀଜଗନ୍ନାଥ କୋପ ଅଛି ଦେଖି ।

ପୁଣି ହି ଅକ୍ରୁର ମନେ ମନେ ବିଚାରଇ
ଏହାର ଏଥିରେ କିଛି ମାତ୍ର ଦୋଷ ନାହିଁ ।
ଶ୍ୱଶୁର ଛଳେ ଯେ କ୍ରୋଧ କରିଛନ୍ତି ହରି
ଅବଶ୍ୟ ଏହାକୁ ରାତ୍ରେ ପକାଇବେ ମାରି ।
ଏହି ରାତ୍ରେ ତୁହି ଏଥୁ ଯାଆ ଯା ପଳାଇ
ଦ୍ୱାରକା ମଧ୍ୟରେ ତୋତେ ରଖନ୍ତା କେ ନାହିଁ ।
ସେଠାରୁ ସହସ୍ରାଜିତ ପଳାଇଲା ଡରେ
ପଳାଇ ପଶିଲା ଯାଇ ଉଦ୍ଧବ ମନ୍ଦିରେ ।
ଚିତ୍ତ ବ୍ୟାକୁଳିତ ତାର ମନ ଛନ୍ନ ଚନ୍ନ
ରଖିପାରିବୁ କି ବୀର ବାରେ ଏ ଜୀବନ ।
ଉଦ୍ଧବ ପଚାରେ ଭୟ କାହାକୁ ତୋହର
ମୋହର ଶରଣ ବୋଲି କହୁ ବାରମ୍ବାର ।
ବୋଇଲେ ସହସ୍ରାଜିତ ଜଗନ୍ନାଥ ଡରେ
କେହି ରଖି ନ ପାରିଲେ ମୋତେ ଏହିପୁରେ ।
ଉଦ୍ଧବ ପଚାରେ ତୁହି କଲୁ କେଉଁ ଦୋଷ
କାହିଁକି ତୋଠାରେ କୋପ କଲେ ପୀତବାସ ।
କହଇ ସହସ୍ରାଜିତ ଉଦ୍ଧବ ହୋ ଶୁଣ
ମଣି ଲୋଭେ ଶତଧନୁ ପାଇ ଅବିଗୁଣ ।
ଶକ୍ରାଜିତକୁ ଗୁପତେ ମାରି ମଣି ନେଲା
ଅକ୍ରୁର ହାତରେ ମଣିଦେଇ କେଣେ ଗଲା ।
ଏଣୁ ଗୋବିନ୍ଦ ମୋଠାରେ କରିଛନ୍ତି ରୋଷ
ବୋଇଲେ ତୋ ଯୋଗୁ ଗଲା ଶକ୍ରାଜିତ ନାଶ ।
ମଣି ଲୁଚାଇ ଭାଇକୁ ତୁହି ଲୁଚାଇଲୁ
ଏଡ଼େ ପାପ ବୁଦ୍ଧି ତୁହି ହୃଦରେ ବହିଲୁ ।
ଏହି କ୍ରୋଧ ଘେନି ଚିତ୍ତେ ଦେବ ନାରାୟଣ
ଚକ୍ର ଘେନି ଖୋଜୁଛନ୍ତି ନେବେ ମୋର ପ୍ରାଣ ।
ଏ ସଙ୍କଟୁ ରକ୍ଷାକରି ପାରିବୁକି ମୋତେ
ଏ ବିଷୟେ ନୁହଇ ମୁଁ ଦୋଷୀ କଦାଚିତ୍ତେ ।
ଉଦ୍ଧବ ବୋଇଲା ତୋତେ ଏଥେକେ ରଖିବ
କରିଛନ୍ତି ତୋ ଉପରେ କ୍ରୋଧ ବାସୁଦେବ ।
ଯାର କୋପଫଳେ ସପ୍ତ ବ୍ରହ୍ମାଣ୍ଡ କମ୍ପଇ
ତୋତେ ରଖିବାକୁ ମୋର ସାହସ ବା କାହିଁ ।
ପ୍ରାଣ ଘେନି ଏଥୁ ତୁହି ଯାଅ ଯା ପଳାଇ
ଦ୍ୱାରକାରେ ସମ୍ଭାଳିବା ଲୋକ କେହି ନାହିଁ ।
ଲୁଚାଇ ରଖିବ ତୋତେ କିଏ ଅବା କାହିଁ
ଯେଉଁ ଜଗନ୍ନାଥ ଗର୍ଭେ ବ୍ରହ୍ମାଣ୍ଡ ଅଛଇ ।
ଏକ୍ଷଣି ଏଠାରୁ ବେଗେ କର ତୁ ଗମନ
ଜାଣିଲେ କରିବେ କୋପ ମୋତେ ଜନାର୍ଦ୍ଦନ ।
ଉଦ୍ଧବ ମୁଖରୁ ଶୁଣି ଏ ନିରାଶ ବାଣୀ
ଦ୍ୱାରକାପୁରୁ ବାହାର ହେଲା ବୀରମଣି ।

ସେତେବେଳେ ସାତଘଡ଼ି ରଜନୀ ହୋଇଛି
କେଣିକି ଯିବି ମୁଁ ମନେ ମନେ ଭାଳୁଅଛି ।
ବୋଇଲା ବାରୁଣାବନ୍ତେ ଯିବଇଁ ପଳାଇ
ଯୁଧିଷ୍ଠି ପାଦେ ଶରଣ ପଶିବି ମୁଁ ଯାଇ ।
ବିଚାରି ସହସ୍ରାଜିତ ଧାଏଁ ଅତିବେଗେ
ଖାଲ ଠିକର ସେସବୁ ମଣି ସମଭାଗେ ।
ଦୁଇଘଡ଼ି ଭିତରେ ସେ କେତେବାଟ ଗଲା
ବାରୁଣାବନ୍ତ ଭୁବନ ମଧ୍ୟରେ ମିଳିଲା ।
ଯୁଧିଷ୍ଠିଙ୍କ ସିଂହଦ୍ୱାରେ ହୋଇଲା ପ୍ରବେଶ
ଖରତର ହୋଇ ତାର ବହଇ ନିଃଶ୍ୱାସ ।
ଶରଣ ଶରଣ ବୋଲି ଡାକେ ଉଚ୍ଚସ୍ୱରେ
ଭିତର ପୁରେ ଶୁଣିଲେ ଯୁଧିଷ୍ଠି ଠାକୁରେ ।
ଶରଣ ଶରଣ ବୋଲି ଡାକେ କେଉଁଜନ
ଦେଖ ସହଦେବ ବୋଲି ବୋଲନ୍ତି ରାଜନ ।
ଯୁଧିଷ୍ଠି ଡାକନ୍ତେ ସହଦେବ ଯେ ଶୁଣିଲା
ହସ୍ତେ ବାଡ଼ିଖଣ୍ଡେ ଘେନି ବାହାର ହୋଇଲା ।
ସିଂହଦ୍ୱାରେ ଆସି ଉଚ୍ଚେ ଡାକିଲା କୁମାର
ଶରଣ ଶରଣ ବୋଲି ଡାକେ କେଉଁ ନର ।
ଶୁଣିଣ ସହସ୍ରାଜିତ ମିଳିଲା ଛାମୁରେ
ଚିହ୍ନିଲା ସେ ସହଦେବ ତାକୁ ଅନ୍ଧକାରେ ।
ତାର ହସ୍ତ ଧରି ତାକୁ ଭିତରକୁ ନେଲେ
ଯୁଧିଷ୍ଠିର ଛାମୁରେ ସେ ପ୍ରବେଶ ହୋଇଲେ ।
ବୋଇଲେ ଯେ ସାବଧାନ ହୋଇବା ଗୋସାଇଁ
ଶରଣ ବୋଲି ସହସ୍ରାଜିତ ଫୁକାରଇ ।
ଯୁଧିଷ୍ଠି ଦେଖି ସହସ୍ରାଜିତ ବୀରବର
ବାରମ୍ବାର ତାଙ୍କ ପାଦେ କଲା ନମସ୍କାର ।
ଯୁଧିଷ୍ଠି ବୋଇଲେ ତୁରେ ଉଠ ଉଠ ବାବୁ
ନିର୍ଭୟ ହୋଇଣ ତୁହି କହ ମୋତେ ସବୁ ।
ଉଠିଣ ସହସ୍ରାଜିତ ଯୋଡ଼ି ବେନକର
ବୋଲେ ରଖିପାରିବ କି ଧର୍ମର କୁମର ।
ଯୁଧିଷ୍ଠି ବୋଇଲେ କରୁ ତୁ କାହାକୁ ଭୟ
ପଳାଇ ଆସି ମାଗୁଛୁ ଆମ୍ଭଙ୍କୁ ଅଭୟ ।
ଯୁଧିଷ୍ଠି ଦେବ ଛାମୁରେ ସହସ୍ରାଜିତ କହେ
ସାବଧାନେ ଶୁଣ ତୁମ୍ଭେ କୁନ୍ତୀଙ୍କ ତନୟେ ।
ସ୍ୟମନ୍ତକ ମଣି ହେତୁ ଶକ୍ରାଜିତ ମଲା
ଗତରାତ୍ରେ ଶତଧନୁ ତାହାକୁ ମାଇଲା ।
ତାହା ଶୁଣି ସତ୍ୟଭାମା ବହୁ କ୍ରୋଧ କଲେ
ଶ୍ୱଶୁରଙ୍କ ଛଳହରି ହୃଦୟେ ଧଇଲେ ।
ଶତଧନୁକୁ ଖୋଜନ୍ତି ହରି ଚକ୍ରଧାରୀ
ଖୋଜି କାହିଁ ନ ପାଇଲେ ଦ୍ୱାରକା ନଗରୀ ।

ବୋଲନ୍ତି ସହସ୍ରାଜିତ ତାର ସାନଭାଇ
ଶକ୍ରାଜିତକୁ ମାଇଲା ମଣି ନେବାପାଇଁ ।
ଅକ୍ରୁର ଗୋଚରରେ ମଣି ଶତଧନୁ ଦେଲେ
ମଣି ଦେବାକଥା ହରି କିଛି ନ ଜାଣିଲେ ।
ସହସ୍ରାଜିତ ଅଟଇ ଶତଧନୁ ଭାଇ
ତାହାର ବୁଦ୍ଧିରେ ଶକ୍ରାଜିତ ନାଶଯାଇ ।
ମୋ ଉପରେ ସେହି ଦୋଷ ଦେଇ ନାରାୟଣ
ଚକ୍ରରେ ଅବଶ୍ୟ ମୋତେ କରିବେ ଛେଦନ ।
କାହିଁ ସେ ସହସ୍ରାଜିତ ଖୋଜୁଛନ୍ତି ହରି
ଛାମୁରେ ପଡ଼ିଲେ ଚକ୍ରେ ପକାନ୍ତେଣ ମାରି ।
ଅକ୍ରୁର ଉଦ୍ଧବ ପାଦେ ପଶିଲି ଶରଣ
ସେହି ମୋତେ ରକ୍ଷାକରି ନ ପାରିବେ ଜାଣ ।
ବୋଇଲେ ଏଥୁ ବନସ୍ତେ ପଶଯାଇ ବେଗେ
ରଖିବେ ଅବା ପାଣ୍ଡବେ କହ ତାଙ୍କ ଆଗେ ।
ଅସମ୍ଭାଳେ ଦ୍ୱାରକାରୁ ବାହାର ହେଲଇଁ
ଦୁଇଘଡ଼ି ଭିତରେ ମୁଁ ଏଥେ ଅଇଲଇଁ ।
ସତ୍ୟବାଦୀ ପୁରୁଷ ତୁ ଅଟୁ ହେ ଯୁଧିଷ୍ଠି
ଏ ଘୋର କଷଣୁ ମୋତେ ରଖି ପାରିବୁଟି ।
ବହୁତ ବିକଳେ କହେ ସେ ସହସ୍ରାଜିତ
ଛନ୍ନ ଛନ୍ନ ମନ ତାର ବ୍ୟାକୁଳିତ ଚିତ୍ତ ।
ଯୁଧିଷ୍ଠି ବୋଇଲେ ଶୁଣ ତୁ ସହସ୍ରାଜିତ
ତୋତେ କୋପ କରିଛନ୍ତି ପ୍ରଭୁ ଜଗନ୍ନାଥ ।
ତାଙ୍କ ଦୋରେହାକୁ ଆମ୍ଭେ ରଖିବୁ ବା କାହିଁ
ଜାଣିଲେ କୋପ କରିବେ ମୋତେ ଭାବଗ୍ରାହୀ ।
ଶ୍ରୀକୃଷ୍ଣ କ୍ରୋଧ ଆମ୍ଭର ନୁହଇଟି ଭଲ
ସର୍ବଦା ଶରଣ ଆମ୍ଭେ ତାହାଙ୍କ ପୟର ।
ସମସ୍ତଙ୍କ ଆଶ୍ରୟ ଯେ ସମସ୍ତେ ଅଟନ୍ତି
ପାଣ୍ଡବେ ଶ୍ରୀକୃଷ୍ଣ ଆଶ୍ରେ ସମସ୍ତେ ଜାଣନ୍ତି ।
ତିନିପୁର ମଧ୍ୟେ ଏହି ଶବଦ ଶୁଭଇ
ତାଙ୍କଠାରେ ଅପରାଧ ମୋର ନ ଯୋଗାଇ ।
ଯା ସହସ୍ରାଜିତ ରଖି ନୁହେଁ ମୁଁ ସମର୍ଥ
ଯାହାକୁ କରିଅଛନ୍ତି କ୍ରୋଧ ଜଗନ୍ନାଥ ।
ଶୁଣିଣ ସହସ୍ରାଜିତ କମ୍ପେ ଥର ହର
ଜାଣିଲେ ଚକ୍ରେ ଛେଦିବେ ମୋତେ ଦାମୋଦର ।
କି ବୁଦ୍ଧି କରିବି ବୋଲି ଭାଳଇ ବିକଳେ
କେ ମୋରେ ଶରଣ ଦେବ ଏ ପୃଥିବୀ ତଳେ ।
ତାହାର ବିକଳ ଦେଖି ଧର୍ମଙ୍କ ନନ୍ଦନ
ପଞ୍ଚଭୂତ ଆତ୍ମାରେ ସେ ବିଚାର କରିଣ ।
ଏକାନ୍ତକୁ ଯାଇ ସହଦେବଙ୍କୁ ପୁଚ୍ଛନ୍ତି
ତତକ୍ଷଣେ ମନ୍ତ୍ରୀବର ବରକୁ ଚାହାନ୍ତି ।

କରଯୋଡ଼ି ଜଣାନ୍ତି ସେ ଯୁଧିଷ୍ଠି ଛାମୁର
ମଣିଭଦ୍ରାରେ ଅଛନ୍ତି ଅର୍ଜ୍ଜୁନ ଠାକୁର ।
ତାଙ୍କ ପାଦେ ସେବି ତହିଁ ପଶିବ ଶରଣ
ତେବେ ଏହାକୁ ରଖିବେ ପ୍ରଭୁ ନାରାୟଣ ।
ଗୁପତ ହୋଇ ସେଠାକୁ ଏ ପଳାଇଯାଉ
ଶ୍ରୀହରି ଦୋରେହା ବୋଲି ଅର୍ଜ୍ଜୁନେ ନ କହୁ ।
ଚିହ୍ନା ନ ଦେଇ ଯେବେ ଏ ପଶିବ ଶରଣ
ତେବେ ରକ୍ଷା ହୋଇପାରେ ଏହାର ପରାଣ ।
ରାତ୍ରି ପାହିଲେ ଏହାକୁ ରଖନ୍ତା କେ ନାହିଁ
ଚକ୍ର ପେଶିଣ ଛେଦିବେ ପ୍ରଭୁ ଭାବଗ୍ରାହୀ ।
ସହଦେବ ମୁଖୁ ଶୁଣି ସେ ସହସ୍ରାଜିତ
ବୋଲଇ କେଉଁ ଆଡ଼ରେ ଅଛଇ ପର୍ବତ ।
ସହଦେବ ବୋଲେ ଯାଆ ତୁ କିରାତ ଦେଶେ
ମଣିଭଦ୍ରା ପର୍ବତର ଦକ୍ଷିଣ ପାର୍ଶ୍ୱେ ।
କିରାତ ରୂପରେ ବସିଅଛନ୍ତି ଅର୍ଜ୍ଜୁନ
ସେ ଗିରି ଶିଖରେ ସିଂହ କରଇ ଗର୍ଜ୍ଜନ ।
ସହଦେବ କହନ୍ତେ ସେ ରାତ୍ର ଘଡ଼ିଦଶ
ଶୁଣିଣ ସହସ୍ରାଜିତ ମନରେ ହରଷ ।
ଯୁଧିଷ୍ଠିଙ୍କି ନମସ୍କାର କରିଣ ଚଳଇ
ପବନହୁଁ ବେଗକରି ପହଣ୍ଡ ବଢ଼ାଇ ।
ରାତ୍ର ଅଢ଼ାଇ ପ୍ରହରେ ସେଠାରୁ ବାହାର
ପ୍ରାଣର ବିକଳେ ସେହି ଚାଲେ ଖରତର ।
ବାରୁଣାବନ୍ତ ଯେ ତହୁଁ ଗଲା ଖରହୋଇ
ପଞ୍ଚଭୂତ ଆତ୍ମାରେ ସେ ହରିଙ୍କୁ ଡରଇ ।
ଏହିମତେ ପଞ୍ଚଦଶ ଯୋଜନ ସେ ଗଲା
ଅଗମ୍ୟ ବନସ୍ତ ମଧ୍ୟେ ଯାଇଣ ପଶିଲା ।
ଯାଉଅଛି ବୀର ପୁଣି ପଛକୁ ନ ଚାହିଁ
ସିଂହ ବ୍ୟାଘ୍ର ଭଲ୍ଲୁକଙ୍କୁ ତାର ଭୟ ନାହିଁ ।
ଶୁଣ ଆହେ ମନୁରାଜ ବଦନ୍ତି ଅଗସ୍ତି
ସହସ୍ରାଜିତ ଚରିତ ପୁଚ୍ଛିଲୁ ନୃପତି ।
ଏସନର୍କ ହୋଇ ତୁହୋ ଶୁଣ ମନୁରାୟ
ଶୁଣନ୍ତେ ପାତକ ତୋର ହୋଇଯିବ କ୍ଷୟ ।
ମନୁ ପଚାରନ୍ତି ଦେବ ଶୁଣିମା ଗୋସାଇଁ
ଏଥିର ଉତ୍ତାରେ କିସ ଚରିତ ସେ ହୋଇ ।
ଅଗସ୍ତି ବୋଇଲେ ତୁହୋ ଶୁଣ ନୃପବରେ
ସସ୍ରାଜିତ ପଳାଇଲେ ଅଜ୍ଞାତ ଭାବରେ ।
କରେ ଚକ୍ରଧରି ତାକୁ ଖୋଜେ ଦାମୋଦର
ନ ଦେଖିଲେ ଚିହ୍ନବର୍ଣ୍ଣ ସହସ୍ରାଜିତର ।
ବହୁତ କ୍ରୋଧ କରି ସେ କମଳାର ସାଇଁ
ଶକ୍ରାଜିତ ମୃତଦେହ ଦହନ କରାଇ ।

ଦ୍ୱାଦଶ ଦିବସ ଏହି ମତେ ବହିଗଲା
ଶକ୍ରାଜିତ କ୍ରିୟାବିଧ ସମସ୍ତ ସରିଲା ।
ଶୁଣ ତୁ ହୋ ମନୁରାଜା କହେ ମୁନିବର
ପ୍ରାଣ ବିକଳେ ପଳାଏ ସତ୍ରାଜିତ ବୀର ।
ପଳାଇ ଯାଉଛି ସେହି ପ୍ରାଣର ବିକଳେ
ବନଚର ରୂପ ଧରିଯାଏ ରାତ୍ରକାଳେ ।
ମୃଗୟା କରିଣ ଏକ ଶବର ଆସଇ
ସହସ୍ରାଜିତକୁ ଦେଖି ଦୂରୁ ଓଗାଳଇ ।
ଚୋର କି ତସ୍କର ତୁହି ପଳାଉଛୁ ରାତ୍ରେ
ଜଣାଯାଏ ଡର ଥିଲାପରି ତୋର ଗାତ୍ରେ ।
ସତ୍ରାଜିତ କହେ ମୋରେ ନିରୋଧ ନ କର
ପଞ୍ଚଭୂତ ଆତ୍ମାରେ ମୋ ଭୟ ଯେ ଅପାର ।
ଛାଡ଼ ଛାଡ଼ ପଥ ତୁହି ନ ରହିବା କ୍ଷଣ
ଦଇବ ପୁରୁଷ ମୋତେ ବିପକ୍ଷ ହୋ ପୁଣ ।
ଶବର ବୋଲେ କାହାକୁ ତୁମ୍ଭେ ଭୟ କର
ସତ୍ରାଜିତ ବୋଲେ ମୋର ଜଗନ୍ନାଥ ଡର ।
ବଡ଼ କ୍ରୋଧ ମୋତେ କରିଛନ୍ତି ଭଗବାନ
ଭେଟିଲେ ଚକ୍ରେ ମୋ ଶିର ଛେଦିବେ ବହନ ।
କାହିଁପାଇଁ ଶବର ତୁ ଓଗାଳୁଛୁ ଏଥେ
ରକ୍ଷାକରି ପାରିବୁକି ଏ ଭୟରୁ ମୋତେ ।
ଶବର ବୋଇଲା ସେ ତ ଜଗତ ଗୋସାଇଁ
ତାହାଙ୍କ ଦୋରେ ହାତରେ ରଖନ୍ତାକେ ନାହିଁ ।
ସେ ଅଶେଷ ବ୍ରହ୍ମାଣ୍ଡର ଅଟନ୍ତି ଠାକୁର
ତାଙ୍କୁ କେଉଁ କଥା ଅବା ଅଟେ ଅଗୋଚର ।
ତାଙ୍କଠାରେ ଅପରାଧ କଲୁ ତୁ କିମର୍ଥେ
ସହସ୍ରାଜିତ ବୋଇଲା କହିବିକି ତୋତେ ।
ବାଟ ଛାଡ଼ିଦିଅ ଯିବୁ ଯିବଇଁ ମୁଁ ବେଗେ
ନ ପୁଣ ଚକ୍ର ପଡ଼ଇ ଆସି ଏହି ଲାଗେ ।
ଭୟରେ ଶରୀର ତାର କମ୍ପେ ଥରହର
ବାତର ଆଘାତେ ଯେହ୍ନେ ପତ୍ର ଖରତର ।
ସହସ୍ରାଜିତର ଭୟ ଶବର ଜାଣିଲା
ଜଗନ୍ନାଥଙ୍କ ଭୟରେ ଆଡ଼ ହୋଇଗଲା ।
ସେଠାରୁ ସେହି ମନର ଉଦବେଗେ ଗଲା
କୃତକେଶୀ ରାଜାଙ୍କୁ ସେ ବାଟରେ ଭେଟିଲା ।
ବୋଇଲା ସହସ୍ରାଜିତ ଶୁଣ ନରପତେ
ଶରଣ ସମ୍ଭାଳି ରଖି ପାରିବୁକି ମୋତେ ।
ଆବର ବୋଇଲା ରାଜା ଅଟ ଭାଗ୍ୟବାନ
ଦୟାକରି ରଖି ପାରିବୁକି ମୋ ଜୀବନ ।
କୃତକେଶୀ ବୋଇଲା ତୁ କାହାର ଭୟରେ
ଶରଣ ପଶୁଛୁ ଆସି ଏ ରାତ୍ରେ ମୋଠାରେ ।
କେବଣ ଦେଶରେ ତୁହି କରିଥିଲୁ ବାସ
କାହାର କି ଦୋଷ କଲୁ କଲା ସେହି ରୋଷ ।
କହଇ ସହସ୍ରାଜିତ ଦ୍ୱାରକା ମୋ ଘର
ଶକ୍ରାଜିତ ଜଗନ୍ନାଥ ଦେବର ଶ୍ୱଶୁର ।
ସତ୍ୟଭାମା ଦେବୀଙ୍କର ଅଟଇ ସେ ପିତା
ଅନାଧୃଷ୍ଟ ଶତଧନୁ ତାହାର ନିହନ୍ତା ।
ଶକ୍ରାଜିତକୁ ଯେ କୂଟେ ଶତଧନୁ ମାରି
ସ୍ୟମନ୍ତକ ନାମେ ମଣି ନେଲା ଚୋରିକରି ।
ଅକ୍ରୁର ହସ୍ତରେ ଦେଇଗଲା ସେ ପଳାଇ
ସହସ୍ରାଜିତ ମୋ ନାମ ମୁଁ ତାହାର ଭାଇ ।
ଗୋବିନ୍ଦ ମୋଠାରେ ରୋଷ କଲେ ବିନାଦୋଷେ
ବୋଇଲେ ଶ୍ୱଶୁର ମଲା ତୋର ପରାମର୍ଶେ ।
ଚକ୍ରେ ଛେଦିବଇଁ କାଲି ମୁଁ ତାହାର ଶିର
ତେଣୁ ଭୟେ ପଳାଉଛି ଆହେ ନୃପବର ।
ଉଦ୍ଧବ ଅକ୍ରୁରକୁ ମୁଁ କହିଲଇଁ ଯାଇଁ
ଭୟରୁ ମୋତେ ସମ୍ଭାଳି ରଖିବାର ପାଇଁ ।
ଶ୍ରୀହରିଙ୍କ ଡରେ ବେନିଜନେ ନାସ୍ତି କଲେ
ଦ୍ୱାରକାରୁ ପଳାଇଲି ପ୍ରାଣର ବିକଳେ ।
ଯୁଧିଷ୍ଠିଙ୍କ ପାଦେ ଯାଇ ପଶିଲି ଶରଣ
ସେହି ନାସ୍ତି କଲେ ମୋତେ ଶ୍ରୀହରି ଭୟେଣ ।
ତୁ ଯେବେ ସମ୍ଭାଳି ରଖିପାରୁ ରାଜାକହ
ନୋହିଲେ ବନସ୍ତେ ଲୁଚି ରଖିବଇଁ ଦେହ ।
ସତ୍ରାଜିତ ବାକ୍ୟେ କୃତକେଶୀ ଯେ ହସିଲେ
ପଞ୍ଚଭୂତ ଆତ୍ମାରେ ଶ୍ରୀହରିଙ୍କି ଡରିଲେ ।
କୃତକେଶୀ ବୋଲେ ଶୁଣ ହେ ସହସ୍ରାଜିତ
ତୋତେ ରଖିବାକୁ ମୁହିଁ ନୁହଇ ସମର୍ଥ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ରଖନ୍ତା କେ ନାହିଁ
ଯେଣୁ ସୁଦର୍ଶନ ଚକ୍ର ତ୍ରିପୁରେ ଭ୍ରମଇ ।
ଦୀନଜନ ବାନ୍ଧବ ସେ ଅନାଥର ନାଥ
ଦୁଃଖିଜନଙ୍କ ନିମନ୍ତେ ଶଙ୍ଖଚକ୍ର ହସ୍ତ ।
ଆରତ ଭଞ୍ଜନ ନାଥ ନାମ ଜନାର୍ଦ୍ଦନ
ଆରତ ଜନ ଡାକନ୍ତେ ରଖନ୍ତି ତକ୍ଷଣ ।
ଅଛିଦ୍ର ପୁରୁଷ ତାର ଛିଦ୍ରଛାଦ୍ର ନାହିଁ
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡେ ଯା ତେଜ ବିକାଶଇ ।
ନାହିଁ ରୂପରେଖ ପୁଣି ସବୁଠାରେ ଥାଇ
ଆତ୍ମାରୂପେ ସର୍ବଜନ ହୃଦେ ପ୍ରକାଶଇ ।
ଦଶିପୋକ ଶରୀରରେ ଯେତେକ ବିସ୍ତାର
ଶଙ୍ଖଚକ୍ର ଚତୁର୍ଭୁଜେ ବିଜେ ଚକ୍ରଧର ।
ବେଦ ବେଦାନ୍ତେ ଯାର ନାମକୁ ବଖାଣି
ମୁନିମାନେ ନିରନ୍ତର ଯାର ନାମ ଗୁଣି ।

ଶୂଦ୍ରମୁନି ମୁଁ ଶାରଳା ଦାସ ଅରକ୍ଷିତ
ପ୍ରତିଦିନ ଭଜୁଥାଇ ପ୍ରଭୁ ଜଗନ୍ନାଥ ।
ସହସ୍ରାଜିତକୁ କୃତକେଶୀ ଯେ କହଇ
ଶ୍ରୀହରିଙ୍କୁ କେଉଁସ୍ଥାନ ଅଜ୍ଞାତ ଅଟଇ ।
ସେହି ପ୍ରଭୁ ଶତ୍ରୁ ତୁ ମୁଁ ରଖି ନ ପାରଇ
ପଳାଅ ସହସ୍ରାଜିତ କ୍ଷଣେ ହେଁ ନ ରହି ।
ବିକଳେ ସହସ୍ରାଜିତ ପଳାଇଣ ଗଲା
କୃତକେଶୀ ତାକୁ ଯହୁଁ ରଖି ନ ପାରିଲା ।
ପବନହୁଁ ବେଗରେ ସେ ଧାଏଁ ଖରତର
ଖାଲ ଢିଙ୍କିର ତାହାକୁ ନୁହଇ ଗୋଚର ।
ପଞ୍ଚଭୂତେ ଜଗନ୍ନାଥେ ସେହୁ ଭୟକରି
ପଳାଇଯାଏ ପଛକୁ ସେ ମୁଖ ନ କରି ।
ଏମନ୍ତେ ଯେ ଏକାଦଶ କ୍ରୋଶ ବହିଗଲା
ବିଷ୍ଣୁକେଶରୀ ନଗରୀ ଭିତରେ ପଶିଲା ।
ସେ ଦେଶର ରାଜା ନାମ ବିଷ୍ଣୁକର ଦାସ
ଆସଇ ଅନ୍ଧାରି ବିଜେ କରି ନରଈଶ ।
ସହସ୍ରାଜିତ ଯିବାର ଦେଖଇ ନୟନେ
ଧାଇଁଯାଇ ତାକୁ ବାଟ ଓଗାଳି ବହନେ ।
ବୋଇଲା କାହିଁରେ ଚୋର ଯାଉଛୁ କାହିଁକି
କାହାର ଭୟରେ ତୁହି ପଳାଉ ଏକାକୀ ।
ବୋଇଲେ ସହସ୍ରାଜିତ ଶୁଣ ମନୁରାୟ
ମରଣରୁ ପାରିବୁକି ରଖି ମୋର କାୟ ।
ପ୍ରାଣର ଭୟରେ ମୁହିଁ ଯାଉଛି ପଳାଇ
ରଖିପାରିବୁକି ତୋହବଳେ ନରସାଇଁ ।
ଏହା ଶୁଣି ବିଷ୍ଣୁ କର କହଇ ଗୁପତେ
କେଉଁ ଶତ୍ରୁ ଗୋଡ଼ାଉଛି କହ ମୋ ଅଗ୍ରତେ ।
ତାହାକୁ ନାଶି ତୋହର ପ୍ରାଣ ରଖିବଇଁ
ଏଥକୁ ତୁ କିଛି ଭୀତ ନ କର ହୋ ଭାଇ ।
ଏଥିରେ ସହସ୍ରାଜିତ ଭରସା ପାଇଲା
ନିଶବଦ ହୋଇ ତହିଁ ଦଣ୍ଡକେ ରହିଲା ।
କ୍ଷଣେ ତୁନିହୋଇ ପୁଣି କହଇ ବଚନ
ଶତ୍ରୁ ବୋଲି ଯାହା ମୋତେ ପଚାରୁ ରାଜନ ।
ଏଥିର ଚରିତ କହେ ଶୁଣ ନରସାଇଁ
କୃଷ୍ଣବଂଶର ଜଣେ ମୁଁ ଯାଦବ ଅଟଇ ।
ମଥୁରା ନଗର ରାଜା ଜାଣ ଉଗ୍ରସେନ
ଯାଦବ ଆମ୍ଭେ ତା ପାଦେ ଖଟୁ ପ୍ରତିଦିନ ।
ଦ୍ୱାରକାରେ ରହିଲୁ ଯେ ଜରାସନ୍ଧ ଡରେ
ସୁଦର୍ଶନ ଚକ୍ର ତହିଁ ଭ୍ରମେ ନିରନ୍ତରେ ।
ମାଛି ପଡ଼ିଲେଟି ଯହିଁ ନବଖଣ୍ଡ ହୁଏ
ଶତ୍ରୁ ହୋଇ ସେ ନଗରେ ପଶିବ ବା କିଏ ।

ଶତଧନୁ ନାମେ ଜାଣ ଏକଇ ଯାଦବ
ମଣିର ନିମନ୍ତେ ନେଲା ଶକ୍ରାଜିତ ଜୀବ ।
ଜଗନ୍ନାଥଙ୍କ ଶ୍ୱଶୁର ଅଟେ ଶକ୍ରାଜିତ
ସତ୍ୟଭାମା ଦେବୀଙ୍କର ଅଟଇ ସେ ତାତ ।
ଏହାଶୁଣି ନାରାୟଣ ବଡ଼ କୋପ କଲେ
ଶତଧନୁକୁ ମାରିବା ଉପାୟ ପାଞ୍ଚିଲେ ।
ଗତରାତ୍ରେ ଶତଧନୁ ଉପାୟ ରଚିଲା
ସ୍ୟମନ୍ତକ ମଣିନେଇ ଅକ୍ରୁରକୁ ଦେଲା ।
ମଣିଦେଇ ସେଠାବରୁ ଗଲାକ ପଳାଇ
ପୁରଯାକ ଖୋଜୁଛନ୍ତି କମଳାର ସାଇଁ ।
ବୋଇଲେ ସହସ୍ରାଜିତ ବିଚାରେ ଏ ମଲା
ଏଣୁ ନରହରି ମୋହଠାରେ କୋପ କଲା ।
ଚକ୍ରଚାଳି ଖୋଜୁଛନ୍ତି ଦ୍ୱାରିକା ନଗରୀ
ଦେଖିଥିଲେ ମୋତେ ବଧ କରିଥାନ୍ତେ ହରି ।
ପ୍ରାଣଘେନି ସେଠାବରୁ ଆସିଛି ପଳାଇ
କେବଣଠାରେ ପଶି ମୁଁ ପ୍ରାଣ ରଖିବଇଁ ।
କେହି ମୋହର ଶରଣ ରଖି ନ ପାରିଲେ
ସୁଦରଶନ ଚକ୍ରକୁ ସର୍ବେ ଭୟ କଲେ ।
ବସନ୍ତି ଭିତରେ ମୁହିଁ ଲୁଚିବଇଁ ଯାଇ
ଯେଉଁଠାରେ ଶ୍ରୀହରିଙ୍କ ତେଜଲାଗେ ନାହିଁ ।
ଏହାଶୁଣି ବିଷ୍ଣୁକର ହସେ ଧୀର ଧୀର
ବୋଇଲେ ଅପୂର୍ବ କଥା କହିଲୁ ତୁ ବୀର ।
ଯେଉଁ ଜଗନ୍ନାଥ ତିନିପୁର ଅଧିକାରୀ
ଜଳେସ୍ଥଳେ ସର୍ବଭୂତେ ଅଛନ୍ତି ଯେ ପୂରି ।
ସପତ ବ୍ରହ୍ମାଣ୍ଡ ଅଛି ଗର୍ଭରେ ଯାହାର
ତୁହି ଲୁଚିଲେ କି ତାଙ୍କୁ ହେବ ଅଗୋଚର ।
ତାହାର ବିପକ୍ଷ ଯେଣୁ ତୁହି ହୋଇଅଛୁ
ତୋତେ କେ ରଖିବ ଯେଣୁ ଶରଣ ମାଗୁଛୁ ।
କେଉଁସ୍ଥାନ ତାହାର ବା ଅଟଇ ଅଦୃଶ
ଜାଣିଲେ କରିବ ନିଶ୍ଚେ ମୋର ପ୍ରାଣନାଶ ।
ତୁହି ନାଶଯିବୁ ପୁଣି ମୁହିଁ ହେବି ହତ
ତୋତେ ରଖିପାରିବାକୁ ନୁହଇ ସମର୍ଥ ।
ଭକତ ବତ୍ସଳ ସେହୁ କମଳା ରମଣ
ତାଙ୍କଠାରେ ଦୋଷୀ ହୋଇ ହରାଇବି ପ୍ରାଣ ।
ଏମନ୍ତ ବିଚାରି ଚିତ୍ତେ ବିଷ୍ଣୁକର ରାୟ
ଶ୍ରୀଜଗନ୍ନାଥଙ୍କୁ କଲା ମନେ ବଡ଼ ଭୟ ।
ବିଷ୍ଣୁ କର ରାଜାର ଏ ନିଷ୍ଠୁର ବଚନ
ଶୁଣିଣ ସହସ୍ରାଜିତ ମନେ ଛନ୍ନ ଛନ ।
ପଛକୁ ନ ଚାହିଁ ତହୁଁ ବେଗେ ପଳାଇଲା
ଭୟେ ଘୋର ଅରଣ୍ୟରେ ଯାଇଣ ପଶିଲା ।

ଯହିଁ ସୂର୍ଯ୍ୟ ଚନ୍ଦ୍ରଙ୍କର ନାହି ଆତ ଯାତ
ସେହି ବନସ୍ତେ ମିଳିଲା ସେ ସହସ୍ରାଜିତ ।
ତହିଁ ସେ ଚଉଦିଗକୁ ଚାହିଁଲା ନିରେଖି
ପଣ୍ଡୁର ନନ୍ଦନକୁ ମୁଁ କେଉଁଠାରେ ଦେଖି ।
ଯେଣିକି ଚାହେଁ ସେ ତାକୁ ଦିଶେ ଚକ୍ରମୟେ
ଚତୁର୍ଦ୍ଦିଗେ ଚାହିଁ ମନ ଛନ୍ନ ଛନ୍ନ ହୋଏ ।
ମନ ଉଦବେଗରେ ସେ ନ ପାରଇ ରହି
ପୁଣି ପାଞ୍ଚକ୍ରୋଶ ପଥ ଗଲା ସେହି ବାହି ।
ମଣିଭଦ୍ରା ପରବତ ନିକଟେ ମିଳିଲା
ଏହି ସେ ପର୍ବତ ବୋଲି ମନେ ବିଚାରିଲା ।
ଯେତେ ମତେ କହିଥିଲା ମନ୍ତ୍ରୀ ଚୂଡ଼ାମଣି
ଜାଣିଲା ସର୍ବ ଶକୁନି ସେହି-ପରିମାଣି ।
ପର୍ବତ ଗୋଟିଏ ଦିଶଇ ଧବଳମୟ
ରାତ୍ର ଦିଶୁଅଛି ତହିଁ ଦିବସ ପରାୟ ।
ଆବର ଅଷ୍ଟ ରତନ ମଣି ବିରାଜନ୍ତି
ନାନାବର୍ଣ୍ଣ ପକ୍ଷୀଗଣ କ୍ରୀଡ଼ା କରୁଥାନ୍ତି ।
ଶାରୀ ଶୁକ କୋକିଳଙ୍କ ରାବ ଘନ ଘନ
ଅବସନ୍ତରେ ବସନ୍ତ ବହେ ଅବିଚ୍ଛନ୍ନ ।
ଛୁରୀଅନା ନାଗେଶ୍ୱର ମଲ୍ଲୀ ଯାଈ ଯୂଈ
ଅଗୁରୁ ଚନ୍ଦନ ବୃକ୍ଷ ପନ୍ତି ପନ୍ତି ଥାଇ ।
ପର୍ବତେ ସିଂହ ଶାର୍ଦ୍ଦୁଳ ହସ୍ତୀ ପଲ ପଲ
ଗଣ୍ଡା ଗୟଳ ବୁଲନ୍ତି ହୋଇ ମାଳ ମାଳ ।
ଶ୍ୱେତ ନକୁଳମାନ ଯେ ଯୋଡ଼ି ଯୋଡ଼ି ହୋଇ
ସେ ପରବତ ଉପରେ ସୁଖେଛନ୍ତି ଶୋଇ ।
ରାବ ଦିଅନ୍ତି ମୟୂରମାନେ ଘନ ଘନ
ଗଗନେ ଉଦିତ ହେବା ଦେଖି ମେଘମାନ ।
ଶଶା ମୂଷା କାହିଁ ଅବା କରୁଛନ୍ତି ରୋଳ
ଖୁରାଣ୍ଟ ଯୁଆଦମାନେ ଛନ୍ତି ପଲ ପଲ ।
ପୁଷ୍ପରେ ଭ୍ରମରଗଣ କରୁଛନ୍ତି କେଳି
ଚୂଥ ଡାଳରେ କୋକିଳ କୁହୁରବ କରି ।
ରକ୍ଷ କପିପଲ କାହିଁ ବୃକ୍ଷେ ବସିଛନ୍ତି
ନାନା ପତ୍ର ଫଳମୂଳ ସୁଖେଣ ଭକ୍ଷନ୍ତି ।
ତହିଁ ଆମ୍ବ ପଣସ ଯେ ପାଚିଣ ଝଡ଼ନ୍ତି
ଯେଣୁ ମନୁଷ୍ୟ ନାହାନ୍ତି ତା ଜୀବେ ଭକ୍ଷନ୍ତି ।
ଏମାନ ଦେଖି ସହସ୍ରାଜିତ ବିଚାରିଲା
ପରବତର ଉତ୍ତର ଭାଗକୁ ଚାହିଁଲା ।
ବିଚାରେ କେବଣଠାରେ ଅଛନ୍ତି ଅର୍ଜ୍ଜୁନ
ଶିରରେ ମୟୁର ଝାଲ କିରାତ ବେଶେଣ ।
କଣ୍ଟା ବାଉଁଶ ନିର୍ମିତ ଧନୁ କରେ ଧରି
ପଇତା ଛନ୍ଦେ ଗାଣ୍ଡିବ ଧନୁ ଗୋଟି ଭରି ।

କାହିଁ ରହିଅଛି ସେହି ପାଣ୍ଡବ ଅର୍ଜ୍ଜୁନ
ଶରଣ ପଶିଲେ ମୋର ରଖିବ ଜୀବନ ।
ବୀର ମୂର୍ତ୍ତି ଧରି ପାର୍ଥ ଊର୍ଦ୍ଧ୍ୱ ମୁଖହୋଇ
ବସିଅଛନ୍ତି ପର୍ବତେ ନିଃଶଙ୍କ ସେ ହୋଇ ।
ଶବର ପାଶେ ହୋଇଛି ସେ ସହସ୍ରାଜିତ
ହୃଦପଦ୍ମ ମଧ୍ୟେ ସେହି ବାଣ୍ଛଇ କଥାନ୍ତ ।
ପରବତ ତଳେ ଥାଇ ଡାକଇ ଉଚ୍ଚରେ
କେବଣ ମହାତ୍ମା ଅଛ ପର୍ବତ ଉପରେ ।
ଶରଣ ରଖ ବୋଲିଣ ଯହୁଁ ସେ ଡାକଇ
ପର୍ବତର ଶିଖେ ଥାଇ ଅର୍ଜ୍ଜୁନ ଶୁଣଇ ।
ବେଳଚାରି ଡାକିଲାକ ସେ ସହସ୍ରାଜିତ
ଶବଦକୁ ଲୟ କଲା ପଣ୍ଡୁରାଜା ସୁତ ।
ବୋଇଲା ଶରଣ ବୋଲି ଡାକୁଅଛକାହୁଁ
ମୋହର ଛାମୁରେ ଆସି ଉଭା କିମ୍ପା ନୋହୁ ।
ଶୁଣିଣ ସହସ୍ରାଜିତ ଭରସା ପାଇଲା
ପର୍ବତର ଉପରକୁ ତୁରିତେ ଉଠିଲା ।
ଶବର ରୂପ ଧରିଛି ସେ ସହସ୍ରାଜିତ
ଚିହ୍ନି ନ ପାରିଲା ତେଣୁ ତାକୁ ବୀରପାର୍ଥ ।
ଶ୍ରୀହରିଙ୍କ ଶତ୍ରୁ ବୋଲି ପାର୍ଥ ନ ଜାଣନ୍ତି
ବନର ଶବର ପ୍ରାୟ ତାକୁ ମଣିଛନ୍ତି ।
ଆସ ଆସ ବୋଲି ଯହୁଁ ଡାକିଲା ବିବସ୍ତ୍ର
କରଯୋଡ଼ି ବୋଲେ ରଖ ରଖ କୁନ୍ତୀବସ୍ତ୍ର ।
ଅର୍ଜ୍ଜୁନର ଚରଣରେ ନମଇଁ ସେ ପୁଣି
ତୋ ପାଦେ ଶରଣ ଗଲି ରଖ ବୀରମଣି ।
ଉଠ ଉଠ ବୋଲି ତାକୁ ଅର୍ଜ୍ଜୁନ ଟୋଳିଲେ
ଆଶ୍ୱାସନା କରି ନେଇ ପାଖେ ବସାଇଲେ ।
ଶରଣ ପଞ୍ଜର ବାନା ଅଟଇ ଯାହାର
ରଖିଲେ ପ୍ରତିଜ୍ଞା କରି ତାକୁ ବୀରବର ।
ଅନ୍ଧାର ରାତିରେ ପାର୍ଥ ବାରି ନ ପାରିଲେ
କିରାତ ପ୍ରାୟ ସେ ମଣି ଶରଣ ରଖିଲେ ।
ପଚାରିଲେ ଅର୍ଜ୍ଜୁନ ତୁ କାହାର ଭୟରେ
ଶରଣ ପଶିଲୁ ଆସି ମୋହର ପୟରେ ।
ନିର୍ଭୟରେ ସ୍ଥିରହୋଇ ରହ ତୁହି ଏଥେ
ପାଇଲୁଣି ତୁ ବହୁତ କଷ୍ଟ ବନ ମଧ୍ୟେ ।
ରଜନୀ [illegible]ହିଲେ ଭଲମନ୍ଦ ବିଚାରିବା
କଥାର ଯେ ସତ୍ୟା ସତ୍ୟ ପଚାରି ବୁଝିବା ।
ଜଗନ୍ନାଥ ପ୍ରଭୁଙ୍କୁ ସେ ମନରେ ସୁମରି
ରଖିଲେ ପାଖରେ ତାକୁ ଅତି ଯତ୍ନ କରି ।
ନିର୍ଭୟ [illegible]ଣେ ତହିଁ ରହେ ସସ୍ରାଜିତ
ପଞ୍ଚଭୂତେ ଭୟକରି ପ୍ରଭୁ ଜଗନ୍ନାଥ ।

ଯେଣୁ ଦ୍ୱିତୀ ନାରାୟଣ ଅଟେ ଫାଲଗୁନି
ସହସ୍ରାଜିତ ସପକ୍ଷ ହେଲେ ବୀରମଣି ।
ଶୁଣ ଆହେ ମନୁ ରାଜା ବଦନ୍ତି ଅଗସ୍ତି
ସହସ୍ରାଜିତ ଶରଣ ପଶିଲା ସେ ରାତି ।
ଏକ ମନ ହୋଇ ତାହା ଶୁଣ ମହାରାୟ
ପାପଭାର ତୋ ଦେହରୁ ହୋଇଯିବ କ୍ଷୟ ।
ମନୁ ପଚାରନ୍ତି ଧୀରେ ଶୁଣିମା ଗୋସାଇଁ
ଏଥିଉତ୍ତାରୁ କି କଲେ ପ୍ରଭୁ ଯଦୁସାଇଁ ।
ଅଗସ୍ତି ବୋଲନ୍ତି ଶୁଣ ଆହେ ନୃପବର
ଦ୍ୱାରକାପୁରରେ ଚକ୍ରଧରି ଚକ୍ରଧର ।
ଖୋଜିଣ ସହସ୍ରାଜିତ ଚିହ୍ନି ନ ପାରିଲେ
ଦଶଦିନେ ଶ୍ୱଶୁରଙ୍କ କ୍ରିୟା ଶେଷ କଲେ ।
ପଳାଇବା କଥା ହରି ନ ପାରିଲେ ଜାଣି
ଅକ୍ରୁର ବୋଲେ ନିର୍ଦ୍ଦୋଷ ଅଟଇ ସେ ପ୍ରାଣୀ ।
ଅକାରଣେ କୋପ ପ୍ରଭୁ ତାଠାରେ ନ କର
ଅକ୍ରୁର ବଚନେ କୋପ ତେଜିଲେ ଶ୍ରୀଧର ।
ଶବର ବେଶେ ସହସ୍ରାଜିତ ଯେ ରହିଲା
ଅର୍ଜ୍ଜୁନର ପାଖେ ଦଶରାତ୍ର ବହିଗଲା ।
ଦିନେ ସେ ଅର୍ଜ୍ଜୁନ ଡାକି ବୋଲେ ହେ ଶବର
କାହିଁ ତୋର ଘର ତୁହି କାହାର କୁମର ।
କାହାର ଭୟରେ ତୁହି ପଶିଲୁ ଶରଣ
କାହରେ ତୁ ଦୋଷୀ ହେଲୁ କହ ତା କାରଣ ।
ବୋଲଇ ସହସ୍ରାଜିତ ଯୋଡ଼ି ବେନିକର
ମୋ ନାମ ସହସ୍ରାଜିତ ଦ୍ୱାରକାରେ ଘର ।
ବିନା ଦୋଷେ କୋପ ମୋତେ କଲେ ନରହରି
ଅନାଧୃଷ୍ଟ ଶତଧନୁ ଭାଇ ଯେ ମୋହରି ।
ଶକ୍ରାଜିତକୁ କପଟେ ମାରି ପକାଇଲେ
ସ୍ୟମନ୍ତକ ମଣି ତାଙ୍କ ଘରୁ ଚୋରିକଲେ ।
ଜାଣି ତାହା ଚକ୍ରଧର ମହାକୋପ କଲେ
ଅନାଧୃଷ୍ଟକୁ କ୍ରୋଧରେ ମାରି ପକାଇଲେ ।
ମଣି ଘେନି ଶତଧନୁ ତହୁଁ ପଳାଇଲା
ଅକ୍ରୁର ହସ୍ତରେ ମଣି ଦେଇ ସେ ଲୁଚିଲା ।
ସହସ୍ରାଜିତ ପଚାରେ ହେଲା ଏତେ କୃତ୍ୟ
ଏମନ୍ତ କହିଣ କୋପ କଲେ ଜଗନ୍ନାଥ ।
ବୋଇଲେ ଚକ୍ରେ ଛେଦିବି କାଲି ତାର ଶିର
ତେଣୁ ଭୟେ ପଳାଇ ମୁଁ ଅଇଲି ହେ ବୀର ।
ଅର୍ଜ୍ଜୁନ ବୋଇଲେ ତୁହି ନୋହୁ ଏଥେ ଦୋଷୀ
ତେଣୁ ନ ମାଇଲେ ପ୍ରଭୁ ତୋତେ ଚକ୍ରପେଶି ।
ଦଶଦିନ ହେଲା ତୁହି ରହିଲୁଣି ଏଥ
କୋପ ଯେବେ କରିଥାନ୍ତେ ପ୍ରଭୁ ଜଗନ୍ନାଥ ।
ଅବଶ୍ୟ ଚକ୍ରେ ତୋହର ଛେଦିଥାନ୍ତେ ଶିର
କାହିଁ ଲୁଚି ରହିଥାନ୍ତୁ ବ୍ରହ୍ମାଣ୍ଡ ଭିତର ।
ଖୋଜି ଖୋଜି ଚକ୍ର ତୋତେ ପକାନ୍ତାଣି ମାରି
କେହି ନ ରଖନ୍ତେ ତୋତେ ସେ ଚକ୍ରକୁ ଡରି ।
ଏବେ ତୁହି ଦ୍ୱାରକାକୁ ଯାଅ ନିର୍ଭୟରେ
ସହସ୍ରାଜିତ ପ୍ରଣମି ଅର୍ଜ୍ଜୁନ ପୟରେ ।
ଦ୍ୱାରକାପୁରେ ପ୍ରଣମି ନିଶ୍ଚିନ୍ତରେ ଯାଇ
ଲୋକେ କହିଲେ ତୋଠାରେ ଆଉ କୋପ ନାହିଁ ।
ଗୋବିନ୍ଦ ଲୀଳା ଚରିତ ଏ ଅମୃତ ବାଣୀ
ସନ୍ତୋଷ ମନେ ଶ୍ରବଣ କର ସଚ୍ଛପ୍ରାଣୀ ।
ତୁହି ଯେଣୁ ବିଜ୍ଞବର ଅଟୁ ହେ ରାଜନ
ତେଣୁ ତୁ ପଚାରିପାରୁ ହରି କଥାମାନ ।
ବନ୍ଦଇ ସେ ନାରାୟଣ କମଳାର ପତି
ସର୍ବଜନଙ୍କର ହୃଦେ ପ୍ରଭୁ ତୋର ସ୍ଥିତି ।
ସଂସାର ଜନଙ୍କୁ ପ୍ରଭୁ ନିସ୍ତାରିବା ପାଇଁ
ମାନବ ଶରୀରେ ମର୍ତ୍ତ୍ୟପୁରେ ଭାବଗ୍ରାହୀ ।
ମତ୍ସ୍ୟ କଚ୍ଛପ ବରାହ ତୁ ନରକେଶରୀ
ବାମନ ପରଶୁରାମ ରାମ ରୂପ ହରି ।
ବଉଦ୍ଧ କଳକୀ ଏହି ଦଶ ଅବତାର
ଅସୁରଙ୍କ ନିବାରଣେ ଏତେ ରୂପ ତୋର ।
ବଳଭଦ୍ର ଜଗନ୍ନାଥ ଭଦ୍ରା ସୁଦର୍ଶନ
ଶ୍ରୀନୀଳ କନ୍ଦରେ ବିଜେ ଚତୁର୍ଦ୍ଧା ରୂପେଣ ।
ଶ୍ରୀବିମ୍ବ ଅଧରେ ପ୍ରଭୁ ମନ୍ଦ ମନ୍ଦ ହସି
ଶରଣ ଯାଚୁ ତୁ ଭୁଜ ଟେକି ବ୍ରହ୍ମରାଶି ।
ତୁମ୍ଭର ମହିମା ପ୍ରଭୁ ତୁମ୍ଭଙ୍କୁ ଗୋଚର
ମୋତେ କାହୁଁ ଗୋଚରତା ହେବ ଦାମୋଦର ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ଦୟା କରିଅଛ ମୋତେ ଦେବ ଶିରୀବତ୍ସି ।
ତୋହର ଶରଣ ବିନୁ ନ ଜାଣଇ ଆନ
ଏ ଭବ ସାଗରୁ ପାରିକର ଭଗବାନ ।
ଶ୍ରୀ ଜଗନ୍ନାଥଙ୍କ ଶ୍ରୀଚରଣେ ଯେ ଦଇନୀ
କରୁଅଛି ମୁଁ ଶାରଳା ଦାସ ଶୂଦ୍ରମୁନି ।

—o—

## ଶତଧନୁ ଶରଣ

ଅଗସ୍ତି କହନ୍ତେ ମନୁରାୟ ଯେ ଉଠିଲା
ମୁନିଙ୍କ ଚରଣ ତଳେ ନମସ୍କାର କଲା ।
ବିନୟଭାବେ ବୋଲଇ ଏମନ୍ତ ବଚନ
ତଦୁତ୍ତାରେ ବନବାସେ କି କଲେ ଅର୍ଜ୍ଜୁନ ।
ଆବର କଥାଏ ମୁନି ପଚାରୁଛି ମୁହିଁ
ଶକ୍ରାଜିତ ମାରି ଶତଧନୁ ଯେ ପଳାଇ ।

କେବଣ ପ୍ରକାରେ ସେହି ରଖିଲା ଜୀବନ
ଯାହାର ବିପକ୍ଷ ହେଲେ ପ୍ରଭୁ ଭଗବାନ ।
ଏହାଶୁଣି ମୁନିବର ଅଳପ ହସିଲେ
ବହୁତ ପ୍ରଶଂସା ପୁଣି ରାଜାଙ୍କୁ ସେ କଲେ ।
ବଦନ୍ତି ଅଗସ୍ତି ଶୁଣ ମନୁ ମହାତମା
ଯୁଗ ଅନ୍ତଃକାଳକୁ ତୁ ଅଟୁ ନିଶ୍ଚେ ବ୍ରହ୍ମା ।
ଆବର କଉତୁକ ତୁ ଶୁଣ ମନୁରାୟ
କୃଷ୍ଣର ତୁଲେ ବିବାଦି ହେଲା ଧନଞ୍ଜୟ ।
ମନୁ ବୋଇଲେ ତ ବଡ଼ ଦୁର୍ଲ୍ଲଭ ଏକଥା
କହିବା ହରି ଅର୍ଜ୍ଜୁନ ଯୁଦ୍ଧର ବାରତା ।
ଖାଣ୍ଡବ ବନ ଦହିଲା ଅଗ୍ନିଙ୍କ ନିମନ୍ତେ
ଅନେକ ଶର ଅନଳ ଦେଲେ ତୋଷଚିତ୍ତେ ।
ସଦାନନ୍ଦକୁ ଜିଣିଲା କିରାତ ରୂପରେ
ପାଶୁପତ ଶର ଲାଭ କଲା ହର ବରେ ।
ପାର୍ବତୀ ଦେଲେ ଅକ୍ଷୟ ତୁଣୀର ଯେ ବେନି
ଅଳପେ ଅଭକ୍ତେ ଏହା ପାଇଲା ଫାଲଗୁନି ।
ଯୁଦ୍ଧରେ ଇନ୍ଦ୍ରଙ୍କୁ ଜିଣି ପାଇଲା ସେ ବର
କେମନ୍ତେ ଶ୍ରୀହରି ସଙ୍ଗେ ହୋଇଲା ସମର ।
ଶୁଣ ଆହେ ମହାତମା ପଚାରିଲ ଯାହା
ଅଗସ୍ତି ବୋଇଲେ ଆମ୍ଭେ କହିବାନା ତାହା ।
ଦୁର୍ଯ୍ୟୋଧନ ରାଜା ପଞ୍ଚବିଂଶ ଅଙ୍କଗ୍ରାହୀ
ଏ ସମୟରେ ଏମନ୍ତ ଯୋଗ ସିନା ହୋଇ ।
କକଡ଼ା ମାସର କୃଷ୍ଣ ପକ୍ଷର ଚଉଠି
ଉତ୍ତର ଭାଦ୍ର ନକ୍ଷତ୍ର କରଣ ସେ ବିଷ୍ଟି ।
ଭୌମବାର ସଉଭାଗ୍ୟ ନାମେ ଅଟେ ଯୋଗ
ସିଂହ ସଙ୍କରାନ୍ତିର ଯେ ସାତଦିନ ଭୋଗ ।
ଦ୍ୱାରକା ସଭାରେ ବିଜେ ପ୍ରଭୁ ଜଗନ୍ନାଥ
ରାମ ବସୁଦେବ ଉଗ୍ରସେନର ସହିତ ।
ସାତବଂଶ ଯୋଦ୍ଧାମାନେ ଅଛନ୍ତି ଆସ୍ଥାନେ
ତଳେ ପଟୁଆରୀ ପାତ୍ର ମିତ୍ର ଯୋଦ୍ଧାମାନେ ।
ବିମ୍ବାଧର ନାମେ ଏକ ଗୁପତ ଡଗର
ସେ ଯାଇ କହିଲା ବୀର ସାତ୍ୟକି ଆଗର ।
ସ୍ୱାମୀ ଶକ୍ରାଜିତକୁ ଯେ ମାଇଲା ଗୁପତେ
ମୁହିଁ ତାହା ଠାବ କରି ଅଇଲଇଁ ଏଥେ ।
ସତ୍ୟବର ଯାଦବର ପୁଅ ଶତଧନୁ
ସେ ମାଇଲା କୃତବର୍ମା ଅନାଧୃଷ୍ଟ ଜ୍ଞାନୁ ।
ସାତ୍ୟକି ବୋଇଲା ତୁହୋ ପାସୋର ସେ କଥା
ଅନେକ ଗୋଳ ହୋଇବ ପାଇଲେ ବାରତା ।
ସାତ୍ୟକି ବଚନେ ସେ ଯେ ହୋଇଲାକ ତୁନି
ଶୁଭେ ପ୍ରକାଶ ହୋଇଲା ସେଦିନ ରଜନୀ ।

ଅଭୂତ ସେ କଥା ହେଲା ସଭାରେ ପ୍ରଘଟ
ଗୋବିନ୍ଦର ରୋଷ ଜାଣିପାରି ଅନାଧୃଷ୍ଟ ।
ତକ୍ଷଣେ ବୋଇଲା ଆହେ ଜନିତାର ବଳା
ଏହିକ୍ଷଣି ଦ୍ୱାରକାରୁ ବେଗହୋଇ ପଳା ।
ପଳାଇଲା ଶତଧନୁ ସେହିଦିନ ରାତ୍ରେ
ଗୋବିନ୍ଦ ଗୋଡ଼ାଇଗଲେ ରଜନୀ ପ୍ରଭାତେ ।
ପଳାଇ ଅନେକ ଦୂର ଶତଧନୁ ଗଲା
ମହାଘୋର ଅରଣ୍ୟରେ ଯାଇଣ ପଶିଲା ।
ସୁରଥ ନାମରେ ଥିଲା ଏକଇ କିରାତ
ଶତଧନୁ ହେଲା ଯାଇ ତା ଶରଣାଗତ ।
ଆହେ କିରାତ ଶରଣ ମାଗଇ ମୁଁ ତୋତେ
ଗୁପତ କରି ଥୋଇ ପାରିବୁ କି ମୋତେ ।
କିରାତ ବୋଇଲା ତୁହି କାହାର ବଇରି
ଜଗନ୍ନାଥ ଭୟେ ମୁହିଁ ପଳାଉଛି ଡରି ।
ସୁରଥ ବୋଲେ ସେ ତ୍ରଇଲୋକ୍ୟ ଚିନ୍ତାମଣି
ଚାହିଁଲା ମାତ୍ରେ ସଂସାର ପାରଇ ସେ ଜାଣି ।
ଏଥୁଁ ତୁହି ବେଗହୋଇ ପଳା ଶତଧନୁ
ପାରିଲେ ନ କହିବି ଏ ମୋହର ଜ୍ଞାନୁ ।
ପଳାଇଲା ଶତଧନୁ ମହାଘୋର ନିଶି
ଗୋକ୍ଷୀର ସାଗର ବନ ମଧ୍ୟେ ଗଲା ପଶି ।
ଗୋବିନ୍ଦ ଭେଟିଲେ ଯାଇ ସୁରଥ କିରାତ
ଆରେ ଶତଧନୁ କେଣେ ଗଲା ଏ ବନସ୍ତ ।
କିରାତ ବୋଇଲେ ମୁହିଁ ନ ଜାଣଇଁ ତାହା
ଲୋଡ଼ି ମହାତମା ବନେ ପଶି ଖୋଜ ତାହା ।
ଶୁଣି ପ୍ରଭୁ ଜଗନ୍ନାଥ କୋପେଣ ପ୍ରଜ୍ୱଳି
ବିଜେ କର୍ଣ୍ଣକଟାରୀକୁ ମାରି ବନମାଳୀ ।
ସେ ସୁରଥ କିରାତକୁ ପକାଇଲେ ହାଣି
ଧାଇଁ ଗଲେ ତାର ପଛେ ବେଗେ ଚକ୍ରପାଣି ।
ଧାମଇଁ ସେ ଶତଧନୁ ଭଦ୍ରାବତୀ କୂଳେ
ଯମନକ ନୃପତିକି ଭେଟେ ରାତ୍ରକାଳେ ।
ଯମନକ ବୋଲେ ତୁହି କାହାର ବଇରୀ
ଆବର କିଏ ସେ ତୋତେ ଗୋଡ଼ାଉଛି ମାରି ।
ଶତଧନୁ ବୋଲେ ମୁହିଁ ନାରାୟଣେ ଦୋଷୀ
ରଖିପାରିବୁ କି ରାଜା ବହନ କହସି ।
ଯମନକ ବୋଲେ ମୋତେ କରତୁ ଉପେକ୍ଷା
ନାରାୟଣ ଦ୍ରୋହି ନାହିଁ ତୋର ଆଉ ରକ୍ଷା ।
ତ୍ୱରିତେ ପଳାଅ କ୍ଷଣେ ନ ରହି ତୁ ଏଥ
ନାରାୟଣ କୋପକୁ କେ ହୋଇବ ସମର୍ଥ ।
ପଳାଇଲା ଶତଧନୁ ସେ ବଚନ ଶୁଣି
ଦିବସ ରଜନୀ ଖାଲ ଢ଼ିପକୁ ନ ଗଣି ।

ଯମନକ ନୃପତିକି ଭେଟିଲେ ଶ୍ରୀହରି
ଶତଧନୁ କେଣେ ଗଲା ତାହାକୁ ପଚାରି ।
ଶତଧନୁ ବୋଲି ଦେବ ନ ଜାଣଇ ମୁହିଁ
ବୀରେକ ପଳାଉଅଛି ମହାଶ୍ରମ ପାଇ ।
ଗୋବିନ୍ଦ ବୋଇଲେ ତୁହି ଅଟୁ ହୀନଜାତି
ମୋ ଶତ୍ରୁକୁ ଛାଡ଼ିଦେଲୁ ଅଇଲା ତୋ କତି ।
ତେଣୁ କର୍ଣ୍ଣକଟାରୀକୁ ଘେନି ଚକ୍ରପାଣି
ଯମନକ ନୃପତିକୁ ପକାଇଲେ ହାଣି ।
କୋପେ ଗୋଡ଼ାନ୍ତି ଶ୍ରୀହରି ପାଇ ମହାଶ୍ରମ
ଗରୁଡ଼ ଲୋଡ଼ନ୍ତି ରାଗେ ହୋଇ ତମ ତମ ।
ଶତଧନୁ ପଳାଉଛି ତହୁଁ ମହାଭୟେ
ସୁରସେନ ଶବର ସେ ବନମଧ୍ୟେ ଥାଏ ।
ତାହାକୁ ବୋଇଲା ରଖିପାରିବୁ କି ମୋତେ
ସେ ବୋଇଲା କେ ଆସୁଛି କହ ତୋ ପଶ୍ଚାତେ ।
ଶତଧନୁ ବୋଲେ ମୋର ଗୋବିନ୍ଦ ବଇରୀ
ସୁରସେନ ବୋଲେ ଏଥୁ ପଳା ବେଗକରି ।
ପଳାଇଲା ଶତଧନୁ ଜଗନ୍ନାଥ ଡରେ
ସୁରସେନକୁ ଭେଟିଲେ ସ୍ୱାମୀ କିଛିଦୂରେ ।
ବୋଇଲେ କିରାତ ମୋର ଶତ୍ରୁଗଲା କେଣେ
ସୁରସେନ ପଡ଼ି କହେ ପ୍ରଭୁଙ୍କ ଚରଣେ ।
ତୋହର ବଇରୀ ହୋଇ କେ ଅଛି ସଂସାରେ
ସୁଦର୍ଶନ ଚକ୍ର ଯାଇ ଫେରେ ନିରନ୍ତରେ ।
ବୃଥାରେ ତୁ ନାଥ ଶ୍ରମ ପାଉଛୁ କାହିଁକି
ବୀରେକ ଯାଉଛୁ ପଛେ ଗଲି ଡାକି ଡାକି ।
ନ ଶୁଣିଣ କେଶବାସ ଅସମ୍ଭାଳେ ଗଲା
ଏହାକହି ଶ୍ରୀହରିଙ୍କ ଚରଣେ ପଡ଼ିଲା ।
ଶ୍ରୀହରି ବୋଇଲେ ବରମାଗ ସୁରସେନ
କିରାତ ଜନ୍ମରୁ ପାରି କର ଜନାର୍ଦ୍ଦନ ।
ଏହାକହି ସେ କିରାତ ରୂପ ବେଗେ ଧରି
ଶତଧନୁର ନିମନ୍ତେ କୃଟେ ଦେହଧରି ।
ମଥାରେ ମୟୁର ଝାଲି କଣ୍ଠେ ପୁଞ୍ଜମାଳି
ଲୋହିତବର୍ଣ୍ଣ ଚନ୍ଦନେ ଅଙ୍ଗକୁ ଶ୍ୟାମଳି ।
ଶ୍ରୀହସ୍ତେ ଧରି ଡମଣା କାଠର ଯେ ଧନୁ
ଭ୍ରମନ୍ତି ଲୋଡ଼ନ୍ତି ବନମଧ୍ୟେ ଶତଧନୁ ।
ଶତଧନୁ ପବନହୁଁ ବେଗେ ଯାଏ ଉଡ଼ି
ବେନିଶତ ଯୋଜନର ମଧ୍ୟେ ଛଡ଼ା ଛଡ଼ି ।
ନିଦାଘ ନୃପତି ନାମ ଅଟେ କୃତକେଶୀ
ସଙ୍ଗେ ଯୋଦ୍ଧାଘେନି ବନକ୍ରୀଡ଼ାରେ ସେ ଆସି ।
ପଳାନ୍ତେ ସେ ଶତଧନୁ ବାଟେ ହେଲା ଭେଟ
ଶରଣ ରଖି ପାରିବୁ କିହୋ ନୃପଶ୍ରେଷ୍ଠ ।

ରାଜା ବୋଲେ ମୁଁ ଶରଣ ପଞ୍ଜର ବରଧି
ଶୁଣି ନାହୁଁ କି ମୁଁ ଦୁଃଖୀଜନଙ୍କର ବନ୍ଧୁ ।
ସୁଖେ ବୀର ରହ ମୁହିଁ ରଖିଲଇଁ ତୋତେ
ବ୍ରହ୍ମା ଇନ୍ଦ୍ର କି କରିବେ ମୋହର ଅଗ୍ରତେ ।
ଏସନ ପ୍ରତିଜ୍ଞା କଲା ରାଜା କୃତକେଶୀ
ରହିଲାକ ଶତଧନୁ ଶରଣ ନିବେଶି ।
ବ୍ୟୂହେକ ସେ ଭିଆଇଲା ଶକଟ ଆକାରେ
ବେନିଲକ୍ଷ ଯୋଦ୍ଧା ତାର ରହିଲେ ସଧିରେ ।
ଝରାମୁଣ୍ଡ ଆବୋରିଲେ ତିନି ଯେ ଅୟୁତ
ଦୁଇଚକ ଆବୋରିଲେ ଦୁଇ ଯେ ଅୟୁତ ।
ଅଖ ଆବୋରିଲେ ଚାରି ଅୟୁତ ଯେ ଯୋଦ୍ଧି
ଫଳିକେ ଯେ ଶତ ଶତ ରଖି ନିରବଧି ।
ଏମନ୍ତେ ସେ ଶକଟବ୍ୟୂହ ଯେ ସୃଜିଲା
ତାହାର ମଧ୍ୟରେ ପଦ୍ମବ୍ୟୂହେକ ରଚିଲା ।
ପାଖୁଡ଼ାରେ ରଖାଇଲେ ସହସ୍ରକ ରଥି
କେଶରେ ରଖି ଚାଳିଶସସ୍ର ସେନାପତି ।
ତହିଁର ଭିତରେ ପଣି ନାଡ଼ଭେଦ କଲା
ସେ ନାଡ଼ ଭିତରେ ଶତଧନୁ ଲୁଚାଇଲା ।
ବ୍ୟୂହର ବାହାରେ ପୁଣି ଭିଆଇଲା ଗଡ଼
ପାଚେରୀ ହୋଇଲେ ଦୈତ୍ୟସେନା ବଡ଼ ବଡ଼ ।
ଏମନ୍ତେ ସେ ଲୁଚାଇଲା ନେଇ ଶତଧନୁ
ଆପେ ଗଡ଼ ଆବୋରିଲା ସୌଦାଗର ସୁନୁ ।
ଶତଧନୁକୁ ଆବୋରି ରହେ କୃତକେଶୀ
ଏମନ୍ତ ସମୟେ ହୃଷୀକେଶ ବିଜେ ଆସି ।
କିରାତ ରୂପ ସେ ଦେବ ଶରୀରେ ବିକାଶ
ଦିଶନ୍ତି ନିଉଳପ୍ୱଳ ପ୍ରାୟ ହୃଷିକେଶ ।
ଶୋଣିତ ବର୍ଣ୍ଣ ଚନ୍ଦନ ଲିପ୍ତ ସର୍ବକାୟ
ଦିଶନ୍ତି ସେ ନାରାୟଣ ଦିନକର ପ୍ରାୟ ।
ଚିହ୍ନି ନ ପାରି ଅସୁର ରାଜା କୃତକେଶୀ
କିରେ କିରାତ ବୋଲି ସେ ଓଗାଳିଲେ ଆସି ।
ସଧୀରେ ପୁଚ୍ଛନ୍ତି ଦେବ ଦେବକୀର ସୁନୁ
ବୀରମାନେ ଦେଖିଛକି ଗଲା ଶତଧନୁ ।
ବୋଇଲେ ଯେ ଉପହାସ କରି ଦୁଷ୍ଟବୀରେ
କାହିଁ ତୋର ଶତଧନୁ ଖୋଜ ଯା ବନରେ ।
ଉପହାସ କରି ତାକୁ ବୀର ଅନର୍ଗଳେ
କ୍ରୀଡ଼ନ୍ତି ଅସୁରେ ମଦ ରସପାନ ଭୋଳେ ।
ରାଗେ ଆଜ୍ଞାଦେଲେ ଯେବେ ସତ୍ୟ ନ କହିବ
ଆମ୍ଭ ଦୋଷ ନାହିଁ ସର୍ବେ ନିଶ୍ଚେ ନାଶଯିବ ।
ଶୁଣି କୋପାନଳ ହେଲେ ରୁକ୍ଷ ମହାବଳୀ
କରେ ଅସ୍ତ୍ର ଶସ୍ତ୍ର ଧରି କୋପେଣ ପ୍ରଜ୍ୱଳି ।

ବିବିଧ ଆୟୁଧ ଧରି ଧାମନ୍ତି କୌଣପେ
ସହସ୍ରେକ ଯୋଦ୍ଧା ଆସି ଓଗାଳିଲେ କୋପେ ।
ବିନ୍ଧିଲେ ନାରାଚ ନାରାୟଣଙ୍କ ଉପରେ
ଅସ୍ତ୍ର ଶସ୍ତ୍ର ନ ଭେଧଇ ଶ୍ରୀବିଷ୍ଣୁ ଅଙ୍ଗରେ ।
ଅଭେଦ୍ୟ କବଚ ଯେହ୍ନେ ନ ଭେଦେ ଶକତି
ଗୋବିନ୍ଦ ଅଙ୍ଗେ ସମସ୍ତେ ପଡ଼ି ଚୂର ହ୍ୱନ୍ତି ।
ରାଗେ ବିନ୍ଧିଲେ ହରି ସୁତୀକ୍ଷଣ ନାରାଚ
ଯୋଜନେକ ଭୂମି ମାଡ଼ି ପଡ଼ିଲେ ଦନୁଜ ।
ଅଶୀ ସହସ୍ର ଯୋଦ୍ଧାଙ୍କୁ ପକାଇଲେ ଖେଦି
ପ୍ରତିଜ୍ଞା ଆରମ୍ଭେ ଦମ୍ଭେ ଗଲେ ବ୍ୟୂହ ଭେଦି ।
କୋପେ ନାରାଚ ବିନ୍ଧିଲେ ଯୁଣି କଉଣପେ
ପଡ଼ନ୍ତି ସେ ନ ଘୁଞ୍ଚନ୍ତି ସୁରାସନ ଦର୍ପେ ।
ଏକଇ ପଡ଼ିବା ଦେଖି ଆରେକ ଧାମନ୍ତି
ଅନେକ ଶସ୍ତ୍ର ଶ୍ରୀକୃଷ୍ଣ ଦେହେ ପ୍ରହାରନ୍ତି ।
ପର୍ବତ ଯେସନ ଚୂର୍ଣ୍ଣ ହୁଅନ୍ତି ବ୍ରଜରେ
ଗଦା ଚୂର୍ଣ୍ଣ ହ୍ୱନ୍ତି ନାରାୟଣଙ୍କ ଅଙ୍ଗରେ ।
ବହୁତ ସମୟ ତହିଁ ହେଲା ରଣରଙ୍ଗ
ରକତେ କର୍ଦ୍ଦମ ହେଲା ସ୍ୱାମୀଙ୍କ ଶ୍ରୀଅଙ୍ଗ ।
ଧାମଣା କାଠର ଧନୁ ଫରିକର ଶର
ବିନ୍ଧନ୍ତି ସଂଗ୍ରାମେ କୋପେ ପ୍ରଭୁ ଯୋଗେଶ୍ୱର ।
ଯେସନେ ପଡ଼ନ୍ତି ମହାବାତେ ଚୂତଫଳ
ଲୋଟଇ ଶିର କମଳ ପଡ଼ନ୍ତି ଭୂତଳ ।
ସମର ମହିମା ମୁଖେ କହି ତ କେ ପାରି
କରେ ଗଦା ଧରି ଦେବ ଅସୁରଙ୍କୁ ମାରି ।
କୋପାନଳେ ଚାହିଁଲେ ସେ ହୁଅନ୍ତି ଦହିର୍ଯ୍ୟ
ତେଜରେ ଯେ ଭସ୍ମ ହେଲେ ଅନେକ ଦନୁଜ ।
ବେଳୁ ବେଳ ସଂଗ୍ରାମ ତ ଯାଉଅଛି ଚଢ଼ି
ଆକାଶକୁ ଉଛୁଳଇ ଦଇତ୍ୟଙ୍କ ରଡ଼ି ।
ପ୍ରଥମ ଦୁଆର ଭେଦି ଗଲେକ ଅଚ୍ୟୁତ
ଦ୍ୱିତୀୟ ଦ୍ୱାରେ ବିଜୟ ଯାଇ ଜଗଭୂତ ।
ଦାନବଙ୍କୁ ମାରି ହରି ଷଡ଼ଫଳ ଜିଣି
ଅଖଚକ ସନ୍ନିଧିରେ ମିଳି ଚକ୍ରପାଣି ।
ଗହଳ ଗୋଳ ଧନ୍ଦୋଳ କହି ତ କେ ପାରି
ପ୍ରଳୟର କାଳେ ଯେହ୍ନେ ସମୁଦ୍ର ଉଛୁଳି ।
ଧନୁଶରକୁ ସଂହରି ଦେବ ବନମାଳୀ
ଗଦା ଘେନିଣ ଦାନବମାନଙ୍କୁ ପ୍ରହାରି ।
ଏକ ପ୍ରହାରେକ ଦଶ ବିଂଶ ଯେ ପଚିଶ
ତିଳମନ୍ଦା ଜାଣି ତଳେ ପଡ଼ିଲେ ରାକ୍ଷସ ।
ଲୁଚି ଆସି ଜଣେ କେହି କୃତକେଶୀ ଆଗେ
ବହୁତ ସୈନ୍ୟ ପଡ଼ିଲେ ବୋଲେ ରଣରଙ୍ଗେ ।
ଜଣକ ମହିମା ଦେବ ନଯାଇ କଥନ
କିରାତ ନୁହଇ ସେହୁ ଅଟେ ବଡ଼ ଜାଣ ।
ଯେତେକ ଅସ୍ତ୍ର ପ୍ରହାର କଲୁ ତାର କାୟେ
ଶସ୍ତ୍ର ନ ଭେଦଇ ରହିଅଛଇ ନିର୍ଭୟେ ।
ତୀକ୍ଷ୍ଣ ପରଶୁ ମୁଦ୍‌ଗର ଗଦା ଆଦି କରି
ପଡ଼ି ଚୂର ହୋଇଲେଣି ଶରୀରେ ତାହାରି ।
ଶସ୍ତ୍ରକୁ ଦେବ ତାହାର ତିଳେ ନାହିଁ ଭୀତି
ବହୁତ ଦାନବ ବଳ ମାରଇ ବିକୋଟି ।
ତୁମ୍ଭେ ପରମ ପଣ୍ଡିତ ବିଚାର ତ ଏହା
ସୁରେଶ୍ୱର ମହେଶ୍ୱର କିବା ଚଉବାହା ।
ଚାରିଜଣଙ୍କ ମୁଖରୁ ଏସନକ ଶୁଣି
ବିଜେ କଲା ସେ ଅସୁର ବୀର ଶିରୋମଣି ।
ସଉଦାସର ନନ୍ଦନ ଅଟେ କୃତକେଶୀ
ଅଭୟବର ପାଇଛି ନିରଞ୍ଜନ ତୋଷି ।
ଗୋଟିଏ ଶର ତାହାର ସହସ୍ରେକ ଭୁଜ
ପାଞ୍ଚଶତ ଧନୁ ଧରି ବିନ୍ଧଇ ନାରାଚ ।
ନାରାଚ ଧରିଛି ପଞ୍ଚାଶତ ଭୁଜେ ଜୟ
ମହାପର୍ବତ ପରାୟ ଦିଶୁଛି ତା କାୟ ।
ସ୍ଫଟିକ ପ୍ରାୟ ଧବଳ ସୁସଞ୍ଚ ଶରୀର
କୋପେ ଅନଳ ପରାୟ ନୟନ ତାହାର ।
ବଇଦୁର୍ଯ୍ୟ ପର୍ବତ କି ଆସୁଅଛି ଉଠି
ତୁଲେ ତା ମୁକୁଟବନ୍ଧା ପଞ୍ଚାଶତ କୋଟି ।
ଗିରିମଣ୍ଡଳ ରଥରେ ବିଜେ କରେ ରାଜା
ଦେଖି ତାକୁ ପଳାଶନ୍ତି ଦୁଷ୍ଟ ଯେ ଦନୁଜା ।
ଅସୁର ରାଜାକୁ ଦେଖି ପ୍ରଭୁ ଜଗନ୍ନାଥ
ସୁମରିଲେ ସୁଦର୍ଶନ ଚକ୍ରକୁ ଅଚ୍ୟୁତ ।
ଚକ୍ର ପ୍ରବେଶ ହୁଅନ୍ତେ ନାରାୟଣ ଭୁଜେ
ଦେଖି ଭୟେ ପଳାଇଲେ ଦୁଷ୍ଟ ଯେ ଦନୁଜେ ।
ତ୍ରଇଲୋକ୍ୟ ବିକାଶିଲେ ପୁରୁଷ ଉତ୍ତମ
ଅସୁରଙ୍କ ସଙ୍ଗତରେ କଲେକ ସଂଗ୍ରାମ ।
ଫଣିବଳ ଦେଖି ଯେହ୍ନେ ଧାଏଁ ଖଗରାୟ
ଅନେକ ସାନନ୍ଦେ ସ୍ୱାମୀ ଉଲ୍ଲସାଇ କାୟ ।
କ୍ଷୁଧାର୍ତ୍ତ ପ୍ରାଣୀ ଯେସନେ ଅନ୍ନ ଦେଖି ତୃପ୍ତ
ଅମୃତପାନେ ଶରୀର ହୁଏ ଯେହ୍ନେ ଶାନ୍ତ ।
ଅସୁରବଳଙ୍କୁ ଦେଖି ପ୍ରଭୁ ବାସୁଦେବ
ବିନ୍ଧନ୍ତି ନାରାଚ ଦରହସିତ ସ୍ୱଭାବ ।
ସିନ୍ଧୁ ମନ୍ଥନ ଯେସନେ କଲାକ ମନ୍ଦର
ନିଷାଦବଳ ମନ୍ଥିଲେ ପ୍ରଭୁ ଚକ୍ରଧର ।
ବେଢ଼ିଲେ ଅସୁରେ ତାଙ୍କୁ ଲକ୍ଷେ ଯୂର କରି
ବିନ୍ଧନ୍ତି ନାରାଚ ଧନୁ ଅନୁକ୍ଷଣେ ଧରି ।

କକଡ଼ା ମାସରେ ଯେହ୍ନେ ବରଷଇ ମେଘ
ନିରତେ ଶର ପେଶନ୍ତି ଦଇତ୍ୟ ନିଦାଘ ।
ଝଲକନ୍ତି ନାରାଚରେ ବିଜୁଳିର ଜ୍ୟୋତି
ଆକାଶ ଅନ୍ଧକାରେ କି ଉଦେ ସୂର୍ଯ୍ୟ ଦୀପ୍ତି ।
ବିକାଶି ଅଛନ୍ତି ସ୍ୱାମୀ ସଂଗ୍ରାମର ତେଜ
ସମସ୍ତ ଶସ୍ତ୍ର ସେ ତେଜେ ହୁଅନ୍ତି ଦହିର୍ଯ୍ୟ ।
ଲକ୍ଷେକ ନାରାଚ ବିନ୍ଧି ଦେବ ଚକ୍ରପାଣି
ଲକ୍ଷେକ ଦୈତ୍ୟଙ୍କ ଶିରପକାଇଲେ ହାଣି ।
ପୁଣି ହିଁ ବିନ୍ଧିଲେ ଦେବ କୋଟିଏକ ଶର
କୋଟିଏ ଯୋଦ୍ଧା ପଡ଼ିଲେ ସେ ଅସୁର ବୀର ।
ଅର୍ବୁଦ ନାରାଚ ପୁଣି ମାରି ଚକ୍ରପାଣି
ଅର୍ବୁଦ ଯୋଦ୍ଧାଙ୍କୁ ରଣେ ପକାଇଲେ ହାଣି ।
ପଡ଼ିଲେ ଅସୁରବଳ ଯୋଜନେକ ମାଡ଼ି
ଦନୁଜେ ଶକଟବ୍ୟୁହ ଗଲେ ଭୟେ ଛାଡ଼ି ।
ଯୋଜନଯାଏ ରାକ୍ଷସବଳ ଗଲେ ଖେଦି
ଶକଟବ୍ୟୁହକୁ ଜିଣି ପଦ୍ମବ୍ୟୁହ ଭେଦି ।
ପାଞ୍ଚଶତ ଭୁଜେ ଧନୁ ଧରି କୃତକେଶୀ
ଜଗନ୍ନାଥଙ୍କ ଉପରେ ନାରାଚ ବରଷି ।
ରୋମକେ ନାରାଚ କରି ମାଇଲା ଦନୁଜ
ସମସ୍ତଙ୍କୁ ଦଗ୍ଧ କଲା ନାରାୟଣ ତେଜ ।
ପୁଣି ନାରାଚ ପେଶିଲା ରାଜା କୃତକେଶୀ
ଆଦ୍ୟ ଆଷାଢ଼େ ଯେସନେ ଜଳଧାରା ବର୍ଷି ।
ତୁଲେ ଅଛନ୍ତି ତାହାର ପଞ୍ଚତ୍ରିଂଶ ରଥୀ
ଅନର୍ଯ୍ୟାପ୍ତ ନାରାଚ ଯେ ଧରିଣ ବିନ୍ଧନ୍ତି ।
ରଣରେ ପଶିଆସନ୍ତି ଯେବଣ ପୁରୁଷ
ରାକ୍ଷସ ବଳଙ୍କୁ ଦେଖି ଦ୍ୱିଗୁଣ ହରଷ ।
ମାରୁ ନ ସରଇ ସେହି ଦୁଷ୍ଟରାଜା ବଳ
ଭାରା ଉଶ୍ୱାସ ନିମନ୍ତେ ନାଶିଲେ ସକଳ ।
ଏସନ ଯୁଦ୍ଧ କରନ୍ତେ ସୂର୍ଯ୍ୟ ଅସ୍ତ ହେଲା
କୁହୁକ ନାରାଚ କୃତକେଶୀ ଯେ ମାଇଲା ।
ନାରାଚ ହିଁ ଅନ୍ଧାର ଯେ ରାତି ହିଁ ଅନ୍ଧାର
କହୁଁ କହୁଁ ଘୋଟିଗଲା ଅନ୍ଧାରେ ଅମ୍ବର ।
ଅନ୍ଧକାର ଦେଖିଣ ଯେ ଅସୁରେ ଘୋଟିଲେ
ସୁଦର୍ଶନ ଚକ୍ରକୁ ଯେ ଗୋବିନ୍ଦ ଧଇଲେ ।
ଯେସନେ ଉଦୟ ହେଲା ପରିମଳ ଇନ୍ଦୁ
ରାକ୍ଷସବଳ ନାଶିଲେ ଯେସନକ ସିନ୍ଧୁ ।
ବୁଲାଇଣ କୌମଦକୀ ଗଦା ବନମାଳୀ
କୃତକେଶୀର ଉପରେ ପ୍ରହାରିଲେ ତୋଳି ।
ବିଶାଶତ ଯୋଜନ ଯେ ଆୟତନ ରଥ
ଗଦାର ବିଘାତେ ସେହି ହେଲା ଭସ୍ମୀଭୂତ ।

ଧାଇଁଲା ସେ ପାଦଗତି ହୋଇ ଅତି କୋପେ
ଧନୁ ଛାଡ଼ି ବୁଲାଇଲା ଗଦା ପରିତାପେ ।
ଗଦାବର ପଡ଼ିଯାଇ କୃଷ୍ଣ ହୃଦୟରେ
ଶତଭାର ଗଦାଭାଙ୍ଗି ପଡ଼ିଲା ଭୂମିରେ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ରାଜା କୃତକେଶୀ
କିଛି ନ ସ୍ଫୁରଇ ଚିତ୍ତେ ଭୟ ଗଲା ପଶି ।
କୋପେଣ ଗୋବିନ୍ଦ ଗଦା କୌମଦକୀ ପିଟି
ବଜ୍ରପାତ ଜାଣି ଭୂମି ଦିଗ କମ୍ପି ଉଠି ।
ଘାଏ ଘୁମାଇଲା ସେହି ଦୈତ୍ୟ ମହାବଳୀ
ପୁଣି ଗଦା ପ୍ରହାରିଲେ ଦେବ ବନମାଳୀ ।
ଦ୍ୱିତୀୟ ପ୍ରହାରେ ଦୈତ୍ୟ ମୁଣ୍ଡଗଲା ଭାଜି
ପଡ଼ିଲା ଦାନବ ରଣ ଭୂମିରେ ଗରଜି ।
ତ୍ରୈଲୋକ୍ୟ କମ୍ପିଲା ସେହି ଦୈତ୍ୟ ରଡ଼ିଘାତେ
ଆପେ ତାକୁ ବଧ କଲେ ଶ୍ରୀହରି ଶ୍ରୀହସ୍ତେ ।
କୃତକେଶୀ ପଡ଼ିବାର ଶବଦ ଶୁଭିଲା
ଶତଧନୁ ପଦ୍ମନାଡ଼ ମଧ୍ୟୁ ବାହାରିଲା ।
ରାତ୍ରେ ପଳାଇଲା ତାକୁ ନ ଦେଖିଲେ କେହି
ଠାବ କରି ନ ପାରିଲେ ତାକୁ ଭାବଗ୍ରାହୀ ।
ବ୍ୟୁହଭେଦି ଅସୁରଙ୍କୁ ମାଇଲେ ବିକୋଟି
ପଡ଼ିଲେ ଅସୁର ଯୋଦ୍ଧା ଅନେକ ପଦାତି ।
ଗୋଡ଼ାଇ ମାଇଲେ ପ୍ରଭୁ ଅସୁରଙ୍କୁ ଖେଦି
ପଳାନ୍ତି ଦୈତ୍ୟ ମାରନ୍ତି ଗୋଡ଼ାଇ ଅନାଦି ।
କୃଷ୍ଣ ସମରେ ପଡ଼ିଲେ ଅନେକ ଦଇତ୍ୟେ
ଗୋଡ଼ାଇ ମାଇଲେ ଶତଯୋଜନ ପର୍ଯ୍ୟନ୍ତେ ।
ଏକ ଜଣକୁ ସେ ଦେବ ନ ଛାଡ଼ନ୍ତି ପୁଣି
ରୁଧିରେ କର୍ଦ୍ଦମ ହେଲେ ଦେବ ଚକ୍ରପାଣି ।
କେଶବାସ ଅସମ୍ଭାଳ ଝାଳରେ ତ୍ରିପଣ୍ଡ
ନିଜରୂପ ଛାଡ଼ିଦେବ କିରାତ ପ୍ରଚଣ୍ଡ ।
ଅସୁରଙ୍କୁ ନାଶି ଦେବ ଦେବକୀର ସୁନୁ
ଯୋଗବଳେ ଜାଣିଲେ ଯେ ଗଲା ଶତଧନୁ ।
ପଳାଉଅଛି ପବନୁ ବେଗ ବେଗ ହୋଇ
ଦେଖିଲେ ଶତଯୋଜନେ ଜଗବନ୍ଧୁ ଥାଇ ।
ମଣିଭଦ୍ରା ବୋଲି ନଦୀ ଅଛଇ ଗୋଟିଏ
ବୀର ଧନଞ୍ଜୟ ସେହି ନଦୀକୂଳେ ଥାଏ ।
ମଣିଭଦ୍ରା ବୋଲି ତହିଁ ଏକଇ ପର୍ବତ
ସେ ଗିରି ଉପରେ ଅଛି ବୀରବର ପାର୍ଥ ।
ଅସମ୍ଭାଳ ହୋଇ ଧାଇଁ ଯାଇ ଶତଧନୁ
ଭେଟିଲେ ଗିରି ଉପରେ ବାସବର ସୁନୁ ।
ବୋଇଲା ଭୋ କିରାତ ମୁଁ ତୋହର ଶରଣ
ଦଶନଖ ମୁଖେ ଭରି ଦନ୍ତରେ ତିରଣ ।

ଶରଣ ବତ୍ସଳ ସେହୁ ବୀର ଜଗଜ୍ଜେଠି ।
ମାନ ଉଦ୍ଧାରଣ ପୁଣି ବୀରବର ଶ୍ରେଷ୍ଠୀ ।
ରହ ରହ ମହାତମା ନୁହ ତୁ ବିକଳ
ଶରଣ ରକ୍ଷକ ମୁହିଁ କ୍ଷତ୍ରୀ ଅନର୍ଗଳ ।
ଦେଖି ଶତଧନୁ ମୁଖେ ଶରଣ ଫୁକାରି
ରକ୍ଷାକର ରକ୍ଷାକର ବୀର ଧନୁର୍ଦ୍ଧାରୀ ।
ଆସ ଆସ ବୋଲି ପାର୍ଥ ଡାକିଲେ ତାହାକୁ
ରଖିବଇଁ ତୋତେ ଭୟ କରୁ ତୁ କାହାକୁ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହେଲେ ଭୟ ନାହିଁ
ମୋହର ସନ୍ନିଧେ ଥାଇ ତୁ ନିଶ୍ଚିନ୍ତ ହୋଇ ।
ରହିଲା ଅର୍ଜ୍ଜୁନ ବାକ୍ୟେ ତହିଁ ଶତଧନୁ
ଭେଟିଲେ ତାହାକୁ ଦେବ ଦେବକୀର ସୁନୁ ।
ଅର୍ଜ୍ଜୁନ ଅଛି କିରାତ ରୂପକୁ ଯେ ଧରି
କୋହ୍ଲ ମହ୍ଲାର ପରାୟ ଦିଶନ୍ତି ଶ୍ରୀହରି ।
ବିଶେଷେ ବନ ଗହନ ଘୋର ଅନ୍ଧକାର
ମହାଘୋର ନିଶାକାଳ ନ ଦିଶେ ଆମ୍ବର ।
ଆଦିତ୍ୟ ଦେବତା ମେରୁ ପଶ୍ଚିମରେ ଅସ୍ତ
ମଣିଭଦ୍ରା ବୋଲି ତହିଁ ଯେବଣ ପର୍ବତ ।
ସେହି ପର୍ବତ ଉପରେ ଅଛଇ ଫାଲଗୁନି
ଉଭା ହୋଇଛନ୍ତି ଯେ ସେ ଶତଧନୁ ଘେନି ।
ଏମନ୍ତ ସମୟେ ଦେବ ଦେବ ଜଗନ୍ନାଥ
ଦେଖିଲେ ଯେ ଶତଧନୁ ଅର୍ଜ୍ଜୁନର ସାଥ ।
ଶ୍ରୀକୃଷ୍ଣ ବୋଇଲେ ଶୁଣ ଶୁଣ ହେ କିରାତ
ସେହି ମୋହର ବଇରୀ ଅଟଇ ନିତାନ୍ତ ।
ଯୁକତେ ଅଟଇ ସେହି ମୋ ପିତୃ ବଇରୀ
ତୁ କିରାତ ମାତ୍ର ତାକୁ କେମନ୍ତେ ଆବୋରି ।
ମହାଶ୍ରମ ପାଇ ମୋର ବଢ଼ିଅଛି ରାଗ
ଜୀବନରେ କାର୍ଯ୍ୟ ଥିଲେ ଛାଡ଼ିଦିଅ ବେଗ ।
ଅର୍ଜ୍ଜୁନ ବୋଇଲେ ଦୁଷ୍ଟ ଅଜ୍ଞାନରେ ବାଇ
ଫେରିଯା ତୁ ଅକାରଣେ ମରିବୁ କିମ୍ପାଇଁ ।
ରାଗ ସମ୍ବର ପ୍ରସର ହେଉ ମହାନିଶା
ଏ କିମ୍ପା ତୋହର ଦୋଷୀ ଏଡ଼େ ତୋର ଘୋଷା ।
ଏହା ନ ବିଚାରି କିମ୍ପା କରୁଅଛୁ ବଡ଼ି
କି କାର୍ଯ୍ୟେ କିମର୍ଥେ ମାରୁ ଏହାକୁ ତୁ ଲୋଡ଼ି ।
ଅନେକ ଧ୍ୱଂସ ଗଲେଣି ଏହାର ନିମନ୍ତେ
ଏହାକହି ଅର୍ଜ୍ଜୁନକୁ ମାଇଲେକ ଶସ୍ତ୍ରେ ।
ଅର୍ଜ୍ଜୁନ ନ ଜାଣେ ଶସ୍ତ୍ର ବିନ୍ଧିଲେକ ବୋଲି
ଧାତିକାରେ ସେ ନାରାଚ ଆସୁଅଛି ପେଲି ।
କ୍ଷେପଇ ସେହି ନାରାଚ ଗୋଟି ଅତି ବେଗେ
ତୁରିତେ ପଡ଼ିଲା ଯାଇ ଅର୍ଜ୍ଜୁନର ଅଙ୍ଗେ ।
ରାଗେ ସେ ଶର କେଶବ ବିନ୍ଧିଲେ ଯଦ୍ୟପି
ସେ ନାରାଚ ନ ଛାଡ଼ଇ ଧର୍ମକୁ ତଥାପି ।
ଅର୍ଜ୍ଜୁନ ଅଙ୍ଗରେ ପଡ଼ି ନୋହିଲା ନିପାତ
ବଜ୍ର ଜାଣି ପଡ଼ି ସେ ଅର୍ଜ୍ଜୁନ ହୃଦଗତ ।
ଘାଏ କୁପିତ ହୋଇଣ ବୀର ସବ୍ୟସାଚୀ
ବୋଲେ ଆଜି ଯମଦେଲା ତୋର ପାଞ୍ଜି ପୋଛି ।
ପୁଣି ହିଁ ନାରାଚ ଏକ ମାଇଲେ ଶ୍ରୀହରି
ଭେଟି ତାହା ଫାଲଗୁନି ଗଲା ଅପସରି ।
ପୁଣି ହିଁ ନାରାଚ ଏକ ମାଇଲେ ଅନନ୍ତ
ବଞ୍ଚାଇଲେ ଧନଞ୍ଜୟ ହେଲା ଭୂମିଗତ ।
ବେଳୁବେଳ କୁପିତ ସେ ହେଲେ ଫାଲଗୁନି
ବିନ୍ଧିଲେ କୋପେ ସୁତୀକ୍ଷଣ ମୁନା ଶତଘେନି ।
ଅର୍ଜ୍ଜୁନ ନାରାଚ ଗୋଟି ଗଲା ଧାତିକାରେ
ଗଜ ପଡ଼ିଲା ଶ୍ରୀକୃଷ୍ଣ ଶ୍ରୀଅଙ୍ଗ ଉପରେ ।
ହୃଦରେ ନାରାଚ ଗଲା ଧାତିକାରେ ଫୁଟି
ରୁଧିର ବହି ସର୍ବାଙ୍ଗଯାକ ହେଲା ବୃଷ୍ଟି ।
ଘାଏ ଘୁମାଇଲେ ଦେବ ଦେବ ଯେ ଅଚ୍ୟୁତ
ଦଇବର ବଳେ ପୁଣି ହୋଇଲେ ସଚେତ ।
ଶାରଙ୍ଗଧନୁ ସୁମରୁ ଦେବଦେବ ହରି
କରେ ପ୍ରାପତ ହୁଅନ୍ତେ ବେଗେ ତାହା ଧରି ।
ଶ୍ରୀକରେ ନାରାଚ ଧରି ଦେବକୀ ତନୁଜ
ଅର୍ଜ୍ଜୁନ ଉପରେ ବିନ୍ଧିଲେକ ତେଜି ବ୍ୟାଜ ।
ବିକାଶେ ମହା ଅନଳ ତେଜେ ବ୍ରହ୍ମଶର
ପେଶନ୍ତେ ଆଲୁଅମୟ ହୋଇଲା ଅମ୍ବର ।
ଯେସନେ ଅନଳ ଖସି ଆସଇ ଆକାଶୁଁ
ବନ ଗହନ କମ୍ପୁଛି ମହାଶର ଆସୁଁ ।
ଦେଖି ମନରେ ବିଚାରି ବୀର ଫାଲଗୁନି
ସୁରବୋଧନ ଶରକୁ ମାଇଲା ତା ଘେନି ।
କେଶବଙ୍କ ବ୍ରହ୍ମଶର ନାଶିଲା ପାଣ୍ଡବ
ପୁଣି ହିଁ ନିଘାତ ବାଣ ମାଇଲେ ମାଧବ ।
ନାରାଚ ଆସନ୍ତେ ତାହା ଦେଖି ସବ୍ୟସାଚୀ
କୋପେ ବିନ୍ଧିଲା ନାରାଚ ନାମେ ବଜ୍ରସୂଚୀ ।
ବାଣ ସନ୍ଧି ସମ୍ମାକ୍ଷଣ ହୁଅନ୍ତେ ସେ ବେନି
ମହାଘୋର ଅନ୍ଧକାରେ କେ କାହାକୁ ଚିହ୍ନି ।
ବେନି ନାରାଚ ହୁଅନ୍ତେ ତହିଁ ପରିତାଳ
ରଜନୀ ଆଲୁଅମୟ ବନସ୍ତ ମଣ୍ଡଳ ।
ପ୍ରଳୟ ମେଘ ଜାଣିଣ ଶବଦ ଶୁଭଇ
ପାତାଳ ସ୍ୱର୍ଗ କମ୍ପିଲା ସସାଗରା ମହୀ ।
ଆକାଶ ପୁରେ କମ୍ପିଲେ ଥାଇ ବୃନ୍ଦାରକେ
ବେନିଶର ଆକାଶରେ କମ୍ପିଲେ ଭୂଲୋକେ ।

ବଢ଼ିଲା ସମର ତହିଁ ବେନି ବୀରଙ୍କର
କମ୍ପିଗଲା ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତ୍ରିପୁର ।
ଶବଦେ ସାଗର ଜଳ ହେଲା କମ୍ପମାନ
ଶୂନ୍ୟ ପୁରୁଷମାନେ ଯେ ଛାଡ଼ିଲେ ଆସନ ।
ପର୍ବତା ଶରକୁ କୃଷ୍ଣ ବିନ୍ଧିଲେ ସତ୍ୱରେ
ଅର୍ଜ୍ଜୁନ ଛେଦିଲେ ତାହା ପେଶି ବଜ୍ରଶରେ ।
ଧନ୍ୟ ତୁ ପାର୍ଥିବ ବୋଲି ବୋଲିଲେ ତ୍ରିଦଶେ
କୃଷ୍ଣ ଅର୍ଜ୍ଜୁନ ସମରେ ଦେଖନ୍ତି ଆକାଶେ ।
ଗୋବିନ୍ଦ ବୋଇଲେ ନାରାୟଣ ଶର ଘେନି
କମ୍ପିଲା ସପ୍ତ ବ୍ରହ୍ମାଣ ଘେନି ପଦ୍ମଯୋନି ।
ଅର୍ଜ୍ଜୁନ ତା ସୁମରିଲେ ଅଗ୍ନିଙ୍କର ମନ୍ତ୍ରେ
ସେ ଶର ଆସି ରହିଲା ଅର୍ଜ୍ଜୁନର ହସ୍ତେ ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଦେବ ନାରାୟଣ
କୋପେ ସୁମରିଲେ ପୁଣି ପାଶୁପତ ବାଣ ।
ଗୁଣେ ବସାଇ ପେଶିଲେ ସେ ଦେବ ଅନନ୍ତ
ତ୍ରାସିଲେ ସେ ଶତତେଜ ଦେଖି ତ୍ରିଜଗତ ।
ସୁମରିଲେ ବୈଶ୍ୱାନର ମନ୍ତ୍ରେ ବୀର ପାର୍ଥ
ଅର୍ଜ୍ଜୁନକୁ ପ୍ରାପ୍ତି ହେଲା ସେହୁ ରୁଦ୍ରଅସ୍ତ୍ର ।
କୋପେ ପ୍ରଜ୍ୱଳିତ ହେଲେ ଦେବ ଯେ ଅନାଦି
ଶ୍ରୀହସ୍ତେ ଘେନିଲେ ମହାଶର ମନଭେଦୀ ।
ଗୋବିନ୍ଦ ଯେ ଡାକଦେଲେ ପର୍ବତରେ ଥାଇ
ଆରେ ଶବର ଏ ଶର ପାଇଲୁ ତୁ କାହିଁ ।
ସାଧ୍ୱୀ ପୁଣ୍ୟବତୀ ତୋତେ କଲା ଯେ ପ୍ରସବ
ଏ ଦେବଶରକୁ ମୋର ଦେଲ ପରାଭବ ।
ଆନ ଶରମାନ ମୋର ସମ୍ଭାଳିଲୁ ସିନା
ଏ ଶରଗୋଟି ସମ୍ଭାଳ ଆହେ ମହାତମା ।
ଆଜ୍ଞାଦେଲେ ଦେବ ମନଭେଦୀ ନାରାଚକୁ
ତୁ ଯାଇ ଛେଦନ କର କିରାତ ଶିରକୁ ।
ଜଗନ୍ନାଥ ଆଜ୍ଞାରେ ସେ ମନଭେଦି ଶର
ତକ୍ଷଣେ ତେଜ ଘୋଟିଲା ଯାଇ ତିନିପୁର ।
ସୁମରଇ ଫାଲଗୁନି ଅଗ୍ନି ଦଇବତ
ସେ ଶର ପ୍ରାପତ ହେଲା ଯାଇ ପାର୍ଥ ହସ୍ତ ।
ଦେଖିଣ ବିରସ ହେଲେ ନାରାୟଣ ମତି
କୋପେଣ ମାଇଲେ ଦେବ ଅମୋଘ ଶକତି ।
ମାଇଲେ ବଜ୍ର ଶକତି ଘେନି ଫାଲଗୁନି
ସେ ଅମୋଘ ଶକତିର ହେଲା ତେଜହାନି ।
ପେଶନ୍ତି ଯେବଣ ଶସ୍ତ୍ରମାନ ସେ ଅନନ୍ତ
ସୁମରନ୍ତେ ଅର୍ଜ୍ଜୁନର ହେଲା କରଗତ ।
ତହୁଁ ଗୋବିନ୍ଦ ପେଶିଲେ ତ୍ରିଶୂଳ ଶକତି
ସୁମରନ୍ତେ ଅର୍ଜ୍ଜୁନକୁ ହୋଇଲା ପ୍ରାପତି ।

ଅରଜୁନ ଡାକଦେଲେ ପର୍ବତରେ ଥାଇ
କିରାତ ହୋଇ ଏ ଶସ୍ତ୍ର ପାଇଲୁ ତୁ କାହିଁ ।
ରାଗେଣ ବଦନ୍ତି ତାହା ଦେବ ଚକ୍ରଧାରୀ
ରେ ବନଚର ଜୀବନ ସାର୍ଥକ ତୋହରି ।
ଅର୍ଜ୍ଜୁନ ବୋଲେ ମାରଲ ଯେତେ ଶସ୍ତ୍ର ଘେନି
ସାଧୁ ଶବର ତୋହରି ପିଅର ଜନନୀ ।
ମୁହିଁ କ୍ଷତ୍ରି ବୋଲି ତୋର ଶସ୍ତ୍ର ଦେଲି ମେଣ୍ଟି
ଚିହ୍ନି ନ ପାରେ ନ ଜାଣେ ତୋର ନାମଗୋଟି ।
ଅନେକ ଶର ତୁ ମୋତେ ମାଇଲୁଣି ସିନା
ମୋହର ନାରାଚ ବେଳେ ସମ୍ଭାଳ ତୁ କିନା ।
ମୋହନା ଶରକୁ ପାର୍ଥ କଲା ସୁମରଣ
ବୈଶ୍ୱାନର ପରସନ୍ନେ ପ୍ରାପତ ତକ୍ଷଣ ।
ତିଆରଇ ମନଭେଦି ଶର ସବ୍ୟସାଚୀ
ସୁଚିତ୍ତେ ଅନଳ ମୋତେ ଯେବେ ଦେଇଅଛି ।
ବହୁତ କଟାଳ ମୋତେ କଲାଣି କିରାତ
ତାହାକୁ ସଂଗ୍ରାମେ ଯାଇ କର ତୁ ନିବର୍ତ୍ତ ।
ରୋମେକେ ଭେଦିବୁ ଶତ ନାରାଚ ତୁ ହୋଇ
ପ୍ରାଣେ ନ ମାରିବୁ ପଡ଼ିଥିବ ମୋହଯାଇ ।
ସାମାନ୍ୟ ଜନ ନୁହଇ ଏହି ଯେ କିରାତ
ରାମ ପାଇଲେ ଚିହ୍ନିବା କେଉଁକୂଳେ ଜାତ ।
ବିଚାର କରି ଛେଦିବା ସିନା ତାର ଶିର
ମୋହେ ପଡ଼ିଥିବ ତାକୁ ପ୍ରାଣରେ ନ ମାର ।
ଏସନକ ଆଜ୍ଞା ଯହୁଁ ଦେଲା ଧନଞ୍ଜୟ
ଚଳିଲା ନାରାଚ ଗୋଟି ବିଜୁଳିର ପ୍ରାୟ ।
ଭିନ୍ନ ମନରେ ତାହାଙ୍କୁ ଦେଇଛନ୍ତି ବହ୍ନି
ଆଜ୍ଞା ନ ମେଣ୍ଟିଲା ଯାହା ବୋଇଲା ଫାଲଗୁନି ।
ସଂଗ୍ରାମେ ଯେବେ ଥିବେଟି ହରିହର ବ୍ରହ୍ମା
ପରାଣ ହରି ରଖିବେ ଅର୍ଜ୍ଜୁନ ମହିମା ।
ଚଳଇ ନାରାଚ ବନ ଗହନକୁ ଛେଦି
ନାରାୟଣ ଅଙ୍ଗେ ଯାଇ ବସିଲାକ ଭେଦି ।
ଗୋବିନ୍ଦଙ୍କ ହସ୍ତରେ ଯେ ନାହିଁ ଦେବଶର
ଦେଖି ସ୍ତମ୍ଭୀଭୂତ ହେଲେ ଦେବ ଦାମୋଦର ।
ନାରାଚେ ଯନ୍ତ୍ରିଣ ହେଲା ଦେବଙ୍କର କାୟ
ତାଙ୍କ ଶରୀର ଦିଶଇ ଝିଙ୍କପକ୍ଷୀ ପ୍ରାୟ ।
ଯେସନେକ ସର୍ପେ ଭୟେ ପଶନ୍ତି ବିବରେ
ଶୋଣିତ ବୃଷ୍ଟି ହୋଇଲା ଗୋବିନ୍ଦ ଶରୀରେ ।
ଯେଉଁ ପ୍ରଭୁ ଜଗନ୍ନାଥ ପୁରୁଷ ଉତ୍ତମ
ମୋହନା ଶର ଆଘାତେ ହେଲେ ଅସାକ୍ଷମ ।
ଭୂମିରେ ଲୋଟିଲେ ଦେବ ଜାଣି ଶରଶଯ୍ୟା
ନିଶ୍ଚେଷ୍ଟ ହୋଇପଡ଼ିଲେ ତଳେ ଦେବରାଜା ।

ପର୍ବତୁ ଓହ୍ଲାଇ ଧାଇଁଗଲା ଧନଞ୍ଜୟ
ଶ୍ରୀକୃଷ୍ଣଙ୍କୁ ଆକର୍ଷଇ ରାହୁତେଜ ପ୍ରାୟ ।
ଭୂମିରେ ଲୋଟି ଅଛନ୍ତି ପ୍ରଭୁ ଦେବରାଜ
ତଥାପି ସେ ବିକାଶନ୍ତି ଦିନକର ତେଜ ।
ସୁଲକ୍ଷଣ ମୁଖ ତାଙ୍କ ନିରେଖି ଅର୍ଜୁନ
ନିଷ୍କଳଙ୍କ ଚନ୍ଦ୍ରପ୍ରାୟ ଦିଶଇ ବଦନ ।
ଦେଖିଣ ମନେ ବିଚାର କରଇ ବାସବୀ
କେବଣ ମହାତମା ତୁ ହେଲୁ ପରାଭବୀ ।
କୋପେ ଲଞ୍ଚାଇଛି ବିଜେ କର୍ଣ୍ଣ ଯେ କଟାର
ଶ୍ରୀମୁଖେ ଚାହିଁଣ ବୀର କଲାକ ବିଚାର ।
ଦେଉଁ ପୁଣ୍ୟବତୀ ତୋତେ ଗର୍ଭୁଁ କଲା ଜାତ
ତୋତେ ମାରିବାକୁ କାର ନ ବଳଇ ଚିତ୍ତ ।
କେମନ୍ତେ ମାରିବି ତୋତେ ବିନା ଅପରାଧେ
ନୋହୁ ତୁ ବଇରୀ ମଲୁ ଅକାରଣେ ଯୁଦ୍ଧେ ।
ଶତଧନୁଙ୍କୁ ପଚାରେ କାହାକୁ ତୋ ଭୀତି
ଏହାକୁ ତୋହର କିମ୍ବା ଏଡ଼େକ ଅପ୍ରୀତି ।
ଶତଧନୁ ବୋଲେ ଶୁଣ ହେ କିରାତ ରାୟେ
ହୁଅ ସାବଧାନ ମୁହିଁ କହୁଛି କଥାଏ ।
ଦ୍ୱାରକା ଭୁବନେ ଆମ୍ଭେ କଲୁ ରତ୍ନଚୋରୀ
ସ୍ୟମନ୍ତକ ମଣି ନେଲୁ ଶକ୍ରାଜିତ ମାରି ।
କୃତବର୍ମା ଅନାଧୃଷ୍ଟ ମୁହିଁ ଶତଧନୁ
ସତ୍ରାଜିତ ନାଶଗଲା ତିନିଙ୍କର ଜ୍ଞାନୁ ।
ଅନାଧୃଷ୍ଟଙ୍କୁ ଗୋବିନ୍ଦ ବଳେ ନାଶ କଲେ
ତହୁଁ ମୁହିଁ ପଳାଇଲି ଜୀବନ ବିକଳେ ।
ଦେବମନ୍ତ୍ରୀ ଅକ୍ରୁର ଯେ ସମ୍ଭାଳିଲା ମୋତେ
ତାହାର ଆଶ୍ରେ ରହିଲି ଦିନାକେତେ ଗୁପ୍ତେ ।
ସମୟେ ପୁଣି ଉଦିତ ହେଲି ମୁହିଁ ଯହୁଁ
ଡଗର ଗୁପତେ ନେବ କହିଲେକ ତହୁଁ ।
କେହି ରକ୍ଷାକରି ଦେବ ନ ପାରିଲେ ମୋତେ
ଜୀବନ ସଫଳ ହେଲା ଭେଟିଲି ମୁଁ ତୋତେ ।
ଏହି ପୁରୁଷ ପ୍ରତ୍ୟକ୍ଷେ ଅଟେ ଜଗନ୍ନାଥ
ସାଧୁ ମହାତମା ତୋର ଜନ୍ମ ହିଁ କିରାତ ।
ମୁହିଁ କିସ କହିବଇଁ ତୋହର ମହିମା
ଶରଣ ରକ୍ଷଣ ତୁହି ଅଟୁ ମହାତମା ।
ଶତଧନୁର ବଚନ ଶୁଣ ଫାଲଗୁନି
ଧନୁଶରକୁ ପକାଇ କୃଷ୍ଣ କୋଳେ ଘେନି ।
ମନଭେଦୀ ନାରାଚକୁ କାଢ଼ି ନିଜ ମନ୍ତେ
ଚେତା କରାଇଲା ଦେବଦେବ ଜଗନ୍ନାଥେ ।
ଜୀବନ୍ୟାସ ପବନନ୍ଦ୍ର ପାଇ ଯୋଗେଶ୍ୱର
ସାଷ୍ଟାମ ହୋଇ ବସିଲେ ପ୍ରଭୁ ଦାମୋଦର ।

ବେନିଭୁଜେ ଗୋବିନ୍ଦଙ୍କୁ କୋଳେ ଧରିଅଛି
ଅନେକ ବିନୟୀ ହୋଇ କହେ ସବ୍ୟସାଚୀ ।
ସାଷ୍ଟାମ ହୋଇ ବସିଲେ ଯହୁଁ ଦେବରାୟ
ଶତସହସ୍ର ପ୍ରଣାମ କରେ ଧନଞ୍ଜୟ ।
ପରମାନନ୍ଦ ପୁରୁଷ ମହା ଯୋଗେଶ୍ୱର
ମୁହିଁ ତ ଅଜ୍ଞାନ ଦେବ ଜ୍ଞାନ ନାହିଁ ମୋର ।
ମହାନିଶାରେ ତ ଚିହ୍ନି ନ ପାରିଲି ମୁହିଁ
ମୁହିଁ ତ ଅଜ୍ଞାନ ଦେବ ଜ୍ଞାନ ମୋର ନାହିଁ ।
ତୁ ଦେବ ଦେବ ସଂସାର ଜନ ହିତକାରୀ
ମୋର ଅପରାଧ ବାରେ କ୍ଷମାକର ହରି ।
ବିଶେଷ ପାମର ମୁହିଁ କିସ ମୋର ବୁଦ୍ଧି
ଭକତଜନ ବତ୍ସଳ କରୁଣା ବାରିଧି ।
ଧୂଳି ପକାଇଲେ ସିନ୍ଧୁ ହୁଅଇ କି ପୋତି
ଟେକା ମାଇଲେକ ଗିରି ଭାଙ୍ଗି ପଡ଼େ କ୍ଷିତି ।
ତୁ ଜଗତଭୂତ ପ୍ରଭୁ ଅଟୁ ବରଦାନୀ
ସୁପ୍ରସନ୍ନ ସଦାନନ୍ଦ ଅଭୟ ସୁଜ୍ଞାନୀ ।
ନିରାକାର ନାଥ ତୁହି ଗତି ମୁକ୍ତିଦାତା
ସଂସାର ଧାରଣ ତୁହି ଅଟୁ ପିତାମାତା ।
ମାତାର କୁକ୍ଷରେ ତୁହି ପଶି କୁତୁହଳେ
ଭାରାଭର ସଂହାରଣ କରୁ ସର୍ବକାଳେ ।
ଅପ୍ରସନ୍ନର ପ୍ରସନ୍ନ ନାଥ ଶୁଦ୍ଧଚେତା
ଅଗତିର ଗତି ନାଥ ତୁହି ସର୍ବଦାତା ।
ବୁଡ଼ନ୍ତେ ସଚରାଚର ତୁହି ଯେ ଉଦ୍ଧରୁ
ମୁକତିର ଗତି ନାଥ ତୁହି କଳ୍ପତରୁ ।
ମୁହିଁ ତୋ ଦାସର ଦାସ ଅଟେ ଜନ୍ମ ଜନ୍ମ
ଶୂଦ୍ରମୁନି ଶ୍ରୀ ଶାରଳା ଦାସ ଭକ୍ତି ଘେନ ।
ଅନେକ ବିନୟୀ ହେଲେ ଏମନ୍ତେ କିରୀଟି
ଜଗନ୍ନାଥଙ୍କ ଚରଣ ତଳେ ଯାଇ ଲୁଟି ।
ପୁଣି ପାର୍ଥଙ୍କ ଅନେକ ବିନୟ ବଚନ
ଚେତନା ପାଇ ବସିଲେ ଦେବ ଜନାର୍ଦ୍ଦନ ।
କେବଣ ମହାତ୍ମା କିରାତର ରୂପ ଧରି
ଜଗଦ୍ ବନ୍ଦନ ପୁରୁଷ ନୋହିବ ମୁଁ ସରି ।
ଏ ମର୍ତ୍ତ୍ୟମଣ୍ଡଳେ ତୋର ଅସଂଖ୍ୟ ମହିମା
ମୋତେ ଜିଣି ରୁହାଇଲୁ ଜଗତର ସୀମା ।
ଅର୍ଜୁନ ପ୍ରଣମି ଦରହସିତ ବଦନେ
ଚିହ୍ନି ନ ପାରିଲି ଦେବ ମୁଁ ତୋର ଚରଣେ ।
ଦାସ ଜନ ଦାସ ଭୃତ୍ୟଜନର ମୁଁ ଭୃତ୍ୟ
ପାଣ୍ଡବ କିରୀଟ ମୁହିଁ ଅଟେ ଜଗନ୍ନାଥ ।
ବଦୟନ୍ତି ଶ୍ରୀଗୋବିନ୍ଦ ତୁ ସେ ଫାଲଗୁନି
ସଂଗ୍ରାମର ବେଳେ ମୁଁ ଯେ ନ ପାରିଲି ଚିହ୍ନି ।

ଧନୁଶରକୁ ପକାଇ ଉଠିଲେ ଶ୍ରୀହରି
ଶ୍ରୀଭୁଜରେ ଅର୍ଜ୍ଜୁନକୁ କୋଳକରି ଧରି ।
ସାଧୁରେ ତୁ ଫାଲଗୁନି ସାଧୁ ତୋ ଜୀବନ
ତୋର ବିନା ପରାଭବ ଦିଅନ୍ତା କି ଆନ ।
ତୁହି ମୋର ପ୍ରାଣସଖା ଭିନ୍ନାଭିନ୍ନ ନାହିଁ
ଏବେ ତୋତେ ସଂଗ୍ରାମରେ ହାରିଲଇଁ ମୁହିଁ ।
ଈଶ୍ୱର ଦେବଙ୍କୁ ତୁହି ଜିଣିଲୁ କି ରୂପେ
ଅମରନାଥ ଜିଣିଲୁ ଅଗ୍ନିର ପ୍ରତାପେ ।
ମୁହିଁ ଏକା ତୋହଠାରୁ ଥିଲଇ ଉବୁରି
ଜିଣିଲୁ କିରାତ ରୂପେ ଗଲି ମୁହିଁ ହାରି ।
ଏବେ ଯେ ଜାଣିଲି ବାବୁ ତୋର କ୍ଷତ୍ରିବୃତ୍ତ
ତ୍ରଇଲୋକ୍ୟ ଜଣିବାକୁ ତୁହି ସାମରଥ ।
ତୋହର ତୁଲେ ଥିଲେ ମୁଁ ଅରଜିବି ଯଶ
ତୁ ଯେ ପୃଥି ଭାରାଭର କରିବୁ ଉଶ୍ୱାସ ।
ଆନର ଶକ୍ତିକୁ ବାବୁ ମୋର ଦର୍ପ ଧ୍ୱଂସେ
ଏ ମୋର ଅନେକ ପୁଣ୍ୟ ଦେଖିଲି ମୁଁ ବେଶେ ।
ଆନର ହାତେ ମୁଁ ଯେବେ ଝିଙ୍ଗାସି ହୁଅନ୍ତି
ତେବେରେ ବାବୁ ଜୀବନ କେବେ ନ ରଖନ୍ତି ।
ନାରାୟଣ ବୋଇଲେ ତୁ ଶୁଣ ଧନଞ୍ଜୟ
ମାଗ ମାଗ ବର ମୋତେ ବାସବ ତନୟ ।
କରପତ୍ର ଯୋଡ଼ି ବୋଲେ ବାସବର ସୁନୁ
ଭୋଦେବ ଦୋଷ ଉପେକ୍ଷ ରଖ ଶତଧନୁ ।
ଶରଣ ପଶିଲା ଆସି ଜୀବନ ନିମନ୍ତେ
ଏହାର ଜୀବନ ରକ୍ଷାକର ଜଗନ୍ନାଥେ ।
ଛାଡ଼ିଲେକ କୋପ ଦେବ ଅର୍ଜ୍ଜୁନ ବଚନେ
ଅର୍ଜ୍ଜୁନକୁ କୋଳକରି ଧରି ଜନାର୍ଦ୍ଦନେ ।
ବାବୁ ଏ ତୁ ଘୋରବନେ ନ ଥାଅ ତୁ ଏକା
ଆସ ମୋର ପ୍ରାଣଧନ ଭୁବନ ଦ୍ୱାରକା ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ଶୁଣିବା ଶ୍ରୀବସ୍ତି
ବନବାସ ଆଉ ମୋର ସାତମାସ ଅଛି ।
ନିୟମ ଲଙ୍ଘିକି ଯିବି ତୁମ୍ଭର ସଙ୍ଗତେ
ତୁମ୍ଭ ପ୍ରସାଦେ ବିପଦ ନାହିଁ କିଛି ମୋତେ ।
ଭୋ ସ୍ୱାମୀ ସୁଚିତ୍ତେ ମୋତେ ଦୟା କରିଥିବା
ତୁମ୍ଭ ପଦ୍ମପାଦେ ମୁହିଁ କରିଥିବି ସେବା ।
ଗୋବିନ୍ଦ ବୋଇଲେ ତୋତେ ମୋହର ଶପଥ
ବନବାସ ସାରି ଯିବୁ ଦ୍ୱାରକା ସଂଗାତ ।
ଅବଶ୍ୟ ମୁଁ ଦ୍ୱାରକାକୁ ଯିବଇଁ ପଶ୍ଚାତେ
ଶତଧନୁ ଥାଉ ଦେବ ମୋହର ସଙ୍ଗତେ ।
ହେଉ ବୋଲି ଆଜ୍ଞାଦେଲେ ସେ ଜଗତ ଭୂତ
ଧ୍ୟାନେ ସୁମରଣା କଲେ ବିନତାର ସୁତ ।

ରମ୍ୟାକ ଦ୍ୱୀପୁଁ ମିଳିଲା ଆସି ଖଗେଶ୍ୱର
ବିଜୟ ଶ୍ରୀ ଜଗନ୍ନାଥ ଗରୁଡ଼ ପିଠିର ।
ଶ୍ରୀହରି ବୋଇଲେ ତୋର ପୁରୁ ମନବାଞ୍ଛା
ଆରୋଗ୍ୟ ଶରୀରେ କର ବନକୁ ଉପେକ୍ଷା ।
ଏତେକ ବିଚାରି ସେ ଯେ ଦୀନଜନବନ୍ଧୁ
ଦ୍ୱାରକାରେ ବିଜେ ପ୍ରଭୁ ପରମ ଆନନ୍ଦୁ ।
ବଳରାମ ବିଜେ କରି ଅଛନ୍ତି ରୈବତେ
ବସୁଦେବ ନନ୍ଦ ଉଗ୍ରସେନର ସହିତେ ।
ଗୋବିନ୍ଦ ମିଳିଲେ ବଳରାମଙ୍କ ସନ୍ନିଧେ
ପ୍ରଣିପାତ କରି ଦେବ ଶୋଇଲେ ଶ୍ରୀପଦେ ।
ବଳରାମ ବୋଇଲେ ତୁ ଅଜ୍ଞାନ ଶ୍ରୀହରି
ପଳାଇଲା ପ୍ରାଣୀକୁ ଯେ କଟାଳ ନ କରି ।
ପ୍ରମାଦ ଯେବେ ଚିନ୍ତିଲା ସେ ଶକ୍ରାଜିତକୁ
କେବେ ଅବା ଧର୍ମଦେବ ସହିବ ତାହାକୁ ।
ଆମ୍ଭର ଶତ୍ରୁକୁ କେହି କରିପାରେ ରକ୍ଷା
କାହାର ପ୍ରତିଜ୍ଞା ଦେବ କେ କରିବ କକ୍ଷା ।
ଗୋବିନ୍ଦ ବୋଇଲେ ସ୍ୱାମୀ ଦୂରେ ପଳାଇଲା
ତାହାର ନିମନ୍ତେ ବାଟେ ଶବରେକ ମଲା ।
ତ୍ରେତାଯୁଗ ରାଜା କୃତକେଶୀ ନାମେ ଦୈତ୍ୟ
ସଉଦାସ ନୃପତିର ଅଟଇ ସେ ସୁତ ।
ତା ପାଦେ ସେ ଶତଧନୁ ଶରଣ ପଶିଲା
ସାତ ଅକ୍ଷୌହିଣୀ ବଳ ଘେନି ସେହୁ ମଲା ।
ପୁଣି ସେ ଅନେକ ଦୂର ଗଲା ଶତଧନୁ
ଶରଣ ରଖିଲା ତାକୁ ବାସବର ସୁନୁ ।
ଅର୍ଜ୍ଜୁନ ସଙ୍ଗେ ଆମ୍ଭର ହୋଇଲା ସମର
ସଂଗ୍ରାମେ ଜିଣିଲା ମୋତେ ପାର୍ଥ ଧନୁର୍ଦ୍ଧର ।
ଅନେକ ପ୍ରାଭବ ମୋତେ ଦେଲା ଧନଞ୍ଜୟ
ଶୁଣିଣ ହରଷ ହେଲେ ରୋହିଣୀ ତନୟ ।
ତୋତେ ଜିଣିବାକୁ ହେଲା ସମର୍ଥ ଫାଲଗୁନି
ପରମ ସାନନ୍ଦ ହେଲୁ ଆମ୍ଭେ ଏହାଶୁଣି ।
ଗୋବିନ୍ଦ ବୋଇଲେ ସ୍ୱାମୀ ସେ କିରାତ ବେଶେ
ବଳେ ଜିଣିଲା ହରଙ୍କୁ ରହି ବନବାସେ ।
ଅକ୍ଷୟ ତୂଣୀର ବେନି ପାଶୁପତ ଶର
ପିନାକ ସାରଙ୍ଗ ଧନୁଦେଲେ ଦେବ ହର ।
ଅମରପୁରେ ଜିଣିଲା ଦେବ ଆଖଣ୍ଡଳ
ଅଗ୍ନିକୁ ଖାଣ୍ଡବ ବନ ଦେଲା କୁନ୍ତୀବାଳ ।
ତୃପତ ହୋଇଲା ବନ ଖାଇ ବୈଶ୍ୱାନର
ଦେଲେ ସେ ଆଣି ଅନେକ ଦେବତାଙ୍କଶର ।
ବଳରାମ ହର୍ଷ ଜଗନ୍ନାଥଙ୍କ ବଚନେ
ଅର୍ଜ୍ଜୁନଙ୍କୁ ପ୍ରଶଂସନ୍ତି ଅତି ତୋଷମନେ ।

ପର୍ବତ ଉପରେ ରାମକୃଷ୍ଣ ଛନ୍ତି ବସି
ନାନା କଉତୁକ ହେଉଛନ୍ତି ହସି ହସି ।
ଷଡ଼ଯୋଜନ ବିସ୍ତାର ପର୍ବତର ସ୍ଥଳୀ
ଦ୍ୱାଦଶ ଯୋଜନ ପୋତା ଉଚ୍ଚ ଯୁଣ ଚାରି ।
ବାସୁଦେବ ବୋଇଲେ ହେ ଶୁଣ ହଳହସ୍ତ
ଆମ୍ଭର ଏବେ ସକଳ କାର୍ଯ୍ୟ ହେଲା ସାର୍ଥ ।
କୃପାଜଳ ଋଷିଙ୍କର କୋପେ ଉତପନ୍ନ
ସତ୍ୟଯୁଗରେ ନର୍ମଦା ସରସ୍ୱତୀ ନାମ ।
କଳିକାଳ ଧ୍ୱଂସିନୀ ଗୋ ଝଙ୍କଡ଼ ବାସିନୀ
ମୁହିଁ ତୋହର ଚରଣେ କରଇ ଦଇନୀ ।
ଯମଦଗ୍ନି ପର୍ଶୁରାମ କରି ଯାର ପୂଜା
ପୃଥିବୀ ନକ୍ଷତ୍ରୀ କଲେ ହୋଇ ମହାତେଜା ।
ପରଦୁଃଖ କାତର ତୁ ଅବିରତେ ଭୋଳା
ସଂସାର ବାଳୁତ ରୂପେ କରୁ ମାଗୋ ଖେଳା ।
ଆଦି ମଧ୍ୟ ଅବଶେଷ ମାଗୋ ଯାର ନାହିଁ
ମୁହିଁ ତାହାକୁ ପାଇଲି ଜନ୍ମେ ଜନ୍ମେ ଧ୍ୟାୟି ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ପ୍ରସନ୍ନେ ମୁଁ ଭେଟିଲଇଁ ଅଭୟା କାମାକ୍ଷୀ ।
ନାହିଁ ଉପମା ଯାହାକୁ ତିନିପୁର ମଧ୍ୟେ
ସେ ଦେବୀଙ୍କି ଚିନ୍ତଇ ମୁଁ ରାତିଦିନ ହୃଦେ ।
ସେବିବାକୁ ଚିତ୍ତ ମୋର ନବଳଇ ଆନେ
ଖଣ୍ଡିଲି ମୁହିଁ ଦୁଷ୍କୃତ ଶାରଳା ପ୍ରସନ୍ନେ ।
ପ୍ରଥମେ ବନ୍ଦଇ ମାଗୋ କୋଣାରକ ଚଣ୍ଡୀ
ମୁଣ୍ଡଗୋଟି ଶୋଭା ତୋର ସିନ୍ଦୂରରେ ମଣ୍ଡି ।
ମାଡ଼ିବସିଲୁ ଦକ୍ଷିଣ ସମୁଦ୍ରର ତୀର
ଉତ୍ତରକୁ ଦ୍ୱାର ମାଗୋ ଅତ୍ୟନ୍ତ ବିସ୍ତାର ।
ଶ୍ରୀରାମ ପୂଜନ୍ତେ ରାମଚଣ୍ଡୀ ନାମ ହେଲା
ରାଜ ନିଯୋଗ ହିଁ ମାଗୋ କିଛି ନ ସ୍ଫୁରିଲା ।
ପ୍ରତିଦିନ କାହୁଁ ଆଣି ଖାଇ ମହାମାଈ
ତିନିଶ ଷାଠିଏ ଦିନ ପଡ଼ିଆ ନୁହଇଁ ।
ଦିଲ୍ଲୀ ଯେ ଡିଙ୍ଗର ମାଗୋ ମାଳବ କୁଞ୍ଜର
ଏତେଦୂରୁ ଆଣି ମାଗୋ ପୋଷୁ ତୁ ଉଦର ।
ମୁଦୁସୁଲୀ ରୂପେ ମାଗୋ ମାଠିଆ କାତର
ମଜଣା ନିମନ୍ତେ ମାଗୋ ହୋଇଲୁ ବାହାର ।
ବଡ଼ ଚୂଡ଼ଙ୍ଗକୁ ମାଗୋ ଭଣ୍ଡି ତୁ ଅଇଲୁ
ହାତେ ହାତେ ବଢ଼ି ମାଗୋ ସମୁଦ୍ରେ ପଶିଲୁ ।
ଅନାଦି ଅପର୍ଣ୍ଣା ମାଗୋ ଜନ୍ମେ ଜନ୍ମେ ମାଏ
ଜନ୍ମେ ଜନ୍ମେ ସେବା ମାଗୋ ରାମଚଣ୍ଡୀ ପ୍ରାୟେ ।
ଶ୍ରୀ ଶାରଳା ଶ୍ରୀ ଚରଣେ ଶରଣ ମୁଁ ନିତ୍ୟେ
ମୁଁ ଶାରଳା ଦାସ ମୁକ୍ତ ଇଚ୍ଛେ ଶୁଭଚିତ୍ତେ ।

ଜୟ ତୁ ଜୟ ତୁ ଦେବ ଶଙ୍ଖଚକ୍ରଧାରୀ
ଦଇତ୍ୟ ଦଳନ ହେତୁ ନାମ ଦଇତ୍ୟାରୀ ।
ପତିତଜନଙ୍କୁ ଦେବ ତାରିବାର ଅର୍ଥେ
ମାଳଗିରିରେ ବିଜୟ ନାଥ ଜନ ହିତେ ।
ତୁମ୍ଭେ ଯେ କରତା ଦେବ ଚତୁର୍ଦ୍ଦଶ ପୁରୀ
ଅବିନାଶୀ ପୁରୁଷ ତୁ ଦେବ ଦଇତାରୀ ।
ବ୍ରହ୍ମାଣ୍ଡ ଉତ୍ପନ୍ନ ଦେବ କଳ୍ପନାରୁ ତୋର
ତୁମ୍ଭ ପ୍ରକୃତିରୁ ଜାତ ସକଳ ସଂସାର ।
ସର୍ବଭୂତେ ଦୟା ତୋର ନାମ ଦୟାନିଧି
ଚିନ୍ତାମଣି ନାଥ ତୁହି ଅମୃତ ପ୍ରୟୋଧି ।
ବିଶ୍ୱ ଭାରାଭାର ଦେବ କର ତୁମ୍ଭେ ନାଶ
ଅଶେଷଜନଙ୍କ ହୃଦେ କର ତୁମ୍ଭେ ବାସ ।
ଆରତ ପାଳନ ତୁମ୍ଭେ ଜଗତ ରକ୍ଷଣ
ତୁମ୍ଭ ବିନା ନାହିଁ ପ୍ରଭୁ ବ୍ରହ୍ମ ଅନ୍ୟ ଜାଣ ।
ଉତ୍ପତ୍ତି ସ୍ଥିତି ପ୍ରଳୟ ତୁମ୍ଭେ ବେଦବର
ଦେବ ମାନବେ ମହିମା ତୋର ଅଗୋଚର ।
ପାଳିତଜନଙ୍କୁ ତୁମ୍ଭେ ପାଳି ବିଷ୍ଣୁରୂପେ
ସଂହାରଣ କର ତୁମ୍ଭେ ଈଶ୍ୱର ସ୍ୱରୂପେ ।
ଉତ୍ପତ୍ତି କରିବାବେଳେ ବ୍ରହ୍ମାରୂପ ଧର
ଅନନ୍ତ ମୁରତି ଦେବ ଅଟ ବିଘ୍ନେଶ୍ୱର ।
କହିବାକୁ କେ ତୁମ୍ଭର ମହିମା ସମର୍ଥ
ଅଶେଷ ଲୋକ ଯାହାକୁ ସେବନ୍ତି ନିରତ ।
ନାହାନ୍ତି ତ ତୁମ୍ଭଠାରୁ ବଡ଼ ଏଣୁକରି
ତୁମ୍ଭେ ଜାତ କରିଅଛ ସପ୍ତସିନ୍ଧୁ ବାରି ।
ଉତ୍ତର ପଶ୍ଚିମ ଆଡ଼େ ମହୋଦଧି ତଟେ
ନୀଳକନ୍ଦର କଳପବଟ ପଛବାଟେ ।
ରତ୍ନସିଂହାସନ ପରେ ଅଛି ତୁଳୀ ଚକ
ସେ ଚକ ଉପରେ ବିଜେ ଜଗତ ନାୟକ ।
ନବୀନ ନୀଳ ଜଳଦ ଜିଣି ଶ୍ୟାମବର୍ଣ୍ଣ
ମାଣିକ୍ୟ ବର୍ଣ୍ଣ ଅଧର ପଙ୍କଜ ନୟନ ।
ମରକତ କପାଳକୁ ସଞ୍ଚ ଦୀର୍ଘ ନାସା
ତହିଁ ମୋତିବର ମୁକ୍ତାବସା ତାର ମିଶା ।
କୋଟିଏ ଚନ୍ଦ୍ରକୁ ଜିଣି ଶ୍ରୀମୁଖ ମଣ୍ଡଳ
ଶ୍ରବଣରେ ଶୋଭାପାଏ ମକର କୁଣ୍ଡଳ ।
କମ୍ବୁକଣ୍ଠେ ଶୋଭାବନ ମୁକ୍ତା ରତ୍ନମାଳୀ
ହୀରାନୀଳା ପଦକ ତୋ ହୃଦଦେଶେ ଝଳି ।
ନାନା ମଣିରେ ଜଡ଼ିତ କଣ୍ଠ ରତ୍ନମାଳ
କି ଜାଣି ପୂର୍ଣ୍ଣଚନ୍ଦ୍ରମା ଶ୍ରୀମୁଖମଣ୍ଡଳ ।
ବାମେ ଯେ କମଳାଦେବୀ ଚକ୍ର ସୁଦର୍ଶନ
ଅଶେଷ ମହିମା ଦେବ ଦେବ ଜନାର୍ଦ୍ଦନ ।

ଦକ୍ଷିଣରେ ବଳଭଦ୍ର ସୁଭଦ୍ରା ମଧ୍ୟରେ
ନାମ ଚିନ୍ତା କରନ୍ତି ଯେ ବ୍ରହ୍ମାଦି ଅମରେ ।
ଯୋଗୀଜନଙ୍କ ଭକତି ଥାଇ ଯାର ପଦେ
ମୁନିମାନେ ସମ୍ପାଦନ୍ତି ଦେବ ଯାକୁ ବାଦେ ।
ଏଡ଼େ ବଡ଼ ଦେବ ନାହିଁ ଚତୁର୍ଦ୍ଦଶୀ ପୁରୀ
ତେଣୁ ମୁଁ ଚିନ୍ତା କରଇ ସେହି ନରହରି ।
ଗତି ମୁକ୍ତି ଦିଅ ମୋତେ ଶଙ୍ଖ ଚକ୍ର ହସ୍ତ
ଶୂଦ୍ରମୁନି ମୁଁ ଶାରଳା ଦାସ ଚିନ୍ତେ ନିତ୍ୟ ।

—o—

## କଜ୍ଜାସୁର ବଧ

ଏଥୁଅନ୍ତେ ବୈବସ୍ୱତ ମନୁ ନାମେ ରାଜା
ଅଗସ୍ତି ମୁନିଙ୍କ ପାଦତଳେ କଲେ ପୂଜା ।
ଭୋ ମୁନି ପଣ୍ଡିତ ଜ୍ଞାନୀ ସର୍ବକଥା ଜାଣ
ମଧ୍ୟପର୍ବର ବାରତା କହିଲ ପ୍ରମାଣ ।
ଶୁଣିବାକୁ ମୁନିବର ଶରଧା ମୋହର
ପ୍ରସନ୍ନ ଚିତ୍ତ ହୋଇଣ ଅବଧାନ କର ।
ରାଜାର ଅତି ବିନୟ ଭକ୍ତିଭାବ ଘେନି
କହନ୍ତି ପ୍ରସନ୍ନ ଚିତ୍ତ ହୋଇ ବ୍ରହ୍ମମୁନି ।
ଶୁଣ ମହାରାଜା ଏବେ କହିବାନା ତତ୍ତ୍ୱ
ମଧ୍ୟପର୍ବର ଯେ କଥା ଶ୍ରୀମହାଭାରତ ।
ବୈଶାଖ ଶୁକ୍ଳପଞ୍ଚମୀ ତିଥି ଗୁରୁବାର
ନକ୍ଷତ୍ର ଯେ ମୃଗଶିରା ବୃଷେ ଶଶଧର ।
ଶୁଭ ନାମେ ଯୋଗ ପୁଣି ବାଳବ କରଣ
ସତର ଦିନ ଯେ ଭୋଗ ମେଷ ସଂକ୍ରମଣ ।
ସେଦିନ ଶ୍ରୀ ନାରାୟଣ ଗରୁଡ଼ ପିଠିରେ
କପିଳାସ ପର୍ବତକୁ ଗମନ୍ତେ ବାଟରେ ।
ଭେଟହେଲେ ସଦାନନ୍ଦ ଦେବ ତ୍ରିପୁରାରୀ
ଗରୁଡ଼ ପିଠିରେ ଥାଇ ପ୍ରଣମିଲେ ହରି ।
ଦେଖି ତ୍ରିଲୋଚନ କଲେ କୋଳେ ସମ୍ଭାଷଣ
ବସିଲେ ମହେନ୍ଦ୍ରଗିରି ଶିଖେ ବେନିଜଣ ।
ନାନା କଥାମାନ କୁହାକୁହି ସେ ହୁଅନ୍ତି
ସଂସାର ଧାରଣ ଶିରୀପତି ପଶୁପତି ।
ଦୁହେଁ ବସିଅଛନ୍ତି ଯେ ଏକାସନ ହୋଇ
ଅଦ୍‌ଭୂତେ କଜ୍ଜାସୁର ମିଳିଲାକ ଯାଇଁ ।
ବିବିଧ ବୀରବେଶ ଯେ ହୋଇଛି ଦାନବ
ସ୍ୱର୍ଗପୁରେ ପଶି ରଣେ ଜିଣିଲା ବାସବ ।
ନାନା ଶସ୍ତ୍ରମାନ କରେ ଅଛି ବୀର ଘେନି
ଦାନବର ଭାରାରେ ଯେ କମ୍ପଇ ମେଦିନୀ ।
ହରିହରଙ୍କୁ ସେ ଚାହିଁ ପଚାରଇ ହସି
କାହୁଁ ଆସି ତୁମ୍ଭେ ଦୁହେଁ ଅଛ ଏଥେ ବସି ।
ବୁଭୁକ୍ଷିତ ମୁଁ ଜଗତଯାକ ବୁଲି ବୁଲି
ତୁମ୍ଭଙ୍କୁ ଦେଖିଣ ମନେ ଆନନ୍ଦ ହୋଇଲି ।
ଆହାର ନିମନ୍ତେ ମୁହିଁ ବୁଲଇ ନିରତେ
ତୁମ୍ଭଙ୍କୁ ଦେଖି ବିଚାର କରିଛି ମୁଁ ଚିତ୍ତେ ।
ଆଜ ଭକ୍ଷି ସୁସ୍ଥ ମୁହିଁ କରିବି ମୁଁ କାୟ
ଏତେ ବୋଲି ରଡ଼ି ଏକ ଛାଡ଼ିଲା ଦୁର୍ଜୟ ।
ରେରେକାର ଧ୍ୱନି କରି ଆସିଲା ଫୁଙ୍କାରି
ଦାନବର ରଡ଼ିଘାତେ କମ୍ପେ ବସୁନ୍ଧରୀ ।
ରଡ଼ି ଛାଡ଼ି ଗଦାଧରି ଆସି ବୀରମଣି
ହରିହରଙ୍କ ଉପରେ ପ୍ରହାରିଲା ଆଣି ।
ଆସନକୁ ଛାଡ଼ି ଉଭା ହେଲେ ହରିହର
ଦାନବ ଗଦା ପଡ଼ିଲା ପର୍ବତ ଉପର ।
ସାତତାଳ ଯାଏ ପଶିଗଲା ଗଦାଘାତ
ଦେଖି ଗରୁଡ଼ ପିଠିରେ ବିଜେ ଜଗନ୍ନାଥ ।
ବୃଷଭ ପିଠିରେ ବେଗେ ବିଜେ କଲେ ହର
ଦୁଇଜଣ ଧଇଲେକ କରେ ଧନୁଶର ।
ଦନୁଜ ଧଇଲା ତାହା ଦେଖି ଧନୁର୍ବାଣ
ଅସ୍ତ୍ର ଶସ୍ତ୍ର ଘେନି ତହିଁ ଆରମ୍ଭିଲେ ରଣ ।
ପଞ୍ଚବାଣ ସେ ଦାନବ ଧନୁରେ ପୂରାଇ
ଶ୍ରୀହରିଙ୍କ ଉପରକୁ ବିନ୍ଧିଲା ନିଠାଇ ।
ଦେଖି ନାରାୟଣ ତାଙ୍କୁ ପ୍ରତିଶର କଲେ
ଦାନବର ଅସ୍ତ୍ର ସବୁ କାଟି ପକାଇଲେ ।
ଦେଖି ଦାନବ ପର୍ବତଶର ବେଗେ ଧରି
ବିନ୍ଧିଦେଲା ମହାରାଗେ ଆକର୍ଣ୍ଣ ଓଟାରି ।
ଛେଦିଲେ ତା ବଜ୍ରଶର ଘେନି ଦେବହରି
ପୁଣି ନାରାଚ ବିନ୍ଧିଲେ ଦେବ ଚକ୍ରଧାରୀ ।
ବିନ୍ଧନ୍ତି ପିନାକ ଶାର୍ଙ୍ଗ ହରିହର ବାଣ
ଦାନବରାଜା ନାରାଚ ବିନ୍ଧେ ଅପ୍ରମାଣ ।
ବିରଞ୍ଚିର ବଳେ ବଳୀ ସେ ଦାନବ ବୀର
ବରଷାର ଧାରାପରି ବିନ୍ଧୁଅଛି ଶର ।
ଘୋର ଶବଦ କରିଣ ଗୁଣକୁ ଟଙ୍କାରି
ନାରାଚର ତେଜରେ ଯେ ତୁଟିଲା ତିମିରି ।
ହରିହର ବେନି କୋପେ କରୁଛନ୍ତି ରଣ
ନାରାଚ ବିନ୍ଧନ୍ତି କରି ଶବ୍ଦ ଗୁରୁଟାଣ ।
ବିନ୍ଧିଲା ସେ କଜ୍ଜାସୁର କୋପେ ଲକ୍ଷେଶର
ଗରୁଡ଼ ଡେଣାରେ ବାଜି ସବୁ ହେଲା ଚୁର ।
ଶାରଙ୍ଗ ଧନୁର ବାଣ ଯୋଚି ଜନାର୍ଦ୍ଦନ
ଦାନବର ଉପରକୁ କରନ୍ତେ ସନ୍ଧାନ ।
ଦେଖିଲେକ ଦାନବର ଛେଦିଲା ଝଟତି
ବିନ୍ଧିଲେକ ପଞ୍ଚଶିଖ ବାଣ ପଶୁପତି ।

ଦେଖିଲା ଦୈତ୍ୟ ନାରାଚ ଆସେ ଗଗନରୁ
ପ୍ରତିଅସ୍ତ୍ର କଲା ବାଣ ନାମେ କଳ୍ପତରୁ ।
ଦୁଇଶସ୍ତ୍ର ବାଟ ମଧ୍ୟେ ହେଲେ ଯାଇ ଭେଟ
ଦୁହିଙ୍କର ଧ୍ୱନି ତେଜ ଅତ୍ୟନ୍ତ ଉତ୍କଟ ।
ଘୋର ଧ୍ୱନି ଉଠିଲାକ ତହୁଁ ବେନି ପକ୍ଷେ
ଦେବତାମାନେ ଦେଖିଲେ ଆସି ଅନ୍ତରୀକ୍ଷେ ।
କୁବେର ବରୁଣ ଚନ୍ଦ୍ର ସୂର୍ଯ୍ୟ ବିଶ୍ୱଦେବା
ତେତିଶ କୋଟି ଦେବତା ସହିତେ ମଘବା ।
ଇନ୍ଦ୍ର ପଚାରିଲେ ସୁରଗୁରୁ ମୁଖ ଚାହିଁ
ଯୁଦ୍ଧ କରୁଛନ୍ତି କିଏ କହ ତାରାସାଇଁ ।
ବୃହସ୍ପତି ବୋଇଲେ ହେ ଶୁଣ ପୁରନ୍ଦର
ହରିହର ସଙ୍ଗେ କଳ୍ପାସୁରର ସମର ।
ଇନ୍ଦ୍ର ବୋଇଲେ ଆମ୍ଭର ତେବେ ସଜ ହୁଅ
ସମସ୍ତ ଦେବତା ବେଗେ ବାହନ ଆରୋହ ।
ଯେ ଯାହା ଆୟୁଧମାନ ଆସ କରେ ଘେନି
ସଜହୋଇ ଆସନ୍ତୁ ମୋ ସକଳ ସଇନି ।
କହିଲେକ ମାତଳିକି ଚାହିଁ ସୁନାସୀର
ଐରାବତ ଗଜବର ବେଗେ ସଜକର ।
ଗନ୍ଧର୍ବମାନଙ୍କୁ କହ ଆମ୍ଭନାମ ଧରି
ଉଚ୍ଚୈଃଶ୍ରବା ଅଶ୍ୱବର ଆଣ ସଜକରି ।
ଧାଇଁଲେ ଇନ୍ଦ୍ରର ଆଜ୍ଞା ପାଇ ସର୍ବ ସୈନ୍ୟ
ସଜ ହୋଇଣ ଚଢ଼ିଲେ ଯେ ଯାହା ବାହନ ।
ଯାହାର ଯେ ଶସ୍ତ୍ର ତାହା ବେଗେ ଧର ଯାଇ
ବୋଲନ୍ତି ଯେ ଦେବତାଙ୍କୁ ଚାହିଁ ସୁରସାଇଁ ।
ଆହେ ଦେବଗଣ ତୁମ୍ଭେ ଆମ୍ଭ ବାକ୍ୟ ଶୁଣ
କଳ୍ପାସୁର ସଙ୍ଗେ ଯୁଦ୍ଧ ହର ନାରାୟଣ ।
ସ୍ୱଭାବେ ସେହି ଦଇତ୍ୟ ସବୁଙ୍କର ଶଲ
ଏକାଳେ ବେଢ଼ି ମାରିବା ତେବେ ଆମ୍ଭେ ଚାଲ ।
ବୃହସ୍ପତି ବୋଇଲେକ ସାଜିଲୁଣି ସୈନ୍ୟ
କଳ୍ପାକୁ ଯେ ଜିଣିବାକୁ ନୋହିବ ଭାଜନ ।
ମାରି ନ ପାରିବା କାଳେ ଆସିବା ପଳାଇ
ସ୍ୱର୍ଗ ସହିତେ ଦାନବ ନେବଟି ଛଡ଼ାଇ ।
ଇନ୍ଦ୍ର ବୋଇଲେ ଭୋ ଗୁରୁ ନ କହ ଏମନ୍ତ
ତା ତୁଲେ ଯୁଦ୍ଧ କରନ୍ତି ଦେବ ଜଗନ୍ନାଥ ।
ଆବୋରି ଅଛନ୍ତି ହରିହର ଦୁହେଁ ରଣ
ଦୁଷ୍ଟ କଳ୍ପ ଦାନବର ରହିବକି ପ୍ରାଣ ।
ମନ୍ତ୍ରୀକି ଏମନ୍ତ କଥା କହି ସୁରପତି
ମହୀନ୍ଦ୍ର ପର୍ବତ ତଳେ ଯାଇଣ ମିଳନ୍ତି ।
କଳ୍ପାସୁର ତୁଲେ ଯୁଦ୍ଧ ନାରାୟଣ ହର
ପ୍ରବେଶିଲେ ଦୈବସୈନ୍ୟ ତୁଲେ ସୁରେଶ୍ୱର ।

ଦାନବକୁ ମାର ବୋଲି ଶୁଭେ ଘୋର ଧ୍ୱନି
ନାରାଚ ବୃଷ୍ଟି କଲେ ସେ ଦ୍ରୋଣ ମେଘ ଜାଣି ।
ସକଳ ଦେବ ମିଳିଣ ବିନ୍ଧିଲେକ ଶର
କଳ୍ପାସୁର ଦେହେ ବାଣ ପଡ଼େ ନିରନ୍ତର ।
ପର୍ବତେ ବିନ୍ଧିଲେ ଶର ଯେ ସନକ ହୋଇ
ତେସନେ ଦାନବ ଅଙ୍ଗେ ପଡ଼ି ଉପୁଡ଼ଇ ।
ଆଦିତ୍ୟର ବରେ ଦୈତ୍ୟବର ମହାବଳ
ଦେବସୈନ୍ୟ ଡାକନ୍ତି ଯେ ହୋଇ କୁତୁହଳ ।
ଗଦା ଶଲ୍ୟ ଭାଲ କାତି ଶକତି ମୁଦ୍‌ଗର
କୁନ୍ତ ଅସିବର ପାଶ ଅଙ୍କୁଶ ତୋମର ।
ପର୍ବତ ଭୈରବ ନାଗପାଶ ମହାବାଣ
ବଜ୍ରମୁନା ବଜ୍ରଶର ବାବଲ ଯେ ଟାଣ ।
ମୋହପାଶ ଜଳପାଶ କାମ୍ୟ ନାମେ ଶର
ରୁଦ୍ରପାଶ ଯମପାଶ ଇନ୍ଦ୍ରାସ୍ତ୍ର ଆବର ।
ଘୋରବାଣ ଅଗ୍ନିବାଣ ଭଇରବୀ ବାଣ
ଅଧାଚନ୍ଦ୍ର କାଳଚନ୍ଦ୍ର ଭିନ୍ନ ଭିନ୍ନ ଜାଣ ।
ଅବିନାଶି କଳ୍ପତରୁ ବିଶ୍ୱାତ୍ରାସ ଶର
କାଳଶର କଳ୍ପତରୁ ବଜ୍ର ହିଁ ଆବର ।
ପବନା ବରୁଣ ମେଘଶର ବିଶ୍ୱଜିତ
ବ୍ରହ୍ମାଣ୍ଡ ଅନ୍ତକ ଶର ଶର ଶତ୍ରୁଜିତ ।
ମହୀଲତା ଶର ପୁଣି ଘୋର ଘଡ଼ ଘଡ଼ି
ବିଜୁଳି ନକ୍ଷତ୍ର ଘଡ଼ ଘଡ଼ି ଚଡ଼ଚଡ଼ି ।
ବାଳକଣ୍ଠ ନୀଳକଣ୍ଠ ବୀରଭଦ୍ର ଶର
କୁହୁକୁ କସ୍ତୁରୀବାଣ କୁହୁଡ଼ି ଆବର ।
ନାରାଚମାନଙ୍କ ଜ୍ୟୋତି ଅଗ୍ନି ଦିବାକର
ମାରନ୍ତି ଏ ବାଣମାନ ଅମର ନିକର ।
ଏ ବାଣମାନ ପଡ଼ନ୍ତେ ଦାନବର କାୟେ
ମତାଇ ଦାନବ ତାହା ପୁଷ୍ପବୃଷ୍ଟି ପ୍ରାୟେ ।
କୁବେରଙ୍କ ଗଦାବର ବରୁଣଙ୍କ ଫାଶି
ସମସ୍ତ ଦେବତା ସବୁ ଶର ଦେଲେ ପେଶି ।
କରନ୍ତି ସେ ଦାନବର ସଙ୍ଗେ ଘୋର ରଣ
ରୁଣ ଝୁଣ ଧ୍ୱନି ଶୁଭେ କୋଳାହଳ ପୁଣ ।
ଏକାକୀ ସେ ଦାନବର ସୈନ୍ୟ ନାହିଁ ସଖା
ଗଜଯୂଥ ମଧ୍ୟେ ଯେହ୍ନେ କେଶରୀ ନିଃଶଙ୍କା ।
ନାରଦ ବୀଣା ଯନ୍ତ୍ରକୁ ଘେନି ଯୁଦ୍ଧ ଦେଖି
ନାଚନ୍ତି ସେ ରେରେକାର କରି ହୋଇ ସୁଖୀ ।
କୁତୂହଳେ ନାଚନ୍ତି ଯେ ବୀଣାଯନ୍ତ୍ର ବାଇ
ହସନ୍ତି ସେ ବ୍ରହ୍ମମୁନି ତ୍ରିଦଣ୍ଡ ବୁଲାଇ ।
ଲାଗୁ ଲାଗୁ ବୋଲି ମୁନି ନାରଦ ହସିଲେ
କଳି ଧୋକଡ଼ିରୁ ଧୂଳି ମୁଠାଏ ମାଇଲେ ।

ଲାଗିଲା ବିଷମ ଘୋର ରଣ ଅପ୍ରମାଣ
ଦେଖନ୍ତି ଆନନ୍ଦ ମନେ ବ୍ରହ୍ମାର ନନ୍ଦନ ।
ବିମୁଖ ଦାନବ ରଣ ଦେଖି ହରିହର
ବିଚାରନ୍ତି ଘେନିବ ଏ ଦୈତ୍ୟ ତିନିପୁର ।
ଯେହେତୁ ଏହାର ଦେହେ ନ କାଟିଲା ବାଣ
କି ରୂପେ ଏ ଦାନବର ଘେନିବା ପରାଣ ।
ଏତେକ ବିଚାର କରି ଦେବ ମଧୁହାରୀ
ଶ୍ରୀକରରେ ସୁଦର୍ଶନ ଚକ୍ରଧର ଧରି ।
ହୁଙ୍କାର ଶବଦ କରି କୋପେ ନାରାୟଣ
ଦାନବଙ୍କୁ ମାଇଲେ ସେ କରି ମହାଟାଣ ।
ଅଶୀତ ସହସ୍ର ଧାର ଯେବଣ ଚକ୍ରର
ଦୈତ୍ୟର ହୃଦରେ ବାଜି ହୋଇଲା ଅନ୍ତର ।
ହସଇ ସେ ଟହ ଟହ ହୋଇ କଜ୍ଜାସୁର
ଦେଖି ମନେ ମନେ ବଡ଼ବ୍ୟଥା ଦେବଙ୍କର ।
ସୁରଗଣମାନେ ମନେ ଚିନ୍ତାଭର ହୋଇ
ସମର କରନ୍ତି ମିଳି ମହାରୋଷ ବହି ।
ବ୍ରହ୍ମାର ନନ୍ଦନ ହସ୍ତେ ତ୍ରିଦଣ୍ଡ ବୁଲାଇ
ଈଶ୍ୱରଙ୍କ କପିଳାସ କନ୍ଦରକୁ ଯାଇ ।
କାର୍ତ୍ତିକ ଗଣେଶ ନନ୍ଦି ମହାକାଳ ରୁଦ୍ର
ବୀରଭଦ୍ର ରଣଭଦ୍ର ଭୃଙ୍ଗୀ ମଣିଭଦ୍ର ।
ଏ ସକଳ ରୁଦ୍ରଗଣ ବସିଛନ୍ତି ମେଳେ
ନାରଦ ବାରତା ନେଇ ଦେଲେ ଏହିକାଳେ ।
ଶୁଣ ରୁଦ୍ରଗଣ ଏକ ପରମାଦ ବାଣୀ
ବଳଦ ଚଢ଼ିଣ ଯାଉଥିଲେ ଶୂଳପାଣି ।
ଦ୍ୱାରକାରୁ ଗରୁଡ଼ରେ ବିଜେ ବନମାଳୀ
ବାଟ ମଧ୍ୟେ ବେନି ଜନ ହେଲେ ମିଳାମିଳି ।
ଦୁହିଁଙ୍କର ଭେଟ ହେଲା ମହୀନ୍ଦ୍ର ପର୍ବତେ
ହରିହର ବସିଥିଲେ ସେଠାରେ ଏକାନ୍ତେ ।
ଏମନ୍ତ ସମୟେ କଜ୍ଜାସୁର ନାମେ ଦୈତ୍ୟ
ହରିହରଙ୍କୁ ଭେଟିଲା ହୋଇ ବୁଭୁକ୍ଷିତ ।
ଘୋର ଗର୍ଜ୍ଜନ କରି ସେ ଆବୋରିଲେ ରଣ
ଜିଣି ନ ପାରିଲେ ରଣେ ତାକୁ ବେନିଜନ ।
ଦେବ ମାନବ ଆଦି ଯେ ସୁର ପଶୁପତି
ତେତିଶ କୋଟି ସଇନ୍ୟ ଘେନି ସୁରପତି ।
ମହାଘୋର ଯୁଦ୍ଧ କଲେ ଦାନବ ସଙ୍ଗରେ
ଏହିକ୍ଷଣି ଆମ୍ଭେ ଦେଖି ଅଇଲୁ ଚକ୍ଷୁରେ ।
ଦାନବ ସଙ୍ଗେ ଯୁଝନ୍ତି ହୋଇ ଏକମୁଖ
ଦେବଗଣ ହରିହର ହେଲେଣି ବିମୁଖ ।
ପାର ଯେବେ ବେଗେ ଯାଇ ଆବୋରସେ ରଣ
ତକ୍ଷଣେ ବାହାର ହେଲେ ଶୁଣି ଶିବଗଣ ।

ଯେ ଯାହା ଆୟୁଧ ଧରି ହୋଇଲେ ବାହାର
ତକ୍ଷଣେ ଭେଟିଲେ ଯାଇ ରଣେ କଜ୍ଜାସୁର ।
ରେରେକାର କରିଦେଲେ ଭଇରବେ ରଡ଼ି
ମେରୁ ମନ୍ଦର ଗିରି କି ପଡ଼ିଲାକ ଝଡ଼ି ।
ଦାନବଙ୍କ ଉପରକୁ ମାଇଲେ ଯେ ଶର
ଯେସନ ଶ୍ରାବଣ ମାସ ବରଷାର ଧାର ।
ତେସନେ ଦାନବ ଅଙ୍ଗେ ପଡ଼ି ଶରମାନ
ବିମୁଖ ହୋଇଲେ ରଣେ ଦେବ ରୁଦ୍ରଗଣ ।
ଏଥୁ ଅନନ୍ତରେ କୋପେ ଦେବ ସୁରପତି
ଐରାବତ ଗଜ ଚଢ଼ି ଧାଇଁଲେ ତଡ଼ତି ।
ଗନ୍ଧର୍ବ ବଳକୁ ସଙ୍ଗେ ଘେନି ସୁନାସୀର
ରାକ୍ଷସ ଉପରେ ବଜ୍ର ମାଇଲେ ସତ୍ୱର ।
ଅଗ୍ନିଦେବତା ଉପରେ ମୁଦ୍ଗର ଘେନି
କୁବେର ମାଇଲେ ଗଦା ରତ୍ନବଳୀ ଆଣି ।
କାଳାନ୍ତକ ପରିଘକୁ ମାଇଲେ ନୈର୍ଋତ
ଯମଦେବତା ମାଇଲେ କାଳଦଣ୍ଡ ଅସ୍ତ୍ର ।
ମୃତ୍ୟୁଦେବତା ମାଇଲେ କୋପେ ମହାବାଣ
ବଜ୍ରାବଳି ଗଦାବର ମାଇଲେ ବରୁଣ ।
ଗର୍ଜ୍ଜନ ଅସ୍ତ୍ର ମାଇଲେ ଦେବ ନିଶାକର
ମାଇଲେକ ସୂର୍ଯ୍ୟାବର୍ତ୍ତ ଶର ପ୍ରଭାକର ।
ଅନିର୍ବାର ଶକତିକୁ ମାଇଲେ ମଳୟ
ଗନ୍ଧର୍ବ ଶର ମାଇଲେ ବାସବ ତନୟ ।
ପବନ ଘେନି ମାଇଲେ ବରୁଣ ବାୟବ୍ୟ
ମାଇଲେକ କାଳଚକ୍ର ଘେନି ଭଇରବ ।
ଗର୍ଜ୍ଜନ ତର୍ଜ୍ଜନ ପୁଣି ଭଇରବୀ ବାଣ
ଦାନବଙ୍କୁ ମାଇଲେ ଯେ ପାର୍ବତୀ ନନ୍ଦନ ।
କାର୍ତ୍ତିକେୟ ମାଇଲେ ଯେ ରୁଦ୍ରକାଳ ଶର
ଦିଗ ଦହନ ଖଡ଼ଗ ମହାକାଳ ବୀର ।
ଭୃକୁଟୀ ମାଇଲେ କୋପେ ଗିରିଚୂଡ଼ା ବାଣ
ନନ୍ଦୀ ମାଇଲେକ ନନ୍ଦାବର୍ତ୍ତ ନାମ୍ନେ ବାଣ ।
ଜୟନ୍ତକ ପ୍ରହାରିଲା ଚକ୍ରମୂନା ଶର
ମଣିଭଦ୍ର ପ୍ରହାରିଲା ଶର ବିଶ୍ୱେଶ୍ୱର ।
ରୁଦ୍ରଦେବ ପ୍ରହାରିଲେ ତ୍ରିଶୂଳ ଶକତି
କୌମଦକୀ ଗଦାବର ମାଇଲେ ଶ୍ରୀପତି ।
ଦାନବର ଅଙ୍ଗେ ବାଜି ଏଡ଼େ ଏଡ଼େ ଶର
ତିଳେମାତ୍ର ନ ଭେଦିଲା ହସେ ଦୈତ୍ୟବର ।
ଦେଖି ଦେବଙ୍କର ବୁଦ୍ଧି ନ ସ୍ଫୁରଇ କିଛି
ନିଃଶ୍ୱାସକେ ଛାଡ଼ିଦେବ ବୋଲନ୍ତି ଶ୍ରୀବତ୍ସି ।
ଏ ଦୈତ୍ୟ ଆଦିତ୍ୟ ବରେ ଅଟଇ ଅମର
ନିଶ୍ଚେ ଦାନବ ନାଶିଲା ଜାଣ ତିନିପୁର ।

ଏହା ହେତୁ ନାଶଗଲା ନବଖଣ୍ଡ ସୃଷ୍ଟି
ଆଲୋକିକ ବରଯାଚିଦେଲେ ପରମେଷ୍ଠି ।
ଏସନକ ଭାଳୁଛନ୍ତି ହରି ମନେ ମନେ
କଜ୍ଜାସୁର ଧାଇଁ ଆସି ତାଙ୍କ ସନ୍ନିଧାନେ ।
ଦେବତାଙ୍କୁ ପ୍ରହାରଇ ଆୟୁଧେ ଅଶନି
ଇନ୍ଦ୍ର ଡରି ପଳାଇଲେ ସୁରଗଣ ଘେନି ।
ଭାଙ୍ଗିଲେକ ରୁଦ୍ରଗଣ ମନେ ହେଲା ଡର
ବୃଷଭ ଗରୁଡ଼ ଚଢ଼ି ଗଲେ ହରିହର ।
ଯେ ଯାହାର ପୁରକୁ ସେ କରଇ ଗମନ
ପଛେ ଦୈତ୍ୟ ଗୋଡ଼ାଉଛି ହୋଇ କୋପମନ ।
ପର୍ବତରେ ହରିହର ପଶିଲେ ପଳାଇ
କୋପେ ସେ ଦାନବ ରାୟ ଅଛଇ ଗୋଡ଼ାଇ ।
କାହିଁରେ ଯିବ ବୋଲି ସେ ରାକ୍ଷସ ଡାକଇ
ବନସ୍ତେ ଦୈତ୍ୟକୁ ସେ ଯେ ନିଅନ୍ତି କଢ଼ାଇ ।
ପଛ ନ ଛାଡ଼ଇ ଦୈତ୍ୟଯାଏ ଘନ ଘନ
ବାରୁଣାବନ୍ତେ ଉଠିଲେ ଯାଇ ବେନିଜନ ।
ରାକ୍ଷସ ଗୋଡ଼ାଇ ଅଛି ତାଙ୍କ ପଛକତି
ଅନ୍ତର ହେଲେ ଶ୍ରୀପତି ଦେବ ପଶୁପତି ।
ବୀରବେଶ ଛାଡ଼ି ତହିଁ ହୋଇଲେ ବ୍ରାହ୍ମଣ
ସେ ଦାନବ ଦେଖୁ ଦେଖୁ ହେଲେ ଅନ୍ତର୍ଦ୍ଧାନ ।
ତାହା ଦେଖି ଦାନବ ଯେ ବିଚାରଇ ଚିତ୍ତେ
କେଣେ ଚାଲିଗଲେ ବୋଲି ଚାହିଁ ଇତସ୍ତିତେ ।
ମନେ ମନେ ବିଚାରଇ ଚାଲିଯିବେ କାହିଁ
ଚଉଦ ଭୁବନେ ପଶି ଖୋଜିବଇଁ ମୁହିଁ ।
ଏତେ ବିଚାରି ଶ୍ରବଣା ଦଇତ୍ୟର ନାତି
କରେ ଘେନି ଅସ୍ତ୍ର ଶସ୍ତ୍ର କୋଦାଳ ଶକତି ।
ଡାକଇ ଦଇତ୍ୟ କେଣେ ଗଲ ବେନି ବୀରେ
ସମର୍ଥବନ୍ତ ବୋଲାଅ ବ୍ରହ୍ମାଣ୍ଡ ଭିତରେ ।
ନ ଶୁଣିଲା ପ୍ରାୟ ହୋଇଛନ୍ତି ହରିହର
କୂଟ କରିଣ ମାରିବି କରନ୍ତି ବିଚାର ।
ଏମନ୍ତ ସମୟେ ଶୁଣ ବୈବସ୍ୱତ ମନୁ
ସେ ପର୍ବତେ ବୁଲୁଛନ୍ତି ଆଦିତ୍ୟର ସୁନୁ ।
କରେ ଧନୁଶର ଧରି ଖୋଜେ ଗଣ୍ଡା ଜୀବ
ଏ ସମୟେ ଲୋଡ଼ି ଆସୁଥିଲା ସେ ଦାନବ ।
ଆଦିତ୍ୟର ନନ୍ଦନକୁ ଦୂରରୁ ଦେଖିଲା
ଏହାକୁ ପୁଚ୍ଛିବି ବୋଲି ମନେ ବିଚାରିଲା ।
ଡାକିଲା ରାକ୍ଷସ ଶୁଣ କିରାତରେ ତୁହି
ବେନିଜନେ ଯାଉଛନ୍ତି ଦେଖିଲୁ କି ନାହିଁ ।
କର୍ଣ୍ଣ ବୋଇଲେ ତାହାଙ୍କୁ ମୁହିଁ ଦେଖିନାହିଁ
ପଳାଇବା ଶତ୍ରୁକୁ ତୁ ଗୋଡ଼ାଉ କିମ୍ପାଇଁ ।
ଧର୍ମଶାସ୍ତ୍ର ତତ୍ତ୍ୱବିଧି ନାହୁଁ କିରେ ଶୁଣି
ପଳାଇବା ଶତ୍ରୁକୁ କି ଗୋଡ଼ାଇ କେ ହାଣି ।
ସକଳ ଧର୍ମ ଆବର ସୁକୃତ ତାହାର
ସମସ୍ତ ବିନାଶ ଯାଇ ପାଏ ନର୍କଘୋର ।
ଯେବେ ସେହି ପଳାଇଲେ ନ ପାରି ଯୁଦ୍ଧରେ
ତାହାଙ୍କୁ ଗୋଡ଼ାଉ ତୁହି କହ କି ପ୍ରକାରେ ।
ଶାସ୍ତ୍ରତତ୍ତ୍ୱ ଶୁଣିଲୁଣି ଫେରିଯାରେ ବୀର
ଶୁଣିଣ ଦାନବ ହେଲା କୋପେ ଥରହର ।
ବୋଇଲା କିରାତ ଅଟୁ ବାଳୁତ କି ତୁହି
ମୋହର ଶତ୍ରୁକୁ ଦେଖି ଛାଡ଼ିଲୁ କିମ୍ପାଇଁ ।
ତାହାଙ୍କ ପାଳଟ ଭକ୍ଷ୍ୟ ହୋଇଲୁ ତୁ ଜାଣ
ମୋହର ହାତରେ ତୋର ନିଶ୍ଚୟ ମରଣ ।
ଏତେ କହି ସେ ଦାନବ ମାଇଲା ଶକତି
ଅନିର୍ବାର ସରେ କର୍ଣ୍ଣ ଛେଦିଲା ଝଟତି ।
ଦେଖି ଦାନବ ଛାଡ଼ିଲା କୋପେ ଘୋର ରଡ଼ି
ଗିରି କନ୍ଦର କି ନାଦେ ପଡ଼ିଲାକ ଝଡ଼ି ।
କୁଦାଳ ଆୟୁଧ କୋପେ ବୁଲାଇ ପ୍ରହାରେ
କାଳାନ୍ତକ ଶର କର୍ଣ୍ଣ ବିନ୍ଧିଲା କୋପରେ ।
ଦୈତ୍ୟର କୁଦାଳେ ଯାଇଁ ପଡ଼ିଲା ସେ ଶର
କୁଦାଳ ଅସ୍ତ୍ରରେ ବାଜି ପଡ଼ିଲା ଭୂମିର ।
ଦେଖି ମନେ ବିଚାରଇ ଆଦିତ୍ୟ ନନ୍ଦନ
ଧନ୍ୟ ଏ ଦାନବ ଅଟେ କାହାର ସନ୍ତାନ ।
ଧନ୍ୟ ଏହାର ଆୟୁଧ ବହୁଅଛି କରେ
ନ ଭାଙ୍ଗିଲା ଏହି ଅସ୍ତ୍ର କାଳାନ୍ତକ ଶରେ ।
ଏତେ ବିଚାରି ଘେନିଲା ଅମୋଘ ଶକତି
ମନ୍ତ୍ର ପଢ଼ିଣ ମାଇଲା କଶ୍ୟପର ନାତି ।
ଦାନବ ଉପରେ ବାଣ ପଡ଼ିଲାକ ଯାଇ
ଅଗ୍ନି ଝଲକି ଦାନବ ଅଙ୍ଗରୁ ଉଠଇ ।
ଦେହେ ତିଳେ ନ ଭେଦିଲା ପଡ଼ିଲା ଭୂମିରେ
ପୁଣି ବଜ୍ର ଅସ୍ତ୍ର ଧରି ବିନ୍ଧେ କୋପଭରେ ।
ଦୈତ୍ୟର ଅଙ୍ଗରେ ବାଣ ଭେଦି ନ ପାରିଲା
ମୁନ ମୋଡ଼ିହୋଇ ଆସି ଭୂମିରେ ପଡ଼ିଲା ।
ଦେଖି ଆଦିତ୍ୟ ତନୟ ଭୟେ ଥରହର
କଦଳୀ ପତ୍ର ପରାୟ କମ୍ପଇ ଶରୀର ।
ବାଛି ଶରେକ ତୂଣୀରୁ କଲାକ ବାହାର
ମହାତେଜ ଅନଳର ଜ୍ୟୋତି ପରଖର ।
ବିକାଶିଲା ସୂର୍ଯ୍ୟର କି ସହସ୍ର କିରଣ
ତୂଣୀରୁ ବାହାର କଲା ସହସ୍ରେକ ମୁନ ।
ଗୁଣେ ବସାନ୍ତେ ତା ମୁନ ଅୟୁତେଜ ହେଲା
କୋପେ କର୍ଣ୍ଣବୀର ମନେ ମନ୍ତ୍ର ସୁମରିଲା ।

କର୍ଣ୍ଣ ପରିଯନ୍ତେ ଟାଣି ଓଟାରନ୍ତେ ବୀର
ଦଶ ଅୟୁତ ହୋଇଲା ମୁନ ସେ ବାଣର ।
ଫିଟନ୍ତେ ସେ ନାରାଚର ହେଲା ଲକ୍ଷେ ମୁନ
ଗର୍ଜନ କରି ଚଳନ୍ତେ କୋଟିଏ ବଦନ ।
ପଡ଼ିବାର ବେଳେ ମୁନ ଅର୍ବୁଦେ ହୁଅଇ
ଜକଡ଼ା ମାସେ କି ଦ୍ରୋଣ ମେଘ ବରଷଇ ।
ରାକ୍ଷସ ଉପରେ ଯହୁଁ ପଡ଼ିଲା ସେ ଶର
ତିଳବୃଷ୍ଟି ହୋଇଲା କି ପର୍ବତ ଉପର ।
ଦେହେ ବାଜିବାକୁ ସ୍ଥାନ ନ ହୋଇଲା ବାଣ
ଧନ୍ୟରେ ଦାନବ ବୋଲି ବୋଲେ ବୀରକର୍ଣ୍ଣ ।
ପୁଣି କର୍ଣ୍ଣ ଅଗ୍ନିଶର ବିନ୍ଧିଲା ସତ୍ୱର
ତୁଣ୍ଡକୁ ବିସ୍ତାର କରି ଗିଳିଲା ଅସୁର ।
ଅଗ୍ନିଶର ଯହୁଁ ଗିଳିଦେଲା ଦୈତ୍ୟନାହା
ନୟନ ତରାଟି ବୀର ହଲାଇଲା ବାହା ।
ପଥରେକ ଘେନି ଦୈତ୍ୟ ମାଇଲା ତଡ଼ତି
ବଜ୍ରଶରେ ଛେଦିଲା ତା କର୍ଣ୍ଣ ମହାକ୍ଷତ୍ରୀ ।
ବୃକ୍ଷ ଉପାଡ଼ି ପିଟିଲା ଦୈତ୍ୟ ବୀରବର
କତୁରୀ ବାଣେ ଛେଦିଲା ଆଦିତ୍ୟ କୁମର ।
ବୃକ୍ଷ ଛେଦି ପୁଣି କର୍ଣ୍ଣ ପର୍ବତାସ୍ତ୍ର ମାରେ
ଅଙ୍ଗୁଳି ପାତି ବୀର ତା ସଂହରଣ କରେ ।
ଶର ମନ୍ତ୍ରି ଅସ୍ତ୍ର ପୁଣି ବିନ୍ଧେ କର୍ଣ୍ଣବୀର
ପଡ଼ିଲା ନାରାଚ ଯାଇ ଦୈତ୍ୟର ଉପର ।
ମୁନ ମୋଡ଼ିହୋଇ ଯାଇ ଶର ପଡ଼େ ଝଡ଼ି
ନିର୍ଘାତ ବାଣେ ବିନ୍ଧିଲା କର୍ଣ୍ଣ ତଡ଼ବଡ଼ି ।
ଦାନବ ଶରୀରେ ଯାଇ ପଡ଼ିଲାକ ବାଣ
ଟହ ଟହ ହୋଇ ହସେ ସେ ଦନୁଜ ରାଣ ।
ବୋଇଲା ମାନବ ତୋର ପୂରିଲା ଆୟୁଷ
ତୋତେ ରଖିବାକୁ ନାହିଁ ପୁର ଚତୁର୍ଦ୍ଦଶ ।
ଏତେ ବୋଲି ସେ ଅସୁର ବୀର ମହାବଳୀ
କୁଦାଳ ଆୟୁଧ ମାରେ ବେନିଭୁଜେ ତୋଳି ।
କର୍ଣ୍ଣର ଅଙ୍ଗେ ବାଜିଲା ଯହୁଁ ମହାଶର
ଭୂମିରେ ପଡ଼ିଲା ଜ୍ଞାନ ହାରି କର୍ଣ୍ଣବୀର ।
ତା ଦେଖି ଦାନବବୀର ଧାଇଁଲା ତଡ଼ତି
ଦେଖିବା ନା କିରାତର କେମନ୍ତ ମୁରତି ।
ଏତେ ବିଚାରି ଆଗରେ ଯାଇ ତାର ମିଳି
ଧନୁଶର ଧରି ପଡ଼ିଅଛି ମହାବଳୀ ।
ଦାନବ ବୋଇଲା ଆହେ ଧନ୍ୟ ତୋର ପିତା
ଧନ୍ୟ କିରାତରେ ତୋର ଗର୍ଭଧାରୀ ମାତା ।
ଧନ୍ୟ ଯେବଣ ଦେଶେ ତୁ ହୋଇଲୁରେ ଜାତ
ଧନ୍ୟ ତୋ ସାମର୍ଥ୍ୟ ଧନ୍ୟ ଧନ୍ୟ ବଳବନ୍ତ ।
ଧନ୍ୟ ତୋର ଗୁରୁ ଧନ୍ୟ ତୋର ବିଦ୍ୟାବଳେ
ମୋର ତୁଲେ କଲୁ ଯୁଦ୍ଧ ରହି ଏତେବେଳେ ।
ଧନ୍ୟରେ କିରାତ ମୋର ହସ୍ତେ ଗଲୁ ନାଶ
ଏତେ ବିଚାରି ମନରେ ହୋଇଲା ହରଷ ।
ବୋଇଲାକ ଆଦିତ୍ୟର ହେଲା ଅସ୍ତକାଳ
ସ୍ନାନ କରିବି ମୁଁ ଯାଇ ଘଶି ନଦୀଜଳ ।
ପଛେ ଏହାର ମାଂସକୁ ଭକ୍ଷିବଇଁ ମୁହିଁ
ଧନୁ ଶରକୁ ଛଡ଼ାଇ ନେଲା ଦୈତ୍ୟସାଇଁ ।
ସେ ପର୍ବତ ତଳେ ବହେ ବାରୁଣ ଯେ ନଈ
ସେ ନଦୀକୁ ସ୍ନାନ କରିବାକୁ ସେ ଗମଇ ।
ଯହୁଁ ବୋଇଲା ଭକ୍ଷିବି ତୋର ରକ୍ତ ମାଂସ
ଆକାଶେ ଜାଣିଲେ ତାହା କଶ୍ୟପର ଶିଷ୍ୟ ।
ବାକ୍ୟ ଦେବୀଙ୍କୁ ଚିନ୍ତିଲେ ମନରେ ଆଦିତ୍ୟ
ଭୋଦେବୀ ସରସ୍ୱତୀ ଗୋ ଛେଦିବା ଆରତ ।
ଜୟ ତୁ ଅନାଦି ମାଗୋ ବ୍ରହ୍ମାର କୁମାରୀ
ନାରାୟଣ ପୁରୁଷର ମନ ନେଉ ହରି ।
ବୀଣାସ୍ୱର କୁତୁହଳେ ଗାନରସ ବାଣୀ
ଅନାଦି ମାଧବ ମୋହଗଲା ତାହା ଶୁଣି ।
ହାହା ହୁହୁ ଗନ୍ଧର୍ବାଦି ଗାୟକ ତୁମ୍ବର
ପାଦପଦ୍ମ ସେବା କରୁଥାନ୍ତି ନିରନ୍ତର ।
ବୃହସ୍ପତି ସନକ ଯେ ସନାତନ ବ୍ୟାସ
ତୋ ପାଦରେ ମୁନିଗଣ ସେବନ୍ତି ଅଶେଷ ।
ତୁ ଏବେ ସୁଦୟା ମାଗୋ କରି ବାକ୍ୟେଶ୍ୱରୀ
ଏ ଶାରଳା ଦାସ ତୋର ପାଦ ସେବାକରି ।
ଆଦିତ୍ୟ ଚିନ୍ତନ୍ତେ ଉପଗତ ସରସ୍ୱତୀ
ସପ୍ତସ୍ୱରର ବୀଣା ଶ୍ରୀହସ୍ତେ ଘେନିଛନ୍ତି ।
ଛାମୁରେ ଯେ ଉଭାହୋଇ କହନ୍ତେ ଏମନ୍ତେ
ଯେ ତିମିର ବିଦାରଣ ଚିନ୍ତିଲ କିମର୍ଥେ ।
କହନ୍ତି ଯେ ଦିବାକର ଶୁଣିମା ଗୋ ମାତ
କଜ୍ଜାସୁର ଯୁଦ୍ଧେ ମାରି ଗଲା ମୋର ସୁତ ।
ସ୍ନାନ କରି ଆସି ତାହା କରିବ ଭକ୍ଷଣ
କଣ୍ଠେ ବସି ଦୟାକର ମାତା ତତକ୍ଷଣ ।
ଆଦିତ୍ୟର ବଚନେ ସେ ଦେବୀ ଗୋସାମଣି
ଦୈତ୍ୟର କଣ୍ଠରେ ବିଜେ କଲେ ଠାକୁରାଣୀ ।
ସ୍ନାନ କରି ଆସି କୂଳେ ରକ୍ଷ କୁଳବର
ପଡ଼ିଲାକ ନିଜପୁର ମନରେ ତାହାର ।
ମନେ ବିଚାରଇ ଆଗ ଯିବି ନିଜପୁର
ପଛେ ଆସି ଭକ୍ଷିବଇଁ ମାଂସକୁ ଏହାର ।
ଏମନ୍ତ ବିଚାରି ମନେ ରକ୍ଷକୁଳପତି
ଆପଣାପୁରେ ପ୍ରବେଶ ହୋଇଲା ଝଟତି ।

ଏଥି ଉତ୍ତାରେ ପାହିଲା ସେ ଦିନ ରଜନୀ
ଗଗନରେ ଉଦେ ହେଲେ ପ୍ରଭୁ ଦିନମଣି ।
ସଂଗ୍ରାମେ ସେ କର୍ଣ୍ଣ ପଡ଼ିଥିଲା ଶରଘାତେ
ଗଣ୍ଡସ୍ଥଳେ ଆଦିତ୍ୟର କିରଣ ଲାଗନ୍ତେ ।
କୁଣ୍ଡଳୁ ଅମୃତ ଝରି ପଶିଲା ମୁଖରେ
ମୋହ ତେଜି କର୍ଣ୍ଣବୀର ଉଠିଲା ସତ୍ୱରେ ।
ତକ୍ଷଣେ କର୍ଣ୍ଣ ପ୍ରାପତ ହେଲା ନିଜ ପ୍ରାଣ
ମୋହ ତେଜି ବୀରବର ଉଠିଲା ତକ୍ଷଣ ।
ଧନୁ ତୂଣୀର ଲୋଡ଼ଇ ବୀର ଗୁଣଗ୍ରାହୀ
ଦେଖିଲା ଧନୁ ଆବର ତୂଣୀର ହିଁ ନାହିଁ ।
ମନେ ବିଚାରିଲା ନେଲା ଦୈତ୍ୟକୁଳ ରାଣ
ଶିର ଛେଦନ ନ କରି ରକ୍ଷାକଲା ପ୍ରାଣ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ଏମନ୍ତବେଳେ ଶ୍ରୀପତି ଦେବା ପଶୁପତି ।
ବ୍ରାହ୍ମଣ ରୂପ ଧାରଣ କରି ବେନିଜନ
ବିଜୟ ଯେବଣଠାରେ ଅଛି ବୀରକର୍ଣ୍ଣ ।
ବ୍ରାହ୍ମଣଙ୍କୁ ଦେଖି ଉଠି ବେଗେ ରାଧାସୁତ
ପାଦେ ପ୍ରଣମିଲା ଉଭାହେଲା ଯୋଡ଼ିହସ୍ତ ।
କହଇ ବିପ୍ରେ ଏ ବନେ ଅଇଲେ କିମ୍ପାଇଁ
କଲ୍ମାସୁର ନାମେ ଏକ ଦାନବ ଅଛଇ ।
ମୋହର ସଙ୍ଗେ ଯେ ଯୁଦ୍ଧ କଲା ଅପ୍ରମେୟ
ମୋତେ ମାରି ଧନୁଦ୍ରୋଣ ନେଲା ଦୈତ୍ୟରାୟ ।
ମୋହର ମାଂସ ଭକ୍ଷଣେ ଅଛି ତାର ମନ
ଦେଖିଲେ ତୁମ୍ଭଙ୍କୁ ନିଶ୍ଚେ କରିବ ଭୋଜନ ।
ସଜ ଶୁଦ୍ଧମାଂସ ଯେବେ ପାଇବ ଯୁକତେ
ବାସି ମୃଗମାଂସ ସେହି ଭକ୍ଷିବ କେମନ୍ତେ ।
କ୍ଷଣେ ହେଁ ନ ରହି ଚାଲ ଯିବାକ ପଳାଇ
ଘୋର ବନସ୍ତରେ ଆମ୍ଭେ ପଶିବାକ ଯାଇ ।
ଶ୍ରୀହରି ବୋଇଲେ ଆମ୍ଭେ ସ୍ୱଭାବେ ବ୍ରାହ୍ମଣ
ଥିଲେ ମଲେ ଆମ୍ଭଙ୍କୁ ତ ନାହିଁ ନା ଦୂଷଣ ।
ତୁ ଯେ ମହାବୀର ଅଟୁ କ୍ଷତ୍ରିକୁଳେ ଜାତ
ଶତ୍ରୁମୁଖୁ ପଳାଇଲେ ହେବୁ ନର୍କପ୍ରାପ୍ତ ।
କର୍ଣ୍ଣ ବୋଇଲେ ମୋହର ନାହିଁ ଧନୁର୍ବାଣ
କି ଘେନି ରଣ କରିବି ଥିଲେ କ୍ଷତ୍ରିପଣ ।
ବ୍ରାହ୍ମଣ ବୋଇଲେ ତୋତେ ଧନୁର୍ବାଣ ଦେଲେ
ଯୁଦ୍ଧକରି ପାରିବୁ କି ସେ ଦୈତ୍ୟର ତୁଲେ ।
କର୍ଣ୍ଣ ବୋଇଲେ ଆମ୍ଭେ ନ ଜାଣୁ ଅନ୍ୟ ଶିକ୍ଷା
ପରଶୁରାମଙ୍କ ଶର ଦ୍ରୋଣଙ୍କର ଦୀକ୍ଷା ।
ବିପ୍ରେ ବୋଇଲେ ଯହୁଁରେ ମାରିବ ବଇରୀ
ସେ ଉତ୍ତମ ଗୁରୁଧର୍ମ ଶାସ୍ତ୍ରରେ ବିଚାରି ।
ବଇରୀଙ୍କୁ ମାରି ପଛେ ରଖ ଗୁରୁଧର୍ମ
ଗୁରୁ ପ୍ରଶଂସା କରନ୍ତି ଦେଖି ପରାକ୍ରମ ।
ରାଧାର ନନ୍ଦନ ବୋଲେ ବାକ୍ୟ ଅନୁମତେ
ତୁମ୍ଭେ ବିପ୍ର ଧନୁଶର କାହୁଁ ଦେବ ମୋତେ ।
ଯେବେ ଅନୁଗ୍ରହ କରି ଦେବ ଧନୁର୍ବାଣ
ସୁମରିଲେ ଯେ ଶାରଙ୍ଗ ଧନୁ ନାରାୟଣ ।
ତତକ୍ଷଣେ ଧନୁ ଆସି ହୋଇଲା ପ୍ରବେଶ
ତାହାଦେଖି କର୍ଣ୍ଣବୀର ହୋଇଲା ହରଷ ।
ହରିହର ଦୁହେଁ ଛେଦି ଦୁହିଁଙ୍କ ଅଙ୍ଗୁଳି
ନାରାଚ କରି ନିର୍ମାଣ କଲେ ଦୁହେଁ ମିଳି ।
କର୍ଣ୍ଣକୁ କହିଲେ ତୁ ହୋ ଘେନ ବେନିବାଣ
ଦାନବପତି ସଙ୍ଗେ ତୁହି କଲାବେଳେ ରଣ ।
ହୃଦକୁ ବିନ୍ଧିବୁ ତୁହି ଶୁକ୍ଳବର୍ଣ୍ଣ ଶରେ
କୃଷ୍ଣବର୍ଣ୍ଣ ନାରାଚକୁ ବିନ୍ଧିବୁ ନାଭିରେ ।
ତେବେ ଦଇତ ଛାଡ଼ିବ ତାର ନିଜ ପ୍ରାଣ
ଏମନ୍ତ ବେଳେ ମିଳିଲା ଆସି ଦୈତ୍ୟରାଣ ।
ରେରେକାର କରି କୋପେ ଡାକଇ ରାକ୍ଷସ
ହରିହର ବେନି ଦେବ ହୋଇଲେ ଅଦୃଶ୍ୟ ।
ରେରେ କିରାତ ବୋଲିଣ ଡାକେ ଦୈତ୍ୟରାୟେ
ପଥର ବୃଷ୍ଟି କଲା ସେ କର୍ଣ୍ଣର ହୃଦୟେ ।
ଦେଖି ବୀରକର୍ଣ୍ଣ କୋପେ ଧନୁ ଧରି କରେ
ନାରାଚକୁ ବସାଧଲା ଧନୁର ଗୁଣରେ ।
କର୍ଣ୍ଣ ପରିଯନ୍ତେ ତାକୁ ଆଣିଲା ଓଟାରି
ମନ୍ତ୍ର ସୁମରି ବିନ୍ଧିଲା ବାଣ ଯତ୍ନକରି ।
ଦୃଷ୍ଟିର ଗୋଚରେ ଥାଇ ସେହି ରାଧାସୁତ
ହୃଦୟ ନାଭିକୁ ବିନ୍ଧିଦେଲା ବେନି ଅସ୍ତ୍ର ।
ନାଭି ହୃଦୟ ଫୁଟିଣ ଗଲା ବେନି ଜାଣ
ଅସ୍ତ୍ର ସଙ୍ଗେ ବାହାରିଲା ଦଇତ୍ୟର ପ୍ରାଣ ।
ପଡ଼ିଲା ଘୋର ଗର୍ଜନ କରି ଦୈତ୍ୟବୀର
ନିର୍ଭୟ କରି ଆଣିଲା ସେହି ବେନିଶର ।
ଧନ୍ୟ ଧନ୍ୟ କର୍ଣ୍ଣ ବୋଲି ବୋଇଲେ ଅମରେ
କୁସୁମ ବରଷା କଲେ ରାଧାସୁତ ଶିରେ ।
କଲ୍ମାସୁର ଯେତେ କଷ୍ଟ ଦେବତାଙ୍କୁ ଦେଲା
ଆଦିତ୍ୟର ନନ୍ଦନ ତ ସବୁ ନାଶ କଲା ।
ମନୁ ବୋଇଲେ ଭୋ ମୁନିବର କହ ମୋତେ
କଲ୍ମାସୁର ଯୁଦ୍ଧକଥା କହିଲ ଅଗ୍ରତେ ।
କାହା ଆୟୁଧେ ନୋହିଲା ଭେଦ ତାର କାୟ
କାହାକୁ ସେବି ପାଇଲା ବର ଦୈତ୍ୟରାୟ ।
ମୁନି ବୋଇଲେ ସେବିଲା ଦେବ ଦିବାକର
ନିରାହାରେ ବଞ୍ଚିଲା ସେ ସହସ୍ର ବଷର ।

ନିରଞ୍ଜନ ଦୀକ୍ଷାନେଇ ଶୂନ୍ୟେ କଲା ଧ୍ୟାନ
ଘୋର ତପ ଦେଖି ତୋଷେ କମଳ ଲୋଚନ ।
ବୋଇଲେ ରେ କଜ୍ଵାସୁର ମାଗି ଘେନ ବର
ଯାହାକି ମନରେ ବାଞ୍ଛା ଅଟଇ ତୋହର ।
ଦାନବ ବୋଇଲା ତୁହୋ କେବଣ ଦେବତା
ବଦନ୍ତି ଆଦିତ୍ୟ ଆମ୍ଭେ ଦିବସ କରତା ।
ଅସୁର ବୋଇଲା ତୁହି ଯେବେ ଦେବୁ ବର
କଳ୍ପେ ପରିଯନ୍ତେ ମୁହିଁ ହୋଇବି ଅମର ।
ଦେବ ଦାନବ ମାନବ ଯକ୍ଷ ବିଦ୍ୟାଧର
ଗନ୍ଧର୍ବ ନାଗ ପିଶାଚ ଗୁହ୍ୟକ କିନ୍ନର ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା ରୁଦ୍ରଗଣ ଇନ୍ଦ୍ର
ବ୍ରହ୍ମା ବିଷ୍ଣୁ ଅଗ୍ନି ବାୟୁ ନୈର୍ଋତ ନାଗେନ୍ଦ୍ର ।
ବରୁଣ କୁବେର ଦେବ ତେତିଶ ଯେ କୋଟି
ଯାହାର ତୂଣୀରେ ଯେତେ ଶସ୍ତ୍ର କୁନ୍ତ ଯଷ୍ଟି ।
ବିଶ୍ୱକର୍ମାର ନିର୍ମାଣ ଶସ୍ତ୍ରମାନ ଯେତେ
ବ୍ରହ୍ମାର ନିର୍ମାଣ ଶସ୍ତ୍ର ଯଜ୍ଞାହୁତି ମତେ ।
ନ ଭେଦିବ ଏ ସମସ୍ତ ଶସ୍ତ୍ର ମୋର କାୟ
ଚଉଦ ଭୁବନ ମୁହିଁ କରିବଇଁ ଜୟ ।
ଅସ୍ତୁ ହେଉ ବୋଇଲେକ ଦେବ ଛାୟାପତି
ଦାନବ ଅଙ୍ଗେ ଲେପନ କଲେକ ବିଭୂତି ।
ହୃଦୟ ନାଭି ଏ ଦୁଇ ସ୍ଥାନ ହିଁ ଗଭୀର
ବଜ୍ର ବିଭୂତି ନ ଲାଗି ହୋଇଲା ଅନ୍ତର ।
ଅର୍କ ବିଦାରଣ ତହୁଁ ଗଲେ ଅନ୍ତର୍ଦ୍ଧାନେ
ବରପାଇ ସେ ଦାନବ ଗଲା ନିଜ ସ୍ଥାନେ ।
ଆଦିତ୍ୟ ବରେ ଜଗତଜନ ସାଧ୍ୟ କଲା
ମୃତ୍ୟୁ ପ୍ରାପତକାଳେ ସେ କର୍ଣ୍ଣକୁ ଭେଟିଲା ।
ହରିହରଙ୍କର କୂଟେ ପ୍ରାଣେ ହୋଇ ନାଶ
ଅଙ୍ଗୁଳିକୁ ଛେଦି ବାଣ କଲେ ପୀତବାସ ।
ନାରାୟଣଙ୍କ ଅଙ୍ଗୁଳି ଛେଦନ ଯେ ବାଣ
ନୀଳବାଣ ନାମ ତାର ସ୍ୱୟଂ ନାରାୟଣ ।
ମହାଦେବଙ୍କ ଅଙ୍ଗୁଳି ହେଲା ଯେଉଁ ଶର
ଭୁଜବାଣ ନାମଗୋଟି ହୋଇଲା ତାହାର ।
ଦୈତ୍ୟ ପଡ଼ନ୍ତେ ଅଇଲେ ସେହି ବେନିଜନ
ବାବୁ ଦେବତାଙ୍କ ଶତ୍ରୁ ମାଇଲୁ ତୁ କର୍ଣ୍ଣ ।
ବୋଇଲେ ଯେ ବରମାଗ ଦେବା ଆମ୍ଭେ ଦୁହେଁ
କର୍ଣ୍ଣ ବୋଇଲା ଗୋସାଇଁ କହ ତୁମ୍ଭେ କିଏ ।
କହନ୍ତି ଯେ ରୁଦ୍ର ବିଷ୍ଣୁ ଆମ୍ଭେ ବେନି ଜନ
ଶୁଣିଣ ଶୋଇଲା ପ୍ରାୟେ ପଡ଼ି ବୀର କର୍ଣ୍ଣ ।
ତୁମ୍ଭଙ୍କୁ ନ ଚିହ୍ନି କହିଗଲି ମନ୍ଦବାଣୀ
ମମ ଦୋଷ କ୍ଷମ ଶୂଳପାଣି ଚକ୍ରପାଣି ।
ଯେବେ ବର ଦେବ ଦେବ ଏହି ବେନି ଶର
ଶୁଣିଣ ସେ ବେନିଜନ ଦେଲେ ଏ ଉତ୍ତର ।
ତୁହି ମହାଦାନୀ ଅଟୁ ରାଧାର ତନୟ
ବିପ୍ରରୂପେ ଆସି ଦେବ ଦାନବ ନିଶ୍ଚୟ ।
ଦାନ ମାଗି ତୋତେ ଘେନିଯିବେ ଏହି ବାଣ
ନିମିଷକେ ଜିଣିବେ ଏ ଚଉଦ ଭୁବନ ।
ସାକ୍ଷାତେ ଅଟନ୍ତି ହରିହର ଏହି ଶର
ଏ ବାଣେ ମରିବେ ବ୍ରହ୍ମା ଇନ୍ଦ୍ର ହରିହର ।
ଏ କଥାଗୋଟି ବିଚାର କର ତୁହି ମନେ
ଶୁଣି ହସ୍ତ ଦେଲା ବୀରକର୍ଣ୍ଣ ଶିରେ କାନେ ।
ଗୋସାଇଁ ମୁଁ ଗୁପ୍ତ କରିଥିବି ଏହି ଶର
ବିଶୁଦ୍ଧ ଚିତ୍ତରେ ଯେବେ ଦେବ ତୁମ୍ଭେ ବର ।
କାହାକୁ ବାବୁ ଏ ଶର ଘେନି ନ ମାରିବୁ
ଏ ଶର ମହିମା କେହି ନ ଜାଣଇ ବାବୁ ।
ପ୍ରାଣକୁ ଯେବେ ତୋହର ପଡ଼ିବ ବିପତ୍ତି
ମାରିବୁ ତେବେ ଏ ଶର ଘେନି ମହାକ୍ଷତ୍ରି ।
ଏତେ କହି ଦୁଇବାଣ ଦେଲେ ହର ହରି
ସେ ଶସ୍ତ୍ର ଥୋଇଲେ କର୍ଣ୍ଣ ବେନି ଜାନୁ ଚିରି ।
ଜାଣନ୍ତି ଯେ ହରିହର କର୍ଣ୍ଣ ଜଣ ତିନି
ବେଦବ୍ୟାସ ଜାଣନ୍ତି ଯେ ଯେଣୁ ମହାଜ୍ଞାନୀ ।
ସର୍ବତ୍ର ଯେ ମନ୍ତ୍ରୀ ସହଦେବ ଯେ ଜାଣଇ
ଏହି ପାଞ୍ଚଜଣ ଭିନ୍ନ ନ ଜାଣନ୍ତି କେହି ।
ବେନି ଦେବତାଏ ତହୁଁ ଗଲେ ଦେଇ ବର
ଆପଣା ପୁରକୁ ଗଲା ଆଦିତ୍ୟ କୁମର ।
ଭୋ ରାଜା କଜ୍ଵର ମୃତ୍ୟୁ ଦେଖି ସର୍ବସୁରେ
ଯେ ଯାହା ମନ୍ଦିରେ ଯାଇ ମିଳିଲେ ସ୍ୱର୍ଗରେ ।
ଚିନ୍ତା ଛାଡ଼ିଲେ ବନିତା ପୁତ୍ରମାନ ଘେନି
ଉଶ୍ୱାସ ପାଇ ଆନନ୍ଦ ହୋଇଲା ମେଦିନୀ ।
ଦୁଷ୍ଟ ନିବାରନ୍ତେ ସୁସ୍ଥ ହେଲେ ଚିନ୍ତା ଛାଡ଼ି
ସୁଖ ସିନ୍ଧୁରେ ସବୁରି ଚିତ୍ତ ଗଲା ବୁଡ଼ି ।
ଶୁଣ ବୈବସ୍ୱତ ମନୁ ମଧ୍ୟପର୍ବ ରୀତି
କଜ୍ଵାସୁର ବଧ ଯେହୁ କର୍ଣ୍ଣରେ ଶୁଣନ୍ତି ।
ସ୍ତିରୀହତ୍ୟା ବ୍ରହ୍ମହତ୍ୟା ଗୋରୁ ଶିଶୁବଧ
ସୁବର୍ଣ୍ଣ ଚୋରି କରାଇ ସୁରାପାନ ସଧ ।
ଏହି ମହା ପାପମାନ ନାଶଯାଏ ଶୁଣି
ଭାରତ ଶୁଣି ଦକ୍ଷିଣା ନ ଦିଏଁ ଯେ ପ୍ରାଣୀ ।
ଶତେଜନ୍ମ ପରିଯନ୍ତେ ବଧିର ହୁଅନ୍ତି
ପୁରାଣ ଶୁଣିବା ଫଳ ପୁଣି ସେ ନ ପାନ୍ତି ।
ହେ ପ୍ରାଣୀମାନେ ଦକ୍ଷିଣା ଯାଚି ପୁଣି ଦେବ
ନିରନ୍ତର ଶ୍ରୀ ଭାରତ ଚିନ୍ତା କରୁଥିବ ।

ପଦେ ଅଧେ ଅକ୍ଷରକେ କଲେ ସୁମରଣ
ନାଶ କରନ୍ତି ସକଳ ବ୍ୟାଧି ନାରାୟଣ ।
ଜୟ ତୁ ଜଗତନାଥ ଜଗତଜୀବନ
ଜୟ ତୁ ଜଗତନାଥ ରାଜୀବ ଲୋଚନ ।
ଜୟ ତୁ ଗଦାଧର ଗରୁଡ଼ ଆସନ
ନୀଳଗିରିବାସୀ କମ୍ବୁଧାରୀ ଭଗବାନ ।
ଭରତ ଦୁଃଖ ନାଶନ ଶତ୍ରୁ ଅନ୍ତକାରୀ
ପତିତଜନ ପାବନ ଦେବ ଦଇତ୍ୟାରି ।
ସିନ୍ଧୁର ଉତ୍ତର ତୀରେ ଅଟେ ତୁମ୍ଭ ବାସ
ଦରିଦ୍ରଜନ ବାନ୍ଧବ କମଳା ବିଳାସ ।
ଦୁଃଖୀର ଦୁଃଖକୁ ଦେଖି କ୍ଷଣେ ନ ସହତ
ଆସ ଆସ ବୋଲି ଉଚ୍ଚେ ଶରଣ ଯାଚ ତ ।
ତେଣୁ ଜନଙ୍କର ମନ ସେ ପାଦେ ନମଇଁ
ରକ୍ଷାକର ଦେବ ଦେବ କମଳାର ସାଇଁ ।
ତୁମ୍ଭ ପାଦବିନୁ ମୁହିଁ ଅନ୍ୟ ନ ଜାଣଇ
ଆଶ୍ରାକଲି ମୁଁ ତୁମ୍ଭର ନାମ ହୃଦେ ଧ୍ୟାୟି ।
ଜୟ ଜୟ ପଦ୍ମନାଭ ଜୟ ପଦ୍ମପାଣି
ଜୟ ପଦ୍ମାକ୍ଷ ପଦ୍ମାକ୍ଷୀ ଯାହାର ଘରଣୀ ।
ଜୟ ଜୟ ପଦ୍ମମୁଖ ଜୟ ପାଦପଦ୍ମ
ଜୟ ଜଗଜ୍ଜନ ସାକ୍ଷୀ ଜଗଜ୍ଜନ ସଦ୍ମ ।
ଅଭୟବର ଶାରଳା ଦାସଙ୍କୁ ଯେ ଦେବା
ସେ ପାଦପଦ୍ମରେ ରହୁ ନିତ୍ୟ ମୋର ସେବା ।
ବନ୍ଦଇ ଯେ ଲମ୍ବୋଦର ଗିରିଜା ନନ୍ଦନ
ଇନ୍ଦୁର ପିଠିରେ କରୁ ସର୍ବଦା ଗମନ ।
ସର୍ବଦା ଅମୃତ ଲଡୁ ତୋହର ଭୋଜନ
ନୃତ୍ୟରସ ବିନୋଦେ ତୁ ତୋଷୁ ଶିବମନ ।
ଅନ୍ଧକ ବିନାଶ ଗଲା ଯାର ବୁଦ୍ଧିବଳେ
କାଶୀପୁର ଧ୍ୱଂସ ଗଲା ତୋର କୋପାନଳେ ।
ମଣିକର୍ଣ୍ଣିକା ତୀର୍ଥରେ ବିଜେ ସଦାଶିବ
ପରମାନନ୍ଦ ପୁରୁଷ ନାହିଁ ରାତ୍ର ଦିବ ।
ମହାପ୍ରଳୟ କେବଳ ତୁହି ନାଶି ଜାଣୁ
ମନୁ ଏକକୁ ଦିବସ ପ୍ରାୟେ ତୁହି ମଣୁ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ଏ ପାଞ୍ଚ
ମହାଭୂତ ତୁଲେ ତୁମ୍ଭେ ନିରାକାର ବଞ୍ଚ ।
ଶିରେ ସିନ୍ଦୂର ତୋ ଗଳେ ପାରିଜାତମାଳେ
ମତ୍ତ ମାତଙ୍ଗ ନାଥ ତୋ ଗଣ୍ଡେ ସଦା ଲୁଳେ ।
ଗଣେଶଙ୍କ ପଦ୍ମପାଦେ ପଶିଲି ଶରଣ
ଉଦ୍ଧାର କରହେ ମୋତେ ଗିରିଜା ନନ୍ଦନ ।
କପାଳେ ଲିପ୍ତ ଯାହାର ଶ୍ରୀଖଣ୍ଡ ଚନ୍ଦନ
ଗଜଦନ୍ତ ଥୋରହସ୍ତ ତୋର ଗଜାନନ ।
ଅନନ୍ତ ବାସୁକୀ ତୋର ଭୁଜର କଙ୍କଣ
ତୋହର ଚରଣେ ତଳେ ପଶିଲି ଶରଣ ।
ଅଯୋନି ସମ୍ଭୂତ ତୋତେ ଦୁର୍ଗାକଲେ ଜାତ
ପାର୍ବତୀ ଜନନୀ ତୋର ସଦାଶିବ ତାତ ।
ରଖିଲୁ ଦକ୍ଷିଣଦ୍ୱାର ନାଥ ଭୁଜବଳେ
ସୁମରନ୍ତେ ବିଘ୍ନ ତୁହି ଖଣ୍ଡୁ ଅବହେଳେ ।
କପଟେ ଅମୃତ ଲଡୁ କଲୁ ତୁ ଭୋଜନ
ପରଶୁ ପାଶ ଅଙ୍କୁଶ କରକୁ ଶୋଭନ ।
ଶ୍ୱେତମଣି ମୁକୁଟ ତୋ ଶିରେ ପାଏ ଶୋଭା
ଲଲାଟରେ ବିରାଜଇ ସେ ମୁକୁଟ ପ୍ରଭା ।
ଏ ତୋର ଚରଣେ ନାଥ ଲୁଳୁ ମମ ମାଥ
ପଦସ୍ମରଣେ ବର୍ଷି ଦେବା ଗଣନାଥ ।

—o—

## କୁମ୍ଭକ ବଧ

ଏଥୁ ଅନନ୍ତରେ ପୁଣି ବୈବସ୍ୱତ ମନୁ
ପାଦ୍ୟଅର୍ଘ୍ୟେ ପୂଜା କରି କୁମ୍ଭଋଷି ସୁନୁ ।
ଅର୍ଜ୍ଜୁନ ତ ଯାଇ ବନବାସରେ ରହିଲା
ତହୁଁ ସେ ଅନେକ ପୁଣ୍ୟମାନ ହିଁ ସଞ୍ଚିଲା ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ଚାରି
ଏ କେବଣ କୃତ୍ୟ କଲେ କହ ତପଃଚାରୀ ।
ଅଗସ୍ତି ବୋଲନ୍ତି ଶୁଣ ଆହେ ମନୁରାୟ
କୁମ୍ଭକ ବଧ କଲା ସେ ପବନ ତନୟ ।
ମୁନି ବୋଇଲେ ଏ ବଡ଼ ସୁସଞ୍ଚ ପ୍ରସ୍ତାବ
ଏକଥା ମୋତେ କହିବା ହେଉ ମୁନିଦେବ ।
କାହାର ପୁତ୍ର ସେ ବର କାହାକୁଳେ ଜାତ .
କେମନ୍ତେ ମାରୁତି କଲା ତାହାକୁ ନିହତ ।
ବଦୟନ୍ତି ଅଗସ୍ତି ଯେ ମୁନି ବ୍ରହ୍ମବେତ୍ତା
ପଚାରିଲୁ ତୁ ବହୁତ ଦିନର ବାରତା ।
ଆଦି ସିଂହିକାର ତହୁଁ ଉତପତ୍ତି ରାହୁ
ରାହୁର ନନ୍ଦନ ଅଟେ ଦୈତ୍ୟ ବୀରବାହୁ ।
ବୀରବାହୁର ନନ୍ଦନ ଅଟେ ଜୟଦୈତ୍ୟ
ଅମର ବିବାଦେ ନାଶକଲେ ପୁରୁହୁତ ।
ବଜ୍ରରେ ତା ଶିରେ ଇନ୍ଦ୍ର ପକାଇଲେ ଛେଦି
ଜମ୍ଭଦୈତ୍ୟ ନାଶିବାରୁ ନାମ ଜମ୍ଭଭେଦୀ ।
ଜମ୍ଭୁଦୈତ୍ୟର ନନ୍ଦନ ଅଟେ ଲୌହଶିର
ଚଣ୍ଡୀଯୁଦ୍ଧେ ନାଶଗଲା ସେ ମହାଅସୁର ।
ଲୌହଶିରର ନନ୍ଦନ ଅଟଇ ଭାସ୍କର
ଭାସ୍କର ନନ୍ଦନ ଅର୍କ ନାମରେ ଅସୁର ।
ସର୍ବଦା ଆବୋରି ଥାଇ ସେହି ଅର୍କ ତୀର୍ଥ
କଣୟବିନ୍ଦୁ ବିବାଦେ ନାଶିଲେ ଆଦିତ୍ୟ ।

ଅର୍କ ଦୈତ୍ୟର ନନ୍ଦନ ଉଦପା ଅସୁର
ଉଦପାସୁର ନନ୍ଦନ ଦର୍ପାସୁର ବୀର ।
ଦର୍ପାସୁରର ନନ୍ଦନ ଅଟେ ମହୀଦାସ
ମହୀଦାସର ନନ୍ଦନ ମାୟା ସେ ରାକ୍ଷସ ।
ମାୟାକୁ ମାଡ଼ି ବସିଲେ ବୀର ହନୁମନ୍ତ
ଏହାର ନନ୍ଦନ ଅଟେ ଶ୍ରବଣା ଦଇତ୍ୟ ।
ଶ୍ରବଣାର ନନ୍ଦନ ଯେ ଅଶ୍ଳେଷା ଅସୁର
ତାକୁ ବଧିଲେ ରଣେ ବୀର ଷଣ୍ମୁଖର ।
ଅଶ୍ଳେଷାର ନନ୍ଦନ ଯେ କଙ୍କାସୁର ଦୈତ୍ୟ
ହରିହର ବାଦେ ତାକୁ କର୍ଣ୍ଣ କଲେ ହତ ।
କଙ୍କାର ନନ୍ଦନ ଅଟେ କୁମ୍ଭକ ଅସୁର
ମହାପ୍ରତାପୀ ଅସୁର ପୃଥ୍ୱୀରେ ସେ ବୀର ।
ବାଳକାଳୁ ସେବିଲା ସେ ଦେବ ଦିବାକର
ତୋଷେ ନିରଞ୍ଜନ ଦେବ ଦେଲେ ତାକୁ ବର ।
ମାଗିଲା ଦେବ ଦାନବେ ନୋହିବି ମୁଁ ବଧ
ଅସ୍ତୁ ହେଉ ବୋଲି ତାକୁ ବୋଇଲେ ବିବୁଧ ।
ମନୁଷ୍ୟଙ୍କୁ ଛାର ବୋଲି ନ କଲା ସେ ଭୀତି
ଏଥିରେ ଲେଖିଲେ ତାର ମୃତ୍ୟୁ ପ୍ରଜାପତି ।
ରଥ ଗଜ ଅଶ୍ୱ ତାର କେହି ନାହିଁ ଜଣେ
ଜିଣିଲା ସେ ବ୍ରହ୍ମାସୁର ଇନ୍ଦ୍ରଗଣ ରଣେ ।
ସେ କୁମ୍ଭକ ଦୈତ୍ୟ ବଳେ ଆକାଶରେ ପଶି
କୁବେର ଭଣ୍ଡାରୁ ଘେନିଗଲା ଧନରାଶି ।
ବିଦ୍ୟାଧରୀମାନଙ୍କୁ ଯେ ଆଣେ ଧରି ବଳେ
ଦେବେ ରହି ନ ପାରିଲେ ଗଗନ ମଣ୍ଡଳେ ।
ଇନ୍ଦ୍ର ଚନ୍ଦ୍ର ବରୁଣ ଯେ କୁବେର ପବନ
ଯମ ଅଗ୍ନି ନଇରତ ଗ୍ରହ ତାରାଗଣ ।
ଏମାନେ ସମସ୍ତେ ମିଳି ଘୋରଯୁଦ୍ଧ କଲେ
ମହାପ୍ରତାପୀ କୁମ୍ଭକ ଦାନବର ତୁଲେ ।
ବୈଶାଖ ଶୁକଳପକ୍ଷ ତୃତୀୟାର ଦିନ
ରୋହିଣୀ ନକ୍ଷତ୍ର ଭୃଗୁବାର ବିଦ୍ୟମାନ ।
ତୈତିଳ ନାମେ କରଣ ଶୁଭ ନାମେ ଯୋଗ
ରୋହିଣୀ ଘରେ ସେଦିନ ବୃଷ କରେ ଭୋଗ ।
ସ୍ୱନକ୍ଷତ୍ର ବନ୍ଦାପନା ଇନ୍ଦ୍ରର ସେଦିନ
ମନର ଆନନ୍ଦେ ସେ ଯେ ଦେବ ମଘବାନ ।
ବସନ୍ତ ଉତ୍ସବ ଏକ ଯାତ୍ରାର ବିଧାନେ
ଅନେକ ସମ୍ଭାର ଘେନି ବୃନ୍ଦାରକମାନେ ।
ନନ୍ଦନ ବନେ ଆକାଶଗଙ୍ଗା ନଦୀକୂଳେ
ବସିଲେ ଆସ୍ଥାନ ସ୍ଥାପି ଦଶଦିଗପାଳେ ।
ଚଉଷଠି କୋଟି ବିଦ୍ୟାଧର ବିଦ୍ୟାଧରୀ
ମହାସମାରୋହେ ତହିଁ ବିଜେ ଅପସରୀ ।
ସା ରେ ଗା ମା ପା ଧା ନି ସା ସପ୍ତସ୍ୱର ଧରି
ବୀଣା ଘେନି ନୃତ୍ୟଗୀତ କରନ୍ତି ସୁନ୍ଦରୀ ।
କେଶନୀ ଉର୍ବଶୀ ମେଧା ସୁମେଧା ଶରଧା
ଶାନ୍ତି ସୁମତି ସୁକାନ୍ତି ରହି ପରିଚ୍ଛଦା ।
ସୁବାସିନୀ ବିଳାସିନୀ ଶ୍ରୀୟା ସରସ୍ୱତୀ
ମହାସମାରୋହେ ନୃତ୍ୟଗୀତ କରୁଛନ୍ତି ।
ସା ରି ଗା ମା ପା ଧା ନି ସା ସପ୍ତସ୍ୱର ବୀଣା
ମଞ୍ଜାନ୍ତି ରସନାୟିକା ମଧ୍ୟେ ହୋଇ ଗଣା ।
ରମ୍ଭା ଉର୍ବଶୀ ମେନକା କଳା ଚିତ୍ରରେଖା
ମୋହିନୀ ଚଞ୍ଚଳା କାମକଳା ମଦନିକା ।
ମାଳିନୀ ଲଳିତା ଆଦି ସ୍ୱର୍ଗ ଅପସରୀ
କାଞ୍ଚି ସୁମାଳୀ ମାଳତୀ ଅନଙ୍ଗ ସୁନ୍ଦରୀ ।
ଏହାଙ୍କର ମୂଳେ ଚଉଷଠି ବିଳାସିନୀ
ଚଉଷଠି ପରିବନ୍ଧେ ଲଗାଇ ଖଟଣି ।
ସନକ ସନନ୍ଦ ଆଦି ଭୃଗୁ କଉଶିକ
ଏହାଙ୍କୁ ଘେନି ବସିଲେ ଅମର ନାୟକ ।
ଦେବଋଷି ରାଜଋଷି ବ୍ରହ୍ମଋଷି ଯେତେ
ବସନ୍ତ ଉତ୍ସବ ଯାତ୍ରା କରନ୍ତି ସମସ୍ତେ ।
ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧର
ଏମନ୍ତ ବେଳେ ବାହିଲା କୁମ୍ଭକ ଅସୁର ।
ଅମରାବତୀ ନଗରେ ପଶିଲା ଗରଜି
ଶବଦରେ ପର୍ବତ କି ପଡୁଅଛି ଭାଜି ।
ସ୍ତିରୀ ପୁରୁଷ ଯେତେକ କୁମାର କୁମାରୀ
ସମସ୍ତେ ପ୍ରବେଶ ଯାତ୍ରା ରସରଙ୍ଗ କରି ।
ପ୍ରଚଣ୍ଡା ବଳୀ ଅମରପୁର କରେ ରକ୍ଷା
ସଙ୍ଗେ ଲକ୍ଷେକ ଗନ୍ଧର୍ବ ସମରେ ନିଃଶଙ୍କା ।
ସମସ୍ତ ସମ୍ପଦ ଘେନି ଦେବ ସୁନାସୀର
କରନ୍ତି ଯାତ୍ରା ଆକାଶଗଙ୍ଗା ନଦୀ ତୀର ।
ଦାନବ ପଶନ୍ତେ ସ୍ୱର୍ଗେ ଆଗରୁ ଓଗାଳି
କାହିଁର ଦର୍ପିଷ୍ଠ ତୋର ଭରସା ଏଭଳି ।
ଧାଇଁଲେ ସେ ବିଦ୍ୟାଧରେ ରେରେକାର କରି
ନିଜ ନିଜ ଆୟୁଧକୁ ଯେଝା କରେ ଧରି ।
ସ୍ୱର୍ଗପୁରେ ନିଶାଚର ପଶିଲାକ ପେଲି
ଦୁଷ୍ଟ ଅସୁରକୁ ଦେଖି ସେ ପ୍ରଚଣ୍ଡାବଳୀ ।
ଗଦାଧରକୁ ବୁଲାଇ ପିଟିଲା ତା ଶିରେ
ନିଦ୍ରା ଭାଙ୍ଗିଗଲା ଦୈତ୍ୟ ଉଠି କୋପଭରେ ।
ଦରାଣ୍ଡି ତା କେଶ ଧରି ଦେଲା ତାକୁ ଫିଙ୍ଗି
ଗଙ୍ଗାକୂଳେ ପଡ଼ିଲା ସେ ହୋଇ ସ୍ଥାନତ୍ୟାଗୀ ।
ଭିତରେ ଦାନବ ବୀର ପଶିଲା ଗରଜି
ଦ୍ୱାରଗଡ଼ ଜଗତୀକୁ ପକାଇଲା ଭାଙ୍ଗି ।

ମେଢ଼ ମଣ୍ଡପ ଦେଉଳ ଯେତେକ ଅଟାଳି
ସମସ୍ତ ଭାଙ୍ଗଇ ପଶି ଦୈତ୍ୟ ମହାବଳୀ ।
ପୁରେ ପୁରେ ଦାନବ ଯେ ଲୋଡ଼ଇ ଉଦ୍ଦେଶି
ନ ଦେଖି ଦାନବ ବୀର ଲୋଡ଼ଇ ଆକ୍ରୋଶି ।
ନାରଦ ପ୍ରବେଶ ଯାଇ ଉତ୍ସବ ନବର
ଦେଖି ପୂଜାକଲେ ତାଙ୍କୁ ଦେବ ସୁନାସୀର ।
ଇନ୍ଦ୍ର ବୋଇଲେ ଭୋ ମୁନି ବ୍ରହ୍ମାଙ୍କ କୁମର
କି କି କଥା ସମ୍ଭାବିଛି କହ ମୋ ଆଗର ।
ନାରଦ ବୋଇଲେ ତୁମ୍ଭେ ଶୁଣ ସୁରପତି
ଅମରାବତୀ ନାଶିଲା ଅଶ୍ଲେଷାର ନାତି ।
ପ୍ରଚଣ୍ଡା ବଳୀକୁ ଦେଲା ରୋଷେ ବେଗେ ଫିଙ୍ଗି
ବାରସ୍ୱତୀପୁର ତୋର ପକାଇଲା ଭାଙ୍ଗି ।
ଶୁଣି ସ୍ତମ୍ଭୀଭୂତ ହେଲେ ଦେବ ମଘବାନ
ଯାତ୍ରା ଭାଙ୍ଗିଦେଲେ ଏଣେ ମନ ଛନ୍ନ ଛନ୍ନ ।
ଦେବତାମାନେ ବୋଇଲେ ଇନ୍ଦ୍ର ଦେବତାଙ୍କୁ
ଆମ୍ଭେ ଯାଉଅଛୁ ଏବେ ଆମ୍ଭ ଭୁବନକୁ ।
ଇନ୍ଦ୍ର ବୋଇଲେ ଯେ ତୁମ୍ଭେମାନେ ସଜହୁଅ
ମାରିବା ସେ ଦାନବଙ୍କୁ ଫେଡ଼ିବା ସଂଶୟ ।
ଚିତ୍ରସେନ ବୃଦ୍ଧଶ୍ରବା ଅଙ୍ଗାର ପନ୍ନଗ
ଜୟନ୍ତ ଅଜୟସେନ ତୁଳାକର୍ଣ୍ଣ ସଙ୍ଗ ।
ଏହାଙ୍କ ତୁଲେ ଗନ୍ଧର୍ବବଳ ନବଲକ୍ଷ
ଏହାଙ୍କୁ ଚାହିଁ ଆଦେଶ କଲେ ସହସ୍ରାକ୍ଷ ।
ରଥ ସଜକର ତୁଲେ ସକଳ ସଇନ୍ୟେ
ସଜ ହେଲେ ଯାଇ ଦେବରାଜାଙ୍କ ବଚନେ ।
ଆପେ ସୁରନାଥ ଐରାବତ ହସ୍ତୀ ମଣ୍ଡି
ଉପରେ ଥୋଇଲେ ଚକ୍ର ତୋମର ଭୂଷଣ୍ଡି ।
ଭିତରେ ଖଞ୍ଜିଣ ହୀରାନୀଳାର ପଗଡ଼
ଲୁହାର ଜାଲ ଆବର ତା ଉପରେ ବାଡ଼ ।
ଭିତରେ ସେନା ବାହାର ଦିଶେ ଦିବ୍ୟରଙ୍ଗ
ଅଷ୍ଟାଙ୍ଗ ଶିରେ ମଣ୍ଡିଣ ଅଛନ୍ତି ମାରାଗ ।
ଘଣ୍ଟି ଘାଗୁଡ଼ି ମାଳରେ ଶୋଭାପାଇ କଣ୍ଠ
ଶୁକଳ ଦୋସରି ଚିତ୍ର ସୁବର୍ଣ୍ଣର ଘଣ୍ଟ ।
ଉପରେ ଶୁକଳ ନେତ ପାଟ ଲୁଗା ଛନ୍ଦି
ନିଗୁଢ଼ ଚନ୍ଦ୍ରକିରଣ ଶଙ୍ଖା ଉଚ୍ଚେ ବାନ୍ଧି ।
କୁମ୍ଭ ସ୍ଥଳରେ ବିଚିତ୍ର ରତ୍ନମାନ ଖଞ୍ଜି
ମୁକୁତାର ତୁଲେ ହୀରା ନୀଳା ପୁଞ୍ଜି ପୁଞ୍ଜି ।
ଉପରେ ଶୋହେ ମାଣିକ୍ୟ ମଣି କେରା କେରା
ଚଉକତିରେ ଲମ୍ବଇ ମୁକୁତାର ଝରା ।
ତିଥି ଉପରେ ବତିଶ ଆୟୁଧ ଅଛଇ
କୁନ୍ତ ଖଡ଼ଗ ଲାଙ୍ଗିଆ ଧନୁଶର ଥୋଇ ।

ସାଞ୍ଜୁ ଶାବଳ ମୂଷଳ ଶକ୍ତି ବଜ୍ର ଯଷ୍ଟି
ତୀକ୍ଷ୍ଣମୂନା ଅସି ପତ୍ର ଭଲ୍ଲାକାତି ଋଷ୍ଟି ।
ଶୂଳ ଚକ୍ର ଗଦାବର ପଟ୍ଟୀଶ ମୂଦ୍‌ଗର
ଭୂଷଣ୍ଡି ପରିଘ ଆଦି ବତିଶ ପ୍ରକାର ।
ଏସନ ରୂପେ ବିଜୟେ ତହିଁ ଶଚୀ ସାଇଁ
ରେରେ ଦାନବ ବୋଲି ସେ ଓଗାଳିଲେ ଯାଇ ।
ବାସବର ସଜା ଦେଖି ବିଦ୍ୟାଧରମାନେ
ସମସ୍ତେ ଶସ୍ତ୍ର ପିଟିଲେ କୋପେ ଏକମନେ ।
ଶସ୍ତ୍ର ପଡ଼ନ୍ତେ ଅସୁର ନ କରଇ ଭୟ
ସେ ତାହା ଜାଣଇ ପିଚକାରୀ ଜଳପ୍ରାୟ ।
ଆଗେ ଦେବଇନ୍ଦ୍ର କୋପେ ବହୁଶସ୍ତ୍ର କଲା
ଶରମାନ ତା ଦେହରେ ପଡ଼ି ଚୂର ହେଲା ।
ବଜ୍ର ଶକତି ବୁଲାଇ ଇନ୍ଦ୍ର ବେଗେ ପିଟି
ଦେଖି ଦାନବ ପାତିଲା ତାର ମଥା ଗୋଟି ।
ପର୍ବତ ଚୂର୍ଣ୍ଣ ହୁଅଇ ଯେଉଁ ବ୍ରଜ ପଡ଼ି
ଦଇତ ମୁଣ୍ଡେ ପଡ଼ି ସେ ଗଲାକ ଉପୁଡ଼ି ।
ଶକ୍ତି ଛାଡ଼ିଣ ହୋଇଲା ଇନ୍ଦ୍ର ହୀନ ବୀର୍ଯ୍ୟ
ତା ଦେଖି କମ୍ପଇ ଦୁଷ୍ଟ କୁମ୍ଭକ ଦନୁଜ ।
ମହାକୋପେ ଧାଇଁଲା ସେ ରେରେକାର କରି
ଇନ୍ଦ୍ର ଉପରେ ପିଟନ୍ତେ ମୁଦୁଗର ଧରି ।
ମୁଦ୍‌ଗର ପିଟନ୍ତେ ଦେଖି ଦେବ ମଘବାନ
ଐରାବତକୁ ଘୁଞ୍ଚାଇ କଲେ ପଳାୟନ ।
ଦିଗପାଳେ ପଳାଇଲେ ଯେ ଯାହା ପୁରକୁ
ଇନ୍ଦ୍ରଦେବ ପଳାଇଲେ ନନ୍ଦନ ବନକୁ ।
ବିଦ୍ୟାଧରମାନଙ୍କୁ ସେ ମାଇଲା ଥୋକାଏ
ଦିନକର ନାଥ ମେରୁ ଉହାଡ଼କୁ ଯାଏ ।
ଅନେକ ଲୁଚ କଲା ସେ ଦେବଙ୍କ ଭଣ୍ଡାର
ବାହୁଡ଼ଇ ଆପଣାର ଭୁବନେ ଅସୁର ।
ପ୍ରବେଶ ହୋଇଲା ଆସି ଆପଣାର ପୁରେ
ରଜନୀ ପ୍ରକାଶେ ଉଦେ ହେଲେ ଦିନକରେ ।
ପୁଣି ହିଁ ସଜ ହୋଇଲା କୁମ୍ଭକ ଦଇତ
ଏକହସ୍ତେ ମୁଦ୍‌ଗର ଏକହସ୍ତେ କୁନ୍ତ ।
ମହାମତ୍ତ ହୋଇ ବୀର ଆସେ କୋପଭରେ
କଣ୍ଠ ଉତ୍କଣ୍ଠିତ ଶ୍ୱାସ ବହେ ଖରତରେ ।
ସିଂହନାଦ କରି ଧାଇଁ ଆସଇ ରାକ୍ଷସ
ଅଳକାପୁରେ ହୋଇଲା ଯାଇ ସେ ପ୍ରବେଶ ।
ପୁଣି କୁବେର ମନରେ ପାଇ ମହା ତ୍ରାସ
ସୈନ୍ୟକୁ ବୋଲେ ପଳାଇଯିବା ଆମ୍ଭେ ଆସ ।
ନବସାଗର ସେ ଯକ୍ଷ ରାଜାର ସଇନି
ବରୁଣପୁରେ ପଳାନ୍ତି ଭଣ୍ଡାରକୁ ଘେନି ।

ଅସୁର ବୋଲେ ମାନବ ମାତ୍ର ହୋଇ ତୁହି
ଏଡ଼େ ବଡ଼ ଦର୍ପ ଆଗେ କହୁଁ କାହିଁପାଇଁ ।
ବ୍ରହ୍ମା ରୁଦ୍ର ଇନ୍ଦ୍ରଯାକୁ ନୁହନ୍ତିଟି ସରି
ତୁ ମାନବ ମାତ୍ର ରଖ ମୋହର ବଇରୀ ।
ଭୀମ ବୋଇଲା ଅଜ୍ଞାନ ମନ୍ଦ ତୁରେ ବାଇ
ଶରଣ ବୋଇଲେ ମୁହିଁ ଉପେକ୍ଷଇ ନାହିଁ ।
ଭୀମସେନର ବଚନେ ହସିଲା ଅସୁର
ଆଜଦିନ ହିଁ ସଫଳ ହୋଇଲା ମୋହର ।
ଯାହାକୁ ମୁଁ ଲୋଡୁଥିଲି ଆପେ ହେଲା ପ୍ରାପ୍ତ
ନରବଳୀ ଭୋଜି ମୋତେ ଦେଲୁରେ ବିଧାତ ।
ଏତେ ବୋଲିଣ ଦାନବ ଗର୍ଜି କୋପଚିତ୍ତେ
ମଣୋହି କରିବି ଆଜ ମୁହିଁ ପୋଡ଼ି ତୋତେ ।
ଭୀମ କୋପିଲେ ଅସୁର ମୁରତିକି ଦେଖି
ବୁଲାଇଲେ କାଳଚକ୍ର ପ୍ରାୟ ବେନି ଆଖି ।
ଯଦ୍ୟପି ସ୍ୱର୍ଗ ପାତାଳ ଜିଣିଲୁ ଅସୁର
ଆଜି ଯମ ନିଶ୍ଚେ ପାଞ୍ଜି ପୋଛିଲା ତୋହର ।
ତୋତେ ମାରି ରଖିବି ମୁଁ କୈଳାସ କନ୍ଦର
ଆକାଶର କଷ୍ଟ ଆଜି ଯିବରେ ପାମର ।
ଭୀମର ବଚନ ଶୁଣି ଦୈତ୍ୟ କୋପ ଚିତ୍ତ
କଇଳାସ କନ୍ଦରକୁ କରି ଭୂମିଗତ ।
ଗଦାବରକୁ ବୁଲାଇ ଦାନବ ଗରଜି
ଶବଦେ ଗିରି କନ୍ଦର ପଡ଼ିଲା କି ଭାଜି ।
ବେନି ଗଦା ହସ୍ତେ ଧରି ବୀର ଭୀମସେନ
ଦିଶିଲା ସେ ଧୂମକେତୁ ଉଦୟେ ଯେସନ ।
ଆରେରେ ମାନବା ବୋଲି ଦାନବ ଯେ ଉଠି
ଭୀମର ଉପରେ ଦେଲା ଗଦାବର ପିଟି ।
ଲୁହାର ସେ ଗଦା ଶତ ଶତ ଭାରୁ ଗରୁ
ଦିଗପାଳେ କମ୍ପନ୍ତି ଯା ଗଦା ଧରୁ ଧରୁ ।
ଶତଶୃଙ୍ଗ ବରେ ଯାର ବଜ୍ର ବାମ ଅଙ୍ଗ
ପିଟନ୍ତେ ସେ ଗଦାବର ହେଲା ତାର ଭଙ୍ଗ ।
ଆରେକ ଗଦା ବୁଲାଇ କୋପେ ସେ ଅସୁର
ଏ ଘାନ୍ତି ମାନବା ବଳ ଜାଣିବା ତୋହର ।
ସମୁଦ୍ର ମନ୍ଥନ କାଳେ ଯେମନ୍ତ ଶୁଭଇ
ତେସନ ସେ ଗଦାବର ପିଟି ଗରଜଇ ।
ସମ୍ଭାଳ ସମ୍ଭାଳ ବୋଲି ଗଦାବର ପିଟି
ଗଦା ପିଟନ୍ତେ ଗଦାରେ ଭୀମସେନ ମେଣ୍ଟି ।
ବେନି ଗଦା ପରିତାଳ ଉଠିଲା ବହ୍ନି
ସପ୍ତଲକ୍ଷ ଯୋଜନରେ କମ୍ପେ ପଦ୍ମଯୋନି ।
ଭୀମସେନ ଗଦାବର ବୁଲାଇଣ କୋପେ
ଶୂନ୍ୟ ଭୁବନ କମ୍ପିଲା ସେ ଗଦା ପ୍ରତାପେ ।

କୋପଭରେ ଭୀମସେନ ଦିଶଇ ପ୍ରଚଣ୍ଡ
ରଡ଼ିଘାତେ କମ୍ପାଇଲା ସପତ ବ୍ରହ୍ମାଣ୍ଡ ।
ପ୍ରଳୟ ନିକଟେ ଯେହ୍ନେ ଗର୍ଜେ ମେଘମାଳ
ତେସନେ ଶୁଭଇ ବେନି ଗଦା ପରିତାଳ ।
ଭୀମସେନ ଗଦା ଯାଇ ଦୈତ୍ୟଅଙ୍ଗେ ପଡ଼ି
ସହସ୍ରେକ ଖଣ୍ଡ ହୋଇ ଭାଙ୍ଗିହେଲା ଗୁଡ଼ି ।
ପୁଣି ଆର ଗଦା ନେଇ ପିଟେ ବୃକୋଦର
ଧୂଳିହୋଇ ଯାଇ ଉଡ଼ି ପଡ଼ିଲା ଭୂମିର ।
ଅସୁର ଗଦା ଘେନି ସେ ପିଟିଲା ଭୀମକୁ
ଦେଖି ବୃକୋଦର ପାତି ଦେଲା ବାମବୁକୁ ।
ଭୀମର ଛାତିରେ ପଡ଼ି ଦୈତ୍ୟ ଗଦାବର
ସହସ୍ରେକ ଖଣ୍ଡ ହୋଇ ଗଦା ହେଲା ଚୂର ।
ଗଦା ଭଗ୍ନ ହେବାର ଦେଖିଣ ଦୈତ୍ୟ ରାଗେ
ପର୍ବତ ଏକ ଉପାଡ଼ି ଧାଏଁ ଅତିବେଗେ ।
ଅନ୍ତରୀକ୍ଷ ମାର୍ଗେ ଧରି ବୁଲାଇ ପର୍ବତ
ଭୀମସେନର ଉପରେ ପିଟିଲା ଦଇତ ।
ବାମଅଙ୍ଗେ ପଡ଼ି ଭାଙ୍ଗିଗଲା ଗିରିବର
ଧୂଳିହୋଇ ଉଡ଼ି କଲା ଗଗନ ଅନ୍ଧାର ।
ଆକାଶ ମାର୍ଗେ ଶୁଭିଲା ଜୟ ଜୟ ବାଣୀ
ଅସୁରକୁ ବଧ କରି ଉଦ୍ଧର ଧରଣୀ ।
କୁମ୍ଭୀର କିନ୍ନର ବକ ହିଡ଼ିମ୍ବକ ଚାରି
ବଧ କରି ରଖିଅଛୁ ବୀର ବସୁନ୍ଧରୀ ।
ଏବେ ଏହି କୁମ୍ଭକକୁ କର ତୁ ବିନାଶ
ଏହା କଲେ ବାବୁ ସୁସ୍ଥ ହେବ ଏ ଆକାଶ ।
ଆକାଶରେ ଧ୍ୱନି ଶୁଣି ବୀର ବୃକୋଦର
ବଜ୍ରମୁଥେକ ମାଇଲେ ଦାନବ ଉପର ।
ଦଇତ୍ୟ ଉପରେ ପଡ଼ି ସେହି ବଜ୍ରମୁଷ୍ଟି
କାଳାନଳ ପ୍ରାୟେ ହୋଇ ଅଗ୍ନି ଜଳିଉଠି ।
ଦେବ ଦାନବ ସମରେ ଯେ ବୀର ଅଜେୟ
ବୃକୋଦର ରୂପେ ଦେଖି କଲା ମହାଭୟ ।
ଶସ୍ତ୍ର ବିହୁନେ ସେ ଦୁହେଁ ମଲ୍ଲ ଗତି ଘେନି
ଧରାଧରି ଗଡ଼ାଗଡ଼ି ହୁଅନ୍ତି ସେ ବେନି ।
ହାମୋଡ଼ାଇ ପକାଇଣ ଦାନବ ଭୀମକୁ
ଲେଉଟାଇ ଭୀମ ମାଡ଼ି ବସିଲା ତାହାକୁ ।
ଭୁଜେ ଭୁଜ ଭିଡ଼ି ପାଦେ ପାଦ ହେଲା ଛନ୍ଦି
ଶିରେ ଶିର ପରିତାଳ ହୃଦେ ହୃଦ ସନ୍ଧି ।
ପଡ଼ି ଲୋଟନ୍ତି ଦୁହେଁ ଗଡ଼ନ୍ତି ବସୁମତୀ
ଚକ୍ଷୁର ଛଟକେ ପୁଣି ଲେଉଟନ୍ତି ଧାତି ।
ସମରେ ଅଟନ୍ତି ବେନି ବୀରେ ମହାବଳୀ
ଶାଳବୃକ୍ଷମାନେ ଘାତେ ହେଉଛନ୍ତି ଧୂଳି ।

ଦିଗପାଳେ କମ୍ପିଲେକ ଶୁଣି ମୁଖରଡ଼ି
ଧର୍ମ ଚମକିଲା କମ୍ପିଗଲା ବସୁନ୍ଧରୀ ।
ଭୀମକୁ ମାଡ଼ି ବସିଲା ଦୈତ୍ୟକୁଳ ରାୟ
ହୃଦୟକୁ ଆକର୍ଷଇ ଛାଗ ବ୍ୟାଘ୍ର ପ୍ରାୟ ।
କୋପେ ପ୍ରତିଜ୍ଞା କରଇ ସେ ଅସୁର ବୀର
ଆରେରେ ମାନବା ତୁହି ଯିବୁ ଯମପୁର ।
ଈଶ୍ୱର ଦେବତା ଡରେ ପଳାଇଲା ହାରି
ତୁ ଛାର ମାନବା ମୋତେ ରୋଧିଛୁ ଧରି ।
ସାଧୁ ମହିମା ତୋହର ଧନ୍ୟ ବୀରପଣ
ଧନ୍ୟ ତୋର ପିତା ମାତା କଲୁ ଯେଉଁ ରଣ ।
ବୀରପଣେ ସରି ତୋତେ ନାହିଁ ରବିତଳେ
ମୋରସଙ୍ଗେ ପରିତାଳ ଦେଲୁ ତୁରେ ବଳେ ।
ତୋତେ ମାରି ଆଜ ନେବି ଈଶ୍ୱରକୁ ଧରି
ମାଂସ ଭକ୍ଷିବି ତୋହର ପୋଡ଼ାବଳି କରି ।
ସୁମର ମାନବା ଏବେ ତୋର ପିତାମାତା
ସୁମର ମାନବ ତୋର ଯେ ଇଷ୍ଟଦେବତା ।
ଅସୁର ପ୍ରତିଜ୍ଞା ଉଗ୍ର କଟୁବାଣୀ ଶୁଣି
ଭୟେ ଅନ୍ତର ହୋଇଲେ ସ୍ୱାମୀ ଶୂଳପାଣି ।
ପ୍ରଥମ ସମରେ ହାରି ପଣ୍ଡୁର ନନ୍ଦନ
ଶତଶୃଙ୍ଗ ପର୍ବତକୁ କଲେ ସୁମରଣ ।
ହେଲା ଏକୋତ୍ତର ଶତସିଂହ ପରାକ୍ରମ
ବୃକୋଦର ମୁରତିକି ଧଇଲେ ଯେ ଭୀମ ।
ହୁଙ୍କାର ଶବଦ କରି ବୀର ମହାବଳେ
ଲେଉଟାଇ ପକାଇଲେ ଦାନବକୁ ତଳେ ।
ମନ୍ଦର ମାଡ଼ି ଯେସନେ ବସେ ହିମବନ୍ତ
ତେସନ ଦିଶଇ ସେହି ଦୁହିଁଙ୍କର ଗାତ୍ର ।
ତଳେ ଅସୁର ଉପରେ ବୀର ଭୀମସେନ
ଦିଶନ୍ତି ସେ କି ଦ୍ୱିତୀୟ ଜନ୍ତୁ ବିନାଶନ ।
ଭୀମସେନ ବୋଇଲାରେ ଜାଣି ତୁ ଭରସୁ
ଜଳନ୍ତା ଅଗ୍ନିରେ ଜାଣୁ ଜାଣୁ ଆସି ପଶୁ ।
କୁମ୍ମୀର କିନ୍ନର ଦୈତ୍ୟବକ ହିଡ଼ିମ୍ବକ
ଏହାଙ୍କୁ ବଧିଲୁ ତୁହି ଉବୁରିଛୁ ଏକ ।
ଆଜ ତୋର ନାମ ପୋଛି ଦେଲା ଜନ୍ତୁଅରି
ହୋଇଲୁ ନିରେଖ ତୋତେ କେହୁ ରକ୍ଷାକରି ।
କୋପେ ମାରୁତି ମାଇଲା ଏକ ବଜ୍ରମୁଥ
ନାସିକା ଫାଟି ରୁଧିର ବହେ ଅପ୍ରମିତ ।
ମେରୁ ଫୁଟି ଗଙ୍ଗା ବହେ ଯେସନେ ବାହାର
ତେସନ ରୁଧିର ବହେ ହୋଇ ଧାର ଧାର ।
ହିରଣ୍ୟ ବିଦାରଣରେ ଯେସନେ ନୃସିଂହ
ତେସନେ ସେକାଳେ ଦିଶେ ଭୀମସେନ ଅଙ୍ଗ ।

ବିଶେଷତଃ ବୃକୋଦର ବଳୀ କୁନ୍ତୀବଳା
କାଳଚକ୍ର ଜିଣି ଦିଶେ ତାର ବେନିଡୋଳା ।
ଯେସନେ ଉପରେ ମାଡ଼ି ବସଇ ସୁମେରୁ
ଚାଲି ନ ପାରି ପାଇଲା ଦୈତ୍ୟ ମହାଗରୁ ।
ତଣ୍ଟି ଚିପିଲା ତାହାର ଭୀମ ବାମହସ୍ତେ
ଡାହାଣ ହସ୍ତେ ମାଇଲା ବୀର ବଜ୍ରମୁଠେ ।
ପୁଣ ପୁଣ ପ୍ରହାରଇ କୋପେ ବୀର ତୋଳି
ଭାଙ୍ଗି ଅସୁରର ମୁଣ୍ଡ କରିଦେଲା ଧୂଳି ।
ଅସୁର ପିଣ୍ଡରୁ ପ୍ରାଣ ଗଲା ବେଗେ ଛାଡ଼ି
ପଡ଼ିଲା ଦାନବ ବୀର ପାଞ୍ଚକ୍ରୋଶ ମାଡ଼ି ।
ଅସୁର ବିନାଶି ଉଭା ହେଲା ବୃକୋଦର
ଦେଖିଲାକ ସମୀପରେ ନାହିଁ ଦେବ ହର ।
ମେଘ ଶୁକ୍ଳ ପକ୍ଷ ପୁଣି ଅଟେ ଗୁରୁବାର
ଦୈତ୍ୟବଧ ହେଲା ତୋର ଦଣ୍ଡର ଭିତର ।
ଆକାଶରେ ଶୁଭିଲା ଯେ ସାଧୁ ସାଧୁ ବାଣୀ
ଭୀମର ଉପରେ ପୁଷ୍ପ ବୃଷ୍ଟି କଲେ ଆଣି ।
ସାଧୁ ସାଧୁ ପାଣ୍ଡବ ତୁ କାଳଦର ଷଣ୍ଢ
ଅସୁରକୁ ବଧ କଲୁ ତୁ ବୀର ପ୍ରଚଣ୍ଡ ।
ଅସୁରକୁ ବଧ କଲେ ବୀର ବୃକୋଦର
ଭୀମର ଆଗରେ ବିଜେ କଲେକ ଈଶ୍ୱର ।
ବୋଇଲେ ମାଇଲୁ ଦୈତ୍ୟବର ବୃକୋଦର
ଯେସନେ ଇଚ୍ଛା ତୋର ମାଗି ଘେନ ବର ।
ଭୀମ ବୋଲେ ଅନୁଗ୍ରହ କଲ ଯେବେ ମୋତେ
ମୋର କାର୍ଯ୍ୟ ବେଳେ ସିନା ମୁଁ ମାଗଇ ତୋତେ ।
ଈଶ୍ୱର ବୋଇଲେ ପୁଣ ମୋର ବୋଲ ଶୁଣ
କାର୍ଯ୍ୟକାଳେ କରିବୁ ତୁ ମୋତେ ସୁମରଣ ।
ଏତେ ବୋଲି କପିକାସେ ନେଲେ ଦେବହର
ନିଜସ୍ଥାନେ ବସାଇଲେ ନେଇ ସେ କନ୍ଦର ।
ଲେଉଟାଇ ଗଣ୍ଡାଭାର ଘେନିଣ ପାବନି
ପ୍ରବେଶିଲେ ପୁରେ ବେଳ ପ୍ରହର ଯେ ତିନି ।
ଜୟଦେବ ତ୍ରିଲୋଚନ ଉମାଦେବୀ ପତି
କଣ୍ଠେ କାଳକୁଟ ଶିରେ ଗଙ୍ଗାଦେବୀ ସ୍ଥିତି ।
ଅର୍ଦ୍ଧାଙ୍ଗେ ଶଇଳ ସୁତ ନାଭିରେ ବାରାହୀ
ଜଟାକୂଳ ସ୍ୱର୍ଣ୍ଣବର୍ଣ୍ଣ ନାଗେ ବିରାଜଇ ।
ଡିବି ଡିବି ଡମ୍ବରୁ ଯେ ଘନ ଘନ ଡାକ
ଶ୍ରୀଭୁଜରେ ଶୋଭାପାଏ ତ୍ରିଶୂଳ ପିନାକ ।
ବ୍ୟାଘ୍ରଚର୍ମ ପରଧାନ ହୃଦେ ଅସ୍ଥିମାଳା
ବିରାଜଇ ରବି ଚନ୍ଦ୍ର ବର୍ଣ୍ଣ ତିନି ଡୋଳା ।
କନ୍ଦର୍ପ ଧ୍ୱଂସି କିଞ୍ଚିତ କୁପିତ ଯା ଦୃଷ୍ଟି
ଦକ୍ଷଯଜ୍ଞ ବିନାଶନେ ଅଭୟ ଧୂର୍ଜଟି ।

ଲକ୍ଷେ ଷାଠିଏ ସହସ୍ର ଅତୀତି ନନ୍ଦନ
ସମସ୍ତେ କଲେ ରୈବତ ପର୍ବତେ ଗମନ ।
ସହସ୍ର ଯୋଜନ ଅଟେ ସେହି ସଭାସ୍ଥଳୀ
ସମସ୍ତେ ପ୍ରବେଶ ହୋଇ ସେ ସଭାରେମିଳି ।
ଏସନକ ସମ୍ପଦ ସେ ରୈବତ ପର୍ବତେ
ଦେଖିଣ ଆନନ୍ଦ ହେଲେ ଦେବ ଜଗଭୁତେ ।
ଏସନ ସମ୍ପଦେ ପୂର୍ଣ୍ଣ ରେବତ ପର୍ବତ
ସମସ୍ତ ଦେଶୁ ପ୍ରବେଶ ଆସି ନରନାଥ ।
ସାତ୍ୟକି ଯେ ନିମନ୍ତ୍ରଣ କରନ୍ତି ଉତ୍ତରେ
ନିମନ୍ତ୍ରି ଆସଇ ବେଗେ ବେଗେ ନୃପବରେ ।
ନାରାୟଣ ମହାଯୋଗ ନିମନ୍ତ୍ରଣ ଶୁଣି
ଆସନ୍ତି ସମସ୍ତ ଦେଶୁ ବେଗେ ନୃପମଣି ।
ରଥ ଗଜ ଅଶ୍ୱ ପୁଣି ଅନେକ ପଦାତି
ମିଳନ୍ତି ତ ସମାରୋହେ ସମସ୍ତ ନୃପତି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ହିଁ ଅନେକ
ରାକ୍ଷସ ପିଶାଚ ରୁଦ୍ର ଆସି ସର୍ବଲୋକ ।
ଦଶଲକ୍ଷ ବ୍ରାହ୍ମଣ ଯେ ଦିଅନ୍ତି ଆହୁତି
ବ୍ରହ୍ମାଣ୍ଡରେ ବିକାଶଇ ଅଗ୍ନିରୂପ କାନ୍ତି ।
ସ୍ରୁବେ ପୂରାଇ ମୁନିଏ ଆହୁତି ଦିଅନ୍ତି
ଭୂରିତୋଷ ଯାଗନିକେ ଆପଦ ଖଣ୍ଡନ୍ତି ।
ସାତ୍ୟକି ପ୍ରବେଶ ହେଲା ଯେ ଉତ୍ତର ଦିଗେ
ରାଜାମାନଙ୍କୁ ନିମନ୍ତ୍ରେ ଯାଇ ମଧ୍ୟସ୍ୱର୍ଗେ ।
ରାଜଏ ସମସ୍ତେ ଯଜ୍ଞ ନିମନ୍ତ୍ରଣ ପାଇ
ଆସନ୍ତି ସମସ୍ତ ରାଜ୍ୟୁ ଯେତେକ ନୃପ ହିଁ ।
ରଥ ଅଶ୍ୱ ଗଜ ଘେନି ଆବର ପଦାତି
ରଇବତ ପରବତେ ଆସିଣ ମିଳନ୍ତି ।
ବ୍ରହ୍ମ କ୍ଷତ୍ରୀ ବୈଶ୍ୟ ଶୂଦ୍ର ଦଇତ ପିଶାଚ
ରାଜଗଣେ ସର୍ବେ ଆସି ହୋଇଲେ ପ୍ରବେଶ ।
ଚାଳିଶ ସହସ୍ର ରାଜାଗଣ ନିମନ୍ତ୍ରିଲା
ଭ୍ରମନ୍ତେ ଯେ ଜେନାବଳୀ ନଗରେ ମିଳିଲା ।
ଜେନାବଳୀ ପାଟଣାରେ ହୋଇଲା ପ୍ରବେଶ
ଭୁବନ ସୁବର୍ଣ୍ଣମୟ ଦେଖି ହେଲା ତୋଷ ।
କୁଳାବଳୀ ପାଟଣା ଯେ ଅପୂର୍ବ ନଗରୀ
ତହିଁ ଭିତରେ କନକ ନାମେ ଅଛି ଗିରି ।
କପିଳ ସିଂହ ନନ୍ଦନ ଅଟେ ମହୀସିଂହ
ଏହା ନନ୍ଦନ ଅଟଇ ଯେ ମହିଷ ସିଂହ ।
ଏହାର ନନ୍ଦନ ଅଟେ ବଜ୍ରସିଂହ ବୀର
ବଜ୍ରସିଂହର ନନ୍ଦନ ଗୋ ସିଂହ ଅସୁର ।
ଗୋ ସିଂହ ନାମରେ ଅଟେ ଯେବଣ ଦଇତ୍ୟ
ମନୁଷ୍ୟ ଶରୀର ତାର ଗୋମୁଣ୍ଡ ସଂଜାତ ।

ପ୍ରତାପୀ ରାଜା ମହିଷ ଅସୁରର ବଂଶ
ଜେନାବଳୀ ନଗ୍ରେ ରାଜ୍ୟେ କରଇ ରାକ୍ଷସ ।
ତପେ ମନାଇଛି ଦେବ ଦେବ ଯେ ବିରଞ୍ଚି
ତ୍ରୈଲୋକ୍ୟ ଅବଧ୍ୟ ହେବି ବୋଲି ମନେବାଞ୍ଛି ।
ଊର୍ଦ୍ଧ୍ୱମୁଖ ହୋଇ ତପେ ତୋଷିଲା ତାହାଙ୍କୁ
ବର ଦେଇଗଲେ ସେହି ଆପଣା ପୁରକୁ ।
କନକ ଭୁବନ ତାର ପରିମଳ ଦେଖି
ଅଶ୍ୱେକ ଚଢ଼ି ପ୍ରବେଶ ତହିଁରେ ସାତ୍ୟକି ।
ଅସୁର ଭୁବନ ବୋଲି ନ ଜାଣଇ ବୀର
ସାତ୍ୟକି ପ୍ରବେଶ ହେଲା ଯାଇ ସିଂହଦ୍ୱାର ।
ଲୌହଶିରା ସିଂହନାଦ ଦ୍ୱାରପାଳ ବେନି
ସହସ୍ରେ ସହସ୍ରେ ଭାର ଲୁହାଗଦା ଘେନି ।
ମହାବଳବନ୍ତ ସେହି ଦୁର୍ଜ୍ଜୟ ଦାନବ
ସାତ୍ୟକିକୁ ଓଗାଳିଲେ କରି ମହାଗର୍ବ ।
କାହିଁର ମାନବା ତୁହି କେବଣ ଭରସା
ଏ ଦେଶେ ପାଶିଲୁ କିରେ ଛାଡ଼ି ପ୍ରାଣ ଆଶା ।
ସିଂହନାଦ ବୋଲେ ଭଲ କଲୁ ତ ଅଇଲୁ
ଯତନେ ଯା ଲୋଡ଼ୁ ଆମେ ପ୍ରାପତ ହୋଇଲୁ ।
ନର ବାନର ଏ ବେନି ଆମ୍ଭ ନିଜ ଭକ୍ଷ
ପ୍ରାପ୍ତହେଲୁ ଖାଇ ଆମ୍ଭେ ପାଇବୁ ନା ସୁଖ ।
ଦରହସିତ ବଦନେ ଶାନ୍ତବାକ୍ୟେ ବୋଲି
ଗଦା କରେ ଥୋଇ କରେ ଅସିପତ୍ର ତୋଳି ।
ଆକର୍ଷଇ ଲୌହଶିରା ଧରି ତାର ଶିଖା
ଦେଖି ତାହାଙ୍କୁ ସାତ୍ୟକି ହୋଇଲା ତାଟକା ।
ଭୟଚିତ୍ତେ ସାତ୍ୟକି ଯେ ସୁମରଇ ହରି
ବୋଲେ ଅଇଲି ରାଜାଙ୍କୁ ନିମନ୍ତ୍ରଣ କରି ।
ତୁମ୍ଭ ରାଜାର ଛାମୁରେ କରମୋତେ ନେଇ
ପଛେ ମୋତେ ଭକ୍ଷ ମୁହିଁ ଯିବି ଆଉ କାହିଁ ।
ଅସୁର ବୋଲିକି ମୁହିଁ ନ ଜାଣେ ତୁମ୍ଭଙ୍କୁ
ନିମନ୍ତ୍ରଣ ପାଇ ସିନା ଅଇଲି ଏଥକୁ ।
କାର ଦୂତେ ବୋଲି ଦୟା କଲେ କଉଣପେ
ଦରଶନ କରାଇଲେ ରାଜାର ସମୀପେ ।
ଜଗତୀ ଉପରେ ବିଜେ ଗୋସିଂହ ନୃପତି
ତଳେ ପଟୁଆର ଅଶୀପଦ୍ମ ସେନାପତି ।
ଆକାଶ ମଣ୍ଡଳେ ଶିର ଲାଗୁଛି ରାକ୍ଷସ
ଦେଖିକରି ସାତ୍ୟକିର ଉଡ଼ିଲା ସାହସ ।
ମୁହିଁ ତ ଏ ନଗରକୁ ଅଇଲି ନ ଜାଣି
ଏଥୁ ପରିକର ମୋତେ ଦେବ ଚକ୍ରପାଣି ।
ଲୌହଶିରା ବୋଲେ ସ୍ୱାମୀ ଅସୁର ନାୟକ
ସାବଧାନ ହୋଇ ଶୁଣ ଏହା କଥାଯାକ ।

ଅସୁର ବୋଇଲେ ହେବ ଏ ଆମ୍ଭର ବଳି
ଭଲ ଭକ୍ଷ ତ ଆମ୍ଭର କାହୁଁ ଆସି ମିଳି ।
କେ ବୋଲେ ଏହାକୁ ଭଲ କରିଣ ଛଡରୀ
ଚାରିଆଡ଼କୁ ମାଂସକୁ ଭିନ୍ନ ଭିନ୍ନ କରି ।
ପଚାରଇ ଗୋସିଂହ ରେ କିସ ତୋର କାର୍ଯ୍ୟ
କି ନିମନ୍ତେ ଆସିଅଛୁ ଆମ୍ଭ ପୁରେ ଆଜ ।
ସାତ୍ୟକି ବୋଇଲା ଶୁଣ ହୋଇ ସାବଧାନ
ମଧୁବନର ନୃପତି ଅଟେ ଉଗ୍ରସେନ ।
ଦେବଯଜ୍ଞ କରୁଅଛି ରୈବତ ପର୍ବତେ
ରାଜାଏ ତହିଁକି ଚଳି ଗଲେଣି ସମସ୍ତେ ।
ଋଷି ବିପ୍ର ତପୋଧନେ ପୂରିଲାଣି ଗିରି
ମୁହିଁ ତୁମ୍ଭଙ୍କୁ ଅଇଲି ନିମନ୍ତ୍ରଣ କରି ।
ସମସ୍ତ ସଇନ୍ୟ ଯିବେ ଯେତେକ ତୁମ୍ଭର
ଯେ ଯଜ୍ଞକୁ ଯିବ ତୁମ୍ଭେ ଘେନି ଏ ବେଭାର ।
ଗୋସିଂହ ବୋଇଲା ଛାଡ଼ ଛାଡ଼ ହୋ ଏହାକୁ
ଏ ଆସିଛି ନିମନ୍ତ୍ରଣ ଦେଇ ବରିବାକୁ ।
ଋଷି ବିପ୍ର ତପୋଧନ ଅଛନ୍ତି ତ ମିଳି
ସୁଖେ ଭକ୍ଷିବା ଆମ୍ଭେରେ କରି ପୋଡ଼ାବଳି ।
ଅନେକ ନର ଭୋଜନ ତହିଁ ରହିଅଛି
ସୁଖେ ଭୋଜନ କରିବା ତହିଁ ବାଛି ବାଛି ।
ସାତ୍ୟକିକୁ କଲେ ତହିଁ ଅନେକ ଗୌରବ
ଅଙ୍ଗେ ଅଳଙ୍କାର ଦେଇ କଲେ ପ୍ରିୟଭାବ ।
ସାତ୍ୟକି ବିଚରେ ଜୀର୍ଣ୍ଣ କୂପରେ ପଡ଼ିଲି
ଧର୍ମ ଉଦିତ ହୋଇଲା ଉପାୟେ ତରିଲି ।
ମୋହର ପ୍ରାଣ ରଖିଲି ମୁଁ ଉପାୟ କରି
ରାମ କୃଷ୍ଣଙ୍କ ସଂଗ୍ରାମେ ଯିବେ ଯମପୁରୀ ।
ସାତବଂଶ ସଙ୍ଗତରେ ମରିବାର ଭଲ
ଏକାଳେ ମଲେ ମୋହର ସିନା ଅମଙ୍ଗଳ ।
ଭରାଭର ନାଶ ଅର୍ଥେ ଜାତ ଦଇତ୍ୟାରୀ
ଏମନ୍ତ ବିସ୍ମୟ କରେ ସାତ୍ୟକି ବିଚାରି ।
ହରଷେ ବିସ୍ମୟେ କରେ ସାତ୍ୟକି ଗମନ
ଗୋସିଂହର ଅଳଙ୍କାର ହୋଇଛି ଭୂଷଣ ।
ସାତ୍ୟକିକୁ ଦେଲା ଆଣି ବିମାନ ଗୋଟିଏ
ଦିଶେ ହେମଝଳି ରତ୍ନ କିରଣ ପରାୟେ ।
ସେହି ବିମାନ ଉପରେ ବିଜୟ ସାତ୍ୟକି
ଦଣ୍ଡ ସାଜ ବୋଲି ଗଲା ତାକୁ ଆପେ ଡାକି ।
ଢୋଲ ଟମକ ନିଶାଣ ବାଣ ବିଜିଘୋଷ
ବୀର ତୂରୀ ଶବଦରେ କମ୍ପଇ ଆକାଶ ।
ଓଟ ଗଧ ଗଜ ଅଶ୍ୱ ବ୍ୟାଘ୍ର ଯେ ଶାର୍ଦ୍ଦୁଳ
ଆରୋହୀ ଅସୁରେ ଯାନ୍ତି ଅପର୍ଯ୍ୟାପ୍ତ ବଳ ।
ଗଦାଶୂଳ ଚକ୍ରକାତି ମୁଦ୍‌ଗର ଭୁଷଣ୍ଡି
ସୁବର୍ଣ୍ଣ ପ୍ରବାଳ ରତ୍ନେ ରଥଯାକ ମଣ୍ଡି ।
ଲକ୍ଷେକ ସାଗର ରଥ ଦ୍ୱିସାଗର ହୟ
ବେନିଲକ୍ଷ ସାଗର ଯେ ମାତଙ୍ଗ ଗବୟ ।
ଅଶୀଲକ୍ଷ ଅସୁରଙ୍କ ବ୍ୟାଘ୍ର ଯେ ବାହନ
ଓଟ ପିଠିରେ ଚଢ଼ିଲେ ଅୟୁତେକ ସୈନ୍ୟ ।
ଗଧ ବାହନେ ପଞ୍ଚାଶ ଖର୍ବ ଦୈତ୍ୟ ଚଳି
ବଳିଆ ବାହନେ ତେର ଖର୍ବ ମହାବଳୀ ।
ବଳଦ ବାହନେ ଗଲେ ଅଶୀ ପଦ୍ମ ସେନା
ଗଜବାହନରେ ଗଲେ ଅଶି ପଦ୍ମ ଜେନା ।
ଗଦା ମୁଦ୍‌ଗର ଖଡ଼ଗ ଶକ୍ତି ଶୂଳ ଯଷ୍ଟି
ପାଞ୍ଚଶ କୋଟି ଭୂଷଣ୍ଡି ଚକ୍ରଘେନି ଉଠି ।
ଅଜଗବ ସମ ଧନୁ କମାଣ ହିଁ କରେ
ଲକ୍ଷ ଲକ୍ଷ ନାରାଚ ସେ ପୂରାଇ ତୂଣୀରେ ।
ଧନୁ ଶୁକ୍ଳ ଚଉଠି ଯେ ତିଥି ଗୁରୁବାର
କୃତ୍ତିକା ନକ୍ଷତ୍ର ବୃକ୍ଷ ଚନ୍ଦ୍ର ସେ ଦିନର ।
ବୀଷ୍ଟି ନାମେ କରଣ ଯେ ବିତିପାତ ଯୋଗ
ମକର ସଙ୍କରାନ୍ତିର ଚାରିଦିନ ଭୋଗ ।
ଅଶ୍ଳେଷା କକଡ଼ା ଅଟେ ଗୋସିଂହର ରାଶି
ସେ ରାଶିରେ ଶନୈଶ୍ଚର ଗ୍ରହ ଅଛି ବସି ।
ବୃହସ୍ପତି ଅଷ୍ଟମରେ ଚତୁର୍ଥରେ ରାହୁ
ରବି ଅଷ୍ଟମେ ପ୍ରୟାଣ କଲା ଜାଣ ସେହୁ ।
ଆଗରେ ବାଟ କଢ଼ାଉ ଅଛନ୍ତି ସାତ୍ୟକି
ଧାମନ୍ତି ଅସୁରମାନେ ଆବୋରି ମହୀକି ।
ପ୍ରଳୟକାଳେ ଯେସନେ ସିନ୍ଧୁ ଆସେ ଘୋଟି
ତେସନେ ଅସୁରବଳ ମହୀରେ ପ୍ରକଟି ।
ସାତ୍ୟକି ବିଚାରେ ମୁହିଁ ମନ୍ଦକୃତ୍ୟ କଲି
ଏଡ଼େ ବଡ଼ ଦୈତ୍ୟପୁରେ କିମ୍ପାଇ ପଶିଲି ।
ଦେଖି କହିବେ କି ବୋଲି ମୋତେ ଚକ୍ରପାଣି
ଆବର କ୍ରୋଧ କରିବେ ନିଶ୍ଚେ ହଳପାଣି ।
ଡରେ ମୁହିଁ ନିସ୍ତରିଲି ପ୍ରାଣର ବିକଳେ
ନପୁଣ କୋପେ କରନ୍ତି ମୋତେ ହଳଧରେ ।
ପୁଣି ବିଚାରେ ମରଣୁ ବଳିଯିବ ଲାଜ
କୋପ କଲେ ଶ୍ରୀରାମରେ ମରିବଇଁ ଆଜ ।
ପୃଥ୍ୱୀର ଭାରା ଉଶ୍ୱାସ ପାଇଁ ଦେହଧାରୀ
ଏହାର ନିମନ୍ତେ ଯଜ୍ଞ ଅଛନ୍ତି ବା କରି ।
ଯାହା ତାହା ହେଉ ଏହୁ ଧରଣୀର ଶଲ
ମଲେ ଉଶ୍ୱାସ ପାଇବ ବସୁନ୍ଧରା କଲ୍ୟ ।
ଖଳପ୍ରାଣୀ ଯେ ଆବର ପରଧନହାରୀ
ବିପ୍ର ଅଭକତ ଧର୍ମମାର୍ଗ ନାଶକାରୀ ।

ଗୋବିନ୍ଦ ମାଇଲେ ଗଦା କୌମୋଦକୀ ଧରି
ଲକ୍ଷେକ ସେନାଏ ରଣେ ପକାଇଲେ ମାରି ।
ତିନିଲକ୍ଷ ସେନା ଯହୁଁ ମଲେ ଏହିମତେ
ଦଣ୍ଡଭଗ୍ନ ହେଲା ନବ ଯୋଜନ ପର୍ଯ୍ୟନ୍ତେ ।
ଗୋସିଂହ ଦୈତ୍ୟର ମନ୍ତ୍ରୀ କପାସୁର ବୋଲି
ବଳରାମ ଅଗ୍ରତକୁ ଅଇଲେକ ପେଲି ।
ପାଦରେ ଗମନ ଶସ୍ତ୍ର ନାହିଁ ତାର ହସ୍ତେ
ପ୍ରବେଶ ହୋଇଲା ରାମ କୃଷ୍ଣଙ୍କ ଅଗ୍ରତେ ।
ଆହେ ମହାତମା ତୁମ୍ଭେ କାହାର ଯେ ସୂନୁ
ଆମ୍ଭେ ଯେ ଦାନବ ଜାଣ ତୁମ୍ଭଙ୍କୁ ନ ଚିହ୍ନୁ ।
ଆମ୍ଭଙ୍କୁ ନିମନ୍ତ୍ରି ତୁମ୍ଭେ ଆଣିଲ ଯାଗକୁ
ଭୋଜନ ନ ଦେଇ କିମ୍ପା ମାରୁଛ ଆମ୍ଭଙ୍କୁ ।
ବିବାଦ ନାହିଁ ତୁମ୍ଭର ଆମ୍ଭର ତ ପୂର୍ବେ
ଯଜ୍ଞ ଦେଖିବା ନିମନ୍ତେ ଆସିଅଛୁ ଆମ୍ଭେ ।
ଯାହାକୁ ନିମନ୍ତ୍ରି ଆଣି ତାହାକୁ କି ମାରି
ଭୁଞ୍ଜାଇ କର ବିଶ୍ୱାସଘାତ କର ପରି ।
ପ୍ରୀତି ଦେଖାଇ ମାରଇ ଜାଣ ଅବିଶ୍ୱାସୀ
ଆହାର ଦେଇ ପ୍ରାଣୀକୁ ଯେଉଁ ଜନ ନାଶି ।
ନିଶ୍ଚୟ ସେ ଜାଣ ହୁଏ ବ୍ରହ୍ମହତ୍ୟା ଦୋଷୀ
ଧର୍ମଶାସ୍ତ୍ର ମୁନିଗଣ ଅଛନ୍ତି ପ୍ରକାଶି ।
ଆହେ ମହାତମା ତୁମ୍ଭେ ଗୁଣ ଜ୍ଞାନବନ୍ତ
ଜ୍ଞାନ ଥାଉଁ ଥାଉଁ କର ବିଶ୍ୱାସରେ ଘାତ ।
ବଳରାମ ବୋଧିଗଲେ ଅସୁର ବଚନେ
ଶାନ୍ତି ଭଜିଲେ ବଚନ ମଧୁରସ ପାନେ ।
ରହ ରହ ଶ୍ରୀକୃଷ୍ଣ ହୋ ନ ମାର ଏହାଙ୍କୁ
ଶାନ୍ତ ମୁରତି ହୋଇଣ ଆସନ୍ତୁ ସଭାକୁ ।
ଆଗେ ରାମ କୃଷ୍ଣ ପଛେ ଅସୁର ସଇନ୍ୟ
ରୈବତ ପର୍ବତେ ବିଜେ ସେ ଜଗମୋହନ ।
ପର୍ବତ ଉତ୍ତର କୋଣେ ଛାଡ଼ି ଅସୁରଙ୍କୁ
ଅଶୀଜଣ ବୀର ତୁଲେ ନେଲେ ଗୋ ସିଂହକୁ ।
ବସାଇଲେ ନେଇ ଛାୟା ମଣ୍ଡପ ମଧ୍ୟରେ
ସାଧୁ ତୁ ଜଗମୋହନ ବୋଲନ୍ତି ଅସୁରେ ।
ସାଧୁ ତୁ ଜଗମୋହନ ତୋର କୂଟବୁଦ୍ଧି
ଏତେବେଳକୁ ଆଣିଲୁ କପଟରେ ସାଧି ।
ଉଗ୍ରସେନ ରାଜକଲା ଗୋସିଂହକୁ ପୂଜା
ଗଉରବ ପାଇ ବସେ ସେ ଅସୁର ରାଜା ।
ଯେ ବିଧି ଯୋଗାଡ଼ ଆଣି ତାହାଙ୍କୁ ଦିଅନ୍ତି
ଛପନ କୋଟି ଯାଦବେ ଅନ୍ନ ପରଷନ୍ତି ।
ସୁପକ୍ୱ ଅନ୍ନ ଅମୃତ ଯୋଗାଡ଼ ଏମାନ
ସନ୍ତୋଷ ମନେ କରନ୍ତି ଅସୁରେ ଭୋଜନ ।

ଅମୃତରସ ଭୋଜନେ ଅସୁର ନୃପତି
ଅସୁରଙ୍କ ତୁଲେ ହେଲା ଯାଦବଙ୍କ ପ୍ରୀତି ।
ବଳରାମ ବୋଇଲେ ଏ ପୃଥିବୀକି ଭାର
ଯଜ୍ଞ ସରିଲେ ମାରିବା ଘେନି ଦାମୋଦର ।
ଏହା ଭୟେ ଦେବେ ରହି ନ ପାରିଲେ ସ୍ୱର୍ଗେ
ଏସନକ ସ୍ୱର୍ଗ ପୁର ଜୁର କଲା ରାଗେ ।
ଏତେବେଳେ ବିଚାରନ୍ତେ ରାମକୃଷ୍ଣ ବେନି
ଚିତ୍ରସେନକୁ ରାଇଲେ ଦେବ ସସ୍ତ୍ରଯୋନି ।
ଅମର ଅଭିଷେକୀ ଏ ପାରିଜାତ ମାଳେ
ଆଭରଣ କର ନେଇ ରାମକୃଷ୍ଣ ଗଳେ ।
ଜଗନ୍ନାଥ ଦେବଙ୍କୁ ତୁ କହିବୁ ଏକାନ୍ତେ
ଗୋସିଂହ ଦଇତ୍ୟ ନାଶ ଯାଏଟି ଯେମନ୍ତେ ।
ଅଭୟ ପାଟଣା ଜେନାବଳୀ ନାମେ ପୁଣି
ତହିଁ ପଶିଲେ ଏହାକୁ ନ ପାରିବ ମାରି ।
ବିଶ୍ୱାସ ଘାତକତାକୁ ନ କରିବ ଚିନ୍ତା
ଗୋ ସିଂହକୁ ବଧ କରି ରଖନ୍ତୁ ଦେବତା ।
ପିତାର ବଚନ ଘେନି ଗଲା ଚିତ୍ରସେନ
ବିମାନେ ବିଜୟ ରାମକୃଷ୍ଣ ସନ୍ନିଧାନ ।
ଯେତେ ଅଳଙ୍କାର ଦେଇଥିଲେ ସୁରରାଜା
ରାମକୃଷ୍ଣ ପାଦେ ଦେଇ କଲା ଦିବ୍ୟପୂଜା ।
ସେ ଗନ୍ଧର୍ବ ନାରାୟଣ ପାଦରେ ପ୍ରଣମି
ଗୋସିଂହ ଦୈତ୍ୟକୁ ବଧ କର ଦେବସ୍ୱାମୀ ।
ବିନୟେ କହିଅଛନ୍ତି ଦେବ ପୁରୁହୁତ
ତୁମ୍ଭର ସେହି ତ ସିନା ସ୍ୱର୍ଗ ଜଗନ୍ନାଥ ।
ଗୋବିନ୍ଦ ବୋଇଲେ ତୁନି ହୋଇଥାରେ ବାବୁ
ପ୍ରତାପୀ ଅସୁର ତାକୁ କେମନ୍ତେ ମାରବୁ ।
ଲକ୍ଷେ ରାଜାର ହୁଅଇ ଯେତେକ ସଇନି
ଏକା ଗୋ ସିଂହ ଆସିଛି ସେତେ ସୈନ୍ୟ ଘେନି ।
ଚିତ୍ରସେନ ବୋଇଲାକ ଅଗାଧ ଏ ସିନ୍ଧୁ
ଅଗସ୍ତି ଗଣ୍ଡୁଷ କଲେ ବାହୁର ବିନୋଦୁ ।
ଅଗାଧ ସାଗର ସିନା ଅଟନ୍ତି ଦର୍ପିଷ୍ଟ
ଗଣ୍ଡୁଷ କର ଅଗସ୍ତି ତୁମ୍ଭେ ସିନା ଅଟ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଦେଉଥିବ ବର
ହତକଲେ ମୋତେ ଦୋଷ ଦେବ ଯେ ଆବର ।
ପୂର୍ବେ ମୁହିଁ ରାବଣକୁ ମାଇଲି ଯେ ଦୁଃଖେ
ବ୍ରହ୍ମହତ୍ୟା ଦୋଷ ମୋତେ ଦେଲ ଚତୁର୍ମୁଖେ ।
ଅମର ନଗରେ ଯେତେବେଳେ ଥିଲି ବସି
ଅନେକ ବଚନ ଇନ୍ଦ୍ର ବୋଇଲା ଝଗାସି ।
ବୋଇଲେ ତୁ ଶୁଣ ଦଶରଥର ନନ୍ଦନ
କେମନ୍ତେ ତୁ ବ୍ରହ୍ମହତ୍ୟା କଲୁ ହୋ ଶ୍ରୀରାମ ।

ବିଶ୍ରବାଋଷି ଅଟଇ ସାକ୍ଷାତେ ବ୍ରାହ୍ମଣ
ତାହାର କୁମର ପୁଣି ଅଟଇ ରାବଣ ।
ରାବଣକୁ ମାଇଲା ଯେ ଦେବ ଦାଶରଥି
ମୁଖ ତୋହର ନ ଚାହିଁ ବୋଲେ ସୁରପତି ।
ଅନନ୍ତ ଶଯ୍ୟାରେ କରିଥିଲଇଁ ଶୟନ
କୃଦୟ ମଧ୍ୟେ ପୂରାଇ ସେହି ଅଭିମାନ ।
ତହୁଁ ଅଣାଇଲେ କଂସ ମରିବା ନିମନ୍ତେ
ତୁ କି ନ ଜାଣିଛୁ ମୁହିଁ କହିବଇଁ ତୋତେ ।
ଏତେ କହି ଆଶ୍ୱାସିଲେ ଦେବ ଚିତ୍ରସେନ
ମାରି ପାରିବୁ ଯେମନ୍ତେ କରିବୁ ତେସନ ।
କୁବେର ଦେବତା ଦେବା ରତ୍ନ ଅଳଙ୍କାର
ବତିଶ ସହସ୍ର କନ୍ୟା କାଣ୍ଡି କଲେ ହାର ।
ଛପନକୋଟି ଯାଦବ ଯେତେକ ଅଛନ୍ତି
ସମସ୍ତଙ୍କୁ ଅଳଙ୍କାର ଦେଲା ରତ୍ନପତି ।
ଲକ୍ଷେ ଷାଠିଏ କୁମର ଜଗନ୍ନାଥଙ୍କର
ସବୁଙ୍କୁ ହିଁ ଅଳଙ୍କାର ଦେଲାକ କୁବେର ।
ଅଭିଷେକର ଯୋଗାଡ଼ ଦେଲା ସେ ରାମଙ୍କୁ
ଦେଲା ପୁଣି ନନ୍ଦ ବସୁଦେବ ଏ ଦୁହିଁଙ୍କୁ ।
କୁବେରର ପୁତ୍ର ପୁଣି ସେ ନଳକୁବେର
ଏମାନ ଘେନି ସେ ସୂର୍ଯ୍ୟକେତୁ ବିମାନର ।
କୁବେର ବୋଇଲା ରତ୍ନମାନ ଦେଇ ଦେବୁ
ଗୋସିଂହକୁ ମାର ବୋଲି ଗୁପତେ କହିବୁ ।
ତେବେ ସିନା ରକ୍ଷାହେବ ପୁର ବାରସ୍ୱତୀ
ଭଣ୍ଡାରକୁ ଜୁର କଲା ନିଶାଚର ପତି ।
ପିତା ବଚନେ ଚଳଇ ସେ ନଳ କୁବେର
ରୈବତ ପର୍ବତେ ରାମକୃଷ୍ଣଙ୍କ ଛାମୁର ।
ସବୁ ଅଳଙ୍କାର ତାଙ୍କ ପାଖେ ଦେଇ ଥୋଇ
ନଳକୁବେର ଶୋଇଲା ଦଣ୍ଡବତ ହୋଇ ।
କୁବେର ଦେବତା ଦେଲା ଅଳଙ୍କାର ମଣି
ଶ୍ରୀଅଙ୍ଗରେ ଆଭରଣ କଲେ ଚକ୍ରପାଣି ।
ଯାହାର ଯେଉଁ ରତ୍ନ ସେ ଆଭରଣ କଲେ
ଏକାନ୍ତେ ନଳ କୁବେର ରାମଙ୍କୁ କହିଲେ ।
ଅନେକ ବିନୟେ ବୋଲୁଅଛି ରତ୍ନପତି
ଗୋସିଂହ ବଧ ନିମନ୍ତେ ଆହେ ହଳପତି ।
ଶ୍ରୀକୃଷ୍ଣ ବୋଇଲେ କଥା କହ ହୋ ଗୁପତ
ଅସୁରର ସୈନ୍ୟ କେତେ ନ ଯାଏ କଳିତ ।
ସାହାପକ୍ଷ ହୋଇଥାଅ ତୁମ୍ଭେ ଆମ୍ଭ ତୁଲେ
ବଧ କରିବା ଏ ଯାଗ ସମ୍ପୂର୍ଣ୍ଣ ହୋଇଲେ ।
ଅନେକ ରତ୍ନ ଘେନିଣ ସେ ଦେବ ଅଚ୍ୟୁତ
ଗୋସିଂହକୁ ଗୁଉରବ କଲେକ ବହୁତ ।

ସେନା ସେନାପତି ମନ୍ତ୍ରୀ ଯେତେ ତାର ଥିଲେ
ଗୋବିନ୍ଦ ଅନେକ ଧନରତ୍ନ ତାଙ୍କୁ ଦେଲେ ।
ଚତୁଃସମ ଚନ୍ଦନ ଯେ ନାନାବିଧ ପୁଷ୍ପ
ନଗନ୍ଧେ ଘେନନ୍ତି ତହିଁ ଯେତେ କଉଣପ ।
ପୁରୁଷାର୍ଥ ପାଇ ସେହୁ ଅସୁରେ ଉସତ
ମହା ମହା ଦର୍ପିଷ୍ଠ କେ କରିବ ଗଣିତ ।
ଗୋବିନ୍ଦ ଯେ ଗୋସିଂହକୁ ଅନେକ ତିଆରି
ଅନେକ ଦେଶର ତୁମ୍ଭେ ଅଛ ଦଣ୍ଡଧାରୀ ।
ଆମ୍ଭେ ବିଜେ କରିଅଛୁ ମହା ଯଜ୍ଞସ୍ଥାନେ
ଯେ ଯାହାର ସ୍ଥାନେ ତୁମ୍ଭେ ଥିବ ସର୍ବଜନେ ।
ଗୋବିନ୍ଦ ବଚନ ଶୁଣି ବୋଇଲେ ସମସ୍ତ
ବିଜେ କର ଦେବ ଯଜ୍ଞ ହେଉ ପରାପତ ।
ରାଜାଙ୍କୁ ତିଆରି ବାମଦେବଙ୍କୁ ସେ ରାଇ
ସଭା ନିବୃତ୍ତ କରିବୁ ବୋଲି ସାଇ ସାଇ ।
ଏସନକ ଆଜ୍ଞା ଦେଲେ ପ୍ରଭୁ ନନ୍ଦବାଳ
ନିବୃତ୍ତ କଲା ସେ ବାମଦେବ କ୍ଷେତ୍ରପାଳ ।
ଲକ୍ଷେ ରାଜାଙ୍କ ସହିତେ ଯେତେକ ସଇନି
ଭୁଞ୍ଜି ଅମୃତ ଯୋଗାଡ଼ ତୋଷ ନୃପମଣି ।
ଅଶ୍ୱମାନଙ୍କୁ ପତନେ ଦେଇ ଘାସ ବିରି
ସୁଖେ ଅଛନ୍ତି ସେମାନେ ନାନା କ୍ରୀଡ଼ା କରି ।
ଅସ୍ତ୍ର ଶସ୍ତ୍ର ତେଜ୍ୟା କରି ଦେବ ଯେ ଅଚ୍ୟୁତ
ଯଜ୍ଞେ ରାମକୃଷ୍ଣ ବିଜେ ହୋଇ କୁଶହସ୍ତ ।
ଲମ୍ବିତ ଜୁଡ଼ା ଆବର ତ୍ରିକଚ୍ଛ ବନ୍ଧନ
କଉସ୍ତୁଭ ମଣି ଘେନି ଚନ୍ଦନ ଲେପନ ।
ବେଦ ମନ୍ତ୍ର ଅଧ୍ୟୟନ କଲେ ମନ୍ତ୍ରପୋଥି
ଋଷିମାନଙ୍କ ସଙ୍ଗତେ କୃଷ୍ଣ ହଳପତି ।
ଗୋସିଂହକୁ ତିଆରଇ ଦୈତ୍ୟକୁଳ ମନ୍ତ୍ରୀ
କୂଟ ମାୟାଧର ଏ ଯେ ଅଟଇ ଶ୍ରୀପତି ।
ନ ଜାଣି ଆସି ମିଳିଲ ତୁମ୍ଭେ ଏ ସଭାରେ
ଲେଉଟି ନ ଯିବା ଆମ୍ଭେ ଜେନାବଳୀପୁରେ ।
ଏସନକ କୂଟ ପାଞ୍ଚି ସର୍ବ ଦେବଗଣ
ପଠାଇ ଦେଇ ଅଛନ୍ତି ଦେଖ ଚିତ୍ରସେନ ।
ନଳକୁବେରକୁ ପେଶି ଅଛଇ କୁବେର
କୃଷ୍ଣଙ୍କୁ ବୋଇଲେ ତୁ ଗୋ ସିଂହକୁ ମାର ।
ଗୁପତ କର ଏ କଥା ମାରିବା ଉପାୟେ
ଏହି ମହାଯଜ୍ଞ ସମାପତ ହେବାଯାଏ ।
କୂଟ କପଟିଆ ଅଟେ ଏହି ଜଗନ୍ନାଥ
ନିଶ୍ଚେ ଆମ୍ଭଙ୍କୁ କରିବ ସମରେ ନିପାତ ।
ଆହେ ଗୋସିଂହ ତୁ ଏବେ ଆମ୍ଭ ବୋଲ କର
ଅସ୍ତ୍ର ଶସ୍ତ୍ର ନାହିଁ ରାମକୃଷ୍ଣଙ୍କ ହସ୍ତର ।

ତିରିଶ ଯୋଜନ ମାଡ଼ି ଚାଲନ୍ତି ସଇନୀ
ଗୋସିଂହ ଅଛି ବିମାନେ ସତ୍ୟଭାମା ଘେନି ।
ମଣିଭଦ୍ରା ନାମେ ଅଛି ନଦୀ ଯେ ଗୋଟିଏ
ତହିଁର ତୀରେ ରହିଛି ବୀର ଧନଞ୍ଜୟେ ।
ସୁରଉଦୟ ବୋଲି ସେ ଗିରି ନାମ ଗୋଟି
ତା ଉପରେ ବସିଅଛି ସେ ରାତ୍ରେ କିରୀଟି ।
ଶତଧନୁ ବୋଲଇ ତୁ ଶୁଣ ଫାଲଗୁନି
ଦକ୍ଷିଣ ଦିଗେ ଶୁଭଇ ମହା ଗୋଳଧ୍ୱନି ।
କେବଣ ରାଜାର ବଡ଼ ଥାଟ ଗୋଟାଯାଏ
ଏଥୁ ଆଡ଼ ହୋଇଯିବା ଆହେ ଧନଞ୍ଜୟେ ।
ଅର୍ଜ୍ଜୁନ ବୋଇଲେ ଯିବେ ପଥେ ରଜ ଶାନ୍ତି
ପରଥାଟ ଛାରକୁ ହୋ କିସ ମୋର ଭୀତି ।
ଯେ ଅବା ଥାଟକୁ ଘେନି ଆସିବ ଅଜ୍ଞାନେ
ମରିବେ ସେ ସୈନ୍ୟଯାକ ନାରାଚର ମୁନେ ।
ଶତଧନୁ ଅର୍ଜ୍ଜୁନର କଥା ହୁନ୍ତେ ତହିଁ
ଅସୁରବଳ ଭେଟିଲେ ସେ ପର୍ବତେ ଯାଇ ।
ରଥରେ ବସି ଆରତେ ଦେବୀ ସତ୍ୟାସତୀ
ରଖ ରଖ ଅର୍ଜ୍ଜୁନ ହୋ ଉଚ୍ଚରେ ଡାକନ୍ତି ।
ଶତଧନୁ ବୋଇଲାକ ଶୁଣ ଫାଲଗୁନି
ଶୁଭଇ ତ ସତ୍ୟଭାମା ଦେବୀ ମୁଖଧ୍ୱନି ।
ଶତ୍ରାଜିତ ନନ୍ଦିନୀ ସେ କୃଷ୍ଣପାଶେ ବସେ
କେବଣ ଦାନବ ଅବା ବଳେ ଘେନି ଆସେ ।
ରୋଦନ କରି ଡାକନ୍ତି ପୁଣି ସତ୍ୟଭାମା
ରକ୍ଷାକର ଅର୍ଜ୍ଜୁନ ମୁଁ ଶ୍ରୀକୃଷ୍ଣଙ୍କ ବାମା ।
ରକ୍ଷାକର ରକ୍ଷାକର ବୋଲି ଦେବୀ ଭାଷେ
ଗୋସିଂହ ଦଇତ ମୋତେ ବଳେ ଘେନିଆସେ ।
ଏସନକ ବାକ୍ୟ ସତ୍ୟଭାମା ମୁଖୁ ଶୁଣି
ମନଭେଦି ନାରାଚକୁ ପେଶେ ବୀରମଣି ।
କେହି ପୁଣି କାହାକୁ ହିଁ କରେ ବଳାତ୍କାର
ବାରି ନ ପାରିଲି ମୁହିଁ ଘୋର ଅନ୍ଧକାର ।
ପଥ ନିରୋଧ କର ତୁ ଏ ତିନି ଭୁବନ
କେଣେ ନ ଯିବଟି ରାଜା ଆଦି ତାର ସୈନ୍ୟ ।
ରାତ୍ର ପ୍ରଭାତରେ ଏହା ବିଚାର କରିବା
ଦୁଷ୍ଟ ହୋଇଲେ ତାହାକୁ ପ୍ରାଣରେ ମାରିବା ।
ବାସବୀର ବଚନରେ ଗଲା ମନ ଭେଦୀ
ଆକାଶ ପାତାଳ ଚାରିଦିଗ ହିଁ ନିରୋଧି ।
କେଉଁ କତିକି ଯିବାକୁ ନାହିଁ ପୁଣି ବାଟ
ମଧ୍ୟରେ ରହିଅଛଇ ଅସୁରର ଥାଟ ।
ଗୋସିଂହ ବୋଇଲା ତୁହୋ ଦୁର୍ଦ୍ଦଣ୍ଡ ସାରଥି
ବାହୁକିନା ରଥ ଚାଲିଯିବା ହୋ ଝଟତି ।
ସାରଥି ବୋଲଇ ଦେବ ପଶିଲ ତ କାହିଁ
ପଥ ନିରୋଧ ପଡ଼ିଲା ବାଟ ଆଉ ନାହିଁ ।
ଗୋସିଂହ ବୋଲେ ଆକାଶେ ବାହା ତୁହି ରଥ
ତହିଁ ବାଟ ନାହିଁ ଘୋଟିଅଛି ଶରପଥ ।
ଚୌରାଶୀ କ୍ଷଉଣୀ ବଳ ଘେନିଣ ନିରୋଧି
ମେରୁ ମନ୍ଦରେ ଯେସନ ନାହିଁ କିଛି ସନ୍ଧି ।
ପୂରୁବ ଦିଗରେ ବାଟ ନ ପାଇ ସାରଥି
ବାହୁଡ଼ାଏ ରଥ ହୋଇ ପଶ୍ଚିମ ମୁରତି ।
ପଶ୍ଚିମ ଦିଗେ ଯିବାକୁ ନାହିଁ ପୁଣି ବାଟ
ଦକ୍ଷିଣ ଦିଗକୁ ପୁଣି ଚଳାଇଲେ ଥାଟ ।
ଯେସନେକ ବେଢ଼ିଛି କି ପାଚେରୀ ଲଙ୍କାର
ବାଟ ନ ପାଇଲା ସେହି ଦୈତ୍ୟ ଦୁରାଚାର ।
ସାରଥିକୁ ବୋଇଲାକ ତହିଁ ଦୈତ୍ୟ ନାହା
ତୁ ଆକାଶ ମଣ୍ଡଳକୁ ରଥ ମୋର ବାହା ।
ରାଜାର ବଚନେ ରଥ ବାହେ ମହାବୀର
ଆକାଶକୁ ବାଟ ନାହିଁ ଘୋଟିଅଛି ଶର ।
ସାରଥି ବୋଇଲା ଦେବ ନାହିଁ ଏଥେ ବାଟ
ବିକଳ ହେଉଅଛନ୍ତି ଅସୁରର ଥାଟ ।
ଜମ୍ଭାସୁର ମନ୍ତ୍ରୀ ତହିଁ ରାଜାଙ୍କୁ କହିଲା
ବୋଲ ଯେ ନ କଲୁ ରାଜା ପ୍ରମାଦ ପଡ଼ିଲା ।
ପିତା ବଚନ ମେଣ୍ଟିଣ କରେ ଯେଉଁ ସୁତ
ଆୟୁଷ କ୍ଷୟ ତାହାର ହୁଅଇ ନିତାନ୍ତ ।
ଶାଶୁ ଶ୍ୱଶୁର ବଚନ ମେଣ୍ଟଇ ଯେ ବଧୂ
ସନ୍ତାନ ହାନି ହୁଅଇ କୁଳକୁ ଅସାଧୁ ।
ସ୍ୱାମୀର ବଚନ ଯେବେ ମେଣ୍ଟଇ ଘରଣୀ
ଗୃହ ବାସ ଅପ୍ରାପତ ହୁଏ ଦୋଚାରୁଣୀ ।
ଗୁରୁ ବଚନ ମେଣ୍ଟଣ କରେ ଯେଉଁ ଶିଷ୍ୟ
ହତାଶ ହୁଅଇ ବିଦ୍ୟା ନୁହଇ ଅଭ୍ୟାସ ।
ବଡ଼ ବଚନ ମେଣ୍ଟିଲେ ପଡ଼ଇ ପ୍ରମାଦ
ଶାସ୍ତ୍ରକଥା ନିନ୍ଦା କଲେ ହୁଏ ଶିରଚ୍ଛେଦ ।
ରାଜାମାନଙ୍କର ମନ୍ତ୍ରୀ ଅଟେ ଗୁଣନିଧି
ତାହା ବୁଦ୍ଧିରେ ରାଜାର ସର୍ବକାର୍ଯ୍ୟ ସିଦ୍ଧି ।
ମନ୍ତ୍ରୀର ବଚନେ ଯେବେ ମେଣ୍ଟଇ ନୃପତି
ହତରାଜ୍ୟ ହୁଅଇ ଯେ ହରଇ ବିଭୂତି ।
ବତିଶ ଗୁଣ ଥିଲେ ସେ ହୁଅଇ ଭୂପତି
ତେତିଶ ଗୁଣ ବହିଲେ ହୁଏ ସିନା ମନ୍ତ୍ରୀ ।
ସତ୍ୟଯୁଗେ ରାଜା ଜଳତରଙ୍ଗ ଯେ ଥିଲା
ମନ୍ତ୍ରୀର ବୁଦ୍ଧି ବଳରେ ସମସ୍ତ ଜିଣିଲା ।
ଏକଦିନେ ବରୁଣକୁ ସେ ଦଣ୍ଡ ସାଜିଲା
ନ ଯାଅ ବୋଲି ତାହାକୁ ମନ୍ତ୍ରୀ ନିବାରିଲା ।

ମନ୍ତ୍ରୀର ବଚନ ରାଜା କଲାକ ଅବଜ୍ଞା
ବୋଇଲା ଏ ବାର ମୋର ଦେଖହୋ ପ୍ରତିଜ୍ଞା ।
ସିନ୍ଧୁ ଜିଣି ଆଣିବଇଁ ମୁହିଁ ରତ୍ନନିଧି
ଏହିକ୍ଷଣି ସଂଗ୍ରାମରେ ଜିଣିମା ଜଳଧି ।
ଏତେ ବିଚାରି ବରୁଣ ପୁରେ ଧାଡ଼ି ଦେଲା
ଚଉରାଶି କାଠି ସୈନ୍ୟ ସମୁଦ୍ରେ ବାହିଲା ।
ଅସୁର ସୈନ୍ୟ ସମୁଦ୍ରେ ପଶି ଯାଉଅଛି
ପାଣି ପିଅନ୍ତେ ସମୁଦ୍ର ଯାଉଅଛି ଘୁଞ୍ଚି ।
ସନ୍ଧାନ ନ ଦେଲା ଯହୁଁ ବରୁଣ ଜଳଧି
ଥାଟ ଘେନି ରାଜା ବେଗେ ପଶିଲାକ ଖେଦି ।
ମନ୍ତ୍ରୀ ବୋଇଲା ରାଜାଏ ଶୁଣିବା ଦୁର୍ଲ୍ଲଭ
ରାଜେଶ୍ୱର ହୋଇ ତୁହି ନ କର ଯେ ଲୋଭ ।
ଲୋଭ ବଢ଼ିଲେ ମନୁଷ୍ୟ ହୁଏ ହୀନବୁଦ୍ଧି
ଲୋଭେ ପାପ ହୁଏ ପାପେ ହୁଅଇ ସମାଧି ।
ତଥାପି ରାଜନ ମନ୍ତ୍ରୀ ବୋଲ ଯେ ନ କଲା
ସୈନ୍ୟବଳ ଘେନି ବରୁଣକୁ କଟାଳିଲା ।
ସେ ଜଳ ତରଙ୍ଗ ରାଜା ପ୍ରତିଜ୍ଞା କରିଣ
ଧସାଇ ପଶିଲା ଜଳେ ସଇନ୍ୟ ଘେନିଣ ।
ବରୁଣ ଦେବତା ଯେବେ ସମାଧାନ କଲା
ବହୁତ କଟାଳ ଦେଖି କିଛି ହିଁ ନ ଦେଲା ।
ପବନ ଦେବତା ଆଗେ କହିଲାକ କାନ୍ଦି
ପଳାଇଲା ତା ଭୁବନ ଛାଡ଼ି ସେ ଜଳଧି ।
ବୋଇଲା ବରୁଣ ତୁହୋ ଶୁଣସି ପବନ
ତୋର ପରା ସଖା ଥାଇଁ ଏଡ଼େ ବିଡ଼ମ୍ବନ ।
ଜଳ ପବନ ଅନଳ ଆମ୍ଭେ ଏକ ପ୍ରୀତି
ପାଳିବା ନା ଏ ସଚରାଚର ବସୁମତୀ ।
ଚନ୍ଦ୍ର ସୂର୍ଯ୍ୟ ଘେନି ଆମ୍ଭେ ଗଡ଼ ଦଇବତ
ଏ ସଚରାଚର ପୃଥ୍ୱୀ ପାଳିବାକୁ ଜାତ ।
କୋଟି ବ୍ରହ୍ମାଣ୍ଡ ଦେବତା ଆମ୍ଭଙ୍କୁ ନ ଗଛି
ପାଳକ ପୁରୁଷ ଆମ୍ଭ ତହୁଁ କେହୁ ଅଛି ।
ସମୁଦ୍ର ପାଣି ନ ନେଇ ମେଘ କି ବର୍ଷିବ
ପୃଥିବୀ ଶସ୍ୟ ନ ଦେଲେ କେହ୍ନେ ଥିବେ ଜୀବ ।
ଆଦିତ୍ୟଦେବ ଯେବେଟି ନ ଖଣ୍ଡିବେ କ୍ଳେଶ
ଚନ୍ଦ୍ରଦେବତା ନ ଦେବେ ପୁଣି ସୁଧାରସ ।
ଏମନ୍ତେ ନାଶ ହୋଇଲେ ନିଶ୍ଚେ ଚତୁର୍ଦ୍ଦଶ
ତେଣୁ ପରସ୍ପରେ ପ୍ରୀତି ରଖିବା ଅବଶ୍ୟ ।
ସମୁଦ୍ର ଯେ ପାଣି ଦେବ ମେଘ ବରଷିବ
ପୃଥ୍ୱୀ ଶସ୍ୟ ଦେବ ଜୀବ ପବନ ହିଁ ଦେବ ।
ଆଦିତ୍ୟ କ୍ଳେଶ ଖଣ୍ଡିବ ଚନ୍ଦ୍ର ଦେବ ରସ
ଆମ୍ଭେ ଷଡ଼ଜଣ ସିନା ପାଳିବା ତ୍ରିଦଶ ।

ଏତେକ ଯହୁଁ ତାହାକୁ ବରୁଣ କହିଲା
ଅଣଚାଶ ପବନ ଯେ ଏକାଠି ବହିଲା ।
ଦକ୍ଷିଣ ମୂରତି ହୋଇ ଯାଆନ୍ତି ଅସୁରେ
ଉତ୍ତମ ମୂରତି ହୋଇ ବହେ ଧାତିକାରେ ।
ଜଳ ପବନ ମେଘ ଏ ଏକାଠି ହୋଇଲେ
ଜଳ ତରଙ୍ଗ ସୈନ୍ୟଙ୍କୁ ମାଡ଼ିଣ ପଡ଼ିଲେ ।
ଲକ୍ଷେ ଯୋଜନ ଗଭୀର ଥିଲେ ସେହି ପଶି
ଚଉରାଶି କାଠି ସୈନ୍ୟ ଗଲେ ସର୍ବେ ଭାସି ।
ମନ୍ତ୍ରୀର ବଚନ ଜଳତରଙ୍ଗ ନ କଲା
ଶୁଣ ହୋ ଗୋସିଂହ କାଳେ ଏମନ୍ତ ହୋଇଲା ।
ପରର ପରାଭବକୁ ଚିନ୍ତଇ ଯେ ପ୍ରାଣୀ
ବିଧାତା ପୁରୁଷ ଦଣ୍ଡ ଦିଏ ତାକୁ ଜାଣି ।
ରାବଣ ମହାତମା ଏ ନିରୋଧିଲା ବାଟ
ଏ ସ୍ତିରୀ ନିମେନ୍ତ ନିଶ୍ଚେ ନାଶଯିବ ଥାଟ ।
ମନ୍ତ୍ରୀ କହନ୍ତେ ଏମନ୍ତେ ପାହିଗଲା ରାତି
ରାକ୍ଷସ ବଳ ଦେଖିଲେ ପାର୍ଥର ମୂରତି ।
ବୋଇଲାକ କରପତ୍ର ଯୋଡ଼ି ଶତଧନୁ
ଶୁଣ ତୁ ହୋ ସାବଧାନେ ଇନ୍ଦ୍ରଙ୍କର ସୁନୁ ।
ଗୋସିଂହ ଦଇତ୍ୟ ଏ ଯେ ମହିଷାର ନାତି
ତ୍ରୈଲୋକ୍ୟ ଯେ ତା ପୁରୁଷ ବଧି ନ ପାରନ୍ତି ।
ଜପାସୁର ମନ୍ତ୍ରୀ ତହୁଁ ଘେନି ସତ୍ୟଭାମା
ଅର୍ଜ୍ଜୁନକୁ ଦେଇ କହେ ସମ୍ଭାଳ ମହାତ୍ମା ।
ଦେଖିଣ ବେଗେ ଉଠିଲା ବୀର ଫାଲଗୁନି
ସତ୍ୟଭାମା ପାଦତଳେ କରଇ ଦଣ୍ଡନୀ ।
ଶୋକଭର ହୋଇ ଶତ୍ରାଜିତର ଦୁଲାଳୀ
ବୋଲେ ଗୋସିଂହ ନାଶିଲା ରାମ ବନମାଳୀ ।
ସମସ୍ତ କଥା କହିଲେ ଅର୍ଜ୍ଜୁନର ପାଶେ
ଗର୍ଜି ପାର୍ଥିବ ଉଠିଲେ କରି ମହାରୋଷେ ।
ଜପାସୁର ବାଳ ପାର୍ଥ ଧରି ବାମକରେ
ବିଜୟ କର୍ଣ୍ଣକଟାରେ ଛେଦିଲେ ସତ୍ୱରେ ।
ଛାଡ଼ିଲାକ ସେ ଅସୁର ମନ୍ତ୍ରୀ ଦୀର୍ଘ ରଡ଼ି
ଯେସନେକ ଗିରିବର ପଡ଼ିଲାକ ଝଡ଼ି ।
ବେନି ପ୍ରହାରେ ଛିଡ଼ିଲା ତାର ଦୀର୍ଘମୁଣ୍ଡ
ପଡ଼ିଲା ଦନୁଜବର ହୋଇ ବେନିଖଣ୍ଡ ।
ମନ୍ତ୍ରୀ ପଡ଼ନ୍ତେ ଧାଇଁଲେ ବେଗେ କଉଣପେ
ଅନେକ ନାରାଚ ବୃଷ୍ଟି କଲେ ମହାକୋପେ ।
ଅର୍ଜ୍ଜୁନ ବୋଇଲେ ତୁ ହୋ ଶୁଣ ଶତଧନୁ
ସତ୍ୟାକୁ ତୁ ନିଅ ଗିରିବର ସନ୍ନିଧାନୁ ।
ସୂର୍ଯ୍ୟକେତୁ ବିମାନରେ ଗୋସିଂହ ଯେ ଥିଲା
ସୁମରନ୍ତେ ଅର୍ଜ୍ଜୁନ ତା ଛାମୁରେ ମିଳିଲା ।

ସେ ବିମାନରେ ଅସୁରେ ଥିଲେ ଯେତେ ବସି
ଅର୍ଜ୍ଜୁନକୁ ମାଇଲେ ସେ ନାରାଚ ଆକର୍ଷି ।
ଯେସନେକ ଜଳ ବୃଷ୍ଟି ହୁଅଇ ଗଗନେ
ପରିଘ ନାରାଚ ବିନ୍ଧୁଛନ୍ତି ଅନୁକ୍ଷଣେ ।
ଅସ୍ତ୍ରଶସ୍ତ୍ରେ ଜିତା ସେହି ସଂଗ୍ରାମେ ନିଃଶଙ୍କା
ଅନର୍ଗଳ ଅଜେୟ ଯେ ବୀର ରଣରଙ୍କା ।
ଯୁଦ୍ଧେ ଅନିବାରଣ ଯେ କ୍ଷତ୍ରି ଚୂଡ଼ାମଣି
ଏକା ନାରାଚେ ସମସ୍ତ ଶସ୍ତ୍ର ଦେଲା ହାଣି ।
କୁହୁକୁ ନାରାଚ ପୁଣି ମାଇଲେ ଦଇତ୍ୟ
ଅର୍ଜ୍ଜୁନ ଘେନି କାଟିଲା ସୂର୍ଯ୍ୟାବର୍ତ୍ତ ଅସ୍ତ୍ର ।
କୁହକ ତେଜି ଫାଟିଲା ଦିଗ ଗଲା ଫିଟି
ପୁଣି ଦାନବ ବିନ୍ଧିଲେ ସର୍ବଦିଗ ଘୋଟି ।
ବହୁତ ନାରାଚ ପୁଣି ବିନ୍ଧିଲେ କୌଣପେ
ସମସ୍ତ ଧ୍ୱଂସ ହୋଇଲା ପାର୍ଥର ପ୍ରତାପେ ।
ଅସଂଖ୍ୟ ସଂଗାମ କଥା ଲୋକେ ଅଗୋଚର
ଅବିଶ୍ରାମ ସଂଗ୍ରାମ ଯେ ହୋଇଲା ଅପାର ।
ସଂଗ୍ରାମେ ବିମୁଖ ହେଲେ ବୀରବର ପାର୍ଥ
ନିଜ ହସ୍ତରେ ଧଇଲେ ଅସ୍ତ୍ର ପାଶୁପତ ।
ଯେବେ ତୃପ୍ତ ମନେ ତୋତେ ଦେଇଛନ୍ତି ହର
ଅସୁର ବଳକୁ ଧ୍ୱଂସି ପକାଅ ତୁ ଶର ।
ଯେତେବେଳେ ଦେଖିଲାକ ଅପର୍ଯ୍ୟାପ୍ତ ସୈନ୍ୟ
ତିଆରି ନାରାଚ ଗୋଟି ପେଶିଲା ଅର୍ଜ୍ଜୁନ ।
ଚଳିଲା ନାରାଚ ଗୋଟି ରୁଦ୍ରତେଜ ଘେନି
ଯାଆନ୍ତେ ସେ ଦହୁଅଛି ଅସୁର ବାହିନୀ ।
ନୀଳବାଣ ଭୁଜବାଣ ହରିହର ଆତ୍ମା
ପୁଣି ବେନି ଶରକୁ ଯେ ପେଶଇ ମହାତ୍ମା ।
ନୀଳବାଣ ଭୁଜବାଣ ପାଶୁପତ ଶର
ତିନି ନାରାଚ ଘୋଟିଲା ଦିଗ ଯେ ଅମ୍ବର ।
ଶତେ ଶତେ ତାଳ ସେହି ନାରାଚଙ୍କ ଶିଖା
ଭାରାଭର ଦହନ ସେ ଅନନ୍ତ ଯା ସଖା ।
ଯେବଣ ଶର ବ୍ରହ୍ମାଣ୍ଡଯାକ ପାରେ ଘୋଟି
ତିନି ନାରାଚ କି ସୂର୍ଯ୍ୟ କିରଣ ପ୍ରକଟି ।
ଅସୁରେ ଦହନ ହେଲେ ଶରତେଜ ଚାହିଁ
ପଥ ନିରୋଧି ଯିବାକୁ ବାଟ ନାହିଁ କାହିଁ ।
ଖେଚରୀ ନାରାଚ ଦେଇଥିଲେକ ପାର୍ବତୀ
ସେ ନାରାଚ ବସାଇଲା ପାର୍ଥ କୋପମୂର୍ତ୍ତି ।
ନାରାଚକୁ ତିଆରଇ ବୀରବର ପାର୍ଥ
ପୂର୍ବେ ମହିଷାସୁରକୁ ବଧିଲେ ଗୋ ମାତ ।
ଏବେ ଏମାନେ ଅଟନ୍ତି ଦେଖ ତୋର ଭକ୍ଷ
ଗୋସିଂହକୁ ବଧ କରି ତ୍ରିଜଗତ ରଖ ।
କେଛରୀ ନାରାଚ ଯହୁଁ ବିନ୍ଧିଲେ ଫାଲଗୁନି
କିଳିକିଳା ନାଦ କରି ଉଠିଲା ବହନି ।
ଭେଦନ୍ତି ନାରାଚ ଯାଇ ଦୈତ୍ୟ ରୋମାବଳୀ
ସୂଚିମୁନ ପ୍ରାୟ ଦେହେ ଯାଉଛନ୍ତି ଗଳି ।
ରକତେ କର୍ଦ୍ଦମ ହେଲା ଦାନବଙ୍କ କାୟ
ଶରୀର ଦିଶେ ମନ୍ଦର ପୁଷ୍ପମାଳା ପ୍ରାୟ ।
ଖେଚରୀ ନାରାଚ ଗୋଟି କିରଣର ଜ୍ୟୋତି
ଯେତେ ଦାନବ ସେ ହେଲା ତେତିକି ମୁରତି ।
ଯେବଣ ଆଜ୍ଞା ଦେଇଛି ବୀର ସବ୍ୟସାଚି
କୁହୁକ ପ୍ରାୟେ ନାରାଚ କ୍ଷେପି ଯାଉଅଛି ।
ଯେସନ ତୁଷାର ବୃଷ୍ଟି କରଇ ଶିଶିରେ
ତେସନ ବିନ୍ଧଇ ପାର୍ଥ ଅସୁର ଶରୀରେ ।
ପଡ଼ିଲେ ଅସୁରେ ସେହି ନାରାଚେ ନିମଜ୍ଜି
ସମ୍ମୁଖ ରଣେ ନ ରହି ଏଣେ ତେଣେ ଭାଜି ।
ଗୋସିଂହ ଦୈତ୍ୟର ଥାଟ ଚୌରାଅଶୀ କାଠି
ଏକାକୀ ଅର୍ଜ୍ଜୁନ ଦେଲା ସମସ୍ତଙ୍କୁ ଘାଣ୍ଟି ।
ଅଗସ୍ତିଙ୍କୁ ପୁଚ୍ଛାକଲେ ବୈବସ୍ୱତ ମନୁ
ଅସୁରେ ନାରାଚ ଯେତେ ପେଶନ୍ତି ଅଜ୍ଞାନୁ ।
ସେ ଶସ୍ତ୍ରମାନ ଅର୍ଜ୍ଜୁନ ଦହନ୍ତି କେମନ୍ତେ
ଏହା ସଂକ୍ଷେପି କହିବା ହେଉ ମୁନି ମୋତେ ।
ଅଗସ୍ତି ବୋଇଲେ ଶୁଣ ମନୁ ଯୋଗେଶ୍ୱର
ଚଉରାଶି କାଠି ସୈନ୍ୟ ବିନ୍ଧନ୍ତି ଯେ ଶର ।
ଲକ୍ଷ ସହସ୍ର ଅର୍ବୁଦ ଖର୍ବ କୋଟି କୋଟି
ବିନ୍ଧନ୍ତି ଯେହ୍ନେ କକଡ଼ା ମାସେ ଜଳବୃଷ୍ଟି ।
ସମସ୍ତ ହୋଇ ଯେତେକ ନାରାଚ ବିନ୍ଧନ୍ତି
ଏକା ଅର୍ଜ୍ଜୁନ ତେତିକି ସନ୍ଧାନ କରନ୍ତି ।
ଶସ୍ତ୍ରକୁ ଶସ୍ତ୍ର କରନ୍ତି ପାର୍ଥ ପରିତାଳ
ଆକାଶ କମ୍ପଇ ସେହି ଭୟଙ୍କର ଜାଳ ।
ନୀଳ ଭୁଜ ପାଶୁପତ ବାଣ ଯେ ଖେଚରୀ
ଅଗ୍ନି ଦେଇଥିଲେ ପୁଣି ଯେଉଁ ଶସ୍ତ୍ର ଚାରି ।
ବ୍ରହ୍ମା ହୋଇଲେ ହେଁ ସେହି ଶସ୍ତ୍ରକୁ ନ ଜିଣି
ଅଗ୍ନିଙ୍କର ପଞ୍ଚଆତ୍ମା ଶର ପାର୍ଥ ଘେନି ।
ଖାଣ୍ଡବ ବନ ଦହନେ ଅଗ୍ନି ତୋଷ ହେଲା
ପଞ୍ଚଆତ୍ମା ପଞ୍ଚଶରେ ଅର୍ଜ୍ଜୁନକୁ ଦେଲା ।
ଜଗନ୍ନାଥଙ୍କ ନିଧନ ଶୁଣି ଫାଲ୍‌ଗୁନି
କୋପେ ପେଶିଲା ପାର୍ଥ ସେ ଶସ୍ତ୍ରମାନ ଘେନି ।
ଅନିବାର ଶର ସେହି ନୁହଇ ନିବାରି
ଦହିଲେ ଦାନବ ବଳ ଘୃତ ଯୋଗ କରି ।
ପଚିଶ ଯୋଜନ ମାଡ଼ି ଅସୁର ଯେ ଥିଲେ
ସାତ ଘଡ଼ିର ଭିତରେ ଦହିର୍ଯ୍ୟ ହୋଇଲେ ।

ସୈନ୍ୟହତ ଦେଖି କୋପେ ଦାନବ ଗୋସିଂହ
ଦେବରଥ ଚଢ଼ି ମିଳେ ଆସି ପାର୍ଥ ଆଗ ।
ସାରଥି କହିଲା ରାଜା ସାବଧାନେ ଶୁଣ
ଏହାର ହାତରେ ଅଛି ତୋହର ମରଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବ ବଜ୍ରଧାରୀ
ସମର କଲେ ନୁହନ୍ତି ଏକେ ଏକେ ସରି ।
ଚାରିଦିଗପାଳ ହୋଇଛନ୍ତି ଏକ ମୂର୍ତ୍ତି
ମୋତେ ତ ଦୃଶ୍ୟ ହେଲାଣି ଏହା ରୂପକାନ୍ତି ।
ବ୍ରହ୍ମାଙ୍କର ସ୍ୱରୂପ ଏ ଜାଣିଲି ହୃଦ୍‌ଗତେ
କଟିମେଖଳା ବାସବ ଭୂଜ ଜଗନ୍ନାଥେ ।
ଭରାଭର ନିବାରଣେ ଜନମ ଏ ଗୋପେ
ମୋତେ ତ ଦୃଶ୍ୟ ହୋଇଲା ଏକା ହିଁ ସ୍ୱରୂପେ ।
ସଂଗ୍ରାମ ଛାଡ଼ି ତୁ ଅବା ଯାଆନ୍ତୁ ପଳାଇ
ପଥ ନିରୋଧ ଯିବାକୁ ତୋତେ ବାଟ ନାହିଁ ।
ରଣଯଜ୍ଞ କର ତୁ ହୋ ନୁହସି ନିସତ
ନିଶ୍ଚୟ ମୃତ୍ୟୁ ହୋଇବ ତୋତେ ପରାପତ ।
ସାରଥି ବଚନେ ସେହି ଗୋସିଂହ ଅସୁର
ଜୀବନର ଆଶା ଛାଡ଼ି ହେଲା ଆଗୁସାର ।
ଦେବରଥ ଛାଡ଼ି ପୁଣି ଚଢ଼ିଲାକ ହୟ
ଅରଜୁନ ଛାମୁରେ ଆସି ମିଳିଲା ସେ ରାୟ ।
କୋଟି ସହସ୍ର ବଳ ଧନକୁ ମାଇଲା
ଦଶଲକ୍ଷ ନାରାଚ ଯେ ପାର୍ଥକୁ ବିନ୍ଧିଲା ।
କୃତାନ୍ତ ନାମେ ନାରାଚ ମାଇଲେ ଫାଲଗୁନି
ଗୋସିଂହର ସବୁ ଶସ୍ତ୍ର ପକାଇଲା ହାଣି ।
ହସ୍ତ ବ୍ୟଗ୍ରେ ଶସ୍ତ୍ରମାନ ଦେଖି ସେ ନ ପାରି
ପବନ୍ନୁଁ ବେଗେ ଅସୁର ତାଙ୍କୁ ଶସ୍ତ୍ର ମାରି ।
ପର୍ବତା ନାମେଣ ଶର ମାଇଲା ଅସୁର
ବଜ୍ରଶରେ ତାହା ପାର୍ଥ କଲେକ ନିବାର ।
ବ୍ରହ୍ମଅସ୍ତ୍ର ଘେନି କୋପେ ଅସୁର ମାଇଲା
ନାରାୟଣ ଶରେ ପାର୍ଥ ତାହା ନିବାରିଲା ।
ବାବଲ ଶର ପେଶିଲେ ଶରାସନ ସନ୍ଧି
ଗୋସିଂହ ଧନୁକୁ ପାର୍ଥ ପକାଇଲେ ଛେଦି ।
ମହାକୋପେ ଗୋସିଂହର କମ୍ପୁଅଛି ଅଙ୍ଗ
ଅରଜୁନ ଉପରେ ନେଇ ପିଟିଲା ପରିଘ ।
ଆସନ୍ତେ ଦେଖି ସେ ଶସ୍ତ୍ର ବଞ୍ଚାଇ ପାର୍ଥିବ
ବଜ୍ର ଶକତିରେ ଦେଲେ ଦୈତ୍ୟକୁ ପ୍ରାଭବ ।
ଦେଖି ଗୋସିଂହ ପାତିଲା ତାର ଶିର ଅଙ୍ଗ
ଶକତି ତହିଁରେ ପଡ଼ି ଫୁଟି ହେଲା ଭଙ୍ଗ ।
ଗୋସିଂହ ଯେ କ୍ଷେତ୍ରପାଳ ଅଶ୍ୱ ଚଢ଼ିଥିଲା
ଦୈତ୍ୟେ ପକାଇ ଅର୍ଜ୍ଜୁନେ ସେ ଶରଣ ଗଲା ।

ପ୍ରଳୟ ଅନନ୍ତ ଅଟଇ ଯେ ସେହୁ ହୟ
ଦେଖିଣ ଅର୍ଜ୍ଜୁନ ତାର ଚରଣେ ବିନୟ ।
କୋପେ ଅସୁର ବୁଲାଇ କୁଠାର ଆୟୁଧ
ଅର୍ଜ୍ଜୁନ ଉପରେ ନେଇ ପିଟିଲା ନିର୍ବୋଧ ।
ବଜ୍ର ସଦୃଶେ ପିଟିଲା କୋପେ ଦୈତ୍ୟପତି
ବଞ୍ଚାଇ ପାର୍ଥ ମାଇଲା ତ୍ରିଶୂଳ ଶକତି ।
ଦେଖିଣ ଗୋସିଂହ ଦୈତ୍ୟ ପାତିଲା କପାଳ
ବଜ୍ରାଘାତେ ପ୍ରାୟ ଆସି ପଡ଼ିଲା ତ୍ରିଶୂଳ ।
ଭାଙ୍ଗି ଖଣ୍ଡ ଖଣ୍ଡ ହେଲା ତ୍ରିଶୂଳ ଶକତି
ଆକାଶରେ ଝଲକିଲା ଅଗ୍ନି ଜ୍ୟୋତି କାନ୍ତି ।
ରାଗେ ପାର୍ଥିବ ପେଶଇ ପୁଣି ଅଗ୍ନିଶର
ଅଗ୍ନିକି ଦେଖିଣ ତୁଣ୍ଡ ପାତିଲା ଅସୁର ।
ଗୋସିଂହ ପେଟେ ପଶିଲା ଯାଇ ଅଗ୍ନିବାଣ
ଅସୁର ଗ୍ରାହ୍ୟ ନ କଲା ଦେଖି ତତକ୍ଷଣ ।
ଆଶ୍ଚର୍ଯ୍ୟ ହୋଇଲେ ଇନ୍ଦ୍ର ଚନ୍ଦ୍ର ଦେବବ୍ରହ୍ମା
ଧନ୍ୟରେ ଗୋସିଂହ ଦୈତ୍ୟତୋହର ମହିମା ।
ଆକାଶରେ ଥାଇ କଲେ ଦେବ ବେଦଧ୍ୱନି
ଗୋସିଂହ ମାରି ଆକାଶ ରଖ ଫାଲଗୁନି ।
ବଇଷ୍ଣବୀ ଚକ୍ର ମହାମାୟାଙ୍କର ଥିଲା
ସେ ଚକ୍ର ଘେନିଣ ପାର୍ଥ ଗୋସିଂହ ମାଇଲା ।
ଯେବଣ ଚକ୍ରେ ମାଇଲେ ଦେବୀ ରକ୍ତବୀର୍ଯ୍ୟ
ଦାନବ ବଳ ହୋଇଲେ ତହିଁରେ ଦହିର୍ଯ୍ୟ ।
ସେ ଚକ୍ର ପଡ଼ିଲା ଯାଇ ଗୋସିଂହ ହୃଦୟେ
ଦହନ ହୋଇଲା ତେଣେ ଗୋସିଂହର କାୟେ ।
ପ୍ରଳୟ ଅଗ୍ନିରୁ ତେଜ ଚକ୍ରରୁ ଉଗୁଳି
ଗୋସିଂହ ଶରୀରଯାକ ହେଲା ପାଂଶୁମାଳି ।
ରାତ୍ର ଏକ ଦିବସେକ ସମର ହୋଇଲା
ଚଉରାଶୀ କୋଠି ସୈନ୍ୟ ଗୋସିଂହ ହିଁ ମଲା ।
ମାଘ କୃଷ୍ଣ ତ୍ରୟୋଦଶୀ ତିଥି ଗୁରୁବାର
ମୂଳା ନକ୍ଷତ୍ର ସେଦିନ ଅଟଇ ଆବର ।
ବାଳବ ନାମେ କରଣ ଅତିଗଣ୍ଡ ଯୋଗ
ମକର ସଂକ୍ରାନ୍ତି ଦିନ ତିରିଶ ଯେ ଭୋଗ ।
ବେଳ ଅଢ଼ାଇ ପ୍ରହର ଶନିଶ୍ଚର ବେଳା
ଗୋସିଂହ ଦୈତ୍ୟ ପଡ଼ିଲା କରି ରଣଖେଳା ।
ତ୍ରିଦଶ ଦେବତା କଲେ ସ୍ୱର୍ଗେ ସାଧୁ ଧ୍ୱନି
ବୋଇଲେ ସ୍ୱର୍ଗ ଅରିଷ୍ଟି ଖଣ୍ଡିଲୁ ଫାଲ୍‌ଗୁନି ।
ଭାରାଭର ନିବାରଣ କଲୁ ବୀରପାର୍ଥ
ଅମୃତ ବୃଷ୍ଟି କଲେ ସେ ଅର୍ଜ୍ଜୁନର ମାଥ ।
ଗୋସିଂହ ବଧ ଅଟଇ ରହସ୍ୟ ଏ ଗାଥା
ଇତି ଶ୍ରୀମହାଭାରତ ମଧ୍ୟପର୍ବ କଥା ।

ଅଗସ୍ତି ବାକ୍ୟ ଶୁଣନ୍ତି ମନୁ ମହାରଥା
କହି ନୁହଇ ଅସଂଖ୍ୟ ପୁରାଣ ବାରତା ।
ମୁଁ ଏହା ରଚିଲି ମହାମାୟାର ପ୍ରସନ୍ନେ
କଳିକଳୁଷ ପାପରୁ ମୁକ୍ତହୁଅ ଜନେ ।
ଗୋସିଂହ ବଧ ଶୁଣଇ ଯେହୁ ଏକମନେ
ଅଗାଧ ପାପସାଗରୁ ତରେ ତତକ୍ଷଣେ ।
କୋଟିଏ ତୀର୍ଥ କଲାର ପାଇ ଫଳଶ୍ରୁତି
ଖଣ୍ଡନ୍ତି ପାତକ ଆଉ ଦୁଃସହ ଦୁର୍ଗତି ।
ଅସଂଖ୍ୟ ମହାଭାରତ କେହୁ ଅନ୍ତକରି
ଅଗାଧ ସାଗର ଜଳ କେହୁ କଳିପାରି ।
କୋଟି ଅଶ୍ୱମେଧ ଏହି ଭାରତକୁ ଗରୁ
ତୁଳନ୍ତେ ହେଲା ଏ ମହାଗରୁ ସବୁଠାରୁ ।
ସୁଦୟା କଲେ ଅନନ୍ତରୂପା ଯେ ହିଙ୍ଗୁଳା
ପରମ ସାଧବୀ ସେହି ଶ୍ରୀଚଣ୍ଡୀ ଶାରଳା ।
ବହଇ ଗୋପନେ ବୃଦ୍ଧମାତା ନାମେ ନଦୀ
ପାତାଳ ଗଣ୍ଡକୀ ସେହି ମହାତୀର୍ଥ ଭେଦି ।
ସେ ନଦୀତୀରେ ଆସନ କଲେ ମହାମାୟେ
ମହାସମ୍ପଦ ଦିଏ ଯେ ପଢ଼େ ତାର ପାୟେ ।
ମୁହିଁ ସେ ଦେବୀ ଅଭୟ ମୃଦୁ ପଦ୍ମପାଦେ
ମନରଖି ଅଦୃଶ୍ୟକୁ ଲେଖେ ତା ପ୍ରସାଦେ ।
ଅଦ୍ୟପି ଖେଳଇ ସେହୁ ବାଳରୂପ ଧରି
ତପେ ବର ଦିଅଇ ସେ କଷ୍ଟ କରେ ପାରି ।
ଏ ମାୟା ମୋହସାଗରୁ ଉର୍ଦ୍ଧରୁ ଗୋଦେବୀ
ସୁଜ୍ଞାନୀ ପ୍ରାଣୀ ଲଭଇ ତୋତେ ମନେ ଭାବି ।
ନ ପଢ଼ିଲି ବିଦ୍ୟା ମୁହିଁ ନ ଜାଣଇ ରସ
ବଦନ୍ତି ଯେ ଗ୍ରନ୍ଥାକାର ଶ୍ରୀ ଶାରଳା ଦାସ ।

—୦—

## ସୁଭଦ୍ରା ହରଣ

ବଦନ୍ତି ଅଗସ୍ତି ସେ ଯେ କୁମ୍ଭଋଷି ବସ୍ତ
ଏସନକ କୃତ୍ୟ କଲା ସେ ବୀର ବିବସ୍ତ ।
ଯେତେ ଧନୁ ଆଣିଥିଲେ ସେ ସବୁ ଅସୁରେ
ଶତଧନୁ ରଖେ ସୂର୍ଯ୍ୟ କେତୁ ବିମାନରେ ।
ସେ ସମସ୍ତ ରତ୍ନମାନ ଘେନି ଫାଲଗୁନି
ସତ୍ୟଭାମା ପାଦେ ଦେଇ କରଇ ବଇନୀ ।
ମାରକଣ୍ଡଙ୍କ ଆୟୁଷ ପ୍ରାପ୍ତ ହେଉ ତୋତେ
ସତ୍ୟଭାମା ବୋଇଲେ ମୁଁ କି ଦେବଇଁ ତୋତେ ।
ଜଗନ୍ନାଥେ ଉପକାର ତୁହି ପାର୍ଥ କଲୁ
ଅସୁର ମୁଖରୁ ମୋତେ ଉଦ୍ଧରି ଆଣିଲୁ ।
ରୈବତ ପର୍ବତେ ଚାଲ ଆଗ ହୋଇଯିବା
ରାମକୃଷ୍ଣଙ୍କ ଚରିତ ସେଠାରେ ବୁଝିବା ।

ସତ୍ୟଭାମା ବିଜେ ସୂର୍ଯ୍ୟ କେତୁ ବିମାନରେ
ଆଗେ ପାର୍ଥ ଶତଧନୁ ବସିଲା ପଛରେ ।
କ୍ଷେତ୍ରପାଳ ଅଶ୍ୱଚଳି ସ୍ୱର୍ଗ ଭୁବନକୁ
ଦେଖିଣ ଇନ୍ଦ୍ର ଯତନେ ରଖିଲେ ତାହାକୁ ।
ତିନିଦିନେ ପ୍ରବେଶିଲେ ରୈବତ ପର୍ବତେ
ଦେଖିଲେ ଯଜ୍ଞ ଭବନ ଭଗ୍ନ ଇତସ୍ତତେ ।
କୁଣ୍ଡେ ଅଗ୍ନି ଗୋପ୍ୟ କରିଛନ୍ତି ବେନି ଭ୍ରାତେ
ତହିଁ ସତ୍ୟାସହ ପାର୍ଥ ମିଳିଲେ ତୁରିତେ ।
କୁଣ୍ଡ ସନ୍ନିଧାନେ ଯାଇଁ ପ୍ରବେଶି ଅର୍ଜ୍ଜୁନ
ଅଗ୍ନି ଦେବତାଙ୍କୁ ସ୍ତୁତି କଲେ କରି ମାନ୍ୟ ।
ଜୟ ତୁ ଅନଳ ବୈଶ୍ୱାନରେ ଯେ ଦେବତା
ଶୋଷକ ନାମକ ଦେବ କହି ଉଦ୍ଧାରନ୍ତା ।
ଯେବେ ମୋଠାରେ ସଦୟ ତୁମ୍ଭେ ଦେବସ୍ୱାମୀ
ସ୍ୱରୂପ ଦେଖାଅ ମୋତେ ରାମକୃଷ୍ଣ ବେନି ।
ଅର୍ଜ୍ଜୁନ ବାକ୍ୟେ ସାନନ୍ଦ ଦେବ ବୈଶ୍ୱାନର
ଯଜ୍ଞକୁଣ୍ଡୁ ରାମକୃଷ୍ଣ କରିଲେ ବାହାର ।
ଧବଳ କୋମଳ ଶିରେ ଶୋହେ ସପ୍ତଫେଣୀ
ଦିଶନ୍ତି ସେ କାମପାଳ ମହାତେଜ ଜିଣି ।
ନୀଳଉପ୍ପଳ ଯେ ତନୁ ଶଙ୍ଖ ଚକ୍ରପାଣି
ଅଗ୍ନିରୁ ବାହାର ଦେବଶରଇନ୍ଦ୍ର ଜିଣି ।
ଶତଧନୁ ଘେନି ପାଦେ ଅର୍ଜ୍ଜୁନ ପ୍ରଣମି
ଭାରାନିବାରଣ ଦେବ ଉଦ୍ଧାର ଭୋ ସ୍ୱାମୀ ।
ଗୋବିନ୍ଦ ବୋଇଲେ ଆମ୍ଭଙ୍କୁ ତୁ ଉଦ୍ଧରିଲୁ
ଗୋସିଂହର ଦର୍ପେ ଆମ୍ଭେ ଦୂଷିତ ହୋଇଲୁ ।
କରପତ୍ର ଯୋଡ଼ି ଶତଧନୁ ଯେ ବୋଇଲା
ସତ୍ୟା ଠାକୁରାଣୀଙ୍କି ଯେ ଦୈତ୍ୟ ନେଉଥିଲା ।
ମଣିସିନ୍ଧ୍ରା ନଦୀ ତୀରେ ଥିଲୁ ଆମ୍ଭେ ରହି
ସତ୍ୟଭାମା ଡାକଦେଲେ ପାର୍ଥ କର ତ୍ରାହି ।
ମୁହିଁ ବୋଇଲି ଭୋ ଦେବ ଶୁଣ ବୀରମଣି
ରଖ ବୋଲି ଡାକଦେଲେ ସତ୍ୟା ଠାକୁରାଣୀ ।
ତାହା ଶୁଣି ପେଶିଲେକ ପାର୍ଥ ମନଭେଦୀ
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ନିରୋଧି ।
ସ୍ୱାମୀ ସଂଗ୍ରାମର କଥା କହି ତ କେ ପାରି
ଅଢ଼ାଇ ପ୍ରହରେ ଥାଟ ଗଲେ ଯମପୁରୀ ।
ଯେବଣ ସମର କଲା ଗୋସିଂହ ଦଇତ
ଦେବଦାନବେ ଦୁର୍ଲ୍ଲଭ ସେ ଅତି ବିଚିତ୍ର ।
ଅସଂଖ୍ୟ ସମର ଦେବ ଅତି ଅଗୋଚର
ଅଢ଼ାଇ ଦିବସେ ମଲା ଗୋସିଂହ ଅସୁର ।
ଅଷ୍ଟ ଅବଧାନୀ ଦେବ ଶୁଣିମା ଶ୍ରୀହରି
କହଇ ସେ ଶତଧନୁ ସମର ବିସ୍ତାରି ।

ଶୁଣି ପରମ ଆନନ୍ଦ ହେଲେ ରାମ ହରି
ଆରେ ଶତଧନୁ ବର ମାଗ ତୁ ବିଚାରି ।
ପାଦେ ପ୍ରଣମିତ ହୋଇ ବୋଲେ ଶତଧନୁ
ଜୀବ ଦାନବ ଦେବାକ ଦେବକୀର ସୁନୁ ।
ଗୋବିନ୍ଦ ବୋଇଲେ ଆଜୁ ପାଇଲୁ ତୁ ରକ୍ଷା
ଥାଅ ଏବେ ଦ୍ୱାରକାରେ ପୁରୁ ମନୋବାଞ୍ଛା ।
ବଳରାମ କୋଳ କରି ଧଇଲେ ପାର୍ଥକୁ
କଲେ ଅନେକ ଗୌରବ ପୁରୁଷାର୍ଥ ତାକୁ ।
ଧନ୍ୟ ପାର୍ଥିବ ଜୀବନ ତୋରେ ସାଧୁ ସାଧୁ
ତୁହିରେ ପାର୍ଥିବ ମୋର ଅଟୁ ପ୍ରାଣବନ୍ଧୁ ।
ତୁହିରେ ପାର୍ଥ ମୋହର ପ୍ରାଣ ଅଧିକାରୀ ।
ପ୍ରତ୍ୟକ୍ଷ ତୁ ଅଟୁ ଦେବ ନିରଞ୍ଜନ ସରି ।
ତୁହି ସେ ଅଟୁ ଅନାଦି ଧାରଣ ମହାତ୍ମା
ତୁହି ଯେ ଅଟୁ ଆମ୍ଭର ପିତାମହ ବ୍ରହ୍ମା ।
ତୁହିରେ ପାର୍ଥିବ ମୋର ଅଟୁ ପ୍ରାଣବନ୍ଧୁ
ଧନ୍ୟ ଧନ୍ୟ ପାର୍ଥିବରେ ଜୀବନ ତୋ ସାଧୁ ।
ପରହିତେ ସଦା ଥାଉ ଦୁଃଖୀ ପର ଦୁଃଖେ
କି ଦେଇ ତୃପ୍ତ କରିବି କିଛି ହିଁ ନ ଦେଖେ ।
ଅନେକ ସାନ୍ଦନ ହୋଇ କୃଷ୍ଣ ବଳଦେବ
ରୈବତ ପର୍ବତେ ଦେବ କରାଇ ଉତ୍ସବ ।
ନଳ କୁବେର ପ୍ରଦ୍ୟୁମ୍ନ ଜଳେ ପଡ଼ିଥିଲେ
ବରୁଣ କୁବେର ତହୁଁ ତାଙ୍କୁ ଉଦ୍ଧାରିଲେ ।
ଭାସି ଆସି ପ୍ରବେଶ ସେହି ରୈବତ ପର୍ବତେ
ଥୋକାଏ ଯାଦବ ଥିଲେ ରହିଣ ଗୁପତେ ।
ରଇବତ ପରବତ ଅଟେ ତିନିପୁର
ଅସୁର ଭୟେ ସେ ଥିଲେ ଯାଇ ତଳପୁର ।
ବଳଦେବ ଠାକୁରଙ୍କ ଦୃଢ଼ବାକ୍ୟ ଶୁଣି
ଭିତର ପୁରୁ ବାହାର ହେଲେ ପୁତ୍ରମଣି ।
ଅର୍ଜ୍ଜୁନଙ୍କୁ କୋଳ କରି ବସାଇ ଶ୍ରୀପତି
ଶ୍ରୀକରେ ମଥାର ଜଟା ଦେଇ ଫୋଡୁଛନ୍ତି ।
ଉଗ୍ରସେନ ଯେ ଆଜ୍ଞା ଦେଲେ ଚକ୍ରଧର
ତୀର୍ଥର ଉତ୍ସବ କଥା ସମସ୍ତେ ବିଚାର ।
ଗୋସିଂହର ବଧ ଶୁଣି ଋଷି ତପୋଧନ
ରୈବତ ପର୍ବତେ ଆସି କଲେ ଧନ୍ୟ ଧନ୍ୟ ।
ଅର୍ଜ୍ଜୁନର ଜଟା ଫେଡ଼ି ସୁଗନ୍ଧ ଲଗାଇ
ତାହାଙ୍କୁ ସ୍ନାନ କରାନ୍ତି ଆପେ ଯଦୁସାଇଁ ।
ସତ୍ୟଭାମା ରତ୍ନଘଟେ ପାଣି ଦେଲେ ତୋଳି
ଆପେ ଶ୍ରୀହରି କେଶକୁ ଦିଅନ୍ତି ପଖାଳି ।
ପ୍ରଦ୍ୟୁମ୍ନ ଶାମ୍ବ ଆଦି ଯେ ସାତ୍ୟକି ସହିତେ
ରତ୍ନଘଟେ ପାଣି ତୋଳି ଦିଅନ୍ତି ସମସ୍ତେ ।

ସୁବର୍ଣ୍ଣର ସିଂହାସନେ ବସାଇ ଫାଲ୍‌ଗୁନି
ପୋଛିଲେ କେଶ ଶ୍ରୀକରେ ବସ୍ତ୍ରଖଣ୍ଡେ ଘେନି ।
ସାତ୍ୟକି ଶତଧନୁ ଯେ ଆଲଟକୁ ତୋଳି
ଶ୍ରୀକରରେ ଜଗନ୍ନାଥ କେଶକୁ କୁରୁଳି ।
କେଶ ଶୁଖାଇ କୁସୁମ ଘେନି ନଜ ହସ୍ତେ
ଦ୍ୱାଦଶ ଫଳରେ ଗଭା ସାଜି ଜଗନ୍ନାଥେ ।
ଅନେକ ରତ୍ନ ଶରୀରେ କଲେ ଆଭରଣ
ପିନ୍ଧାଇଲେ ପିତାମ୍ବରୀ ସୂକ୍ଷ୍ମ ବସନ ।
ଶିରେ ସୀମନ୍ତ ଲଲାଟେ ଦେଇ ଗନ୍ଧମାଟି
ସମୁଦ୍ର ମନ୍ଥନେ ଯେହ୍ନେ ଆଦିତ୍ୟକୁ ଘୋଟି ।
କର୍ଣ୍ଣରେ ଦେଲେ ଅମୃତ ରତନ କୁଣ୍ଡଳ
ହୃଦରେ ଭୂଷଣ କଣ୍ଠେ ରୁଦ୍ରାକ୍ଷର ମାଳ ।
ଭୁଜରେ ତାଡ଼ ତୋଡ଼ର କଙ୍କଣ ବାହୁଟି
ବିଦ ମୁଦ୍ରିକା ଯେ ଅଷ୍ଟରତନ କଚଟୀ ।
ପାଦରେ ନୂପୁର କଟି ମେଖଳା ହିଁ ଶୋଭା
ଯେସନେ ଦିଶଇ ରାତ୍ରେ ପୂର୍ଣ୍ଣଚନ୍ଦ୍ର ପ୍ରଭା ।
ବୀରବେଶେ ଅଳଂକୃତ କରି ବନମାଳୀ
ଚନ୍ଦନ ଯେ ଚତୁଃସମେ ଶରୀର ସମ୍ଭାଳି ।
ଆପେ ପୁଣି ଜଳେ ସ୍ନାନ କରିଣ ଅଚ୍ୟୁତ
ବେଶ ଭୂଷଣ ହୋଇଣ ଶ୍ରୀଜଗତଭୂତ ।
ଦିବ୍ୟ ସିଂହାସନେ ଯାଇ ବିଜୟ ମୁରାରି
ବସାଇଲେ ଅର୍ଜ୍ଜୁନକୁ ନେଇ କୋଳେ ଧରି ।
ସୁଗନ୍ଧ ଚନ୍ଦନ ମୃଗନାଭି ଯେ କସ୍ତୁରୀ
ଅଙ୍ଗେ ଲେପନ କରାଇ ଆପେ ଦେବହରି ।
ଆଜ୍ଞା ଦେଲେ ଯଦୁପତି ସତ୍ୟଭାମା ରାଇ
ସମସ୍ତ କନ୍ୟାଙ୍କୁ ତୁମ୍ଭେ କହ ବେଗେ ଯାଇଁ ।
ହସ୍ତେ ଅର୍ଘ୍ୟସ୍ଥାଳୀ ଘେନି ସମସ୍ତେ ଆସନ୍ତୁ
ଅର୍ଜ୍ଜୁନର ଶିରେ ଅର୍ଘ୍ୟ ଦେଇଣ ବନ୍ଦାନ୍ତୁ ।
ସତ୍ୟଭାମା କହିଲେ ଯେ କନ୍ୟାଙ୍କର ପାଶ
ଅର୍ଜ୍ଜୁନକୁ ଅର୍ଘ୍ୟ ଦେବା ବେଗହୋଇ ଆସ ।
ଶୁଣି ସାନନ୍ଦ ହୋଇଲେ ସକଳ ଯୁବତୀ
ନାନା ଅଳଙ୍କାର ବସ୍ତ୍ର ପିନ୍ଧିଣ ଆସନ୍ତି ।
ନାନାଦି କୁସୁମ ଖଞ୍ଜି କବରୀ ଶାମଳି
ହସ୍ତେ ଘେନିଲେ ମାଣିକ୍ୟ ଦୀପ ଅର୍ଘ୍ୟଥାଳି ।
ଚନ୍ଦ୍ରଶାଳା ଭୁବନରେ ବିଜେ ଚକ୍ରପାଣି
ଅଭେଦ ଦେବ ପାର୍ଥକୁ କୋଳକରି ଆଣି ।
ଦ୍ୱାରେ ଉଭା ହୋଇଲେକ ସମସ୍ତ କାମିନୀ
ହରି ଅରଜୁନଙ୍କୁ କେହି ନ ପାରିଲେ ଚିହ୍ନି ।
କେ ହରି କେ ଅଟଇ ବୀରବର ପାର୍ଥ
କାହାର ଶିରରେ ଅର୍ଘ୍ୟ ଦେବା ଗୋସଙ୍ଗାତ ।

ଅର୍ଜ୍ଜୁନ ବୋଲି ନ ପୁଣ ସ୍ୱାମୀଙ୍କ ବନ୍ଦାଇ
କୋପ କରିବେ ତା ଦେଖି ଯଦୁକୁଳସାଇଁ ।
କେ ମାଧବ କେ ଅଟଇ ବୀର ଫାଲଗୁନୀ
କନ୍ୟାମାନେ ନିରୂପଣ କରି ନ ପାରନ୍ତି ।
ଜମ୍ବୁବତୀ ବୋଲନ୍ତି ଗୋ ଜାଣିଲ ସଙ୍ଗାତ
ବସିଛନ୍ତି ଅର୍ଜ୍ଜୁନର କୋଳେ ଜଗନ୍ନାଥ ।
ରୁକ୍ମିଣୀ ବୋଲନ୍ତି ସଖୀ ନୁହଇ ଏମନ୍ତ
ଆମ୍ଭର ପୁରେ ଅର୍ଜ୍ଜୁନ ଅଟେ ଅଭ୍ୟାଗତ ।
ବସିବ କି ଅଭ୍ୟାଗତ କୋଳେ ଗୃହବାସୀ
ଏ ମୋହର ମନକୁ ତ ଏମନ୍ତ ନ ଆସି ।
ଆବର ବିଶେଷ ଜାଣ ଅର୍ଜ୍ଜୁନ କନିଷ୍ଠ
କନିଷ୍ଠର କୋଳେ କାହୁଁ ବସିବାକ ଜ୍ୟେଷ୍ଠ ।
ମାନବ ଯୋନି ଜନମ ଅଟଇ ସେ ପୁଣି
ଜଗନ୍ନାଥ କୋଳେ ତେଣୁ ବସିଲେ ଫାଲଗୁନି ।
ଏସନକ ବିଚାରନ୍ତି ସେ ଯୁବତୀଗଣ
ଯୁବତୀଙ୍କ ମନକଥା ଜାଣି ନାରାୟଣ ।
ଏକା ଶରୀର ଆମ୍ଭେ ଯେ କୃଷ୍ଣ ଫାଲଗୁନି
କନ୍ୟାମାନେ ନିରୂପିଣ ନ ପାରିଲେ ଚିହ୍ନି ।
କନ୍ୟାଙ୍କର ବଦନକୁ ଚାହିଁ ଜଗନ୍ନାଥ
ଆଖି ଠାରିଲେ ଅର୍ଜ୍ଜୁନ ଶିରେ ଦେଇହସ୍ତ ।
ଆରେ ତୁ ମୋର ପ୍ରାଣର ସଖା ସବ୍ୟସାଚୀ
ବନବାସ ଆଉ ତୋର କେତେଦିନ ଅଛି ।
ଅର୍ଜ୍ଜୁନ ବୋଇଲେ ଦେବ ମୋର ବନବସ
ଶେଷ ହେବାକୁ ଅଛଇ ତିନି ଯେ ଦିବସ ।
ଜାଣିଲେ ଯୁବତୀମାନେ ଠାରିଲେ ଗୋବିନ୍ଦ
ଅର୍ଜ୍ଜୁନ ଘେନି ଭିତରେ ପରମ ଆନନ୍ଦ ।
ପ୍ରଥମେ ସେ ଅର୍ଘ୍ୟ ଦେଲେ ଅର୍ଜ୍ଜୁନର ଶିରେ
ଦ୍ୱିତୀୟରେ ବନ୍ଦାଇଲେ ନେଇ ଦାମୋଦରେ ।
ସାଧୁ ସାଧୁ ଅର୍ଜ୍ଜୁନ ହୋ ଜୀବନ ତୋ ଧନ୍ୟ
କୃଷ୍ଣ କୋଳେ ବସିବାକୁ ତୁ ସିନା ଭାଜନ ।
ମାନବ ଜନ୍ମ ଜୀବନ ତୋର ସାଧୁ ସାଧୁ
ଅନାଦି ପୁରୁଷର ତୁ ହେଲୁ ପ୍ରାଣବନ୍ଧୁ ।
ସାଧୁ ସାଧୁ ହୋ ତୋହର ପିଅର ଜନନୀ
ଅନେକ ପୁଣ୍ୟେ ପାଇଲେ ତୋତେ ଫାଲଗୁନି ।
ତ୍ରୈଲୋକ୍ୟ ମଧ୍ୟରେ ତୋର ଅନେକ ମହିମା
ପରମାନନ୍ଦ ପୁରୁଷ ତୁହି ମହାତମା ।
ଅନେକ ପ୍ରଶଂସା କରି ସୁଭଦ୍ରା କୁମାରୀ
ଅର୍ଜ୍ଜୁନର ରୂପ ଦେଖି କାମଶରେ ଘାରି ।
ପଞ୍ଚଭୂତ ଆତ୍ମାରେ ସେ ହେଲା ବଡ଼କଷ୍ଟୀ
ଅନଙ୍ଗ ଶର ଭେଦିଲା ନ ପାରେ ଲେଉଟି ।

ରୁକ୍ମିଣୀଙ୍କୁ ଚାହିଁ ଆଜ୍ଞା ଦେଲେ ଦାମୋଦର
ଅମୃତ ଯୋଗାଡ଼ ପାକ ବେଗେ ତୁମ୍ଭେ କର ।
ନାରାୟଣଙ୍କ ବଚନେ ଚଳିଲେ ଯୁବତୀ
ସୁଭଦ୍ରା ଯାଇ ନ ପାରେ ବିରହେ ତା ମତି ।
କନ୍ୟାମାନେ ତାକୁ ଛାଡ଼ି ନ ପାରନ୍ତି ଯାଇ
ପୁଣ ପୁଣ ସୁଭଦ୍ରା ଯେ ଲେଉଟିଣ ଚାହିଁ ।
ମୋହେ ସେ ସୁନ୍ଦରୀ ତଳେ ପଡ଼ିଗଲା ଢଳି
କୋଳରେ ଧଇଲେ ଶକ୍ରାଜିତର ଦୁଲାଳୀ ।
ନିଜପୁରେ ପ୍ରବେଶିଲେ ଯାଇ ବେନି ବାମା
ସୁଭଦ୍ରା ମୁଖକୁ ଚାହିଁ ବୋଲେ ସତ୍ୟଭାମା ।
ଏକାନ୍ତ ମନ୍ଦିରେ ବସି କରନ୍ତି ଭାଳେଣି
ଶରୀର ବିକୃତ କିମ୍ପା କଲୁ ସଙ୍ଗାତୁଣୀ ।
ସୁଭଦ୍ରା ବୋଇଲେ ସଖି ମନ୍ଦକୃତ୍ୟ କଲି
ମୁଁ କିମ୍ପାଇଁ ଅର୍ଘ୍ୟ ଘେନି ଭିତରେ ପଶିଲି ।
ମୁହିଁ ବାଳସ୍ତିରୀ ତୋତେ କରିଥିବି ସେବା
କୁନ୍ତୀଙ୍କ ନନ୍ଦନ ମୋତେ ଅର୍ଜ୍ଜୁନକୁ ଦେବା ।
ମଦନ ଶରେ ଆରତ ମୋହର ହୃଦୟ
ଅର୍ଜ୍ଜୁନର ରୂପ ଦେଖି ମୋହିତ ତ କାୟ ।
କେଉଁ ଉପାୟ କରିବି କହ ସଙ୍ଗାତୁଣୀ
ଅର୍ଜ୍ଜୁନକୁ ଭେଟାଇ ତୁ ପାରୁ ଯେବେ ଆଣି ।
ଗୁପତେ ଯାଇ ତୁ ଭେଟ କରାଅ ସଖିରେ
ରାତ୍ରେରେ ପଶି ପାର୍ଥର ଶୟନ ମନ୍ଦିରେ ।
ସତ୍ୟଭାମା ବୋଇଲେ ନ ହେବ କିଛି କାର୍ଯ୍ୟ
ତୁହି ଏମନ୍ତ ହୋଇଲେ ଉପୁଜିବ ଲାଜ ।
ସୁଭଦ୍ରା ବୋଇଲେ ମୋତେ ପାର୍ଥ ନାଶକଲା
ଦ୍ୱାରକାକୁ କିସ ପ୍ରୟୋଜନରେ ଅଇଲା ।
ମୁହିଁ ତୋ ପାଦେ ଶରଣ ପଶିଲି ଗୋ ସତୀ
ଛାଡ଼ିଲିଣି ଲାଜ ମୁହିଁ ଛାଡ଼ିଲିଣି ଭୀତି ।
ତୁ ଯେବେ ପ୍ରସନ୍ନ ସତ୍ୟଭାମା ହେଉ ମୋତେ
ଅର୍ଜ୍ଜୁନକୁ ଭେଟାଇ ତୁ ପାରିବୁ ଗୁପତେ ।
ରାତ୍ରେରେ ପଶିବି ପାର୍ଥ ଶୟନ ମନ୍ଦିରେ
ଯେସନେକ ଲାଜଭୟ ତେଜନ୍ତି ଭାସ୍କରେ ।
ତେସନ ବେଭାର ସଖି ହେଲାଣି ମୋହର
ଚଉର୍ଯ୍ୟ କରଇ ସେହୁ ଲାଜ କାହିଁ ତାର ।
ମାଗିବା ଲୋକର ଲାଜ ସଙ୍କୋଚ ଗୋ କାହିଁ
ପରର ଅନ୍ନକୁ ନିତ୍ୟ ଯେ ଆଶା କରଇ ।
ସେ ପ୍ରାଣୀର ସଖି ଲଜ୍ଜା ଭୟ ଅବା କିସ
ପରଦାର ପ୍ରକୃତିର ଯେବଣ ମାନସ ।
ତାହାଙ୍କର ଥାଇ କି ଗୋ ସଖୀ ଲଜ୍ଜା ଭୀତି
ପାର୍ଥକୁ ଦେଖିଲା ବେଳୁଁ ତେସନ ମୋ ମତି ।

ଯେବଣ ପୁରୁଷ ସଖୀ ହୁଅଇ ଭିକ୍ଷାକ୍ଷୀ
ତାହାଙ୍କର ଲଜ୍ଜା ଭୀତି କାର୍ଯ୍ୟରେ କି ଲେଖି ।
ଯେବଣ ଜନ ଚଳନ୍ତି ବରଯାତ୍ରୀ ପଣେ
ତାହାଙ୍କର ଲଜ୍ଜା ଲେଖା କେବଣ କାରଣେ ।
ସ୍ୱାମୀର ଦୁର୍ଭଗା ହୁଏ ଯେଉଁ କୁଳନାରୀ
ଜନଙ୍କ ଅନ୍ତରେ ଲଜ୍ଜା ଥାଇ କି ତାହାରି ।
ଧନହୀନ ହୁଅଇଟି ଯେବଣ ପୁରୁଷ
ସେ ପ୍ରାଣୀର ନ ଥାଇଟି ଲଜ୍ଜା ହିଁ ବିଶେଷ ।
ମଧ୍ୟସ୍ଥପଣ କରନ୍ତି ଯେଉଁ ଜନମାନେ
ତାହାଙ୍କର ଲଜ୍ଜା ସଖୀ ଲେଖି କି କାରଣେ ।
ଯେବଣ ପ୍ରାଣୀ ଶରୀର ହୁଅଇଟି ରୋଗୀ
ସେ ଜନ ସଖୀ ହୁଅଇ ଲଜ୍ଜା ପରିତ୍ୟାଗୀ ।
ମୁହିଁ ଏବେ ବିରହିଣୀ ହୋଇଲି ସଙ୍ଗାତ
ତେଜିଲି ଆବର ଲଜ୍ଜା ସଙ୍କୋଚ ସହିତ ।
କାମ ଅସାଷ୍ଟମେ କଲି ସକଳ ମୁଁ ତେଜ୍ୟା
ବାଳୁତ ଜନର ତୁମ୍ଭେ ଖୋଜ କିସ ଲଜ୍ଜା ।
ମୁଁ ତୋତେ ଶରଣ ସଖୀ ମାଗୋ ମନଇଚ୍ଛା
ଭକତଜନ ବସ୍ଥଳ କର ମୋତେ ରକ୍ଷା ।
ଅଳଙ୍କାର ଦେଇ ସତ୍ୟଭାମା ପାଦ ବନ୍ଦି
ଚରଣ ତଳେ ପଡ଼ି ସେ ଉଚ୍ଚସ୍ୱରେ କାନ୍ଦି ।
ମୁହିଁ ବାଳସ୍ତିରୀ ତୋର କି କରିବି ସେବା
କୁନ୍ତୀ ନନ୍ଦନ ଅର୍ଜୁନ ମୋତେ ଆଣିଦେବା ।
ପର ଉପକାର କରେ ଜାଣ ଯେଉଁ ପ୍ରାଣୀ
ଜୀବନ ଧନ୍ୟ ତାହାର ହୁଏ ସ୍ୱର୍ଗଗାମୀ ।
ସୁଭଦ୍ରା ବିକଳ ଦେଖି ଦେବୀ ସତ୍ୟଭାମା
ଅନେକ ମତେ ବୁଝାଏ ନାରାୟଣ ବାମା ।
ଚଳି ଯା ସୁଭଦ୍ରା ତୁଗୋ ତୋର ନିଜ ପୁର
ଅର୍ଜୁନକୁ ଭେଟାଇବି ତୋର ସଙ୍ଗତର ।
ଏସନ ସନ୍ଦେଶ ଯହୁଁ ସତ୍ୟଭାମା କହି
ସୁଭଦ୍ରା ଦେବୀ ତାହାଙ୍କ ପାଦତଳେ ଶୋଇ ।
ଚରଣ ତଳେ ଲୋଟଇ ନିର୍ମାକ୍ଷୀ ପରାଣୀ
ରକ୍ଷାକର ତୁହି ମୋତେ ଏବେ ସଙ୍ଗାତୁଣୀ ।
ସତ୍ୟଭାମାଙ୍କୁ ସୁଭଦ୍ରା କହଇ ବିନୟେ
ଜଗନ୍ନାଥ ବିଜେ କଲେ ଏମନ୍ତ ସମୟେ ।
ସତ୍ୟଭାମା ପାଦତଳେ ସୁଭଦ୍ରା ପ୍ରଣମି
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଜଗନ୍ନାଥ ସ୍ୱାମୀ ।
ଦେଖି ସୁଭଦ୍ରା ପଳାଇଗଲା ସଙ୍କୋଚରେ
ଶଯ୍ୟାମନ୍ଦିରେ ବିଜୟେ ବିକୃତ ଚିତ୍ତରେ ।
ତୁମ୍ଭ ତୁଲେ ସୁଭଦ୍ରାର କି ବିନୟ ଭାବ
ପଚାରନ୍ତି ସତ୍ୟଭାମା ପାଶରେ କେଶବ ।
ସତ୍ୟଭାମା ବୋଇଲେକ ଯାହାର ପୀରତି
ଉପୁଜଇ ଭାବ ତାର ଭୋଳ ହୁଏ ମତି ।
ଏମନ୍ତ ଉପାୟେ ଦେବୀ ତାହାଙ୍କୁ ପ୍ରବୋଧି
ପରମାନନ୍ଦ ପୁରୁଷ ଜାଣେ ସର୍ବସିଦ୍ଧି ।
ଗୋବିନ୍ଦ ବୋଇଲେ କଲ ଗୋପନ ଏକଥା
ଗୁରୁ ସ୍ୱାମୀଙ୍କ ଆଗରେ ନ କହନ୍ତି ମିଥ୍ୟା ।
ସତ୍ୟଭାମା ବୋଇଲେକ ଶୁଣିମା ଶ୍ରୀବତ୍ସି
କହିବାକୁ ଦେବ ମୋତେ ସଙ୍କୋଚ ଲାଗୁଛି ।
ଜାଣି ମାଧବ କହିଲେ ବହୁତ କଟାଳି
ସ୍ୱରୂପ କହି ବଦନ୍ତି ପ୍ରଭୁ ବନମାଳୀ ।
କରଯୋଡ଼ି ଫେଡ଼ି କହେ ଦେବୀ ସତ୍ୟାବତୀ
ଅର୍ଜୁନଠାରେ ସୁଭଦ୍ରା ଦେବୀ ଆସକତି ।
ଅତି ଅସାଷ୍ଟମ ସେହି ମଦନ ଆରତେ
ତେଣୁ ବିନୟେ କହଇ ଦେବଆସି ମୋତେ ।
ଗୋବିନ୍ଦ ବୋଇଲେ ସତ କହିଲୁ ଏକାଳେ
ଆମ୍ଭେ ଜାଣୁ ଅର୍ଘ୍ୟଦେଇ ଲେଉଟିବା ବେଳେ ।
ଲେଉଟି ଆସିବା ବେଳେ ଚାହେଁ ପୁଣି ପୁଣି
ତୁମ୍ଭେ ଯେ ତାହାକୁ କୋଳ କରି ଧରିଆଣି ।
ସତ୍ୟଭାମାଏ ବୋଇଲେ କରିବା କେମନ୍ତ
ଗୋବିନ୍ଦ ବୋଇଲେ କର ହୋଇବ ଯେମନ୍ତ ।
ସୁଭଦ୍ରା ସଙ୍ଗେ କରାଅ ଅର୍ଜୁନର ଭେଟ
ତୁମ୍ଭଙ୍କୁ ଭକତି କଲା ଫିଟୁ ତାର କଷ୍ଟ ।
ଅର୍ଜୁନ ଦ୍ୱାଦଶ ବର୍ଷ ବନବାସ ସାରି
ଦ୍ୱାରକାପୁର ରଖିଲା ଗୋସିଂହକୁ ମାରି ।
ପ୍ରଥମେ ଅଇଲା ପୁଣି ସେହି ମୋ ପୁରକୁ
କିସ ଦେଇ ଭକ୍ତି ଆମ୍ଭେ କରିବା ତାହାଙ୍କୁ ।
ସୁଭଦ୍ରା ସମ ଦ୍ୱାରକାପୁରେ ନାହିଁ ବର
ନିଷ୍କଳଙ୍କ ସୋମବଂଶୀ ବାସବ କୁମର ।
ଧାର୍ମିକ ବିବେକୀ ସେହି କକ୍ଷା ଜଗଜ୍ଜେଠି
ଅସମୟ କାଳେ ମୋତେ ରଖଇ କିରୀଟି ।
ସୋମବଂଶେ ଉପୁଜଇ ଯେବଣ ସନ୍ତାନ
ସେହି ସେ ରାଜ୍ୟର ସିନା ହେବ ଚିରନ୍ତନ ।
ଜମ୍ବୁଦ୍ୱୀପ ମଧ୍ୟରେ ସେ ସପ୍ତଦ୍ୱୀପା ପୃଥ୍ୱୀ
ଏଥିରେ ଠାକୁର ସୋମବଂଶ ନରପତି ।
କନ୍ୟା ଗୋଟଏ ପାର୍ଥକୁ ଆମ୍ଭେ ଯେବେ ଦେବା
ଯୁଗେ ଯୁଗେ ଆମ୍ଭ ଯଶ କୀର୍ତ୍ତି ରୁହାଇବା ।
ସତ୍ୟଭାମା ବୋଇଲେ ଏ କଥା ଦୃଢ଼ କର
ବଡ଼ ଠାକୁରଙ୍କୁ କହି କର ବିଭାଘର ।
ଆବର ଚଉର୍ଯ୍ୟମତି କିମ୍ପାଇ କରିବ
ଶୁଭ ଲଗନ ଧରାଇ ବିଭା କରାଇବ ।

ଗୋବିନ୍ଦ ବୋଇଲେ ଭାଙ୍ଗିଦେବେ କାମପାଳ
ପାଣ୍ଡବଙ୍କର ବିପକ୍ଷ ସଦା ହଳଧର ।
ସତ୍ୟଭାମା ବୋଇଲେକ ରହିବ କି କାର୍ଯ୍ୟ
ଦେଖିବା ଥରେ ଜଣାଅ କିବା ଦେବରାଜ ।
ନାରାୟଣ ବୋଇଲେ ଗୋ ଶୁଣ ସତ୍ୟାସତୀ
ଯଶୋଦାଙ୍କ ପୁରେ ତୁମ୍ଭେ ଥାଅ ଆଜରାତି ।
ଏ କଥାମାନ କହିବ ସବୁ ଯଶୋଦାଙ୍କୁ
ସେ ଯାଇ କହନ୍ତୁ ବଳଦେବ ଠାକୁରଙ୍କୁ ।
ଏମନ୍ତ କହି ଗୋବିନ୍ଦ ପୁଣି ଯେ କହିଲେ
ଗୁପ୍ତେ ଭେଟ କରାଇବା ରାମ ନାସ୍ତି କଲେ ।
ଏତେକ ବୋଲି ତାହାକୁ ଦେବ ଶିରୀପତି
ଅର୍ଜୁନ ଘେନି ରୁକ୍ମିଣୀ ପୁରକୁ ଗମନ୍ତି ।
ସ୍ନାନ ଦେବାର୍ଚ୍ଚନ କର୍ମ ଆହନିକ ସାରି
ମଣୋହିରେ ବିଜେ କଲେ ଦେବ ଚକ୍ରଧାରୀ ।
ସୁବର୍ଣ୍ଣର ପଲଙ୍କେ ଯେ ଅଷ୍ଟରତ୍ନ ଜଡ଼ି
ସ୍ନାନ ସମାର୍ଜିଲେ ଶୁଦ୍ଧ ଶୁକ୍ଳ ବସ୍ତ୍ର ପାରି ।
ସୁବର୍ଣ୍ଣ ରୁଖା ସହସ୍ରେ ଦୀପାବଳୀ ଜାଳି
ନେତ୍ରରେ ବଳିତା ଗୁଆଘୃତ ତହିଁ ମେଲି ।
ଶଉଚ କରି ପବିତ୍ର ଶୁଦ୍ଧଜଳେ ପାଦ
ମଣୋହି କୋଠାକୁ ବିଜେ ଅର୍ଜୁନ ଗୋବିନ୍ଦ ।
ବସିଣ ଦୁହେଁ ପବିତ୍ର ବିଚିତ୍ର ଆସନେ
ନୀର ସିଞ୍ଚନ୍ତି ଆସନ ସ୍ଥାନ ସମାର୍ଜ୍ଜନେ ।
ଚାମର ଢାଳନ୍ତି ଜମ୍ବୁବତୀ ସନ୍ନିଧାନେ
ସତ୍ୟ ଚାମର ଢାଳନ୍ତି ସ୍ୱାମୀ ବିଦ୍ୟମାନେ ।
ଭୀଷ୍ମକ ନନ୍ଦିନୀ ଆବର ଅଷ୍ଟପାଟବଂଶୀ
ସୁବର୍ଣ୍ଣ ଥାଳୀରେ ଆଣି ଅନ୍ନ ପରଶନ୍ତି ।
ଘୃତ ଆଣି ପରଷନ୍ତି ଦେବୀ କମଳିନୀ
ଭୂମିରେ ପିତୃଲୋକଙ୍କୁ ଦେଇ ଅନ୍ନପାଣି ।
ବାହ୍ୟବଳୀ ଦେଇ ଚଳୁ ଘେନିଲେ ଶ୍ରୀକରେ
ଗୁରୁ ଦେବତାଙ୍କ ମନ୍ତ୍ର ସୁମରି ମନରେ ।
ବିଶ୍ୱେଶ୍ୱର ଦେବ ନାମ ଧରି ଚକ୍ରପାଣି
ଶ୍ରୀହସ୍ତୁ ଚଳୁ ଛାଡ଼ିଲେ ତଳେ ତତକ୍ଷଣି ।
ଲକ୍ଷ୍ମୀ ବୋଇଲେ ଛାଡ଼ିଲେ କିମ୍ପା ତୁମ୍ଭେ ଚଳୁ
ଗୋବିନ୍ଦ ବୋଇଲେ ହେଲା ମଣୋହିରେ ହେଳୁ ।
ଅର୍ଜୁନ ଅଇଲାରୁ ମୋ ମନ ହେଲା ଶାନ୍ତି
ଠାକୁରେ ନ ଦେଖି ମୁହିଁ ବିଜେ କଲି ଏଥି ।
ବାବୁ ତୁ ମଣୋହି କରୁଥାଅ ସବ୍ୟସାଚୀ
ବିଶ୍ୱନାଥ ଠାକୁରଙ୍କୁ ଦେଖି ମୁଁ ଯାଉଛି ।
ଲକ୍ଷ୍ମୀ ବୋଇଲେକ ତୁମ୍ଭ ପୁରୁଷ ଉତ୍ତମ
ତ୍ରୈଲୋକ୍ୟ ଠାକୁର ତୁମ୍ଭେ ତ୍ରୈଲୋକ୍ୟର ଧାମ ।
ତୁମ୍ଭ ଉପରେ ଠାକୁର କରୁଛ କାହାକୁ
ମୁଁ ଆଶ୍ଚର୍ଯ୍ୟ ମଣୁଅଛି ତୁମ୍ଭରି କଥାକୁ ।
ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ସେ ଜଗତଭୂତ
ସହସ୍ରେକ ବ୍ରହ୍ମା ହେଲେ ଲୋମକେ ଗୁପତ ।
ଅଣାକାର ପୁରୁଷ ସେ ଅପାପ ହିଁ ଯୋଗୀ
ସର୍ବଦା ଆନନ୍ଦ ସୁଖ ଭୋଗ ପରିତ୍ୟାଗୀ ।
ଲକ୍ଷ୍ମୀ ବୋଲେ ଅଛିଟିକି ତାଙ୍କର ଘରଣୀ
ମୋର ଉପରେ ସେତେବେ ହେବ ଠାକୁରାଣୀ ।
ଗୋବିନ୍ଦ ବୋଇଲେ ଏହା ଅଟଇ ନିୟତ
ପାର୍ବତୀ ଦର୍ଶନେ ତୁମ୍ଭେ ହୋଇବ ମୁକତ ।
ତାକୁ ପ୍ରଶଂସି କହିଲେ ଯହୁଁ ଚକ୍ରପାଣି
ମନେ କୋପେ ବହିଲେ ସେ ଦେବୀ କମଳିନୀ ।
ଲକ୍ଷ୍ମୀ ବୋଇଲେ ସର୍ବଦା ଦିଅଇ ମୁଁ ଅନ୍ନ
ମୁହିଁ ସଂସାରଜନଙ୍କୁ କରଇ ପାଳନ ।
ମୋହର ଦେଲେ ସକଳଜନ ପାଏ ପୂଜା
ଦେବଙ୍କ ଉପରେ ତୁମ୍ଭେ ଅଟ ଦେବରାଜା ।
ମୁହିଁ ଯେ କୋପ କଲଇଁ ଚନ୍ଦ୍ର ଦେବତାଙ୍କୁ
ରଖି ନ ପାରିଲେ ପୁଣି କେହି ତ ତାହାଙ୍କୁ ।
ଯେବଣ ଜନଙ୍କୁ ମୁହିଁ ଚାହେଁ ସୁନୟନେ
ଧନ ସନ୍ତାନ ତାହାର ଉଡ଼େ ଦିନେ ଦିନେ ।
ଯାହାକୁ ହିଁ କୋପେ ମୁହିଁ କରଇ କିଞ୍ଚିତେ
ଅଗଣିତ ଅପଣ୍ଡିତ ହୁଅଇ ଜଗତେ ।
ପାର୍ବତୀ ବୋଲି ଯେବଣ ମହାମ୍ରାଣି ପୁଣି
ତାଙ୍କୁ ଦର୍ଶନ କରାଇ ଲୋଡୁ ପୁଣି ସ୍ୱାମୀ ।
କୃଷ୍ଣ ବୋଇଲେ କହିଲେ କରିବୁ ତୁ କୋପ
ତୋହର ଦେଖିଲା ନାହିଁ ଠାକୁରାଣୀ ରୂପ ।
ସତୀ ସାବିତ୍ରୀ ପାର୍ବତୀ ତାରା ଯେ ରୋହିଣୀ
ସ୍ୱାହା ସ୍ୱାଧା ଭଗବତୀ ଯେ ଆଠ ଭଉଣୀ ।
ଅଟନ୍ତି ଏ ଅଷ୍ଟକନ୍ୟା ଜାଣି ମହାସତୀ
ଶଚୀ ତାରା ମନ୍ଦୋଦରୀ ଅହଲ୍ୟା ପାର୍ବତୀ ।
ସତୀହୁ ମହାସତୀ ଏ ଲକ୍ଷେଗୁଣ ଶ୍ରେଷ୍ଠ
ତେଣୁ ଲକ୍ଷ୍ମୀ ତୋର ନମସ୍କାର ପାତ୍ର ଆଠ ।
ତାହାଙ୍କର ମହିମା ଗୋ ଅତି ଅଗୋଚର
ଯାହାଙ୍କ କୋପକୁ ଭୟ କରେ ସୁରେଶ୍ୱର ।
ହର ବ୍ରହ୍ମା ଆଦି ଦେବେ ତାଙ୍କ ପାଦ ବନ୍ଦି
ସକଳ ଭୁବନେ ମହାସତୀଙ୍କୁ ଆରାଧି ।
କୋଟି କଳପ ଆୟୁଷ ଘେନି ଅଷ୍ଟଦେବୀ
ଭର୍ତ୍ତା ନାଶଯାନ୍ତି ଏହୁ ଅଟନ୍ତି ତ୍ରିଜୀବୀ ।
ତାଙ୍କ ସ୍ୱାମୀ ପ୍ରାଣତ୍ୟାଗ କରନ୍ତି ଯେବେଳେ
ମୃତପିଣ୍ଡ ଘେନି ବସିଥାନ୍ତି ବୃକ୍ଷତଳେ ।

ଆପଣା ଆୟୁଷ ଘେନି ସ୍ୱାମୀକି ଜିଆଇ
ପତି ନାଶଯାନ୍ତି କଢ଼ୀ ଅଟନ୍ତିଟି ସେହି ।
ସତୀଙ୍କ ପରେ ଅଟନ୍ତି ଏହୁ ମହାସତୀ
ପ୍ରଳୟ ହୋଇଲା ଏକ ଦିବସ ମଣନ୍ତି ।
ଏମାନଙ୍କ ଉପରେ ଯେ ଉମା ଠାକୁରାଣୀ
ଶୁଣି ଲକ୍ଷ୍ମୀ କହନ୍ତି ଯେ ଦେବ ଚକ୍ରପାଣି ।
ସ୍ୱାମୀ ସେମାନେ ଅଟନ୍ତି ଯେବେ ମହାସତୀ
ମୋତେ କାହିଁକି ନ ଦେଖା ଦେବ ଶିରୀପତି ।
ଗୋବିନ୍ଦ ବୋଇଲେ ତୁମ୍ଭେ କରିବନା କୋପ
ମହାସତୀରୁ ବାହାର ତୁମ୍ଭର ଯେ ରୂପ ।
ପୁଣି ହସିଣ ବୋଇଲେ ଦେବ ଚକ୍ରପାଣି
ଲକ୍ଷ୍ମୀ ତୋତେ ବୋଲନ୍ତି ଯେ ବାଇଠାକୁରାଣୀ ।
ବାଇ ହୋଇ ଠାକୁରାଣୀ କାହିଁ ଦେବ ଅଛି
ସଂସାର ଲୋକେ ବୋଲନ୍ତି ମୋତେ ସିନା ବାଛି ।
ନ ଖାଏ ନ ଦିଏ ଯେହୁ ତାହାଙ୍କୁ ତୁ ଦେଉ
ସଜ୍ଜନ ଲୋକଙ୍କର ତୁ ପାଶକୁ ନ ଯାଉ ।
ନୀଚଲୋକଠାରେ ତୁହି ହେଉ ବଡ଼ ତୋଷ
ସୁଲକ୍ଷଣ ଜନଠାରେ ପୁଣି ବହୁ ରୋଷ ।
ଲକ୍ଷ୍ମୀ ଗୋ ଚଞ୍ଚଳା ବୋଲି ବୋଲନ୍ତିଟି ତୋତେ
ବେଶ୍ୟାଙ୍କୁ ଚଞ୍ଚଳା ବୋଲି ବୋଲନ୍ତି ଯୁକତେ ।
ଚଞ୍ଚଳା ସ୍ତିରୀଟି ଜାଣ କାହାରି ନୁହନ୍ତି
ଦିନକୁ ଦିନ ସେ ପର ପୁରୁଷରେ ମାତି ।
ଯହିଁ ଥାଉ ତହିଁ ତୁହି ନୋହୁ ଯେ ନିଶ୍ଚଳ
ପ୍ରାଣୀକୁ ଦୟା ନ କରୁ ତୁହି ଚିରକାଳ ।
ନିଶ୍ଚଳ ହୋଇ କାହିଁରେ ଯେଣୁ ତୁ ନ ରହୁ
ଯେଣୁ ତୁ ଲକ୍ଷ୍ମୀ ଚଞ୍ଚଳା ନାମଗୋଟି ବହୁ ।
ତୁ ମହାଲକ୍ଷ୍ମୀ ଜଗତଜନ ଠାକୁରାଣୀ
ଜଗତ ଜନେ ବୋଲନ୍ତି ବାଇ ଠାକୁରାଣୀ ।
ଯେଣିକି ଚାହୁଁ ଗୋ ସେହୁ ହୁଏ ସୁଖଭୋଗୀ
ଯାହାକୁ ନ ଚାହୁଁ ସେହୁ ହୁଏ ଦୁଃଖଭୋଗୀ ।
ଜଣକୁ ଭାଙ୍ଗି ଆରେକ ଦିନ ନେଉ ଥାପି
ତେଣୁ ମହାଲକ୍ଷ୍ମୀ ତୁହି ଅଟୁ ବଡ଼ପାପୀ ।
ପାର୍ବତୀ ଠାକୁରାଣୀଙ୍କୁ ତୁ ଦର୍ଶନ କଲେ
ଏ ପାପ ଖଣ୍ଡିବ ତୋର ଗୋବିନ୍ଦ ବୋଇଲେ ।
ଲକ୍ଷ୍ମୀ ବୋଇଲେ ଭୋ ଦେବଯିବି ଚାଲି ମୁହିଁ
ଖଣ୍ଡିବ ପାତକ ପାର୍ବତୀର ମୁଖ ଚାହିଁ ।
ମଣୋହି କର ବୋଇଲେ କୃଷ୍ଣ ଅର୍ଜ୍ଜୁନକୁ
ଆମ୍ଭେ ଯାଉଅଛୁ ଏବେ କୈଳାସ ପୁରକୁ ।
ଲକ୍ଷ୍ମୀଙ୍କୁ ବୋଇଲେ ବେନି ଦେବ ନରହରି
ଗରୁଡ଼ ପିଠିରେ ଲକ୍ଷ୍ମୀ ନାରାୟଣ ଚଢ଼ି ।

ଆକାଶ ମାର୍ଗେ ଗମଇ ବିନତାର ସୁତ
ପବନୁ ବେଗ ଗଗନେ ଚଳିଗଲା ସେତ ।
ମହାଲକ୍ଷ୍ମୀ ନାରାୟଣ ଆସିବାର ଜାଣି
ବୃଷଭ ପିଠିରେ ବିଜେ କଲେ ଶୂଳପାଣି ।
ପାର୍ବତୀଙ୍କୁ କୋଳେ ଘେନି ଗଙ୍ଗାକୂଳେ ବିଜେ
ବୃଷଭ ପୃଷ୍ଟୁ ଉତୁରି ଉମା ଦେବରାଜେ ।
କିଞ୍ଚିତ ଅନ୍ତର ହୋଇ ବସିଲେ ପାର୍ବତୀ
ବସିଲେ ଅନ୍ତର ହୋଇ ଦେବ ପଶୁପତି ।
ଯେତେ ଦୂରୁ ସ୍ୱାମୀଙ୍କର ଦିଶିଲା ଆସନ
ଗରୁଡ଼ ପୃଷ୍ଟୁ ଉତୁରି ଦେବ ଜନାର୍ଦ୍ଦନ ।
ଲକ୍ଷ୍ମୀ ବୋଇଲେ କିମ୍ପାଇ ଉତୁରିଲ ସ୍ୱାମୀ
ଯେ ଯୋଗୀ ଗୋଟାକୁ ନାଥ ଯାଉକି ପ୍ରଣମି ।
ଦେଖିଲେ ଅଯାତ୍ରା ପୁଣି ଛୁଇଁଲେକ ତ୍ୟାଗୀ
ବ୍ରାହ୍ମଣ ଚଣ୍ଡାଳ ଘରେ ଖାଏ ଅନ୍ନ ମାଗି ।
ଗୋବିନ୍ଦ ବୋଇଲେ ଲକ୍ଷ୍ମୀ ଜଞ୍ଜାଳ ନକର
ଠାକୁରଙ୍କୁ ନିନ୍ଦିଲେ ତ କେବେ ନାହିଁ ପାର ।
କୋପେ ସେ ଚାହିଁଲେ ନାଶଗଲା ମନସଜ
କୋପେ ଚାହିଁଲେ ହୋଇବା ଆମ୍ଭେ ତ ଦହିର୍ଯ୍ୟ ।
କରନ୍ତି ଶ୍ରୀ ଜଗନ୍ନାଥ ପାୟେ ନିଉଛାଳି
ବାଞ୍ଛା ସିଦ୍ଧ ହେଉ ବାବୁ ବୋଇଲେ ତ୍ରିଶୂଳୀ ।
ଲକ୍ଷ୍ମୀ ବୋଇଲେ ଯୋଗୀର ଭାର୍ଯ୍ୟା ଯୋଗୀଆଣୀ
ଏହା ଛାରେ ଓଳଗି ମୁଁ କେମ୍ଭେ ହେବି ପୁଣି ।
ଯୋଗୀ ତପସ୍ୱୀ ଭିକ୍ଷାସୀ ରାଉଳ ଏ ହର
ଗଉଡ଼ ବାଉଡ଼ ପୁଣ ହାଉଡ଼ ମୋ ବର ।
ଏହାଙ୍କରେ ଏହାଙ୍କର ହେବ ବନ୍ଧୁପଣ
ମୁଁ କିମ୍ପା ବନ୍ଦିବି ଯୋଗୀଆଣୀର ଚରଣ ।
ଏହାର ମୁଁ ସତୀପଣ ଜାଣିବି କେମନ୍ତେ
ସମସ୍ୟା ବଚନେ ଜିଣିପାରେ ଯେବେ ମୋତେ ।
ଲକ୍ଷ୍ମୀ ବିଜେ କଲେ ଯାଇ ପାର୍ବତୀର କତି
ସନ୍ନିଧେ ବସିଲେ ଦେବୀ ନ କରି ପୀରତି ।
ଲକ୍ଷ୍ମୀ ବୋଇଲେ ଗୋଦେବୀ ଶୁଣ ଏକ ଚିତ୍ତେ
ଭିକ୍ଷାସୀ ଗୋଟେ ଯିବାର ଦେଖିଲ କି ପଥେ ।
ପାର୍ବତୀ ଭାଳି ଲକ୍ଷ୍ମୀଙ୍କ ବଚନକୁ ଶୁଣି
କଳିର ନିମନ୍ତେ ହରି ଏହାକୁ ଯେ ଆଣି ।
ମୋହର ସ୍ୱାମୀ ଯେ ଭିକ୍ଷା ମାଗିବୁଲେ ବୋଲି
ଏ ମୁଦ୍ଗୀ ଜାଣି ପଚାରେ ମୁଁ ଜାଣି ପାରିଲି ।
ପାର୍ବତୀ ବୋଇଲେ ଯେବେ ଭିକ୍ଷାସୀରେ କାର୍ଯ୍ୟ
ବଳି ଦୁଆରେ ଅଛଇ ବାମନ ଯେ ଦ୍ୱିଜ ।
ଭିକ୍ଷାସୀ ଜାଣନ୍ତି ସିନା ଭିକ୍ଷାସୀର କଥା
ବଳିକୁ ଯେ ଦାନ ମାଗୁଅଛି ଟେକି ମଥା ।

ଲକ୍ଷ୍ମୀ ବୋଇଲେ ଏହାର ସ୍ୱାମୀ ସିନା ଯୋଗୀ
ମୋର ସ୍ୱାମୀ ଗଲେ ବଳିଦ୍ୱାରେ ଦାନ ମାଗି ।
ଦାନ ଭିକ୍ଷା ଦୁଇ ଏକ ଅଟଇ ଯୁକତ
ଲାଜ ପାଇ ଲକ୍ଷ୍ମୀଦେବୀ ବସିଲେ କିଞ୍ଚିତେ ।
ଲକ୍ଷ୍ମୀ ବୋଇଲେ ଗୋ ଆଜି ଗଲାକିଏ ବାଟେ
ପାଣ୍ଡବ ନୃତ୍ୟ କରିଣ ଦେଖିଲ କି ନଟେ ।
ପାର୍ବତୀ ଦେବୀ ବୋଇଲେ ଏ ମନ୍ଦ ଚଞ୍ଚଳି
ନିଶ୍ଚୟ ଆମ୍ଭର ସଙ୍ଗେ ଲଗାଇବ କଳି ।
ଦେବୀ ମନ ରଞ୍ଜିବାକୁ ହର ନୃତ୍ୟ କଲା
ଏହି ମୁଢ଼ୀ ଆସି ମୋତେ ତାହା ଉଘାଇଲା ।
ପାର୍ବତୀ ବୋଇଲେ ଆଗୋ ଶୁଣ ବଇଦେଈ
ନଟ ପୁରୁଷକୁ ଖୋଜ ବୃନ୍ଦାବନେ ଯାଇ ।
ତାଳୁରେ ଚୂଳ ହସ୍ତରେ ବିରହ ବଇଁଶୀ
କଦମ୍ବ ମୂଳେ ଗୋପୀଙ୍କୁ ନ ଛାଡ଼ନ୍ତି ବସି ।
ତାହାଙ୍କୁ ପଚାର ନୃତ୍ୟ କରିବାର କଥା
ନଟେ ସିନା ଜାଣନ୍ତି ଯେ ନଟଙ୍କ ବାରତା ।
ଲକ୍ଷ୍ମୀ ବୋଇଲେ ହାରିଲି ଏହାକୁ ଯୁକତେ
ମୋର ସ୍ୱାମୀ ନୃତ୍ୟକଲା ଗୋପୀଙ୍କ ନିମନ୍ତେ ।
ଉତ୍ତର ଦେଲେକ ସିନ୍ଧୁ ରାଜାର କୁମାରୀ
ଯୋଗୀ ଗୋଟିଏକି ଯାଏ ମୃଗଛାଲ ଧରି ।
ପାର୍ବତୀ ଦେବୀ ବୋଇଲେ ଲକ୍ଷ୍ମୀର ବଚନେ
ଅଳପକ ଲୋକ ସିନା କହନ୍ତି ଏସନେ ।
ମୋର ସ୍ୱାମୀ ମୃଗଛାଲ ଆଭରଣ କରି
ଏହା ମୋତେ ଉଘାଇଲା ଏ କାଣୀ ଦୁର୍ବାରୀ ।
ପାର୍ବତୀ ବୋଇଲେ ଶୁଣ ଆଗୋ ମହାଲକ୍ଷ୍ମୀ
ନଇମିଷ ବନେ ଖୋଜ ତପ କରୁଅଛି ।
ମୃଗଛାଲ ପିନ୍ଧି ପୁଣି ବସି ମୃଗଛାଲେ
ନର ନାରାୟଣ ରୂପ ଦେଖାଯାଇ ଭଲେ ।
ଯାହାର ସ୍ୱାମୀ ବରାହରୂପ ଅଛି ଧରି
ତାହାକୁ ପଚାର କେଣେ ଗଲା ମୃଗମାରି ।
ଲକ୍ଷ୍ମୀ ବୋଇଲେ ଏଥିରେ ନୋହିଲା ତ ଯଶ
ଏ କଥାରେ ମୁଁ ଏହାକୁ ହାରିଲି ଅବଶ୍ୟ ।
ଏହା ସ୍ୱାମୀ ମୃଗଚର୍ମ ଆଭରଣକାରୀ
ମୋ ସ୍ୱାମୀ ବରାହ ପୁଣି ଋଷି ରୂପଧାରୀ ।
ଏତେକ ବିଚାରି ଲକ୍ଷ୍ମୀ ମଉନ ହୋଇଲେ
ପୁଣି ପାର୍ବତୀଙ୍କୁ ପ୍ରତି ଉତ୍ତର ସେ ଦେଲେ ।
ଲାଙ୍ଗଟି ଭୃଙ୍ଗଟି ବୃଦ୍ଧ ଯୋଗିଆ ଗୋଟାଏ
ହାଡ଼ମାଳ ବିଭୂଷଣ ବୃଷଭରେ ଯାଏ ।
ତାହାକୁ ଦେଖିଲୁ କିଏ ବାଟେ ଯାଉଁ ଯାଉଁ
ପାର୍ବତୀ ବୋଇଲେ ମୁଢ଼ା ଶିଖିଲାକ କାହୁଁ ।
ମୋହର ସ୍ୱାମୀ ଏ ବେଶେ ବଳଦ ଚଢ଼ଇ
ତାହା ମୋତେ ଉଘାଇଣ ଝିଙ୍ଗାସ କରଇ ।
ତୁହି ଯାହା ପଚାରିଲୁ ବୋଇଲେ ପାର୍ବତୀ
ଗୋରୁଙ୍କର ବାରତା ଯେ ଗଉଡ଼େ ଜାଣନ୍ତି ।
ନନ୍ଦ ଗଉଡ଼ ପୁଅକୁ ପଚାର ଏ କଥା
ସେ କହି ପାରଇ ଗୋରୁ ବଳଦ ବାରତା ।
ମହାଲକ୍ଷ୍ମୀ ତୁନି ହେଲେ ପାର୍ବତୀ ବଚନେ
ଏ କଥାରେ ଯଶ ମୋତେ ନୋହିଲା ଏ ସ୍ଥାନେ ।
ଏହାର ସ୍ୱାମୀ ବଳଦ ଯାଏ ସିନା ଚଢ଼ି
ମୋହର ସ୍ୱାମୀ ଗୋପାଳ ରୂପେ ଗୋପେ ବଢ଼ି ।
ପୁଣି ପଚାରନ୍ତି ତାଙ୍କୁ ବରୁଣ ଦୁହିତୀ
ଗଳେ ମୁଣ୍ଡମାଳ ଅଛି ଦେଖିଲ କି ଯତି ।
ପାର୍ବତୀ ବୋଇଲେ ଏହା ଜାଣିଲା କେମନ୍ତେ
ହରି ଆଣିଛି ଏହାକୁ କଳିର ନିମନ୍ତେ ।
ପାର୍ବତୀ ବୋଇଲେ ତୋତେ କହିବା ଏକଥା
ହିରଣାକ୍ଷ ପୁରେ ଅଛି ମୁଣ୍ଡର ବହନ୍ତା ।
ନୃସିଂହ ରୂପେ ହିରଣ୍ୟ ଚିରି ସତ୍ୟଯୁଗେ
ମଡ଼ା ନ ଛାଡ଼ିଣ ସେ ଯେ ବହିଛନ୍ତି ରାଗେ ।
ତାହାଙ୍କୁ ପଚାର ଯାଇ ମଡ଼ାର ବ୍ୟବସ୍ଥା
ସେହି ଯେ କହିବେ ମୃତପିଣ୍ଡର ବାରତା ।
ଲକ୍ଷ୍ମୀ ତୁଷ୍ଟ ହୋଇଲେକ ପାର୍ବତୀ ବଚନେ
ଏ କଥାରେ ଯଶମୋତେ ନୋହିଲାକ କ୍ଷଣେ ।
ଏହାଙ୍କ ସ୍ୱାମୀ ଗଳାରେ ଅଛି ମୃତପିଣ୍ଡ
କହନ୍ତି ଆବର ମୋର ସ୍ୱାମୀ ସେହୁଖଣ୍ଡ ।
ମୃତପିଣ୍ଡ ମୁଣ୍ଡ ଏହି ଅଟେ ଏକ କଥା
ଯେବେ ଯଶ ମୋତେ ପୁଣି ନୋହିଲା ଏକଥା ।
ଜିଣି ନ ପାରିଲେ ସିନ୍ଧୁ ରାଜାର କୁମାରୀ
ପାର୍ବତୀ ପାଦେ ପଡ଼ିଲେ ହୋଇ ଦଣ୍ଡପରି ।
କୋଳ କଲେ ଦକ୍ଷ ପ୍ରଜାପତିର କୁମାରୀ
ମୁଖରେ ଚୁମ୍ବନ ଦେଲେ ଭୁଜେ ଭିଡ଼ିକରି ।
ଈଶ୍ୱର ପଚାରିଲେ କେ ଜିଣିଲା ହାରିଲା
ଗୋବିନ୍ଦ ବୋଇଲେ କଳି ସମାନ ହୋଇଲା ।
ଏକ ହିଁ ଯେବେ ଜିଅନ୍ତା ଏକଇ ହାରନ୍ତା
ତୁମ୍ଭର ଆମ୍ଭର ବଡ଼ ଅପ୍ରୀତି ହୁଅନ୍ତା ।
ତାଙ୍କ ହରଷରେ ହରି ହରଙ୍କ ହରଷ
ବୃଷଭ ଗରୁଡ଼ ଦୁହେଁ ଲଭିଲେ ସନ୍ତୋଷ ।
ଦେବ ଦେବୀ ବାହନ ଏ ହରଷ ହୁଅନ୍ତି
ସଂସାର ଜନମାନଙ୍କୁ ହରଷ କରାନ୍ତି ।
ଏ ଦେବ ଦେବୀମାନଙ୍କୁ ଭାବ ହୃଦଗତେ
ଦରିଦ୍ର ବାଧା ତୁଟେ ଏ ଆଖ୍ୟାନ ଶୁଣନ୍ତେ ।

ଏ ମୋହର ଜ୍ଞାନେ କି ମୁଁ ପାରେ ତଥ୍ୟ କରି
କେ ଏହା କହିବ ପୁଣ ନରଦେହ ଧରି ।
ଯାହା ସେ କହିଅଛନ୍ତି ମୁନି ହେ ଅଗସ୍ତି
ମୁଁ ଯେ ବଖାଇ କହିଲି ଶାସ୍ତ୍ରର ସଙ୍ଗତି ।
ଜୟ ଜୟ ହରିହର ବ୍ରହ୍ମା ଅବତାର
ନୀଳକମଳ ସ୍ୱରୂପ ଧବଳ ଶରୀର ।
ଖଗବର ବାହନ ଯେ ତିରଶୂଳଧର
ପିନାକୀ ଶାରଙ୍ଗ ପୁଣି ଶଙ୍ଖ ଚକ୍ରଧର ।
କୈଳାସ ବୈକୁଣ୍ଠ ଶମଶାନ ସ୍ଥଳବାସୀ
ଜୟ ଜୟ ହରିହର ଯୋଗ ବ୍ରହ୍ମରାଶି ।
ଅଷ୍ଟରତନ ଭୂଷଣ ଅଷ୍ଟକୁଳା ନାଗ
ଗନ୍ଧଭସ୍ମ ବିଲେପନ ଚରଣ ଯେ ଭାଗ ।
ଯୋଗେ ଜଗନ୍ନାଥ ତୁମ୍ଭ କଷା ଝୀନବାସ
ଶୋଷକ ନାଶକ ଦେବ ପରମ ପୁରୁଷ ।
ଏକକାୟେ ନାଥ ତୁ ଯେ ନାଗ ଅବତାର
ଅଲୋଭୀ ପୁରୁଷ ନାଶ ନାଶି ମହୀଭାର ।
ଜାତଅନ୍ତ କରତା ତୁ ହରନ୍ତା ଧରନ୍ତା
ଜୟ ଜୟ ହରିହର ବିହନ୍ତା ରଖନ୍ତା ।
ଶ୍ରୀହରି ହରଙ୍କ ପାଦେ ଶରଣ ମୁଁ ନିତ୍ୟେ
ଶୂଦ୍ରମୁନି ବିନୟ ଯେ ହୁଅଇ ଭକତେ ।
ଶ୍ରୀଚଣ୍ଡୀ ଶାରଳା ମାଗୋ ଝଙ୍କଡ଼ର ବାସୀ
ତାହାଙ୍କର ଆଶ୍ରିତ କୃପାଜଳ ମହାଋଷି ।
ସେ ଦେବୀ ଲୟେ ଶାରଳା ଦାସ ମୁହିଁ କବି
ତାହାର ଚରଣ ନିତ୍ୟ ହୃଦଗତେ ଭାବି ।
ପରଦୁଃଖ କାତର ଯେ ସିଦ୍ଧ ଯେ ସାଧବୀ
ତାର ଅନୁଗ୍ରହେ ମହାଭାରତ ମୁଁ ଭାବି ।
ତାହାଙ୍କ ପ୍ରସନ୍ନେ ଲେଖି କଲି ଗୀତଗ୍ରନ୍ଥ
ଶୁଣନ୍ତେ ଧନ ସନ୍ତାନ ହୁଅଇ ପ୍ରାପତ ।
ଶ୍ରୀଚଣ୍ଡୀ ଶାରଳା ଲୟେ ମମ ହୃଦଗତ
ଶୂଦ୍ରମୁନିଙ୍କୁ ମୁକତ କର ଜଗନ୍ନାଥ ।
କହନ୍ତି ଅଗସ୍ତି ଶୁଣ ମନୁ ନରରାୟେ
ଏ ମହାଭାରତ ଶୁଣି ପାପ ଯାଉ କ୍ଷୟେ ।
ଅନେକ ଭକତି ତାଙ୍କୁ କଲେ କମଳିନୀ
ବହୁତ କଲ୍ୟାଣ ବାଞ୍ଛାକଲେ କାତ୍ୟାୟିନୀ ।
ଲକ୍ଷ୍ମୀଙ୍କୁ ଘେନି ଗରୁଡ଼ପୃଷ୍ଠେ ବିଜେ କରି
ଚଳିଲେ ଜଗମୋହନ ଦ୍ୱାରାବତୀ ପୁରୀ ।
ହର ପାର୍ବତୀ ଏ ଦୁହେଁ ବୃଷଭ ଆରୋହୀ
କପିଳାସ କନ୍ଦରେ ସେ ବିଜେ କଲେ ଯାଇ ।
ଶ୍ରୀହରି କମଳା ବିଜେ ଦ୍ୱାରକା ଭୁବନେ
ସନ୍ଧ୍ୟା ସାରିଣ ଭୋଜନ କଲେ ଜନାର୍ଦ୍ଦନେ ।
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
କିସ ଆଜ୍ଞା ଦେଲେ ହରି ଭଦ୍ରା ଦୁଃଖ ଦେଖି ।
ଅଗସ୍ତି ବୋଇଲେ ତହୁଁ ହେ ମହାରାଜନ
ଯାହା ପଚାରିଲୁ ଶୁଣ ହୋଇ ସାବଧାନ ।
ଗୋବିନ୍ଦ ଯେ ଆଜ୍ଞାଦେଲେ ସେ ସତ୍ୟଭାମାକୁ
ତୁମ୍ଭେ ଚଳିଯାଅ ବେଗେ ଯଶୋଦା ପୁରକୁ ।
ଆଜ୍ଞା ପାଇ ଚଳିଗଲେ ହରି ପାଟବଂଶୀ
ଯଶୋଦାପୁରେ ପ୍ରବେଶ ହେଲେ ଯାଇ ନିଶି ।
ପ୍ରଣାମ କରି ବୋଇଲେ ଏମନ୍ତ ବଚନ
କଥାଏ କହିବି ମାତ ହୁଅ ସାବଧାନ ।
ସୁଭଦ୍ରାକୁ ପ୍ରଦାନ କି କରିବି ପାର୍ଥକୁ
ବାସୁଦେବ ବୁଝି ସିନା କହିଲେ ତାହାକୁ ।
ଯଶୋଦା ଦେବକୀ ଦୁହେଁ ବୋଇଲେ ଏମନ୍ତ
ଆମ୍ଭ ବିଚାରକୁ ଏକା ଯୋଗାଇଲା ମାତ୍ର ।
ଅନ୍ତର୍ଯ୍ୟାମୀ ପୁରୁଷ ସେ ହରତା କରତା
ଅଟନ୍ତି ସକଳ ଜୀବଜନ୍ତୁ ପିତା ମାତା ।
ଯାହାକୁ ଯାହା ବିହିବେ ସେହି ଅବହେଳେ
କେ ତାହା ଅନ୍ୟଥା କରି ପାରିବ ବା ବଳେ ।
କ୍ଷତ୍ରିୟ ସେ ନିଷ୍କଳଙ୍କ ବଂଶେ ଜଗଜ୍ଜିତ
ଦ୍ୱାରକାର ସେନାପତି ବିଷ୍ଣୁର ଭକତ ।
ସୁଭଦ୍ରା କର୍ମେ ଯଦ୍ୟପି ଥିବ ଶୁଭକର୍ମ
ତେବେ ସେ ଦିଶିବ ସିନା ସବୁରି ଯେ ଧର୍ମ ।
ଧାର୍ମିକ ବିବେକୀ ସେହି ଅତି ପୁଣ୍ୟଜନ
ଅତି ପୁଣ୍ୟରେ ପ୍ରାପତ ହୁଏ କଥାମାନ ।
ସୁଭଦ୍ରାର ପୂର୍ବେ ଯେବେ ଥିବ ପୁଣ୍ୟ ଅତି
ତେବେ ସେ ହୋଇବ ସିନା ଅର୍ଜ୍ଜୁନ ଯୁବତୀ ।
ସତ୍ୟଭାମାକୁ ରୁହାଇ ଗଲେ ଯଶୋମତୀ
ବଳରାମଙ୍କର ପୁରେ ପ୍ରବେଶ ହୁଅନ୍ତି ।
ଦେଖି ଧାତିକାରେ ଉଠି ଦେବ ଦେବ ହଳୀ
ମାତାଙ୍କ ପାଦେ ଓଳଗି ବୋଲନ୍ତି ମୁଷଳୀ ।
କେବଣ କାରଣେ ବିଜେ କଲ ଆଗୋ ମାଏ
କେବଣ ବିଧାନ ଅବା କେଉଁ କଥା ହୁଏ ।
ସାବଧାନେ ଶୁଣ ବାବୁ କହେ ମୁଁ ତୁମ୍ଭଙ୍କୁ
ସୁଭଦ୍ରାକୁ ପ୍ରଦାନ କି କରିବା ପାର୍ଥକୁ ।
ମାତାଙ୍କ ମୁଖରୁ ଶୁଣି ଏସନ ବଚନ
ଭୂଇଁ ଛୁଇଁ କାମପାଳ ଛୁଇଁଲେ ଶ୍ରବଣ ।
ଅର୍ଜ୍ଜୁନକୁ ଦେଖିଲ କି ସୁନ୍ଦର ମୂରତି
ମାତାର ନାମ ତାହାର ଅଟଇ ଯେ କୁନ୍ତୀ ।
ପିତାର ନାମ ତାହାର ପଣ୍ଡୁ ଯେ ରାଜନ
ବ୍ରହ୍ମହତ୍ୟା ପାପକଲା ନାଶି ତପୋଧନ ।

କୁନ୍ତୀର ଅନୀତି ମୁଖେ କହି ତ କେ ପାରି
ପୁତ୍ରଙ୍କ ଜନମ କଲା ପରେ ପ୍ରୀତି କରି ।
ବଂଶରେ କଳଙ୍କ ପୁଣି ଅଛଇ ଯାହାର
ତାହାକୁ କନ୍ୟା ଦେବାର ନୁହଇ ବେଭାର ।
ଆମ୍ଭେ ବିଚାର ମନରେ କରିଛୁ ଯାହାକୁ
ସୁଭଦ୍ରାକୁ ଦେବା ରାଜା ମାନଗୋବିନ୍ଦକୁ ।
ବଂଶେ ନିଷ୍କଳଙ୍କ ପଞ୍ଚ କଟକର ରାଜା
ସକଳ ନୃପ କରନ୍ତି ତାର ପାଦପୂଜା ।
ଶଙ୍ଖନିଧି ପଦ୍ମନିଧି ଅଛି ତା କରେ
ପାଣିଦ୍ରବ୍ୟ ହୁଏ କର ଲାଗିଲେ ପଥରେ ।
ଚାଲନ୍ତେ ସୁବର୍ଣ୍ଣ ଅଷ୍ଟପଦ୍ମ ଯେ ଫୁଟଇ
ଅତିମାନେ ରାଜା ମାନଗୋବିନ୍ଦ ଅଟଇ ।
ପାଣ୍ଡବଙ୍କୁ ରାଜ୍ୟୁ ଦେଲା ଯେ ବାହାର କରି
କାଳକ ପାଣ୍ଡବେ ତାର ପୁଣି ବନଚାରୀ ।
ଗୋଲକୁଣ୍ଡା ପାଣ୍ଡବେ ଯେ ଅଟନ୍ତି ଅଜାତି
ପାଞ୍ଚଜଣ ବିଭାହେଲେ ଏକଇ ଯୁବତୀ ।
ମୋହର ଆଗରେ ଯାହା କହିଲ ଗୋ ମାତ
ଏ କଡାଗୋଟି ନ କାଣେ ଯେହ୍ନେ ଜଗନ୍ନାଥ ।
ଭଲଦିନେ ରାଜା ଦୁର୍ଯ୍ୟୋଧନକୁ ମୁଁ ଆଣି
ପ୍ରଦାନ କିରବି ତାକୁ ତୁମ୍ଭର ଦୁଲଣୀ ।
ପାଣ୍ଡବେ ଅଟନ୍ତି ଗୋଲକୁଣ୍ଡା ବ୍ରହ୍ମଦ୍ୱେଷୀ
ତାହାଙ୍କୁ କନ୍ୟା ଦେବାର ବିହିତ ନ ଆସି ।
ଆମ୍ଭ ଆଗେ କହିଲ ଯେ ଏହୁ ସର୍ବକଥା
ଜଗନ୍ନାଥ ନ ଜାଣିବ ଏଥିର ବାରତା ।
ବଳରାମ ମୁଖୁଁ ଶୁଣି ଏସନକ ବାଣୀ
ପ୍ରବେଶ ହୋଇଲେ ନିଜପୁରେ ନନ୍ଦରାଣୀ ।
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ
ସତ୍ୟଭାମାଙ୍କର ଆଗେ ଏକଥା କହିଲେ ।
ଶୁଣି ସତ୍ୟଭାମା ଦେବୀ କଲେ ଆଗମନ
ଶ୍ରୀହରି ଛାମୁରେ ଆସି ମିଳିଲେ ତକ୍ଷଣ ।
ବୋଇଲେ ଶୁଣିମା ହେଉ ଦେବ ମଧୁହାରୀ
ଅର୍ଜୁନ ନାମରେ କୋପ କଲେ ହଳଧାରୀ ।
ଅନେକ କହିଲେ ଦୋଷ ବାଛି ପାଣ୍ଡବଙ୍କୁ
ସୁଭଦ୍ରାକୁ ଦେବେ ରାଜା ମାନଗୋବିନ୍ଦଙ୍କୁ ।
ଏସନକ ବିଚାର ଯେ ହୋଇଲାକ ଆଜ
ଶୁଣି ମହାକୋପେ କଲେ ପ୍ରଭୁ ଦେବରାଜ ।
ଗୋବିନ୍ଦ ବୋଇଲେ ଚାହିଁ ସେ ସତ୍ୟଭାମାଙ୍କୁ
ତୁମ୍ଭେ ସୁଭଦ୍ରାକୁ ନିଅ ଅର୍ଜୁନ ଛାମୁକୁ ।
ଅର୍ଜୁନ ସୁଭଦ୍ରା ଭେଟ କର ତୁମ୍ଭେ ନେଇ
କେମନ୍ତେ ବିଭା କରିବେ ତାକୁ ହଳସାଇଁ ।

ଏସନ ବିଚାର କରି ରଜନୀ ପ୍ରଭାତେ
କହିଲେକ ଉଦ୍ଧବଙ୍କୁ ଚାହିଁ ହଳହସ୍ତେ ।
ଅଶ୍ୱ ଏକ ଚଢ଼ି ତୁହି ଚଳ ଏହିକ୍ଷଣେ
ବାରତା କରିବୁ ଯାଇ ରାଜା ଦୁର୍ଯ୍ୟୋଧନେ ।
ବରଣ କରି ଆସିବୁ ତାକୁ ଏହିକ୍ଷଣି
ସୁଭଦ୍ରାକୁ ଦେବା ଆମ୍ଭେ ଆସୁ ସୈନ୍ୟଘେନି ।
ବଳରାମଙ୍କ ବଚନେ ଚଳିଲା ଉଦ୍ଧବ
ବରଣ ଯୋଗାଡ଼ ତାକୁ ଦେଲେ ବଳଦେବ ।
ଆଜ୍ଞା ପ୍ରମାଣେ ଉଦ୍ଧବ ତହୁଁ ଚଳିଗଲା
ହସ୍ତିନା ପୁର ମଧ୍ୟରେ ପ୍ରବେଶ ହୋଇଲା ।
ସମଦଣ୍ଡ ସଙ୍ଗେ ଘେନି ପ୍ରଭୁ ହଳପତି
ରଇବତ ପରବତେ ବିଜେ କରିଛନ୍ତି ।
ବସନ୍ତ ଉତ୍ସବ ଏକ ଯାତ୍ରାର ବିଧାନେ
ଯାତ୍ରା ସାରି ବାହୁଡ଼ିଲେ ପୁଣି ସେ ମଧ୍ୟାହ୍ନେ ।
ଦ୍ୱାରକା ଭୁବନେ ଯାଇ ହୋଇଲେ ପ୍ରବେଶ
ସତ୍ୟଭାମାକୁ ବୋଇଲା ରାଇ ପୀତବାସ ।
ସୁଭଦ୍ରାକୁ ତୁମ୍ଭେ ବେଶ ଭୂଷଣ କରାଇ
ଅର୍ଜୁନ ଶୟନ ସ୍ଥାନେ ସମର୍ପିବ ନେଇ ।
ଚଳିଲେ ସେ ସତ୍ୟଭାମା ସ୍ୱାମୀର ବଚନେ
ପ୍ରବେଶ ହେଲେ ସୁଭଦ୍ରାଦେବୀ ମେଢ଼ସ୍ଥାନେ ।
ଯୋଗୀ ଯେସନେ ଜାଗଇ ଦିବସ ଶର୍ବରୀ
ଅର୍ଜୁନ ନିମନ୍ତେ ଦେବୀ କ୍ଷୁଧା ତୃଷା ହାରି ।
ବଦନ୍ତି ଗୋ କାତ୍ୟାୟନୀ ମାତା ଯୋଗେଶ୍ୱରୀ
ତବ ଚରଣେ ଶରଣ ତୀର୍ଥେ ଆଶ୍ରା କରି ।
ଶତସହସ୍ର ପ୍ରଣାମ ଘେନ ମୋର ସେବା
କୁନ୍ତୀ ନନ୍ଦନ ଅର୍ଜୁନ ମୋତେ ଆଣି ଦେବା ।
ଏମନ୍ତ ବିଚାରି ସ୍ତୁତି କରନ୍ତେ ଯୁବତୀ
ଦ୍ୱାରେ ପ୍ରବେଶ ହୋଇଲେ ଯାଇ ସତ୍ୟାସତୀ ।
ସତ୍ୟଭାମାକୁ ଦେଖିଣ ନନ୍ଦନର ନନ୍ଦିନୀ
ମୁକତି ଗତି ଲଭଇ ଅନ୍ଧ ଚକ୍ଷୁ ଜାଣି ।
ସତ୍ୟଭାମାର ଚରଣେ ପ୍ରଣମିଲା ବାଳୀ
ଏ କଷ୍ଟୁ ଉଦ୍ଧାର ଶକ୍ରାଜିତର ଦୁଲାଳୀ ।
ବିକଳ ଛାଡ଼ ତୁ ବେଶ ହୁଅ ମହାମାୟା
କଲେଣି ପରମାନନ୍ଦ ସ୍ୱାମୀ ତୋତେ ଦୟା ।
ଉଠ ଉଠ ସୁଭଦ୍ରା ଗୋ ବେଗହୋଇ ଯିବା
ଅର୍ଜୁନ ଦର୍ଶନେ କାମକଷ୍ଟ ତୋ ହରିବା ।
ଶୁଣିଣ ସାନନ୍ଦ ସେ ଯେ ନନ୍ଦର କୁମାରୀ
ବିବିଧ ବେଶ ହୋଇଲେ ଅଳଙ୍କାର ଭରି ।
ରାତ୍ର ସାତଘଡ଼ି ମଧ୍ୟେ ଗଲେ ବେନି ବାମା
ଅର୍ଜୁନ ଶୟନ ପୁରେ ମିଳେ ସତ୍ୟଭାମା ।

ଅର୍ଜ୍ଜୁନ ଯେ ଶୋଇଅଛି ବିଚିତ୍ର ମନ୍ଦିରେ
ସତ୍ୟଭାମା ସୁଭଦ୍ରା ଯେ ପ୍ରବେଶିଲେ ଦ୍ୱାରେ ।
ପେଲନ୍ତେ ଯେ ନ ଫିଟଇ କବାଟ କିଳିଣି
ପଲ୍ୟଙ୍କେ ବସି ଅର୍ଜ୍ଜୁନ ଶରମାନ ଗଣି ।
ଦୀପାବଳୀମାନ ଜଳେ ଘର ଚଉକତି
ନିଦ୍ରା ବୋଲି ବାସବୀରେ ଶସ୍ତ୍ରେ ଲୟମତି ।
ସତ୍ୟଭାମା ଡାକଦେଲେ ଶୁଣ ଫାଲଗୁନି
ଠାକୁରଙ୍କ ଆଜ୍ଞା ମୁହିଁ ଆସିଅଛି ଘେନି ।
କବାଟକୁ ଫେଡ଼ି ମୁହିଁ ଭିତରକୁ ଯିବି
ପ୍ରଭୁଙ୍କର ବାରତା ତୋ ଆଗରେ କହିବି ।
କବାଟ ତୁ ଫେଡ଼ିବାକୁ ଆସ ବହି ମୋଦ
ଏକାନ୍ତେ କହିବି ଜଗନ୍ନାଥଙ୍କ ସମ୍ବାଦ ।
ଅର୍ଜ୍ଜୁନ ବୋଇଲେ ତୁମ୍ଭେ ହରି ପାଟବଂଶୀ
ଦ୍ୱାରକାପୁରକୁ ତୁହି ଅଟୁ ଚାରୁହଂସୀ ।
ଯାଦବ ସେ ଶକ୍ରାଜିତ ରାଜାର କୁମାରୀ
ବଂଶୀକ ପଣରେ ନୁହେଁ ଜଗନ୍ନାଥ ସରି ।
ପଞ୍ଚଭୂତ ଆତ୍ମା ତୋତେ ଦେଇ ବସୁଦେବ
ଅନବରତ ତୋଠାରେ ଥାଇ ପ୍ରିୟଭାବ ।
ମାଗୋ ଏତେ ରାତ୍ରେ କିମ୍ପା ମୋ ପୁରେ ଆଗମ
କେମ୍ଭେ ଉପେକ୍ଷି ଅଇଲୁ ଶ୍ରୀ ପୁରୁଷୋତ୍ତମ ।
ସେହି ମାୟାଧର ଅବା ମୋତେ ମାୟାକଲା
ଚିତ୍ତ ବିଡ଼ିବା ପାଇଁ ମୋ ପୁରକୁ ପେଶିଲା ।
ନାରାୟଣ ମାୟା ତୁ ଗୋ ନ ଜାଣିଲୁ ପୁଣି
ଚକ୍ରକୁଟ ବୁଦ୍ଧିରେ କି ପଡ଼ିଲୁ ନ ଜାଣି ।
ସତ୍ୟଭାମା ବୋଇଲେ ତୁ ଶୁଣ ସବ୍ୟସାଚୀ
ଆପେ ଡକାଇ ପେଶିଲେ ମୋତେ ଶିରୀବସି ।
ମୋହର ଶପଥ ତୋତେ ଠାକୁରଙ୍କ ରାଣ
ସନ୍ଦେହ କହଇ ଯାହା ସାବଧାନେ ଶୁଣ ।
ଅର୍ଜ୍ଜୁନ ବୋଇଲେ ମାଗୋ ନୁହଇ ଏମନ୍ତ
ବାରତା କହିବ ମୋତେ ହେଉ ଯେ ପ୍ରଭାତ ।
ଏତେବେଳେ ହୋଇଲାଣି ବହୁତ ଗୋ ରାତି
ବତିଶ ସହସ୍ର କନ୍ୟା ମଧ୍ୟେ ପ୍ରିୟା ଅତି ।
ସତ୍ୟଭାମା ବୋଇଲେ ତୁ ଶୁଣ ଫାଲଗୁନି
ମୁହିଁ ଆସିଅଛି ଏଥେ ସୁଭଦ୍ରାକୁ ଘେନି ।
ତୋତେ ଦେଖି ହୋଇଲା ଏ ଦେବୀ ବିରହିଣୀ
ଜାଣିଲେ ତା ମନକଥା ଦେବ ଚକ୍ରପାଣି ।
ଯତ୍ନେ ପୁଣି ଆଜ୍ଞା ମୋତେ ଦେଲେ ଦେବରାଇ
ସୁଭଦ୍ରାକୁ ଦେଇଆସ ଅର୍ଜ୍ଜୁନକୁ ନେଇ ।
ଅରଜୁନେ ବୁଝାଇଣ ସମର୍ପି ତୁ ଆସ
ମୋହର ଆଜ୍ଞା ବୋଲିଣ କହ ତାଙ୍କ ପାଶ ।
ମୁହିଁ ଯେବେ ତୋତେ ବାବୁ କହୁଅଛି ମିଥ୍ୟା
ଜଗନ୍ନାଥ ଆଶ୍ରା ମୁଁ ନ ପାଇବି ସର୍ବଥା ।
ତୋହର ଶପଥ ଦ୍ରୋହକର୍ତ୍ତାର କରଇ
ଗୁରୁଜନଙ୍କର ନିନ୍ଦା ଦୋଷେ ମୁଁ ପଡ଼ଇ ।
ଅର୍ଜ୍ଜୁନ ବୋଇଲେ ତୁ ଗୋ ଶୁଣ ମାହେଶ୍ୱରୀ
ମୁହିଁ ମାନବ ତୁ ଏହା କିମ୍ପା ନ ବିଚାରି ।
ସୁଭଦ୍ରା ପ୍ରତି ଉତ୍ତର ଦେଲେ ଅର୍ଜ୍ଜୁନକୁ
ପାପଚକ୍ଷୁରେ ଦେଖଇ କିନା ମୁଁ ତୁମ୍ଭଙ୍କୁ ।
ଅର୍ଜ୍ଜୁନ ବୋଇଲେ ରାତ୍ରେ ନ ଯିବି ତ ଚାଲି
ରୈବତ ପର୍ବତେ ମୋତେ ଦେଖୁ ସିନା କାଲି ।
ସୁଭଦ୍ରା ବୋଇଲେ ମୋର ସନ୍ନିଧିକି ଆସ
ତୋହର ଆଗରେ ମୁଁ ଯେ କହିବି ବିଶ୍ୱାସ ।
ପୁଣ ପୁଣ ବୋଲଇ ଯେ ବୀର ଅରଜୁନ
ଧର୍ମକୁ ନ ଗଛଇ ଏ ତୋହର ବଚନ ।
ଅର୍ଜ୍ଜୁନ ବୋଇଲେ ପରସ୍ତିରୀ ମୋର ମାତା
ପରସ୍ତିରୀର ଯେ ସ୍ୱାମୀ ସେହି ମୋର ପିତା ।
ପରର ଦ୍ରବ୍ୟ ମୋହର ଅଟଇ ଦେବତା
ପରର ଶିରୀ ଦେଖି ମୁଁ ନ କରଇ ଚିନ୍ତା ।
ପରଧନ ନ ହରଇ ପରେ ନାହିଁ ହିଂସା
ପରଦାର ପ୍ରକୃତିରେ ନ ବଳଇ ଆଶା ।
ପରଦୁଃଖେ କାତର ମୁଁ ପରଦୁଃଖେ ଦୁଃଖୀ
ପ୍ରସନ୍ନ ମୁଁ ପରଦାରେ ଶରଣ ମୁଁ ରଖି ।
ସୁଭଦ୍ରା ବୋଇଲେ ଯାହା କହିଲି ଯେ ଭାବେ
ଶରଣ ବତ୍ସଳ ମାଗୋ ଶରଣ ମୁଁ ଏବେ ।
ତୁମ୍ଭେ ଯେ ବୋଇଲ ମୁହିଁ ପରଦୁଃଖେ ଦୁଃଖୀ
ତୁମ୍ଭେ ପରଲୋକ ବନ୍ଧୁ ଅଟେ ମୁଁ ନିର୍ମାକ୍ଷୀ ।
ଶତଧନୁ ତୋର ତହିଁ ପଶିଲା ଶରଣ
ଯାହାକୁ ରଖି ଜିଣିଲୁ ଦେବ ନାରାୟଣ ।
ଶରଣ ପଶିଣ ଅଗ୍ନି ଦେବତା ଯେ ଆସି
ଇନ୍ଦ୍ରକୁ ଜିଣି ଖାଣ୍ଡବ ବନ ଦେଲୁ ଧ୍ୱଂସି ।
ଅନଙ୍ଗ ଦେବତା ମୋତେ ଦିଏ ପରାଭବ
ଅଦୋଷେ ନାରାଚ କେତେ ବିନ୍ଧେ କାମଦେବ ।
ବିକଳେ ପଳାଇ ଆସି କାମଦେବ ଭୟେ
ମୁହିଁ ତୋ ଶରଣ ମୋତେ ରଖ ଧନଞ୍ଜୟେ ।
ଅଗ୍ନି ଦେବର ଖଣ୍ଡିଲୁ ଲୁଦୁବୁଦୁ ବ୍ୟାଧି
ମୋତେ ଉଦ୍ଧାର ତୁ ଏବେ ଦେଇ ମହୌଷଧି ।
କାମସର୍ପ ବିଷଘାତେ କରୁଛି ମୋ କାୟେ
ସେ ବିଷ ଝାଡ଼ ଗାରେଡ଼ି ମନ୍ତ୍ରେ ଧନଞ୍ଜୟେ ।
ଅକାରଣ ଜନକୁ ଯେ କାରଣ କରନ୍ତି
ମହତ ପ୍ରାଣ ଭକତ ଜନ ଉଦ୍ଧାରନ୍ତି ।

ମୁହିଁ ଅନାଥ ମୋହର ବନ୍ଧୁ ଫାଲଗୁନି
ଶତ ସହସ୍ର ପ୍ରଣାମ ବହୁତ ଦଇନୀ ।
କ୍ଷୁଧାବଳେ ଅନ୍ନ ଦେଲେ ହୁଏ ଯେତେ ପୁଣ୍ୟ
ଦରିଦ୍ର ପ୍ରାଣୀଙ୍କି ଡାକି ଯତ୍ନେ ଦେବା ଦାନ ।
ତୁ ଫାଲଗୁନି ମହତ ଜନ କଳ୍ପତରୁ
ବୁଡ଼ିଅଛି କାମଜଳେ କିମ୍ପାଇଁ ନ ଧରୁ ।
ନିଷ୍କଳଙ୍କ ଚନ୍ଦ୍ରପ୍ରାୟ ତୋ ବଦନ ଗୋଟି
ଦେଖିବାରେ ମୋର ଅନ୍ଧକାର ଯାଉ ଫାଟି ।
ବିନୟ ବଚନେ ତାଙ୍କୁ ବୋଲେ ଫାଲଗୁନି
ସୁଭଦ୍ରା ଗୋ ତୋତେ ମୋର ଅନେକ ଦୟିନୀ ।
ପରଦାର ଦୋଷେ ମାଗୋ ନାଶ ଯାଇ ତପ
ମୋର ଛାର ଦେହ ଲାଗି ତୋରଏଡ଼େ ତାପ ।
ଠାକୁର ସେବକ ଏକ ଯୋଗ ଅଛି କାହିଁ
ବ୍ରାହ୍ମଣ ଚାଣ୍ଡାଳ ସଙ୍ଗେ ମିତ୍ର ହୁଏ ନାହିଁ ।
ତୁ ମୋହର ମାଆ ତୁଲ୍ୟ ଛାଡ଼ ମୋର ଆଶା
ତୋହର ସଦୃଶେ ବର ଦେଖ ତୁ ମନୁଷ୍ୟା ।
ସୁଭଦ୍ରା ବୋଇଲେ ତୋର ଜନ୍ମ ସୋମବଂଶ
ହରି ବଳରାମଙ୍କଠାରୁ ଅଟ ଗୁରୁହାସ୍ୟ ।
ତୁମ୍ଭ ରୂପ ଦେଖି ମୋର ବଳିଲା ମନୀଷା
ମୁଁ ତୁମ୍ଭ ଶରଣ ମୋତେ ନକର ନିରାଶା ।
ସୁଭଦ୍ରା ଅନେକ ସ୍ତୁତି କଲେ ଅର୍ଜ୍ଜୁନକୁ
ମୂର୍ଚ୍ଛାଯାଇ ମଣ୍ଡିଲେ ସେ ଧରଣୀ ତଳକୁ ।
କୋଳ କରିଣ ଧଇଲେ ତାକୁ ସତ୍ୟାବତୀ
ଆହେ ଅର୍ଜ୍ଜୁନ ତୁ ହତ୍ୟାକଲୁ ଏ ଯୁବତୀ ।
ନିଶ୍ଚୟ ଏହି ସୁଭଦ୍ରା ତୋର ଯୋଗୁ ମଲା
କବାଟ ଫେଡ଼ି ତୁ ଦେଖ ପ୍ରାଣତ୍ୟାଗ କଲା ।
କାଲବେଳେ ପଶିଲୁ ଏ ପୁରେ ଧନଞ୍ଜୟେ
ପ୍ରଥମେ ଲଭିଲୁ ସ୍ତ୍ରୀହତ୍ୟା ତୁ ଗୋଟାଏ ।
ନିଶ୍ଚୟ ଜାଣ ସୁଭଦ୍ରା ହେଲା ମୃତଆତ୍ମା
ଏବେ ସନ୍ନିଧିକୁ ଆସି ଦେଖ ହୋ ମହାତ୍ମା ।
ଦୋଷ ଦେଇ ନ ମର ଲୋ କହି ପାର୍ଥ ତୁନି
ଅଡ଼ାଇ ପ୍ରହର ଆସି ହୋଇଲା ରଜନୀ ।
ଡାକି ବିମୁଖ ହୋଇଲେ ଦେବୀ ସତ୍ୟଭାମା
ନିରାଶେ ତହୁଁ ବାହୁଡ଼ି ଗଲେ ବେନି ବାମା ।
ଗରଳ ଘୋଟିଲେ ଦେହେ ଯେହ୍ନେ ହୋଏ ପ୍ରାଣୀ
ସୁଭଦ୍ରାକୁ ସତ୍ୟଭାମା କୋଳ କରି ଆଣି ।
ମେଢ଼ ଭିତରେ ଶୁଆଇ ଦେଲେ ଶଶୀମୁଖୀ
ସୁଭଦ୍ରା ବୋଇଲେ କହ କି କରିବି ସଖୀ ।
ନ ରହଇ ଆତ୍ମା ମୋର କାମ ଆସକତେ
ଛାଡ଼ିବି ପ୍ରାଣ କଟାରୀ ଘେନିଲାକ ହସ୍ତେ ।
ପୋଡୁ ପୋଡୁ ସଖୀ ଏହି ସ୍ତିରୀଜନ୍ମ ଗୋଟା
ଯୁବକାଳରେ କାମର ହୁଏ ଯେତେ ଚେଷ୍ଟା ।
ଆହେ ଧାତା ତୁହି କିମ୍ପା ମନ୍ଦକୃତ୍ୟ କଲୁ
ସ୍ତିରୀଙ୍କ ଉପରେ କାମଦେବଙ୍କୁ ବିହିଲୁ ।
ଶରୀର ଦେଇ ପରର କରୁ ଭୃତ୍ୟକାରୀ
ଅତି ପାତକୀ ହୋଇଣ ନିର୍ମିତ ଯେ ସ୍ତିରୀ ।
ସତ୍ୟଭାମା ବୋଇଲେ ଗୋ ନ ଭାଳ ସଙ୍ଗାତ
ଅବଶ୍ୟ ଅର୍ଜ୍ଜୁନ ତୋତେ ହୋଇବ ପ୍ରାପତ ।
ତୁ କିମ୍ପାଇ ନିନ୍ଦା କରୁ ଏ ସ୍ତିରୀ ଜନ୍ମକୁ
ସ୍ତିରୀ ଉତ୍ପତ୍ତି କରଇ ସିନା ପୁରୁଷକୁ ।
ସ୍ତିରୀ ନ ଥିଲେ ପୁରୁଷ ହୁଅନ୍ତେ ଗୋ କାହିଁ
ପୁରୁଷ ବିଧାତା ସ୍ତିରୀ ଗଢ଼ିଅଛି ବିହି ।
ଆଗହୁଁ ହେଖ ସଙ୍ଗାତ ସ୍ତିରୀ ନାମ ଧରି
ପଛରେ ସିନା ପୁରୁଷ ନାମକୁ ଉଚ୍ଚାରି ।
ଆଗ ଦେଖ ଲକ୍ଷ୍ମୀ ବୋଲି ପଛେ ନାରାୟଣ
ଆଗେ ଉମା ମହେଶ୍ୱର ପଛେ ସୁମରଣ ।
ସକଳ ଜନଙ୍କ ସ୍ତିରୀ ଅଟଇ ଗୋ ମୂଳ
ସ୍ତିରୀଙ୍କ ବଶ ଅଟନ୍ତି ପୁରୁଷ ସକଳ ।
ପୁରୁଷେ ସିନା ସ୍ତିରୀଙ୍କି କରନ୍ତି ଦଇନୀ
ପୁରୁଷ ମଧ୍ୟେ ପାଷାଣ ଅଟେ ଫାଲଗୁନୀ ।
ଧଇର୍ଯ୍ୟ ଗଛରେ ଫଳ ଧରଇ ନା ସଖୀ
ଆରତ ହୋଇଲେ କାର୍ଯ୍ୟ ନୋହେ ଜାଣ କିଛି ।
ଏକଥା ମୁହିଁ ଜାଣଇ ଦେବ ଦେବରାଜ
ଆଜର ମଧ୍ୟରେ ସିଦ୍ଧି କରାଇବି କାର୍ଯ୍ୟ ।
ସତେ ହେ ଆମ୍ଭ ଦଇନୀ ଯେବେ ନ ଘେନିବ
ଆମ୍ଭଙ୍କୁ ନିରାଶ କରି ପାର୍ଥ କାହିଁ ଯିବ ।
ଯେବେ ନିରାଶ କରିବ ଆମ୍ଭଙ୍କୁ ଫାଲଗୁନୀ
ବଳେ ତାହାକୁ ଆଣିବି ସଖୀ ମୁହିଁ ଘେନି ।
ସୁଭଦ୍ରା ହରଷ ସତ୍ୟଭାମାର ବଚନେ
ଯାଉଅଛି ସଖୀ ଜଗନ୍ନାଥ ସନ୍ନିଧାନେ ।
ମୋହର କଥାକୁ ସଖୀ ନ କର ତୁ ହେଳା
ଅଗାଧ ସମୁଦ୍ରେ ମୋର ବୁଡୁଅଛି ଭେଳା ।
ମୁହିଁ କେତେବେଳେ ଯିବି ତୋହର ତହିଁକି
ନପୁଣ ପାସୋରୁ ମୋତେ ଠାକୁରଙ୍କୁ ଦେଖି ।
ଦୁର୍ଯ୍ୟୋଧନକୁ ବରିବେ ଯେବେ ବଳରାମ
ନିଜ ରୂପ ଧରି ବୀଜେ କରେଯେବେ କାମ ।
ତାହାଙ୍କଠାରେଗୋ ସୁଖି ମୋର ନାହିଁ ଇଚ୍ଛା
ଅର୍ଜ୍ଜୁନହୁଁ ସଖୀ ମୋର ନାହିଁ ଆନେ ବାଞ୍ଛା ।
ଏସନଙ୍କ ବିଚାରନ୍ତେ ପ୍ରସାଦିଲା ରାତି
ମିଳିଲେ ସ୍ୱାମୀ ଶୟନ ସ୍ଥାନେ ସତ୍ୟାସତୀ ।

ଦେଖି ତାଙ୍କୁ ପଚାରନ୍ତି ପ୍ରଭୁ ଜଗନ୍ନାଥେ
କାର୍ଯ୍ୟସିଦ୍ଧି ହୋଇଲା କି ବିଳମ୍ବିତ ଏତେ ।
ଦୂତ ବିଳମ୍ବେ ସକଳ କାର୍ଯ୍ୟ ହୋଏ ସିଦ୍ଧି
ସୁଭଦ୍ରାକୁ ପ୍ରସନ୍ନ କି ହେଲା ଯଥାବିଧି ।
କରଯୋଡ଼ି କହେ ଶକ୍ରାଜିତର ନନ୍ଦିନୀ
ପୁରୁଷ ଲକ୍ଷଣ ନାହିଁ ନୁପଂସ ଫାଲଗୁନୀ ।
ତିନି ପ୍ରହର ପର୍ଯ୍ୟନ୍ତେ ମନାଇଲୁ ବସି
କବାଟକୁ କିଳିଦେଇ ବହୁତ ଝିଙ୍ଗାସି ।
ପାଷାଣ ତରଳିଯିବ ଆମ୍ଭ ବାକ୍ୟ ଶୁଣି
ତଥାପି ଇଚ୍ଛା ନ କଲା କ୍ଷତ୍ରୀଚୂଡ଼ାମଣି ।
ତୃତୀୟ ପ୍ରହର ଦେବ ଭୋଗ ହେଲା ରାତି
ନିରାଶ ହୋଇ ଅଇଲୁ ବେନି ଯେ ଯୁବତୀ ।
ସୁଭଦ୍ରାକୁ ଛାଡ଼ିଲି ମୁଁ ମେଢ଼ର ଭିତର
କିସ ବିଚାରିଣ ଆଜ୍ଞା ଦେବ ଚକ୍ରଧର ।
ଏସନ କହିଲେ ଶକ୍ରାଜିତର ଦୁଲାଳୀ
ଶୁଣି ବିରସ ହୋଇଲେ ତହିଁ ବନମାଳୀ ।
ବସନ୍ତ ଉତ୍ସବ ଯାତ୍ରା ବିଜେ ମୁନିମାନେ
ଜଳକ୍ରୀଡ଼ା କରଇ ସେ ନଉକା ବିମାନେ ।
ସ୍ନାନ ତର୍ପଣ ଆହ୍ନିକ କର୍ମ ଦେବ ସାରି
ରୈବତ ପର୍ବତେ ବିଜେ କଲେ ଦେବହରି ।
ବଳରାମ ଉଗ୍ରସେନ ସାତବଂଶ ଘେନି
କ୍ରୀଡ଼ାରସ ସଙ୍ଗେ ବିଜେ ସର୍ବ ମହାମୁନି ।
ଅର୍ଜୁନକୁ ସଙ୍ଗେ ଘେନି ଦେବ ଜନାର୍ଦ୍ଦନ
ଖେଳନ୍ତି ଜଳେ ଆରୋହି ନଉକା ବିମାନ ।
ଶତଧନୁ ଜଣାଇଲା ଦେବ ଜଗନ୍ନାଥ
ବଳରାମ ହସ୍ତିନାକୁ ବରଗିଲେ ଦୂତ ।
ଦୁର୍ଯ୍ୟୋଧନକୁ ଉଦ୍ଧବ ଗଲା ଆଣିବାକୁ
ସୁଭଦ୍ରାକୁ ସେ ପ୍ରଦାନ କରିବେ ତାହାକୁ ।
ଏସନ ବାରତା ଗୋଟି ଶୁଣିଣ ଶ୍ରୀବତ୍ସି
ସ୍ତବଧ ହୋଇଲେ ଦେବ ନ ସ୍ଫୁରଇ କିଛି ।
ଅର୍ଜୁନର ବଦନକୁ ଚାହିଁ ଦେବରାୟ
ବିଚାର ନ କରୁ କିମ୍ପା ଏହା ଧନଞ୍ଜୟ ।
ନାରାୟଣଙ୍କ ବଚନେ ଅର୍ଜୁନ ମଉନ
ଯାତ୍ରା ସାରି ବାହୁଡ଼ିଲେ ଦେବ ଜନାର୍ଦ୍ଦନ ।
ଅର୍ଜୁନ ବୋଇଲେ ଦେବ ହସ୍ତିନାକୁ ଯିବି
ଦୁର୍ଯ୍ୟୋଧନ ଠାକୁରଙ୍କୁ ସଙ୍ଗତେ ଆଣିବି ।
ହସନ୍ତି ଅର୍ଜୁନ ବାକ୍ୟ ଶୁଣି ବନମାଳୀ
ସାଧୁ ସାଧୁ ଅର୍ଜୁନ ତୁ କ୍ଷତ୍ରୀ ଯୁଦ୍ଧଶାଳୀ ।
ଦୁର୍ଯ୍ୟୋଧନ ଆସିବେଟି ତେବେ ଦ୍ୱାରକାକୁ
ତୁ କିମ୍ପାଇଁ ଯିବୁ ଆଉ ହସ୍ତିନା ରାଜ୍ୟକୁ ।

ଯୁଧିଷ୍ଠି ଠାକୁର ପୁଣି ହେବେ ବରଜାତି
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଆଦି ସେନାପତି ।
ଏତେକ ବୋଲି ବିଜୟ କଲେ ଦ୍ୱାରକାକୁ
ରୁହାଇଲେ ସମାଦରେ କରି ଅର୍ଜୁନକୁ ।
ସ୍ନାନ ସାରି ଦେବ କଲେ ମଣୋହିରେ ବିଜେ
ଯେ ବିଧି ଭୋଜନ କରି ପ୍ରଭୁ ଦେବରାଜେ ।
ଅର୍ଜୁନକୁ ଘେନି ଦେବ ବିଜେ ସିଂହାସନେ
ଛାମୁରେ ନୃତ୍ୟ କରନ୍ତି ଅପସରାମାନେ ।
ମେଢ଼ରୁ ଓହ୍ଲାଇ ଆସି ନନ୍ଦର ଦୁଲାଳୀ
ଜଳା କବାଟରେ ବାଟେ ଚାହେଁ ଚକ୍ଷୁଢାଳି ।
ଅର୍ଜୁନର ବଦନକୁ ଚାହାଁଇ ନିରୀକ୍ଷି
ଜଗମୋହନ ମୂରତି ମୁଖ ତାର ଦେଖି ।
ବିଚାରନ୍ତି ଗୋବିନ୍ଦ ଯେ ଆପଣାର ଚିତ୍ତେ
ଯାଚିଲା ଦ୍ରବ୍ୟ ଛାଡ଼ଇ ପାର୍ଥ ହିଁ କେମନ୍ତେ ।
ରଙ୍ଗା ଅବତାର ଯାର ପ୍ରକୃତି ସର୍ବଥା
ସେହି ସିନା ଜାଣଇ ଯେ ପରଦାର କଥା ।
ମାନିତ ଗୌରବ ଆଦି ସମସ୍ତ ଉପେକ୍ଷି
ନେତ୍ର କଟାକ୍ଷେ ମୋହିଲା ସକଳ ମୃଗାକ୍ଷୀ ।
ବଦନ୍ତି ଅଗସ୍ତି ଶୁଣ ମନୁ ଦଣ୍ଡଧାରୀ
ପଶ୍ଚିମରେ ଅସ୍ତଗଲେ ଗଗନ ବିହାରୀ ।
ରାତ୍ରରେ ସାରିଣ ଦେବ ଅମୃତ ମଣୋହି
ଅର୍ଜୁନକୁ ଆସ୍ଥାନରେ ଶୟନ କରାଇ ।
ଦିବ୍ୟ ପଲ୍ୟଙ୍କରେ ଶଯ୍ୟା କରାଇ ସୁପାତି
ସହସ୍ରେକ ଦୀପାବଳୀ ଜଳେ ଚଉକତି ।
ଉପରେ ଯେ ଚନ୍ଦ୍ରାତପ ମୁକ୍ତା କେରି କେରି
ମାଣିକ୍ୟ ପୁଞ୍ଜିରେ ହୀରା ନୀଳାମାନ ଝରି ।
ଅର୍ଜୁନକୁ ଯେ ଶୟନ କରଇ ଶ୍ରୀବତ୍ସି
କବାଟ ନ କିଳି ଶୋଇଥିବୁ ସବ୍ୟସାଚୀ ।
ଆପେ ଶ୍ରୀହରି ଶୟନ ମନ୍ଦିରେ ପ୍ରବେଶ
ସତ୍ୟଭାମାକୁ ବୋଇଲେ ଡାକି ହୃଷୀକେଶ ।
ଆମ୍ଭେ ତିଆରି ଅଇଲୁ ବୀର ଫାଲଗୁନି
ତୁମ୍ଭେ ଚଳ ଏବେ ସଖୀ ସୁଭଦ୍ରାକୁ ଘେନି ।
ସୁଭଦ୍ରା ସମର୍ପି ଆସ ଅର୍ଜୁନକୁ ନେଇ
କାର୍ଯ୍ୟ ସୁବିଧା ନ କର ବେଗେ ତୁମ୍ଭେ ଯାଇ ।
ସ୍ୱାମୀଙ୍କର ଆଜ୍ଞାପାଇ ଗଲେ ସତ୍ୟାସତୀ
ସୁଭଦ୍ରା ସୁବେଶ ହୋଇ ବସିଅଛି ରାତି ।
ସୁଭଦ୍ରା ପାଶେ ପ୍ରବେଶ ହେଲେ ସତ୍ୟଭାମା
ସୁଭଦ୍ରା ବୋଇଲେ ସାଧୁ ସାଧୁ ତୋ ମହିମା ।
ପର ଉପକାର ମର୍ତ୍ତ୍ୟେ କରନ୍ତି ଯେ ଜନ
କିସ ଦେବ ସେବାରେ ମୁଁ ହୋଇବି ଭାଜନ ।

ଅର୍ଜୁନ ମୋହର ସଙ୍ଗେ ଥିବ ଏକମେଳେ
ସେବା କରିବି ତୋହର ମୁହିଁ ସେତେବେଳେ ।
ସୁଭଦ୍ରାକୁ ଘେନି ତହୁଁ ଗଲେ ସତ୍ୟାସତୀ
ପୁରେ ପ୍ରବେଶନ୍ତେ ଦେଢ଼ ପ୍ରହର ଯେ ରାତି ।
ତିନିପୁରର କବାଟ ବଜ୍ରର କିଳିଣି
ନିଶ୍ଚିନ୍ତେ ବସି ଅଛଇ ବୀର ଫାଲଗୁନୀ ।
ପଲ୍ୟଙ୍କରେ ବସି ଶର ଗଣେ ବୀର ପାର୍ଥ
ସୁଭଦ୍ରାକୁ ଘେନି ଦ୍ୱାରେ ସତ୍ୟା ମାରେ ହାତ ।
ପେଲନ୍ତେ ବଜ୍ର କବାଟ ନ ଫିଟେ କିଳିଣି
ଉଚ୍ଚେ ଡାକ ଦେଲେ ଶତ୍ରାଜିତର ଦୁଲଣୀ ।
କବାଟ ଫେଡ଼ି ତୁ ପାର୍ଥ ସନ୍ନିଧିକୁ ଆସ
ଜଗନ୍ନାଥ ଦେଇଛନ୍ତି ତୋଠାକୁ ସନ୍ଦେଶ ।
ସେ ଜଗମୋହନ ଦେବ ଆଜ୍ଞା ମୁହିଁ ପାଇ
ସୁଭଦ୍ରା ଘେନି ଅଇଲି ତୋତେ ଦେବାପାଇଁ ।
ଏ ସୁନ୍ଦରୀ ବଳାଇଲା ତୋଠାରେ ମାନସ
ତୁମ୍ଭେ ଫାଲଗୁନି ପୁରା ଏହା ଅଭିଳାଷ ।
ଭିତରେ ଥାଇ ବୋଲଇ ବୀର ସବ୍ୟସାଚୀ
ଏମନ୍ତ ହୋଇଲେ କାର୍ଯ୍ୟ ନ ହୁଅଇ କିଛି ।
ମାତା ହୋଇ ତୁ କିମ୍ପାଇଁ କୁରୁଛୁ କଟାଳ
ତୋହଯୋଗୁ ହୋଇବି କି ମୁଁ ଚୋର ବିଟାଳ ।
ହରି ବଳରାମ ପରା ତୋର ବେନି ଭ୍ରାତେ
ଲଜ୍ଜା କିମ୍ପାଇ ବସାଉ ତାହାଙ୍କର ଚିତ୍ତେ ।
କି ବୋଲି ବୋଲିବେ ମୋତେ ରାମ ବନମାଳି
ଏଡ଼େ ବଡ଼ ବଂଶରେ ତୁ ଲଗାଇଲୁ କାଳି ।
ପାପ ପୁଣ୍ୟକୁ କିମ୍ପାଇଁ ବିଚାର ନ କରି
ଏ ଛାର ପାପ କଥାରେ ମଜୁଛୁ କିପରି ।
ଶୁଣିଲିଣି ଦୁର୍ଯ୍ୟୋଧନ ହେବେ ତୋତେ ବିଭା
ତୁ ମୋହର ଗୁରୁପତ୍ନୀ କରିବି ତୋ ସେବା ।
ହେବୁ ପଞ୍ଚକଟକର ତୁହି ଠାକୁରାଣୀ
ସେବକଙ୍କୁ ଆଶ୍ରା ଗୋ ନ କର ମହାରାଣୀ ।
ଚଳ ଚଳ ସୁଭଦ୍ରା ଗୋ ଫିଟିଲା ତୋ କଷ୍ଟ
ପନ୍ନଗ ନାରାୟଣର ସଙ୍ଗେ ହେବୁ ଭେଟ ।
ସୁଭଦ୍ରା ବୋଇଲା ପାର୍ଥ ଅଟୁ ତୁ ନିର୍ଲ୍ଲଜ
ତୋ ଛାର ଭାବ କିମ୍ପାଇ କଲେ ଦେବରାଜ ।
ଦୁର୍ଯ୍ୟୋଧନ ରାଜା ଅଟେ ତୁମ୍ଭର ବଇରି
ତା ଛାରକୁ ପ୍ରଶଂସା ତ ଏତେ ମତେ କରି ।
ମୁହିଁ ତୋହର ଭାରିଯା ହେବି ବୀର ପାର୍ଥ
କଉରବଙ୍କର ନାମେ କମ୍ପେ ମୋର ଗାତ୍ର ।
ତୁ ତାର ଗୁଣ ବର୍ଣ୍ଣନା କରିଛୁ କେମନ୍ତେ
ଧାତା ଘଟସୂତ୍ର କରିଅଛି ତୋତେ ମୋତେ ।
ଆହେ ଧନଞ୍ଜୟ ଏବେ କବାଟ ଫେଡ଼ିବା
ମୁହିଁ ତୋହର ଚରଣେ କରିବଇଁ ସେବା ।
କ୍ଷତ୍ରିକୁଳ ବାନା ତୋର ପ୍ରତିଜ୍ଞା ଯେ ସତ
ନ କର ନିରାଶ ମୋତେ ଏବେ ପଣ୍ଡୁସୁତ ।
ତାହା ଶୁଣି କୋପଭରେ ବୋଲଇ କିରୀଟି
ଉଚ୍ଚକୁଳେ ଜାତହୋଇ ତୁ ଏଡ଼େ ନିଲଠୀ ।
ଧିକ ଧିକ ତୋହର ଯେ ନନ୍ଦ ତାତ ମାତ
ଏସନକ ଯୋଗେ ତୋତେ କରିଛନ୍ତି ଜାତ ।
କୁଳ ସୁଲକ୍ଷଣ ଯେବେ ଉପୁଜେ ନନ୍ଦନ
ମୁକ୍ତି ହୋଇଲେ ହୁଏ ଦୁଇକୁଳ ଧନ୍ୟ ।
ଗଉଡ଼ ଜାତିର ସିନା ଉତପତ୍ତି ନନ୍ଦ
ଗୋପାଳଙ୍କ ପ୍ରକୃତି ଯେ ସବୁଠାରୁ ମନ୍ଦ ।
ଜାଣିକରି ବିଧାତା ଯେ ଦେଲା ଅଭିଶାପ
ଦ୍ୱାରେ ଦ୍ୱାରେ ବୁଲୁଥାନ୍ତି ଯୁବତୀ କଳାପ ।
ଯେତେକ ବଚନ ତୁହି ବୋଇଲୁ ସଥାର୍ଥ
ଅଜାଚକର ଏସନ ଅଟେ ଚରିତାର୍ଥ ।
ତୁହି ଯେ ବୋଇଲୁ ରାମ କୃଷ୍ଣ ମୋର ଭାଇ
ଅଗସ୍ତିଙ୍କ ପୁତ୍ର ହେଲେ ପ୍ରତିଗ୍ରାହୀ ହୋଇ ।
ଗୋପାଳୁଣୀ ଜନ ତୋର ପ୍ରକୃତି ଯେ ହୀନ
ତୋ ଯୋଗୁ ଦୂଷିତ ହେଲେ ରାମ ଭଗବାନ ।
ଦୁହିତାଏ ଉପୁଜିଲେ ବଂଶକୁ ଅସାଧୁ
ସତ୍ୟଭାମା ବୋଇଲେ ତୁ ପାର୍ଥ କିମ୍ପା ନିନ୍ଦୁ ।
ଆପେ ତାହା ଅରଜିତା କର୍ମ ବୋଲି ପାର୍ଥ
ଆମ୍ଭେମାନେ ମନ୍ଦଜାତି ତୁମ୍ଭେ ତ ମହତ ।
ମହତ ଜନଙ୍କୁ ଦେଖି ଆମ୍ଭେ ଆଶ୍ରା କଲୁ
ଈଶ୍ୱରଙ୍କୁ ସେବାକରି ନିଷ୍ଫଳ ହୋଇଲୁ ।
ଭିତରେ ଥାଇ ବୋଲଇ ବୀର ଫାଲଗୁନି
ଦନ୍ତରେ ତିରିଣ ଘେନି ତୋତେ ମୋ'ଦଇନୀ ।
ମୁହିଁ ଯେ ତୋହର ଭୃତ୍ୟ ଦାସର ଯେ ଦାସ
ଦେବସ୍ତିରୀ ହୋଇ କିମ୍ପା ମାନବରେ ଆଶ ।
ରାଗେଣ କଲଇ ତୋତେ ଅନେକ ଭର୍ତ୍ସନା
ପ୍ରଣାମ କରୁଛି ମନେ ନ କର ତା ଘେନା ।
ଜାଣିଲେ କୋକ କରିବେ ବଳରାମ ସ୍ୱାମୀ
ଏ କାରଣୁ ପୁଣ ପୁଣ କହୁଛି ପ୍ରଣମି ।
ଅନେକ ବାଗେ ବୋଇଲେ ପାର୍ଥ ନାସ୍ତିବାଣୀ
ରାଗେ ପ୍ରତ୍ୟୁତ୍ତର ଦେଲା ନନ୍ଦର ଦୁଲଣୀ ।
ଆହେ ଅର୍ଜୁନ ତୁ ମୋତେ କଲୁଣି ଝିଙ୍ଗାସ
ପୁରୁଷ ମଧ୍ୟରେ ଅଟୁ ତୁ ହୀନ ପୁରୁଷ ।
ପୁରୁଷ ମଧ୍ୟରେ ଅଟୁ ତୁ ହୀନ ଫାଲଗୁନି
ଧିକ ଧିକ ହେଉ ତୋର ପିଅର ଜନନୀ ।

କେବଣ ମହାତ୍ମା ହେଲା ତୋର ଜୀବଦାତା
କୁପୁରୁଷ ପଣେ ତୋତେ ସର୍ଜିଲା ବିଧାତା ।
ଧିକ ତୋର କ୍ଷତ୍ରିପଣ ସବୁ ଅଟେ ମିଛ
କିମ୍ବା ତୋର ନାମଗୋଟି ଦେଲେକ ବିବସ୍ତ୍ର ।
ବଳବୀର୍ଯ୍ୟ ତୋହର ଏ ସବୁ ଧିକ ହେଉ
ଏ ତୋହର ମାଂସ ପଛେ ଗୃଧ୍ରପକ୍ଷୀ ଖାଉ ।
ଜପାସୁର ମୁଖରେ ପଡ଼ିଲୁ ତୁ ଯେ ବେଳେ
ମୋ କଷ୍ଟ ନ ଥାନ୍ତା ମରିଥିଲେ ତୁ ସେ କାଳେ ।
ମୋତେ ଦହିବାକୁ ବହିଅଛୁ ନିଜକାୟ
ଦୁଃଖୀର ସଙ୍ଗାତ ତୁହି ଅଟୁ ଧନଞ୍ଜୟ ।
ଅନେକ ଭର୍ସନା ମୋତେ ବୋଲୁଅଛୁ ଆଜ
ରାଗେ ସିନା ହରୁକିନା ମୋ ପ୍ରାଣ ନିର୍ଲ୍ଲଜ ।
ଯୁଧିଷ୍ଠି ଶପଥ ତୋତେ କର୍ତ୍ତା ଦ୍ରୋହ କରୁ
ଜଗନ୍ନାଥ ରାଣ ଯେବେ କବାଟ ନ ଫେଡୁ ।
ଶୁଣି ହସିଲା ପାଣ୍ଡବ ବୀର ଧନଞ୍ଜୟ
ସାଧ୍ୱୀ ସୁଭଦ୍ରା ଭେଟିଲା ତସ୍କର ପରାୟ ।
ରାଣ ପକାଇ ଘେନଇ ମୋର ଜାତିବୃତ୍ତି
ନ ପୁଣ ସୁଭଦ୍ରା ବଳେ ଆସଇ ମୋ କତି ।
ବିରହିଣୀ ସ୍ତିରୀ ପୁଣି ପୁରୁଷ ହିଁ ବାଇ
ରୋଗୀ ବ୍ରାହ୍ମଣ ଆବର ଦୁର୍ଦ୍ଦଣ୍ଡ ଯେ ଗାଇ ।
ଅମୁକତ ତୀର୍ଥ ଆଗୋ ଅସତ ମଇତ୍ର
ଅମ୍ୟାର୍ଗ ପଥ ଆବର ଅକୁଳ ସଙ୍ଗାତ ।
ଅକାରଣ ସ୍ଥାନ କୃଳ ଭୟଙ୍କର ବୁଦ୍ଧି
ଅନ୍ୟ କାହା କର୍ମେ ଥିଲେ ନୁହଇ ସେ ସାଧି ।
ଅନାଚାରୀ ବ୍ରାହ୍ମଣ ଯେ ଅମୂର୍ତ୍ତି ଦଇତ
ଅସାଧନ ଗୁରୁ ପୁଣି ଅଜ୍ଞାନ ପଣ୍ଡିତ ।
ଅଭାଗ୍ୟ କର୍ମ ଆବର ଅଯୋଗ୍ୟ ଘରଣୀ
ଅହର୍ନିଶି କୋପ କରୁଥାଇ ଦୋଚାରୁଣୀ ।
ଅକୁଳ ଅଭାବ ଆଉ ହୀନସ୍ଥାନ ବାସୀ
ଏ ଲୋକ ସଙ୍ଗେ ଭାଷିଲେ ଧର୍ମ ହିଁ ନ ଆସି ।
ତୁ ଯେବେ ମୋତେ କଟାଳ କଲୁରେ ଯୁବତୀ
ଆଉ ବେଳେ ନ ଆସିବି ପୁର ଦ୍ୱାରାବତୀ ।
ଅଳପ କଥାରେ ବହୁ ଉପୁଜଇ ଲାଜ
ଅପଣ୍ଡିତ ଲୋକେ ସିନା କରନ୍ତି ଅକାର୍ଯ୍ୟ ।
ନୁହଇ ନୁହଇ ଜାଣ ଏ ମୋହର କର୍ମ
କୋଟି ସିଂହବଳ ତୋର ଭାଇ ବଳରାମ ।
ତ୍ରୈଲୋକ୍ୟ କମ୍ପଇ ଆଗୋ ଯାର ପରାକ୍ରମେ
ଦକ୍ଷେ ସୌନନ୍ଦ ମୂଷଣ ବଜ୍ରହଳ ବାମେ ।
କଦମ୍ବରସ ପାନରେ ପୃଥ୍ୱୀ ହେଳେ ଘେନେ
କୈଳାସ ଟାଡ଼ିଲା ବାଳକାଳେ ହଳମୁନେ ।

ତା ଭଗିନୀ ହରିବାକୁ କେବଣ ସାହସ
ଦେଖୁ ଦେଖୁ ଅନଳେ କି ପଡ଼ିଦେବି ଝାସ ।
ସୁରଙ୍ଗ ଦେଖିଣ ମୋତେ ସଖୀ କରୁ ଇଛା
କାଳେ ତୋହର ପୂରିଲା ନାହିଁ ମନବାଞ୍ଛା ।
ନ ଜାଣି ଏପରି କିମ୍ବା ହେଉ ଗୋସାମଣି
ମୋହର ଦୟିନୀ ଘେନି ଚଳ ଏହିକ୍ଷଣି ।
ଛାଡ଼ ଛାଡ଼ ସୁନ୍ଦରି ଗୋ ଏବେ ମୋର ଆଶ
ଏକଥା ଛାଡ଼ ତୁ ଆନ ପୁରୁଷରେ ରସ ।
ଅନେକ ଦୁଃଖ ପାଇବୁ ମୋ ଲାଗି ସୁନ୍ଦରୀ
ଶୁକପକ୍ଷୀ ପ୍ରାୟେ ଆଶା ହୋଇବ ତୁମ୍ଭରି ।
ଶିମିଳି ବୃକ୍ଷେ ସୁରଙ୍ଗ କୁସୁମ ଯେ ଦେଖି
ନିରାଶ ହୋଇଲେ ତହିଁ ଯେହ୍ନେ ଶୁକପକ୍ଷୀ ।
ବଡ଼ ସୁରଙ୍ଗ ଦିଶଇ ବୃନ୍ଦାରକ ଫଳ
ତାର ଆସେ ଶୁକପକ୍ଷୀ ହୋଇଲା ନିଷ୍ଫଳ ।
ସୁରଙ୍ଗ ରଙ୍ଗ ଦେଖିଣ ବଢ଼ାଇଲା ଆଶା
କାଳେ ନ ପୂରିଲା ତାଙ୍କୁ ବୁଡ଼ିଲା ଭରସା ।
ନ ଜାଣି ହୁଡ଼ି ପଡ଼ିଲୁ ଏବେ ମହାତ୍ମାଣି
ସୁଭଦ୍ରା ପ୍ରତି ଉତ୍ତର ଦେଲା ତାହା ଶୁଣି ।
ବଧିର ଶୁଣଇ କାହିଁ କମ୍ବୁରସ ବାଣୀ
ପଦ୍ମରସ ଛାଡ଼ି ଭେକ ଖାଏ ପଙ୍କପାଣି ।
ତୁହି ଯେବେ ନ ଶୁଣିଲୁ ଧର୍ମ ଅର୍ଥ ବୋଲ
ସୁଜାଣ ପଣକୁ ଛାଡ଼ି ହୋଇଲୁଣି କାଲ ।
ନ ରହ ତୁ ଏଥେ ବେଗେ ଯାଅ ଯା ବାହୁଡ଼ି
ସମସ୍ୟା ନ ଦେଇ ଏବେ ଶୁଅ ମୁହଁ ମାଡ଼ି ।
ବିନୟ ହୋଇ ବୋଇଲେ ସେ ବେନି କାମିନୀ
ତିନିପ୍ରହର ହୋଇଲା ଆସି ସେ ରଜନୀ ।
ସମସ୍ୟା ନ ପାଇ ତହୁଁ ହୋଇଲେ ନିରାଶ
ବାହୁଡ଼ିଲେ ସତ୍ୟଭାମା ଦେବୀ ନିଜବାସ ।
ଭୋ ଦଇବ ପୁରୁଷ ତୁ ଏସନକ ବୋଲି
ଅସାଷ୍ଟମ ସେ ସୁଭଦ୍ରା ନ ପାରଇ ଚାଲି ।
ସତ୍ୟଭାମା ବୋଇଲେ ତୁ ନ ଭାଳ ସଙ୍ଗାତ
ଅବଶ୍ୟ ତାକୁ ବୋଲିବେ କାଲି ଜଗନ୍ନାଥ ।
ନିଷ୍ଫଳ ନୋହିବ କେବେ ପର୍ଶୁରାମ ଧାଡ଼ି
ପୂରିତ ଆରତ ଲାଗି ତାକୁ ଆମ୍ଭେ ଲୋଡ଼ି ।
ସୁଭଦ୍ରା ଗଲେ ଯେ ତହୁଁ ମେଢ଼ ଭିତରକୁ
ସତ୍ୟଭାମା ଗଲେ ଜଗନ୍ନାଥଙ୍କ ଛାମୁକୁ ।
ଜଗନ୍ନାଥଙ୍କ ଛାମୁରେ କଲେ ଯାଇ ବିଜେ
କୁଶଳ ବାର୍ତ୍ତା ପୁଛନ୍ତି ପ୍ରଭୁ ଦେବରାଜେ ।
ସତ୍ୟଭାମା ବୋଇଲେକ ନୋହିଲା ତ କିଛି
ଶୁଣି ତହୁଁ ସମ୍ଭୀଭୂତ ହୋଇଲେ ଶ୍ରୀବସ୍ତି ।

ସତ୍ୟଭାମାକୁ ବୋଇଲେ ଦେବ ହୃଷିକେଶ
ଅସୁର ବୁଦ୍ଧି ଉପାୟ ଅଛି ତହିଁ ଆସ ।
ରାତ୍ର ପ୍ରଭାତରେ ତୁମ୍ଭେ ଘେନି ସୁଭଦ୍ରାକୁ
ଚଳିଯାଅ ବେଗେ ପୁତ୍ର ପ୍ରଦ୍ୟୁମ୍ନ ପୁରକୁ ।
ମାୟାବତୀଙ୍କର ଆଗେ କହିବ ଏ କଥା
ସେହି ଜାଣନ୍ତି ପୁରୁଷ ମୋହର ବାରତା ।
ମାୟାବତୀ ପୁରକୁଗୋ ଚଳ ଏହିକ୍ଷଣ
ତେବେ ସୁଭଦ୍ରାକୁ ଜାଣ ଅଛଇ କାରଣ ।
ସତ୍ୟଭାମାକୁ ଚିଆଁରି ଜଗନ୍ନାଥ ସ୍ୱାମୀ
ସୁଭଦ୍ରା ମନ୍ଦିରେ ବିଜେ ଶକ୍ରାର ଦୁଲଣୀ ।
ଯେବଣ ପ୍ରକାରେ କହିଥିଲେ ଜଗନ୍ନାଥ
ସୁଭଦ୍ରା ଆଗରେ ସର୍ବେ କହିଲେ ତୁରିତ ।
ଅନେକ ହରଷ ହେଲେ ନନ୍ଦର ଦୁଲଣୀ
ମାୟାବତୀପୁରେ ଗଲେ ସତ୍ୟା ଭଦ୍ରାଘେନି ।
ଅନେକ ଯେ ଅଳଙ୍କାର ସୁଝୀନ ବସନ
ପ୍ରବେଶିଲେ ଘେନି ମାୟାପୁରେ ବେନିଜନ ।
ପଲ୍ୟଙ୍କରେ ଥିଲେ ମାୟାବତୀ ମାହେଶ୍ୱରୀ
ଧାତିକାରେ ଆସନକୁ ତେଜି ସେ ଉତୁରି ।
କରେ ରତ୍ନଝରୀ ଏକ ଘେନିକରି ବାଳୀ
ଗୁରୁପତ୍ନୀ ଦେବୀଙ୍କର ଚରଣ ପଖାଳି ।
ପାଦାର୍ଘ୍ୟ ଦେଇ କନକ ଆସନେ ବସାଇ
ପ୍ରଣାମ କରି ଶୋଇଲେ ଦଣ୍ଡ ପ୍ରାୟ ହୋଇ ।
ଆଶିଷ ବାଞ୍ଛା ତାହାର କଲେ ସତ୍ୟାସତୀ
ଅହିଅ ସୁଲକ୍ଷଣୀ ଗୋ ହୁଅ ପୁତ୍ରବତୀ ।
ମନର ବାଞ୍ଛା ପ୍ରାପତ ହେଉ ତୋତେ ମାୟେ
ବେନିଭୁଜେ ଆଲିଙ୍ଗନ କରି ତାକୁ ସ୍ନେହେ ।
ବୋଇଲେ ସେ ସତ୍ୟଭାମା ଶୁଣସି ଗୋ ମାତ
ତୋର ପୁରକୁ ପେଶିଲେ ମୋତେ ଜଗନ୍ନାଥ ।
ମଧ୍ୟମ ପାଣ୍ଡବ ସେ ଯେ ବୀର ଫାଲଗୁନି
ପ୍ରତ୍ୟକ୍ଷେ ଜାତ ହୋଇଛି ବିଷ୍ଣୁତେଜ ଘେନି ।
ଅର୍ଜ୍ଜୁନ ଯେମନ୍ତେ ଦ୍ୱାରକାର ଉପକାରୀ
ତୁ ତାହା ପ୍ରତ୍ୟକ୍ଷେ ମାଗୋ ଜାଣୁ ତଥ୍ୟକରି ।
ଗୋସିଂହକୁ ବଧ କରି ସାତବଂଶ ରଖି
ସେହି ଅର୍ଜ୍ଜୁନ ଆମ୍ଭର ପୁରକୁ ଆସିଛି ।
ସୋମବଂଶୀ ଠାକୁର ସେ ମଧ୍ୟ ଭୁବନର
ଆଉମାନେ ପରିଚାର ଅଟନ୍ତି ତାହାର ।
ଗୋବିନ୍ଦଙ୍କ ମନ ଦେବା ସୁଭଦ୍ରା ପାର୍ଥକୁ
ସେ କଥା ନ ଯୋଗାଇଲା ରାମଙ୍କ ମନକୁ ।
ସୋମବଂଶେ ଉପୁଜିବେ ଯେବେଟି ସନ୍ତାନ
ସେହି ହେବ ଜମ୍ବୁଦ୍ୱୀପ ପୃଥ୍ୱୀର ଧାରଣ ।

ଏତେକ ବିଚାରି ମୋତେ ଦେବ ଯେ ହକାରି
ବୋଇଲେ ଏ କଥା ତୁମ୍ଭେ ପାରିବ କି କରି ।
ହୋଇବ ଯେବେ ଅର୍ଜ୍ଜୁନ ସୁଭଦ୍ରା ପୀରତି
ବଳରାମଙ୍କ କୋପକୁ କରାଇବା ଶାନ୍ତି ।
ମାଗୋ ସେ ବଚନେ ଘେନି ସୁଭଦ୍ରାକୁ ଗଲୁ
ବେନିରାତି ହେଲା ଆମ୍ଭେ ଖଟି ମନାଇଲୁ ।
କବାଟ କିଳି ଶୋଇଛି ନିଶ୍ଚିନ୍ତେ ରଜନୀ
ବଧିର ଜନ ପରାୟ ବଚନ ନ ଶୁଣି ।
ବିନୟ କରି କହିଲୁ ଆମ୍ଭେ ଯେତେ ବାଣୀ
ପାଷାଣ ଝଡ଼ି ପଡ଼ିବ ଆମ୍ଭ ବୋଲ ଶୁଣି ।
ନିରାଶ ହୋଇ ଅଇଲୁ ଯେଣୁ ବେନିରାତି
ତୋହ ପାଶକୁ ପେଶିଲେ ମୋତେ ଯଦୁପତି ।
ଯେମନ୍ତ ମନ ବଳାଏ କିନା ଧନଞ୍ଜୟ
ଗଦମନ୍ତ୍ରେ ତହିଁର ଗୋ କରିବୁ ଉପାୟ ।
ସତ୍ୟଭାମାଙ୍କ ବଚନେ ସୁଭଦ୍ରା ଯେ ଉଠି
ଧଇଲେକ ମାୟାବତୀ ଭୁଜ ଓଠ ପିଠି ।
ବସ ଗୋ ମାତା ବୋଲନ୍ତି ଧୀରେ ମାୟାବତୀ
କରାଇବା ଅର୍ଜ୍ଜୁନର ତୋହର ପୀରତି ।
ଶୁଣ ମାଗୋ ଠାକୁରାଣୀ ଏଥିର ଚରିତ
କହିବାକୁ ତମ୍ଭଙ୍କୁ ଏ ବଡ଼ଇ ଗୁପତ ।
ମାଗୋ ସ୍ତିରୀମାନଙ୍କୁ ଯେ ପୁରୁଷେ ରମନ୍ତି
ପୁରୁଷକୁ ସ୍ତିରୀମାନେ ଅଙ୍ଗଭୋଗ ଦ୍ୟନ୍ତି ।
ଦୁଇ ଅନୁବନ୍ଧରେ ହେ ଚନ୍ଦ୍ରକଳା ବାରି
ପ୍ରତିପଦଠାରୁ ପୌର୍ଣ୍ଣମାସୀ ଯାଏ ଧରି ।
ତଥିକି ତିଥି ଚନ୍ଦ୍ରର କଳା ଯେ ବାରିବା
ଶୁକଳ ପକ୍ଷେ ଚନ୍ଦ୍ରମା ମତେ ବିଚାରିବା ।
ପ୍ରଥମ ଶୁକ୍ଳପକ୍ଷର ପ୍ରତିପଦ ତିଥି
ଚନ୍ଦ୍ର ରହିଥାଇ ତଳ ପାପୁଲିର ଗଣ୍ଠି ।
ଦ୍ୱିତୀୟରେ ଥାଇ ଚନ୍ଦ୍ର ପୁଟିଆ ଯେ ଜଙ୍ଘ
ତୃତୀୟାରେ ରହେ ଯାଇଁ ଆଣ୍ଠୁ ଗଣ୍ଠି ସଙ୍ଗ ।
ଚତୁର୍ଥୀରେ ଥାଇ ଚନ୍ଦ୍ର ଜଙ୍ଘର ଉପର
ପଞ୍ଚମ ଦିନ ରହଇ ବାଡ଼ସୁଆ ଘର ।
ଷଷ୍ଠୀରେ ରହିଣ ଥାଇ ଭଗର ପାଶର
ସପ୍ତମୀରେ ରହେ ପୁଣି ତାହାରି ଭିତର ।
ଅଷ୍ଟମୀରେ ରହେ ଚନ୍ଦ୍ର ନାଭି ମଣ୍ଡଳରେ
ନବମୀ ଦିନ ରହଇ ତାହାର ଉପରେ ।
ଦଶମୀରେ ରହେ ଚନ୍ଦ୍ର ହୃଦୟ ଉପର
ଏକାଦଶୀରେ ଥାଇ ସେ ସ୍ତନର ଉପର ।
ଦ୍ୱାଦଶୀରେ ରହେ ପୁଣି ଯାଇ କଣ୍ଠତଟେ
ତ୍ରୟୋଦଶୀରେ ରହଇ ଜିହ୍ୱାର ଅଗ୍ରତେ ।

ଚତୁର୍ଦ୍ଦଶୀରେ ରହଇ କପାଳ ଉପର
ପୂର୍ଣ୍ଣମୀରେ ରହେ ତାର ତାଳୁର ଭିତର ।
ଏହିମତେ ଯେହୁ ଚନ୍ଦ୍ର ଚାଳନାକୁ ଜାଣି
ରତିକାଳେ ଚନ୍ଦ୍ରସ୍ଥାନ ପାଆନ୍ତି ଯେ ପ୍ରାଣୀ ।
ସେ ବେଳେ କାମ କଳାରେ ଉପୁଜଇ ସୁଖ
ସେ ସ୍ତିରୀ ବିବେକ ପୁଣି ପୁରୁଷ ବିବେକ ।
ଶୁକ୍ଳପକ୍ଷରେ ଅଟଇ ଏମନ୍ତ ବିଚାର
ସ୍ତିରୀ ପୁରୁଷେ ଜାଣିବେ ତାହାର ବେଭାର ।
ଏବେ ଶୁଣ କୃଷ୍ଣପକ୍ଷ ଚନ୍ଦ୍ରକଳା ରସ
ଏହା ଜାଣିବେ ସୁଜ୍ଞାନୀ ସ୍ତିରୀ ଯେ ପୁରୁଷ ।
ଏମନ୍ତେ ପୂର୍ଣ୍ଣିମା ପରେ ପ୍ରତିପଦ ଦିନ
ଚନ୍ଦ୍ର ରହେ ସ୍ତିରୀଙ୍କର ଶରୀରେ ଯେ ସ୍ଥାନ ।
ଦ୍ୱିତୀୟା ଦିନ ଯେ ଚନ୍ଦ୍ର କପାଳରେ ଥାଇ
ତୃତୀୟା ତିଥିରେ କର୍ଣ୍ଣ ମୂଳରେ ରହଇ ।
ଚତୁର୍ଥୀଦିନ ରହଇ ଆଖି ଯେ କୋଣର
ପଞ୍ଚମୀରେ ରହିଥାଇ ନାସିକା ଉପର ।
ଷଷ୍ଠୀଦିନ ରହେ ଯାଇ ପୁଣି ଜିହ୍ୱାତଳେ
ସପ୍ତମୀରେ ରହେ ସେହି ଯାଇ କଣ୍ଠମୂଳେ ।
ଅଷ୍ଟମୀରେ ରହଇ ସେ ସ୍ତନର ଉପରେ
ନବମୀରେ ରହେ ପୁଣି ନାଭିର ଭିତରେ ।
ଦଶମୀରେ ଚନ୍ଦ୍ର ତଳିପେଟରେ ରହଇ
ଏକାଦଶୀରେ ସେ ଜାନୁ ସନ୍ଧିରେ ସମ୍ଭାଇ ।
ଦ୍ୱାଦଶୀରେ ରହେ ସେହୁ ଭଗର ପ୍ରମାଣ
ତ୍ରୟୋଦଶୀରେ ରହଇ ଜଙ୍ଘର ତଳେଣ ।
ଚତୁର୍ଦ୍ଦଶୀରେ ଥାଇ ସେ ଆଣ୍ଠୁର ଉପରେ
ଅମାବାସ୍ୟାରେ ରହଇ ପାଦ ତଳିପାରେ ।
ଏମନ୍ତ ପ୍ରକାରେ ପୁଣି ଚନ୍ଦ୍ରକଳା ସାରି
ବିବେକ ସ୍ତିରୀ ପୁରୁଷ ଜାଣନ୍ତି ବିଚାରି ।
ଦୁହେଁ ଉନମତ୍ତ ହୋଇ କରନ୍ତେଣ ରତି
ସୁଖ ଉପୁଜେ ଆବର ହୁଏ ମହାପ୍ରୀତି ।
ଏମନ୍ତ ଚନ୍ଦ୍ର ଚାଳକ କହେ ମାୟାବତୀ
ପୁଣି କହନ୍ତି ଶୁଣିମା ହେଉ ଶୁକ୍ରାବତୀ ।
ସୁଭଦ୍ରା ହୋଇଅଛନ୍ତି କାମେ ଅସାଷ୍ଟମ
ଚନ୍ଦ୍ରଦେବ ଧରିଛନ୍ତି ତାହାର ମରମ ।
ତେଣୁକରି ସେହୁ ହୋଇଛନ୍ତି କାମେ ବାଇ
ଅରଜୁନ ପୁଣି ସିଦ୍ଧଅଙ୍ଗ ଯେ ଅଟଇ ।
ଯେତେବେଳେ ଅଗ୍ନିଦେବ ପାର୍ଥପାଶେ ଗଲେ
ଖାଣ୍ଡବ ବନକୁ ଦାନ ଘେନି ସେ ମାଗିଲେ ।
ଅର୍ଜ୍ଜୁନ ବୋଇଲେ ମୋର କରେ ଅସ୍ତ୍ର ନାହିଁ
ଅଗ୍ନିଶର ଦେବଶର ମାଗିଦେଲେ ନେଇ ।
କାମଦେବ ଦେଇଛନ୍ତି କାମେଶ୍ୱର ବାଣ
ତାହା ହେଲେ ବୈଶ୍ୱାନର ପାର୍ଥର କରେଣ ।
ତେଣୁକରି ଅଙ୍ଗେ ତାର ନ ପୀଡ଼େ ମଦନ
ଯତିଅଙ୍ଗ ଗୋଟି ବହିଅଛି ଅରଜୁନ ।
ଏଥକୁ ଏକ ଉପାୟ ଅଛଇ ମୋହର
ଚାରି ବେଦରୁ ଯେ ମନ୍ତ୍ର ହୋଇଛି ବାହାର ।
ଯାହାର ନାମଟି ଧରି ଏ ମନ୍ତ୍ର ପଢ଼ିବ
କାମଦେବ ଜାଣି ତାର ଅଙ୍ଗରେ ପୀଡ଼ିବ ।
ଏତେ ବୋଲି ତହୁଁ କାମଦେବର ଯୁବତୀ
ମନ୍ତ୍ରଗୋଟି ସୁଭଦ୍ରାକୁ କହିଲେ ଝଟତି ।
କବାଟ କିଳିଣ ଶୋଇଥିବେ ଧନଞ୍ଜୟେ
ତହିଁକି ଅଛି ମୋହର ମନ୍ତ୍ର ଯେ ଗୋଟିଏ ।
ଉଲୁକ ବିଦ୍ୟା ତୁ ପଢ଼ିଯିବୁ ଆଜରାତ୍ରି
ଏ ମନ୍ତ୍ର ପଢ଼ି ଛୁଇଁଲେ ଦ୍ୱାର ଯିବ ଫିଟି ।
ଫିଟାଇ କହିଲେ ସୁଭଦ୍ରାକୁ ମନ୍ତ୍ରଗୋଟି
ଏହା ପଢ଼ି ହାତ ଦେଲେ ଦ୍ୱାର ଯିବ ଫିଟି ।
ଉଲୁକ ବିଦ୍ୟା ସାଧନ ଶିଖାଇବି ତୋତେ
ଏହାକୁ ପଢ଼ି ଅର୍ଜ୍ଜୁନ ପାଶେ ଯିବୁ ରାତ୍ରେ ।
ତୁ ସବୁ ଦେଖିବୁ ତୋତେ ନ ଦେଖିବେ କେହି
ଏସନ ବିଦ୍ୟା ସାଧନ୍ତେ ଯିବ ମୋହ ହୋଇ ।
ଆରେକ ପଦାର୍ଥ ଅଛି ପାଦୁକା ଔଷଧି
ସହସ୍ର ଯୋଜନେ ଥିଲେ ଭେଟିବୁ ତା ସାଧି ।
ଅଞ୍ଜନ ବିଦ୍ୟା ମୁଁ ତୋତେ କହୁଛି ଗୋମାଏ
ରାତ୍ରେ ଚାହିଁଲେ ଦିଶିବ ଦିବସ ପରାୟେ ।
ପାତାଳ ଭୁବନେ ଯଦି ହୋଇବାକ ଗୋପ୍ୟ
ଅଞ୍ଜନ ଘେନି ଚାହିଁଲେ ଦିଶିବ ସ୍ୱରୂପ ।
ପୁରୁଷେ ବଶ ହୁଅନ୍ତି ଏମନ୍ତ ଗୋ ମାତ
ଏହୁ ମହୌଷଧି ତୋତେ ହେଉ ପରାପତ ।
ଶରୀରେ ହେଲେ ଔଷଧ ନାମମନ୍ତ୍ର ପଢ଼ି
ଛାଡ଼ିବ ନିଜ ସଦନ କାମେ ଯିବ ଜଡ଼ି ।
ଯଦ୍ୟପି ହୋଇବ ସେହୁ ମାନ ଗଉରବୀ
ଛାଡ଼ିବ ତା ଦମ୍ଭପଣ ହେବ ପରାଭବୀ ।
ଏ ବିଦ୍ୟାରେ ତୋତେ ବଶ ହେବ ଫାଲଗୁନି
ତୋହର ତହୁଁ ଆନେ ନ ଚାହିଁବ ଭବାନୀ ।
ଶୁଣସି ଗୋ ସାବଧାନେ ରତିଶାସ୍ତ୍ର ବିଦ୍ୟା
କାମ ଶାସ୍ତ୍ରରେ ଯେମନ୍ତେ ହୋଇବ ସଂସିଦ୍ଧା ।
ଚନ୍ଦ୍ର ପବନ ଘୋଟିବ ଆଗେ ଯେତେବେଳେ
କାମ ଘଟନ ଶାସ୍ତ୍ର ଯେ ଘଟିବ ତତ୍କାଳେ ।
ଏମନ୍ତ ସାଧକ ବିଦ୍ୟା କଲେ ମାୟାବତୀ
ପୁରୁଷ ମାତ୍ର ହୋଇବ କେ ଧରିବ ତା ଧୃତି ।

ସ୍ତମ୍ଭନ ମୋହନ ବିଦ୍ୟା ବଶ ଉଚ୍ଚାଟନ
ଏ ଚାରିଙ୍କୁ ମହାଦେବୀ କରିବ ସାଧନ ।
ସକଳ ବିଦ୍ୟାରେ ଜାଣ ଜିଣଇ ସେ ନାରୀ
ତାହାର ସ୍ୱାମୀ ହୁଅଇ ତାର ପରିଚାରୀ ।
କହିଲା ସେ ମହାମ୍ରାଣୀ ସର୍ବକାର୍ଯ୍ୟ ସିଦ୍ଧି
ଅନାଦି ଅପର୍ଣ୍ଣା ତାଙ୍କୁ କହିଲେ ପ୍ରବୋଧି ।
ସଂସାର ସୁନ୍ଦରୀ ସେହି ମୋହେ କାମଦେବ
ଆନ ପୁରୁଷ କେ ତାହା ତହୁଁ ଉବୁରିବ ।
ଆପେ ସାଧଇ ସେ ସ୍ତିରୀମାନଙ୍କ ମୋହିନୀ
ଦେଖିଲେ ବଶ ହୁଅଇ ସ୍ତିରୀ ମହାମ୍ରାଣୀ ।
ସମସ୍ତ କଥା କହିଲେ ଦେବୀ ସୁଭଦ୍ରାଙ୍କୁ
ଆରେକ କଥା କହଇ ଏବେ ମୁଁ ତୁମ୍ଭଙ୍କୁ ।
ତୁମ୍ଭର ଯେ ଅର୍ଜ୍ଜୁନର ହେବ ବଡ଼ଭାବ
କହୁଅଛି ତେବେ ତାହା ବଡ଼ଇ ଦୁର୍ଲ୍ଲଭ ।
ଦୁର୍ବାର ଆବର ମତିଭୋଳେ ବଳରାମ
ଯାଦବ ବଳ ଘେନିଣ କରିବେ ସଂଗ୍ରାମ ।
ଯେବଣ କାଳେ ଦହନ ହେଲେ କାମଦେବ
ସର୍ବବିଦ୍ୟା କହିଥିଲେ ଜାଣି ପରାଭବ ।
ସେହି ବେଦ ଶାସ୍ତ୍ରମାନ ଦେଲେ ମୋର ହାତେ
ସକଳ ଶାସ୍ତ୍ର ଥୋଇଛି ଗର୍ଭେ ମୁଁ ଗୁପତେ ।
ଅନାଦି ଯେ ଶାସ୍ତ୍ରମାନ ଶରୀରୁ ଉଦ୍‌ଗାରି
ସୁଭଦ୍ରାକୁ ସୁପ୍ରସନ୍ନେ ଦେଲେ ମାହେଶ୍ୱରୀ ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଅଗ୍ନି ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ
ରାମଆଦି ହାରିବେ ସେ ରଣେ ପାଇ ଲାଜ ।
ତୁଗୋ ମାହେଶ୍ୱରୀ ଯାଇ ପାର୍ଥ ତୁଲେ ଭେଟି
ପାଇବୁ ସେ ନାରାୟଣ ପାଣ୍ଡବ କିରୀଟି ।
କାମଦେବର ବିମାନ ଅଛି ମୋର ତହିଁ
ଯାଅ ମାଗୋ ତୁମ୍ଭେ ଏହି ବିମାନ ଆରୋହି ।
ସଂଗ୍ରାମ କାଳେ ବସିବ ଏଥେ ଧନଞ୍ଜୟ
ତ୍ରୈଲୋକ୍ୟ ସଂଗ୍ରାମେ ସେହି ହୋଇବ ନିର୍ଭୟ ।
ଏବେ ଗୋ ମାତ ଏଥିରେ ବିଜେ କରିଯିବ
ସର୍ବଦା ହିଁ ଅନୁଗ୍ରହ ମୋତେ କରିଥିବ ।
ମାୟାବତୀ ମାୟାମନ୍ତ୍ର ପାଇ ତୋଷମନେ
ସୁଭଦ୍ରା ଯେ ସତ୍ୟଭାମା ବିଜେ ନିଜେସ୍ଥାନେ
ଯାତ୍ରାଭଙ୍ଗ ବିନୋଦରେ ଦେବ ଦଇତାରି ।
ସମଦଣ୍ଡରେ ବିଜୟ ରଇବତ ଗିରି ।
ଶ୍ରୀହରି ଚରଣେ ଯାଇ ଅର୍ଜ୍ଜୁନ ପ୍ରଣମି
ହସ୍ତିନା ପୁରକୁ ଯିବି ଆଜ୍ଞା ଦେବା ସ୍ୱାମୀ ।
ଗୋବିନ୍ଦ ବୋଇଲେ ଯାତ୍ରା ଉତ୍ସବର କାଳେ
ଯତ୍ନେ ବନ୍ଧୁ ବର୍ଗ ଲୋଡ଼ି ଆଣିଲି ସକଳେ ।
ତୁ ମୋହର ସହୋଦର ଅଟୁ ପ୍ରାଣସଖା
ମୋତେ ଛାଡ଼ିଣ କେମନ୍ତେ ଯିବୁ ତୁହି ଏକା ।
କେବଣ କଥାକୁ ତୁହି କରୁଅଛୁ ଭ୍ରାନ୍ତି
ତୋଠାରେ ମୋ ଦୟା ଯେଣୁ କାହାକୁ ଯେ ଭୀତି ।
ନାରାୟଣଙ୍କ ବଚନେ ଅର୍ଜ୍ଜୁନ ଲଜ୍ଜିତ
ବେନିଭୁଜରେ ଶ୍ରୀହରି କଲେ କୋଳାଗ୍ରତ ।
ଆଜ୍ଞା ପ୍ରମାଣେ ରହିଲା ବୀରବର ପାର୍ଥ
ଦ୍ୱାରକା ଭୁବନେ ବିଜେ କଲେ ଜଗନ୍ନାଥ ।
ସ୍ନାନ ଭୋଜନାଦି ଶେଷକରି ଦେବହରି
ଶୟନ ମନ୍ଦିରେ ବିଜେ କଲେ ଦଇତାରୀ ।
ସମସ୍ତ ଯାଦବ ଗଲେ ଯେ ଯାହା ଭୁବନେ
ରାତ୍ରେ ଶୟନ କରନ୍ତେ ଯେ ଯାହାର ସ୍ଥାନେ ।
ଶୟନ ଭୁବନେ ଯାଇ ବିଜେ ସବ୍ୟସାଚୀ
ନିଶ୍ଚିନ୍ତେ ଶୋଇଲେ ଖଟେ ଦ୍ୱିତୀୟ ଶ୍ରୀପତି ।
ସତ୍ୟଭାମାକୁ ବୋଇଲେ ଦେବ ଭଗବାନ
ସୁଭଦ୍ରାକୁ ନେଇଯାଅ ଅର୍ଜ୍ଜୁନ ଭୁବନ ।
ଯେବଣ ଭବନେ ଶୋଇଅଛି ବୀରପାର୍ଥ
ଚାରିଗୋଟି ଆୟତନ ସୁବର୍ଣ୍ଣର କାନ୍ଥ ।
ସ୍ଫଟିକ ପିଢ଼ା ଚନ୍ଦନ କାଠ ରୁଅ ଶ୍ରେଣୀ
ତହିଁ ଉପରେ ହୋଇଛି ରତ୍ନର ଖଞ୍ଜାଣି ।
ଉପରେ ଯେ ଚନ୍ଦ୍ରାତପ ମୁକ୍ତା ମାଳି ମାଳି
ସହସ୍ରେକ ମାଣିକ୍ୟର ରତ୍ନ ଦୀପାବଳୀ ।
ଶ୍ରୀକରେ ଯେ ଧନୁ ଏକ ଧରି ସବ୍ୟସାଚୀ
ପଲ୍ୟଙ୍କୁ ଉପରେ ବସି ନାରାଚ ଆମଞ୍ଚି ।
ସାତପୁର ଭିତରେ ସେ ଶୋଇଅଛି ପୁଣି
ସାତ କବାଟ ସେ ସବୁ ଯନ୍ତ୍ରର କିଳଣି ।
ନିଶ୍ଚିନ୍ତ ମନ୍ଦିରେ ବସିଅଛି ସବ୍ୟସାଚୀ
କ୍ଷିତ୍ରିୟଗୁଣେ ନାରାଚ ଧନୁକୁ ଆମଞ୍ଚି ।
ଆଜ୍ଞା ପରକାରେ ତହୁଁ ଶ୍ରୀକୃଷ୍ଣଙ୍କ ବାମା
ସୁଭଦ୍ରାକୁ ଘେନି ଚଳିଗଲେ ସତ୍ୟଭାମା ।
ଅର୍ଜ୍ଜୁନ ଶୟନପୁରେ ପ୍ରବେଶିଲେ ଯାଇ
ଅର୍ଜ୍ଜୁନ ଅର୍ଜ୍ଜୁନ ବୋଲି ସତ୍ୟା ଡାକ ଦେଇ ।
କବାଟ ଫେଡ଼ି ସମ୍ବାଦ ଶୁଣ ଫାଲଗୁନି
ଠାକୁରଙ୍କ ଆଜ୍ଞା ମୁହିଁ ଆସିଅଛି ଘେନି ।
ଡାକି ବିମୁଖ ହୋଇଲେ ସୁରଭି କାମିନୀ
ସମସ୍ୟା ନ ନେଇ ବୀର ହୋଇଅଛି ତୁନି ।
ଡାକ ଯହୁଁ ନ ଶୁଣିଲା ବୀରବର ପାର୍ଥ
ସତ୍ୟଭାମା କହିଲେ ଯେ ସୁଭଦ୍ରା ଅଗ୍ରତ ।
ମାୟାବତୀଙ୍କର ମନ୍ତ୍ର ପଢ଼ ତୁମ୍ଭେ ଆଗେ
କେମନ୍ତେ ଫଳ ହେଉଛି ଦେଖିବାନା ବେଗେ ।

ଏମନ୍ତ ଶୁଣି ସୁଭଦ୍ରା ଭାବେ ଜଗନ୍ନାଥ
ରକ୍ଷାକର ମୁଁ ତୁମ୍ଭର ଶରଣ ଆଗତ ।
ମାୟାବତୀ ମନ୍ତ୍ର ପଢୁ ନନ୍ଦର ଦୁଲଣୀ
ଫିଟିଲା ସାତ କବାଟ ଯନ୍ତ୍ରର କିଳିଣୀ ।
ଯେଉଁପରି କହିଥିଲେ ପୁଷ୍ପକ କୁମାରୀ
ପ୍ରତ୍ୟକ୍ଷେ ଫଳିଲା ତାହା ଦେଖିଲେ ସୁନ୍ଦରୀ ।
ଛୁଅନ୍ତେ ସାତ କବାଟ ଗଲା ବେଗେ ଫିଟି
କବାଟ କାଢ଼ି ସୁଭଦ୍ରା ଅର୍ଜୁନକୁ ଭେଟି ।
ଧନୁଶର ରଖି ପାର୍ଥ ହୋଇ କୋପାନଳ
ବାମକରେ ଧଇଲା ସେ ସୁଭଦ୍ରାର ବାଳ ।
ପାର୍ଥ ବିଜେ କଟାରକୁ ଘେନି ଦକ୍ଷପାଣି
ବୋଇଲା ନାସା ଶ୍ରବଣ ପକାଇବି ହାଣି ।
ରାକ୍ଷସୀ କି ପିଶାଚୀ ତୁ ଡାକିନୀ ଶାକିନୀ
ରାତ୍ରେ ମୋ ଶୟନ ସ୍ଥାନେ ଆସିଲୁ ନ ମାନି ।
ସୁମର ଲୋଡ଼ାକିନୀ ତୋ ଦେବତା କେ ଇଷ୍ଟ
ସ୍ତିରୀଲିଙ୍ଗ ନୋହିଥିଲେ ହନ୍ତା ମୁଣ୍ଡ କାଟ ।
ସୁଭଦ୍ରା ଯେ ସୁମରଇ ନନ୍ଦ ମୋ ପିଅର
ପୁଣି ସୁମରଇ ମାତା ଯଶୋଦା ଯେ ମୋର ।
ଅର୍ଜୁନ ବୋଇଲା ଦୁଷ୍ଟ ମାପରି ଲୋ ମନ୍ଦ
ତୁ କିମ୍ପାଇ ସୁମ୍‌ରିଲୁ ଯଶୋଦା ଯେ ନନ୍ଦ ।
ସୁଭଦ୍ରା ବୋଇଲା ନନ୍ଦ ଯଶୋଦା ଏ ଦୁଇ
ପିତାମାତା ହେତୁ କଲି ସୁମରଣା ମୁହିଁ ।
ଅର୍ଜୁନ ବୋଇଲେ ତାଙ୍କ ଜୀବନହି ଧିକ
ଗୋପାଳ ଜାତି ଅଟନ୍ତି ଅତି ଅବିବେକ ।
ସୁଭଦ୍ରା ଯେ ସୁମରଇ ଶ୍ରୀପୁରୁଷୋତ୍ତମ
ଆବର ଯେ ସୁମରଇ ପ୍ରଭୁ ବଳରାମ ।
ଅର୍ଜୁନ ବୋଲେ ସୁମରୁ କିମ୍ପା ଯଦୁସାଇଁ
ସୁଭଦ୍ରା ବୋଇଲେ ମୋର ସହୋଦର ଭାଇ ।
ଅର୍ଜୁନ ବୋଲେ ଏ ବଂଶେ ସ୍ତିରୀ ଉପୁଜିଲେ
କୁଳେ କଳଙ୍କ ଲାଗଇ ମନ୍ଦବାଟେ ଗଲେ ।
ପାର୍ଥ ବୋଲେ ରାମକୃଷ୍ଣ ଜୀବ ଧିକ ହେଉ
ତୁହି ଏଡ଼େ ବଡ଼ ବଂଶେ କଳଙ୍କ ଲଗାଉ ।
ଆମ୍ଭେ ପାଞ୍ଚଭ୍ରାତା ହେଲୁ ସୋମବଂଶେ ଜାତ
ଅପବାଦ କିଞ୍ଚିତ ଯେ ନ ସହୁ ଜଗତ ।
ଧର୍ମକୁ ନ ଲଙ୍ଘୁ ଆମ୍ଭେ ସତ୍ୟକୁ ଯେ ଲଙ୍ଘୁ
ପାଷାଣର ରେଖା ଆମ୍ଭ ବାକ୍ୟ ଏଥିଯୋଗୁ ।
ଦ୍ରୌପଦୀ ଯୁଧିଷ୍ଠିରଙ୍କ ଶୃଙ୍ଗାର ଦେଖିଲି
ସୁଖଭୋଗ ତେଜି ମୁହିଁ ବନବାସ କଲି ।
ପ୍ରଥମେ ଗଙ୍ଗାତୀର୍ଥରେ କଲଇ ମୁଁ ସ୍ନାନ
ତଥାପି ନ ଛାଡ଼ିଲା ସେ ଭ୍ରାନ୍ତି ମୋର ମନ ।
ଗଙ୍ଗାରେ ମକର ଶାବୀ ହୋଇ ପିଣ୍ଡ ଦେଲି
ଗଙ୍ଗାଧରକୁ ତୋଷିଣ ବଂଶ ଉଦ୍ଧାରିଲି ।
ବିଶ୍ୱନାଥ ସେବି ମଣିକର୍ଣ୍ଣିକାର ଘାଟେ
ପରଦାର ନ କରିବି କଳ୍ପିଲା ନିକଟେ ।
ନ କରିବି ପରନିନ୍ଦା ପୁଣି ପରହିଂସା
ପରଦାର ପରଧନେ ନ ବଳେ ମୋ ଆଶା ।
ବିଶ୍ୱନାଥ ତୋଷ ମୁହିଁ ମାଗିଲି ଏମନ୍ତ
ସୁପୁତ୍ର ମଧ୍ୟେ ଜଗତେ ଲେଖିବେ ଯେମନ୍ତ ।
ଦ୍ୱାଦଶ ବରଷ କଲି ସଙ୍ଗମେ ମୁଁ ସ୍ନାନ
ପ୍ରୟାଗରେ କଲି ଯାଇ ମାଧବ ଦର୍ଶନ ।
ତହିଁ ପୁରି ସତ୍ୟ କଲି ହୋଇବି ଅକ୍ରୋଧ
ପରଦାର ଦୋଷେ ମୁହିଁ ନୋହିବି ଯେ ନିନ୍ଦ୍ୟ ।
ନର୍ମଦା ଆବର କାଶୀତୀରେ ଭାଗିରଥୀ
ବୈତରଣୀ କୃଷ୍ଣାବେଣୀ ନଦୀ ସରସ୍ୱତୀ ।
ତୀର୍ଥମାନ ବୁଲି ମୁହିଁ କଲି ଏହି ବାଞ୍ଛା
ପରଦାର ଶୃଙ୍ଗାରେ ନ ବଳେ ଯେହ୍ନେ ଇଚ୍ଛା ।
ପରଦାରର ହରଣୁ ନାହିଁ ଆନ ପାପ
କୌଶିକୀରେ ସ୍ନାନ କଲି ନର୍ମଦାରେ ତପ ।
ପାତାଳ ଗଙ୍ଗା କାବେରୀ ଆବର ତ୍ରିବେଣୀ
ସଂକଳ୍ପ କରି ଛାଡ଼ିଲି ପରଦାର ପୁଣି ।
ସିଂହବେଣୀ ଗୋଦାବରୀ ତୀର୍ଥ ମଣିଭଦ୍ରା
ମାଇଲି ପଞ୍ଚଇନ୍ଦ୍ରିୟ କଲି ଯୋଗମୁଦ୍ରା ।
ସୁଭଦ୍ରା ବୋଇଲେ ମୁହିଁ ନୁହେଁ ପରଦାର
ତୋତେ ପ୍ରଦାନ କରିବେ ମୋତେ ଚକ୍ରଧର ।
ମାୟାବତୀ ମନ୍ତ୍ର ପଢ଼ଇ ଚାହିଁଲା ଅପାଙ୍ଗେ
ଭେଦିଲା ମଦନ ଶର ଅର୍ଜୁନର ଅଙ୍ଗେ ।
ମାୟାବତୀର ଯେବଣ ଧୂଳିମନ୍ତ୍ର ବୋଲି
ବାମପାଦ ରଜ ନେଇ ପାର୍ଥ ଅଙ୍ଗେ ବୋଳି ।
ସାଧନା ବିଦ୍ୟାରେ ବଶ ହେଲେ ଧନଞ୍ଜୟ
ମଦନ ଆରତେ କମ୍ପେ ତାହାଙ୍କର କାୟ ।
ଅର୍ଜୁନ ଯେ ଧରିଥିଲା ସୁଭଦ୍ରାର ବାଳ
ବାଳ ଛାଡ଼ି ସୁଭଦ୍ରାକୁ ବୀର କଲା କୋଳ ।
ଦେଖ ଆହେ ମହାରାଜା ସାଧନାର ଗୁଣ
ପରମ ଯୋଗୀ ପାର୍ଥଙ୍କ ଭାଙ୍ଗିଦେଲା ଟାଣ ।
ସୁଭଦ୍ରାକୁ କୋଳେ ନେଇ ବସାଇଲା ପାର୍ଥ
ବହୁତ ବିନୟ ହୋଇ ବୋଲେ ପରମାର୍ଥ ।
ଯଦୁବଂଶେ ଉପୁଜି ତୁ ହେଲୁ ହୀନିମାନ
ସ୍ତିରୀକୁଳେ ଜାତ ହୋଇ ଏଡ଼େକ ଅଜ୍ଞାନ ।
ପ୍ରାଣୀଙ୍କ ସୁଖ ଶୃଙ୍ଗାର ରସ ବିହିକଲା
ଲୋଭ ଆଚରି ଅଳପେ ପ୍ରାଣୀ ସିନା ମଲା ।

ନ ରହଇ ପାଣି କେଭେ ଭାଙ୍ଗିଗଲେ ବନ୍ଧ
ଅଳପକେ ଦୋଷ ହୋଇ ତୁଟଇ ତା କନ୍ଧ ।
ଖଣ୍ଡିଲା ପ୍ରାଣୀର ଶତବରଷ ଆୟୁଷ
ପକାଇଲା ଏତିକି ନ ଜାଣି ମହାରସ ।
ଯେତେ କଷ୍ଟ ହେଲା ପୁଣି ଏହି କାୟାଗୋଟି
ଅଚେତନ ଅଜ୍ଞାନରେ ପଡ଼ି ମହୀ ଲୋଟି ।
ତିରିଶ ବରଷେ ପୁଣି ହୋଇଲେ ପୁରୁଷେ
ସ୍ତିରୀଏ ହୋଇବେ ଜାଣ ବର୍ଷ ଅଷ୍ଟାଦଶେ ।
ଏସନ ସମୟେ ଜାଣ ଆଗୋ ବିନ୍ଦଓଷ୍ଠି
ସ୍ତିରୀ ପୁରୁଷ ସଂଯୋଗ ଅନୁକୂଳ ଗୋଟି ।
ପ୍ରଥମ ଶୃଙ୍ଗାର ପାଇ ବଢ଼ିବ ଯୁବତୀ
ତିରିଶ ଦିବସ ଯାଏ ଯିବ ଦିନରାତି ।
ତିରିଶ ଦିନେ ହୋଇବ ପୁଣି ପୁଷ୍ପବତୀ
ଅଶୁଦ୍ଧକାୟା ହୋଇବ ନ ଛୁଇଁବ ପତି ।
ଶୁଦ୍ଧକାୟ ହେବ ପୁଣି ପାଞ୍ଚଦିନ ରାତି
ଶୁଦ୍ଧସ୍ନାନ କରି ଜଳେ ସେଦିନ ଯୁବତୀ ।
ସପତମ ଦିନେ ଶୁଦ୍ଧ ହୋଇବ ତା ଅଙ୍ଗ
ସ୍ତିରୀ ପୁରୁଷ ହୋଇବେ ଏକତ୍ରରେ ସଙ୍ଗ ।
ଧାତା ହିଁ ସର୍ଜନା କଲା ରାତ୍ରରେ ରମଣ
ଦିବସ ବେଳେ ଶୃଙ୍ଗାର କଲେଟି ମରଣ ।
ଏ ମାର୍ଗେ ଥିଲେ ଅତୁଟ ହୁଅଇ ସେ କାୟ
ନିରାକୁଳ ହୋଇଥିବ ଶରୀର ନିର୍ଭୟ ।
ସାଧିବ ଉଜାଣ ଛନ୍ଦି ପାଞ୍ଚଗୋଟି ଇନ୍ଦ୍ରି
ସଞ୍ଚଳା ସ୍ତିରୀ ସାଧିବ ଧ୍ୟାନମାର୍ଗ ଛନ୍ଦି ।
ଜାଣ ସେ ପୁରୁଷ ଗୋଟି ଅଟଇ ନିଶ୍ଚଳ
ଯେସନକ ସିନ୍ଧୁଜଳ ନ ଲଙ୍ଘଇ କୂଳ ।
ସ୍ୱପୁରୁଷେ ପ୍ରୀତି ଆଗୋ ସ୍ୱଦାରରେ ରତି
ଏତେ ବାଗେ ଥିଲେ ଆୟୁ ବର୍ଦ୍ଧିତ ହୁଅନ୍ତି ।
ମୋତେ ପ୍ରଦାନ କରିବେ କୃଷ୍ଣ ଯେବେ ତୋତେ
ଏଥିରୁ ସୁଲଭ ଆଉ ଅଛି କି ଜଗତେ ।
କୋଉ ସୁଲଭ ହୋଇବ ତୋର ଅକାରଣ
ଘୃତ ଭୋଜନ ନିମନ୍ତେ ରୁଷେ କି ବ୍ରାହ୍ମଣ ।
ନିଧି ପ୍ରସନ୍ନେ ଦାରିଦ୍ର୍ୟ ଯାଏ ଯେହ୍ନେ ଘୁଞ୍ଚି
ଏମନ୍ତ ପରମ ଅର୍ଥ କହି ସବ୍ୟସାଚୀ ।
ବୋଇଲେ ରକତ ମାଂସ ଶରୀର ଯୁକତେ
କାମ ସାଗରୁ ତରିବି କହ ମୁଁ କେମନ୍ତେ ।
ଯଦ୍ୟପି ପଞ୍ଚଇନ୍ଦ୍ରିୟ ମାରିଥାଇ ଯତି
ସ୍ତିରୀମୁଖ ଦେଖି କାମେ ଭୋଳ ହୁଏ ମତି ।
ମାୟାବତୀର ଅଞ୍ଜନ ଘେନିଣ ଅପାଙ୍ଗେ
ତାହାନ୍ତେ ମଦନ ଶରଭେଦେ ପାର୍ଥ ଅଙ୍ଗେ ।
ଛାଡ଼ିଣ ସେ ନିଷ୍ଠାପର ଭାଙ୍ଗିଲା ତା ଦମ୍ଭ
ସୁଭଦ୍ରାକୁ କୋଳେ ଧରି ବହେ ପ୍ରୀତିଭାବ ।
ମାନବୀ ଅବସ୍ଥା ପାଇ ହେଲା ମାନବତୀ
ସଲଜ୍ଜେ ସୁଭଦ୍ରା ତଳେ ବସେ ମଥାପୋତି ।
ସୁରତିର ନିଷ୍ଠାପର ରମଣୀର ଟାଣ
ଛିଦ୍ରପାଇ ପାର୍ଥ ଅଙ୍ଗେ ଭେଦେ ପଞ୍ଚବାଣ ।
ସୁଭଦ୍ରା ରୁଷନ୍ତେ ପାର୍ଥ ବୋଲଇ ସରାଗେ
କାମଦେବ ନାଶକର ବାମଦେବ ଯୋଗେ ।
ଶୁଭଦ୍ରା ବୋଇଲେ ମୋତେ ଛାଡ଼ ଛାଡ଼ ପାର୍ଥ
ଅପ୍ରତିଷ୍ଠା ସ୍ତିରୀକୁ ତୁ ଛୁଇଁବୁ କେମନ୍ତ ।
ତୁ ମହାପଣ୍ଡିତ ପୁଣି ଧାର୍ମିକ ସୁଶୀଳ
ସତ ସତ କ୍ରିୟାରେ ତୁ ବଞ୍ଚୁ ଦିନକାଳ ।
ଆମ୍ଭେ ଗଉଡୁଣୀ ତୁହି ଅଟୁ ଭଲ ଜାତି
ନିର୍ଲ୍ଲଜୀ ଦୋଚାରୀ ପୁଣି ଅଟୁ ତ ଅସତୀ ।
କେମନ୍ତେଣ ଛୁଇଁ ମୋତେ ଛାଡ଼ ଛାଡ଼ ବୀର
ନ ହରିବ ପରା ପର ଧନ ପରଦାର ।
ନିୟମ କରିଛ ତୁମ୍ଭେ ତୀର୍ଥ ତୀର୍ଥ ବୁଲି
ଜଗନ୍ନାଥଙ୍କ ବାରତା କହିବି ମୁଁ ବୁଲି ।
ଅଇଲି ତୁମ୍ଭ ପାଖକୁ ତୁମ୍ଭେ ବଳେ ଧର
ମୁହିଁ ତ ଅବଳା ତୁମ୍ଭେ ବଳବନ୍ତ ବୀର ।
ରାମଙ୍କୁ ଭୟ ତୁମ୍ଭର ଥାଏ ପରା ଚିତ୍ତେ
ତାର ଭଗିନୀଙ୍କୁ ବଳେ ଧରିଛ କେମନ୍ତେ ।
ଜାଣିଲି ପାଣ୍ଡବ ତୁମ୍ଭେ ଅଟ ଜାରଜାତ
ତେଣୁ ବଳେ ଧରି ମୋତେ କରୁଛ ଏମନ୍ତ ।
ଛାଡ଼ ଛାଡ଼ ଗୁରୁପତ୍ନୀ ମୁଁ ଅଟେ ତୁମ୍ଭର
ଦୁର୍ଯ୍ୟୋଧନ ଅଟେ ତୁମ୍ଭ ଜ୍ୟେଷ୍ଠ ସହୋଦର ।
ଏପରା ଅନୀତି ତୁମ୍ଭେ କରୁଛ କେମନ୍ତେ
ତୁମ୍ଭେ ପରା ନ୍ୟାୟମାର୍ଗେ ଥାଅ ଅବିରତେ ।
ଏମନ୍ତ ଭର୍ତ୍ସନା କଟୁ ବଚନ ସେ ବୋଲି
ଛାଡ଼ ଛାଡ଼ ବୋଲି ରାଗେ ପକାଇଲା ପେଲି ।
ମାୟାବତୀର ଯେବଣ ସିଦ୍ଧମନ୍ତ୍ର ଗୁଣ୍ଡି
ଶରୀରେ ପକାନ୍ତେ କାମଜଳେ ପାର୍ଥବୁଡ଼ି ।
ସ୍ନେହ ଆଦରେ ତାହାକୁ ଧଇଲେ ଅର୍ଜ୍ଜୁନ
ବୋଇଲେ ନନ୍ଦନନ୍ଦିନୀ ରଖ ମୋ ଜୀବନ ।
ସୁଭଦ୍ରା ବୋଇଲେ ତୁ ଯେ ପରଂବ୍ରହ୍ମଯୋଗୀ
ଏତେ ବଡ଼ ମୁଦ୍ରାକୁ କି ପାରିବୁ ତୁ ଭାଙ୍ଗି ।
ଅର୍ଜ୍ଜୁନ ବୋଇଲେ ତୁହି ବାଳିକା ଯୁବତୀ
ଏକାଳେ ଏବେ ନାଗରୀ ଅତୁଟ ତୋ ଧୃତି ।
ମୋତେ ଗୋଚର ନୋହିଲା ତୋହର ଯେ ମାୟା
ଏବେ ମୁଁ ଜାଣିଲି ସ୍ତିରୀ ଅଟନ୍ତି ନିର୍ଦ୍ଦୟା ।

ଯହୁଁ ସେ ମଦନ ମନପ୍ରାଣ ଅର୍ଶାଷ୍ଟମ
ଧଇଲା ଆକର୍ଷି ବଳେ ହୋଇ ମତିଭ୍ରମ ।
ସୁଭଦ୍ରା ଡାକ ଦିଅଇ ଆଗୋ ସତ୍ୟଭାମା
ବଳେ କଟାଳ କରୁଛି ପାର୍ଥ ମୁହିଁ ବାମା ।
ଅବଳା ବାଳୁତ ସ୍ତିରୀ ନ ଜାଣଇ କିଛି
ମୋତେ ବୀର ଧନଞ୍ଜୟ କଟାଳ କରୁଛି ।
କେବଣ ପଦାର୍ଥ ଅବା ଅଛି ମୋର ତହିଁ
ଏ ମୋତେ ମାଗଇ ମୁହିଁ ପାରିବଇଁ କାହିଁ ।
ଆକର୍ଷି ବହୁ ଅବସ୍ଥା ଦେଇଅଛି ମୋତେ
ଦେଖୁ ଦେଖୁ ଧର୍ମକୁ ଏ ଲଙ୍ଘୁଛି କେମନ୍ତେ ।
ସତ୍ୟଭାମା ବୋଇଲେ ଗୋ ନକର ଝିଙ୍ଗାସ
ସ୍ତିରୀ ସିନା ଉପେକ୍ଷନ୍ତି ପୁରୁଷଙ୍କ ଦୋଷ ।
ଏବେ ମାନ ଅଭିମାନ ଫିଟିଲା ତୋହର
ମୁଁ ଯାଉଛି ଜଗନ୍ନାଥ ଦେବଙ୍କର ପୁର ।
କବାଟ ପକାଇ ତହୁଁ ସତ୍ୟାଗଲେ ହସି
ଅର୍ଜ୍ଜୁନ ପାଶେ ରହିଲେ ସୁଭଦ୍ରା ସୁକେଶୀ ।
ପ୍ରାଣପାନ ବ୍ୟାମୋଦାନ ସମାନ ମହାତ୍ମା
ଏକତ୍ୱେ ମଦନ ଜଳେ ଝାସିଲେ ପଞ୍ଚାତ୍ମା ।
ହାସ୍ୟ ପରିହାସ ଆଦି ହୁଅନ୍ତେ ଏମନ୍ତେ
ରାତି ପୁହାଇଲେ ବେନି ପଲଙ୍କେ ଏକାନ୍ତେ ।
ଅର୍ଜ୍ଜୁନ ବୋଇଲେ ଶେଷ ହୋଇଲାଣି ରାତି
ଯାଅ ଗୋ ସୁଭଦ୍ରା ଏବେ ହେଉଛି ପାହାନ୍ତି ।
ସୁଭଦ୍ରା ବୋଇଲେ କିମ୍ପା କହ ଅସଙ୍ଗତ
ମୋତେ ଦେଖି କିମ୍ପା ଡରୁଅଛି କୁନ୍ତୀସୁତ ।
ଅର୍ଜ୍ଜୁନ ବୋଇଲେ ଏ ଯେ ଗୁପତ ମିଳନ
ଗୁପତ ନୋହି ଏକଥା ହୋଇବ ବିସ୍ତୀର୍ଣ୍ଣ ।
ମୋତେ ତ ଦୁଃଖିତ ଏବେ କଲୁ ପ୍ରାଣ ସହି
ବଳରାମ ଜାଣିଲେଟି ନ ବର୍ତ୍ତିବେ କେହି ।
ତୋର ଭବନକୁ ଏବେ ଚଳିଯା ସୁଭଦ୍ରେ
ଯେମନ୍ତେ ନ ଜାଣନ୍ତି ଏକଥା ରାମଚନ୍ଦ୍ରେ ।
ବୋଲେ ଫାଲଗୁନି ଶେଷ ହୋଇଲାଣି ରାତି
ତେଜବାନ ହୋଇଲେଣି ଦୀପାବଳୀ ଜ୍ୟୋତି ।
ଅର୍ଜ୍ଜୁନର ବଚନରେ ଚଳେ ମାହେଶ୍ୱରୀ
ତୁରିତେ ଆପଣା ମେଢ଼େ ଯାଇ ବିଜେ କରି ।
ଏଥୁଅନନ୍ତରେ ପୁଣି ରଜନୀ ପ୍ରଭାତ
ସ୍ନାନ ନିତ୍ୟକର୍ମ ଲାଗି ଗଲେ ବୀରପାର୍ଥ ।
ସ୍ନାନ ତର୍ପଣ ଆହ୍ନିକ ସାରି ସବ୍ୟସାଚୀ
ଯାଇଣ ଦର୍ଶନ କଲା ଦେବ ଶିରୀବତ୍ସି ।
ରୈବତ୍ ପର୍ବତେ ହୁଏ ଯାତ୍ରାର ବିଧାନ
ସାତବଂଶ ଘେନି ବିଜେ ରାମନାରାୟଣ ।

ବାଜଇ ଢୋଲ ମର୍ଦ୍ଦଳ କାହାଳୀ ମହୁରୀ
ଯାତ୍ରା ରସରଙ୍ଗେ ବିଜେ ସର୍ବ ନରନାରୀ ।
ବଶିଷ୍ଠ ଯେ ବିଶ୍ୱାମିତ୍ର ବ୍ୟାସ ବସୁଦେବ
ଜଳକ୍ରୀଡ଼ାର ବିନୋଦେ ସକଳ ଯାଦବ ।
କର୍ପୂର ପନିର ଜଳ ସୁବାସିତ ପାଣି
ମାରନ୍ତି ପିଚିକା ବୃଷ୍ଟି ଶିଶିର କି ଜାଣି ।
ଅନେକ ଜନ ଗହଳ ହେଲା ଜଳଘାଟେ
ବିକାଶଇ କାଞ୍ଚନ ଯେ ଝୀନ ରଙ୍ଗତଟେ ।
ଅନେକ ସମ୍ଭାର ତହୁଁ କହିତ କେ ପାରି
ଖଟନ୍ତି ବହୁତ ଉପଚାରେ ବିଦ୍ୟାଧରୀ ।
ଅର୍ଜ୍ଜୁନକୁ ସଙ୍ଗେ ଘେନି କୃଷ୍ଣ ବଳଦେବେ
ଜଳକ୍ରୀଡ଼ା ବିନୋଦରେ ବିଜେ କଲେ ନାବେ ।
ଯାତ୍ରାର ବିନୋଦ ଯୋଗୁଁ ସାରି ନିତ୍ୟକର୍ମ
ରୈବତ ପର୍ବତେ ବିଜେ ଶ୍ରୀପୁରୁଷୋତ୍ତମ ।
ଅନେକ ଦିହୁଡ଼ି ଦୀପ ଲାଗିଲାକ ହୁଳା
ରାତ୍ରରେ ଆଲୁଅମୟ ଦିଶେ ଦିଗମାଳା ।
ବିଜୟେ ଜଗମୋହନ ଭୁବନ ଦ୍ୱାରକା
ମଙ୍ଗଳ ଧ୍ୱନି କରନ୍ତି ସକଳ ନାୟିକା ।
ଅନେକ ହରଷ ଦେଖି ଦ୍ୱାରକାର ନାରୀ
ଅର୍ଜ୍ଜୁନକୁ ସଙ୍ଗେ ଘେନି ବିଜେ ନିଜ ପୁରୀ ।
କର୍ପୂର ତାମ୍ବୁଳ ଭୁଞ୍ଜି ପ୍ରଭୁ ଜଗନ୍ନାଥ
ଶୟନ ମନ୍ଦିରେ ବିଜେ ବୀରବର ପାର୍ଥ ।
ଶ୍ରୀଜଗନ୍ନାଥଙ୍କୁ ଚାହିଁ ଦେବୀ ସତ୍ୟବତୀ
ଅର୍ଜ୍ଜୁନ ସୁଭଦ୍ରାଙ୍କର ବଢ଼ିଲା ପୀରତି ।
ଧନ୍ୟ ମହିମା ସେ ମାୟାବତୀର ଯେ ମନ୍ତ୍ର
ଏକ କବାଟ ଛୁଇଁଲେ ଫିଟେ ସାତଯନ୍ତ୍ର ।
ଅନେକ ସାନନ୍ଦେ ସତ୍ୟଭାମାଏ କହିଲେ
ଶୁଣିଣ ଶ୍ରୀଜଗନ୍ନାଥ ଆନନ୍ଦ ହୋଇଲେ ।
ଜୟ ରୁକ୍ମିଣୀବଲ୍ଲଭ ଜୟ ଜଗନ୍ନାଥ
ଜୟ ଜୟ ଜାମ୍ବବତୀ ଦେବୀ ପ୍ରାଣନାଥ ।
ଜୟ ଜୟ ସତ୍ୟଭାମା ହୃଦୟବଲ୍ଲଭ
ଜୟ ଜୟ ପଦ୍ମନାଭ ଯାଦବ ମାଧବ ।
ଜୟ ଜଗମୋହନ ତୁ ତୁଳସୀର ପତି
ଜୟ ଜୟ ତୁଳସୀର ବଲ୍ଲଭ ଶ୍ରୀପତି ।
ଜୟ କମଳାବଲ୍ଲଭ ଶ୍ରୀପୁରୁଷୋତ୍ତମ
ଜୟ ଜୟ ଚଞ୍ଚଳାର ହୃଦୟ ଯେ ଧାମ ।
ଜୟ ଜୟ କମଳାର ହୃଦୟବିହାରୀ
ଜୟ ଜୟ ଅଷ୍ଟପାଟବଂଶୀ ମନୋହାରୀ ।
ଜୟ ଜୟ ମାଳତୀର ବଲ୍ଲଭ ମାଧବ
ଜୟ ଜୟ କାଳିନ୍ଦୀର ବଲ୍ଲଭ ଭୋ ଦେବ ।

କେମନ୍ତେ ଆଜ୍ଞା ଦେବାକୁ ମୋତେ ଭଗବାନ
ନେବି ସଜ ହୋଇ ବିଭା ଯଉତୁକମାନ ।
ଗୋବିନ୍ଦ ବୋଇଲେ ନିଅ ରାଜା ଉଗ୍ରସେନ
ଦୁହିତା ଥିଲେ ଅବଶ୍ୟ କରିବା ପ୍ରଦାନ ।
ସ୍ୱାମୀଙ୍କର ଆଜ୍ଞା ଯାହା ଭାଙ୍ଗି କେହୁ ପାରି
ଯାହାକୁ ହେଲେ ପ୍ରଦାନ କରିବା କୁମାରୀ ।
ସମସ୍ତ ସଜ୍ଜ କରନ୍ତେ ସୂର୍ଯ୍ୟ ଅସ୍ତ ହେଲା
ଥାଟ ଘେନି ରାଜା କେଶୀ ବନରେ ରହିଲା ।
ରୁଦ୍ରବେଣୀ କୂଳେ ଥାଇ କେଶି ନାମେ ବନ
ସେଠାରେ ରହିଲା ଯାଇ ରାଜା ଦୁର୍ଯ୍ୟୋଧନ ।
ସ୍ନାହାନ ଭୋଜନ ଆଦି ସାରିଲେ ସମସ୍ତ
ଦ୍ୱାରକା ସଭାରେ ଯାଇ ହେଲେ ଉପଗତ ।
ଆଦିତ୍ୟ ଅସ୍ତ ହୁଅନ୍ତେ ବଳରାମ ଗଲେ
ଶୟନ ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ରାମ ବୋଇଲେ ରେବତୀ ଦେବୀ ସନ୍ନିଧାନେ
ପ୍ରଦାନ କରୁଛୁ ଆମ୍ଭେ ତୁମ୍ଭର ବଚନେ ।
ଦୁର୍ଯ୍ୟୋଧନକୁ ଅଣାଇଅଛୁ ଦୂତ ପେଶି
ପନ୍ନଗ ନାରାୟଣ ସେ ଅଟେ ସାତବଂଶୀ ।
ରେବତୀ ବୋଇଲେ ଦେବ ହେଲା ଅକାରଣ
ତେଡ଼େ ଭାଳି ରାଜାକୁ ତ କଲ ବିଡ଼ମ୍ବନ ।
ପରେ ଦୂଷିତା ହେଲାଣି ସୁଭଦ୍ରା ତୁମ୍ଭର
ତଦନ୍ତ କରି ନ ଜାଣ ତୁମ୍ଭେ ହଳଧର ।
ଉତ୍ସବ ନବରେ ମୁହିଁ ଦେଖିଲି ତାହାକୁ
ଦେହ ସମର୍ପିଲାଣି ସେ କେଉଁ ପୁରୁଷକୁ ।
ଚନ୍ଦ୍ରଭାଗା ନଦୀତୀରେ ଫେଡ଼ିଲି ବସନ
ଉରେ ବିରାଜଇ ତାର ଦନ୍ତ ନଖ ଚିହ୍ନ ।
କି ସେ ପ୍ରତିପଦା ନିଶି କଳାକାର ଜ୍ୟୋତି
ଶୁଣି କାମପାଳଙ୍କର ହଜିଗଲା ମତି ।
ଏ କଥା ଯେବେ ସ୍ୱରୂପ ଅଟଇ ସଙ୍ଗାତ
ଆଜି କି ପ୍ରାଣ ପାଇବେ ଯାଦବ ସମସ୍ତ ।
ରେବତୀ ବୋଇଲେ ଦେବ ଅଟଇ ସ୍ୱରୂପ
ମିଥ୍ୟା କହିଲେ ହୋଇବ ଜାଣ ବଡ଼ ପାପ ।
ତୁମ୍ଭ ଛାମୁରେ କେ ମିଥ୍ୟା କହିଥିବ ବର୍ତ୍ତି
ସାତ୍ୟକିଙ୍କୁ ରାଇ ଆଜ୍ଞା ଦେଲେ ହଳପତି ।
ଉଗ୍ରସେନକୁ ତୁ ରାଇ ଆଣିବୁ ଏକ୍ଷଣି
ବିଳମ୍ବ ହେଲେ ତୋ ଶିର ପକାଇବି ହାଣି ।
ଚଳଇ ସାତ୍ୟକି କାମପାଳର ବଚନେ
ପ୍ରବେଶ ହୋଇଲେ ଉଗ୍ରସେନ ସନ୍ନିଧାନେ ।
ଯୋଗାଡ଼ କରୁଛି ଯାହା ବିଭାଘର ଲାଗି
ରାତ୍ରେ ନିଦ୍ରା ନାହିଁ ସାରା ରାତିଯାକ ଜାଗି ।
ରୋଷେଇ ଶାଳେ ରାନ୍ଧଇ ବସି ସୂପକାରେ
ଅମୃତ ପାନ କରନ୍ତି ସେ ଷଡ଼ ରସରେ ।
ସାତ୍ୟକି ବୋଇଲା ଶୁଣ ଦେବ ଉଗ୍ରସେନ
ବଳରାମଙ୍କର ଆଜ୍ଞା ଆସିବ ଏକ୍ଷଣ ।
ଆସ୍ଥାନୁ ଓହ୍ଲାଇ ରାଜା ଅଇଲଶ ସତ୍ୱରେ
ରାମ ବିଜେ କରିଛନ୍ତି ଚନ୍ଦ୍ରଶାଳାପୁରେ ।
ଉଗ୍ରସେନ ପ୍ରଣିପାତ କଲା ପାଦତଳେ
ରାମ ସମସ୍ୟା ନ ଦେଲେ ତାଙ୍କୁ କୋପଭରେ ।
ବଳରାମ ବୋଇଲେ ହେ ଶୁଣ ଉଗ୍ରସେନ
ସୁଭଦ୍ରାକୁ ଏ ପୁରେ କେ କଲା ବିଡ଼ମ୍ବନ ।
ଉଗ୍ରସେନ ବୋଇଲା ଏ ଅସମ୍ଭବ କଥା
ଏଥି ଆସିବାକୁ ଭୀତ ମୃତ୍ୟୁର ଦେବତା ।
ଯମ ଡରେ ନ ଆସଇ ଯେଉଁ ଦ୍ୱାରକାକୁ
କାହାର ଭରସା ଏଡ଼େ କର୍ମ କରିବାକୁ ।
ବଳରାମ ବୋଇଲେ ଯେ କହିଲେ ରେବତୀ
ଅନାଦି ଅପର୍ଣ୍ଣା ସେହି ମିଥ୍ୟା ନ କହନ୍ତି ।
କୋପେ ପୁଣି ତାଙ୍କୁ ଆଜ୍ଞା ଦେଲେ ହଳପାଣି
ନିଶାପ୍ରତିମାନଙ୍କୁ ତୁ ବେଗେ ପକା ହାଣି ।
ଶୁଣି ମନରେ ବିଚାର କଲେକ ରେବତୀ
ଅଦୋଷୀ ଲୋକଙ୍କୁ କିମ୍ପା ଦେବେ ଏହୁ ଶାସ୍ତି ।
ଯେତେକ ଲୋକଙ୍କୁ ଏହୁ ପକାଇବେ ହାଣି
ନିଶ୍ଚେ ହତ୍ୟା ଦୋଷେ ମୁହିଁ ହୋଇବି କାରେଣି ।
ରେବତୀ ବୋଇଲେ କୋପ ଆନକୁ ନ କର
ଅର୍ଜ୍ଜୁନ ହରିଲା ଦେବ ଭଗିନୀ ତୁମ୍ଭର ।
ଜାଣିଦେବ କେମନ୍ତେ ବା ନ କହିବି ମୁହିଁ
ଅଦୋଷୀ ମାଇଲେ ଦୋଷ ହେବ ଆମ୍ଭଙ୍କୁ ହିଁ ।
କୋପାନଳ ଶୁଣି ଜଗଜ୍ଜନ ଅଧିକାରୀ
ବୋଇଲେ ସାତ୍ୟକି ଆଣ କୃଷ୍ଣଙ୍କୁ ହକାରି ।
ଶୁଣି ସେ ସାତ୍ୟକି ବେଗେ କରଇ ଗମନ
ଗୋବିନ୍ଦ ବିଜୟ ଜାମ୍ବବତୀର ଭବନ ।
ସନ୍ନିଧେ ଯାଇ ଚରଣ ତଳରେ ପ୍ରଣମି
ଠାକୁରଙ୍କ ଆଜ୍ଞା ଦେବ ଆସିବା ଭୋ ସ୍ୱାମୀ ।
ଛାମୁରେ ଦିହୁଡ଼ି ପୁଣି ଜଳେ ଏକଲକ୍ଷ
ବଳରାମଙ୍କ ଛାମୁରେ ବିଜୟ ଶ୍ରୀବତ୍ସ ।
କେଶବ କରନ୍ତି ପାଶେ ଯାଇ ନିଛଛାଳି
ସାଷ୍ଟାଙ୍ଗେ ଶୋଇଲେ ଘଡ଼ଘାଲି ବନମାଳୀ ।
ରାଗେ ବଳରାମ ତାଙ୍କୁ ନ କଲେ କଲ୍ୟାଣ
ଏମନ୍ତ ହରି ଦ୍ୱାରକା ରଖିଅଛୁ ପୁଣ ।
ଅତି ଆଶ୍ୱାସନା କରି ପୋଷିଲେକ ଶ୍ୱାନ
କାଳେ ସେ ତାହାର ମୁଖେ ଦିଅଇ ଚୁମ୍ବନ ।

ଗୋଳକୁଣ୍ଡା ଜାରଜାତ ଅଟନ୍ତି ପାଣ୍ଡବ
ସୁଭଦ୍ରାକୁ ହରିଲା ନ ଜାଣୁ କି ମାଧବ ।
ଶୁଣିଣ ବିଷାଦ ହେଲେ ଜଗନ୍ନାଥ ସ୍ୱାମୀ
ବେନିକର୍ଣ୍ଣ ଛୁଇଁ ହସ୍ତ ଦେଲେକ ମେଦିନୀ ।
ସ୍ୱାମୀ ତୁମ୍ଭଙ୍କୁ କହିଲା କେ ଏସନ କଥା
ମୁଁ ବା କେମନ୍ତେ ଜାଣିଲି ଏହାର ବାରତା
ସ୍ୱାମୀ ଅଟନ୍ତି ଅର୍ଜ୍ଜୁନ ପୁଣି ମହାଯତି
ଯତି ନିନ୍ଦାକଲେ ଆପେ ହୁଏ ନର୍କଗତି ।
ସଜ୍ଜନଜନଙ୍କୁ ଦେବ ଅନୀତି କହିଲେ
ଧର୍ମ ନ ଗଛଇ ଗଉରବେ ନିନ୍ଦାକଲେ ।
ସ୍ୱାମୀ ତୁମ୍ଭେ କିମ୍ପା ଏହା ନ କର ବିଚାର
ଏତେ ବଡ଼ ଭରସା କି ହେବ ଅର୍ଜ୍ଜୁନର ।
ବଳରାମ ବୋଇଲେକ ଶୁଣ ଗୋ ରେବତୀ
କେଶବ ଛାମୁରେ କହ ସେ କେବଣ ରୀତି ।
ରେବତୀ ବୋଇଲେ ମୁହିଁ ଦେଖିଲି ପ୍ରତ୍ୟକ୍ଷ
ସୁଭଦ୍ରାକୁ ବିଡ଼ମ୍ବିଲା ପାଣ୍ଡବ ବିବସ୍ଥ ।
କହିଲେକ କରପତ୍ର ଯୋଡ଼ି ଦେବ ହରି
ନାନାଦି ପ୍ରକାରେ ମନ୍ଦ କରନ୍ତି ତ ସ୍ତିରୀ ।
ନ ଜାଣି ଧାତା ସର୍ଜିଲା ଏ ସ୍ତିରୀ ଜାତିଙ୍କୁ
କିମ୍ପା ଆନ ନାମ ଦେଲା ପ୍ରମୋଦ ଏହାଙ୍କୁ ।
ଅନବରତରେ ଭୋଳ ଅଛନ୍ତି ସ୍ତ୍ରୀ ଜାତି
ଆଖ୍ୟାତ ଅଜ୍ଞାନ ଅନୁବରତେ ବୁଲନ୍ତି ।
ସ୍ତିରୀଙ୍କ ବୋଲକୁ ପ୍ରତେ ନ ଯିବା ଭୋ ଦେବ
ଯେତେକ କହନ୍ତି ମିଥ୍ୟା ସମସ୍ତ ପ୍ରସ୍ତାବ ।
ରେବତୀ ବୋଇଲେ ବାବୁ କହୁଅଛୁ ଯାହା
ତୁହି ସେ ଭିଆଣ ସିନା କରିଅଛୁ ଏହା ।
ଚକ୍ରକୂଟ ବୁଦ୍ଧି କି କେ ଭାଜନରେ ବାବୁ
ତୁ ପୁଣି ଏଥି ଅନେକ ଦ୍ୱନ୍ଦ୍ୱ କରାଇବୁ ।
ପୁଣି ବୋଲନ୍ତି ଶୁଣିମା ହେଉ ହଳଧାରୀ
ଦୁର୍ଯ୍ୟୋଧନକୁ ବୋଲନ୍ତୁ ଯାଉ ସେ ବାହୁଡ଼ି ।
କୋପେ ପୁଣି ଆଜ୍ଞା ଦେଲେ ଦେବ ରାମଚନ୍ଦ୍ର
କେମନ୍ତେ ପାର୍ଥକୁ ରକ୍ଷା କରଇ ଗୋବିନ୍ଦ ।
ଅପ୍ରୀତି ତୁ କରାଇଲ ଯେବେ ଚକ୍ରପାଣି
ଆପଣା କୁଳେ କଳଙ୍କ ଲଗାଇଲୁ ଆଣି ।
ଉଗ୍ରସେନ ରାଇ ଆଜ୍ଞା ଦେଲେ ହଳଧାରୀ
ପାଇଲେ ତୁ ଅର୍ଜ୍ଜୁନକୁ ବନ୍ଦେ ଥିବୁ ଧରି ।
ତିରିଣ ପ୍ରମାଣ କିର କାଟିବ ତା ମାଂସ
ଆବର ମୁଁ ଥୋଇବି କି ପାଣ୍ଡବଙ୍କ ବଂଶ ।
ଏତେ ବୋଲି ଦେବ କଲେ ଆସ୍ଥାନରେ ବିଜେ
ନିଅବକାଶରେ ବିଜେ କଲେ ଦେବରାଜେ ।

ନିଜ ଭୁବନରେ ବିଜେ କଲେ ଜଗନ୍ନାଥ
ସତ୍ୟଭାମାକୁ ରାଇଣ ବୋଇଲେ ଅଚ୍ୟୁତ ।
ବଳରାମ ଜାଣିଲେଣି କଥାଗୋଟି ଫୁଟି
ସୁଭଦ୍ରାକୁ ଘେନିଯାଉ ଏ ପୁରୁ କିରୀଟି ।
ଉଗ୍ରସେନ ରାଇ ଆଜ୍ଞାଦେଲେ ବଳରାମ
ରାତ୍ରର ପ୍ରଭାତେ କାଲି ହୋଇବ ସଂଗ୍ରାମ ।
ଶ୍ରୀକୃଷ୍ଣଙ୍କ ଆଜ୍ଞା ପାଇ ଗଲେ ସତ୍ୟାସତୀ
ଅର୍ଜ୍ଜୁନ ଭୁବନେ ବିଜେ କଲେ ସେ ଝଟତି ।
ସୁଭଦ୍ରା ଅର୍ଜ୍ଜୁନ ଦୁହେଁ କରୁଛନ୍ତି କେଳି
ଦ୍ୱାରେ ଉଭାହେଲେ ଶକ୍ରାଜିତର ଦୁଲାଳୀ ।
କବାଟ ଫେଡ଼ି ସମସ୍ୟା କଲେ ବୀରପାର୍ଥ
ସନ୍ନିଧେ ପ୍ରବେଶ ଆସି ବାସବର ସୁତ ।
ସତ୍ୟଭାମା ବୋଇଲେ ହେ ଶୁଣ ଫାଲଗୁନି
ଏହିକ୍ଷଣି ଯାଅ ତୁହି ସୁଭଦ୍ରାକୁ ଘେନି ।
ରେବତୀ ଦେବୀ କହିଲେ ଜାଣିଲେ ତ ରାମ
ରଜନୀ ପ୍ରଭାତେ କାଲି ହୋଇବ ସଂଗ୍ରାମ ।
କଳିଦ୍ୱନ୍ଦ୍ୱେ ପ୍ରୟୋଜନ ନାହିଁ ଦେବ କିଛି
ଆଜ୍ଞାପାଇ ଉଗ୍ରସେନ ଏବେ ଆସୁଅଛି ।
ସ୍ୱାମୀ କୋଟିଏ ସିଂହର ଯାର ପରାକ୍ରମ
କେମନ୍ତେ ତାହାର ତୁଲେ କରିବୁ ସଂଗ୍ରାମ ।
ଶୁଣି ଅର୍ଜ୍ଜୁନ କହିଲା ଯାଇ ସୁଭଦ୍ରାକୁ
ଆଦ୍ୟରୁ ନ ଜାଣୁ ତୁ କି ସେ ବଳରାମଙ୍କୁ ।
ନ ଜାଣି ତୁ ସରଦାର କରାଇଲୁ ମୋତେ
ଯେବେ ତୋତେ ଘେନିଯିବି ମୁହିଁ ନିଶାରାତ୍ରେ ।
ଚଉର୍ଯ୍ୟ କର୍ମେ ପାଇବି ଲୋକେ ଅପଖ୍ୟାତ
ଯିବଇଁ ମୁଁ ତୋତେ ଘେନି ପାହୁ ଏହିରାତି ।
ଏମନ୍ତ କଥା ନ କହ ମୋତେ ସଉଭଦ୍ରେ
ଆସନ୍ତୁନା ଯେତେବେଳେ ଘେନି ରାମଚନ୍ଦ୍ରେ ।
ଅନେକ ପ୍ରକାରେ ତୋତେ କଲି ମୁହିଁ ନାସ୍ତି
ବଳାତ୍କାରେ ମୋତେ ତୁହି କରାଇଲୁ ପ୍ରୀତି ।
ଏତେବେଳେ ଆଉ ମୁହିଁ ଯିବି କାହୁଁ ଘୁଞ୍ଚି
ଅର୍ଜିତ କର୍ମ ଯେମନ୍ତେ ମୋ କପାଳେ ଅଛି ।
ଏସନକ ଘଟସୂତ୍ର ଅଛି ଯେବେ ମୋତେ
ମୁହିଁ ଏଥେ ନାଶଯିବି ତୋହର ନିମନ୍ତେ ।
ଆପଣାର କଲା କୃତ୍ୟକର୍ମ ବୋଲି ଲେଖି
ଭୁଞ୍ଜିବିନା କର୍ମଫଳ ଯାହା ଅର୍ଜିଅଛି ।
ସତ୍ୟଭାମାଏ ବୋଇଲେ ରାମର କୋପକୁ
ସହିଣ ସମାନ ହେବୁଟି କି ସଂଗ୍ରାମକୁ ।
ଅର୍ଜ୍ଜୁନ ବୋଇଲେ ମୁହିଁ ଜାଣେ ସବୁକଥା
କେ ଆନ କରିପାରିବ କପାଳ ଲିଖିତା ।

କହ ଯାଇ ସତ୍ୟଭାମା ଦେବ ଜଗନ୍ନାଥେ
କିଞ୍ଚିତରେ ଦୟା ସେହି କରିଥାନ୍ତୁ ମୋତେ ।
ନିରାଶ ବଚନ ନାରାୟଣଙ୍କୁ କହିଲେ
ନିର୍ଭୟ ହୋଇ ସେଠାରେ ଅର୍ଜୁନ ରହିଲେ ।
ବୋଇଲେ ଆସନ୍ତୁ କିବା ସହସ୍ରେକ ରାମ
ସୁଭଦ୍ରା ନିମନ୍ତେ ମୁହିଁ କରିବି ସଂଗ୍ରାମ ।
ନିରାଶ ବଚନ ପାଇ ଯାନ୍ତି ସତ୍ୟାସତୀ
ନାରାୟଣ ଦେବଙ୍କୁ ସେ ଏକଥା କହନ୍ତି ।
ନିର୍ଭୟ ହୋଇ ରହିଲା ଦେବ ଧନଞ୍ଜୟ
ତୋ ପାଦେ ଭରସା ହେବ ତୁ ହୁଅ ସଦୟ ।
ବୋଇଲା ଆସନ୍ତୁ କିନା ସହସ୍ରେକ ରାମ
ସୁଭଦ୍ରାର ଛଳେ ମୁହିଁ କିରବି ସଂଗ୍ରାମ ।
ଗୁରୁତର ପ୍ରତିଜ୍ଞା ତ କଲା ସବ୍ୟସାଚୀ
ମନ୍ଦର ସମାନ ଦେବ ନିଷ୍କମ୍ପରେ ଅଛି ।
ବୋଲନ୍ତି ସେ ସତ୍ୟଭାମା ଚାହିଁ ଜଗନ୍ନାଥ
କ୍ଷତ୍ରୀୟ ଅନର୍ଗଳ ସେ ବୀରବର ପାର୍ଥ ।
ପ୍ରଦ୍ୟୁମ୍ନ ଗଦ ଯେ ଶାମ୍ବ କୁମରଙ୍କୁ ରାଇ
ଅର୍ଜୁନେ ବିବାଦୀ ହୋଇଛନ୍ତି ହଳସାଇଁ ।
ଦୁର୍ଯ୍ୟୋଧନଙ୍କୁ ବୋଲନ୍ତି ସୁଭଦ୍ରା ଦେବାକୁ
ସୁଭଦ୍ରା ତ ବରିଲାଣି ଏଣେ ଅର୍ଜୁନଙ୍କୁ ।
ଅର୍ଜୁନ ତୁଲେ ଅବଶ୍ୟ କରିବେ ସେ ଯୁଦ୍ଧ
ଆମ୍ଭେ କେମନ୍ତେ କରିବା କହବାବୁ ମଧ୍ୟ ।
ବୋଲନ୍ତି କୁମରମାନେ କରପତ୍ର ଯୋଡ଼ି
ଅର୍ଜୁନ ଆମ୍ଭର ଅଟେ ବହୁ ଉପକାରୀ ।
ଆମ୍ଭେ ତ ଛାଡ଼ି ନ ପାରୁ ଦେବ ଧନଞ୍ଜୟ
ଅର୍ଜୁନ ଆଡ଼େ ହୋଇବୁ ଆମ୍ଭେ ଦେବରାୟ ।
ଶୁଣି ଆନନ୍ଦ ହୋଇଲେ ଦେବ ଭଗବାନ
ପୁତ୍ରଙ୍କର ସାହାଯ୍ୟରେ ଜିଣିବ ଅର୍ଜୁନ ।
ଏସନ ଭାଳନ୍ତେ ତିନି ପ୍ରହର ଯେ ରାତି
ଉଗ୍ରସେନ ତୁଲେ ଘେନି ଅର୍ବୁଦେକ ରଥି ।
ପାଞ୍ଚ ଅର୍ବୁଦ ତୁରଙ୍ଗ ଅୟୁତେକ ହସ୍ତୀ
ଚୌବିଂଶବୃନ୍ଦ ରାଉତ ଅନେକ ପଦାତି ।
ରାତ୍ର ପ୍ରହରେକ ଥାଉ ବେଢ଼ିଲେ ଗୁପତେ
ଅର୍ଜୁନ ଶୟନସ୍ଥାନ ଘେରିଲେ ସମସ୍ତେ ।
ଗହଳ ଚଳହ ଦେଖି ସୁଭଦ୍ରା ବିକଳ
ସ୍ୱାମୀ ସମଦଣ୍ଡ ଘେନି ବିଜେ କାମପାଳ ।
କ୍ଷତ୍ରିୟ ଚୂଡ଼ାମଣି ସେ ରସପାନେ ଭୋଳା
ସୁକୁମାର ଶରୀରକୁ ଘେନି ବେଗେ ପଳା ।
ଭୋ ପ୍ରାଣନାଥ ତୋର ମୁଁ ଘେନଇ ଆପଦ
ଅମୂଲ୍ୟ ଦେହ ନପୁଣ ପଡ଼ଇ ପ୍ରମାଦ ।
କିମ୍ପାଇ ତୁ ମନେ ଚିନ୍ତାକରୁ ଗୋ ସୁଭଦ୍ରେ
ବିହ୍ମା ବିଷ୍ଣୁ ଶିବ ଇନ୍ଦ୍ର କିବା ରାମଚନ୍ଦ୍ରେ ।
ଏକଥାକୁ ମୁହିଁ ଯେବେ କରନ୍ତିଟି ଭୀତି
ତୋହର ତୁଲେ କିମ୍ପାଇ କରନ୍ତି ପୀରତି ।
ମାରିବି ମୁଁ ସାତବଂଶ ରୁହାଇବି କଥା
ସୋଦର ଦୁଃଖେ ନ ପୁଣି ମନେ ଧରୁ ବ୍ୟଥା ।
ସୁଭଦ୍ରା ବୋଇଲେ ତୁମ୍ଭେ ଜିଣି ଯଦୁବଳ
ତୋହର ଶରୀର ଗୋଟି ଥାଉ ଯେ କୁଶଳ ।
ମୋତେ ପ୍ରଦାନ ନ କଲେ ମୁଁ ହେଲି ଯୁବତୀ
ମୋହର ଇଚ୍ଛାରେ ବର ବରିଲି ସଂପ୍ରତି ।
ତାହା ନିରୋଧ କରନ୍ତି କାହାର ନିମନ୍ତେ
ଧର୍ମଦେବତା ଏ କଥା ସହିବ କେମନ୍ତେ ।
ମୁହିଁ ପୁଣି ନିରିମାକ୍ଷୀ ପାମରୀ ସ୍ତ୍ରୀଜନ
ତୋ ପାଦେ ଶରଣ ମୋତେ ଉଦ୍ଧର ଅର୍ଜୁନ ।
ତୋର ବଳ ଦର୍ପ ତୁହି ଜାଣୁ ସିନା ତାହା
ମୁହିଁ ସ୍ତିରୀମାତ୍ରେ ମୋତେ ଧର୍ମ ହେଉ ସାହା ।
ଏ ପୁରୁ ବାହାର ହୁଅ ନାଥ ମୋତେ ଘେନି
ଏଥି ଥିଲେ ଅଜୟଟି ଜାଣ ଫାଲଗୁନି ।
ମାୟାବତୀ ସେ ପୁଷ୍ପକ ରଥ ଦେଇଥିଲା
ମନେ ଧ୍ୟାନ କରି ତାହା ସୁଭଦ୍ରା ସ୍ମରିଲା ।
ମନେ ସ୍ମରନ୍ତେ ପବନୁଁ ବେଗେ ସେହିଆସେ
ଉଦୟଗିରି ପ୍ରାୟ ସେ ଗଗନରେ ଦିଶେ ।
ଯେତେକ ଅସ୍ତ୍ର ଅଛଇ ତହିଁ ଆନଆନୁ
ସେ ରଥ ଜାତ ହୋଇଲା ସମୁଦ୍ର ମନ୍ଥନୁ ।
ତ୍ରିଦଶ ଦେବ ଯେ କଲେ ଅନ୍ୟୋ ଅନ୍ୟ ହୋଇ
ମିଳିଣ କାମଦେବଙ୍କୁ ଦେଲେ ତାହା ନେଇ ।
ଈଶ୍ୱରଙ୍କ କୋପାନଳେ କାମ ଦଗ୍ଧ ହେଲା
ସେ ଦେବ ରଥକୁ ରତି ଯତ୍ନେ ଥୋଇଥିଲା ।
ସୁଭଦ୍ରାକୁ ସୁପ୍ରସନ୍ନ ହେଲେ ମାହେଶ୍ୱରୀ
ଅନାଦି ଅପର୍ଣ୍ଣା ସେହି ଦେଲେ ସିଦ୍ଧ ନାରୀ ।
ସେ ରଥରେ ବିଜେ କଲେ ବୀର ଫାଲଗୁନି
ଯେବଣ ରଥରେ ଥିଲେ ସାଧ୍ୟ ପୁର ତିନି ।
ଅର୍ଜୁନ ଯାଇ ବିଜୟ କଲେ ସେହି ରଥେ
ମାୟାବତୀର ବିଦ୍ୟାରେ ଶସ୍ତ୍ରପ୍ରାପ୍ତ ହସ୍ତେ ।
ସୁଭଦ୍ରାକୁ ବସାଇଛି ରଥପରେ ବୀର
ଈଶ୍ୱର ପିନାକ ଧରିଅଛି ବାମକର ।
ତାରକା ବିବାଦେ ଯେହ୍ନେ କୁମାର ହିଁ ଦିଶେ
ସେହି ପ୍ରକାରେ ଅର୍ଜୁନ ତେଜ ହିଁ ପ୍ରକାଶେ ।
ହିରଣ୍ୟକୁ ଦେଖି ଯେହ୍ନେ ନୃସିଂହ ଗରଜି
ଦେଖି ଯେହ୍ନେ ଯଦୁବଳ ପଳାଇଲେ ଭାଜି ।

ଅନେକ ରତ୍ନ ବିରାଜେ ଅର୍ଜ୍ଜୁନର କାୟେ
ଦିଶଇ ସେ ଫାଲଗୁନି ପୁରୁରବା ପ୍ରାୟେ ।
ହାବୋଡ଼ା ଶର ମାଇଲେ ପାର୍ଥ ମହାବୀର
ଦ୍ୱାରେ ଯେତେ ଥିଲେ ସର୍ବେ ହୋଇଗଲେ ଚୂର ।
ସେହ୍ନା ଫୁଲିଣ ନାରାଚ ପଡ଼ି ଛାତି ଫୁଟି
ପଡ଼ିଲେ ତିନି ଅୟୁତ ଯୋଦ୍ଧା ମହୀ ଲୋଟି ।
ସତ୍ୟଯୁଗେ ଯେଉଁରୂପେ ନୃପତି ମାନ୍ଧାତା
ତେସନ ଦିଶୁଛି ତେଜ ପାର୍ଥ ବଳବନ୍ତା ।
ଲକ୍ଷ୍ମୀନାରାୟଣ ବିଜେ କି ସିନ୍ଧୁ ମନ୍ଥନୁ
ସେହିରୂପେ ଦିଶଇ ସେ ବାସବର ସୁନୁ ।
ରତିକୁ ଘେନି ଯେତସନେ ବିଜେ ପଞ୍ଚବାଣ
ତେସନେ ସୁଭଦ୍ରା ଘେନି ଦିଶଇ ଅର୍ଜ୍ଜୁନ ।
ହିମବନ୍ତ ଘରେ ଯେହ୍ନେ ଉମା ମହେଶ୍ୱର
ଶଚୀକି ଘେନି ବିଜୟ ଯେହ୍ନେ ପୁରନ୍ଦର ।
ଅନଙ୍ଗଧନୁ ଶ୍ରୀକରେ ପୁଣି ବଜ୍ରବାଣ
ସେହିପରି ଦିଶୁଅଛି ପଣ୍ଡୁର ନନ୍ଦନ ।
ସ୍ମରନ୍ତେ ପବନୁ ଯାଏ ଶର ଖେଦି
ଖାଣ୍ଡବ ବନ ଦହନେ ଯେହ୍ନେ ଜମ୍ବୁଭେଦୀ ।
ଈଶ୍ୱରଙ୍କୁ ଜିଣିଲା ସେ କିରାତ ସ୍ୱରୂପେ
ଗୋସିଂହ ବିନାଶ କଲା ଯାହାର ପ୍ରତାପେ ।
ଯାଦବବଳ ଅଟନ୍ତି ସର୍ବେ ସର୍ବେଶ୍ୱର
ଅର୍ଜ୍ଜୁନ ଶରେ ପଡ଼ିଲେ ବଳ ଯେ ଅପାର ।
ବାହାର ହୋଇ ଆସଇ ପାର୍ଥ ଶର ବିନ୍ଧି
ଶତ ଶତ ଯୋଦ୍ଧା ଏକ ନାରାଚକେ ଛେଦି ।
ଦ୍ୱାରକା ଦାଣ୍ଡରେ ବିଜେ ଆସି ସବ୍ୟସାଚୀ
ନାରାୟଣ ସ୍ୱରୂପ ତା କାନ୍ତି ବିରାଜୁଛି ।
ସୁଭଦ୍ରାଙ୍କୁ ଘେନି ବୀର ଆସୁଅଛି ବଳି
ଦିଅନ୍ତି ଦ୍ୱରକା ସ୍ତିରୀମାନେ ହୁଳହୁଳି ।
ବୋଲନ୍ତି ସାଧୁ ସୁଭଦ୍ରା ପାର୍ଥଙ୍କୁ ମୋହିଲା
ଏବେ ଦ୍ୱରକା ଭୁବନ ଶୋଭା ହିଁ ପାଇଲା ।
ବଡ଼ ପୁଣ୍ୟବତୀ ତୁହି ଅଟୁ ଗୋ ସୁଭଦ୍ରେ
ଅମରପୁରୁ ବିଜୟେ କିବା ଶଚୀ ଇନ୍ଦ୍ରେ ।
ସମସ୍ତେ କରନ୍ତି ଜୟ ସୁମଙ୍ଗଳ ବାଣୀ
ଦେଖି ସାନନ୍ଦ ହୋଇଲେ ଦେବ ଚକ୍ରପାଣି ।
ଲକ୍ଷେ ଷାଠିଏ ସହସ୍ର ଦେବ ପୁତ୍ରସମ
ସବୁରି କରେ ବିରାଜେ ଶଙ୍ଖ ଚକ୍ର ଚିହ୍ନ ।
ଅର୍ଜ୍ଜୁନ ମିଦାନ ଦେଖି କୃଷ୍ଣ ପୁତ୍ରମାନେ
ଆରୋହି ଅଇଲେ ବେଗେ ନେ ଯାହା ବିମାନେ ।
ସୁଭଦ୍ରାଙ୍କୁ ରଥେ ଘେନି ବଳଇ ବିଜୟ
ପୁତ୍ରମାନେ ଲାଗିଛନ୍ତି ଅର୍ଜ୍ଜୁନର ପଛ ।

ଶାମ୍ବ ଗଦ ଅର୍ଜ୍ଜୁନର ବାମପାଖ କତି
ଅଶୀ ସହସ୍ର କୁମରେ ସପକ୍ଷ ଅଛନ୍ତି ।
ଲକ୍ଷେ ଷାଠିଏ ସହସ୍ର ଅଶୀ କୃଷ୍ଣସୁତେ
ଅର୍ଜ୍ଜୁନ ଡାହାଣେ ଛନ୍ତି ଚଢ଼ି ରଥେ ରଥେ ।
ସାତ୍ୟକି ଅକ୍ରୁର ତୁଲେ ଦଶପଦ୍ମ ହସ୍ତୀ
ଏମାନେ ଆବୋରିଛନ୍ତି ପାର୍ଥ ପଛକତି ।
ଜଗନ୍ନାଥ ଭରସାରେ ଦ୍ୱାରକାର ଜନ
ସେମାନେ ପଛରୁ ଆସି ରଖିଲେ ଅର୍ଜ୍ଜୁନ ।
ଏସନ ସମୟେ ଯାଇ କହିଲା ଉଦ୍ଧବ
ସାବଧାନ ହୋଇ ଶୁଣ ସ୍ୱାମୀ ବଳଦେବ ।
ଦ୍ୱାରକା ପୁରରେ ଥିଲା ବୀର ଫାଲଗୁନି
ଯାଉଅଛଇ ରଥରେ ସୁଭଦ୍ରାକୁ ଘେନି ।
ଶୁଣି କାମପାଳ କୋପେ ହୋଇଲେ ଅଥୟ
ହଳମୂଷଳ ଧରିଣ ରଥରେ ବିଜୟ ।
ଯାଅ ରାଜା ଉଗ୍ରସେନ ଘେନି ତୋର ଥାଟ
ସୁଭଦ୍ରା ଘେନି ଯାଉଛି ପାଣ୍ଡବ ପାପିଷ୍ଠ ।
ବଳରାମ ମୁଖୁ ଶୁଣି ଏସନକ ରଡ଼ି
ସାତବଂଶ ଯୋଦ୍ଧାମାନେ ପଡ଼ିଲେକ ମାଡ଼ି ।
ରଥଗଜ ଅଶ୍ୱଘେନି ସଇନ୍ୟ ପଦାତି
ଗର୍ଜ୍ଜନ ନାଦ କରିଣ କୋପରେ ଧାମନ୍ତି ।
ବଳରାମ ସନ୍ନିଧିରେ ହୋଇଲେ ପ୍ରବେଶ
ସିନ୍ଧୁ ମନ୍ଥନ ପରାୟେ ଶୁଭେ ମୁଖଘୋଷ ।
ଅର୍ଜ୍ଜୁନର ତେଜ ମହାତେଜଠାରୁ ବଳି
ବିଶ୍ୱରୂପ ପ୍ରକାଶିଲେ ଦେଖି ଦେବବଳୀ ।
ବିଜେ କାମପାଳ ତାଳଧ୍ୱଜ ରଥପରେ
ବକ୍ଷେ ସୌନନ୍ଦ ମୁଷଳହଳ ବାମକରେ ।
ନିଦାଘ ଅନଳ ଜିଣି ଶିରେ ସପ୍ତଫଣି
ଷୋଳନୟନ ବିକାଶେ କାଳଚକ୍ର ଜିଣି ।
ବଳରାମ ବିଜେ କଲେ କୋପେଣ ପ୍ରଚଣ୍ଡ
ରେରେକାର ଶବଦରେ କମ୍ପେ ମହୀଖଣ୍ଡ ।
ବଳରାମଙ୍କର କୋପ ଦେଖି ବନମାଳୀ
ନୀଳାମ୍ବର ଚରଣରେ କଲେ ନିଉଛାଳି ।
ତୁହି ଦେବ ନୀଳାମ୍ବର ପୁରୁଷ ଉତ୍କର୍ମୀ
କାହାକୁ ଏଡ଼େ କୋପ ତୁ କରୁ ଦେବସ୍ୱାମୀ ।
ବଦନ୍ତି ନୀଳାମ୍ବର ତୁ ଶୁଣ ଜନାର୍ଦ୍ଦନ
ସୁଭଦ୍ରାକୁ ହରିନେଲା ପାଣ୍ଡବ ଅର୍ଜ୍ଜୁନ ।
କୋପେ ବୋଲନ୍ତିରେ ଦେଖୁ ଦେଖୁ ଚୋର ଦର୍ପ
ବଳାତ୍କାରେ ହରିନେବ କରେ ଧରି ରୂପ ।
ଆଜ ପାଣ୍ଡବଙ୍କୁ ମୁହିଁ ଆଣିବଇଁ ଧରି
ମାଂସ କାଟିବି ତାଙ୍କର ଟିକି ଟିକି କରି ।

ମାନବ ଛାର ହୋଇ ତା ଏଡ଼େକ ପ୍ରତିଜ୍ଞା
ଗଉରବ କଲାରୁ ସେ କରଇ ଅବଜ୍ଞା ।
ଗୋବିନ୍ଦ ବୋଇଲେ ଦେବ କୋପ କର ଶାନ୍ତି
ପାର୍ଥର କି ଦୋଷ ଆମ୍ଭ ଭଗିନୀ ଅସତୀ ।
ଏଡ଼େ ବଡ଼ ବଂଶରେ ଏ ଉପୁଯାଏ ଲଜ୍ଜା
ବନ୍ଧୁ କୁଟୁମ୍ବ ସମସ୍ତ କଲା ଦେଖ ତେଜ୍ୟା ।
ଯୁବତୀ ଭଗ୍ନିକୁ ଆମ୍ଭେ ନ କଲେ ପ୍ରଦାନ
କାଳେ ହୋଇବ ଆମ୍ଭଙ୍କୁ ଏଡ଼େ ଅପମାନ ।
ବଜ୍ରନାଭ ପ୍ରଦାନ ଯେ ନ କଲା ଦୁହିତି
ବଳାତ୍କାରେ ହରିଲା ଯେ ତାକୁ ରତିପତି ।
ବିବାହ ନ ଦେଲା ବାଣାଅସୁର ଉଷାକୁ
ଅନିରୁଦ୍ଧ ପାଇଁ ଆମ୍ଭେ ଆଣିଲୁ ତାହାକୁ ।
ଯୁବତୀ କନ୍ୟାମାନେ ଯେ ପିତାଘରେ ଥିଲେ
ବହୁତ ଲଜ୍ଜା ଦିଅନ୍ତି ଗୋବିନ୍ଦ ବୋଇଲେ ।
କୋପ ଶାନ୍ତିକର ସ୍ୱାମୀ ଚିତ୍ତ ସ୍ଥିରକର
ଲଜ୍ଜା ହେଲାଣି ପାର୍ଥର କୋପକୁ ସଂହାର ।
ଆମ୍ଭେ ଯେବେ ସଂଗ୍ରାମ କରିବା ଆହେ ଦେବ
ଜିଣି ନ ପାରିଲେ ତହୁଁ ଲଜ୍ଜା ଉପୁଜିବ ।
ନ ଜାଣି କୋପ କଲେ ତ କାର୍ଯ୍ୟହୁଏ ଧ୍ୱଂସ
ନ ବୁଝି କୋପ କଲେକ ସମ୍ପଦ ବିନାଶ ।
ଖାଣ୍ଡବବନ ଦହିଲା ଯେ ଅଗ୍ନି ନିମନ୍ତେ
ତୋଷେ ଅସ୍ତ୍ର ଦେଇଛନ୍ତି ଅଗ୍ନି ଦଇବତେ ।
କିରାତ ରୂପେ ଜିଣିଲା ସେହୁ ଈଶ୍ୱରଙ୍କୁ
ତୋଷେ ଅନେକ ଶର ଯେ ଦେଲେଟି ତାହାକୁ ।
ଅକ୍ଷୟ ତୂଣୀର ପୁଣି ଦେଲେଟି ପାର୍ବତୀ
ତ୍ରଇଲୋକ୍ୟ ଜିତା ସେହି ଅଟେ ବଡ଼ କ୍ଷତ୍ରୀ ।
ବୁଝାଇ କହିଲେ ତାଙ୍କୁ ଦେବ ଚକ୍ରପାଣି
ତସ୍କର ଯେହ୍ନେ ତ ଶୁଣେ ଧର୍ମର କାହାଣୀ ।
ବଳରାମ ଆଜ୍ଞାଦେଲେ ବେଗେ ହୁଅ ସଜ
ପାଣ୍ଡବଙ୍କୁ ମୁହିଁ ଧରି ଆଣିବଇଁ ଆଜ ।
ଏ ନିଷ୍ଠୁର ବାକ୍ୟ ବଳରାମଙ୍କଠୁଁ ଶୁଣି
ନନ୍ଦିଘୋଷ ରଥେ ବିଜେ କଲେ ଚକ୍ରପାଣି ।
ତାଳଧ୍ୱଜ ରଥେ ବିଜେ କଲେ ଦେବ ହଳୀ
ବୋଲନ୍ତି ତୋ ହସ୍ତେ ଶସ୍ତ୍ର ନାହିଁ ବନମାଳୀ ।
ଗୋବିନ୍ଦ ବୋଇଲେ ଦେବ ଜାଣନ୍ତୁ ଏମନ୍ତେ
କୌମଦକୀ ଗଦା ନାହିଁ ଏ ମୋହର ହସ୍ତେ ।
ଗାଣ୍ଡିବ ଧନୁ ମୋହର ନେଇଅଛି ପାର୍ଥ
ତେଣୁ ମୁଁ ହୋଇଅଛି ଦେବୀ ଶୂନ୍ୟହସ୍ତ ।
ଜଗନ୍ନାଥଙ୍କ ବଚନେ ବଳରାମ ରୁଷ୍ଟ
ତୋହର ହେତୁ ଅର୍ଜ୍ଜୁନ କଲା ଏ ଅନିଷ୍ଟ ।
ସାମାନ୍ୟ ମାନବ ପାର୍ଥ ଅଟେ ହୀନଜାତି
ସ୍ୱତ୍ୟବନ୍ତ ଲୋକ ସିନା ମହତ୍ତ୍ୱେ ରହନ୍ତି ।
ଗୋଳକୁଣ୍ଡା ଜାର ଜାତ ଅଟନ୍ତି ଅଜ୍ଞାନ
ଏକ ଭାରିଜା ରମଣେ ପାଞ୍ଚେ ନ୍ୟନ୍ତି ଦିନ ।
ଲଘୁପ୍ରାଣୀକୁ ଯେ ହରି କରଇ ଆଶ୍ୱାସ
ଆପେ ନାଶ ଯାଇ ତାର କାର୍ଯ୍ୟ ଯାଇ ନାଶ ।
ଏତେ କହି ଚଳିଗଲେ ସର୍ବ ଯଦୁବୀରେ
ପାର୍ଥକୁ ଭେଟିଲେ ରଇବତ ପର୍ବତରେ ।
ଅନ୍ଧକୁ ବଧେ ଯେସନେ ଦିଶନ୍ତି କପାଳୀ
ନିର୍ଧୁମ ଅନଳ ଜିଣି ଦିଶେ ତେଜ ଝଳି ।
ସପତଶିକ୍ଷୀ ମଉଳି ଶୋଭିତ ଲଲାଟେ
ଝଲକନ୍ତି ଗଜମୁକ୍ତା ମଣିବନ୍ଧ କ୍ରୋଟେ ।
ଅମୃତ କୁଣ୍ଡଳେ ଶୋଭା ପାଏ କର୍ଣ୍ଣ ବେନି
ଶିରସୀମନ୍ତେ ଖଞ୍ଜିତ ଅଷ୍ଟରତ୍ନ ମଣି ।
ହୃଦରେ ଭୂଷଣ ଦାଡ଼ ତୋଡ଼ର ବାହୁଟି
କର୍ଣ୍ଣେ କର୍ଣ୍ଣାଞ୍ଚଳ ଶୋହେ ଭୁଜରେ କର୍ପଟି ।
କଟିମେଖଳା ବିରାଜେ ପାଦରେ ନୂପୁର
ଯେସନେ ଶୋଭା ଦିଶନ୍ତି ଦେବ ଦିବାକର ।
ତାଳଧ୍ୱଜ ରଥେ ଥାଇ ଦେଖନ୍ତି ମୂଷଳୀ
ଅର୍ଜ୍ଜୁନ କୋଳେ ବସିଛି ନନ୍ଦର ଦୁଲାଳୀ ।
ବଳରାମ ବୋଇଲେ ତୁ ଦେଖରେ ଶ୍ରୀବତ୍ସି
ସୁଭଦ୍ରାକୁ ଅର୍ଜ୍ଜୁନ ତ ପ୍ରତ୍ୟକ୍ଷେ ନେଉଛି ।
ଆମ୍ଭକୁ ତାହାର ଭୟ ନାହିଁ କିଛି ମନେ
ସ୍ୱରୂପ ଦେଖୁଛୁ ଏହା ସହିବା କେସନେ ।
ଗୋବିନ୍ଦ ବୋଇଲେ ଦେହେ ଥିଲେ ବଳବୀର୍ଯ୍ୟ
ସମରେ ଶକତା ଲୋକ ନ କରେ ଚଉର୍ଯ୍ୟ ।
ଏତେକ ବଚନେ ଯହୁଁ ଶୁଣିଲେକ ହଳୀ
ସଉନନ୍ଦ ମୂଷଳକୁ ବୁଲାଇଲେ ତୋଳି ।
ଆରେ ରେ ପାଣ୍ଡବ ତୁହି ଯିବୁ ଆଜ କାହିଁ
ନିଶ୍ଚୟ ପାଞ୍ଜି ପୋଛିଲା ତୋର ଜନ୍ତୁସାଇଁ ।
ମୋହର ଭଗ୍ନି ହରିଲୁ ତୁହି କେଉଁ ଦର୍ପେ
ଖଗେଶ୍ୱର ଆଗେ କିସ କରେ କାଳସର୍ପେ ।
କେବଣ ଗୁଣରେ ତୁହି ହୋଇଛୁ ଶକତା
ଆଜ ଜାଣିବାରେ ତୁହି କେଡ଼େ ବଳବନ୍ତା ।
ଆରେରେ ପାଣ୍ଡବ ତୋର ଏଡ଼ିକି ଭରସା
ତୋର ଜୀବଜନ୍ତୁ କିରେ ନ କଲୁ ତୁ ଆଶା ।
ନିଶ୍ଚୟେ ପାଞ୍ଜି ତୋହର ପୋଛିଲା ସମନ
ମରିବାବେଳେ ହୋଇଲା ବିପରୀତମାନ ।
ପ୍ରୀତି ବୁଡ଼ାଇଲୁ ତୁହି ସ୍ତିରୀମାତ୍ର ଭାବେ
ତୋ ଯୋଗୁ ବିନାଶ ଗଲେ ସେ ଚାରିପାଣ୍ଡବେ ।

କୁଳ ନାଶ କରିବାକୁ ଜନ୍ମିଲୁ ଫାଲଗୁନି
କେବଣ ଦର୍ପେ ଯାଉଛୁ ଭଗିନୀକୁ ଘେନି ।
ସୁମର ପାଣ୍ଡବ ତୋର ସେ ଇଷ୍ଟ ଦେବତା
ଆବର ସୁମର କିରେ ତୋର ପିତାମାତା ।
ବଳରାମଙ୍କ ମୁଖରୁ ଏସନକ ଶୁଣି
କୋପେ ପ୍ରତିଜ୍ଞା କରଇ ବୀର ଫାଲଗୁନି ।
ଭୋ ସ୍ୱାମୀ ହେ ବଳଦେବ ରେବତୀ ବଲ୍ଲଭ
ମୋର କିଛି ଦୋଷ ନାହିଁ ବୁଝ ଏହା ଧ୍ରୁବ ।
ତୋହର ଭଗ୍ନିକୁ ନ କଲୁ ଦେବ ଯେ ରକ୍ଷା
ଆପେ ସ୍ୱୟମ୍ବର ହୋଇ ମୋତେ କଲା କକ୍ଷା ।
ଶୟନ ମନ୍ଦିରେ ମୋର ପଶି ନିଶାକାଳେ
ସ୍ତିରୀମାତ୍ର ହୋଇ ମୋତେ ଧଇଲାକ ବଳେ ।
ତୁ ଦେବ ତ୍ରୈଲୋକ୍ୟ ନାଥ ଅଟୁ ଶଙ୍କର୍ଷଣ
ନ ବିଚାରି କୋପ ମୋତେ କରୁ ଅକାରଣ ।
ଶରଣ ବତ୍ସଳ ନାଥ କରୁଣା ବାରିଧି
ତୋହର ଅନୀତି କଲେ ହେବଟି ଅବିଧି ।
ଅନିମିତ୍ତେ ମୋତେ ତୁମ୍ଭେ କୋପ କରୁଅଛ
ମୁହିଁ ପୁଣି ସଂଗ୍ରାମରେ ନୁହେଁ ସମକଚ୍ଛ ।
ପ୍ରାଣ ଘେନି ଘୁଞ୍ଚିଯାଅ ତୁମ୍ଭେ ବେନିଭାଇ
ଏ ସମ୍ପଦ ବୁଡ଼ିବ ଯେ ସୁଭଦ୍ରାର ପାଇଁ ।
ମିଛେ ପ୍ରତିଜ୍ଞା ତୁମ୍ଭେ ନ କର ଶକର୍ଷଣ
ଫୁଟିକି ବିଦ୍ୟାରେ ଯିବ ଯଶ ମାନ୍ୟ ଜାଣ ।
ତୁମ୍ଭର ଭଗିନୀ ସିନା କଲାକ ଅନୀତି
ଘୁଞ୍ଚିଯାଅ ଏଥୁ ତୁମ୍ଭେ ନ ଭାଙ୍ଗ ପୀରତି ।
ଅର୍ଜୁନର ଏ ପ୍ରତିଜ୍ଞା ଶୁଣିଣ ଯାଦବ
ବେଢ଼ି ଧର ବୋଇଲେ ଯେ କୋପେବଳ ଦେବ ।
ଧାମନ୍ତି ପ୍ରତିଜ୍ଞା କରି ସର୍ବ ଯଦୁବୀରେ
ଧନୁରେ ନାରାଚ ଯୋଚି ଅତି କୋପଭରେ ।
ବିନ୍ଧୁଛନ୍ତି ତୀକ୍ଷଣ ତୀକ୍ଷଣ ଶର ଅନୁକ୍ଷଣେ
କକଡ଼ା ବୃଷ୍ଟିକି ଜିଣି ପଡୁଅଛି ବାଣେ ।
ଝଲକନ୍ତି ନାରାଚେ କି ବିଜୁଳିର ତେଜ
ଅର୍ଜୁନ ରଥକୁ ଚାହିଁ ବିନ୍ଧନ୍ତି ନାରାଚ ।
ଶରର ଗର୍ଜନ ଜିଣି ଧନୁର ଟଙ୍କାର
ଧର ଧର ମାର ମାର ଶୁଭେ ନିରନ୍ତର ।
ମହିଷା ଯୁଦ୍ଧେ ଯେମନ୍ତେ ଧାମନ୍ତେ ଭୈରବୀ
ତେସନକ ଯଦୁବୀରେ ପାରୁଛନ୍ତି ବୋବି ।
ବୀର ଡାକ ଶୁଣି ବଢ଼େ ଅର୍ଜୁନ ରାଗ
ପାର୍ଥକୁ ପ୍ରଦ୍ୟୁମ୍ନ ପଛ କରି ହେଲା ଆଗ ।
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଯେ ଅକ୍ରୁର ସାତ୍ୟକି
ଅର୍ଜୁନ କତିରେ ଆଗ ହେଲେ ଥାଟ ଦେଖି ।
ଗଦା ଶକ୍ତି ମୃଦ୍ଗର ଛେଲ ଚକ୍ର କାତି
କୁନ୍ତ ଖଡ଼ଗ ଘେନିଣ ରାଗେ ପ୍ରହାରନ୍ତି ।
ଗୋବିନ୍ଦଙ୍କ ପୋଏ କୋପେ ଉଠିଲେ ଗରଜି
ଦେଖି ଦୂରୁ ଯଦୁବୀରେ ପଳାଇଲେ ଭାଜି ।
ଶସ୍ତ୍ରମାନ ଥୋଇଦେଲେ ରାମଙ୍କ ଛାମୁରେ
କାହାର ତୁଲେ ଯୁଝିବୁ ଦେବ ଏ ସମରେ ।
ଗୋବିନ୍ଦ ବୋଇଲେ ସ୍ୱାମୀ ଶୁଣ ନୀଳାମ୍ବର
ଲକ୍ଷେ ଷାଠିଏ ସହସ୍ର ଅଶୀଏ କୁମର ।
ସମସ୍ତେ ଆବୋରିଛନ୍ତି ଯାଇ ଅର୍ଜୁନକୁ
କେ ଯୁଦ୍ଧେ ଜିଣିବ ଶାମ୍ବ ଗଦ ପ୍ରଦ୍ୟୁମ୍ନକୁ ।
ବାଳକାଳେ ଯେ ଶମ୍ବର ବୀର ନାଶକଲା
ମାୟାବତୀ ଘେନି ବାର ବରଷେ ଅଇଲା ।
ଯୁଗାନ୍ତକ ଚକ୍ରେ ନାଶି ନ ପାରଇ ମୁହିଁ
ଯୋଗେ ମୋହର ହସ୍ତରେ ଗଦା ଚକ୍ର ନାହିଁ ।
ଦେବତାଙ୍କର କାର୍ଯ୍ୟ ତ ନୋହିଛି ସମ୍ପୂର୍ଣ୍ଣ
ଅବଶ୍ୟ ପରକୁ ଆମ୍ଭେ କରନ୍ତେ ପ୍ରଦାନ ।
ଶୁଣି ମହାକୋପାନଳ ଦେବ ବଳରାମ
ଭିଆଇଛୁ ସିନା ବାବୁ ତୁ ପୁରୁଷୋତ୍ତମ ।
ମୁଁ ଯେ ଅଣାଇଲି ଦୁର୍ଯ୍ୟୋଧନ ନୃପତିଙ୍କୁ
ବେଳହୁଁ ତ ନାସ୍ତି କିମ୍ପା ନ କଲୁ ଆମ୍ଭଙ୍କୁ ।
ଦଣ୍ଡ ଘେନି ବରବେଶେ ଅଇଲା ନୃପତି
ଏଣେ ସିନା ଲଜ୍ଜା ମୋତେ ହୋଇଲା ଶ୍ରୀପତି ।
ଗୋବିନ୍ଦ ବୋଇଲେ ସ୍ୱାମୀ ଶୁଣ ସଙ୍କର୍ଷଣ
କେ ଆନ କରିବ ପ୍ରଜାପତିର ଘଟଣ ।
ଆମ୍ଭେ ବାଞ୍ଛା କଲୁ ବଡ଼ଜଣଙ୍କୁ ଦେବାକୁ
ଧାତା ସର୍ଜିଛି ସୁଭଦ୍ରା ସଙ୍ଗେ ଅର୍ଜୁନକୁ ।
ଯେ ଯାହାର ସ୍ୱାମୀ ସେ କି ତାକୁ ଦେବ ନାହିଁ
ଆମ୍ଭର ଦ୍ୱନ୍ଦ୍ୱ କରିଲେ ସେ କାର୍ଯ୍ୟ କି ରହି ।
ବଦନ୍ତି ଅସ୍ତି ଶୁଣ ବୈବସ୍ୱତ ମନୁ
ବରବେଶେ ଅଇଲା ସେ ଗାନ୍ଧାରୀର ସୁନୁ ।
ଅପ୍ରମିତ ବଳ ସଙ୍ଗେ ଘେନି କୁରୁନାଥ
ବିଜେ ସମାରୋହେ ଆସି ରୈବତ ପର୍ବତ ।
ଏମନ୍ତ ସମୟେ ଚାରଗଣ ଚଳିଯାଇ
କଉରବ ନାଥ ଆଗେ ବାର୍ତ୍ତା ଦେଲେ ନେଇ ।
ଶୁଣିଣ କୁରୁରାଜାଧିରାଜ ଶିରୋମଣି
ଦୁରାପଦ କଥା ଏକ ହେଲା ଏହିକ୍ଷଣି ।
ସୁଭଦ୍ରାକୁ ହରିନେଲା ପାଣ୍ଡବ ଅର୍ଜୁନ
ବଳେ ଘେନି ଦ୍ୱାରକାରୁ ଯାଇଛି ଏକ୍ଷଣ ।
ସାତବଂଶ ଯୋଦ୍ଧା ସଙ୍ଗେ ଘେନି କୃଷ୍ଣରାମ
ଅର୍ଜୁନର ତୁଲେ କରୁଅଛନ୍ତି ସଂଗ୍ରାମ ।

ଶୁଣିଣ ବିଶାଦ କୁରୁକୁଳ ଅଧିପତି
ଯାବତକାଳେ ପାଣ୍ଡବ କରନ୍ତି ଅନୀତି ।
ଆହେ ଭୀଷ୍ମ ଦ୍ରୋଣ ତୁମ୍ଭେ ବୁଝିଲ କେମନ୍ତ
ଏକଯୋଗେ କରୁଥାଅ ପାଣ୍ଡବ ଆମ୍ଭନ୍ତ ।
ବସୁଦେବ ନନ୍ଦ ରାମ କୃଷ୍ଣ ଅନୁମତେ
ସୁଭଦ୍ରାକୁ ବିଭାହେବା ପାଇଁ କଲେ ମୋତେ ।
ସବୁରି ମତେ ହସ୍ତିନାପୁରେ ଦୂତପେଶି
ବଳେ ତାକୁ ନିଏ ପାର୍ଥ ଦ୍ୱାରକାରେ ପଶି ।
ଭୀଷ୍ମ ବୋଲେ ଆମ୍ଭେ ସହଦେବହୁଁ ଶୁଣିଲୁ
ତେଣୁ କନକ ବେଦୀରୁ ବାହୁଡ଼ାଇ ଥିଲୁ ।
ଆମ୍ଭ ବଚନ ନ କଲୁ ତୁହି କୁରୁଦେବ
ଏବେ ଏଠାରୁ କେମନ୍ତ ବାହୁଡ଼ିଣ ଯିବ ।
ଦୁର୍ଯ୍ୟୋଧନ ବୋଇଲା ଯେ ହୋଇଲା ଏମନ୍ତ
ନିଶ୍ଚେ ପ୍ରାଣତ୍ୟାଗୀ ଏଥେ ହେବ ବୀରପାର୍ଥ ।
ଯେବେ ସୁରଇନ୍ଦ୍ର ଆସି ତାହାକୁ ରଖଇ
ତ୍ରୈଲୋକ୍ୟ ମଧ୍ୟରେ ଆଜ ତାର ରକ୍ଷାନାହିଁ ।
ଚଳାଅ ଥାଟ ମୋହର ଅର୍ଜୁନ ସମୀପ
ସମରେ ଆଗ ତାହାର ଭାଙ୍ଗିବି ମୁଁ ଦର୍ପ ।
ଭୀମ ବୋଇଲା ତୁ କୋପ କରୁ ଯେ କାହାକୁ
ଜାଣି ଶୁଣିକରି କିମ୍ପା ଅଇଲୁ ଏଠାକୁ ।
ତୋର ବଳେ ଅର୍ଜୁନକୁ କି କରିପାରିବୁ
ସମସ୍ତଙ୍କ ସହ ପରାଭବ ତୁ ପାଇବୁ ।
ବାଉନ ବାଉନ ଭାର ଗଦା କରେ ଘେନି
ପ୍ରତିଜ୍ଞା କରଇ ବୀରବର ହେ ପାବନି ।
ଯୁଧିଷ୍ଠି ବୋଇଲେ ରହ ରହ ଭୀମସେନ
ଅର୍ଜୁନ ତୁଲେ ଯୁଦ୍ଧ କରନ୍ତି ସଂକର୍ଷଣ ।
ଯାବତ କାଳ ଆମ୍ଭଙ୍କୁ କୃଷ୍ଣ କରେ ରକ୍ଷା
ତାର ସଙ୍ଗେ ଆମ୍ଭେ କରି ପାରିବାକି କକ୍ଷା ।
ଯୁଧିଷ୍ଠିର ପଚାରିଲେ ଶୁଣ ସହଦେବ
ହରି ଅର୍ଜୁନ ଦୁହିଁଙ୍କ ଭାବ କି ଅଭାବ ।
କରପତ୍ର ଯୋଡ଼ି ସହଦେବ ଯେ ବୋଇଲେ
ସୁଭଦ୍ରାଙ୍କୁ ପାର୍ଥ କୃଷ୍ଣ ଆଜ୍ଞାରେ ହରିଲେ ।
ଦେବଙ୍କ ଦୁର୍ଲ୍ଲଭ ସ୍ୱାମୀ ଯେବଣ ଦ୍ୱାରକା
ଅର୍ଜୁନର ଦର୍ପ କାହିଁ ଏଡ଼େକ ନିଶଙ୍କା ।
ଯଦ୍ୟପି ସଂଗ୍ରାମ କରୁଛନ୍ତି ରାମ ତୁଲେ
ଧନୁ ଚକ୍ର ଗଦା ହରି ଅର୍ଜୁନକୁ ଦେଲେ ।
ଲକ୍ଷେ ଷାଠିଏ ସହସ୍ର ଅଶୀ କୃଷ୍ଣବଳ
ଅର୍ଜୁନ ଆବୋରି କରୁଛନ୍ତି ଯେ ଗୋଳ ।
ସହଦେବ ମୁଖୁ ଶୁଣି ଏସନକ ବାଣୀ
ଅନେକ ସାନନ୍ଦ ହେଲେ ଧର୍ମ ନୃପମଣି ।

ଭୀମଙ୍କୁ ବୋଇଲେ ବାଟ କଢ଼ାଅରେ ଭାଇ
ଅର୍ଜୁନ କତିକୁ ଆମ୍ଭେ ଯିବା ବେଗହୋଇ ।
ଭୀମ ବୋଲେ କୁରୁଥାଟ ପଡୁଅଛି ମାଡ଼ି
କେଉଁବାଟେ ଯିବା ଆମ୍ଭେ ତାହାଙ୍କୁ ଯେ ଏଡ଼ି ।
ହସ୍ତୀ ଏକ ଚଢ଼ି ଦେବ ସେ ମାନଗୋବିନ୍ଦ
ଥାଟ ଚଳାଇଲା ଅତିବେଗେ ସେ ନରେନ୍ଦ୍ର ।
ଦୁଃଶା ଶକୁନି ଯେ କର୍ଣ୍ଣ ଶଲ୍ୟ ସେନାପତି
ଅଶୀଲକ୍ଷ ଯୋଦ୍ଧା ଛନ୍ତି ତାର ପଛକତି ।
ପ୍ରଦ୍ୟୁମ୍ନ ପଚାରେ ଦେବ ଦେଖ ଫାଲଗୁନି
ପଛ କତିରେ କେବଣ ରାଜାର ସଇନି ।
ପ୍ରଦ୍ୟୁମ୍ନର ବଚନେ ଯେ ଚାହିଁଲେ ଅର୍ଜୁନ
ସାଗର ପ୍ରାୟ ଆସନ୍ତି କୋରବ ସଇନ୍ୟ ।
ବଡ଼ ସମ୍ଭାରରେ ସେହୁ ଘେନି ଆସେ ଥାଟେ
ବ୍ରହ୍ମାଣ୍ଡେ ଉଛୁଳୁଅଛି ସୈନ୍ୟଙ୍କ ମୁରାଟେ ।
ନବଯୁଣ ମାଡ଼ି ରହି ଅଛନ୍ତି ସଇନି
ଆକାଶ ଉଛୁଳିଅଛି ସୈନ୍ୟ ମୁଖ ଧ୍ୱନି ।
ଦେଖୁ ଦେଖୁ ହସ୍ତୀ ଚଳାଇଲେ କଉରବେ
ସହସ୍ରପୁରେ ବେଢ଼ିଲେ ଅର୍ଜୁନକୁ ବେଗେ ।
ଶୁଣ ଆହୋ ମହାରାଜା ଅର୍ଜୁନ ଚରିତ
କ୍ଷୀରୋଦ ମଧ୍ୟରେ ଯେହ୍ନେ ମନ୍ଦର ପର୍ବତ ।
କ୍ଷୀର ସମୁଦ୍ର ହୋଇଲା ଯେ ଦଧି ନଉତି
ମନ୍ଦରକୁ ଖୁଆ କରି ଦେବତାଏ ମନ୍ଥି ।
କଉରବ ଥାଟ କ୍ଷୀର ଅବ୍ଧି ହେଲା ଜାଣ
ଅର୍ଜୁନର ରଥ ଖୁଆ କରିବ ମନ୍ଥନ ।
କୁରୁଥାଟର ମନ୍ଥନକାରୀ ସବ୍ୟସାଚୀ
ଅସଂଖ୍ୟ ଥାଟ ଦେଖିଣ ବିଷାଦ ଶ୍ରୀବତ୍ସି ।
ଦୁର୍ଯ୍ୟୋଧନ ଥାଟ ଦେଖି ଧାଏଁ ବୃକୋଦର
ବାଉନ ବାଉନ ଭାର ଗଦା ବେନିକର ।
ଘୋଟିଲାକ ବୃକୋଦର କୌରବ ସଇନି
ଶରୀର ତା ବିକାଶିଲା ମହାକୋପ ଘେନି ।
ଦୁର୍ଯ୍ୟୋଧନ ବରବେଶ ଦେଖି ବଳରାମେ
ମୂଷଳ ଘେନି ଉଲ୍ଲାସେ ଧାଇଁଲେ ସଂଗ୍ରାମେ ।
ମହାବିଶ୍ୱରୂପ କୋପେ ଧଇଲେ ସେ ହଳୀ
ପାଦଘାତେ ଟଳ ଟଳ ହୁଏ ବସୁନ୍ଧରୀ ।
ରଡ଼ିର ଘାତେ ତରସ୍ତ ହେଲେ ଦିଗପାଳେ
ରହିଲେ ହେ ବିଦ୍ୟାଧରେ ଗଗନ ମଣ୍ଡଳେ ।
କୋଟିଏ ସିଂହର ପରାକ୍ରମୀ ହଳପାଣି
ଲକ୍ଷେ ଯୋଜନ କ୍ରାସିଲେ ଦେବ ବଜ୍ରପାଣି ।
ବିଶ୍ୱରୂପ ପ୍ରକାଶିଲେ ଯହୁଁ ନୀଳାମ୍ବର
ବିକାଳ ସୁଭଦ୍ରା ଦେଖି ରଥର ଉପର ।

ବଳରାମ ବିଶ୍ୱମୂର୍ତ୍ତି ଦେଖି ବୀର ପାର୍ଥ
ବୋଲେ ରୋଦନ କରିବେ ଦେବ ହଳହସ୍ତ ।
ସମରେ କେ ନ ରହିବେ ବଳରାମ ଡାକେ
କେସନ ଦେହ ଧରିବ ତାହାଙ୍କ ସମ୍ମୁଖେ ।
ଏହିକ୍ଷଣି ଭଗ୍ନ ହେବ ଏହି ତୁମ୍ଭ ରଥ
ଏଥକୁ କି କର ମୋତେ କହ ପ୍ରାଣନାଥ
ଆଜ ରାମ ମୁଖେ ପଡ଼ି ନ ବର୍ତ୍ତିବେ କେହି
ସୁଲଭକ ଅସୁଲଭ କଲା ଆଣି ବିହି ।
ଅର୍ଜ୍ଜୁନ ବୋଇଲେ ସଖୀ ହୋଇଲୁକି ବାଇ
ଏ କଥାରେ ଆମ୍ଭଙ୍କୁ ସେ ଜିଣି ନ ପାରଇ ।
ଦେଖ ଦେଖ ସୁଭଦ୍ରା ଗୋ ମୋହର ପ୍ରତାପ
ଏକା ନାରାଚେ ଭାଙ୍ଗିବି ରାମଙ୍କର ଦପ ।
ରାମ ସନ୍ନିଧେ ପ୍ରବେଶ ଯାଇଁ କୁରୁପତି
ଓହ୍ଲାଇଲେ ଭୀଷ୍ମ ଦ୍ରୋଣ ରଥରୁ ତଡ଼ତି ।
କର୍ଣ୍ଣ ଶଲ୍ୟ ଭୂରିଶ୍ରବା କୃପା ହିଁ ଶକୁନି
ପ୍ରଣାମ କଲେ ରାମଙ୍କ ଧରି ପାଦବେନି ।
ବଳରାମ ବୋଇଲେ ହେ ଶୁଣ ତୁ ଗାଙ୍ଗେୟ
ଏସନ ଅନୀତି କଲା ପଣ୍ଡୁର ତନୟ ।
ବଳାତ୍କାରେ ହରିନେଲା ପୁରୁଁ ସୁଭଦ୍ରାକୁ
ଆମ୍ଭେ ଅଣାଇଲୁ ଦୁର୍ଯ୍ୟୋଧନ ନୃପତିକୁ ।
ଭୀଷ୍ମ ବୋଇଲେ ଭୋଦେବ କୋପ ସିଂହାରିବା
ନ ଜାଣି ଦୋଷ ଅର୍ଜ୍ଜୁନ କଲାଣି ସେ ଅବା ।
କୁରୁ ପାଣ୍ଡବେ ନୁହନ୍ତି କିଛି ଭିନ୍ନାଭିନ୍ନ
ଯେ ଦୁର୍ଯ୍ୟୋଧନ ରାଜା ସେ ପ୍ରତ୍ୟକ୍ଷେ ଅର୍ଜ୍ଜୁନ ।
ଦୁର୍ଯ୍ୟୋଧନ ବୋଲେ ଭୀଷ୍ମ ଯାହା ତୁମ୍ଭେ କହ
ମୋର ପାଶେ ଥାଇ ତୁମ୍ଭେ ପାର୍ଥେ କରସ୍ନେହ ।
ଆଜ ପାଣ୍ଡବଙ୍କୁ ଜାଣ କେ କରିବ ରକ୍ଷା
ତୋର ଯେବେ ସ୍ନେହ ଅଛି କର ତୁହି ରକ୍ଷା ।
ତୁମ୍ଭେ ମୋହର ସଂଗ୍ରାମ ଦେଖ ଦେବରାଜ
ଜୀବନ୍ତେ କି ପାଣ୍ଡବଙ୍କୁ ଥୋଇବି ମୁଁ ଆଜ ।
ବୋଇଲେ ଦୁର୍ଯ୍ୟୋଧନକୁ ଚାହିଁ ଜଗନ୍ନାଥ
ପାଣ୍ଡବଙ୍କ ତୁଲେ ତୁ କି ସଂଗ୍ରାମେ ସମର୍ଥ ।
ଖାଣ୍ଡବ ବନ ଦହନେ ଜିଣି ଅମରାଧି
ଅଗ୍ନିକି ତୋଷିଲା ସେହି ଦେଇ ମହୌଷଧି ।
ପାଣ୍ଡବାସୁର ଭକ୍ଷଣ କରୁଥିଲା ଆସି
ତୁମ୍ଭଙ୍କୁ ସେ ରକ୍ଷାକଲା ଅସୁରଙ୍କୁ ନାଶି ।
ପାଞ୍ଚାଳଦେଶେ ଦ୍ରୌପଦୀ ସ୍ୱୟମ୍ବର କାଳେ
ଲକ୍ଷେକ ରାଜା ଜିଣିଲେ ଲାଖବିନ୍ଧ ହେଳେ ।
ଅନେକ ଶାସ୍ତି ପାଇବ ଅର୍ଜ୍ଜୁନର ହସ୍ତେ
ଲେଉଟି ଯାଅ ଆପଣା ପୁରେ ତୋଷଚିତ୍ତେ ।

ଦ୍ୱାପର ଯୁଗେ ଅର୍ଜ୍ଜୁନ କ୍ଷତ୍ରି କୁଳମଲ୍ଲ
ପୃଥିବୀର ଭାରାଭର ଧ୍ୱଂନାଶନେ ଶଲ ।
ଗଜ ମୂର୍ଖ ନ ଶୁଣଇ ଯେହ୍ନେ ଶାସ୍ତ୍ରବାଣୀ
ତେହ୍ନେ ନ ଶୁଣଇ କୁରୁପତି କୃଷ୍ଣବାଣୀ ।
ଅନେକ କଥା କହିଲୁ ତୁହି ଦେବରାଜ
କେମନ୍ତେ ରକ୍ଷା କରିବୁ ଅର୍ଜ୍ଜୁନକୁ ଆଜ ।
ଯେସନରେ ତିରଣକୁ ବହନ ବହନି
ତେହ୍ନେ ପାର୍ଥଙ୍କୁ ଦହିବି କୁରୁସୈନ୍ୟ ଘେନି ।
ତାରକ ସଂଗ୍ରାମେ ଯେହ୍ନେ ଧାମଇଁ କୁମାର
ଅର୍ଜ୍ଜୁନ ମହିମା ଜାଣ ତେସନ ପ୍ରକାରେ ।
କେଉଁ ଅସ୍ତ୍ର ଦେଇଥିଲେ ଅନଳ ଦେବତା
ତାହା ସୁମରଣା କଲା ପାର୍ଥ ବଳବନ୍ତା ।
ସେ ସମସ୍ତ ବାଣ ଆସି ହୋଇଲା ପ୍ରାପତ
ପିନାକ ଧନୁ ଆବର ଶସ୍ତ୍ର ପାଶୁପତ ।
ଅଗ୍ନି ଦେବତା ଦେଲେ ଯେ ରଥ ନନ୍ଦିଘୋଷ
ବାବୁ ମୀନକେତନ ତୁ ରଥେ ଆସି ବସ ।
ଅର୍ଜ୍ଜୁନ ବଚନ ଶୁଣି ଉଠିଲା ମଦନ
ରଥେ ବିଜେ କଲା ବେଗେ ରୁକ୍ମିଣୀ ନନ୍ଦନ ।
ସଂଗ୍ରାମର ସମାରୋହ ଦେଖାଇ ଅନଙ୍ଗ
କଉରବ ଥାଟଯାକ ଆବୋରିଲେ ବେଗ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ସବୁରି କରେ ଶୋଭନ ଶଙ୍ଖ ଚିତ୍ର ଚିହ୍ନ ।
ଶ୍ରୀହସ୍ତରେ ଧନୁ ଘେନି ଛନ୍ତି କୃଷ୍ଣ ବାଳ
ମହା ଅନଳକୁ ଜିଣି ତେଜ ଅନର୍ଗଳ ।
ପେଶନ୍ତେ ସେ ଦିବ୍ୟ ବାଣମାନ ବାଛି ବାଛି
ବଳରାମ ଆବୋରିଲେ ରଣେ ସବ୍ୟସାଚୀ ।
ରାମ ବୋଲୁଛନ୍ତି ଚାହିଁ ଭୀଷ୍ମଙ୍କର ମୁଖ
ବଳିୟାର ଚାର ଏହା ପ୍ରତିଜ୍ଞା ହେ ଦେଖ ।
ଭଗ୍ନିକି ମୋହର ହରିନିଏ ବଳାତ୍କାରେ
ଆବର ଯୁଦ୍ଧ କରଇ ମୋହର ସଙ୍ଗରେ ।
କୋପେ ହଳ ମୂଳକୁ ବୁଲାଇଲେ ଟୋଳି
ଅର୍ଜ୍ଜୁନ ଛାମୁରେ ବିଜେ ମହାବଳୀ ହଳୀ ।
ବଳରାମ କ୍ରୋଧେ ପୁଣି ବୋଇଲେ ପାର୍ଥକୁ
ପାଣ୍ଡବାରେ କେ ରଖଇ ତ୍ରିଲୋକ୍ୟେ ତୁମ୍ଭଙ୍କୁ ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ ପ୍ରୀତି ବଡ଼ ଜାଣ
ସଂଗ୍ରାମ କଲେ ଦେବ କେ କାହାର ରକ୍ଷଣ ।
ପୀରତିର ଦାସ ମୁହିଁ ଭକତ ବତ୍ସଳ
ଦୁଃଖ ଉଦ୍ଧାରଣ ସଦା ଶରଣ ସୋଦର ।
ଯଦ୍ୟପି ତୁମ୍ଭ ଆମ୍ଭର କରିବା ପୀରତି
ତୋର ପାଦତଳେ ଶତଦଣ୍ଡ ମୋ ପ୍ରଣତି ।

ତୁ ଯେବେ ମୋହର ତୁଲେ କରିବୁ ଅଭାବ
ଏକା ଅର୍ଜ୍ଜୁନକୁ ସହସ୍ରେକ ବଳଦେବ ।
ପ୍ରସନ୍ନ ବିନ୍ଦ୍ରା ମୁଁ ପାରେ ତ୍ରଇଲୋକ୍ୟ ଘୋଟି
ଦୁଷ୍ଟଜନ ନିବାରଇ କକ୍ଷା ଜଗଜ୍ଜେଠ ।
ଆଜୁଁ ଦେବକାର୍ଯ୍ୟ ହେବ ପୃଥିବୀ ଉଶ୍ୱାସ
ଆଜି ଏଥେ ଥୋକେ ଦୁଷ୍ଟଲୋକ ଯିବେ ନାଶ ।
ଅର୍ଜ୍ଜୁନ ପ୍ରତିଜ୍ଞା ଅତି ଦୁରାପଦ ଦେଖି
ବକ୍ର ମୂଷଳ ଧଇଲେ ଉପ୍ରୋଧ ଉପେକ୍ଷି ।
ଧଇଲେ ପୁଣି ସେ କୋପେ ଏକ ଲୁହାଧନୁ
ଗୋଟିଏ ତନୁ ବିହିଲେ ରୁକ୍ମିଣୀର ସୁନୁ ।
କୋଟିଏ ନାରାଚ ବେଗେ ଯୋଚି ରୋଷଭରେ
ଅର୍ଜ୍ଜୁନକୁ ମାଇଲେକ ପ୍ରଭୁ ନୀଳାମ୍ବରେ ।
ଶର ସମ୍ଭାଳ ବୋଲନ୍ତି ଦେବ ବଜ୍ରପାଣି
ଆକର୍ଷି ନାରାଚ ପୁଣି ପେଷୁଛନ୍ତି ଟାଣି ।
ସହସ୍ର ଆଦିତ୍ୟ ତେଜ ପ୍ରାୟ ଶରଜ୍ୟୋତି
ଏମନ୍ତ ଲକ୍ଷେ ନାରାଚ ପେଷିଲେ ସେ ଧାତି ।
ଶ୍ରୀକରେ ଧନୁ ଧରିଣ ବୀର ଫାଲ୍ଗୁନି
ପ୍ରହାର କଲେ ନାରାଚ ବାଛି ବାଛି ଘେନି ।
ଶରକୁ ଯେ ପ୍ରତିଶର ଅର୍ଜ୍ଜୁନ ସମ୍ପାଦି
ବଳରାମଙ୍କର ଶର ପକାଉଛି ଛେଦି ।
ଯାନ ବାହନ ଚଢ଼ିଣ ଆସି ବୃନ୍ଦାରକେ
ଆକାଶେ ଥାଇ ସମର ଦେଖନ୍ତି କୌତୁକେ ।
ନାରଦ ଯେ ବିଜେ କଲେ ବ୍ରହ୍ମବୀଣା ବାଇ
କଳିପ୍ରିୟ କୁତୁହଳ ଦେଖିବାର ପାଇଁ ।
ଲାଗୁରେ ସଂଗ୍ରାମ ହେଉ ରଣରଙ୍ଗ ଗୋଳ
ସାଧୁରେ ପାଣ୍ଡବ ଧନ୍ୟ ଧନ୍ୟ ତୋର ବଳ ।
ଅର୍ଜ୍ଜୁନ ବଳରାମଙ୍କ ଶର ବିନ୍ଧା ବିନ୍ଧି
ଉଭୟ ଥାଟରେ ଦୁହେଁ ଯେଣୁ ସମଯୋଦ୍ଧି ।
ଲାଗବ ଶରେ ଯେ ଯହୁଁ ନ ପାରିଲେ ଜିଣି
ଦେବଶର ମାନ ତହୁଁ ପେଷିଲେକ ଆଣି ।
ତ୍ରୈଲୋକ୍ୟ ଘୋଟଇ ଯେହୁ ନିରିଘାତ ବାଣ
କୋପରେ ତାହା ପ୍ରହାର କଲେ ସଙ୍କର୍ଷଣ ।
ଜ୍ୱାଳବତୀ ନାମେ ବାଣ ଧନଞ୍ଜୟ ବିନ୍ଧି
ବଳରାମଙ୍କର ବାଣ ପକାଇଲେ ଛେଦି ।
ରାଗେ ପେଶିଲେ ନିର୍ଘାତ ବାଣ ସଙ୍କର୍ଷଣ
ତିଆରି କହିଲେ ଘେନ ପାଣ୍ଡବ ପରାଣ ।
ତହୁଁ କୋପେ ମାରେ ଧନଞ୍ଜୟ ବଜ୍ରସୂଚୀ
ଛେଦିଲେ ବଳରାମଙ୍କ ବାଣ ସବ୍ୟସାଚୀ ।
ସହସ୍ରଧାର ଅମୋଘ କେବଣ ଶକତି
ଅର୍ଜ୍ଜୁନକୁ ପେଶିଲେ ସେ ରେବତୀର ପତି ।

ମହା ଅନଳ ଜିଣି ସେ ଶକ୍ତି ମହାତେଜ
ଆକାଶୁ ଅନ୍ତର ହୋଇଗଲେ ଦେବରାଜ ।
ପାର୍ଥ ରଖ ରଖ ବୋଲି ଶୁଭିଲାକ ବାଣୀ
ବ୍ରହ୍ମାଙ୍କ ଶର ଅର୍ଜ୍ଜୁନ ପେଶେ ଗୁଣ ଟାଣି ।
ଅର୍ଜ୍ଜୁନର ଶର ତିନି ଯୋଜନକୁ ଘୋଟି
ରାମଙ୍କ ସହସ୍ରଧାର ପକାଇଲା କାଟି ।
ଭୁଜବାଣ ନାମ ଅଟେ ଯେଉଁ ଦେବଶର
ଘେନିଲେ ଶ୍ରୀକରେ ସେହି ବାଣ ନୀଳାମ୍ବର ।
ନ ଜିଣିଲେ ନ ଫେରେ ସେ ଅପାଲଟା ଶର
ଯାହାକୁ ପେଷିବ ମୃତ୍ୟୁ ହୋଇବ ତାହାର ।
ଆକ୍ରାନ୍ତ ହୋଇଣ ରାମ ସେ ଶର ପେଶଇ
ପ୍ରଳୟ କାଳ ପ୍ରାୟେକ ସେ ବାଣ ତ୍ରାସଇ ।
ପଳାଇଲେ ବାଣ ତ୍ରାଶ ଦେଖିଣ ସଇନି
ଏକା ରହିଅଛି ପାର୍ଥ ସୁଭଦ୍ରାକୁ ଘେନି ।
ତ୍ରିଭୁବନେ ବିକଶିଲା ସେ ବାଣର ତେଜ
ସଚରାଚର ନିଶ୍ଚୟ ହୋଇବ ଦହିର୍ଯ୍ୟ ।
ଭୁଜବାଣର ସେ ତେଜ ଦେଖି ଜଗନ୍ନାଥେ
ନୀଳବାଣ ଦେଲେ ନେଇ ଅର୍ଜ୍ଜୁନର ହାତେ ।
କାହିଁରେ କ୍ଷୟ ନୁହଇ ସେହି ଭୁଜବାଣ
ନୀଳବାଣର ଦର୍ପେ ସେ ହୁଏ ନିବାରଣ ।
ନୀଳବାଣ କ୍ଷେପିଲେ ସେ ବାସବର ବଳା
ବଳରାମଙ୍କ ବାଣକୁ ଖର୍ବେ ସଂହାରିଲା ।
ଆକାଶରେ ଦେବଲୋକେ କଲେ ଜୟ ଜୟ
ଧନ୍ୟ ଅର୍ଜ୍ଜୁନ ଧନ୍ୟ ତୋ ନାମ ଧନଞ୍ଜୟ ।
ପୁଷ୍ପବୃଷ୍ଟି କଲେ ଦେବେ ଅର୍ଜ୍ଜୁନର ମାଥ
ବିଜୟ ନାମ ବୋଇଲେ ତହୁଁ ବୀର ପାର୍ଥ ।
ପ୍ରଦ୍ୟୁମ୍ନର ତୁଲେ କଲେ ଦୁର୍ଯ୍ୟୋଧନ ଯୁଦ୍ଧ
ବହୁତ ସମର କଲେ ଦୁହେଁ ରଣ ମଧ୍ୟ ।
ଶାମ୍ବ କୁମରର ତୁଲେ ଯୁଝେ ଦୁଃଶାସନ
ଗଦତୁଲେ ଦୁର୍ଜ୍ଜୟର ଯୁଦ୍ଧ ଅନୁକ୍ଷଣ ।
ସଂଗ୍ରାମ କରନ୍ତି ଭୀମ କର୍ଣ୍ଣ ମହାରଥି
ଶକୁନିର ତୁଲେ ଯୁଝେ ସହଦେବ ମନ୍ତ୍ରୀ ।
ଦ୍ରୋଣଙ୍କ ସଙ୍ଗେ ସମର କରାଇ ସାତ୍ୟକି
ଭୀଷ୍ମଙ୍କ ତୁଲେ ଅକ୍ରୁର ଯୁଦ୍ଧ କରେ ଡାକି ।
କାଳିନ୍ଦୀ ସନନ୍ଦ ନାମେ ଅଟେ ଯବନିକ
ଭୁରିଶ୍ରବା ସଙ୍ଗେ ସେହି ଯୁଝଇ ଅନେକ ।
ସତ୍ୟଙ୍କର ନନ୍ଦନ ଯେ ଜମ୍ବୁ ଶମ୍ଭୁ ରାଣ
ଶଲ୍ୟର ତୁଲେ ସଂଗ୍ରାମ ତାଙ୍କ ଅପ୍ରମାଣ ।
ନକୁଳ କୃପ ଏ ଦୁହେଁ ହୋଇଲେକ ଭେଟ
ଅପର୍ଯ୍ୟାପ୍ତ ରଣ କରି ମଚ୍ଛିଲେ ସେ ଥାଟ ।

ଗଦାଭାର ବୁଲାଇଣ ଭୀମସେନ ଗଜି
କର୍ଣ୍ଣର ରଥକୁ ବେଗେ ପକାଇଲା ଭାଙ୍ଗି ।
ଦ୍ରୋଣଙ୍କ ରଥ ଧଇଲା ଯାଇ କୋପ ଭରେ
ପିଟିଲା ନେଇ ଭୀଷ୍ମଙ୍କ ରଥରେ ଉପରେ ।
ଭାଙ୍ଗି ବେନି ରଥ ହୋଇଗଲା ମସିଗୁଣ୍ଡା
ରଣରଙ୍ଗେ ଗର୍ଜଇ ସେ ମାରୁତି ପ୍ରଚଣ୍ଡା ।
ଯେସନେ ଗର୍ଜଇ ସିଂହ ହସ୍ତୀବଳ ଦେଖି
ପ୍ରହାର କଲେ ମାରୁତି ଉପ୍ରୋଧ ଉପେକ୍ଷି ।
ପ୍ରଦ୍ୟୁମ୍ନ ସମର ମୁଖେ କହି ତ ନ ପାରି
ଅନେକ ସୈନ୍ୟ ମାଇଲା ଶମ୍ବର ଅଇରି ।
ଅନଙ୍ଗର ଶରେ ରଣେ ପଡ଼ନ୍ତି କୌରବେ
ରଣରଙ୍ଗେ ବିହରନ୍ତି ଆନନ୍ଦେ ପାଣ୍ଡବେ ।
ମହିଷା ଯୁଦ୍ଧରେ ଯେହ୍ନେ ବିଜେ କାତ୍ୟାୟିନୀ
ବିହରନ୍ତି ସେ ପାଣ୍ଡବେ ମାରନ୍ତି ସଇନି ।
ଶ୍ୱେତହସ୍ତୀ ଏକ ଚଢ଼ି ଦେବ ଯେ ଯୁଧିଷ୍ଠି
ଜଗନ୍ନାଥଙ୍କ ସନ୍ନିଧେ ଯାଇ ତାଙ୍କୁ ଭେଟି ।
ଯୁଧିଷ୍ଠିଙ୍କୁ ଦେଖି ଜଗମୋହନ ହେ ସ୍ୱାମୀ
ରଥ ତେଜି ଠାକୁରଙ୍କ ପାଦତଳେ ନମି ।
ପ୍ରସନ୍ନ ହୋଇଣ ଦେବ ସୁକଲ୍ୟାଣ ବାଞ୍ଛା
ଆରୋଗ୍ୟ ଥାଅ ଆପଦ ଖଣ୍ଡରେ ଶ୍ରୀବତ୍ସ ।
ଯୁଧିଷ୍ଠି ବୋଇଲେ ଶୁଣ ଶ୍ରୀଜଗମୋହନ
ତୁମ୍ଭେ ଥାଉ କିମ୍ପା ଏହା କଲାକ ଅର୍ଜୁନ ।
ବିଚାରକୁ ଯୋଗାଇଲେ ଦିଅନ୍ତୁ କୁମାରୀ
ଅନିବାରଣେ କାହିଁକି ବଳାତ୍କାର କରି ।
ବାବୁ ତୁମ୍ଭେ ଥାଉଁ କିମ୍ପା ଏଡ଼େକ ପ୍ରମାଦ
ତୁମ୍ଭେ ତୁଲେ କିମ୍ପା ମୋର ଏଡ଼େ ବଡ଼ ଦ୍ୱନ୍ଦ ।
ଦେଖୁ ଦେଖୁ ପଡୁଅଛି ଅନେକ ସଇନି
କେହୁ ଏଥୁ ଆଜ ପୁଣି ଯିବ ପ୍ରାଣ ଘେନି ।
ଚଉବିଂଶ ଯୋଜନ ଯେ ରୈବତ ପର୍ବତ
ରକତ ମାଂସେ କର୍ଦ୍ଦମ ହେଲା ଅପ୍ରମିତ ।
ଧୃତରାଷ୍ଟ୍ର ପୋଏ ନିକି ହୁନ୍ତି ପ୍ରାଣେ ନାଶ
ଅର୍ଜୁନକୁ ସମାଧାନ କର ହେ ଦେବେଶ ।
ଗୋବିନ୍ଦ ବୋଇଲେ ପାର୍ଥ ହଳୀଶର ତେଜେ
ରାତ୍ରେ ଦିଶୁଅଛି କିବା ଉଦେ ଗ୍ରହରାଜେ ।
କେ କାହାର ପିଅର କେ କାହାର ପୀରତି
ଯାଇ ନ ପାରଇ ବାଣ ଜାଳେ ତାଙ୍କ କତି ।
ଏସନ କର୍ମ କରଇ ରଣେ ତୁମ୍ଭ ଭାଇ
ନିଃଶ୍ୱାସକେ ଶତ ଶତ ନାରାଚ ପେଶଇ ।
ଏସନ ଅଛିଦ୍ରେ ସେହୁ କରଇ ସମର
ଛିଦ୍ର ପାଇଲେ ମାରିବେ ପ୍ରାଣେ ନୀଳାମ୍ବର ।
ଅର୍ଜୁନ ପାଶକୁ ଯିବା କେବଣ ହିଁ ବାଗେ
ଇନ୍ଦ୍ର ବ୍ରହ୍ମା ଆଦି କେହୁ ଯିବ ତାହା ଆଗେ ।
ଯେବଣ ଶସ୍ତ୍ରମାନ ସେ ବିନ୍ଧେ ସବ୍ୟସାଚୀ
ମୋତେ ତାହା ଅଗୋଚର ବୋଲନ୍ତି ଶ୍ରୀବତ୍ସି ।
କେବଣ ପ୍ରକାରେ ତାର ପାଶକୁ ହିଁ ଯିବା
ଶସ୍ତ୍ରଙ୍କର ତେଜେ ଆମ୍ଭେ ଦହିର୍ଯ୍ୟ ହୋଇବା ।
ଶାମ୍ବ କୁମର ଯେ କରୁଅଛଇ ସମର
ନାରାଚ ପେଶିଲେ ଦ୍ରୋଣ ଗୁରୁଙ୍କ ଉପର ।
ପିଠି କଟିକି ନାରାଚ ଅଛଇ ନିକଳି
ଆଉ ଏକ ବାଣ ଛଇରାଡ଼େ ଗଲା ଗଳି ।
ଦ୍ରୋଣ ମହାକ୍ଷତ୍ରି ଢଳି ଏଡ଼ିଲେକ ଭୂଇଁ
ଅଶ୍ୱତ୍ଥମା ତାହାଙ୍କୁ ଯେ ଧଇଲେକ ଯାଇଁ ।
ରଥପରେ ଅଶ୍ୱତ୍ଥମା ଯାଇଣ ଚଢ଼ିଲେ
ଆବର କୋଳ କରିଣ ଦ୍ରୋଣଙ୍କୁ ଧଇଲେ ।
ପିତାଙ୍କୁ କୋଳରେ ଧରିଅଛି ଗୁରୁସୁତ
ପ୍ରହାରିଲେ ଗଦା ଗଦକୁମର ତୁରିତ ।
ଲକ୍ଷେ ଭାର ଗଦାର ଯେ ଗୁରୁଭାର ପାଇ
ପିତା ପୁତ୍ର ପଡ଼ିଗଲେ ମୂର୍ଚ୍ଛାଗତ ହୋଇ ।
ରଥକେ ଚଢ଼ିଣ ଯୁଦ୍ଧ ଆବୋରିଲେ ଶଲ୍ୟ
ଗଦକୁମରେ ଯେ ଧାଇଁ କରେ ରଣେ ଗୋଳ ।
ଧାଇଁଣ ଶଲ୍ୟ ବୋଇଲେ କୋପେ ଆରେ ଆରେ
ଗଦାମୁଦ୍‌ଗର ପିଟିଲେ ଗଦର ଉପରେ ।
ଦେଖି ଗଦକୁମର ତା ବାମଭୁଜେ ଧରି
ଶଲ୍ୟ ମହାରଥୀ ହସ୍ତୁ ଘେନିଲା ଉଛୁଡ଼ି ।
ସେହି ଗଦା ଘେନିଣ ସେ ଲେଉଟାଇ ପିଟି
ପଡ଼ିଲେ ସେ ଶଲ୍ୟ ମହାକ୍ଷତ୍ରୀ ଭୂମି ଲୋଟି ।
ଦ୍ରୋଣଗୁରୁ ଅଶ୍ୱତ୍ଥମା ମହାରଥୀ ଶଲ୍ୟ
ରଣେ ପଡ଼ିଲେ ଭାରତେ ସେ ଭାରୋଇ ମଲ୍ଲ ।
ଭୀମ ହିଁ ପ୍ରହାର କଲା ସେ କର୍ଣ୍ଣବୀରକୁ
ଗଦା ପଡ଼ି ଭଗ୍ନ ହେଲା ତାହାର ଯେ ବୁକୁ ।
ରଥ ସହିତେ ସାରଥି ହେଲା ମସିଗୁଣ୍ଡା
କୋପଭରେ ଧରିଣ ସେ ପୁଣି ଏକ ଖଣ୍ଡା ।
ଧାଇଁଯାଇ ବୃକୋଦର ହାଣନ୍ତେ କର୍ଣ୍ଣକୁ
ସହଦେବ କୋଳ କରି ଧଇଲେ ତାହାଙ୍କୁ ।
ନୁହଇ ଏ ସ୍ୱାମୀ ସିନା କଉତୁକ ଯୁଦ୍ଧ
ଅକାରଣେ ସହୋଦର କିମ୍ପା କର ବଧ ।
ସହଦେବର ବଚନେ ଛାଡ଼ିଲେ କର୍ଣ୍ଣକୁ
ଗୋଡ଼ାଇ ମାଇଲେ ସେନାପତି ସଇନ୍ୟଙ୍କୁ ।
ରଥେ ରଥ କଚାଡ଼ଇ ଭୀମସେନ ତୋଳି
ବହୁତ ରଥ ସଇନୀ ପିଟି କଲା ଧୂଳି ।

ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ କୁମାର ଯେ ତିନି
ଦୁର୍ଯ୍ୟୋଧନକୁ ଭେଟିଲେ କରେ ଅସ୍ତ୍ରଘେନି ।
ଯେବଣଠାବରେ ଅଛି କୁରୁରାଜ ଦେବ
ପାଞ୍ଚଶତ କୋଟି ରଥୀ ହସ୍ତୀ ତ୍ରିଂଶଗବ ।
ଏତେକ ଯୋଦ୍ଧା ରାଜାଙ୍କୁ ଅଛନ୍ତି ଆବୋରି
ମୁକୁଟବନ୍ଧା ଅଛନ୍ତି ଯୋଦ୍ଧା ଲକ୍ଷ୍ୟ ଚାରି ।
ଅସୁମାର ଥାଟ ଦେଖି ଗଲେ ତିନିବୀରେ
ବିନ୍ଧିଲେ ନାରାଚ ପୁଣି ମାଇଲେ ମୁଦ୍‌ଗରେ ।
ବିଷ୍ଣୁଙ୍କର ନନ୍ଦନ ସେ ସମରେ ନିର୍ଭୟ
ଯେଣୁ ଯୁବା ସଂଗ୍ରାମେ ସେ ଅଟନ୍ତି ନିର୍ଦ୍ଦୟ ।
ରଣରଙ୍ଗରେ ମନ୍ଥନ କଲେ ସେହୁ ଥାଟ
ବେଢ଼ିଲେ ଯିବାକୁ କଉରବେ ନାହିଁ ବାଟ ।
ବିହରନ୍ତି ଥାଟ ମଧ୍ୟେ ସମସ୍ତ କୁମରେ
ନାରାଚ ଚୂର୍ଣ୍ଣ ହୁଅନ୍ତି ତାହାଙ୍କ ଶରରେ ।
ରୋଳ କରନ୍ତେଣ ଥାଟେ ପଡ଼ିଲାକ ହୁରି
ଗଜ ଅଶ୍ୱ ହାବୁଡ଼ନ୍ତେ ରଥମାନ ଚୂରି ।
ସମର ବେଳୁଁ ବେଳ ଯେ ହେଲା ମହାଗୋଳ
ପଳାନ୍ତି ସଇନମାନେ ହୋଇ ଅସମ୍ଭାଳ ।
ମହାଗୋଳ କରିଣ ଯେ ଧାଇଁଲେ ପାବନି
ଯମ ଦେବତା ଧାଏଁ କି କାଳଦଣ୍ଡ ଘେନି ।
ମହାବାତେ ଭାଙ୍ଗେ ରମ୍ଭାପାଦପ ଯେସନ
ତେସନେ ଯୁଦ୍ଧେ ପଡ଼ନ୍ତି କୁରୁବଳ ସୈନ୍ୟ ।
କରୀଯୂଥକୁ ଯେସନ ସିଂହ ନିଏ ଦଳି
ସେହିମତେ ମନ୍ଥିଦିଏ ରାମ ମହାବଳୀ ।
ପବନ ନନ୍ଦନ କରେ ପ୍ରତିଜ୍ଞା ଅପାର
ଗଦାମାରି କରିଦିଏ ସମସ୍ତଙ୍କ ଚୂର ।
ଶାମ୍ବ କୁମର ବଳିନ ସୁନ୍ଦର ତା ଦେହ
ରୂପ ଦେଖିଣ ସମସ୍ତେ ହୋଇଲେକ ମୋହ ।
ଅନେକ ଦିବ୍ୟରତନ ଆଭରଣ କାୟେ
ସବୁ କୁମରେ ଦିଶନ୍ତି ନାରାୟଣ ପ୍ରାୟେ ।
ଯେସନକ ବିକାଶଇ ନାରାୟଣ ତେଜ
ସଂଗ୍ରାମେ ଦିଶନ୍ତି ପୁତ୍ରମାନେ ଚତୁର୍ଭୁଜ ।
ଆପଣାର ଥାଟଭଗ୍ନ ଦେଖି କୁରୁପତି
କୋପଭରେ ଚଳାଇଲା ମଦମତ୍ତ ହସ୍ତୀ ।
ଶାମ୍ବ ଗଦ ପ୍ରଦ୍ୟୁମ୍ନ ଏ କୁମାର ଯେ ତିନି
ଥାଟ ମନ୍ଥନ କରନ୍ତି ଭୀମସେନ ଘେନି ।
ରଣଭଗ୍ନ ହୁଅନ୍ତେ ଭୟ କଲେ କଉରବେ
ଏକା ସମର କରଇ ଦୁର୍ଯ୍ୟୋଧନ ଦମ୍ଭେ ।
ଗଦା ବୁଲାଇ ପବନ କୁମର କୋପରେ
ଧାଇଁଯାଇ ପିଟିଲା ସେ ରାଜାର ଉପରେ ।
ହସ୍ତୀ କୁମ୍ଭସ୍ଥଳେ ବାଜି ଗଦାର ବିଘାତ
ପଡ଼ିଲା ସେ ମଦମତ୍ତ ହୋଇ ଭୂମିଗତ ।
ହସ୍ତୀ ଛାଡ଼ି ଦୁର୍ଯ୍ୟୋଧନ ହେଲା ପାଦଗାମୀ
ସତୁରୀ ଭାର ଗଦାକୁ ଉଭାରିଲା ଆଣି ।
ବୁଲାଇ ଗଦା ପିଟିଲା କୋପେ ବୃକୋଦର
ଭୂମିରେ ପଡ଼ିଲା ଧୃତରାଷ୍ଟ୍ରର କୁମର ।
ଗଦାଭାର ଧରି ବୀର ଭୂମିପରେ ଲୋଟି
ନିଶ୍ଚେଷ୍ଟ ମାନଗୋବିନ୍ଦ ନ ପାରଇ ଉଠି ।
ଶ୍ରୀକୃଷ୍ଣର ପୁତ୍ରମାନେ ହେଲେ କୋପାନଳ
ଗଦକୁମର ଧଇଲା ଦୁର୍ଯ୍ୟୋଧନ ବାଳ ।
ଛାଡ଼ ଛାଡ଼ ବୋଲି ତାକୁ ଧଇଲେ ପ୍ରଦ୍ୟୁମ୍ନ
ଗଦ ବୋଇଲେ ଏହାକୁ କରିବି ନିଧନ ।
ଆଜ୍ଞା ଦେଲେ ଖଡ଼ଗରେ ପକାଇବି କାଟି
ଏହି ନାଶ ଗଲେ ନିଶ୍ଚେ ସରିବ ଅରିଷ୍ଟି ।
ପ୍ରଦ୍ୟୁମ୍ନ ବୋଇଲେ ବାବୁ ନ କରିବା ନାଶ
ଧରିନେଇ ଦେବା ଆମ୍ଭେ ଠାକୁରଙ୍କ ପାଶ ।
ବଳରାମଙ୍କ ସନ୍ନିଧେ ବୋଲେ ଅନାଧୃଷ୍ଟ
ଦୁର୍ଯ୍ୟୋଧନ ରାଜାର ଯେ ହୁଏ ମୁଣ୍ଡ କାଟ ।
ଗଦକୁମର ଧରିଛି ଦୁର୍ଯ୍ୟୋଧନ କେଶ
ଲୋଡୁଅଛି କରିବାକୁ ତାର ପ୍ରାଣନାଶ ।
ବିସ୍ମୟ ମନେ କୋପିଲେ ରେବତୀ ରମଣ
ଜିଣି ନ ପାରିଲେ ପୁଣ ରଣେ ଶତ୍ରୁଗଣ ।
ଅର୍ଜ୍ଜୁନକୁ ନ ପାରିଲେ ରଣେ କାମପାଳ
ରାଗେ ଘେନିଲେ ସେ ଦେବ ସୌନନ୍ଦ ମୂଷଳ ।
ବିଶ୍ୱରୂପ ବିକାଶିଲେ ଶରୀର ଅମାପ
ତ୍ରଇଲୋକ୍ୟ ବ୍ୟାପିଲା ସେ କାମପାଳ ରୂପ ।
ବଳରାମ କୋପ ଦେଖି ପାର୍ଥ ମହାତପେ
ନାରାୟଣ ଶସ୍ତ୍ରଗୋଟି ଯୋଚି ଗୁରୁରୂପେ ।
ଧଇଲେକ ବଇଷ୍ଣବ ଚକ୍ର ଦକ୍ଷ କରେ
ଯାର ନାମ ସୁଦର୍ଶନ ମହାତେଜ ଧରେ ।
ବାମକରେ କୌମୋଦକୀ ଗଦା ମହାତେଜ
ରାମ ଦେଖିଲେ ହୋଇଛି ପାର୍ଥ ଚତର୍ଭୁଜ ।
ଏମନ୍ତ ସମୟେ ଧରି ଦୁର୍ଯ୍ୟୋଧନ କେଶ
ଅର୍ଜ୍ଜୁନ ଛାମୁରେ ଦେଲେ ନ କରି ବିନାଶ ।
ମାନଗୋବିନ୍ଦର କେଶ ଗଦା ବାମପାଣି
ଖଡ଼୍‌ଗ ଉଞ୍ଚାଇଣ ତାକୁ ପକାଇଲେ ହାଣି ।
ବୋଇଲେ କୁମର ଆଜ୍ଞା ଦେବାକ କିରୀଟି
ଏ ପାପୀର ମୁଣ୍ଡ ବେଗେ ପକାଇବା କାଟି ।
ଦୁର୍ଯ୍ୟୋଧନର ଏ ଶାସ୍ତି ଦେଖିଣ ଯୁଧିଷ୍ଠି
ଶସ୍ତ୍ର ତେଜ୍ୟା କରି ବେଗେ ଧଇଲେ ସାଉଁଟି ।

ପ୍ରଦ୍ୟୁମ୍ନକୁ ବୋଇଲେକ ଧର୍ମ ଯୁଧିଷ୍ଠିର
ବାବୁ ଏ ମୋହର ପ୍ରାଣବଲ୍ଲଭ ସୋଦର ।
ଅର୍ଜ୍ଜୁନର ମୁଖ ଚାହିଁ ବୋଲେ ରତିପତି
ଏ ମହାତ୍ମା କିମ୍ପା ରକ୍ଷା ଏହାଙ୍କୁ କରନ୍ତି ।
ଜଗନ୍ନାଥ ବୋଇଲେ ଏ ଦେବ ଧର୍ମରାୟେ
ଏହାଙ୍କ ଅନୁଜ ସିନା ଅଟେ ଧନଞ୍ଜୟ ।
ପ୍ରଦ୍ୟୁମ୍ନ ଶାମ୍ବ ଗଦ ଏ ତିନିହେଁ ଆସନ୍ତି
ଧର୍ମ କୁମର ଚରଣ ତଳେ ପ୍ରଣମନ୍ତି ।
ପ୍ରତ୍ୟକ୍ଷେ ଦେଖିଲେ ପୁତ୍ରେ ଅର୍ଜ୍ଜୁନର କାନ୍ତି
ଜଗନ୍ନାଥଙ୍କ ପରାୟେ ସ୍ୱରୂପ ଦିଶନ୍ତି ।
କୁମରଙ୍କ ହସ୍ତ ଧରି ସେ ଧର୍ମ ନନ୍ଦନ
ବନ୍ଦିରୁ ମୁକତ କରିଦେଲେ ଦୁର୍ଯ୍ୟୋଧନ ।
ଏମନ୍ତ ସମୟେ ଦେବ ଦେବ ଚକ୍ରଧର
ଆପଣା ତେଜ ଥୋଇଲେ ଅର୍ଜ୍ଜୁନ ଶରୀର ।
ବଳରାମ ଦେଖିଲେ ଯେ ଅର୍ଜ୍ଜୁନର ଜ୍ୟୋତି
ପ୍ରତ୍ୟକ୍ଷେ ଦିଶଇ ଜଗନ୍ନାଥଙ୍କ ମୁରତି ।
ମାୟା କଲେ ମାୟାଧର ଦେବ ହୃଷିକେଶ
ପ୍ରତ୍ୟକ୍ଷରେ ଦିଶେ ପାର୍ଥ ନୃସିଂହ ସଦୃଶ ।
ଦେଖିଣ ଆଶ୍ଚର୍ଯ୍ୟ ହେଲେ ପ୍ରଭୁ ବଳଦେବ
ଶସ୍ତ୍ର ଧରି ନ ପାରିଲେ ପାଇ ପରାଭବ ।
ତହୁଁ ଦେଖିଲେ ପାର୍ଥର ଯେ ବିଶ୍ୱମୁରତି
କୋପ ସଂହରିଣ କରି ଆପେ ହେଲେ ଶାନ୍ତି ।
ପରମାନନ୍ଦ ହୋଇ ସେ ଦେବ କାମପାଳ
ଦରହସିତ ବଦନ ସ୍ୱାମୀ ମତିଭୋଳ ।
ହଳ ମୁଷଳ ସଂହରି ଦେବ ବଳପତି
ଅର୍ଜ୍ଜୁନ କହନ୍ତି ବହୁ ବିନୟ ଯେ ଅତି ।
ତୁହି ତ ଅର୍ଜ୍ଜୁନ କୃଷ୍ଣରୂପ ଧନଞ୍ଜୟ
ତୁହି ସେ ପାର୍ଥିବ ବଂଶେ ଅଟୁ ଶୁଦ୍ଧକାୟ ।
ଭାରାଭର ନିବାରଣେ ଅଟୁ ଫାଲଗୁନି
ମିଛେ ମୁଁ ଦ୍ୱନ୍ଦ୍ୱ କରଇ ତୁମ୍ଭଙ୍କୁ ନ ଚିହ୍ନି ।
ପ୍ରତ୍ୟକ୍ଷେ ଦେଖିଲି ମୁହିଁ ତୁମ୍ଭର ମହିମା
ଏକ ଶରୀର ପ୍ରତ୍ୟକ୍ଷେ ତୁମ୍ଭେ ରୁଦ୍ର ବ୍ରହ୍ମା ।
କହିଲେ ବହୁ ସାନନ୍ଦ ହୋଇ ବଳଭଦ୍ର
ଆବର କହିଲେ ପୁରଃସରି ରାମଚନ୍ଦ୍ର ।
ଅର୍ଜ୍ଜୁନର ତୁଲେ ବଢ଼ାଇଲେ ପ୍ରୀତିଭାବ
ରଥୁଁ ଉତୁରି ବନ୍ଦନ୍ତି ପ୍ରଭୁ ବାସୁଦେବ ।
ତୁହି ଭାରା ଉଦ୍ଧାରନ୍ତା ଅଟୁ ହୋ ଅର୍ଜ୍ଜୁନ
ତୁମ୍ଭ ଆମ୍ଭଙ୍କୁ କରିବ କେହୁ ଭିନ୍ନାଭିନ୍ନ ।
ରାମ ବୋଇଲେ ଅନେକ ପୁଣି ପୁରଃସରି
ଅର୍ଜ୍ଜୁନ ଉଭା ଯେ କରପତ୍ର ଯୋଡ଼ିକରି ।

ବଳରାମ ପାଦତଳେ ଅର୍ଜ୍ଜୁନ ପ୍ରଣମି
ଅଲଙ୍ଘିତ ଦୋଷ କଲି ଉଦ୍ଧାର ଭୋ ସ୍ୱାମୀ ।
ଅମୃତ ଦୃଷ୍ଟିରେ ଯହୁଁ ଚାହିଁଲେକ ରାମ
ସମସ୍ତେ ଯେ ମୋହ ଛାଡ଼ି ଉଠିଲେ ବହନ ।
ଅପମାନ ପାଇ କାନ୍ଦି କାନ୍ଦି କୁରୁରାୟେ
ଭଗ୍ନ ବଳ ଘେନିପୁରେ ବାହୁଡ଼ିଣ ଯାଏ ।
କିଛି ହିଁ ଚିନ୍ତା ନ କରି ତୁହୋ ଅରଜୁନ
ମୁହିଁ ତ ଶାନ୍ତି ହୋଇଲି ବୋଇଲେକ ରାମ ।
ବିନୟ ଭାବକୁ ବହି ପାଣ୍ଡବ ସୁନ୍ଦର
ଅନେକ ସ୍ତୁତି କରନ୍ତି ସେ ଗାଣ୍ଡିବ ଧର ।
ନମସ୍ତେ ହେ କାମପାଳ ତୁ ଦେବ ସୁଢ଼ଳ
ନମସ୍ତେ ହେ କାମପାଳ ରୋହିଣୀର ବାଳ ।
ନମସ୍ତେ ଧବଳ ନୀଳରୂପ ନୀଳାମ୍ବର
ନମସ୍ତେ ଅନନ୍ତ ରୂପ ଦେବ ହଳଧର ।
ନମସ୍ତେ ହେ କାମପାଳ ଅନନ୍ତ ମଉଳି
ନମସ୍ତେ ସପଥ ଶାଖା ସପତ କୁଣ୍ଡଳୀ ।
ନମସ୍ତେ ଆଦି ଅନାଦି ବୀଜ ଆଦିମୂଳ
ନମସ୍ତେ ଧାତାପୁରୁଷ କରେ ତୋ ମୂଷଳ ।
ନମସ୍ତେ ରେବତୀବର ଦେବ ବଳଭଦ୍ର
ନମସ୍ତେ ଅଭୟବର ଦାତା ରାମଚନ୍ଦ୍ର ।
ନମସ୍ତେ ଅଖିଳ ଜଗତ ରୂପ ଆଦିନାଥ
ନମସ୍ତେ ଲଙ୍ଗଳହସ୍ତ ରେବତୀର କାନ୍ତ ।
ନମସ୍ତେ ତୁ ଶେଷଦେବ ଶିରେ ସପ୍ତଫେଣୀ
ନମସ୍ତେ ଦେବ ସୁନ୍ଦର ରୂପ ହଳପାଣି ।
ନମସ୍ତେ ଅରୁଣରୂପ ତୋହର ଜ୍ୟୋଛନା
ନମସ୍ତେ ଦୁର୍ଗତି ଦୁଃଖ ଭଞ୍ଜନେ ସୁମନା ।
ନମସ୍ତେ ହେ ସଉନନ୍ଦ ଧାରଣ ଧବଳ
ନମସ୍ତେ ଶମନ ଦର୍ପଭଗ୍ନ ମତିଭୋଳ ।
ନମସ୍ତେ ଈଶ୍ୱର ବଳଦେବ ବଳରାମ
ଭବଜଳଧିରେ ନାବ ଅଟେ ତୋର ନାମ ।
ଏକଲୟେ କରି ଯାହା ଗଢ଼ିଲାକ ବ୍ରହ୍ମା
ତାହା ଆନ କରିବାକୁ କେ ଅଛି ମହାତ୍ମା ।
ପଞ୍ଚଯୁଗ ଯାହାକୁଟି ଏକଯୁଗ ହୋଇ
ଅଣାକାର ପୁରୁଷ ସେ ନ ଜାଣନ୍ତି କେହି ।
ତୋହର ଚରଣେ ନାଥ ମୋହର ଦଣ୍ଡିନୀ
ଶୁଣିମା ହେ ସୁଜ୍ଞଜନ ଏ ଭାରତୀ ବାଣୀ ।
ମଧ୍ୟପର୍ବର ଏ ସିଦ୍ଧି ଲିଖନ ଯାବତ
ଗ୍ରନ୍ଥ ସିଦ୍ଧକାଳକୁ ଏ ହେଲା ଅପ୍ରମିତ ।
ପ୍ରଥମେ ମୁହିଁ ସେବିଲି ଦେବୀ ସରସ୍ୱତୀ
ପିତାମହ ଶାପେ ଦେଲା ନର୍ମଦା ଯେ ସତୀ ।

ଏକଲୟେ କରି ମୁହିଁ ଭାବଇ ଯେ ତୋତେ
ଅବିରତେ ଯାଚି ଦେଉଥାଉ ତୁହି ନିତ୍ୟେ ।
କିଞ୍ଚିତ ଭକ୍ତିରେ ହେଉ ତୁ ବରଦାୟିନୀ
ପ୍ରଥମେ ବର ଦେଲୁ ଗୋ ଅଭୟା ଯୋଗିନୀ ।
ଚଣ୍ଡୀ ଶାରଳା ଚରଣେ ଶରଣ ଯେ ମମ
ଜନ୍ମେ ଜନ୍ମେ ଯେ ଶାରଳା ଦାସ ମୋର ନାମ ।
ମହାଭାରତ ଅମୀୟ ରସସାର କଥା
ଇହଲୋକେ ସୁଖ ପରଲୋକେ ଗତିଦାତା ।
ଅଶ୍ୱିନୀ ନନ୍ଦିନୀ ପାଦପଦ୍ମେ ଅବିରତେ
ବିନୟ ଭକତି କରେ ଏ ମହାଭାରତେ ।

—୦—

## ସୁଭଦ୍ରା ପରିଣୟ

ବଦନ୍ତି ଅଗସ୍ତି ଶୁଣ ମନୁ ବୈବସ୍ୱତେ
ଯାହା ପୁଚ୍ଛାକଲୁ ଶୁଣ ସାବଧାନ ଚିତ୍ତେ ।
ଅନେକ ସମର ହେଲା ସୁଭଦ୍ରା ନିମନ୍ତେ
ସମସ୍ତ ଜିଣିଣ ପାର୍ଥ ବିଜେ କଲା ରଥେ ।
ମୂର୍ଚ୍ଛାଗତ ହୋଇଥିଲେ ଯଦୁବଳ ସର୍ବେ
ସଚେତ ହୋଇ ଉଠିଲେ ସକଳ ଯାଦବେ ।
ଅପମାନେ ପଳାଇଲେ ଭୟେ କୁରୁସୈନ୍ୟ
ବଳରାମ ବିଜେ କଲେ ଘେନିଣ ଅର୍ଜୁନ ।
ପୁରେ ଉତ୍ସବ କରାଇ ଦେବ ଜନାର୍ଦ୍ଦନ
ବିଚାର କରନ୍ତି ବସି ବିଭାର ବିଧାନ ।
ଅର୍ଜୁନକୁ ସଙ୍ଗେ ଘେନି ଦେବ ଯୁଧିଷ୍ଠିର
ବିଜେ କଲେ ଆପେ ଯାଇ ରୈବତ ଉପର ।
ବିଦୁରକୁ ପଠାଇଲେ ଧର୍ମଦେବ ସୁତ
ଦୁର୍ଯ୍ୟୋଧନକୁ ଭୋ ତାତ ଘେନିଆସ ସାଥ ।
ଅପମାନ ପାଇ ଯାଇଅଛି କୁରୁନାଥ
ସମଦଣ୍ଡ ଘେନି ବିଜେ କରନ୍ତୁ ସେ ଏଥ ।
ସମସ୍ତ ଘେନି ଆସି ଏ ସଭାରେ ବସନ୍ତୁ
ଅରଜୁନ ସୁଭଦ୍ରାକୁ ପ୍ରଦାନ କରନ୍ତୁ ।
ବିଦୁରକୁ ବୋଇଲାକ ଶୁଣ ଜଗନ୍ନାଥେ
ଦୁର୍ଯ୍ୟୋଧନକୁ ହକାରି ଆଣ ଯାଇ ଏଥେ ।
ସମଦଣ୍ଡ ଘେନି ରାଜା ବିଜେ କରୁ ଆସି
ସୁଭଦ୍ରା ଅର୍ଜୁନ ବିଭାଘର ଦେଖୁ ବସି ।
ଶୁଣି ବିଦୁର ମାହାତ୍ମା ଗଲେ ବେଗ ହୋଇ
ମାନଭଙ୍ଗ ପର୍ବତରେ ରାଜା ଅଛି ରହି ।
ପବନୁ ବେଗରେ ଯାଇ ବିଦୁର ଯେ ଭେଟି
ବାବୁ ମୋତେ ଆଜ୍ଞାଦେଲେ ଶ୍ରୀକୃଷ୍ଣ ଯୁଧିଷ୍ଠି ।
ଦଣ୍ଡ ଘେନି ବାହୁଡ଼ିବା ମାନଚକ୍ରବର୍ତ୍ତୀ
ସହୋଦର ଛାଡ଼ିବାର ନୁହଇ ଯୁକତି ।
ଏତେ ଯେ ସମର ବାବୁ କଲୁ ଅନିମିତ୍ତେ
'ବାଟେ ଆସନ୍ତେ ବାବୁ କହିଲଇଁ ତୋତେ ।
ଶକୁନି ଯେ ଦୁଃଶାସନ କର୍ଣ୍ଣ ମହାଯୋଦ୍ଧି
ଆମ୍ଭ ବଚନ ଉପେକ୍ଷା କଲେ ବହୁ ନିନ୍ଦି ।
ବିଦୁରଙ୍କ ବଚନେ କହଇ କୁରୁରାଜ
କେମନ୍ତେ ଯିବଇଁ ମୁହିଁ ପାଇଲଇଁ ରାଜ ।
ବିଦୁର ସଞ୍ଜୟ ଭୂରିଶ୍ରବା ଯେ ଗାଙ୍ଗେୟ
କୃପା ଆଚାର୍ଯ୍ୟ କହିଲେ ଶୁଣ ମହାରାୟ ।
ଆନର ହସ୍ତେ ନୋହିଲୁ ଆମ୍ଭେମାନେ ଧ୍ୱଂସି
ସୋଦର ସୋଦର ଆମ୍ଭେ ହୋଇଲୁ ଝିଙ୍ଗାସି ।
ଏଡ଼େକ ଉତ୍ସବେ ଆମ୍ଭେ କେମନ୍ତେ ନ ଯିବା
ଅର୍ଜୁନକୁ ଏବେ ଚାଲ ବିଭା କରାଇବା ।
ଅର୍ଜୁନ ତୁ ଯେବେ ରାମ ଜିଣିଥାନ୍ତେ ଆଜ
ଆମ୍ଭ କୁଳକୁ ହୁଅନ୍ତା ଜାଣ ବଡ଼ ଲାଜ ।
ଆପଣାର କୁଳ ଯେବେ ଉଜ୍ୱଳ ହୋଇବ
ଏକଥାରେ ଲଜ୍ଜା କହ କିମ୍ପାଇ ପାଇବ ।
ଯୁଗଯୁଗାନ୍ତରେ ସେହି କଥା ରହୁଥିବ
ବାବୁ ଅର୍ଜୁନ ମହିମା ଅଟଇ ଦୁର୍ଲ୍ଲଭ ।
ବିଚାରେ କୁରୁ ପାଣ୍ଡବେ ନୁହ ତ ବିବାଦୀ
ରାମ ପ୍ରତିଜ୍ଞା ଭାଙ୍ଗିଲା ପାର୍ଥ ହୋଇ ବାଦୀ ।
ଏହା ପରିମାଣି ଏବେ ଉପରକୁ ହେଜ
ଯିବାକୁ ବିଚାର ଏବେ କର କୁରୁରାଜ ।
ଖାଣ୍ଡବ ବନ ଦହନେ ଜିଣି ଅମରାଧି
ଅଗ୍ନିକୁ ତୋଷ କଲା ସେ ଦେଇ ମଉଷଧି ।
କିରାତରୂପେ ଜିଣିଲା ବନେ ଈଶ୍ୱରଙ୍କୁ
ଭୟେ ସଦାଶିବ ପାଶୁପତ ଦେଲେ ତାଙ୍କୁ ।
ଏବେ ସୁଭଦ୍ରା ହରଣେ ଜିଣେ ବଳଦେବେ
ଅଭିମାନ ତେଜି ଚାଲ ଯିବା ସର୍ବେ ଏବେ ।
ଏଥକୁ ତ ଅଭିମାନ ନ କର ହେ ବାବୁ
ପ୍ରଶଂସା ପାଇବୁ ଯେବେ ବାହୁଡ଼ି ନ ଯିବୁ ।
ମାନ ସ୍ଥାନ ଗଉରବ ରହିବ ଯେ ପଣ
ବାହୁଡ଼ି ଯିବାର ବାବୁ ହୁଏ ଅକାରଣ ।
ଯଦ୍ୟପି ରାଗ କରିଣ ସେ ସ୍ଥାନେ ନ ଯିବା
ଆମ୍ଭେ ନ ଗଲେ କି ରହିଯିବ ତାର ବିଭା ।
କଥା ରହିଥିବ ସିନା ସମସ୍ତ କାଳକୁ
ମୁହିଁ ବିନୟ ଭାବରେ ବୋଲଇ ତୁମ୍ଭଙ୍କୁ ।
ଗଲେ ନିଶ୍ଚେ ଜଗନ୍ନାଥ ହୋଇବେ ସଦୟ
ବଳରାମ ଯୁଧିଷ୍ଠିର ଭୀମ ଧନଞ୍ଜୟ ।
ଏତେକ ଯେ ତିଆରଇ ଶାନ୍ତନୁର ସୁତ
ଧଇଲେ ଯାଇ ଯେ ମାନଗୋବିନ୍ଦର ହସ୍ତ ।

ସମସ୍ତ ଯୋଦ୍ଧାଏ ତହିଁ ଶୋଇଲେ ପ୍ରଣମି
ବାହୁଡ଼ି ସେଠାକୁ ଚାଲ ଯିବା ଦେବ ସ୍ୱାମୀ ।
ଦୁର୍ଯ୍ୟୋଧନ ବୋଇଲେକ ସମସ୍ତଙ୍କୁ ଚାହିଁ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଯେତେ ଥିଲେ ତହିଁ ।
ଶକୁନି ବୋଇଲେ ଭୀଷ୍ମ କହିଲେ ଯେ ବାଣୀ
ମୋହର ବିଚାର ତାହା ଭଲ ମୁଁ ନ ମଣି ।
ଏଡ଼େକ ଅପମାନ ହେ ଅଇଲୁ ପଳାଇ
ଭଗ୍ନବଳ ଘେନି ଆମ୍ଭେ କାହାମୁଖ ଚାହିଁ ।
ଦ୍ୱାରକାରେ କାହାମୁଖ ଚାହିଁବା ବା ଯାଇ
କେମନ୍ତେ ରହିବୁ ଏଡ଼େ ରାଜା ଦେହ ବହି ।
ନ ଛାଡ଼ଇ ଆବର ଯେ ଲଜ୍ଜା କଦାଚିତେ
ମନ୍ଦ ଉପୁଜିଲେ ଶୁଣ ତହିଁର ନିମନ୍ତେ ।
ଏ ସମସ୍ତ ମନ୍ଦକର୍ମ କଲେ ବଳରାମ
ବରଣ କରାଇ ଆଣି କଲେ ଏତେ କର୍ମ ।
ଅର୍ଜ୍ଜୁନକୁ ବରି କରି ଦେଲେକ ଦୁଲାଳୀ
ଯତନେ ଏ ଅପମାନ ଦେଲେ ଦେବହଳୀ ।
ଶକୁନି ବୋଇଲା ଚାଲ ଯିବା ହସ୍ତିନାକୁ
ଆବର ଭାବ କାହିଁକି ଯିବା ଦ୍ୱାରକାକୁ ।
ଶକୁନି ବଚନେ ରାଜା ଡକାଇ ସଇନି
ଯାନ ବାହନ ଚଳିଲେ ଶୁଭେ ଶଙ୍ଖଧ୍ୱନି ।
ବିଦୁର ଚଳିଲେ ଦୁର୍ଯ୍ୟୋଧନ ରାଜା ତୁଲେ
ହସ୍ତିନା କଟକେ ଯାଇ ପ୍ରବେଶ ହୋଇଲେ ।
ସହଦେବ ମୁଖ ଚାହିଁ ପ୍ରଭୁ ଦେବରାୟେ
ବାବୁ ମନ୍ତ୍ରୀବର ତୋତେ କହିବା କଥାଏ ।
ଦୁର୍ଯ୍ୟୋଧନକୁ ବିଦୁର ଗଲେ ପୁଣି ଆଣି
ଉଛୁର ହେଲା ନଇଲେ କିମ୍ପା କୁରୁମଣି ।
କର ତଳକୁ ଅନାଇ ଦେଲେ ସହଦେବ
ଅନେକ କହିଲେ ଗଙ୍ଗା ନନ୍ଦନ ହେ ଦେବ ।
ଶକୁନି କହିଲେ ଯହୁଁ ଯୁଦ୍ଧ ଅପମାନ
ଦୁର୍ଯ୍ୟୋଧନ ନ ଘେନିଲା ଭୀଷ୍ମଙ୍କ ବଚନ ।
ଦଣ୍ଡ ଘେନି ହସ୍ତିନାକୁ ଗଲା ଧାତରାଷ୍ଟ୍ରି
ରାତ୍ର ଦିବସେ ହସ୍ତିନାପୁର ଯାଇ ଭେଟି ।
କହିଲେ ବସୁଦେବଙ୍କୁ ଚାହିଁ ବଳଦେବ
ରଇବତ ପର୍ବତରେ କରାଅ ଉତ୍ସବ ।
ସୀଉକାର ବରଣକୁ ସାରି ବେନି ଜନ
ଜ୍ୟେଷ୍ଠ କୃଷ୍ଣପକ୍ଷରେ ସେ ଧଇଲେକ ଲଗ୍ନ ।
ନକ୍ଷତ୍ର ଯୋଗ ପାଇଛି ନାହିଁ ପ୍ରାପଗ୍ରହ
ଶନୈଶ୍ଚର କେତୁଙ୍କର ବହୁତ ସେନେହ ।
ଦୁହିଁଙ୍କୁ ହୋଇନ୍ତି ଶୁଣି ପ୍ରଶସ୍ତ ଯେ ତାର
ଶୁଭବେଳେ ଲଗ୍ନ ଜାଣି କଲେ ଅନୁକୂଳ ।

ବଡ଼ ଯେ ଅମୃତ ଯୋଗ ତାହାକୁ ଯେ ଘେନି
ବେଦୀରେ ବସିଲେ ଯାଇ ପାଣ୍ଡବ ଫାଲଗୁନି ।
ଯୁଧିଷ୍ଠିର ସୁମରିଲେ ଧୌମ୍ୟ ପୁରୋଧାଙ୍କୁ
ଋଷିବୃନ୍ଦ ଘେନି ସେହି ଅଇଲେ ସଭାକୁ ।
ବ୍ୟାସଙ୍କୁ ଯେ ସୁମରଣା କଲେ ଧର୍ମଶିଷି
ଷାଠିଏ ସହସ୍ର ଶିଷ୍ୟ ଘେନି ବ୍ୟାସଋଷି ।
ଜଇମିନୀ ମାର୍କଣ୍ଡେୟ ଶୁକ ବିଶ୍ୱାମିତ୍ର
ବିଭାଣ୍ଡକ ବସୁଦେବ ସନକ ସହିତେ ।
ପରାଶର ଗଉତମ ମୁନି କଉଶିକ
ପରମ ଆନନ୍ଦେ ବିଜେ କଲେ ଋଷିଯାକ ।
ତାହାଙ୍କ ସଙ୍ଗରେ ଥିଲେ ମୁନି ବାଳଖିଲ୍ୟା
ସବୁ ଋଷି ଆସି ତହିଁ ହେଲେ ଏକମେଳା ।
ଦେଖି ତାଙ୍କୁ ପୂଜାବିଧି କଲେ ଦେବରାଜା
ଅନେକ ବିନୟୀ ହୋଇ କଲେ ତାଙ୍କୁ ପୂଜା ।
ସୁଧର୍ମା ସଭାକୁ ଘେନି ବିଜୟ ମଘବା
କି ଜାଣି ତା ପଟାନ୍ତର ଦ୍ୱାରକାରେ ସଭା ।
ଐରାବତ ଆରୋହିଣ ହୋଇ ଦିବ୍ୟସଜ
ଅମରରୁ ଆସି ବିଜେ କଲେ ଦେବରାଜ ।
ଇନ୍ଦ୍ର ବିଜେ କଲେ ଯହୁଁ ରୈବତ ପର୍ବତେ
ପାରିଜାତ ପୁଷ୍ପ ଘେନି ଅଛନ୍ତି ସଙ୍ଗତେ ।
ଚଉରାଶି କୋଟି ସ୍ୱର୍ଗପୁର ବିଳାସିନୀ
କରନ୍ତି ନୃତ୍ୟ ସୁସ୍ୱରେ ଗୀତ ଗାଇ ପୁଣି ।
ଗଗନୁ ଆସି ପର୍ବତେ ବିଳାସିନୀ ମିଳି
ସୁସ୍ୱରେ ଦେବନାୟିକା ଦେଲେ ହୁଳହୁଳି ।
ସୁଭଦ୍ରା କନ୍ୟାକୁ ବେଶ କରାଇ ବନିତା
ନନ୍ଦନ କୋଳରେ ଦେଲେ ବସିବେ ଦୁହିତା ।
ଛାୟାମଣ୍ଡପରେ ବିଜେ କଲେ ସସ୍ତ୍ରଯୋନି
ଗୋବିନ୍ଦ ମିଳିଲେ ତହିଁ କରେ ଅର୍ଘ୍ୟ ଘେନି ।
କନକ ରତ୍ନ ଯୋଗାଡ଼ ଦେଲେକ କୁବେର
ସବୁ ଦେବତାଙ୍କୁ ଅର୍ଘ୍ୟଦେଲେ ମୁନିବର ।
ଅର୍ଜ୍ଜୁନକୁ ସୁରନାଥ ବସାଇଲେ କୋଳେ
ଗୋବିନ୍ଦ ବୋଇଲେ ସ୍ୱାମୀ ଶୁଣ କାମପାଳେ ।
ସାଧୁ ସାଧୁ ସୁଭଦ୍ରା ଗୋ ଜୀବନ ତୋ ଧନ୍ୟ
ବର ବରିଲୁ ତୁହି ଯେ ପାଣ୍ଡବ ଅର୍ଜ୍ଜୁନ ।
ବଳେ ବଳେ ବରିଲୁ ତୁ ବର ମାହେଶ୍ୱରୀ
ପୁରୁଷ ପଣେ ଏହାକୁ କେହି ନୁହେଁ ସରି ।
କ୍ଷତ୍ରିୟ ପଣରେ ଏତ ତ୍ରଇଲୋକ୍ୟ ଜିତା
ବଳରାମଙ୍କୁ ଜିଣିଲା ସମରେ ଶକତା ।
ନନ୍ଦର ମନ୍ଦିରେ ସର୍ବେ କଲେ ସାଧୁ ସାଧୁ
ଅମରଧି ନାଥର ତୁ ହେଲୁ କୁଳବଧୂ ।

ନ ଜାଣି ବର ବରିଲା ସିନା ରାମଚନ୍ଦ୍ର
ଅନ୍ଧରାଜା ପୁତ୍ର ଅଟେ ସେ ମାନଗୋବିନ୍ଦ ।
ସଂସାର ମୁଖରେ ଶୁଭେ ସାଧୁ ସାଧୁ ବାଣୀ
ବଳରାମଙ୍କୁ ବଦନ୍ତି ପ୍ରଭୁ ଚକ୍ରପାଣି ।
ସ୍ୱାମୀ ଅର୍ଜୁନକୁ ତୁ ଯେ ଚିନ୍ତିଥିଲୁ ମନ୍ଦ
ଅର୍ଜୁନର ଚରିତ ଯେ କହନ୍ତି ଗୋବିନ୍ଦ ।
ସଂସାର ବତ୍ସଳ ଦେବ ଭାଷନ୍ତି ଯାହାକୁ
ସୁଭଦ୍ରା ବରଣ କଲା ଦେବ ଅର୍ଜୁନକୁ ।
ବଳରାମ ବୋଇଲେ ତୁ ସକଳ ପ୍ରାମଣୁ
କୂଟ କପଟର କଥା ଆମ୍ଭେ ତ ନ ଜାଣୁ ।
କୁମରମାନେ ବସିଲେ ସଭାକରି ପୁଣି
ନନ୍ଦରାୟେ ବସିଲେକ ସୁଭଦ୍ରାକୁ ଘେନି ।
ବିଜୟ ସେ ଫାଲଗୁନି ପୁରନ୍ଦର କୋଳେ
ମନ୍ତ୍ରାଧ୍ୟୟନ କରନ୍ତି ନନ୍ଦ ମହାଖୁଡ଼େ ।
ବଜାନ୍ତି ଯାଦବେ ଶଙ୍ଖ ଶୁଭଇ ସେ ଧ୍ୱନି
ସୁସ୍ୱରେ ମଙ୍ଗଳ ଗୀତ ଗାବନ୍ତି କାମିନୀ ।
ଅର୍ଜୁନକୁ ଦେଖି ବାଳୀ ସକଳ ଉସତ
ମଦନଶରେ ସମ୍ଭାଳି ନ ପାରନ୍ତି ଚିତ୍ତ ।
ମଦନଶରେ ମୋହିତ ହେଲେ ନରନାରୀ
ବୋଲନ୍ତି ପାର୍ଥ କି ବର ହୋଇବ ସବୁରି ।
ବୋଲନ୍ତି ପ୍ରୟୋଗେ ଯେହୁ ଦେଇଥିବ ଝାସ
ଏମନ୍ତ ସ୍ୱାମୀ ସଙ୍ଗେ ସେ କରିବ ବିଳାସ ।
ପୂର୍ବେ ତପ ନ କରିବା କଥା ନ ସୁମରି
ପରକୁ ସୁନ୍ଦର ଦେଖି ଏବେ ମରୁ ଝୁରି ।
ପୁରୁଷକୁଳେ ଉତ୍ତମ ପାଣ୍ଡବ ସୁନ୍ଦର
ଅର୍ଜୁନତୁଲ୍ୟ ଅଛଇ କେହୁ ଧନୁର୍ଦ୍ଧର ।
ପୂର୍ବେ କରିଥିବ ଯେଉଁ ସ୍ତିରୀ ଗାଢ଼ ତପ
ସଉଭାଗୀ ହୋଇବ ସେ ପାର୍ଥର ସ୍ୱରୂପ ।
ଯଶୋଦା ଶ୍ରୀମତୀ ମାତା ସୁଭଦ୍ରାର ହୋଇ
ନନ୍ଦ ହିଁ ଧନ୍ୟ ଅର୍ଜୁନ ଯାହାର ଜୁଆଇଁ ।
ନନ୍ଦର ନନ୍ଦିନୀ ଧନ୍ୟ ସୁଭଦ୍ରା କୁମାରୀ
ବର ହିଁ ଧନ୍ୟ ଅର୍ଜୁନ ପ୍ରତିଗ୍ରହ କରି ।
ପୁର ହିଁ ଧନ୍ୟା ସୁଭଦ୍ରା ଏଥି ହେଲା ଜାତ
ସୁଭଦ୍ରା ଧନ୍ୟ ଧଇଲା ଅର୍ଜୁନର ହାତ ।
କୁଳ ପାଇଲେ ସୋଦର ରାମକୃଷ୍ଣ ବେନି
ଧନ୍ୟ ପାଇଲା ଏ ବନ୍ଧୁକୁଳ ଫାଲଗୁନି ।
ଆବର ଧନ୍ୟ ଆମ୍ଭର କୁଳକୁଯୁମ୍ଭର
ଅର୍ଜୁନର ବଶ ଯେଣୁ ଦ୍ୱାରକା ନଗର ।
ଧନ୍ୟ ଦେଖିଲୁ ଏ ବର କନ୍ୟାଙ୍କର ମୁଖ
ପୁଣ୍ୟ ଫିଟିଲା ତୁଟିଲା ପୁଣି ଆମ୍ଭ ଦୁଃଖ ।

ପୁରୁଷ ପଣରୁ ଧନ୍ୟ ଏ ପରମ ରୂପ
ପୁରୁଷ ଗଣରେ ଏହି କନ୍ଦର୍ପ ସ୍ୱରୂପ ।
ପିତାମାତାଙ୍କର ଧନ୍ୟ ଧନ୍ୟ ସେ ଜୀବନ
ବଂଶ ଲକ୍ଷଣେ ପୁରୁଷ ହୁଅନ୍ତି ଉତପନ୍ନ ।
ଏସନ ସାଧୁ କହନ୍ତି ତାକୁ ପୁରଜନ
ଶ୍ରୀକୃଷ୍ଣ ସାନନ୍ଦ ଶୁଣି ପ୍ରଶଂସା ବଚନ ।
ସୋମପାଳ ଗୋତ୍ର ଅଟେ ସେ ପାକଶାସନ
ପଣ୍ଡୁ ଯେ ବିଚିତ୍ର ବୀର୍ଯ୍ୟ ଶାନ୍ତନୁକୁ ଘେନି ।
ଅସ୍ୟ ପିତା ପିତାମହ ପର ପିତାମହ
ଅର୍ଜୁନର ଏହି ତିନି ପୁରୁଷକୁ କହ ।
ନନ୍ଦ ଉଦୟ ଅରୁଣ ଏ ତିନି ପୁରୁଷ
ପିତା ପିତାମହ ପରମିତାମହ ଭାଷ ।
ଦେଶକାଳ ବାକ୍ୟ ଉଚ୍ଚାରିଲେ ପୁରୋହିତେ
ସମସ୍ତ ଋଷି ଅଛନ୍ତି ତାହାଙ୍କ ସଙ୍ଗତେ ।
ବ୍ରାହ୍ମଣେ କରୁଅଛନ୍ତି ବେଦମନ୍ତ୍ର ଧ୍ୱନି
ଉଚ୍ଚାରନ୍ତି ଚଣ୍ଡପୁତ୍ରେ ମଙ୍ଗଳ ଯେ ଧ୍ୱନି ।
ନାରୀଗଣମାନେ ମିଳି ଗାନ୍ତି ବିଭାଗୀତ
ହୁଳହୁଳି ଶବଦ ଯେ ଉଠଇ ବହୁତ ।
ପଢ଼ନ୍ତି ସେ ସପତାଙ୍ଗ ପାଞ୍ଜି ଗ୍ରହପୁତ୍ରେ
ପଢ଼ନ୍ତି ଯେ ଦେଶକାଳ ବାକ୍ୟ ପୁରୋହିତେ ।
ବେଦଧ୍ୱନି ବାକ୍ୟ ପଢ଼ି ବେନି ଯୋଗ ଘେନି
କୁଶଗଣ୍ଠି ପକାଇଲେ କରି ଶୁଭଧ୍ୱନି ।
ଜୟ ଜୟ ଶବଦରେ ପୂର୍ଣ୍ଣ ମହାସଭା
ଶଚୀ ଇନ୍ଦ୍ର ପ୍ରାୟେ ଦୁହେଁ ପାଇଲେକ ଶୋଭା ।
ଡାହାଣ ବର୍ତ୍ତକ ଶଙ୍ଖେ କୁଶ ତିଳପାଣି
ନନ୍ଦରାଜା ହସ୍ତେ ଦେଲେ ପୁରୋହିତ ଆଣି ।
ଯଉତୁକ ଦିଅ ଏବେ ଯେସନ ବିଧାନ
ସମସ୍ତ ଦ୍ରବ୍ୟ ଛାମୁକୁ ବେଗକରି ଆଣ ।
ଶତେକ ରଥ ସୁବର୍ଣ୍ଣ ବେଗକରି ଆଣି
ଅଷ୍ଟରତ୍ନ ପୁରାଇଣ ଦେଲେ ନନ୍ଦରାଣୀ ।
ପଞ୍ଚାଶ ଲକ୍ଷ ସେ ପୁଣି ଦେଲେ ଶୁଦ୍ଧଗାଈ
ପଚିଶ ଲକ୍ଷ ତହିଁରେ ଦୁହାଁଳିଆ ମାଈ ।
ଆପେ ଯଉତୁକ ପୁଣି ଦେଲେ ଦେବରାଜ
ଅଷ୍ଟରତନର ଖଞ୍ଜା କୋଟି ଏକା ଗଜ ।
କୋଟିଏକ ଅଶ୍ୱ ଦେଲେ ବାଛି ଶୁଦ୍ଧଜାତି
ଅଷ୍ଟରତ୍ନ ଚାମର ସେ ବହୁତ ଦିଅନ୍ତି ।
ଲକ୍ଷେକ ରଥ ଯେ ବେନି ଲକ୍ଷ ମତ୍ତଗଜ
ଦେବକୀ ଦେବୀ ଯେ ଦେଲେ ରତ୍ନେ କରି ସଜ ।
ଉଗ୍ରସେନ ବସୁଦେବ ଦେଲେ ରତ୍ନ ସତ
ବଳରାମ ଦେଲେ ଲକ୍ଷେ ଯତ୍ନେ ଶତରଥ ।

ସୁବର୍ଣ୍ଣ ଯୋଗାଡ଼ମାନ ଅଷ୍ଟରତ୍ନେ ଖଞ୍ଜି
ଥୋଇଲେକ ପନ୍ତି ପନ୍ତି କରି ସବୁ ସାଜି ।
ଜଗନ୍ନାଥଙ୍କର ପତ୍ନୀ ଆବର ରେବତୀ
ଜଣ ଜଣ କରି ଯଉତକୁ ସେ ଦିଅନ୍ତି ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଯଉତୁକ ଦେଲେ କୃଷ୍ଣପୁତ୍ରେ ଭିନ୍ନ ଭିନ୍ନ ।
ଯେତେ ଯଉତୁକ ଆଣି ଦେଲେ ଦେବହରି
ପୁରିଲାକ ରଇବତ ଗିରି ଯୁଣ ଚାରି ।
ଯଉତୁକ ଦେଇସାରି ନନ୍ଦ ମହାଖୁଡ଼
ବେନିକର ଯୋଡ଼ି ଉଭା ଇନ୍ଦ୍ରଙ୍କ ଛାମୁର ।
ସ୍ୱାମୀ ତ୍ରଇଲୋକ୍ୟନାଥ ତ୍ରୈଲୋକ୍ୟର ବନ୍ଧୁ
ଦେବାଧିଦେବ ରାଜା ହେ ବିଳାସୀଙ୍କ ବିଧୁ ।
ତ୍ରଇଲୋକ୍ୟ ପାଳକ ହେ ଦେବ ସୁରନାଥ
ଯଉତୁକ ଦେବାକୁକି ମୁହିଁ ସାମରଥ ।
ଦୁହିତା ଗୋଟିଏ ଦେଇ ପଶିଲି ଶରଣ
ଦଶଦୋଷ ତାର କ୍ଷମା କରିବେ ଆପଣ ।
ଶୁଣି ବିନୟେ ବୋଇଲେ ଗୋପ ଧିପ ନନ୍ଦ
ଶତ ପ୍ରଣମିଲେ ଧରି ଇନ୍ଦ୍ର ପଦ୍ମପାଦ ।
ବୋଇଲେକ ଆସ୍ଥାନରେ ଥାଇ ଆଖଣ୍ଡଳ
ଅନେକ ପ୍ରଶଂସି କଲେ ନନ୍ଦକୁ ସେ କୋଳ ।
ଗୋଧନ ଧନ ଯେତେକ ଦେଲ ତୁମ୍ଭେ ବାଛି
ସମସ୍ତ ପାଇଲୁ ନାହିଁ ବାରିବାକୁ କିଛି ।
ପରାପୂର ଆସନଙ୍କ ଅନୁଗ୍ରହ ବାକ୍ୟେ
ଗୋପ ଶୂନ୍ୟ ହେଲା ନନ୍ଦ ବୋଇଲେକ ଶୋକେ ।
ଯଶୋଦା ଦେବୀଙ୍କ ଦେବୀ ଶୋକ ହିଁ ସବୁରି
ଶ୍ରାବଣର ଧାରା ଜିଣି ବହେ ନେତ୍ରୁ ବାରି ।
କନ୍ୟା ସମର୍ପଣ କଲେ ନନ୍ଦରାୟ ଆଣି
ପୁରୋହିତ ଲାଜାହୋମ କଲେ ତାହା ଜାଣି ।
ହୋମର ବିଧାନ ଯାହା ସାରିଲେ ସମସ୍ତ
ବୈଶ୍ୱାନରଙ୍କୁ ତୋଷିଲେ ବିଧାନ ଯେମନ୍ତ ।
ବରକନ୍ୟା କରନ୍ତି ଯେ ବସି ଘୃତପାନ
ଭୋଜନ ସାରି ସେ ପୁଣି କଲେ ଆଚମନ ।
ହସ୍ତ ପଖାଳି ବେଦୀରେ ଯାଇ ବିଜେ ହେଲେ
ଅର୍ଘ୍ୟଥାଳୀ ଘେନି ତାଙ୍କୁ ବନ୍ଦାପନା କଲେ ।
ସୁଭଦ୍ରା ତୁ ସୁଲକ୍ଷଣୀ ହୁଅ ସଉଭଦ୍ରେ
ସନ୍ତାନ ଜାତ କର ତୁ ସୋମବଂଶ ମଧ୍ୟେ ।
ତୋହର ଗର୍ଭୁ କୁମର ହୋଇ ଉତପତି
ସୋମବଂଶରେ ସେ ପୁଣି ହେଉ ନରପତି ।
ଋଷିମାନେ ଅର୍ଘ୍ୟଦେଇ କଲେ ଶୁଭବାଞ୍ଛା
ମାଗୋ ତୋ ଯୋଗୁ ଏ ସୋମବଂଶ ହେଉ ରକ୍ଷା ।

ଯେ ଯାହାର ଅନୁରୂପେ ଦକ୍ଷିଣା ହିଁ ନେଲେ
ସନ୍ତୋଷେ ମେଲାଣି ହୋଇ ବିପ୍ରେ ଚଳିଗଲେ ।
ଅନେକ ହିଁ ଧନବସ୍ତ୍ର ଦେଲେକ ବଧାଇ
ଦାରିଦ୍ର୍ୟ ହରଣ ହେଲା ଇଚ୍ଛାସୁଖେ ପାଇ ।
ଆହେ ବୁଧଜନମାନେ ପୁରୁ ମନୋବାଞ୍ଛା
ଆୟୁ ଧନଧାନ୍ୟ ପୁତ୍ର ଯାହାଙ୍କର ଇଚ୍ଛା ।
ଅନେକ ଜନ୍ମର ହୋଇବ ଦୁଷ୍କୃତ ତ୍ୟାଗୀ
ନିଶ୍ଚୟ ପ୍ରାପତ ହେବ ମନେ ଯାହା ମାଗି ।
ଅର୍ଜୁନେ ସୁଭଦ୍ରା ଦେଇ କୃଷ୍ଣ ଦୃଷ୍ଟମତି
ଉତ୍ସବ ମଙ୍ଗଳ ବାଞ୍ଛା ହୃଦେ ସୁମରନ୍ତି ।
ଶ୍ରୀକୃଷ୍ଣ ପୁରାଣ ମହାଭାରତର କଥା
ଶତ ଅଶ୍ୱମେଧ ଯାଗକଲା ଫଳଦାତା ।
ମୁକତି ସାଗର ଏ ଯେ ମହାପୁଣ୍ୟମୟ
ଏହା ଆଶାକରି ନରେ ଗଙ୍ଗାସ୍ନାନ ପାଅ ।
ସୁଜ୍ଞଜନେ ଶୁଣିବେକ ଏ ବିଷ୍ଣୁ ଚରିତ
ଯେ ଶାସ୍ତ୍ର ଶୁଣନ୍ତେ ହୁଏ ସଭାରେ ନିର୍ଜିତ ।
ଦ୍ୱିତୀୟ ନାରାୟଣ ଯେ ଅଟଇ ଫାଲଗୁନି
ଭାରା ଉଶ୍ୱାସିବା ପାଇଁ ଜାତ ଦେହ ଘେନି ।
ସୁଭଦ୍ରା ପ୍ରଦାନ କାର୍ଯ୍ୟ ସାରିବାର ବେଳେ
ବହୁଦାନ ଦେଲେ ଯୁଧିଷ୍ଠିର ମହୀପାଳେ ।
ଯେତେ ଧନ ଦେଇଥିଲେ ନନ୍ଦ ନୃପବର
ଗୋ ବସ୍ତ୍ର କାଞ୍ଚନ ଆଦି ବହୁତ ସମ୍ଭାର ।
ଅଗ୍ନି ସମାପ୍ତେ ଯୁଧିଷ୍ଠି କଲେ ତାହା ଦାନ
ବରକନ୍ୟା ମନୋବାଞ୍ଛା ହୋଇଲା ପୂରଣ ।
ବିଜ୍ଞ ବିପ୍ରଗଣ ତହିଁ କଲେ ବେଦନାଦ
ପୁରନାରୀମାନେ କଲେ ହୁଳହୁଳି ଶବ୍ଦ ।
ବରକନ୍ୟାକୁ ନେଇଣ ପ୍ରଭୁ ଦେବରାଜେ
ଦ୍ୱାରକାପୁରକୁ କଲେ ସମ୍ଭର୍ବରେ ବିଜେ ।
ଅନେକ ଉତ୍ସବ କଲେ ଦ୍ୱାରକା ଭୁବନେ
ବିଦ୍ୟାଧର ଘେନି ବିଜେ କଲେ ମଘବାନେ ।
ଅମର ଆସ୍ଥାନେ ଘେନି ସୁଧର୍ମା ସେ ସଭା
ଆକାଶରେ ଚିତ୍ରସେନ ଆସି ହେଲେ ଉଭା ।
ଅନ୍ତପୁରେ ବିଜେ କଲେ କୁମାର କୁମାରୀ
ଆପେ ନନ୍ଦରାୟେ ସବୁ ସମାଧାନ କରି ।
ଶ୍ରୀକରେ ବସନ ଅର୍ଘ୍ୟ ଘେନିଣ ସମ୍ବୋଧି
ସମର୍ପି ବିନୟ କରି କହନ୍ତି ଯେ ବିଧି ।
ନନ୍ଦ ବୋଇଲେ ତୁ ବାବୁ ଅଟୁ ସୋମବଂଶୀ
ଉଶ୍ୱାସ କରିବୁ ପୃଥ୍ୱୀଭାରା ସବୁ ନାଶି ।
ନିର୍ମଳ ନିର୍ଭୟ ନିଷ୍କଳଙ୍କ ଜଗବନ୍ଧୁ
ଆନନ୍ଦର ନନ୍ଦନ ତୁ ଭୁବନର ସାଧୁ ।

ମୋହର ବଂଶରେ ଅଛି ଯେତେ ଯେତେ ଦୋଷ
ତାହା ଉପେକ୍ଷା କରିବା ମହତ ପୁରୁଷ ।
ସମ୍ବୋଧିତ ଅର୍ଘ୍ୟଦେଇ ବହୁତ ବିଳପି
ଦଶଦୋଷ କ୍ଷମାକର ଦ୍ୱିତୀ କୃଷ୍ଣରୂପୀ ।
ବହୁତ ସମ୍ବୋଧ କଲେ ନନ୍ଦ ମହାଖୁଢ଼େ
ଦୁହିତା କରକୁ ଦେଇ ପାର୍ଥ କରତଳେ ।
ସମ୍ବୋଧନ କରିଗଲେ ଯେ ଯାହା ଭୁବନେ
ବିଜୟ ଜଗମୋହନ ମଣୋହି ଆସନେ ।
ପରଷନ୍ତି ଯେ ଅମୃତ ଯୋଗାଣ ରକ୍ମିଣୀ
ଅନ୍ତଃପୁରେ ଉଠଇ ଯେ ହାସ୍ୟରସ ବାଣୀ ।
ଚତୁର୍ଥୀ ସପ୍ତମଙ୍ଗଳା ଉତ୍ସବ ବିଧାନ
ଶେଷ କରିଗଲେ ପୁଣି ଯେ ଯାହା ଭୁବନ ।
ଭୋଜନ କରିଲେ ବସି ବରକନ୍ୟା ବେନି
ଆଚମନ ସାରି ତହୁଁ ଚଳେ ଫାଲଗୁନି ।
ଅମର ପୁରକୁ ବିଜେ କଲେକ ମଘବା
ଅମୃତ ବଚନେ ତୋଷ ହୋଇଲେ କି ଦେବା ।
କରନ୍ତି ଯେ ବିଦ୍ୟାଧରମାନେ ରସକେଳି
ଅମରାଧିନାଥ ଗଲେ ଆକାଶକୁ ଚଳି ।
ସାରିଲେ ଚଉଦିଗର ମଙ୍ଗଳ ଉତ୍ସବ
ଚଉଦ ଦିବସେ ଚଳିଗଲେ ରାଜଦେବ ।
ଚନ୍ଦନ କାଷ୍ଠକୁ ଚୂରି ନିର୍ମାଣିଲେ ଗୁଣ୍ଡି
ତାହା ଲେପନ କରାଇ ବସାଇଲା ମଣ୍ଡି ।
ପଢ଼ି ଋକ୍ ସାମ ଯଜୁ ଅଥର୍ବର ବାଣୀ
ବରକନ୍ୟା ବେନି ଶିରେ ଅର୍ଘ୍ୟଦେଲେ ଆଣି ।
ଆନନ୍ଦରେ ହୁଳହୁଳି ଦିଅନ୍ତି ସ୍ତ୍ରୀଲୋକ
ବଧାଇ ଦିଅନ୍ତି ତାଙ୍କୁ ଯଶୋଦା ଅନେକ ।
ବହୁତ ଆନନ୍ଦ ତହୁଁ କହିତ କେପାରି
ମହା ଆନନ୍ଦେ ଉଛୁଳି ପଡ଼ଇ ସେ ପୁରୀ ।
ସାତବଂଶର ଯୁବତୀ ଜନମାନେ ମିଳି
ଯାବତ ପରିହାସରେ କରନ୍ତି ଯେ କେଳି ।
କୁତୁହଳେ ହୁଅନ୍ତି କେ ତହିଁ ଧରାଧରି
କର୍ଦ୍ଦମ ପିଚିକା କେହି ହେଲେ ମରାମରି ।
ପ୍ରଥମେ ପରିହାସରେ ଚନ୍ଦନ ଅଗୁର
ଦ୍ୱିତୀୟେ ହଳଦୀ କଲେ ଲେପନ ଶରୀର ।
ତୃତୀୟେ ପରିହାସରେ ଫିଙ୍ଗାଫିଙ୍ଗି ଧୂଳି
ଚତୁର୍ଥେ କର୍ଦ୍ଦମ ଧରି ହେଲେ ମରାମରି ।
କୁତୁହଳେ ବୋଲାବୋଲି ହୁନ୍ତି ସର୍ବେ ରଙ୍ଗେ
କର୍ଦ୍ଦମ ଜଡ଼ିତ ହେଲା ସମସ୍ତଙ୍କ ଅଙ୍ଗେ ।
ବାରଣ ନୁହଇ ତହିଁ ମାନିତ ଗୌରବ
ସ୍ତିରୀ ପୁରୁଷ ହୋଇଲେ ଏକଗୋଷ୍ଠି ସର୍ବ ।

ଆଦିତ୍ୟ ଦେବତା ଅସ୍ତ ହେଉଅଛି ଆସି
କୃଷ୍ଣବେଣୀ ଜଳେ ସ୍ନାନ କଲେ ସର୍ବେ ପଶି ।
ତିଳ ଅଏଁଳା ପନିର ପାଣି କରେ ଘେନି
ପୁରୁଷମାନଙ୍କୁ ସ୍ନାନ କରାନ୍ତି କାମିନୀ ।
ସ୍ନାନ କରି ଯଦୁବୀର ଦେବ ମଧୁହାରୀ
ଚଳିଗଲେ ଆନନ୍ଦରେ ଯେ ଯାହାର ପୁରୀ ।
ବରକନ୍ୟା ବନ୍ଦାପନା କଲେ ସର୍ବ ଦେବୀ
ଅର୍ଘ୍ୟ ବନ୍ଦାପନା କଲେ ସକଳ ସାଧବୀ ।
ବୃକ୍ଷ ଚତୁର୍ଦ୍ଦଶୀ କୃଷ୍ଣପକ୍ଷ ବୁଧବାର
ରୋହିଣୀ ନକ୍ଷତ୍ର ଚନ୍ଦ୍ର ଭୋଗ ସେଦିନର ।
ନାରାୟଣ ଶଙ୍କର୍ଷଣ ବସୁଦେବ ଘେନି
ସମସ୍ତ ରାଜାମାନଙ୍କୁ ଅର୍ଘ୍ୟ ଦେଲେ ଆଣି ।
ପାଣ୍ଡବ କୁଳରେ ଯେତେ ଗଉରବ ଜନ
ସମସ୍ତଙ୍କୁ ଦେଲେ ପୁଷ୍ପ ଅକ୍ଷତ ଚନ୍ଦନ ।
ସାଜିଲେକ ଅଶ୍ୱ ଗଜ ରଥ ସମଦଣ୍ଡ
ବୀରତୁର ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ଯୁଧିଷ୍ଠିର ପଚାରିଲେ ଶୁଣ ଦେବରାଜ
ହସ୍ତିନା ରାଜ୍ୟକୁ ବେଗେ ଦଣ୍ଡ କର ସଜ ।
ପରମ ଆନନ୍ଦ ହୋଇ ଆଜ୍ଞାଦେଲେ ହଳୀ
ମଙ୍ଗଳଧ୍ୱନି କରନ୍ତେ ଶୁଣି ବନମାଳୀ ।
ଭୋ ଧର୍ମଦେବ ରାଜ୍ୟକୁ ବିଜେ କରି ଯିବେ
ଭୋ ଦେବ ଆମ୍ଭଙ୍କୁ ପୁଣି ଦୟା କରିଥିବେ ।
ସାଜିଲେକ ଯଦୁବଂଶ ସୈନ୍ୟ ଦେବହରି
ପାଛୋଟି ଆସନ୍ତି ରାମକୃଷ୍ଣ ବିଜେ କରି ।
ଅର୍ଜ୍ଜୁନ ବସିଲା ମାୟାବତୀ ପୁଷ୍ପରଥେ
ଦେବ ପୁଷ୍ପବୃଷ୍ଟି କଲେ ଅର୍ଜ୍ଜୁନର ମାଥେ ।
ସାତବଂଶ କନ୍ୟାମାନେ କଲେ ଶୁଭଧ୍ୱନି
ଶୁଭ ଅନୁକୂଳ ଯୋଗେ ଚଳନ୍ତି ଫାଲଗୁନି ।
ବାହାରିଲେ ରୈବତରୁ ଦେବ ଜଗବନ୍ଧୁ
ସୁଭଦ୍ରାକୁ କହନ୍ତି ଯେ ସର୍ବେ ସାଧୁ ସାଧୁ ।
ସତ୍ୟକି ପ୍ରଦ୍ୟୁମ୍ନ ଶତଧନୁ ଯେ ଅକ୍ରୁର
ଏମାନେ ସମସ୍ତେ ଯାନ୍ତି ହସ୍ତିନା ନଗର ।
ଅନେକ ଯୋଗାଡ଼ ରଥ ଗଜ ଅଶ୍ୱ ଘେନି
ତଳେ ଅଛନ୍ତି ଅନେକ ଗଣିକା କାମିନୀ ।
ଅନେକ ଯୋଗାଡ଼ ରଥଗଜ ରତ୍ନ ଧନ
ଘେନି ଅର୍ଜ୍ଜୁନ କରନ୍ତି ନଗରେ ଗମନ ।
ଅନେକ ରାଜ୍ୟ ନଗରେ ଆସନ୍ତି ସେ ପଶି
ସକଳ ନରେନ୍ଦ୍ର ଅର୍ଘ୍ୟ ଦିଅନ୍ତି ସେ ଆସି ।
ବହୁତ ଅକ୍ଷତ ଆଣିଦ୍ୟନ୍ତ ନରପତି
କୁଞ୍ଜବନେ ପ୍ରବେଶିଲେ ଯୁଧିଷ୍ଠି ନୃପତି ।

ଦେଶାଉରମାନେ ତାହା ଦେଖିକରି ଗଲେ
ଧୃତରାଷ୍ଟ୍ରର ଛାମୁରେ ବାରତା କହିଲେ ।
ସ୍ୱାମୀ ସୁଭଦ୍ରାକୁ ବିଭାହୋଇ ଫାଲଗୁନି
ଅନେକ ସମ୍ଭାରେ ସେହୁ ଆସେ କନ୍ୟା ଘେନି ।
ବାରତା ପାଇଣ ତହୁଁ ଅମ୍ବିକାର ସୁତ
ବିଜେ ଧୃତରାଷ୍ଟ୍ର ମାନଗୋବିନ୍ଦ ଅଗ୍ରତ ।
ବାବୁ ପାର୍ଥ ଆସେ ବିଭାହୋଇ କନ୍ୟାଗୋଟି
ସମଦଣ୍ଡ ଘେନି ବେଗେ ଯାଅ ତୁ ପାଛୋଟି ।
ତାଙ୍କ ସଙ୍ଗତେ ଅଛନ୍ତି ହରିପୁତ୍ରମାନେ
ଭଗ୍ନୀକି ବିବାହ ଦେଲେ କୃଷ୍ଣ ବଳରାମେ ।
ଯେବେ ତୁ ଉତ୍ସବ କରି ନ ଯିବୁ ପାଛୋଟି
ମନେ ଅନ୍ତର କରିବେ ଶ୍ରୀକୃଷ୍ଣ ଯୁଧିଷ୍ଠି ।
ମୋହର ଶପଥ ତୋତେ ନ ଧର ତୁ ଆନ
ଉଠ ଉଠ ଆସ୍ଥାନରୁ ଯାଅ ଯା ବହନ ।
ଭୀଷ୍ମ ଦ୍ରୋଣ ବୋଇଲେକ ଅନେକ ବିନୟେ
ଆସ୍ଥାନୁ ଉଠି ବାହାର ହେଲେ କୁରୁରାୟେ ।
ଅନେକ ହସ୍ତୀ ମଣ୍ଡନ କଲା ରାଜା ଆଣି
ବିଜେ ସମାରୋହେ ଧୃତରାଷ୍ଟ୍ର ନୃପମଣି ।
ଚଳଇ ମାନଗୋବିନ୍ଦ ହସ୍ତିନାକୁ ଯାଇ
ବଇଦର୍ଭ ନଦୀକୂଳେ ଭେଟେ କୁରୁସାଇଁ ।
ଏକମେଳେ ହେଲେ ତହିଁ ବେନିକୁଳ ସୈନ୍ୟ
ବାଦ୍ୟନାଦରେ କମ୍ପିଲା ତିନି ଯେ ଭୁବନ ।
ବହୁତ ଆନନ୍ଦ ହୋଇ ବିହରନ୍ତି ସର୍ବେ
ଅସଂଖ୍ୟ ସୈନ୍ୟସାଗର ଜାଣି ମତ୍ତଗର୍ବେ ।
କୁଞ୍ଜଗଳ ଜିଣି ହେଲେ ହସ୍ତିନା ପ୍ରବେଶ
ଦେଖି ପୁରଜନ ହେଲେ ଅନେକ ହରଷ ।
ପୁରନାରୀଗଣ ପୁଣି ବରକନ୍ୟା ଦେଖି
ଧାମନ୍ତି ଆନନ୍ଦ ହୋଇ ଆଶ୍ରମ ଉପେକ୍ଷି ।
କୁନ୍ତିଦେବୀ ବିଜେ କଲେ ଗାନ୍ଧାରୀଙ୍କ ପାଶେ
ମାଗୋ ଉତ୍ସବ ଦେଖ ହିଁ ସଂସାରେ ହରଷେ ।
ଗାନ୍ଧାରୀ ବିଜୟ ସଙ୍ଗେ ଘେନି ଭାନୁମତୀ
ଅନେକ ଚାମର ପାଟଛତ୍ର ଢାଳୁଛନ୍ତି ।
ହରି ବଳରାମଙ୍କର ସୁଭଦ୍ରା ଭଗିନୀ
ଦ୍ୱାରକା ମଣ୍ଡନୀ ଆମ୍ଭ କୁଳବଧୂ ପୁଣି ।
ବରକନ୍ୟାଙ୍କ ଦର୍ଶନେ ପାପ ଯାଇ କ୍ଷୟେ
ଅନ୍ଧପଟଳ ତୁ ଦଣ୍ଡେ ଫିଟା ମହାମାୟେ ।
ପ୍ରଦାନ କରାଇଲେ ଗୋ ରାମକୃଷ୍ଣ ଥାଇ
କେମନ୍ତେ ସାଧବୀ ବାରେ ଦେଖ କିନା ଯାଇ ।
ଗାନ୍ଧାରୀ କହିଲେ ତୁମ୍ଭେ କହିଲ ଦୁର୍ଲ୍ଲଭ
ସ୍ୱାମୀ ଅନ୍ଧ ଜୀବନରେ ମୋର କି ସୁଲଭ ।
ସବୁରି ମହିମା ମୁହିଁ ଜାଣିବି କେସନ
ଧୃତରାଷ୍ଟ୍ରଙ୍କର ଯେବେ ଥାଆନ୍ତା ନୟନ ।
ସ୍ୱାମୀ ରହିଲେ ମୋହର ଯେବେ ଅନ୍ଧହୋଇ
ଏବେ ଏ ସମ୍ପଦ ମୁହିଁ କିସ ଅର୍ଥ ପାଇ ।
ଯେତେ ପୂର୍ବେ ଅରଜିଛି ତେବେ ସିନା ଭୁଞ୍ଜି
ଆବର କିମ୍ପାଇ ମୋତେ କଟୁବାକ୍ୟ ଗଞ୍ଜି ।
କ୍ରୋଧ ଅବସ୍ଥାକୁ ପାଇ ବୋଲନ୍ତି ଗାନ୍ଧାରୀ
ଅନେକ ବିନୟେ ଦେବୀ କୁନ୍ତୀଙ୍କି ତିଆରି ।
ଗାନ୍ଧାରୀ ବୋଇଲେ ଶୁଣ କୁନ୍ତଭୋଜସୁତା
ସମ୍ପଦ ବିପଦ ବେନି ସିନା ଏକ କଥା ।
ତୁମ୍ଭର ଆନନ୍ଦ ସିନା ଏ ସମ୍ପଦ ଦେଖି
ଅନେକ ବିପଦ ଅଛି ଦେବ ତା ଉପେକ୍ଷି ।
ମନ୍ଦକର୍ମେ ଜାତ କଲି ପୁତ୍ର ଯେତେ ଗୋଟି
ସମସ୍ତେ ଦୁଷ୍ଟ ପୃଥ୍ୱୀର ଭାର ହେଲେ ସେଟି ।
ସମ୍ପଦ ଦେବୁ ତୁଗୋ କୁନ୍ତଭୋଜ ସୁତା
ପୁଅ ତୋର ରାଜା ହେବ ହେବୁ ରାଜାମାତା ।
ମୋ ପୁଅ ମଧୁପିଙ୍ଗଳ ଜାତି ଯେ ଅଟନ୍ତି
ତହିଁକି ଭାଇ ମୋହର ଶକୁନି ଯେ ମନ୍ତ୍ରୀ ।
ମାଗୋ ଅଗାଧ ନଦୀରେ ଦଦରା ଯେ ନାବ
କେତେବେଳଯାଏ ଭାରା ସେ ସହି ପାରିବ ।
ନରଚଣ୍ଡାଳ ସମସ୍ତେ ହୋଇଲେଣି ମେଳା
ଦଣ୍ଡେ ଅଛି ବୁଡ଼ିବାକୁ ସିନା ମୋର ଭେଳା ।
ଆମ୍ଭର ପୁଣ୍ୟ ତୁ ମାଗୋ ଜାଣିବୁ ଏସନେ
ଧୃତରାଷ୍ଟ୍ରକୁ ମରଣ ହୁଅନ୍ତା କେସନେ ।
ତାହାଙ୍କ ନିଧନେ ମାଗୋ ମୁହିଁ ନ ବର୍ତ୍ତିବି
ଏ ପୁତ୍ରମାନଙ୍କ କଷ୍ଟ କର୍ଣ୍ଣେ ନ ଶୁଣିବି ।
ଆନନ୍ଦ ହୋଇବୁ ପୁତ୍ରଙ୍କର ମୁଖ ଦେଖି
ଧର୍ମରେ ପ୍ରାପତ ଯେଣୁ ବେନି ତୋର ଆଖି ।
ତୋର ଜୀବନ ସାର୍ଥକ ଅଟଇ ଗୋ କୁନ୍ତୀ
ସର୍ଜିଛି ଧର୍ମଦେବତା ତୋତେ ମନେ ଚିନ୍ତି ।
କୁନ୍ତୀ ବୋଇଲେ ଗାନ୍ଧାରୀ ବଚନକୁ ଶୁଣି
ଆପଣା ସମ୍ପଦ ଦେଖି ନ ପାରିଲୁ ପୁଣି ।
ତୋ ପୁତ୍ର ମାନଗୋବିନ୍ଦ ନୃପକୁଳମଣି
ଶଙ୍ଖନିଧି ପଦ୍ମନିଧି ହସ୍ତେ ଅଛି ଘେନି ।
ହସ୍ତିନା ମଉଡ଼ମଣି ଅଟେ ଅଧିପତି
ତାହାର ସମାନ ଜଣେ କ୍ଷତ୍ରି ନାହିଁ ପୃଥ୍ୱୀ ।
ବାଳକ ବୁଲାନ୍ତି ମୋରପୁତ୍ରେ ଘୋର ବନେ
ଭିକ୍ଷା କରି କନ୍ଦମୂଳ ଭକ୍ଷି ଦିନେ ଦିନେ ।
ପରବିତ୍ତକୁ ପ୍ରଶଂସା ନ କରନ୍ତି ଯତି
ଆପଣା ସମ୍ପଦ ନିନ୍ଦା ନ କରେ ଯୁବତୀ ।

ଏସନ ସମୟେ କନ୍ୟା ଘେନି ଧନଞ୍ଜୟେ
ପ୍ରଣାମ କଲା ଗାନ୍ଧାରୀ କୁନ୍ତୀଦେବ ପାୟେ ।
ପୁତ୍ରବଧୂକୁ ଦେଖିଣ ଆନନ୍ଦିତ ମନ
ଗାନ୍ଧାରୀ କୋଳେ ଧଇଲେ ସୁଭଦ୍ରା ଅର୍ଜ୍ଜୁନ ।
ଦ୍ରଉପଦୀ ଭାନୁମତୀ କୁନ୍ତୀଦେବୀ ତୁଲେ
ଶ୍ରୀକରେ ଅର୍ଘ୍ୟ ଘେନିଣ ଭିତରେ ମିଳିଲେ ।
ଅର୍ଜ୍ଜୁନ ସୁଭଦ୍ରାଙ୍କର ଶିରେ ଅର୍ଘ୍ୟ ଦ୍ୟନ୍ତି
ଶ୍ରୀକରେ ଶୁଭମଣ୍ଡଳ ବାଞ୍ଛା ସେ କରନ୍ତି ।
ଅନେକ ଉତ୍ସବ କରି ଦିଅନ୍ତି ବଧାଇ
ପାର୍ଥ ପାଇଁ ସୁଭଦ୍ରା ତୁ ଥିଲୁ ଜନ୍ମହୋଇ ।
ବହୁ ପ୍ରଶଂସା କରନ୍ତି କୁନ୍ତୀ ଯେ ଗାନ୍ଧରୀ
ସମସ୍ତ ନାରୀଏ ଶୁଭ ମନାସନ୍ତି ଘେନି ।
ନିଜପୁରେ ପ୍ରବେଶିଲେ ବରକନ୍ୟା ଘେନି
ବିଳସନ୍ତି ଭଦ୍ରାସହ ବୀର ଫାଲଗୁନି ।
ଶୁଣ ଆହୋ ମନୁରାଜା ବଦନ୍ତି ଅଗସ୍ତି
ଭଦ୍ରା ତୁଲେ ଅର୍ଜ୍ଜୁନର ବଢ଼ିଲା ପୀରତି ।
ଅତିରଙ୍ଗ ରସଭରେଭୋଗ ଯେ ବିଳାସ
ହସ୍ତିନାପୁରେରହିଲେ ପାର୍ଥ ସାତମାସ ।
ଦ୍ରଉପଦୀ ବିଜେ କଲେ ଅର୍ଜ୍ଜୁନର କତି
ପୀୟୁଷ ତୁଲ୍ୟ ବଚନ କରନ୍ତି ଭକତି ।
ମାୟାବିପ୍ର ବୋଲେ ତୁମ୍ଭେ ଗଲ ଅନ୍ତଃପୁରେ
ଧର୍ମରାଜାଙ୍କ ମୋହର ମେଳ ସମୟରେ ।
ସେଥିଲାଗି ଗଲ ବାରବରଷ ଯେ ବନ
ସେହିଦିନୁ ମୋ ଶରୀର ହୋଇଲାକ କ୍ଷୀଣ ।
ନିତ୍ୟ ନିରେଖଇ ମୁହିଁ ତୋର ଚନ୍ଦ୍ରମୁଖ
ଦିନ ନ ସରେ ବ୍ୟସନ ମଣେ ମୁହିଁ ଦୁଃଖ ।
ବନେ ଗଲାଦିନୁ କଲି ବନଦୁର୍ଗା ଓଷା
ସେ ମାହେଶ୍ୱରୀ କୃପାରେ ପୂରିଲା ମୋ ଆଶା ।
ଶ୍ରୀକୃଷ୍ଣ ଭଗ୍ନି ହରିଲ ଜିଣି ଭାଇ ବେନି
ଆପଦ ଖଣ୍ଡିଲେ ତବ ଦୁର୍ଗତି ତାରିଣୀ ।
ଦେଖି ଧନଞ୍ଜୟ ହେଲେ ଆନନ୍ଦିତ ମନ
କୋଳେ ବସାଇ ଦ୍ରୌପଦୀ ଦେଲେକ ଚୁମ୍ବନ ।
ବହୁ ହାସ୍ୟ ରସ ପୁଣି ପୀରତି ବିନୋଦେ
ରସକେଳି ଉପୁଜିଲା ଉଭୟଙ୍କ ମଧ୍ୟେ ।
ଏମନ୍ତ ରହିଲେ ପାର୍ଥ ହସ୍ତିନା ଭୁବନ
ସୁଭଦ୍ରା ସଙ୍ଗେ ପୀରତି ବଢ଼େ ଦିନୁଦିନ ।
ଜୟ ଜୟ ଜଗନ୍ନାଥ ଜନ ହିତକାରୀ
ଜଗନ୍ନାଥ ଭଜି ଭବଜଳୁ ହୁଅ ପାରି ।
ଜଗନ୍ନାଥ ଭଜି ନରେ କଷ୍ଟୁ ହୁଅ ପାର
ଜଗନ୍ନାଥ ଭଜି ନରେ ଦୁସ୍ତରୁ ନିସ୍ତର ।
ଜଗନ୍ନାଥ ଭଜି ନରେ ପ୍ରସରୁ ସୁବୁଦ୍ଧି
ଜଗନ୍ନାଥ ଭଜି ନରେ ଛାଡ଼ ଶୋକବ୍ୟାଧି ।
ଜଗନ୍ନାଥ ଭଜି ନରେ ଲୋଭ ମୋହ ତେଜ
ଶ୍ରୀଜଗମୋହନ ନାମ ହୃଦପଦ୍ମେ ଭଜ ।
ଜମ୍ବୁଦ୍ୱୀପେ ଭ୍ରତଖଣ୍ଡ ଦକ୍ଷିଣ ଉଦଧି
ତୀର୍ଥ ନୀଳ କଳ୍ପବଟ ବଇକୃଣ୍ଠ ଭେଦି ।
ମହା ପର୍ବତ ସୁନ୍ଦର ନାମ ନୀଳଗିରି
ବ୍ରହ୍ମାଣ୍ଡ ମଧ୍ୟରେ ଯାର ଜ୍ୟୋସ୍ନା ଅଛି ପୂରି ।
ଚାରିଲକ୍ଷ ଯେ ବତିଶ ସହସ୍ର ବର୍ଷ କଳି
ତା ଦର୍ପ ମର୍ଦ୍ଦିବ ବସିଅଛି ବନମାଳୀ ।
ଶ୍ୱେତଗଙ୍ଗା ଅଟଇ ଯେ ରୋହିଣୀର କୁଣ୍ଡ
ଶ୍ରୀ ଯମେଶ୍ୱର ଯେ ଲିଙ୍ଗଆବର ମାର୍କଣ୍ଡ ।
ଗୁପତଗଙ୍ଗା ଅଟଇ ତୀର୍ଥ ବାରାଣସୀ
କୋଟିଏ ତୀର୍ଥଙ୍କୁ ଘେନି ପୁଷ୍କର ହିଁ ଆସି ।
ଶ୍ରୀରାମ କୃଷ୍ଣ ସୁଭଦ୍ରା ଦେବୀରୂପେ ବ୍ରହ୍ମା
ଦୋଷ ଉପେକ୍ଷି ଘେନନ୍ତି ଗୁଣ ମହାତମା ।
ଗୁଣସାଗର ନାଥ ଯେ ଜଗତର ବନ୍ଧୁ
ସେ ଦେବପାଇଁ ଭାଳଇ ଦେବଦେବ ଇନ୍ଦୁ ।
ଧବଳ କଳା କୁସୁମ ପୀତବର୍ଣ୍ଣ ଚାରି
କାଳର ଅଭାବ ରୂପ ଅପରୂପେ ଧରି ।
ଅନେକ ମହିମା କିସ କହିବାକୁ କ୍ଷମ
ପରମ ରୂପା ଧାରଣ ଶ୍ରୀପୁରୁଷୋତ୍ତମ ।
ସକଳ ଜନ ଜୀବନ ମାନବ ଜନମେ
ଯେବଣ ରୂପବଳସି ହରେ ଜନମନେ ।
ଅପୂର୍ବ ପୁରାଣ ଅଟେ ଏ ମହାଭାରତ
ଜଗମୋହନ ଚରଣ ତଳେ କୃତ୍ୟ କୃତ୍ୟ ।
ଶ୍ରୀୟାର ବଲ୍ଲଭ ପାଦପଦ୍ମ ହୃଦେ ଘେନି
ବଦନ୍ତି ଶାରଳା ଦାସ କବି ଶୂଦ୍ରମୁନି ।

—o—

## କୁଣ୍ଡଳୀ ଦୈତ୍ୟବଧ

ବୈବସ୍ୱତ ଯେ ବିଳଙ୍କ ଦେଶ ମହାରାଜା
କଲେ ଅଗସ୍ତି ମୁନିଙ୍କ ଚରଣରେ ପୂଜା ।
ଧୂପ ଦୀପ ନଇବୈଦ୍ୟ ଗନ୍ଧ ପୁଷ୍ପ ଦେଇ
ମୁନିଙ୍କ ଛାମୁରେ ରାଜା କହନ୍ତି ବିନୟୀ ।
ଭୋ ମହାମୁନି କହିଲି ଶ୍ରୀ ମହାଭାରତ
ସୁଗନ୍ଧିକା ହରଣ ଯେ କରି ଆଦ୍ୟ ପ୍ରାନ୍ତ ।
ହରି ଅର୍ଜ୍ଜୁନର ହେଲା ଯେତେ ଯେତେ କଥା
ଦେବକୀ ଯଶୋବନ୍ତୀର ଓଷାର ବ୍ୟବସ୍ଥା ।
ସେ କଥାମାନ ଶୁଣି ମୁଁ ହୋଇଲି କୃତାର୍ଥ
ତଦନ୍ତେ କି ହେଲା ମୋତେ କହ ଘଟସୁତ ।

ରାଜାର ବିନୟ ସ୍ତୁତି ଭକ୍ତିଭାବ ଦେଖି
ପୁସ୍ତକ ଫେଡ଼ି କହନ୍ତି ହୋଇ ମହାସୁଖୀ ।
ସାବଧାନେ ଶୁଣ ତୁହୋ ମନୁ ନୃପବର
ଏକଚିତ୍ତ ଏକଲୟ କରିଣ ତୋହର ।
ଭାରତ ଶୁଣିଲେ ଏକଚିତ୍ତେ ପୁଣ୍ୟ ହୋଇ
ଚିତ୍ତ ବିଗଳିତେ ରାଜା କିଛି ନ ରହଇ ।
ଏବେ ଯାହା କହିବା ତୁ ସାବଧାନେ ଶୁଣ
ଚୈତ୍ରମାସ କୃଷ୍ଣପକ୍ଷ ଅଷ୍ଟମୀର ଦିନ ।
ତ୍ରିଶାଖା ନକ୍ଷତ୍ର ବିଛା ଷାଠି ଦଣ୍ଡ ଭୋଗ
ବାଳବ ନାମେ କରଣ ପରିଘ ଯେ ଯୋଗ ।
ସେଦିନରେ ଦୁର୍ଯ୍ୟୋଧନ ଶତଭାଇ ଘେନି
ଦଶସହସ୍ର ରଥ ଯେ ଶଲ୍ୟ କର୍ଣ୍ଣ ବେନି ।
ବାହ୍ଲିକ ଶକୁନି ମନ୍ତ୍ରୀବର ସୋମଦତ୍ତ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ତୁଲେ ଜୟଦ୍ରଥ ।
ଏତେକ ଘେନି ସେ ରାଜା ଯାଉଅଛି ଚଳି
ଚଳାନ୍ତେ ପଶିଲା ସମଦଣ୍ଡ ମହାବଳୀ ।
ପଦାଘାତେ କମ୍ପେ ପୃଥ୍ୱୀ ଦେବଙ୍କର ଶିର
ସ୍ୱଭାବେ ବୋଲଇ ଯେଣୁ ସେ କୁରୁସାଗର ।
ଅଭୟ ବୋଲନ୍ତି ଯେଣୁ ଭୟ ତାଙ୍କ ନାହିଁ
ଛୟଣୋଇ ସସ୍ର ରାଜା ଚରଣେ ଖଟଇ ।
ଇନ୍ଦ୍ରପସ୍ଥ ଜିଣି ରାଜା ବାରୁଣାକୁ ଚଳି
ଅରଣ୍ୟକ ପର୍ବତରେ ଯାଇ ସର୍ବେ ମିଳି ।
ସେଦିନ ବିପରୀତ ଦଇବର କୃତ୍ୟ
କଥା ଏକ ହୋଇଲା ଯେ ବଡ଼ ଆଚମ୍ବିତ ।
କୁଣ୍ଡଳୀ ବୋଲିଣ ଏକ ଦୈତ୍ୟ ମହାବୀର
କୁଳାବତୀ ପାଟଣାରେ ଅଟେ ତାର ଘର ।
ଅଶ୍ୱ ଗଜ ପଦାତି ତ ସଙ୍ଗେ ନାହିଁ କେହି
ଏକାକୀ ହୋଇ ଅସୁର ବନରେ ବୁଲଇ ।
ପରବତ ଶିଖେ ଯାଇ ଦୈତ୍ୟ ଦୃଷ୍ଟି ଦେଇ
ମନ୍ଦର ପର୍ବତ ପ୍ରାୟ ଶରୀର ଦିଶଇ ।
କଉରବ ସୈନ୍ୟଙ୍କୁ ସେ ଅଛି ଦୃଷ୍ଟି ଦେଇ
ହସି ବିଚାରେ ଏ କେଉଁ ଦେଶ ନରସାଇଁ ।
ବହୁତ ସୈନ୍ୟ ଏହାର ସଙ୍ଗତରେ ଚଳି
ଅତି ହିଁ ଗର୍ବେ ଡାକନ୍ତି ହୋଇ କୋଳାହଳୀ ।
ଏହାଙ୍କ ଆଗରେ ଦେଖି ମିଳିଲାକ ଯାଇ
ଆମ୍ଭର ଏହାର କେତେ ବଳୀୟାନ ହୋଇ ।
ଏତେକ ବିଚାରି ଦୈତ୍ୟ ଦେବ ଏକ ରଡ଼ି
ଆଷାଢ଼ ମାସରେ ଯେହ୍ନେ ମେଘ ଘଡ଼ଘଡ଼ି ।
କଉରବେ ବିଚାରିଲେ ଏ କେବଣ ଅର୍ଥ
ରଡ଼ି ଏକ ଶୁଭନ୍ତେ ଯେ କମ୍ପିଲା ପର୍ବତ ।

ଏମନ୍ତ ବିଚାର କରୁଅଛନ୍ତି ଯେ ତହିଁ
ମିଳିଲା ଦାନବ ବୀରମଣି ଆଗେ ଯାଇ ।
ଚଉଦ ବ୍ରହ୍ମାଣ୍ଡେ ଅଟେ ବଡ଼ ଯା ଶରୀର
ହସି ଖଉରବଙ୍କ ସେ ଚାହିଁଲା ଅସୁର ।
ବିଚାରଇ କିଏ ତୁମ୍ଭେ କେଉଁ ଦେଶୁଁ ଆସ
କେ ତୁମ୍ଭର ତାତ ମାତ ତୁମ୍ଭ ନାମ କିସ ।
ବିଚାରୁଥାଇ ଯେ ମୋର ମନେ ମନେ ମୁହିଁ
ବୀରତୁର ଶବଦ ମୋ ଭୟେ ଶୁଣା ନାହିଁ ।
ଭୟ କି ତୁମ୍ଭର ନାହିଁ କର ବୀର ଟାଣ
ତୁମ୍ଭର ତୁଲେ କରିବା ଆମ୍ଭେ ଆଜି ରଣ ।
ସମର୍ଥ ପଣେ ବଜାଅ ବୀରତୂର ବାଜା
ଜାଣଇ ସଂଗ୍ରାମେ ତୁମ୍ଭେ ଅଟ ବୀରରାଜା ।
ଆଜ ଯୁଦ୍ଧେ ଯେବେ ବର୍ତ୍ତିଯିବ ତୁମ୍ଭେ କେହି
ଜାଣିବା ପୃଥ୍ୱୀରେ ମୃତ୍ୟୁ ତୁମ୍ଭର ହିଁ ନାହିଁ ।
ଏସନକ ବାକ୍ୟ କହନ୍ତି ବୀର ଚୂଡ଼ାମଣି
ଦୁଃଶାସନ କୋପକଲା ପ୍ରତିଜ୍ଞା ଯେ ଶୁଣି ।
ଆଗ କଲା ରଥ କରେ ଧରି ଗଦାବର
ପଚାରିଲା କାହିଁର ତୁ ଅଟୁରେ ଅସୁର ।
ମରଣ କଢ଼ାଇ କିରେ ଆଣିଅଛି ତୋତେ
ତେଣୁ ଅସୁର ପ୍ରତିଜ୍ଞା କରୁଛୁ ଏମନ୍ତେ ।
ନ ଜାଣୁକି ହସ୍ତିନାର ନୃପ ଚୂଡ଼ାମଣି
ବିଜେ କରି ଯାଉଛନ୍ତି ବୀର ଶିରୋମଣି ।
ସୋମବଂଶ ରାଜାଏ ଯେ କଷା ଜଗଜ୍ଜେଠି
ପୃଥିବୀରେ ଯାର ନାମ ମାନଗୋବିନ୍ଦଟି ।
ଛୟାଣୋଇ ସସ୍ରରାଜା ଯା ଚରଣେ ବନ୍ଦେ
ତୁ ତାହାକୁ ପଚାରୁଛୁ ଯେହ୍ନେ ଜାତି ଅନ୍ଧେ ।
ରେରେକାର କରି ପୁଣି ପଚାରୁଛୁ ତୁହି
ଯମର ଘରେ କି ପ୍ରାଣ ଅଛୁ ବନ୍ଧାଦେଇ ।
ତୁ ଛାର ଅସୁର କୁଳେ ହୋଇଅଛୁ ଜାତ
ଯେଣୁ ପଚାରିଲୁ ନିଶ୍ଚେ ହୋଇବୁରେ ହତ ।
ଏତେ କହନ୍ତେ ଦାନବ ବୀର ଚୂଡ଼ାମଣି
ପୁଚ୍ଛ ମୋଡ଼ିଲେ ଯେସନେ ସର୍ପ ଟେକେ ଫଣି ।
ଅସୁର କହିଲା ତୁରେ ଅଟୁ ମନ୍ଦବାଇ
କୁଣ୍ଡଳୀ ଦୈତ୍ୟ ବୋଲି ମୁଁ ନ ଜାଣୁକି ତୁହି ।
ଏତେକ କହିଣ କୋପେ କମ୍ପେ ଦୈତ୍ୟବୀର
ପବନ ଆଘାତେ ରମ୍ଭା ପତ୍ରର ଆକାର ।
କରେ କୋଦାଳ ଘେନି ସେ କୋପରେ ବୁଲାଇ
ଦୁଃଶାସନ ରଥପରେ ପ୍ରହାରିଲା ନେଇ ।
ଭଗ୍ନହେଲା ରହୁବର ମସିଗୁଣ୍ଡା ହୋଇ
ପ୍ରଳୟ ଅଗ୍ନିର ପ୍ରାୟେ ସେଠାରେ ଜଳଇ ।

ସାରଥି ସହିତ ରଥ ହେଲା ଗୁଣ୍ଡାମୟ
ରଥୁଡେଇଁ ଉଭା ଧୃତରାଷ୍ଟ୍ରର ତନୟ ।
ଚଉଷଠି ଭାର ଗଦା ବୁଲାଇ ବୁଲାଇ
ଦାନବ ଉପରେ ବୀର ପିଟିଲାତ ନେଇ ।
ମୁଣ୍ଡ ପାତିକରି ତାହା ସହିଲା ରାକ୍ଷସ
ଚଉଷଠି ଭାର ଗଦା ଭାଙ୍ଗି ହେଲା ଶେଷ ।
ପୁଣି ହିଁ ସେ ମୁଦ୍‌ଗର ଧଇଲାକ ବୀର
ଦାନବ ଉପରେ କଲା ବେଳେକ ପ୍ରହାର ।
ବାମ ହସ୍ତ ପାତି ତାହା ଦାନବ ଘେନିଲା
ଅମୋଘ ଶକତି ପୁଣି ଦୁଃଶାହିଁ ମାଇଲା ।
ଦାନବ ଉପରେ ତାହା ପଡ଼ିଲାକ ଯାଇ
ଛିଡ଼ି ପଡ଼ିଲା ଶକତି ଶତଖଣ୍ଡ ହୋଇ ।
ଦେଖି ଦୁଃଶାସନ ବୀର ପାଇ ଲଜ୍ଜା ଅତି
ଭାଇଙ୍କୁ ଡାକି କହିଲା ମାନଚକ୍ରବର୍ତ୍ତୀ ।
କିମ୍ପାଇ ରହିଅଛରେ ବେଢ଼ି ଧରି ମାର
ବିଅର୍ଥେ ଶତ୍ରୁ ଏ ଆସି ମିଳିଲା ମୋହର ।
ରାଜା ଆଜ୍ଞାପାଇ ଧାଇଁଗଲେ ସବୁ ଭାଇ
ନାନାଶସ୍ତ୍ର ତାହାଙ୍କର ହସ୍ତରେ ଅଛଇ ।
ଆରେରେ ଦାନବ ବୋଲି ବେଢ଼ି ଚଉକତି
ଗଦା ଢେଲ ଚକ୍ର ଭାଲ ମାଇଲେ ଶକତି ।
ଲକ୍ଷେଭାର ଗଦାଭାର ପିଟିଲେ ଝଟତି
ମୁଦ୍‌ଗର ଆବର ଆସି ଆଦିତ୍ୟର ଜ୍ୟୋତି ।
ହୁଙ୍କାର ଶବଦ କରି ମାରନ୍ତି ବହନ
ପର୍ବତ ପ୍ରାୟ ସେ ଉଭା ଅସୁର ରାଜନ ।
ଶସ୍ତ୍ର ପଡ଼ନ୍ତେ ହସଇ ହୋଇ ଟହ ଟହ
ବାଜନ୍ତେ ଶସ୍ତ୍ର ତାହାର ପୁଲକଇ ଦେହ ।
ପ୍ରତ୍ୟେକ ଯୋଦ୍ଧାଏ ଗଦାବର ଧରିଥିଲେ
ଦାନବର ଅଙ୍ଗେ ପିଟି ନିଃଶସ୍ତ୍ର ହୋଇଲେ ।
ପୁଣ ପୁଣ ଗଦାବର ପ୍ରହାର କରନ୍ତି
ହରଷ ଦାନବ ଦେଖି ଗଦାର ଆକୃତି ।
ହସି ସେ ଦାନବୀର ପଚାରଇ ଚାହିଁ
ମରିବାର ଅନୁକୂଳ ହେଲା କିରେ ଭାଇ ।
ଏହି ଶସ୍ତ୍ରମାନ କିରେ କରେ ଧଜିଥାଅ
ପ୍ରତିଜ୍ଞା କରି ସଂଗ୍ରାମ ଭୂମିରେ ଯେ କହ ।
ଆମ୍ଭର ଛାମୁରେ ପ୍ରତିବନ୍ଧ ହୁଅ ରହି
ଆମ୍ଭଙ୍କୁ ପରା ଅସୁର ଛାର ଅଛ କହି ।
ଆମ୍ଭର ଭାଗ୍ୟରେ ଆଜି ଭେଟିଲୁ ତୁମ୍ଭଙ୍କୁ
ଦଇବକି ମୃତ୍ୟୁ ଦେଲା ପିମ୍ପୁଡ଼ି ମନ୍ଦାକୁ ।
ଅଭୟ ସୋମବଂଶୀରେ ତୁମେ ଅଟ ପରା
କାଳଦଣ୍ଡ ପାଶେ ଆଜି ପଡ଼ିଲ ତ ଧରା ।
କହୁ କହୁ ରାଗେ ସେହି ଦୈତ୍ୟକୁଳ ରାୟେ
ବାମହାତକୁ ବୁଲାଇ ମାଇଲା ବିଧାଏ ।
ଦୁଃଶାସନ ଆଦି ଶତ ଭାଇ ଯୋଦ୍ଧା ଯେତେ
ଗଦା ଘେନି ବେଢ଼ିଥିଲେ ବଳଙ୍କ ସହିତେ ।
ଏକ ବିଧାକେ ପଡ଼ିଲେ ଯେ ସମସ୍ତ ବୀର
ଦେଖି କଉରବ ବୀରେ ହୋଇଲେ କାତର
ଏକ ଠାବରୁ ଦାନବ ପାଦ ନ ଚଳଇ
ମନ୍ଦର ଗିରି ପରାୟେ ଅଛି ଉଭାହୋଇ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶଲ୍ୟ ସୋମଦତ୍ତ
ଅଶ୍ୱଥାମା ଶକୁନି ଯେ କର୍ଣ୍ଣ ଜୟଦ୍ରଥ ।
ଏହାଙ୍କୁ ଚାହିଁଣ ବୋଲେ ମାନଚକ୍ରବର୍ତ୍ତୀ
ଭାଇମାନେ ମୋହର ତ ପଡ଼ିଲେଣି ଏଥି ।
ସୈନ୍ୟଯାକ ଘେନି ତୁମ୍ଭେ ଅଛ ଉଭାହୋଇ
ଜାଣିଲି ତୁମ୍ଭର ଦୟା ମୋହଠାରେ ନାହିଁ ।
ନୋହିଲେ କିମ୍ପାଇ ତୁମ୍ଭେ ମଉନ ହୋଇଲ
ଏ ଯୁଦ୍ଧରେ ସ୍ଥିର ହୋଇ କିମ୍ପାଇ ରହିଲ ।
ଦେଖୁ ଦେଖୁ ଶତ୍ରୁ ଆସି କରୁଅଛି ନାଶ
ତୁମ୍ଭେମାନେ ନ ଦେଉଛି କିମ୍ପାଇ ଆଦେଶ ।
ଏତେ ବୋଲି କପାଳରେ ରାଜା କରଦେଲା
ଆହୋ ଭାଇ ଦୁଃଶାସନ ବୋଲି ସେ ବୋଇଲା ।
ଭୀଷ୍ମ ଦ୍ରୋଣ ବୋଇଲେ ହେ ଶୁଣ ନୃପମଣି
ସନ୍ତାପ ପୁଣ କରୁଛ ହୃଦେ ମାନ ଘେନି ।
ଏକ ଯୋଦ୍ଧାକୁ ବହୁତ ଲୋକ ନୁହେଁ ମାରି
ଅଧର୍ମଯୁଦ୍ଧ ହୋଇବ ଆହୋ ଦଣ୍ଡଧାରୀ ।
ବାବୁ ମହାଯୋଦ୍ଧା ଆମ୍ଭେ ଅଟୁ ପୃଥିବୀର
ତୋହର ଅଧର୍ମ ଜ୍ଞାନ ହେବ ନୃପବର ।
ଏହା ତୁ ବିଚାର ଯେବେ ନ କରୁଛ ପୁଣ
ଏହିକ୍ଷଣି ଆମ୍ଭ ଯୁଦ୍ଧ ଦେଖ ନରରାଣ ।
ମାନଗୋବିନ୍ଦ ବୋଇଲା ଧର୍ମ ଅଧର୍ମ ହିଁ
ମୋହର ଉପରେ ସିନା ତୁମ୍ଭର କି ଯାଇ ।
ଶୁଣି କୋପେ ଗଙ୍ଗାସୁତ ଟଙ୍କାରିଲେ ଗୁଣ
ତୂଣୀରୁ ବାହାର କଲେ ଦଶସହସ୍ର ବାଣ ।
ଦାନବର ଉପରକୁ ବିନ୍ଧିଲେ ସେ ଟାଣି
ମୁଣ୍ଡ ପାତିଣ ସହିଲା ବୀରକୁଳମଣି ।
ମାନଗୋବିନ୍ଦ ବୋଇଲା ସଇନ୍ୟକୁ ଚାହିଁ
ସମସ୍ତେ ବିନ୍ଧିଲେ ଏଥେ କିଛି ଦୋଷ ନାହିଁ ।
ଧାଇଁଲେ ରାଜାର ଆଜ୍ଞା ପାଇ ସବୁ ଯୋଦ୍ଧା
ଘେରିଗଲେ ଅସୁରକୁ ଯେ ନାରାଚ ବିନ୍ଧା ।
ଭୀଷ୍ମଙ୍କ ନାରାଚ ମାନ ଜାଣି ବଜ୍ରାଘାତ
ଦ୍ରୋଣଙ୍କ ନାରାଚମାନ ଯେସନେ ପର୍ବତ ।

ଅଶ୍ୱଥାମାର ନାରାଚମାନେ ବଜ୍ରସୁଚି
ଶଲ୍ୟଙ୍କ ନାରାଚମାନ କି ଅନଳରାଜି ।
କର୍ଣ୍ଣର ନାରାଚମାନ ଆଦିତ୍ୟ କିରଣ
ବାହ୍ଲିକ ନାରାଚମାନ ଯମଦଣ୍ଡ ଜାଣ ।
ସୋମଦତ୍ତର ନାରାଚମାନ କିବା ମେରୁ
ଜୟଦ୍ରଥର ନାରାଚମାନ ଅଟେ ଦାରୁ ।
ଶକୁନି ନାରାଚମାନ ନିର୍ଘାତ ପରାୟ
ପଡ଼ଇ ଅସୁର ଦେହେ ନାହିଁ ତାର ଭୟ ।
ପୁଷ୍ପବୃଷ୍ଟି ହେଉଛି କି ପର୍ବତ ଉପରେ
ଛେଲ ଚକ୍ର ଗଦା କାତି ଅସି ମୁଦ୍ଗରେ ।
ପଡ଼ି ଧୂଳି ହୋଇ ଉଡ଼ି ଯାଉଛନ୍ତି ଶୂନ୍ୟେ
ଗଙ୍ଗାର ନନ୍ଦନ ବାଣ ଯୋଚି ଶରାସନେ ।
ଲକ୍ଷ ଲକ୍ଷ କୋଟି ବିନ୍ଧୁଛନ୍ତି କୋପେ
ଦ୍ରୋଣଗୁରୁ ବିନ୍ଧୁଛନ୍ତି ବାଣ ସେହିରୂପେ ।
ଅଶ୍ୱଥାମା ବିନ୍ଧୁଛନ୍ତି କୋଟି କୋଟି ଶର
ଶଲ୍ୟ ଯେ ନାରାଚ ବିନ୍ଧୁଅଛନ୍ତି ଅପାର ।
କର୍ଣ୍ଣର ନାରାଚ ଯେତେ କି ପାରିବ କହି
ଶ୍ରାବଣେ ଯେସନେ ଦ୍ରୋଣ ମେଘ ବରଷଇ ।
ଜୟଦ୍ରଥର ପନ୍ଦର କୋଟି ପୁଣ ଶର
ସୋମଦତ୍ତର ନାରାଚ ହଜାର ହଜାର ।
ଦାନବ ମୁଣ୍ଡକୁ ପାତି ସହୁଅଛି ତାହା
ମୁଣ୍ଡ କି ନୁହଇ ସେହି ସାକ୍ଷାତରେ ଲୁହା ।
ପୁଣି ଗଙ୍ଗାସୁତ କୋପେ ଧରି ଅଗ୍ନିବାଣ
ଦାନବକୁ ବିନ୍ଧିଲେକ କରି ମହାଟାଣ ।
ତୁଣ୍ଡ ପାତି ସେ ଦାନବ ଗିଳିଦେଲା ତାହା
ଦେଖିଣ ଭୟେ କମ୍ପିଲା ଭୀଷ୍ମଙ୍କର ବାହା ।
କୁଣ୍ଡଳିଚକ୍ର ବିନ୍ଧିଲେ ପୁଣି କୋପଚିତ୍ତେ
ଭାଙ୍ଗି ପକାଇଲା ଦୈତ୍ୟ ଧରି ବାମହସ୍ତେ ।
ଶରଯାନ୍ତେ ବାଣ ପୁଣି ବିନ୍ଧିଲେ ସେ ଧରି
ବାମହସ୍ତ ପାତି ତାହା ଅସୁର ନିବାରି ।
ବାବଲ ବାଣ ବିନ୍ଧିଲେ ପୁଣି ଗଙ୍ଗାସୁତ
ମୁଣ୍ଡପାତି ତାହା ପୁଣି ସହିଲା ଦଇତ୍ୟ ।
ରୁଦ୍ର ବାଣ ବିନ୍ଧିଲେକ ବୀର ଅଶ୍ୱଥାମା
ଶତ୍ରୁକ୍ଷୟ ନାରାଚକୁ ବନ୍ଦେ କୃତବର୍ମା ।
ଆଦିତ୍ୟ ଶର ବିନ୍ଧିଲେ ବୀରବର କର୍ଣ୍ଣ
ଶଲ୍ୟ ବିନ୍ଧିଲେକ କୋପେ ଧରି ମେଘବାଣ ।
ବ୍ରହ୍ମ ଅନଳ ନାରାଚ ବିନ୍ଧିଲା ଶକୁନି
ଜୟଦ୍ରଥ ବିନ୍ଧିଲେକ କାଳାନଳ ଘେନି ।
ଭୂରିଶ୍ରବା ବିନ୍ଧିଲେକ ମହାମାୟା ଶର
ବାହ୍ଲୀକ କୋପେ ବିନ୍ଧିଲେ ଭୈରବୀକୁଠାର ।

ସୋମଦତ୍ତ ରାଜା ପୁଣି ମହାକୋପ ଚିତ୍ତେ
ଶରକ୍ଷ ନାମେ ନାରାଚ ବିନ୍ଧିଲେ ତୁରିତେ ।
ଦ୍ରୋଣଗୁରୁ ବ୍ରହ୍ମଶର ବିନ୍ଧିଲେକ ଟାଣି
ଆଉ ଯେତେ ଯୋଦ୍ଧା ଥିଲେ ସଂଗ୍ରାମରେ ପୁଣି ।
କୋଟି କୋଟି ଲକ୍ଷ ଲକ୍ଷ ବିନ୍ଧୁଛନ୍ତି ଶର
ପଡ଼ିଲା ସେ ସବୁ ଯାଇ ଦାନବ ଉପର ।
ଅନଳ ପର୍ବତ ପ୍ରାୟ ଦାନବର ଗତି
ଶସ୍ତ୍ରସବୁ ଦେହେ ପଡ଼ି ଉପୁଡ଼ି ପଡ଼ନ୍ତି ।
ପଥର ବୁଣନ୍ତେ ଯେହ୍ନେ ହୁଅଇଟି ଛାଇ
ଶସ୍ତ୍ର ପଡ଼ନ୍ତେ ତେସନ ଦାନବ ମଣଇ ।
ହସି ସେ ଦାନବରାଜ କହଇ ବଚନ
ଶତ୍ରୁ ଜିଣିବ କି ତୁମ୍ଭେ ମାରି ଏହି ବାଣ ।
ଅପୂର୍ବ ଶସ୍ତ୍ର ପ୍ରଦୀକ୍ଷା ଥିଲେ ତୁମ୍ଭ କର
ମରଣ ନିକଟ ଆସି ହୋଇଲା ତୁମ୍ଭର ।
ଏତେ ବୋଲି ସେ ଅସୁର କୁଦାଳ ବୁଲାଇ
ଆସେ ରଥିମାନଙ୍କର ଉପରକୁ ଧାଇଁ ।
ଭୀଷ୍ମ ଭୁରିଶ୍ରବା ରଥେ ପିଟିଲାକ ନେଇ
ପଡ଼ିଲେ ଯେ ମହାରଥୀ ଅଚେତନ ହୋଇ ।
ଶଲ୍ୟ କୃପ କୃତବର୍ମା ସୋମଦତ୍ତ ବୀର
ଅଶ୍ୱଥାମା ଜୟଦ୍ରଥ ଶକୁନି ଆବର ।
କର୍ଣ୍ଣ ଆଦି ଥିଲେ ଯେତେ ସବୁଙ୍କୁ ପିଟିଲା
ରଥୀ ଯୋଦ୍ଧାରୁ ଗୋଟିଏ କରି ନ ରଖିଲା ।
ବୀର ମହାବୀର ହାତୀ ରଥୀ ଥିଲେ ଯେତେ
ବଳୀ ମହାବଳୀ ସୈନ୍ୟ ପଡ଼ିଲେ ସମସ୍ତେ ।
ମଲ୍ଲ ମହାମଲ୍ଲ ଯେତେ ବୀରଙ୍କର ଶଲ
ସବୁଙ୍କୁ ହିଁ ମାଇଲା ସେ ଦୈତ୍ୟ ମହାମଲ୍ଲ ।
ଖସି ପଡ଼ନ୍ତି ଆକାଶୁଁ ଯେହ୍ନେ ତାରାଗଣ
ତେସନେ ଶୋଭା ଦିଶିଲା ପଡ଼ିବାରେ ସୈନ୍ୟ ।
ପଦକ ମୁକୁଟ ରତ୍ନ କୁଣ୍ଡଳ ଯେ ହାର
ପଡ଼ନ୍ତେ ଶୋଭା ଦିଶନ୍ତି କି ସେ ଦିନକର ।
ସବୁରି ମୃତ୍ୟୁ ହେବାର ଦେଖଇ ନୃପତି
ହାହାକାର କରି ଭାଳେ ମାନଚକ୍ରବର୍ତ୍ତୀ ।
ବିନା ଅର୍ଥେ ଶତ୍ରୁ କାହୁଁ ମିଳିଲାକ ଏଥେ
ସବୁଙ୍କୁ ମୃତ୍ୟୁ କଢ଼ାଇ ଆଣିଲା କେମନ୍ତେ ।
ଯେବଣ ଭୀଷ୍ମ ଦ୍ରୋଣଙ୍କୁ ସୁରାସୁରେ ହାରି
ପଡ଼ିଲେ ଦାନବ ହସ୍ତେ ଏଥେ ଆସି ମରି ।
ଆଉ କିମ୍ପା ଏକା ହୋଇ ବର୍ତ୍ତିବଇଁ ମୁହିଁ
ହସ୍ତିନାକୁ ଗଲେ କାହା ମୁଖ ଚାହିଁବଇଁ ।
ଛାଡ଼ିବି ଜୀବନ ପଛେ କରିବଇଁ ରଣ
ଦାନବର ହସ୍ତେ ଅବା ଯାଉ ମୋର ପ୍ରାଣ ।

ଏତେକ ବିଚାରି ସେହି ନୃପ କୁଳରାୟ
ଆରେରେ ଦାନବ ବୋଲି ତାକେ ସିଂହପ୍ରାୟ ।
ଦାନବର ଛାମୁରେ ସେ ଯାଇଣ ମିଳିଲା ।
ବସନ୍ତ ସାରଥିକି ସେ ଏମନ୍ତ ବୋଇଲା ।
ବିଚାରି ତୁ ବାହୁଥିବୁ ରଥକୁ ମୋହର
ଏତେ ବୋଲି ଟଙ୍କାରିଲା ଧନୁକୁ ତାହାର ।
ବାବଲ ଶର ବିନ୍ଧିଲା କୋପେ ଧାଡିକାରେ
ମୁଣ୍ଡପାତି ସହିଲା ସେ ଦୈତ୍ୟ ତା ସମରେ ।
ବଜ୍ରବାଣ ସହସ୍ରେକ ବିନ୍ଧିଲା ନୃବର
ହୃଦୟ ପାତି ସହିଲା ତାହା ଦୈତ୍ୟବର ।
ଅଗ୍ନିବାଣ ପଞ୍ଚଶତ ବିନ୍ଧିଲା ନୃପତି
ଗିଳିଦେଲା ତାହାକୁ ଯେ ଦୈତ୍ୟ ମହାରଥୀ ।
ଶରଯନ୍ତା ଶର ପୁଣି ବିନ୍ଧିଲା ନୃବର
ବାମ ଚରଣେ ତାହାକୁ ଭାଙ୍ଗିଲା ଅସୁର ।
ଲକ୍ଷେକ ଶକତା ରାଜା ପୁଣି ହିଁ ମାଇଲା
ବାମହାତ ପାତି ତାହା ଦାନବ ଭାଙ୍ଗିଲା ।
କୋପେ ଗର୍ଜି ବିନ୍ଧିଲାକ ପୁଣି ଶତଶର
ହସି ଜିଭପାତି ତାହା ସହିଲା ଅସୁର ।
ପୁଣି ହିଁ କୋପଭରେ ସେ ମାନଚକ୍ରବର୍ତ୍ତୀ
ଧଇଲାକ କାଳାନଳ ଭୀଷଣ ଶକତି ।
ହୁଙ୍କାର ଝମକି ତାକୁ ତିନିବେଳଯାଏ
ମାଇଲାକ ଦାନବର ହୃଦେ କୁରୁରାୟେ ।
ହସି ଦାନବ ଦକ୍ଷିଣ ପାଦ ଦେଲା ପାତି
ପକାଇ ଦେଲା ସେ ପାଦେ କାଳାନଳ ଶକ୍ତି ।
ଯଶୋହର ନାମରେ ଯେ ଗପୂର୍ବେକ ଶର
ହୁଙ୍କାର ଗୁଣେ ବସାଇ ତାକୁ ନୃପବର ।
କର୍ଣ୍ଣ ପରିଯନ୍ତେ ସେହି ଗୁଣକୁ ସେ ଟାଣି
ଅଗ୍ନି ତେଜକୁ ନାରାଚ ପାରଇ ସେ ଜିଣି ।
ମନ୍ତ୍ରକୁ ସୁମରି ରାଜା ତିନିବେଳଯାଏ
ବିନ୍ଧିଲେ ନାରାଚ ସୂର୍ଯ୍ୟ ତେଜହୀନ ହୁଏ ।
ନାରାଚ ଗୋଟି ଚଳନ୍ତେ ଚଳିଗଲା ପୃଥ୍ୱୀ
ଦାନବ ଉପରେ ବାଣ ପଡ଼ିଲା ତଡ଼ତି ।
ଅସୁର କପାଳେ ଯାଇଁ ପଡ଼ିଲା ସେ ଶର
ହୋଇଲା ଗୁଣ୍ଡାମୟ ଯେ ଧୂଳିର ଆକାର ।
ଦେଖି ମନେ ବିଚାରଇ ରାଜା ଦୁର୍ଯ୍ୟୋଧନ
ନିଶ୍ଚୟ ହୋଇଲା ମୋତେ ଅକାଳ ମରଣ ।
ଏଡ଼େ ବଡ଼ ଶସ୍ତ୍ରେ ଯାର ଚର୍ମ ନ ଫୁଟଇ
ମୃତ୍ୟୁ ଏହାର ଦଇବ ରଖିଅଛି କାହିଁ ।
ବିଚାରୁ ବିଚାରୁ ରାଜା ବିନ୍ଧୁଅଛି ଶର
ଦାନବର କିଛି ଚିନ୍ତା ନାହିଁ ଯେ ମନର ।

ଅସୁର ବୋଇଲା ନିଶ୍ଚେ ଗଲୁ ତୁରେ ନାଶ
ବୀରତୂର ବଜାଇଣ କରିଥିଲୁ ଯଶ ।
ନାମ ଏଡ଼େ ବଡ଼ ବୋଲି ମିଛେ ବୋଲୁଥିଲୁ
ସେନା ସେନାପତି ନାଶି ଆପେ ନାଶଗଲୁ ।
ଆମ୍ଭର ଆଜ୍ଞା ତୁ ଯେବେ ପାଳିବୁ ହୋ ଜାଣ
ଆୟୁଥିବାଯାଏ ହେଲେ ରଖିଥିବୁ ପ୍ରାଣ ।
ମୁଖରେ ଅଙ୍ଗୁଳି ଦିଅ ଦନ୍ତରେ ତିରଣ
ବେକରେ କୁଠାର ବାନ୍ଧି ପଶ ତୁ ଶରଣ ।
କେଶ ବାସ ଅସମ୍ଭାଳ ପ୍ରାୟେ ପଡ଼ି ଶୁଅ
ବୋଲ ଅରକ୍ଷିତ ମୋତେ ରକ୍ଷାକରି ଯାଅ ।
ଏମନ୍ତ ବୋଇଲେ ମୁହିଁ ଛାଡ଼ିବି ନିଶ୍ଚୟେ
ରହିଥିବ ପ୍ରାଣ ତୋର ଆୟୁ ଥିବାଯାଏ ।
ଶାର୍ଦ୍ଦୁଳ ଚର୍ମ ଛାଉଣୀ ଏଥୁ ଫିଟାଇବୁ
ଆଗ ସିଂହ ପାଲଟାଇ ପଛେ ବସାଇବୁ ।
ମାନଗୋବିନ୍ଦ ନାମକୁ ଛାଡ଼ିବୁ ତୋହର
ତେବେ ଛାଡ଼ିଦେବି ଯିବୁ ତୁହି ନିଜ ଘର ।
ଦାନବ ମୁଖରୁ ବାକ୍ୟ ଏସନକ ଶୁଣି
କୋପେ କମ୍ପିଲେକ ନୃପକୂଳ ଚୂଡ଼ାମଣି ।
ଟହ ଟହ ହୋଇ ହସି ବୋଇଲାରେ ବାଇ
ଏତେକ ଛାଡ଼ିବି ମୁହିଁ ତୋର ଛାର ପାଇଁ ।
ଏତେ କହି ସାରଥିକି ବୋଲଇ ରାଜନ
ତୋର ବୁଦ୍ଧି ବଳେ ରଖ ତୋହର ଜୀବନ ।
ମୋହର ଏ ଜୀବନକୁ ଆଉ ନାହିଁ ଆଶ
ଶତେ ଭାଇ ଆଦି ମୋର ସୈନ୍ୟଗଲେ ନାଶ ।
ଭୀଷ୍ମ ଦ୍ରୋଣ ଶଲ୍ୟ ଭୂରିଶ୍ରବା ହିଁ ପଡ଼ିଲା
ଜୟଦ୍ରଥ ପଡ଼ିଛି ମୋ ଭଗ୍ନିରାଣ୍ଡ ହେଲା ।
ଏଥେ ଯେବେ ଜାଣ ମୋର ଦେହ ଯିବ ନାଶ
ଅକାରଣେ ଶତ୍ରୁ ମୋର ହୋଇଲା ରାକ୍ଷସ ।
କାହୁଁ ମିଳିଲା କେବଣ ଦେଶେ ଏହା ଘର
ସୈନ୍ୟ ସେନାପତି ମାରି କଲା ନାରଖାର ।
ମାରେ କିବା ରାକ୍ଷସକୁ ମରେ ଅବା ମୁହିଁ
କହୁଁ କହୁ ରଥରୁ ସେ ପଡ଼ିଲାକ ଡେଇଁ ।
ରେରେକାର କରି ଗଦା ଘେନି ବେନିକରେ
ରତ୍ନାବଳୀ ଗଦା ମାରେ ଅସୁର ଉପରେ ।
ପଡ଼ନ୍ତେ ଦାନବ ଶିରେ ଯାଇ ଗଦାବର
ଝଲକିଲା ଅଗ୍ନି ମୋହେ ପଡ଼ିଲା ଅସୁର ।
ଦେଖି କୁରୁପତି ମାଡ଼ି ବସିଲାକ ଧାଡି
ମାଇଲେକ ବଜ୍ର ଶତ ମୁଥେ ତାର ଛାତି ।
ଦାନବ ଦେହରେ ପାଇ ବଜ୍ର ମୁଥ ଘାତ
ନୟନ ଦୁଇକି ଫେଡ଼ି ଚାହିଁଲା ଦଇତ୍ୟ ।

ଝାଡ଼ିଦେଲା ଦେହ ନଳେ ପଡ଼ିଲା ନୃପତି
ହସ୍ତୀ ଝାଡ଼ିଦେଲେ ଯେହ୍ନେ ମାହୁନ୍ତେ ପଡ଼ନ୍ତି ।
କୋଦାଳ ଆୟୁଧ ଦୈତ୍ୟ ପିଟିଲାକ ନେଇ
ହସ୍ତେ ଧରି ରାଜା ତାହା ନେଲାକ ଛଡ଼ାଇ ।
କୋଦାଳ ଛଡ଼ାଇ ନେଇ ପକାଇଲା ତଳେ
ମାଲ ବିନ୍ଧାଣେ ଲାଗିଲେ ଦୁହେଁ କୁତୁହଳେ ।
ଆତଙ୍କେ ଚିନ୍ତଇ ରଥ ରେବତୀର ପତି
ପର୍ବତ ସମ ଅଟଇ ଦାନବ ମୁରତି ।
ସୁମେରୁ ତେଡ଼େ ଶରୀର ହେଲା ନୃପବର ।
ବଳ ହିଁ ହେଲା ତାହାର ସହସ୍ର ସିଂହର ।
ଅଶୀ ସହସ୍ର ସିଂହର ଅଟେ ଯେତେ ବଳ
ତେତେକ ବଳ ବହଇ ଦାନବ ଶାର୍ଦ୍ଦୁଳ ।
ଦୁହେଁ ଦୁହିଁଙ୍କି ଧଇଲେ ହୋଇ ଧରାଧରି
ଦେଖାନାହିଁ ସ୍ୱର୍ଗ ମଞ୍ଚ ପାତାଳେ ଏପରି ।
ସମସ୍ତେ ଶୋଇ ଅଛନ୍ତି ରଣେ ମୃତ୍ୟୁ ପାଇ
ରଥରେ ଥାଇ ସାରଥୀ ଅଛଇ ଅନାଇଁ ।
ନୃପତି ମୁଖକୁ ଚାହିଁ ବିକଳ ତା ମନ
ମନରେ ଚିନ୍ତା କରଇ ରଥ ଦେବ ଧର୍ମ ।
କେଉଁ ଅନୁକୂଳେ ଘରୁ ନୃପତି ଅଇଲା
ବଂଶ ସୈନ୍ୟ ଘେନି ପୁଣି ଆପେ ନାଶ ଗଲା ।
ଆଉ କିମ୍ପାଇ ରଖିବି ମୁହିଁ ଏ ଜୀବନ
ଏହାର ହାତରେ ସିନା ମରିବ ରାଜନ ।
ଭୋ ଧର୍ମ କହି ଚିନ୍ତଇ ବସନ୍ତି ସାରଥି
ଦାନବ ମୁଖରୁ ରକ୍ଷା ପାଉ କୁରୁପତି ।
ଏତେକ ବିଚାରି ସେହି ସାରଥି ମଉନ
ନୟନରୁ ଅଶ୍ରୁଜଳ ବହେ ଘନ ଘନ ।
ଅସୁର ତୁଳେ ଯେ ମାଲଯୁଦ୍ଧ କରେ ରାୟେ
ଉପମା ଦେବାକୁ ଲକ୍ଷ୍ୟ ନାହିଁ ପୁର ତ୍ରୟେ ।
ହସ୍ତେ ହସ୍ତେ ଛନ୍ଦି ପାଦେ ପାଦଦେଇ ଛନ୍ଦି
ମୁଣ୍ଡକୁ ମୁଣ୍ଡ ପାରନ୍ତି ବାହେ ବାହୁବାନ୍ଧି ।
ହୋଇଯାନ୍ତି ଗଡ଼ାଗଡ଼ି ଲାଗି ନ ଛାଡ଼ନ୍ତି
ମାରନ୍ତି ମୁଣ୍ଡ ହୁଅନ୍ତି ପୁଣି ଯନ୍ତାଯନ୍ତି ।
ଆଷାଢ଼ ମେଘ ଜାଣି ଯେ କରନ୍ତି ଗର୍ଜନ
ବେନି ଅହିଙ୍କର ରଣ ହୁଅଇ ଯେସନ ।
ସ୍ୱର୍ଗେ ରହିଛନ୍ତି ସୁରଗଣ ଦୃଷ୍ଟି ଦେଇ
ଏ ଦାନବ ମରିବ କି ରାଜା କୁରୁସାଇଁ ।
ପଚାରନ୍ତି ବୃହସ୍ପତି ଚାହିଁ ମଘବାନ
ଏହାର ହସ୍ତେ କି ହେବ ଦୈତ୍ୟର ମରଣ ।
କୁରୁସାଗର ସୈନ୍ୟ ତ ସବୁ ହେଲେ ହତ
ଦୁର୍ଯ୍ୟୋଧନ ହାତରେ କି ମରିବ ଦଇତ ।

ଏହାର ଉପର ବଂଶ ଥିଲେ ଦୈତ୍ୟ ଯେତେ
ମହିଷାକୁ ଆଦି ଧୂମ୍ରଲୋଚନ ପର୍ଯ୍ୟନ୍ତେ ।
ଶୁମ୍ଭ ନିଶୁମ୍ଭ ବିକ୍ଷୁର ରକ୍ତବୀର୍ଯ୍ୟ ବୀର
ଚଣ୍ଡ ମୁଣ୍ଡ କାନ୍ତିମାଳା ବିରାଳକ୍ଷେଶ୍ୱର ।
ପୃଥିବୀକି ଭାରା ହୋଇଥିଲେ ଏହି ସର୍ବେ
ଏମାନେ ତ ନାଶଗଲେ ଏହି ମତ୍ତଗର୍ବେ ।
ଏମାନେ ତ ଦେଉଥିଲେ ଦେବତାଙ୍କୁ ତ୍ରାସ
ଏହୁ ତ ଜିଣିଲା ତିନିଭୁବନ ତ୍ରିଦଶ ।
ଏବେ ତ ଏହାର ମୃତ୍ୟୁ କହିବା ହେଉ ହେ
ଦୁର୍ବାର କୋପରେ ନାଶଗଲେଣି ସଭିଏଁ ।
ବୃହସ୍ପତି ବୋଇଲେକ ଶୁଣ ଦେବରାୟେ
ଏହାର ଯୁଦ୍ଧେ ହାରିବ କୁରୁକୁଳ ରାୟେ ।
ଏହାର ବଂଶେ ହିଁ ନାଶଯିବ ଏ ଅସୁର
ନକୁଳ ମହାବୀର ଯେ ପଣ୍ଡୁର କୁମର ।
ତାହାର ହସ୍ତେ ମରିବ ନିଶ୍ଚୟ ଅସୁର
ଏକଥା ପ୍ରମାଣେ ତୋତେ କହିଲୁ ନିକର ।
ଇନ୍ଦ୍ର ବୋଇଲେ ଶୁଣିମା ଆହେ ସୁରଗୁରୁ
ଦଇତ୍ୟ ନାଶକରି ସେ ସ୍ୱର୍ଗ ରକ୍ଷାକରୁ ।
ମରିବ ଏ କେତେଦିନ ଅନ୍ତେ କହ ମୋତେ
ଗୁରୁ କହିଲେ ଚଉଦ ଦିନରେ ଯେ ଅନ୍ତେ ।
ଏମନ୍ତ ବିଚାର କରୁଛନ୍ତି ସୁରଗଣ
ଅସୁର ସଙ୍ଗରେ ରଣ କରେ କୁରୁରାଣ ।
ଦୁହିଁଙ୍କର ଯୁଦ୍ଧ ହୁଏ ଅତି ଭୟଙ୍କର
କହିବାକୁ ଅଗୋଚର ଅସଂଖ୍ୟ ସମର ।
ଧରନ୍ତି ପଡ଼ନ୍ତି ପୁଣି ଗଡ଼ନ୍ତି ଜଡ଼ନ୍ତି
ଏହିପରି ଘୋର ଯୁଦ୍ଧ ସେ ଦୁହେଁ କରନ୍ତି ।
ରେରେକାର ବାଣୀ ତହିଁ ପଡ଼େ ନିରନ୍ତର
ହୁଙ୍କାର କରି ଉଠାନ୍ତି ମାରନ୍ତି ପଥର ।
ଉଠନ୍ତି ଲୋଟନ୍ତି କୋପେ ମାରନ୍ତି ଯେ ମୁଥ
ଘୋଟନ୍ତି ହେଠନ୍ତି ମରାମରି ହୋଇ ମାଥ ।
କୁରୁବଳ ଉଛୁଳନ୍ତି ଜାଳନ୍ତି ଜଳନ୍ତି
ଛନ୍ଦନ୍ତି ଘୁଞ୍ଚନ୍ତି ଯୁଦ୍ଧ ଫେରନ୍ତି କରନ୍ତି ।
ଏମନ୍ତ ଏ ଚଉଷଠି ବିନ୍ଧାଣକୁ ଘେନି
ମତ୍ତ ମାତଙ୍ଗ ପରାୟ ଯୁଝନ୍ତି ଯେ ବେନି ।
ଏମନ୍ତ ସେ ଦୁହେଁ ଯୁଦ୍ଧ କରିବାର ବେଳେ
ସପତ ଘଡ଼ି ହୋଇଲା ବେଳେ ଆକାଶରେ ।
ତିନିକ୍ରୋଶ ଯାଏ ବନ ଭାଙ୍ଗିହେଲା ପଦା
ପାଦେ ଧୂଳିହୋଇ ସବୁ ହେଲା ଗଦାପଦା ।
କୁରୁପତିକି ଯେ ମାଡ଼ି ବସିଲା ଅସୁର
ମୁଣ୍ଡରେ ମୁଥେ ମାଇଲା ହୋଇ କୋପଭର ।

ହୁଙ୍କାର ଉଞ୍ଚାଇ ଯହୁଁ ମାଇଲାକ ମୁଥେ
ଏକଠାରେ ପଡ଼ିଲା କି ବଜ୍ର ହିଁ ଆୟୁତେ ।
ଢଳି କୁରୁପତି ହେଲା ମୃତଶବ ପ୍ରାୟେ
ମଲାବୋଲି ଛାଡ଼ିଦେଇ ଉଠି ଦୈତ୍ୟରାୟେ ।
ଶରୀରେ ଚାହିଁଲା ଅଛି ବିବିଧ ରତନ
କାଢ଼ି ଅସୁର ହୋଇଲା ତାହା ଆଭରଣ ।
ମଣିମୟ ମୁକୁଟକୁ ଘେନି ନିଜ ଶିରେ
ରତ୍ନବଳି ଗଦାକୁ ସେ ଘେନିଲା ହସ୍ତରେ ।
ବୋଇଲା ଏମାନେ ଏଥେ ପଡ଼ିଥାନ୍ତୁ ସର୍ବ
ଏତେ ବୋଲି ଲେଉଟିଲା ଦୈତ୍ୟକୁଳ ଦେବ ।
ରୁଧିର ଲାଗି ସିନ୍ଦୁର ଗିରିରଂ ପରାୟ
ମନ୍ଦାର ପୁଷ୍ପ ନିନ୍ଦଇ ଅସୁରର କାୟ ।
ଯମୁନାର କୂଳେ କୂଳେ ଚଳେ ଧୀରେ ଧୀରେ
ଗେଲେ ଗେଲେ ଢଳି ଢଳି ଚାଲେ ଅହଙ୍କାରେ ।
ଦେଖିଲା ସାରଥି ରଥ ଉପରେ ଯେ ଥାଇ
ରୋଦନ କରେ ସାରଥି ରାଜା ମୁଖ ଚାହିଁ ।
ହା ଦଇବ ବୋଲି ମାରେ କପାଳରେ କର
ଭୋ ଦଇବ ପୁରୁଷ ତୁ ଆଣି ଏତେ ଦୂର ।
ଅକାରଣେ ନାଶ କଲୁ ଏ କୁରୁ ସଇନ୍ୟ
ପୃଥ୍ୱୀ ମଣ୍ଡଳେ ଅଟଇ ନୃପ କୁରୁରାଣ ।
ଯାର ବିଜେ କଲେ କମ୍ପେ ଏହି ବସୁମତୀ
ଅସୁର ହାତରେ ଥିଲା ଏହା ମୃତ୍ୟୁଗତି ।
ଏତେକ ବୋଲି ଅନେକ କାନ୍ଦଇ ସାରଥି
ବିଚାରେ ଏଥୁ କେମନ୍ତେ ଯିବି ମୁହିଁ ବର୍ତ୍ତୀ ।
ରଥୀ ମରଇ ସାରଥି ଯେବେ ଜୀଇଥାଇ
ଧର୍ମଶାସ୍ତ୍ରେ ଅଛି ସେହୁ ନର୍କଗତି ପାଇ ।
ଶୂନ୍ୟ ରଥ ଘେନି ମୁହିଁ ଯିବି ହସ୍ତିନାକୁ
କି ବୋଲି ବୋଲିବି ଯାଇ ରାଜାର ଲୋକକୁ ।
କି ବୋଲି ବୋଲିବେ ମୋତେ କଟକର ଜନ
କି ବୋଲି ବୋଲିବେ ମୋତେ ପର୍ଣ୍ଣୁର ନନ୍ଦନ ।
ଦଇବର କୃତ୍ୟ ଏଥି ହେଲା ବିପରୀତ
ପଡ଼ିଲେକ ଭୁରିଶ୍ରବା ଗଙ୍ଗାଙ୍କର ପୁତ୍ର ।
ଦ୍ରୋଣ ଅଶ୍ୱଥାମା କୃପଶଲ୍ୟ ରାୟ କର୍ଣ୍ଣ
ସୋମଦତ୍ତ ବାହ୍ଲୀକ ଯେ ସାରଥି ନନ୍ଦନ ।
ଧୃତରାଷ୍ଟ୍ର ଶତପୁତ୍ର ସଙ୍ଗେ ଗଲେ ନାଶ
ଗାନ୍ଧାରୀ ରାଜାର ପୁତ୍ର ସଇନ୍ୟ ସମସ୍ତ ।
ପଡ଼ିଲେ ମୋହରେ ଦେଖୁ ଦେଖୁ ଏହିରଣେ
ମଲେ ଏଥି ସର୍ବଯୋଦ୍ଧା ନ ରହିଲେ ଜଣେ ।
ଏତେକ ବୋଲି ରଥରୁ ଓହ୍ଲାଇ ସାରଥି
ବେନି ହସ୍ତରେ ଧରିଣ ତୋଳଇ ନୃପତି ।
ତୋଳି ନ ପାରେ ସହସ୍ର ସିଂହର ଯେ ବଳ
ଭୂମିପରେ ପଡ଼ିଅଛି ଯେସନେ ଅନଳେ ।
ଜଣ ଜଣ କରି ହସ୍ତେ ତୋଳେ ଏହିମତେ
ରାଜଭ୍ରାତା ପ୍ରିୟଜନ କୁଟୁମ୍ବ ସହିତେ ।
କାହାକୁ ହିଁ ଯହୁଁ ସେହି ତୋଳି ନ ପାରିଲା
ଲେଉଟି ସାରଥି ତହୁଁ ରଥରେ ବସିଲା ।
ରାଜ୍ୟକୁ ଯିବ ବୋଲି ସେ ବାହିଲାକ ଯାନ
ଇନ୍ଦ୍ରପ୍ରସ୍ଥ ରାଜ୍ୟେ ଯାଇ ମିଳିଲା ବହନ ।
ମଧ୍ୟରେ ବାରୁଣାବନ୍ତ ବନ ଅଛି ଲାଗି
ଆରଣ୍ୟକ ନାମେ ବନ ପର୍ବତ ଶୁଭ୍ରାଙ୍ଗୀ ।
ଆରଡ଼କ ନାମେ ତହିଁ ଅଛି ଗିରିବର
ସେ ବାଟେ ସାରଥି ଘେନି ଚଳେ ରହୁବର ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସେ ବାଟେ ଆସୁଅଛଇ ମାଦ୍ରୀର ସନ୍ତତି ।
ଖଣ୍ଡେ ଦୂରୁ ଥାଇ ସେହି ଚିହ୍ନିଲାକ ରଥ
ଶାର୍ଦ୍ଦୁଳ ଚର୍ମ ଛାଉଣୀ ଉଡ଼େ ଧ୍ୱଜ ଛତ୍ର ।
ଚିରାଳ ପକ୍ଷୀର କେରା ବ୍ରଜଜାତି ହୀରା
ପଟାନ୍ତର ନାହିଁ ତାକୁ ବିଜୁଳି କି ତାରା ।
ଲକ୍ଷେକ ଦର୍ପଣ ସେହି ରଥେ ଶୋଭା ପାଇ
କୋଟିଏ ଚାମର ତାହିଁ ଦର୍ପଣ ଲମ୍ବଇ ।
ଚନ୍ଦ୍ର ସୂର୍ଯ୍ୟ ଲେଖାଥିବା ଚାନ୍ଦୁଆ ଉପରେ
ମାଣିକ୍ୟର ଆଭରଣ ବିଚିତ୍ର ଶୋଭାରେ ।
ପୋହଳାର ଦଣ୍ଡ ମରକତର ଗୁରୁଜ
ମାରାଗର ଦ୍ୱାର ନୀଳା ପିତୁଳାର ସାଜ ।
ବିଚିତ୍ର ରଥ ଦେଖିଣ ମାଦ୍ରୀ ଦେବୀ ବଳା
ଶୂନ୍ୟରଥେ ସାରଥିକି ଚାହିଁଣ ଚିହ୍ନିଲା ।
ମଳୟ ସାରଥି ପିଣ୍ଡେ ଚେତନା ତ ନାହିଁ
ଚିନ୍ତାଭରେ ରଥଗୋଟି ଯାଉଅଛି ବାହି ।
ବେନି ନୟନରୁ ତାର ଅଶ୍ରୁଜଳ ବହେ
ମୃତ୍ୟୁକାଳରେ ପ୍ରାଣୀଙ୍କ କାଳ ଯେହ୍ନେ ଦହେ ।
ସେହିମତି ସାରଥି ଯେ ହୋଇଛି ଅଚେତ
ଦିଗ ବାରି ନପାରି ସେ ବାହୁଅଛି ରଥ ।
ନକୁଳ ଚିହ୍ନି ଡାକିଲା କିଏ ସେ ଆପଣ
ମଳୟ ସାରଥି କିହୋ ଉଚ୍ଚେ ଉଚ୍ଚାରିଣ ।
କିହୋ ସାରଥି ତୁ କହ ଯାଉଅଛି କାହିଁ
ଆମ୍ଭେ ଡାକୁଅଛୁ ତୁ ହୋ ନ ଶୁଣୁ କିମ୍ପାଇଁ ।
ଶବଦ ଶୁଣି ସାରଥି ରଥ କଲା ସ୍ଥିର
ଚିହ୍ନିଲା ସାରଥି ଏତ ମାଦ୍ରୀର କୁମର ।
ଚିହ୍ନି ରଥରୁ ଓହ୍ଲାଇ ଗଲା ଧାଡିକାରେ
ନକୁଳର ପାଦେ ପଡ଼ି କାନ୍ଦେ ଉଚ୍ଚସ୍ୱରେ ।

ନକୁଳ ବୋଇଲେ ଆହେ କାର୍ଯ୍ୟ କିସ କହ
ଅକାରଣେ କିମ୍ପା ତୁହି କରୁଅଛୁ କୋହ ।
ସାରଥି ବୋଇଲା ଦେବ ଅବଧାନ କର
ସମଦଣ୍ଡ ଘେନି ବିଜେ କଲା ନୃପବର ।
ନ କହିଲା ସେ କେବଣ ଦେଶର ହେ ଦୈତ୍ୟ
ସଂଗ୍ରାମେ କୁରୁସୈନ୍ୟଙ୍କୁ କଲାକ ନିପାତ ।
ଅର୍ଦ୍ଧ ଆକଶରେ ତାର ଲାଗୁଅଛି ଦେହୀ
ଚଉଦ ଭୁବନେ ବଡ଼ ତା କାୟା ଅଟଇ ।
ତୂଳାଅଗ୍ନି ଜାଣି ସୈନ୍ୟ କଲା ସେହୁ ହତ
ସମସ୍ତ ମାଇଲା ଆରଡ଼କ ପରବତ ।
ତେଣୁ ଏକାହୋଇ ମୁହିଁ ଆସେ ରଥ ବାହି
ସମ୍ପଦ ସରିଲା ନାଥ ଦେହେ ବୀର୍ଯ୍ୟ ନାହିଁ ।
ନକୁଳ ବୋଇଲା ଦୈତ୍ୟ କେଉଁମାର୍ଗେ ଗଲା
ଅଭୟ ସୋମବଂଶକୁ ଦୈତ୍ୟ ନାଶକଲା ।
ଦେଖାଅ ପଥ ସାରଥି ଥାଉ ଏଥି ଯାନ
ଆସ ବୋଲି ଗମିଲା ସେ ମାଦ୍ରୀର ନନ୍ଦନ ।
ଯାଉଁ ଯାଉଁ ସାରଥି ସେ ବାଟରେ କହିଲା
ଦକ୍ଷିଣକୁ ମୁଖ କରି ନଇରତେ ଗଲା ।
ଆରେରେ ଦାନବ ବୋଲି ଡାକେ ମହାବୀର
ମାର୍ଗ ଅମାର୍ଗ ହିଁ ନାହିଁ ଧାଏଁ ନିରନ୍ତର ।
ବେନି ଘଡ଼ି ପରିଯନ୍ତେ ପାଦରେ ସେ ଗଲେ
ଆରଡ଼କ ପର୍ବତର ଉପରେ ଉଠିଲେ ।
ଯମପ୍ରସ୍ତର ଦକ୍ଷିଣ ଆଡ଼େ ଯେଉଁପଥ
ସେହିମାର୍ଗେ ଯାଉଅଛି ପ୍ରତାପୀ ଦଇତ୍ୟ ।
ସାରଥି ବୋଇଲା ଦେବ ଏହିଟି ଅସୁର
ମଣିମୟ ମୁକୁଟକୁ ବାନ୍ଧିଅଛି ଶିର ।
ସାରଥି ବାକ୍ୟେ ନକୁଳ ଉଚ୍ଚେ ଡାକଦେଇ
ରହ ରହ ଦାନବରେ ଯାଉଛୁ କିମ୍ପାଇ ।
ରେରେକାର ଧ୍ୱନି ଶୁଣି ରହିଲା ଅସୁର
ମନେ ଭାବେ ଯୁଦ୍ଧ ପାଇଁ ଆସେ କେଉଁ ବୀର ।
ଏକ କରେ ଧରିଅଛି ବିକ୍ରମୀ ଆୟୁଧ
ସଂଗ୍ରାମ କରିବା ପାଇଁ ଅଛି ତାର ସାଧ ।
ନକୁଳ ମିଳିଲା ଯାଇ ଦାନବ ଛାମୁରେ
ହସି ଦୈତ୍ୟକୁଳ ବୀର ତାହାକୁ ପଚାରେ ।
କେବଣ ଦେଶର ତୁହି କହନି ଛାମୁର
ମରଣକୁ ଭୟ କିରେ ନ ଥାଇ ତୋହର ।
ରେରେକାର କରି ପୁଣି ପଛେ ଡାକ ଦେଉ
କାଳ ବିକାଳକୁ ମନେ ଭୟ ତୁ ନପାଉ ।
ନକୁଳ ବୋଇଲା ମନ୍ଦ ପାମରରେ ବାଇ
ଯମକୁ ମରଣ ପୁଛୁ ଭୟ ତୁ ନ ପାଇ ।

ପଛଆଡ଼କୁ ତୋହର ଚାହାଁରେ ଦାନବ
କାଳପାଶ ଲଗାଇଛି ସଂଯମତୀ ଦେବ ।
ଘରକୁ ଯାଇ ଆଜିକି ଦେଖିବୁ କୁଟୁମ୍ବ
ଏହି ପର୍ବତେ ପଡ଼ିବ ଆଜି ତୋର ଶବ ।
ପ୍ରତିଜ୍ଞା କରି ଦାନବ ମାଇଲା କୋଦାଳ
ବାମହସ୍ତେ ଛଡ଼ାଇଣ ନେଲା ତା ନକୁଳ ।
ତାହାର ଆୟୁଧ ଧରି ପିଟିଲା ତା ଶିରେ
ଉପୁଡ଼ି ପଡ଼ି ଆୟୁଧ ପଡ଼ିଲା ଭୂମିରେ ।
ପୁଣି ସେ ନକୁଳ ବୀର ପିଟେ ଆରବେଳେ
ତ୍ରାହି ତ୍ରାହି ଦେବ ଦୈତ୍ୟ ଧାଏଁ ଧାତିକାରେ ।
ବୃକ୍ଷେକ ସେ ଉପାଡ଼ିଣ ତହୁଁ କୋପଭରେ
ନକୁଳ ଉପରେ ନେଇ ପିଟିଲାକ ଖରେ ।
ତାହା ଦେଖିଣ ନକୁଳ ମାଇଲେକ କୋନ୍ତ
ତେଡ଼େ ବଡ଼ ବୃକ୍ଷଗୋଟା ହୋଇଲାକ ଧ୍ୱଂସ୍ତ ।
ବୃକ୍ଷ ବିନାଶିଣ କୋନ୍ତ ମାରେ ଆଉ ବାରେ
ଦାନବର ହୃଦେ ଯାଇ ପଡ଼େ ଅବହେଳେ ।
ଯେବଣ କୁନ୍ତ ବାଜନ୍ତେ ମେରୁ ଚୂର ହୋଇ
ତେଣେ ଶସ୍ତ୍ର ଗୋଟା ବାଜି ଉପୁଡ଼ି ପଡ଼ଇ ।
ନକୁଳ ଯେ ବିଚାରଇ ଏତ ବିପରୀତ
ଉପୁଡ଼ି ପଡ଼ିଲା ନବନିଶିତ ମୋ କୁନ୍ତ ।
ଏତେକ ବିଚାରି ପୁଣି ମାଦ୍ରୀ ଦେବୀ ବଳା
ଦାନବର ହୃଦେ ନେଇ ମୁଥ ପ୍ରହାରିଲା ।
ବ୍ରଜାଘାତ ପ୍ରାୟେକ ଯେ ଶୁଭିଲା ଶବଦ
ହସିଣ ଦାନବ ପୁଣି କଲା ଘୋରନାଦ ।
ବୋଇଲା ମାନବ ତୁରେ ଅଟୁ ବଡ଼ଭାଇ
ମେରୁରେ ଟେକା ବାଜିଲେ କିସ ତାର ଯାଇ ।
ବିକ୍ରମ ସିଂହକୁ କିରେ ଓଗାଳୁ ଶୃଗାଳ
ଯମ ଭୁବନକୁ ତୁ କି କରୁ ଅନୁକୂଳ ।
ନିରକ୍ଷ ଜନକୁ ଆମ୍ଭେ ମାରିବା କେମନ୍ତେ
ହତ୍ୟା ହୋଇବ ପାତକ ଲାଗିବନା ମୋତେ ।
ବେଦମନ୍ତ୍ର ପୁରାଣରେ ବୋଲିଅଛି ଯାହା
ଶୁଣରେ ମାନବ ତୋତେ କହିବା ନା ତାହା ।
ଆପଣାର ସମାନଟି ନୋହିବାକୁ ଯେହ୍ନୁ
ତାହାଙ୍କର ତୁଲେ ଯୁଦ୍ଧ କରିବାଟି କାହୁଁ ।
ସାନଲୋକ ସଙ୍ଗେ ଯେବେ କରିବାକୁ ଦ୍ୱନ୍ଦ୍ୱ
ଆଖି ଥାଉଁ ଥାଉଁ ଯାକୁ ବୋଲିବାନା ଅନ୍ଧ ।
ବଚନ ତାହାକୁ ମାଡ଼ ହୁଅଇଟି ଯେତେ
ଅବଧାନ କରି ତୁହୋ ଶୁଣ ଏକଚିତ୍ତେ ।
ଆମ୍ଭଙ୍କୁ ତୁ ତ ସମାନ ନୋହୁ ବୋଲିକରି
ସେ ନ୍ୟାୟରୁ ବୋଇଲି ମୁଁ ଯିବା ଅପସରି ।

ଆମ୍ଭଙ୍କୁ ସମାନ ଯୁଦ୍ଧେ ନୋହୁ ତୁହି ଛାର
କି ଯୁଦ୍ଧ କରିବୁ ତୁହୋ ଆମ୍ଭର ଛାମୁର ।
ଏତେକ ବୋଲି ସେ ଦୈତ୍ୟ ପୁଣି ହିଁ ଚାହିଁଲା
ପ୍ରାଣ ଘେନି ମନ୍ଦିରକୁ ଯାଅ ଯା ବୋଇଲା ।
ଯହୁଁ ସେ ଅସୁର ତାକୁ କହିଲେ ଏ ବାଣୀ
କୋପେ କମ୍ପିଲା ନକୁଳ ମତ୍ତଗଜ ଜାଣି ।
କୋପେ ସେହି ମହାତମା ପଥର ଧରିଲା
ଦାନବର ମସ୍ତକରେ ନେଇଁ କଚାଡ଼ିଲା ।
ମସ୍ତକେ ବାଜି ହୋଇଲା ସେ ପାଷାଣ ଚୂର
କୋପେ ଅସୁରକୁ ଯାଇ ଧଇଲା ନକୁଳ ।
ଗ୍ରୀବା ଧରି ନାସିକାକୁ ତାର କାମୁଡ଼ିଲା
ତୁଣ୍ଡେ ନ ପଶି ନାସିକା ଉତ୍ସର୍ଗ ହୋଇଲା ।
ଦୁଇଭୁଜେ ଧରି ତାକୁ ଦେଲାକ ପକାଇ
ନ ଛାଡ଼ିଲା ନକୁଳ ଯେ ମହାତେଜ ପାଇ ।
ପର୍ବତ ପରାୟ ସେହି ଦାନବର କାୟ
ତାହା ଆଗେ କ୍ଷୁଦ୍ରମାଛି ମାଦ୍ରୀର ତନୟ ।
ଯେସନେ ବାଳକେ ରହିଥାନ୍ତି ମାତାକୋଳେ
ତେସନେ ସଂଜାତ ସେହି ମାଦ୍ରୀର ଦୁଲାଳେ ।
ଦୁଇଭୁଜେ ଭିଡ଼ିଲା ସେ ଦାନବର ଗଳା
କଟିଭାଗକୁ ଭିଡ଼ିଲା ମାଦ୍ରୀଦେବୀ ବଳା ।
ଧନ୍ୟ ସେହି ପଣ୍ଡୁସୁତ ନ ପଡ଼ିଲା ତଳେ
ଦୈତ୍ୟକୁ ପକାଇ ମାଡ଼ି ବସଇ ତା ଗଳେ ।
ହୁଙ୍କାରି ତା ମୁଣ୍ଡେ ମୁଣ୍ଡ ଧଇଲାକ ଧାତି
ବଜ୍ର ପଡ଼ିଲା ପରାୟେ ଶବଦ ଶୁଭନ୍ତି ।
ଦାନବର କଟିକି ସେ ଧରି କ୍ରୋଧ ଭାବେ
କମ୍ପଇ ନକୁଳ ବୀର ନକୁଳ ସ୍ୱଭାବେ ।
ଗଳାକୁ ଧରି ମାଡ଼ିଲା ତିନିବେଳଯାଏ
କିଛି ନୋହେ ସେ ଦାନବ ଯହିଁ ରହିଥାଏ ।
ତେଡ଼େ ବଡ଼ ଦାନବକୁ ପକାଇଲା ଟୋଳି
ପୁଣି ଅସୁରକୁ ମାଡ଼ିବସେ ମହାବଳୀ ।
ଆରେ ରେ ଦାନବ ବୋଲି ଡାକଇ ନକୁଳ
ମାଇଲୁ ମୋର ଅଠର ଅକ୍ଷୌହିଣୀ ବଳ ।
ଭାଇ ବନ୍ଧୁ କୁଟୁମ୍ବ ମୋ ଗୁରୁଜନ ଯେତ
ବଇରୀ ନୋହୁ ତୁ ବାଟେ ମାଇଲୁ କି ଅର୍ଥେ ।
ତୋହର ଆମ୍ଭର ପୂର୍ବେ ବଇରତା ନାହିଁ
ଏଡ଼େ ବଡ଼ ବଂଶକୁ ତୁ ଧ୍ୱଂସିଲୁ କିମ୍ପାଇ ।
ଯମ ଆଜି ପୋଛିଲାଣି ଆୟୁଷ ତୋହର
ଲେଉଟି ଦେଖିବୁ ତୁ କି ଆପଣା ମନ୍ଦିର ।
ଏତେକ ବୋଲି ମାଇଲା ବୀର ମୁଥେ ଟୋଳି
ଏକାବେଳେ କି ଅୟୁତେ ବଜ୍ର ଆସି ପଡ଼ି ।

ତଥାପି କିଛି ନୋହିଲା ଦାନବର ଶିର
କେବଳ ଅଚଳ ହୋଇ ଅଛଇ ଅସୁର ।
ସ୍ୱଭାବେ ଦାନବବର ବଳେ ଅନର୍ଗଳ
ବିବିଧ ମାଡ଼ ମାରିଲା ମାଦ୍ରୀଦେବୀ ବାଳ ।
ମନେ ବିଚାରଇ ଏହି ନ ମରଇ ନିକି
ସାରଥି ବଚନେ ମୁହିଁ ଅଇଲି ଏଥିକି ।
ଦାନବକୁ ଛାଡ଼ି ଉଠିଗଲା ମହାବୀର
ମୁଣ୍ଡେ ପକାଇଲା ତାର ଅଚଳ ପଥର ।
କୁଣ୍ଡଳୀ ସିଂହ ପଡ଼ିଣ ହୋଇଛି ଅଚେତ
ପଥର ବାଜନ୍ତେ ସେହୁ ହୋଇଲା ସଚେତ ।
ଉଠି ଉଭା ହୋଇଲା ସେ ଦୈତ୍ୟକୁଳ ବୀର
ଦେଖି ମନେ ବିଚାରଇ ମାଦ୍ରୀର କୁମର ।
ମୃତ ପ୍ରାୟେକ ଏହାକୁ ଜାଣିଥିଲି ମୁହିଁ
ପୁଣି ଦାନବ ଉଠିଲା କାହୁଁ ପ୍ରାଣ ପାଇ ।
ଏତେକ ବିଚାରି ସେହି ମାଦ୍ରୀଦେବୀ ସୁତ
ଦାନବକୁ ମାଇଲାକ ଡେଇଁ ପଦାଘାତ ।
ବାଜନ୍ତେ ଦାନବ ଟହ ଟହ ହୋଇ ହସି
ମୃତ୍ୟୁ ଦେବତାର ତୁଲେ ଘଷି ହେଉ ଆସି ।
ନକୁଳ ବୋଇଲା ଦୈତ୍ୟ କହିଲୁ ତୁ ସତ୍ୟ
ତୋହର ମୃତ୍ୟୁ ମୋହର ହସ୍ତରେ ନିୟତ ।
ଏତେ ବୋଲି ତାର ପାଦ ଧରି ଧାତିକାରେ
ବୁଲାଇ ପିଟିଲା ନେଇ ପର୍ବତ ଉପରେ ।
ଭାଙ୍ଗିଲା ପର୍ବତ ପୁଣି ହେଲା ଧୂଳିମୟ
ଟହ ଟହ ହୋଇ ହସେ ଦୈତ୍ୟକୁଳ ରାୟ ।
କ୍ରୋଧେ ନକୁଳ ପର୍ବତ ଆଣି କଚାଡ଼ିଲା
ଟଳିଲା ପର୍ବତ ଦୈତ୍ୟକାୟ ତ ଲାଗିଲା ।
ଚଉଦ ଖଣ୍ଡ ହୋଇଣ ପଡ଼ିଲାକ ଭାଙ୍ଗି
ବେଳକୁ ବେଳ ଅସୁର ଲଢ଼େ ହୋଇ ରାଗୀ ।
ନକୁଳର ଅସୁରର ଦେଖି ଘୋର ରଣ
ସାରଥି ବିଚାର କରେ ଆପଣାର ମନ ।
ବୋଇଲା ଶୁଭ ତ କିଛି ନ ଦିଶିଲା ମୋତେ
ଦାନବ ମୃତ୍ୟୁ ନୋହିଲା ନକୁଳର ହସ୍ତେ ।
ନିଶ୍ଚୟ ହସ୍ତିନା ଗଲା ଆଜିଠାରୁ ନାଶ
ବିପରୀତ କର୍ମ ହେଲା ନମଲା ରାକ୍ଷସ ।
ବାଟେ ଯେଉଁଠାରେ ରହିଥିଲା ତାର ଯାନ
ଏତେ ବିଚାରି ଚଳିଲା ସେଠାବକୁ ପୁଣ ।
ରଥ ଉପରେ ଚଢ଼ିଲା ମଳୟ ସାରଥି
ବାରୁଣାବନ୍ତେ ମିଳିଲା ସେ ଯାଇ ତଡ଼ତି ।
ବିଜେ କରିଛନ୍ତି ପଣ୍ଡୁ ପୁତ୍ର ଚାରିଭାଇ
ରଥରୁ ଡେଇଁ ଭୂମିରେ ଯାଇ ଉଭା ହୋଇ ।

ଆସ୍ଥାନେ ବସିଅଛନ୍ତି ଯୁଧିଷ୍ଠି ଠାକୁର
ସାରଥି ଡାକିଲା କରି ଅତି ଉଚ୍ଚସ୍ୱର ।
ଭୋ ଦେବ ବୁଡ଼ିଲା ଆଜି ହସ୍ତିନା ସମ୍ପତ୍ତି
କାହୁଁ ଆସି ଶତ୍ରୁ ଏଥେ ହେଲେ ଉତ୍ପତ୍ତି ।
ଶୁଣି ତାକୁ ଯୁଧିଷ୍ଠିର ପଚାରନ୍ତି ଚାହିଁ
କିହୋ ସାରଥି ବିକଳ ହେଉଛି କିମ୍ପାଇ ।
ଅଶୋକ ଦେଶରେ କିମ୍ପା ଶୋକ ଜାତକରୁ
ହାନିଲାଭ କଥା କିଛି କିମ୍ପା ନ ବିଚାରୁ ।
ମଳୟ ବସନ୍ତ ରଥ ଆସିଅଛି ଘେନି
ସନ୍ତାପ ବାକ୍ୟ କହୁଛି କରି ଘୋର ଧ୍ୱନି ।
ସାରଥି ବୋଇଲା ଦେବ କର ଅବଧାନ
ଚତୁରଙ୍ଗ ବଳ ଘେନି ନୃପ ଦୁର୍ଯ୍ୟୋଧନ ।
ଦିଗବିଜୟ କରିଣ ଯାଉ ଯାଉ ବାଟେ
କାହୁଁ ଆସି ସେ ଅସୁର ଚକ୍ରବର୍ତ୍ତୀ ଭେଟେ ।
ବାଟ ଓଗାଳିଲା ସେହି ଥିଲା ଉଭାହୋଇ
ପର୍ବତ ପରାୟ ଦେବ ତା ଦେହ ଅଟଇ ।
ବୀରତୁର ଶବ୍ଦଶୁଣି ନ ପାରିଲା ସହି
ପଚାରିଲା ମାନବା ଯେ କାହିଁର ଯେ ତୁହି ।
ଶୁଣି ଦୁଃଶାସନ ବେଗେ ରୁହାଇଲା ରଥ
ବୋଇଲା ତୋହର ଛାର ଅଟରେ ଦଇତ୍ୟ ।
ହସ୍ତିନାର ରାଜା ଏ ଯେ ମାନଚକ୍ରବର୍ତ୍ତୀ
ରେରେକାର ପଚାରୁ ତୁ ପଡ଼େ ମନ୍ଦମତି ।
ଦୁହିଁଙ୍କର ଉଚ୍ଚବାଚ ହୁଅନ୍ତେ ଏମନ୍ତେ
ଗଦାଘେନି ଅସୁରକୁ ପିଟିଲେ ତୁରିତେ ।
ବାମହସ୍ତେ ଗଦାଧରି ଛଡ଼ାଇ ସେ ନେଲା
ମାନଗୋବିନ୍ଦ ଭାଇକୁ ଚାହିଁ ଆଜ୍ଞା ଦେଲା ।
ଭଲ ଶତ୍ରୁ ଆସି ମୋତେ ବନସ୍ତେ ମିଳିଲା
ବେଢ଼ିମାର ଦଇତ୍ୟକୁ ନ କରରେ ହେଳା ।
ଶୁଣି ଅନେଶ୍ୱତ ଭାଇ ମିଳିଲେକ ଯାଇ
ବିଧି ବିଧାନେ ଦଇତ୍ୟ ମାରେ ସବୁଙ୍କୁ ହିଁ ।
ଦେଖି ତାହା ନୃପବର ହୋଇଲା ଚକିତ
ସୈନ୍ୟଙ୍କୁ ବୋଇଲା ବେଢ଼ିମାରରେ ତୁରିତ ।
ରାଜା ଆଜ୍ଞାପାଇ ସୈନ୍ୟ ସେନାପତି ରଥୀ
ଲକ୍ଷପୁର କରି ତାଙ୍କୁ ବେଢ଼ିଲେ ତଡ଼ତି ।
ଯାହାର ଯେତେକ ଶସ୍ତ୍ର ବିନ୍ଧିଲେ ସେ ବେଢ଼ି
ଦଇତ୍ୟ ଉପରେ ବାଣ ପଡ଼ିଲେ ଉପୁଡ଼ି ।
ଗଦାଛେଲ ଚକ୍ର ଭାଲ ଶକତି ମୁଦ୍‌ଗର
ପର୍ବତ ଯେ ବଜ୍ରବାଣ କୁନ୍ତ ଆସିବର ।
ବୃକ୍ଷର ପତ୍ର ପବନେ ଝଡ଼ନ୍ତି ଯେସନ
ଦୈତ୍ୟ ଦେହେ ବାଜି ଅସ୍ତ୍ର ପଡ଼ଇ ତେସନ ।

ପର୍ବତ ପରାୟ ତହିଁ ରହିଲା ଅସୁର
ଦେଖିବାକୁ ଶୁଣିବାକୁ କଥା ଅଗୋଚର ।
ଘୋର ଯୁଦ୍ଧ କରି ଦେବ ସବୁ କଲା ହତ
ଚତୁରଙ୍ଗ ବଳ ସୈନ୍ୟ କଲାକ ନିପାତ ।
ପଛେ ଥିଲା ଦେବ ଏକା ମାନଚକ୍ରବର୍ତ୍ତୀ
ଦୈତ୍ୟକୁ ନାରାଚ ସେହି ମାରେ ଅପ୍ରମିତି ।
ତଥାପି ଦଇତ୍ୟ ଦେହେ ଶସ୍ତ୍ର ନ କାଟଇ
ମେରୁରେ ଯେମନ୍ତେ କ୍ଷୁଦ୍ରଟେକା ନ ଭେଦଇ ।
ଯହୁଁ ଶସ୍ତ୍ରମାନ ତାର ଦେହେ ନ ଭେଦିଲା
ଗଦା ଘେନି ନୃପତି ତା ଦେହେ କଚାଡ଼ିଲା ।
ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା ଗଦାବର
ବିବିଧ ଶସ୍ତ୍ର ମାଇଲା ପୁଣି ନୃପବର ।
ବାଜନ୍ତେ ଶସ୍ତ୍ର ହସଇ ପ୍ରତାପୀ ଅସୁର
ବିଧା ଗୁରୁଦା ଯେ ଗାଲ ବିନ୍ଧାଣି ଆବର ।
ପୁଣି କଚାଡ଼ିଲା ଧରି ଗିରିବରମାନ
ତଥାପି ନମଲା ଦେବ ଅସୁର ରାଜନ ।
ନୃପତିକି ମୁଥା ଏକ ମାଇଲା ଦଇତ୍ୟ
ମୁଥାର ଘାତେ ନୃପତି ହୋଇଲା ଅଚେତ ।
ଭୀମଦେବ ଭୁରିଶ୍ରବା ବାହ୍ଲିକ ହେ ଶଲ୍ୟ
ଦ୍ରୋଣଗୁରୁ ଅଶ୍ୱଥାମା କୃପ ମହାମଲ୍ଲ ।
ଜୟଦ୍ରଥ ବିକର୍ଣ୍ଣ ଯେ କର୍ଣ୍ଣ ଆଦି କରି
ଶକୁନି ଯେ କାଳକେତୁ ଅଙ୍ଗ ଦଣ୍ଡଧାରୀ ।
ସମସ୍ତେ ଅଚେତ ହେଲେ ପାଇ ଦୈତ୍ୟତ୍ରାସ
ସମସ୍ତଙ୍କୁ ମାରି ଗଦା ଘେନିଲା ରାକ୍ଷସ ।
ମଣିମୟ ମୁକୁଟକୁ ରାଜା ଶିରୁ ଫେଇ
ଆପଣା ଶିରେ ଦାନବ ବାନ୍ଧିଲାକ ନେଇ ।
ବୋଇଲାକ ଆହେ ସର୍ବେ ଥାଅ ଏହିମତେ
କାଲି ଆସି ମୁଁ ଭକ୍ଷଣ କରିବି ତୁରିତେ ।
ଅପାରଦିନୁ ମୋହର ମଧୁମାଂସେ ଇଚ୍ଛା
କାଲି ପୁରାଇବି ମୁହିଁ ମୋର ମନବାଞ୍ଛା ।
ଏମନ୍ତ ବୋଲି ଗଲାକ ସେ ଦାନବ ଦେବ
ତୁଚ୍ଛା ରଥ ଘେନି ମୁହିଁଆସୁଥିଲି ଦେବ ।
ଶୁଭ୍ରାଙ୍ଗୀ ଗିରି ଉପରେ ଦେଖିଲେ ନକୁଳ
ବାରତା ସେ ପଚାରିଲେ କହିଲି ସକଳ ।
ଶୁଣି କୋପମନ ହୋଇ ନକୁଳ ଧାଇଁଲେ
ମୋତେ ଘେନିଣ ପର୍ବତ ବଳି ଚଳିଗଲେ ।
ଆରଡ଼କ ପର୍ବତରେ ଯାଉଛି ଅସୁର
ରହ ରହ ବୋଲି ଡାକଦେଲେ ମହାବୀର ।
ଦାନବ ତୁଲେ ବହୁତ କଲେ ଯାଇ ରଣ
କେତେ ମୁଁ କହିବି ସେହି ଯୁଦ୍ଧ ଅପ୍ରମାଣ ।

ନବନିଶି କୁନ୍ତକୁ ଯେ ଗଦାଛେଳ ଭାଲ
ଶକତି ମୁଦ୍‌ଗର ହେବ ପାଶୁପତ ତୁଲ୍ୟ ।
ଯହୁଁ ଏହି ଶସ୍ତ୍ରେ ଭେଦ ନୋହିଲା ତା କାୟ
ମାଲଯୁଦ୍ଧ ଆରମ୍ଭିଲେ ମାଦ୍ରୀର ତନୟ ।
ଚଉଷଠି ବିଦ୍ଧାଣରେ ମାଲଯୁଦ୍ଧ ଯେତେ
କେବେ ହେଁ ନାଶ ନୋହିଲା ଦେବ କେଉଁମତେ ।
ପର୍ବତ ପାଷାଣ ଲୌହଗିରି ତା ଉପରେ
କଚାଡ଼ନ୍ତି ଚୂର୍ଣ୍ଣ ହୁଏ ଅସୁର ଶରୀରେ ।
ଯୁଦ୍ଧ କରନ୍ତେ ନକୁଳବୀର ଚିନ୍ତାପାଇ
ଯେଣୁ ଛାମୁରେ ଦେବ ମୁଁ ଅଇଲଇଁ କହି ।
ଶୁଣି ନୃପତି ଅନାଇ ଭାଇଙ୍କୁ ବୋଇଲେ
ଆସନ ତେଜିଣ ଦେଇ ଆପଣେ ଉଠିଲେ ।
ସାରଥିକୁ ଆଗକରି ଗଲେ ଭାଇଚାରି
ମୁହୂର୍ତ୍ତକେ ମିଳିଲେ ସେ ଆରଡ଼କ ଗିରି ।
ନକୁଳ ସେ ଦଇତ୍ୟକୁ ଧରି କଚାଡ଼ଇ
ପର୍ବତ ପରାୟେ ସେହି ଦଇତ୍ୟ ଅଟଇ ।
ନକୁଳର ବଳଜାଣ ଅଟେ ଅକଳନା
ଯୁଦ୍ଧରେ ଅଟଇ ସେହି ମହାବଳ ରଣା ।
ବେଳେ ଏମନ୍ତ ବିଚାର କରିବାର ବେଳେ
ନକୁଳ ସେ ଦଇତ୍ୟକୁ ଧରି କଚାଡ଼ିଲେ ।
ତିଳେକ ପର୍ଯ୍ୟନ୍ତେ ଜାଣ ନଇଁଲାକ ମହୀ
ନକଲୁ ହାତୁଁ ଦଇତ ଗଲା ଫିଟିକାଇ ।
ଭୀମ ବୋଇଲା ଭୋ ଦେବ ଆଜ୍ଞା ଦିଅ ମୋତେ
ଆଜ୍ଞା ଦେଲେ ଯୁଝିବି ମୁଁ ଅସୁର ସଙ୍ଗତେ ।
ଯୁଧିଷ୍ଠି ବୋଇଲେ ବାବୁ ନୁହଇ ଏମନ୍ତ
ଅଧର୍ମ ଯୁଦ୍ଧ କରିବା ଅଟେ ଅସଙ୍ଗତ ।
ଏମନ୍ତ ବୋଲି ଯୁଧିଷ୍ଠି ବୃକୋଦରେ କହି
ନକୁଳକୁ ସେ ଦାନବ ଧଇଲାକ ଯାଇ ।
ବାଳପୁତ୍ର ଯେହ୍ନେ ଥାଏ ମାତାଙ୍କର କୋଳେ
ତେସନ ଦାନବ କୋଳେ ଥାଇ ସେ ନକୁଳେ ।
ଧରନ୍ତେ ସେ ଦାନବକୁ ହୋଇଲା ଅଥୟ
ଶରୀରକୁ ଫୁଲାଉଛି ମାଦ୍ରୀର ତନ ।
କଟିଭାଗ ଧରିଦେଲା ଦୈତ୍ୟକୁ କଚାଡ଼ି
ବୁକୁରେ ବସି ଛାଡ଼ିଲା ବୀର ଘୋର ରଡ଼ି ।
ବିବିଧ ମାଡ଼ ମାରିଣ ନାକ କାମୁଡ଼ିଲା
ମୁଣ୍ଡ ଉପରେ ଆପଣା ମୁଣ୍ଡ କଚାଡ଼ିଲା ।
ତେବେ ସେ ଦାନବର ନୋହିଲାକ କିଛି
ତଳେପଡ଼ି ସେ ଦାନବ ଅନାଇ ହସୁଛି ।
ବାମକରେ ଧରି ତାକୁ ଦେଲା ଫୋପଡ଼ାଇ
ଝିଣ୍ଟିକା ପ୍ରାୟେ ନକୁଳ ପଡ଼େ ତଳେ ଯାଇ ।

ପୁଣିହିଁ ସେ ଧରାଧରି ହେଲେ ବେନିବୀରେ
ଖାଲଢ଼ିପର ପାଷାଣ ସମତୁଲ ହେଲେ ।
ପଡ଼ନ୍ତି ଗଡ଼ନ୍ତି ପୁଣି ଧରି କାମୁଡ଼ନ୍ତି ।
ମଟନ୍ତି ଟାଟନ୍ତି ଦନ୍ତ ପାଟି ରଗଡ଼ନ୍ତି ।
ଆଦିତ୍ୟ ଦେବତା ତହିଁ ଅସ୍ତ ପରିଯନ୍ତେ
ଛାଡ଼ିଣ ମାଲବିଦ୍ଧାଣ ଦୁହେଁ କୋପଚିତ୍ତେ ।
କେହି କାହାକୁ ଯେ ତହିଁ ନ ପାରନ୍ତି ଜିଣି
ଯୁଧିଷ୍ଠିର ପଚାରନ୍ତି ଶୁଣ ମନ୍ତ୍ରୀମଣି ।
ଏ ତୋର ଯୁଦ୍ଧ ଆରମ୍ଭ ଦେଖିଲା ତ ନାହିଁ
ଦଇତ୍ୟ ମରଣ ପୁଣି ଅବନୀରେ କାହିଁ ।
ମନ୍ତ୍ରୀ ବୋଲି ଶୁଣିମା ଧର୍ମ ନୃପବର
କପିଳସିଂହ ବୋଲି ଯେ ମହାବଳୀ ବୀର ।
ମହିଷସିଂହ ବୋଲି ଯେ ତାହାର ଦୁଲାଳ
ତାହାର ନନ୍ଦନ ଛାଗସିଂହ ମହାବଳ ।
ତାର ପୁତ୍ର ଅବିସିଂହ ନାମେ ମହାବୀର
ତା ନନ୍ଦନ ବୀରସିଂହ ନାମରେ ଅସୁର ।
କାଳସିଂହ ଅସୁର ଯେ ତାହାର ନନ୍ଦନ
ଗୋସିଂହ ଦଇତ ତାର ପୁତ୍ର ବଳବାନ ।
ସତ୍ୟଭାମା ହରଣେ ସେ ପାର୍ଥହସ୍ତେ ମଲା
ରାମକୃଷ୍ଣଙ୍କୁ ସେ ଅଗ୍ନିକୁଣ୍ଡେ ପୋଡ଼ିଦେଲା ।
ବୀରସିଂହହୁଁ କପିଳସିଂହ ପରିଯନ୍ତେ
ନାଶଗଲେ ଦୁର୍ଗାଦେବୀ ସମରେ ସମସ୍ତେ ।
ଗୋସିଂହର ପୁତ୍ର ନାମ ଜୟସିଂହ ବୀର
ରାଜସୂୟ ଯଜ୍ଞେ ନାଶଯିବ ସେ ଅସୁର ।
ଏ କୁଣ୍ଡଳୀସିଂହ ଜୟସିଂହର କୁମର
କାଳିକାଦେବୀ ମନାଇ ଅଛଇ ଅସୁର ।
ଦେବବର୍ଷେ ସାତବର୍ଷ ଏ ତପସ୍ୟା କଲା
ଏକପାଦେ ଉଭାହୋଇ ଊର୍ଦ୍ଧ୍ୱକୁ ଚାହିଁଲା ।
ତଦନ୍ତେ ସେ ବୀର ଘୋର ଅନଳକୁ ଜାଳି
ଅଗ୍ନି ଭିତରେ ପଶିଲା ଯାଇ ମହାବଳୀ ।
ବରଷକେ ସୁପ୍ରସନ୍ନ ହେଲେ ମାହେଶ୍ୱରୀ
ଆସ ଦଇତ୍ୟ ଡାକିଲେ ଦେବୀ ଉଚ୍ଚ କରି ।
ଦଇତ୍ୟ ବୋଇଲା ତୁହୋ କେବଣ ହିଁ ଜନ
ଦେବୀ ବୋଇଲେ ମୋ ନାମ କାଳିକାରେ ଜାଣ ।
ଶୁଣି ଦାନବ ଅଗ୍ନିରେ ଥାଇ ପୁଣି କହି
ନିଜ ସ୍ୱରୂପ ତୋହର ଦେଖା ମହାମାୟୀ ।
ଦେବୀ ବୋଇଲେ ତୁ ଏବେ ଶୁଣରେ ଅସୁର
ମୋର ରୂପ ଦେଖିଲେକି ବର୍ତ୍ତଇ ସଂସାର ।
ମୋର ନିଜ ରୂପ ଦେଖି ଦେବ ତ୍ରିଲୋଚନ
ସହି ନ ପାରିଣ ମୋହଗଲେ ତୁ ହୋ ଜାଣ ।

ଦାନବ ବୋଇଲା କାହିଁ ମାତାରୂପ ଦେଖି
ପୁତ୍ର ନାଶଯାଏ କି ଗୋ ଶରଚନ୍ଦ୍ର ମୁଖୀ ।
କାଳୀ ବୋଇଲେ ଅଗ୍ନିରୁ ତୁ ବାହାର ହୁଅ
ତେବେ ମୋହର ଦେଖିବୁ ତୁହି ନିଜ ଦେହ ।
ଦେବୀ ବଚନେ ଦଇତ୍ୟ ହୋଇଲା ବାହାର
ପୋଡ଼ିଲା ତମ୍ବା ପରାୟ ଦିଶେ ଦେହ ତାର ।
କରପତ୍ର ଯୋଡ଼ି ପୁଣି ବୋଇଲା ଗୋ ମାତ
ଦେଖା ତୋର ନିଜରୂପ ହୁଏ ମୁଁ ପବିତ୍ର ।
ଶୁଣିଣ ସେ ମହାମାୟା ନିଜରୂପ ଧରି
ଚଉଦିଗଯାକ ଗଲା ସେ ରୂପରେ ପୂରି ।
ସପତ ପାତାଳଯାକ ଘୋଟିଲା ଚରଣ
ଶିର ଘୋଟିଲା ଆକାଶଯାକ ଯାଇ ପୁଣ ।
ଦଶଦଗପାଳ ପୂରିଗଲା କଳେବର
ମେରୁମଣ୍ଡଳକୁ ଜିଣି ଦିଶଇ ଶରୀର ।
ଅଷ୍ଟଗିରିଯାକ ରୋମରାଜିରେ ଯେ ବସି
ରଟମଟ ଦନ୍ତ କଟମଟ ଚାହିଁ ହସି ।
କହ କହ ଶବଦ ଯେ ଗହଗହ ଧ୍ୱନି
ଡ଼ରେ ଥରହର ହୋଇ କମ୍ପଇ ମେଦିନୀ ।
ଝଟ ଝଟ ବିଜୁଳି କି ହସିବାର ଗତି
ରସାତଳେ ପଡ଼ିବକି ଅକଣ୍ଟକ ପୃଥ୍ୱୀ ।
ଚଉଷଠି ଯୋଗିନୀ ଯେ ଲାଗିଛନ୍ତି ଦେହୀ
କିଳିକିଳା ନାଦକୁ ଯେ ପୃଥ୍ୱୀ ନ ସହଇ ।
ପଞ୍ଚ ଅର୍ବୁଦ ଦେବୀ ଯେ କୁହୁକୁହୁ ନାଦେ
ଖେମଟା ନାଟ କରନ୍ତି ଦେବୀଙ୍କର ହୃଦେ ।
ମେରୁଗିରି ଟଳଟଳ କମ୍ପଇ ମନ୍ଦର
ସପତ ସମୁଦ୍ର ନୀର ହୋଇଲାକ ଥର ।
ପ୍ରକଟ ବିକଟହାସ୍ୟ ମୁଖ ଘୋରଧ୍ୱନି
ଦେଖି କମ୍ପମାନ ହେଲା ଅସୁର ମୂର୍ଦ୍ଧନି ।
ଏତିକି ହେଉ ବୋଲଇ ଯେ ଅସୁରମତି
ତାଣ୍ଡବ ନୃତ୍ୟ କରିଣ କରାଇଲା ଶାନ୍ତି ।
ଶକ୍ତି ରୂପେ ଉଭାହେଲେ ପୁଣି ମହାମାୟେ
କିମ୍ପାଇ ଦାନବ ତୋର ଚିତ୍ତେ କଲୁ ଭୟେ ।
ଏବେ ବରମାଗ ବାବୁ ଯେ ତୋହର ଇଚ୍ଛା
ଦାନବ ବୋଇଲା ମାଗୋ ଯେ ମୋ ମନୋବାଞ୍ଛା ।
ତିନିଯୋଜନର ଅର୍ଦ୍ଧେ ହୋଇବ ମୋ କାୟେ
ଆବର ଜିଣିବି ମୁହିଁ ବ୍ରହ୍ମ ଲୋକଯାଏ ।
ବ୍ରହ୍ମ ଇନ୍ଦ୍ର ରୁଦ୍ର ଆଦି ସରାସୁରଗଣ
ଚନ୍ଦ୍ର ସୂର୍ଯ୍ୟ ବିଷ୍ଣୁ ଯମ ପବନ ବରୁଣ ।
ନାଗଗଣ ଯକ୍ଷଗଣ ଆବର ଭୂପାଳ
ଯମ ନଇର୍ରତ ଆଦି ଦଶଦିଗପାଳ ।
କାହାରି ହାତରେ ମୃତ୍ୟୁ ନ ହେଉ ଯେ ମୋତେ
ବ୍ରହ୍ମାଣ୍ଡ ଜିଣିବା ବର ମାଗିଲି ମୁଁ ତୋତେ ।
ଚଉଦ କଳପ ମୁହିଁ ହୋଇବି ଅମର
ଭୋ ଜନନୀ ତୋତେ ମୁହିଁ ମାଗେ ଏହି ବର ।
କାଳିକା ଦେବୀ ବୋଇଲେ ଶୁଣରେ ଦାନବ
ଜନ୍ମହେଲେ ନାଶଯାନ୍ତି ଯେତେ ଦେବା ଦେବ ।
ବଇକୁଣ୍ଠ ଅଧିପତି ଦେବ ନାରାୟଣ
ଦଶ ଅବତାର ପ୍ରଭୁ ହୁଅନ୍ତି ଆପଣ ।
ଆମ୍ଭେମାନେ ପୃଥିବୀରେ ହେଉ ଅଧିପତି
ଦୈତ୍ୟ ଦାନବଙ୍କୁ ମାରି ଭାରା କରୁ ଶାନ୍ତି ।
ତୋହର ଇଚ୍ଛାରେ ଏବେ ମାଗ ତୁହି ବର
ଯେଉଁ ରୂପେ ମୃତ୍ୟୁମାର୍ଗ ହୋଇବ ତୋହର ।
ଶୁଣିଣ ସେ ଦୈତ୍ୟରାୟେ ବୋଇଲା ଗୋ ମାଏ
ମୋହର ମୃତ୍ୟୁକୁ ମୁହିଁ ମାଗୁଛି ଉପାୟେ ।
ଶସ୍ତ୍ରେ ମୁହିଁ ନ ଛିଡ଼ିବି ନ ବୁଡ଼ିବି ଜଳେ
ଦଶସହସ୍ର ସିଂହର ତୁଲ୍ୟ ହେବି ବଳେ ।
ମୋର ମନ କଲେ ମୁହିଁ ଉପାଡ଼ିବି ଗିରି
ମୋତେ ଯେ ଉତ୍ତାନ କରି ମାଡ଼ି ବସିପାରି ।
ରଖିପାରିବ ଯେ ମୋର ଗ୍ରୀବା କଟି ସରି
ବଦନଯାଏ ଆଣିବ ପାଦକୁ ଓଟାରି ।
ବାମଚରଣ ରଖିବ ତହିଁ ମୋର ଆଣି
ତୁଣ୍ଡେ ପୁରାଇବ ମୋର ଆଙ୍ଗୁଠି ଯେ ଆଣି ।
ସେ ଆଙ୍ଗୁଠି ଗୋଟି ମୋର ପଶିବ ତୁଣ୍ଡରେ
ଛାଡ଼ିବି ମୋହର ପ୍ରାଣ କହିଲି ଛାମୁରେ ।
ଅସ୍ତୁହେଉ ବୋଲି ତାକୁ ବୋଇଲେ ସେ କାଳି
କହିଲେକ ସହଦେବ ମନ୍ତ୍ରୀ ଏତେ ଭାଳି ।
ମୃତ୍ୟୁଭେଦ ଯହୁଁ ମନ୍ତ୍ରୀ କହିଲେ ତାହାର
କହିଲେକ ସାଧୁମନ୍ତ୍ରୀ ବୋଲି ନୃପବର ।
ଏଣେ ଚାରିଭାଇ ବସି କରନ୍ତି ବିଚାର
ତେଣେ ଅସୁର ସଙ୍ଗରେ ଯୁଝନ୍ତି ନକୁଳ ।
ରେରେକାର ଶବଦରେ ଘୋର ଧ୍ୱନି କରେ
ସିଂହ ଶାର୍ଦ୍ଦୁଳ ସମର ପ୍ରାୟେ ମହାଘୋରେ ।
ଦୁହିଁଙ୍କର ମହାଯୁଦ୍ଧ ବେନି କ୍ଷଣ ଜାଣି
ମହାଘୋର ଯୁଦ୍ଧରେ ଯେ କମ୍ପଇ ଧରଣୀ ।
ନକୁଳକୁ ଦାନବ ଯେ କହିଲାକ ହସି
ଲାଗିଲା ଗଳାରେ ତୋର ମହାକାଳ ଫାଶୀ ।
ନକୁଳ ବୋଇଲା ଦୈତ୍ୟ କହିଲୁ ତୁ ସତ୍ୟ
ଅପମୃତ୍ୟୁ ତୋତେ ଦେଇଅଛି ଦଇବତ ।
ଏତେ ବୋଲି ସେ ନକୁଳ ମାଇଲାକ ମୁଥେ
ହସି ଉଠିଲା ଦାନବ ନକୁଳର ଘାତେ

ବୋଇଲା ଏହି ଯୁଦ୍ଧକୁ ତୁ କରି କି ଜିଣିବୁ
ଏ ଦେହ ଘେନିଣ ଯମ ମନ୍ଦିରକୁ ଯିବୁ ।
ଶୁଣି କୋପଭର ହୋଇ ଉଠିଲା ନକୁଳ
ଦଇତ୍ୟର ପାଦଧରି କଚାଡ଼ିଲା ଶିଳ ।
ଦାନବର ଦେହେ ବାଜି ଭାଙ୍ଗିଲା ପାଷାଣ
ତେରଦିନ ଯାଏ ଯୁଦ୍ଧହେଲା ନୃପରାଣ ।
ଯୁଧିଷ୍ଠି ବୋଇଲେ ତୁହୋ ଶୁଣ ମନ୍ତ୍ରୀବର
ଦଇତ୍ୟର ମୃତ୍ୟୁକହ ନକୁଳ ଆଗର ।
ମନ୍ତ୍ରୀ ତ କହିଲେ ସେ ଯେ କରୁଛନ୍ତି ରଣ
ତରସ୍ତ ହୁଅଇ ପୃଥ୍ୱୀ ଶୁଣି ଗରଜନ ।
ତୋହର କହନ୍ତେ ସେହି ନ ପାରିବେ ଜାଣି
ବୃକୋଦର ଠାକୁର ଯେ କହନ୍ତୁ ପ୍ରମାଣି ।
ଏହାଙ୍କ ଶବଦ ତାଙ୍କ କର୍ଣ୍ଣକୁ ଶୁଭିବ
ଚିତୋଇ ନକୁଳଦେବ ଦୈତ୍ୟ ସଂହାରିବ ।
ଭୀମକୁ ଯେ ଆଜ୍ଞାଦେଲେ ଧର୍ମରାଜ ପୁଅ
ମନ୍ତ୍ରୀ କହିବାର କଥା ନକୁଳକୁ କହ ।
ଶୁଣି ବୃକୋଦର ହସି ଉଠେ ଟହଟହ
ହସନ୍ତେ ଚାହିଁଲା ତେଣେ ମାଦ୍ରୀଦେବୀ ପୁଅ ।
ଗଦାତଳେ ଥୋଇ ଠାରି କହେ ବୀରମଣି
ଗ୍ରୀବାରେ ବାମପାଦକୁ ରଖ ଆଗେ ଆଣି ।
କନିଷ୍ଠା ଆଙ୍ଗୁଠି ଗୋଟି ମୁଖେ ଦିଅ ନେଇ
ଏହି ରୂପେ ମାର ବୋଲି ତାଙ୍କୁ ଦେଲେ କହି ।
ଠାରିଲେ ଯେ ବୃକୋଦର ଜାଣିଲେ ନକୁଳ
ତୋଳି କଚାଡ଼ି ପକାଇଦେଲେ ଭୂମିତଳ ।
ଦଶସହସ୍ର ସିଂହର ବଳଧରେ ଯେହୁ
ଚଳି ନପାରିଲା ତଳେ ପଡ଼ିଲାକ ସେହୁ ।
ଚକ୍ର ଆକାର ତାହାର ବୁଲାଇଲା ଦେହୀ
ଚଉଦ କୋଶଯାଏ ସେ ଗିରି ଚୂରଯାଇ ।
ନକୁଳ ମାଡ଼ିବସିଲା ଅସୁର କଟିରେ
ଦଇତ୍ୟର ଚୁଟି ଧରିଅଛି ବାମକରେ ।
ମେରୁଶୃଙ୍ଗ ଜାଣି ଅଟେ ଦଇତର ଶିର
ଓଟାରନ୍ତେ ହେଲା ସେହୁ ସ୍ତମ୍ଭର ଆକାର ।
ଅଚଳ ହୋଇଲା ଯହୁଁ ନ ଚଳିଲା ସେହୁ
ନକୁଳ ଯେ କମ୍ପମାନ ହୋଇଲାକ ତହୁ ।
ଏ ଅସୁର ନ ମରଇ ମନେ ବିଚାରଇ
ବିନାଅର୍ଥେ ଯୁଦ୍ଧକୁ ମୁଁ ଅଇଲି କିମ୍ପାଇ ।
ମୋହର ଚାଳନ୍ତେ ତିଳେ ନ ଚଳେ ଅସୁର
ଅଚଳହୁଁ ଅଧିକ ତ ଏହାର ଶରୀର ।
ଏତେ ବୋଲି ହୃଦପଦ୍ମେ କଲେ ବିଷ୍ଣୁଚିନ୍ତା
ରଖ ଜଗନ୍ନାଥ ତୁମ୍ଭେ ଜଗତକରତା ।

ଆମ୍ଭେ ଅଟୁ ଅରକ୍ଷିତ କୁନ୍ତୀରାଣୀ ପୁତ୍ର
ଆଶ୍ରା କରିଅଛୁ ସଦା ସଙ୍ଖଚକ୍ର ହସ୍ତ ।
ଅପ୍ରମିତେ ଆସି କାହୁଁ ମିଳିଲା ବଇରୀ
ମାଇଲା ଏ ସୋମବଂଶ ପୂରିଲା ତା ଶିରୀ ।
ଏବେ ଆସି ଦୈତ୍ୟତୁଳେ କଲି ମୁହିଁ ରଣ
ରଜନୀ ଦିବସ ଆସି ହେଲା ତେରଦିନ ।
ଜିଣି ନପାରିଲି ଦୈତ୍ୟ ବୀରକୁଳ ରାୟ
ତେଣୁ ତୋତେ ଚିନ୍ତା ମୁହିଁ କଲି ଦେବରାୟ ।
ଏ ଲଜ୍ଜାରୁ ଉଦ୍ଧର ତୁ ବାରେ ନାରାୟଣ
ଦଇତର ଯେଉଁରୂପେ ହୁଅଇ ମରଣ ।
କ୍ଷତ୍ରିୟ ବୀରଙ୍କ ମୁଖେ ନ ପାଇବି ଲାଜ
ଉଦ୍ଧାରିଣ ଧର ମୋତେ ହେ ଦେବାଧିରାଜ ।
ଏସନ ଚିନ୍ତା କରନ୍ତେ ତହିଁ ବୀରମଣି
ଦ୍ୱାରକାରେ ଥାଇ ତାହା ଜାଣି ଚକ୍ରପାଣି ।
ନକୁଳବୀର ଆତଙ୍କ ଜାଣି ଚକ୍ରଧର
ନୃସିଂହ ମୂର୍ତ୍ତି ପେଶିଲେ ତହୁଁ ଧାତିକାର ।
ବୋଇଲେ ନକୁଳ ଅଙ୍ଗେ ବିଜେକର ଯାଇ
କୋଟିଏ ସିଂହର ବଳ ପଟ୍ଟାନ୍ତର ନାହିଁ ।
ଦଇତ୍ୟର କେଶ ବୀର ବାମପାଦେ ଧରି
ଦୁଇପାଦକୁ ନକୁଳ ଆଣିଲା ଓଟାରି ।
ବାମ କନିଷ୍ଠ ଅଙ୍ଗୁଳି ମୁଖେ ଦେବାବେଳେ
ପାଟି ପାରିଲା ଦାନବ ଜାଣିଲା ସେ କାଳେ ।
ଦେଖି କୋପକଲା ସେହି ଦ୍ୱିତୀୟ ନୃସିଂହ
ମୁଣ୍ଡ କଚାଡ଼ି ଭାଙ୍ଗିଲା ଦୈତ୍ୟ ନାସାଭାଗ ।
ବଜ୍ର ବାଜନ୍ତେ ଯେସନେ ଭାଙ୍ଗଇ ପର୍ବତ
ତେସନ ଭାଙ୍ଗି ଶୋଣିତ ହୋଇଲା ସଞ୍ଜାତ ।
ତୁଣ୍ଡ ଭିତରେ ଅଙ୍ଗୁଳି ଭରିଦେଲା ନେଇ
ତତକ୍ଷଣେ ମୂର୍ଚ୍ଛାଗଲା ଦୈତ୍ୟକୁଳ ସାଇଁ ।
ଶରୀର ପଡ଼ିଲା ପ୍ରାଣବାୟୁ ଉଡ଼ିଗଲା
ନକୁଳ ଜାଣିଲେ ଦୈତ୍ୟବର ଏବେ ମଲା ।
ମୃତପିଣ୍ଡ ଛାଡ଼ି ଉଭା ହେଲେ ବୀରବର
କୁସୁମବୃଷ୍ଟି ତା ଶିରେ କଲେ ସୁନାସୀର ।
ଅନ୍ତରୀକ୍ଷେ ଡାକିଲେ ଯେ ସାଧୁ ସାଧୁ କହି
ଚଉଦପୁର ରଖିଲୁ ଦଇତକୁ ଦହି ।
ଏତେକ ବୋଲି ଯେ ଯାହାପୁରକୁ ଯେ ଗଲେ
ପାଣ୍ଡବେ ବିଜୟୀ ହୋଇ ହରି ସୁମରିଲେ ।
ବଦନ୍ତି ଅଗସ୍ତି ମୁନି ଶୁଣ ନୃପବର
କୁଣ୍ଡଳୀ ଦୈତ୍ୟ ମାଇଲେ ମାଦ୍ରୀର କୁମର ।
ଯୁଧିଷ୍ଠିଙ୍କ ଚରଣରେ କଲେ ପ୍ରଣିପାତ
ଆବର ଯେ ଓଳଗିଲେ ବୃକୋଦର ପାର୍ଥ ।

ସହଦେବ ନକୁଳର ଚରଣେ ପଡ଼ନ୍ତି
ଶ୍ରୀଶାରଳା ଦାସ ଚିତ୍ତେ ଚିନ୍ତଇ ଶ୍ରୀପତି ।

-0-

## କୌରବପାଣ୍ଡର୍ବଙ୍କ ହସ୍ତିନା ପ୍ରବେଶ

ବଦନ୍ତି ଅଗସ୍ତି ମୁନି ଶୁଣ ନୃପବର
ଯେତେବେଳେ ସଂଗ୍ରାମରେ ପଡ଼ିଲା ଅସୁର ।
ଯେ ଯାହାର ପୁରେ ଚଳିଗଲେ ସୁରଗଣ
ସାରଥି ସଙ୍ଗେ ଅଛନ୍ତି ଭାଇ ପାଞ୍ଚଜଣ ।
ବୃକୋଦର ବୋଲେ ଦେବ ଯିବା ନିଜପୁରୀ
ଶୁଣିଣ ଆଜ୍ଞା ଦିଅନ୍ତି ଧର୍ମ ଦଣ୍ଡଧାରୀ ।
କେମନ୍ତେ ଯିବାରେ ବାବୁ ଭାଇ ହେଲେ ହତ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଶଲ୍ୟ ଜୟଦ୍ରଥ ।
ଶତସୋଦର ଆବର ଶକୁନି ସହିତ
ସଖାବନ୍ଧୁ ସୋଦର ଯେ ସେନା ଅପ୍ରମିତ ।
ଏବେ କିସ କରିବା ଯେ କହସି ଉପାୟ
କରପତ୍ର ଯୋଡ଼ି କହେ ପବନତନୟ ।
ଭୀମ ବୋଲେ ତାହାଙ୍କର ନ ଧରିବା ନାମ
ଏକଥା କରିଅଛଇ ପୁରୁଷ ଉତ୍ତମ ।
ନିର୍ଦ୍ଦୟ କୌରବ ଦୟା ତାହାଙ୍କର ନାହିଁ
ଦଇବ ଯୋଗେ ଅଛନ୍ତି ଯେବେ ମୃତ୍ୟୁପାଇ ।
ଆବର ତହିଁକି ଦେବ କେବଣ ଉପାୟ
ଚାଲ ଏବେ ବାରୁଣାକୁ ଯିବା ଦେବରାୟ ।
ଯୁଧିଷ୍ଠି ବୋଇଲେ ଏହା କହିଲୁ ତୁ ମୋତେ
ସୋଦର ମରିଲେ ମୁହିଁ ଯିବଇଁ କେମନ୍ତେ ।
ନାଶଗଲା ଯେବେ ରଣେ ନୃପତି କୌରବ
ସରିଲା ବାବୁରେ ସୋମବଂଶର ଗୌରବ ।
ଆହାରେ ଭାଇ ମୋହର ନୃପ ଶିରୋମଣି
ପାର୍ଥକୁ ଚାହିଁ କାନ୍ଦନ୍ତି ଶିରଦେଇ ପାଣି ।
ବାବୁ ଧନଞ୍ଜୟ ରକ୍ଷାକର ତୁ ସୋଦର
ଅଭୟ ସୋମବଂଶରେ ବୋଲାଉଛୁ ବୀର ।
ସାଧୁ ସାଧୁ ବୋଲି ସର୍ବଜନେ ଉଚ୍ଚାରିବେ
ଯେବେ ସୋମବଂଶଯାକ ସମସ୍ତେ ଜୀଇବେ ।
ଏବେ ଦୈତ୍ୟ ମାରି ଗଲା ସଇନ୍ୟ ସହିତେ
ଦ୍ରୋଣ କର୍ଣ୍ଣ ଅଶ୍ୱଥାମା ଆଦି ବୀର ଯେତେ ।
ଲକ୍ଷେ ଭୁରିଶ୍ରବା ଶଲ୍ୟ ରାଜା ଦୁର୍ଯ୍ୟୋଧନ
ଲକ୍ଷେ ନୃପତି ଉପରେ ଅଟେ ସେ ରାଜନ ।
ନ ପାରିବା ଲୋକଙ୍କୁ ସେ ସିନା ଜିଣୁଥିଲେ
ଏକା ଦଇତ୍ୟର ହସ୍ତେ ସର୍ବେ ନାଶଗଲେ ।
ଉଦ୍ଧର କୁଳ ଲଜ୍ଜାରୁ ବାବୁ ଧନଞ୍ଜୟ
ତହିଁ ଢଳି ପଡ଼ିଲେ ସେ ଧର୍ମର ତନୟ ।
ଆହା ଭାଇମାନେ ବୋଲି ଉଚ୍ଚରେ କାନ୍ଦନ୍ତି
ଦୈତ୍ୟର ହାତରେ ମୃତ୍ୟୁଥିଲା କି ସବୁନ୍ତି ।
ତୁମ୍ଭେ ଯେବେ ମଲ ବାବୁ ମରିବି ନା ମୁହିଁ
ଆଉ ବାରୁଣାବନ୍ତକୁ ଯିବଇଁ କିମ୍ପାଇଁ ।
କେମନ୍ତେ ଦେଖିବି ଅନ୍ଧ ଅନ୍ଧୁଣୀ ବିକଳ
ଛାଡ଼ିବି ଜୀବନ ଭକ୍ଷୁ ଏ ପିଣ୍ଡ ଶୃଗାଳ ।
ଅର୍ଜ୍ଜୁନ ବୋଇଲା ଦେବ କରିବା ବିଜୟେ
କେଉଁଠାରେ ପଡ଼ଛନ୍ତି ସୋମବଂଶରାୟେ ।
କଢ଼ାଅ ସାରଥି ବୋଲି ଆଜ୍ଞା ତାକୁ ଦ୍ୟନ୍ତି
ଦଇତ୍ୟ ହାତରେ ମୃତ୍ୟୁଥିଲାକ ସବୁନ୍ତି ।
ସାରଥି କହଇ ତହିଁ ଯୋଡ଼ି ବେନିପାଣି
ମଣିମୟ ମୁକୁଟକୁ ଦୈତ୍ୟ ଅଛି ଆଣି ।
ରତ୍ନାବଳୀ ଗଦାବର ଆଣିଥିଲା ସେହି
ଭାନୁମତୀ ଚନ୍ଦ୍ରମାଳା ସହିତେ ଗୋସାଇଁ ।
ସାରଥିର ତୁଣ୍ଡରୁ ସେ ଶୁଣିଣ ଏମନ୍ତ
ଦେଖିଲେ ପଡ଼ିଅଛଇ ସେ ସ୍ଥାନେ ଦଇତ୍ୟ ।
ପଡ଼ିଛି ସେ ମଣିମୟ ମୁକୁଟ ପାଖରେ
ଦେଖି ବୃକୋଦର ତାହା ବାନ୍ଧିଲା ମଥାରେ ।
ଭାନୁମତୀ ଚନ୍ଦ୍ରମାଳା ତା ଗଳାରୁ କାଢ଼ି
ପଦକ ଶୋଭିତ ନବରତ୍ନ ଅଛି ଝଳି ।
ବୃକୋଦର ଗଳାରେ ତା ପକାଇଲା ନେଇ
ରତ୍ନାବଳୀ ଗଦା ତାର ସନ୍ନିଧିରେ ନାହିଁ ।
ଯୁଦ୍ଧଭୂମିରେ ଯେତେକ ବୁଲିଣ ଦେଖିଲେ
ଲୋହଗିରି ମଧ୍ୟ ତେହ୍ନେ ଦିଶେ ଗଦାବର ।
ସାରଥିକି ବୋଇଲେ ସେ ଘେନ ଏବେ ତୁହି
ଆଜ୍ଞାରେ ସାରଥି ତାକୁ ଧଇଲାକ ଯାଇ ।
ତିଳେ ହେଁ ଭୂମିରୁ ଗଦା ନ ପାରିବା ଚାଳି
ଯେବଣ ଗଦାକୁ ବହେ ନୃପ ମହାବଳୀ ।
ସହସ୍ରସିଂହର ବଳ ଧରେ ଦୁର୍ଯ୍ୟୋଧନ
ତା ଗଦା ତୋଳିବାକୁ କି ସାରଥି ଭାଜନ ।
ବୃକୋଦର ବୋଇଲେ ଯେ ଥାଉ ଗଦାବର
ବର୍ତ୍ତିଲେ ଘେନିଯାଉ ସେ ନୃପତି ଶେଖର ।
ହସିଣ ବୋଇଲେ ତହିଁ ଧର୍ମରାଜ ସୁତ
କିମ୍ପାଇଁରେ ବୃକୋଦର କହିଲୁ ଏମନ୍ତ ।
ଘେନ ଗଦାବର ବାବୁ ନ ଧରି ବିମନ
ଆଜ୍ଞାପାଇ ଘେନିଲା ସେ ଗଦା ଭୀମସେନ ।
ପଥ କଢ଼ାଇ ଆଗରେ ଚଳଇ ସାରଥି
ପାଣ୍ଡବ ପାଞ୍ଚଭାଇ ତା ପଛରେ ଚଳନ୍ତି ।
ଯେଉଁଠାରେ ପଡ଼ିଛନ୍ତି କୌରବ ସଇନ୍ୟ
ଚନ୍ଦ୍ରଧ୍ୱଜ ପ୍ରାୟେକ ସେ ଦିଶନ୍ତି ଶୋଭନ ।

ତିନିଯୋଜନକୁ ମାଡ଼ିପଡ଼ିଛନ୍ତି ବଳ
ଦେଖିଣ ସେ ଧର୍ମସୁତ ହୋଇଲେ ବିକଳ ।
ସୈନ୍ୟ ଖୋଜି ଯାଉଁ ଯାଉଁ ଦେଖିଲେ ସେ ଧାତି
ଯେଉଁଠାରେ ପଡ଼ିଛନ୍ତି ମାନଚକ୍ରବର୍ତ୍ତୀ ।
ଧଇଲେ ସେ ନୃପବର ଆପେ କୋଳ କରି
ନୟନରୁ ଅଶ୍ରୁଜଳ ଅବିଶ୍ରାନ୍ତ ଗଳି ।
ବାବୁ ମାନଗୋବିନ୍ଦ ତୁ କକ୍ଷା ଜଗଜ୍ଜେଠି
ଶରଣପଞ୍ଜର ଅଟେ ତୋର ନାମଗୋଟି ।
ଦିଗବିଜେ କରନ୍ତେରେ ଯାଉ ସୈନ୍ୟ ଘେନି
ବୋଲନ୍ତି କୁରୁସାଗର ଥାଟ ନୃପଶ୍ରେଣୀ ।
ଦଇତ୍ୟର ହସ୍ତେ ବାବୁ ମୃତ୍ୟୁଥିଲା ତୋତେ
ଚତୁରଙ୍ଗ ବଳଘେନି ପଡ଼ିଲୁତୁ ଏଥେ ।
ଭାଇବନ୍ଧୁ କୁଟୁମ୍ବ ତୋ ସବୁ ଗଲେ ନାଶ
ଭୀଷ୍ମ ଭୁରିଶ୍ରବା ଆଦି ପଡ଼ିଛନ୍ତି ପାଶ ।
ଅନେକ ରୋଦନ ତହିଁ କରନ୍ତି ନୃପବର
କେବଳ ଶୁଣୁଅଛନ୍ତି ଗଙ୍ଗାଙ୍କ କୁମର ।
ଇଚ୍ଛାମୃତ୍ୟୁ ତାହାଙ୍କର ଗଙ୍ଗା ଛନ୍ତି କହି
ତେଣୁ ସେ ରକ୍ଷା ପାଇଲେ ରଣେ ଛନ୍ତି ଶୋଇ ।
ଆଉ ଯେତେ ଯୋଦ୍ଧା ତହିଁ ସବୁରି ଜୀବନ
ଦଇତ୍ୟ ପ୍ରହାରେ ତହିଁ ସର୍ବେ ଅଚେତନ ।
ତେରଦିନ ହୋଇଲାଣି ପଡ଼ିଛନ୍ତି ମହୀ
କାହାର ଶରୀରେ ତିଳେ ଚେତା କାହିଁ ନାହିଁ ।
ବିଚାର କରନ୍ତି ମନ ମଧ୍ୟରେ ଅର୍ଜୁନ
କେମନ୍ତେ ବଞ୍ଚିବେ ଏହି କଉରବ ସୈନ୍ୟ ।
ଏମନ୍ତ ବିଚାର ତହିଁ କରଇ ଫାଲଗୁନି
ପୂର୍ବେ ମୁଁ ଖାଣ୍ଡବ ବନ ଦହିଥିଲି ପୁଣି ।
ମୃତ୍ୟୁ ସଞ୍ଜିବନୀ ବୃକ୍ଷମାନ ତହିଁ ଥିଲା
ଅଗ୍ନି ଦହନ୍ତେ ସମସ୍ତ ବିନାଶ ହୋଇଲା ।
ମୋତେ ମାଗିଣ ଅନଳ ତୋଟା କଲେ ହତ
ଲୁଦୁବୁଦୁ ବ୍ୟାଧି ନାଶକଲେ ସ୍ୱାହାକାନ୍ତ ।
ବନ ଦହନ ଅନ୍ତେ ସେ ବିଭୂତିଏ ଘେନି
ମୋହର କରରେ ଦେଲେ ସୁପ୍ରସନ୍ନେ ବହ୍ନି ।
ବୋଇଲେ ବାବୁ ଆମ୍ଭଙ୍କୁ ତୁହି ରକ୍ଷାକଲୁ
ତିନିଯୁଗର ବ୍ୟାଧିରୁ ଆମ୍ଭେ ଭଲହେଲୁ ।
ତୁ ଏବେ ଏ ବିଭୂତିକୁ ଯତ୍ନେ ଥୋଇଥିବୁ
ମୃତଜୀବଙ୍କ ଉପରେ ନେଇ ପକାଇବୁ ।
ଗିରିଗୁହା କନ୍ଦରରେ ମରିଥିବେ ଯେତେ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ ।
ଏମନ୍ତ ପଢ଼ି ବିଭୂତି ନେଇ ପକାଇବୁ
ସମସ୍ତେ ବଞ୍ଚିବେ ତହିଁ ପ୍ରତ୍ୟକ୍ଷେ ଦେଖିବୁ ।

ଏମନ୍ତ ବୋଲି ସେ ଅଗ୍ନି ଦେଲେକ ବିଭୂତି
ତତ୍‌କ୍ଷଣ ଅନ୍ତର୍ଦ୍ଧାନେ ଗଲେ ସ୍ୱାହାପତି ।
ଘେନିଣ ସେଠାରୁ ମୁହିଁ ହୁଅନ୍ତେ ବାହାର
ଇନ୍ଦ୍ର ହିଁ ଆସି କହିଲେ ଆମର ଛାମୁର ।
ଅଗ୍ନିକି ଦେଲୁ ଖାଣ୍ଡବ ନାମେ ମୋର ବନ
ଏବେ ମୁଁ ଯାହା କହଇ ଶୁଣରେ ନନ୍ଦନ ।
ତିନିଯୁଗ ହେଲା ବୃକ୍ଷ ମାଗି ନ ପାଇଲା
ତୋତେ ମାଗି ଏବେ ତୋଟାଯାକ ସେ ଭକ୍ଷିଲା ।
ଅମର ମହାଔଷଧିମାନ ଥିଲେ ତହିଁ
ସହସ୍ର ଉନବିଂଶତି ଯୋଜନ ଅଟଇ ।
ଜୀବଜନ୍ତୁ ଆଦିଥିଲେ ସେ ତୋଟାରେ ଯେତେ
ସବୁ ସେ ଖାଇଲା ଲୋଭକରି କୋପଚିତ୍ତେ ।
ତୋହ ଯୋଗୁଁ ବାବୁ ମୋର ରାଜ୍ୟ ହେଲା ହତ
ହତ୍ୟାର କାରଣତୁ ତ ହେଲୁ ବୀରପାର୍ଥ ।
ଏମନ୍ତ କରି ପୁତ୍ର ମୁଁ ଅରଜିଲି ତୋତେ
ଲକ୍ଷେ ବରଷ ଆରୋପ କଲି ଯହିଁ ଯେତେ ।
ତୁ ତାହା ତିନିବରଷ ମଧ୍ୟେ ହତ କଲୁ
ସାକ୍ଷାତରେ ପୁତ୍ର ତୁହି ଏଡ଼େ କଷ୍ଟ ଦେଲୁ ।
ଏବେ ଯେବେ ତୋଟାଗୋଟି ଦେଇପାରୁ କରି
ତେବେ ସିନା ସବୁ ଧର୍ମ ରହିବ ତୋହରି ।
ଜୀଇଁବା ବଚନେ ମନ୍ତ୍ର ସୁମରିଲି ମୁହିଁ
ଅଗ୍ନିଙ୍କର କଥା ମନ ମଧ୍ୟର ଚିତୋଇ ।
ମନେ ବିଚାରିଲି ଅଗ୍ନି କହିଛନ୍ତି ମୋତେ
ବଞ୍ଚନ୍ତି ମଲା ପ୍ରାଣୀଏ ଭସ୍ମକୁ ପକାନ୍ତେ ।
ପରୀକ୍ଷା କରିବା ଆମ୍ଭେ ଏହିଠାରେ ଜାଣ
ବୋଇଲି ଯେ ସୁଖେ ତୁମ୍ଭେ ଯାଅ ସୁମରଣ ।
କାଲି ଦେଖିବ ଭୋ ପିତା ଘେନି ସୁରଗଣ
ଶୁଣିଣ ସେ ଆଖଣ୍ଡଳ ହେଲେ ତୋଷମନ ।
ପିତାଙ୍କୁ ପ୍ରବୋଧି ତହୁଁ ବାହାରିଲି ମୁହିଁ
ତୋଟାର ମଧ୍ୟେ ପ୍ରବେଶ ହୋଇଲଇଁ ଯାଇ ।
ତୁଣୀରରୁ କାଢ଼ିଲି ସେ ଜୀବନ୍ୟାସ ଶର
ଭସ୍ମ ବୋଳିଲି ନେଇଣ ନାରାଚ ମୁନର ।
ମନ୍ତ୍ର ସୁମରି ବସାଇ ନାରାଚକୁ ଗୁଣେ
ବୁଝାଇ କହିଲି ତାକୁ ତିଆରି ଏସନେ ।
ଭୋ ମନ୍ତ୍ରରାଜ ତୁ ଯାଇ ତୋଟାରେ ପଡ଼ିବୁ
ଯହିଁ ଯେତେ ବୃକ୍ଷ ତହିଁ ସବୁ ଲଗାଇବୁ ।
ଗତ ଅଧିକ ହୋଇବ ପୁଣି ଗୁଣ ଶତେ
ଦେବତାମାନେ ଦେଖିବେ ଆସି ଦୃଷ୍ଟପଥେ ।
ଏତେ ବୋଲିଣ କରରୁ ଛାଡ଼ନ୍ତେ ମୁଁ ଶର
ଚଳିଲା ନାରାଚଗୋଟି ଘୋଟିଲା ଶିଖର ।

ସବୁଠାରୁ ଲାଗିଲା ସେ କିଛି ନ ଛାଡ଼ିଲା
ଗତୁ ଶତଗୁଣେ ତୋଟାଗୋଟି ଉପୁଜିଲା ।
ଜୀବଜନ୍ତୁ ବୃକ୍ଷଆଦି ଯହିଁ ଯେତେ ଥିଲେ
ବିଭୂତି ପଡ଼ନ୍ତେ ତହିଁ ସର୍ବେ ଉପୁଜିଲେ ।
ଉପୁଜାଇ ସେ ନାରାଚ ତୂଣୀରେ ପ୍ରବେଶ
ପରୀକ୍ଷା କରିଣ ମୁହିଁ ହୋଇଲି ହରଷ ।
ସ୍ୱର୍ଗକୁ ନ ଯାଇ ତହୁଁ ଗଲି ବନଘୋର
ନିଶ୍ଚିନ୍ତେ ଭ୍ରମିଲି ମୁହିଁ ଅଟବୀ ମଣିର ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ମନେ ଯାହା ସୁମରିଲେ ବାସବ ସନ୍ତତି ।
ସେହି ଜୀବନ୍ୟାସ ଶର ତୂଣୀରୁ କାଢ଼ିଲେ
ସୋଦର ନିମନ୍ତେ ସେହି ନାରାଚ ଘେନିଲେ ।
ଧନୁରେ ଗୁଣ ଦେଇଣ ତହିଁ ବସାଇଲେ
ନାରାଚର କର୍ଣ୍ଣେ ସେହି ମନ୍ତ୍ରକୁ କହିଲେ ।
ବୋଇଲେକ ହାତୀ ରଥୀ ଅଶ୍ବ ହିଁ ପଦାତି
ଯେତେ ବାଦ୍ୟକାର ମରି ଯହିଁ ପଡ଼ିଛନ୍ତି ।
ସମସ୍ତେ ବର୍ତ୍ତିବେ ତୋର ଲାଗିକରି ପୁନ
ଏତେକ କହି ନାରାଚ ବିନ୍ଧିଲେ ଅର୍ଜୁନ ।
ମୁହୂର୍ତ୍ତେ ମାତ୍ର ଲାଗିଲେ ଯାଇ ସବୁଠାରେ
ଲେଉଟି ସେ ଶସ୍ତ୍ର ଆସି ପଶିଲା ତୂଣୀରେ ।
ନିଦ୍ରାରୁ ଉଠିବା ପ୍ରାୟେ ଶୋଇଥିବା ପ୍ରାଣୀ
ଉଠିଲେକ କଉରବେ ତେସନକ ଜାଣି ।
ପ୍ରତିଜ୍ଞା କରି ଡାକନ୍ତି ବେଗେ ମାର ମାର
ଉଚ୍ଚେ ଡାକନ୍ତି କେଣେ ତୁ ଗଲୁରେ ଅସୁର ।
ହସିଣ କହନ୍ତି ଗଙ୍ଗାଦେବୀଙ୍କର ସୁତ
ତୁମ୍ଭର କି ଭେଟ ଆଉ ହୋଇବ ଦଇତ ।
ସର୍ବେ ଏକଗୁଣ୍ଠ ହୋଇ ତହୁଁ ଗଲେ ଚଳି
ନୃପତି ଛାମୁରେ ଯାଇ ଭୀଷ୍ମ ଦ୍ରୋଣ ମିଳି ।
ଏମନ୍ତବେଳେ ପାଣ୍ଡବ ବୀର ପାଞ୍ଚଭାଇ
ଭୀଷ୍ମ ଭୁରିଶ୍ରବା ପାଦେ ପ୍ରଣିପାତ ହୋଇ ।
ଦ୍ରୋଣ ଶଲ୍ୟ ଅଶ୍ୱଥାମା ବାହ୍ଲିକ ଯେ କର୍ଣ୍ଣ
ସୋମଦତ୍ତ କୃତବର୍ମା ନୃପ ଦୁର୍ଯ୍ୟୋଧନ ।
ଯାହାଙ୍କୁ ସେହୁ ପ୍ରଣାମ କଲେ ଯେଝାମତେ
ଏକା ଦୁର୍ଯ୍ୟୋଧନ ଛାଡ଼ି ଆବର ହିଁ ଯେତେ ।
ଚାରିଭାଇ ଦୁର୍ଯ୍ୟୋଧନ ପାଦେ ପ୍ରଣମିଲେ
ଶିର କରଦେଇ ତାଙ୍କ ଆଗେ ଉଭାହେଲେ ।
ପଚାରଇ ନରପତି ଥିଲ ତୁମ୍ଭେ କାହିଁ
ଏଥକୁ ଅଇଲ ତୁମ୍ଭେ କିମର୍ଥେ ବୋଲଇ ।
ବୃକୋଦର ବୋଇଲା ଏ ସାରଥିକୁ ପୁଚ୍ଛ
କହି ତୁନି ହୋଇଲା ସେ ପବନର ବତ୍ସ ।

ଏହାଶୁଣି ସାରଥିକି ଚାହିଁଲା ସେ ରାୟେ
କହ ହୋ ସାରଥି ଯାହା ଏ ମାରୁତି କହେ ।
ଶୁଣି ସାରଥି ଯୋଡ଼ିଲା ଶିରେଦେଇ କର
ଅବଧାନ କରି ଶୁଣ ନୃପତି ଈଶ୍ୱର ।
ଯେଉଁ ଅସୁରକୁ ବାଟେ ଭେଟିଲ ନୃପତି
ଘୋର ଯୁଦ୍ଧେ ସମସ୍ତଙ୍କୁ ମାରଇ ସେ ଧାତି ।
ଜାଣିଥିବ ଯେହ୍ନେ ଯୁଦ୍ଧ ହେଲା ନରନାହା
ସଂଗ୍ରାମରେ ପଡ଼ିଲୁ ତୁ ହୋଇ ନିରୁତ୍ସାହା ।
ଗୋଟିଏ ଯେ ନ ବର୍ତ୍ତିଲ ପଡ଼ିଲ ସମସ୍ତ
ଜୟ କରି ବାହୁଡ଼ିଲା ଏଠାରୁ ଦଇତ ।
ମଣିମୟ ମୁକୁଟ ଯେ ହାର ରତ୍ନାବଳୀ
ଏହାକୁ ଘେନି ଅସୁର ବେଗେ ଗଲା ଚଳି ।
ଦେଖିଣ ତରସ୍ତ ଦେବ ହୋଇଲଇଁ ମୁହିଁ
ବୋଇଲି ମୁଁ ହସ୍ତିନାରେ କି କହିବି ଯାଇ ।
ରଥଚଢ଼ି ତହୁଁ ମୁହିଁ କଲଇଁ ଗମନ
ପଥରେ ଭେଟିଲି ଦେବ ମାଦ୍ରୀର ନନ୍ଦନ ।
ଚିନ୍ତାଭରେ ମୁଁ ଯେ ତାଙ୍କୁ ନ ପାରିଲି ଜାଣି
ମୋତେ ଯେ ନକୁଳବୀର ତତକ୍ଷଣେ ଚିହ୍ନି ।
ପଚାରିଲେ କିହୋ ତୁହି ମଳୟ ସାରଥି
କେଜାଣି ତୁ ଯାଇଥିଲୁ ଶୂନ୍ୟରଥୀ ସାଥି ।
ତେତେବେଳେ ଚିହ୍ନିଲି ଏ ଅଟନ୍ତି ନକୁଳ
ରଥରୁ ମୁଁ ଡେଇଁଯାଇ ପଡ଼ି ପାଦତଳ ।
ସଂଗ୍ରାମର ବାରତା ଯେ କହିଲି ସମସ୍ତ
ଶୁଣିଣ କୋପକଲେ ସେ ମାଦ୍ରୀଦେବୀ ସୁତ ।
ମୋତେ ବୋଇଲେ କଢ଼ାଅ ବାଟ ବେଗେ ତୁହି
କେବଣ ବାଟେ ଦାନବ ଯାଉଅଛି କାହିଁ ।
ରଥଛାଡ଼ି ଦେବ ମୁହିଁ କଢ଼ାଇଲି ପଥ
ଆରଡ଼କ ପରବତେ ଭେଟିଲେ ଦଇତ୍ୟ ।
ଯୋଜନ ଦୂରୁ ଦିଶିଲା ଦଇତ୍ୟର ଦେହ
ରହରହ ବୋଲି ଡାକଦେଲେ ମାଦ୍ରୀପୁଅ ।
ରହରହ ବୋଲି ବୀରେ ଉଚ୍ଚେ ଡାକଦେଇ
ପାଲଟି ରହିଲା ସେହି ଦୈତ୍ୟକୁଳ ସାଇଁ ।
ନକୁଳ ଭେଟ ହୋଇଲା ଅସୁର ସଙ୍ଗତେ
ପର୍ବତ ନିକଟେ ଛୋଟ ପର୍ବତ ଯେମନ୍ତେ ।
କେତେ ଯୁଦ୍ଧ ହେଲା ତହିଁ ଦେବ ଅପ୍ରମିତ
ବଚନରେ କହିବାକୁ ନୁହଇ ସମର୍ଥ ।
ତେରଦିନଯାଏ ତହିଁ ରଣ ହେଲା ଘୋର
କେହି କାହାର ନୋହିଲା ତହିଁ ହାରଜିଣ ।
ଜୟ ନ ଦେଖି ବାରୁଣାବନ୍ତେ ଗଲି ଧାଇଁ
ଶୁଣି ଧାଇଁଲେ ଠାକୁରେ ଘେନି ତିନିଭାଇ ।

ମୁହୂର୍ତ୍ତକେ ସେ ଠାବରେ ପ୍ରବେଶିଲେ ଯାଇ
ଯୁଦ୍ଧ ଦେଖି ତା କତିକି ନ ଗଲେ ଯେ କେହି ।
ମହାଘୋର ଯୁଦ୍ଧ ପୁଣି ଦେଖନ୍ତି ତାଙ୍କର
ନମରଇ ଦାନବ ଯେ ଅଟଇ ଅମର ।
ସହଦେବ ମନ୍ତ୍ରୀକି ଯେ ଚାହିଁ ବିଚାରିଲେ
ଦଇତ୍ୟର ମୃତ୍ୟୁ ଏଥେ ଅଛି କି ବୋଇଲେ ।
ମନ୍ତ୍ରୀବର କହନ୍ତେ ଯେ ତାହାର ବ୍ୟବସ୍ଥା
ଯେଉଁରୂପେ ଦାନବର ମୃତ୍ୟୁଗତ ପନ୍ଥା ।
ତାର ମୃତ୍ୟୁଭେଦ ଜାଣି ସେ ନକୁଳବୀର
ମୁଥ ମାରନ୍ତେ ଦୈତ୍ୟର କମ୍ପିଲା ଶରୀର ।
ଉତ୍ତାନ କରି କଟିରେ ମାଡ଼ିବସ ତାର
ବାମ ପାଦରେ କେଶକୁ ମାଡ଼ିଲେ ଆବର ।
ଗ୍ରୀବା ବାମପାଦ ତାର ଓଟାରି ଆଣିଲେ
ମୁଖେ ବାମପାଦେ କାଣି ଆଙ୍ଗୁଳି ଭରିଲେ ।
ତତପରେ ଅସୁରର ପ୍ରାଣ ଘେନିଗଲେ
ସ୍ୱର୍ଗପୁରେ ଦେବତାଏ ଜୟ ଜୟ କଲେ ।
ତୁଣ୍ଡେ ଅଙ୍ଗୁଳି ପଶନ୍ତେ ଛାଡ଼ିଗଲା ପ୍ରାଣ
ମେରୁ ମନ୍ଦର ଅଟଇ ସେହି ବଡ଼ ଟାଣ ।
ଦଇତର ମରଣକୁ ଦେବତାଏ ଚାହିଁ
ପୁଷ୍ପବୃଷ୍ଟି କଲେ ଶିରେ ଶଚିଦେବୀ ସାଇଁ ।
ଦଇତ୍ୟ ମାରି ମୁକୁଟ କୁଣ୍ଡଳ ଆଣିଲେ
ରତ୍ନାବଳୀ ଗଦା ତୋର ପର୍ବତେ ପାଇଲେ ।
ତୁମ୍ଭର ମରଣବାଣୀ ଶୁଣିଲେକ ଯହୁଁ
ଅନେକ ରୋଦନ କଲେ ଠାକୁର ଯେ ତହୁଁ ।
ଶୋକଭରେ ହୋଇ ତହୁଁ ଠାକୁରେ ଅଇଲେ
ସକଳ ସଇନ୍ୟ ପଡ଼ିଥିବାର ଦେଖିଲେ ।
ଭାଇ ଭାଇ ବୋଲି ତଳେ ପଡ଼ିଲେକ ଢଳି
ସହଦେବ ମନ୍ତ୍ରୀ ତାଙ୍କୁ ଧଇଲେକ ଟେକି ।
ଅର୍ଜ୍ଜୁନେ ଚାହିଁ ବହୁତ ରୋଦନ ସେ କଲେ
ଦେଖ ତୋହର ସୋଦରମାନେ ନାଶଗଲେ ।
ଏହାଙ୍କ ନିଧନ ଯେବେ ଶୁଣେ ଧୃତରାଷ୍ଟ୍ର
କେ ସହି ପାରିବଟିକି ତାହାଙ୍କ ଅରିଷ୍ଟ ।
ତାହାଙ୍କ ବିକଳ ଦେଖି ମୁହିଁ ନ ବର୍ତ୍ତିବି
ଏହାଙ୍କୁ ଛାଡ଼ି କେମନ୍ତେ ଘରକୁ ମୁଁ ଯିବି ।
ସୋଦର ଭାଇ ମୋହର ଇଷ୍ଟବନ୍ଧୁ ମଲେ
ଏହାଙ୍କ ନିଧନେ ମୁହିଁ ବର୍ତ୍ତିବି କି ଭଲେ ।
ଏତେ ବୋଲି ଦେବ ପଡ଼ିଗଲେ ମୂର୍ଚ୍ଛାଯାଇ
ଅର୍ଜ୍ଜୁନକୁ କହିଲେ ସେ ଅନେକ ବିନୟୀ ।
ଅର୍ଜ୍ଜୁନ ବୋଇଲେ ଦଣ୍ଡେ ଧଇର୍ଯ୍ୟ ଧରିବା
ଆମ୍ଭର ଯେ ଏକ ବୁଦ୍ଧି ଅଛଇ କହିବା ।

ଏତେ ବୋଲି ଦେବ ଘେନି ଅମର ଔଷଧି
ଖାଣ୍ଡବ ଦହନେ ଅଗ୍ନି ଦେଇଥିଲେ ସିଦ୍ଧି ।
ସେ ଭସ୍ମ ଅର୍ଜ୍ଜୁନ ଶରମୁନେ ଲଗାଇଲେ
ମନ୍ତ୍ର ପଢ଼ିଣ ନାରାଚ ଗୋଟି ଛାଡ଼ିଦେଲେ ।
ଯେତେ ହାତୀ ରଥୀ ଅଶ୍ୱ ନୃପତି ପଦାତି
ସୈନ୍ୟ ସେନାପତି ଅଙ୍ଗେ ସବୁରି ଲଗାନ୍ତି ।
ସେ ବିଭୂତି ଲାଗି ତୁମ୍ଭେ ପାଇଲ ଜୀବନ
ଏ କଥା ହି ସତ୍ୟ ଦେବ ଶୁଣ ସାବଧାନ ।
ଶୁଣିଣ ହରଷ ହେଲେ ଭୀଷ୍ମ ଅଶ୍ୱଥାମା
ଦ୍ରୋଣ କୃପା ଭୁରିଶ୍ରବା ଶଲ୍ୟ କୃତବର୍ମା ।
ଭୀଷ୍ମ ଦ୍ରୋଣ ବୋଲନ୍ତିରେ ସାଧୁ ଧନଞ୍ଜୟେ
ଏ ମରଣୁଁ ଉବୁରିଲୁ ତୋହର ଉପାୟେ ।
ସାଧୁ ପାଣ୍ଡବେ ବୋଲି ଉପୁଜିଲା ଧ୍ୱନି
ସମସ୍ତେ ବୋଇଲେ ଯହୁଁ ଧନ୍ୟ ଧନ୍ୟ ବାଣୀ ।
ଶ୍ୱେତହସ୍ତୀ ଉପରେ ଯେ ବିଜେ ଧର୍ମସୁତ
ଆବର ତାହାଙ୍କ ସଙ୍ଗେ ଘେନି ଚାରିଭ୍ରାତ ।
ଭୀଷ୍ମ କର୍ଣ୍ଣ ଆଦିଙ୍କୁ ଯେ କରି ସମ୍ବୋଧନ
ଆପଣାର ଭୁବନକୁ ବିଜେ ଧର୍ମନାନ ।
ଦୁର୍ଯ୍ୟୋଧନ ନିଜ ରହୁବରେ ଆରୋହିଲା
ଯମଦଣ୍ଡ ଘେନି ତହୁଁ ରାଜା ବିଜେ କଲା ।
ହସ୍ତିନା ନଗର ମଧ୍ୟେ ହୋଇଲାକ ଯାଇ
ସଞ୍ଜୟ ଯେ ଧୃତରାଷ୍ଟ୍ର ରାଜା ଆଗେ କହି ।
ଶୁଣ ସାବଧାନେ ତୁହୋ ନୃପତି ଶିଖର
ଦିଗବିଜେ କରିଗଲେ ତୁମ୍ଭର କୁମର ।
ସଙ୍ଗତରେ ଭୀଷ୍ମ ଦ୍ରୋଣ ଆଦି ଭାଇମାନେ
ଅନେକ ସମ୍ଭାର ସାଜି ସମଦଣ୍ଡ ସୈନ୍ୟେ ।
କେତେ ହେଁ ଦୂର ଗମନ କରି ସର୍ବେ ଗଲେ
ବାଟରେ ଯାଉଁ ଦନୁଜ ଗୋଟିଏ ଦେଖିଲେ ।
ମହାପ୍ରତାପୀ ଅଟଇ ଦୈତ୍ୟକୁଳ ପତି
ଗୋଳଯୁଦ୍ଧ କରି ସେହୁ ମାଇଲା ସବୁନ୍ତି ।
ସାରଥି କହନ୍ତେ ବୀର ନକୁଳ ଯେ ଗଲା
ଯୁଦ୍ଧକ୍ଷେତ୍ରେ ଯାଇ ବୀର ସମସ୍ତ ଦେଖିଲା ।
ପୁଣି ସାରଥି କହନ୍ତେ ଶୁଣ ଧର୍ମସୁତ
ତିନିଭାଇ ସଙ୍ଗେ ଘେନି ହେଲେ ଉପଗତ ।
ସହଦେବଙ୍କୁ ପଚାରି ମୃତ୍ୟୁ ତାର ଜାଣି
ମାଇଲା ତାକୁ ନକୁଳ ବୀର ଚୂଡ଼ାମଣି ।
ତହିଁ ଆସି ବାଟେ ଦୁର୍ଯ୍ୟୋଧନକୁ ଦେଖିଲେ
ଯୁଧିଷ୍ଠି ବ୍ୟାକୁଳ ହୋଇ ବହୁଶୋକ କଲେ ।
ଅର୍ଜ୍ଜୁନ ସେ ଜୀବନ୍ୟାସ ଶରକୁ ପେଶନ୍ତେ
ସମସ୍ତେ ବଞ୍ଚିଲେ ପୂର୍ବେ ବଳଥିଲେ ଯେତେ ।

ଏବେ ଆସି ହସ୍ତିନାରେ ହୋଇଲେ ପ୍ରବେଶ
ଯୁଧିଷ୍ଠି ବାରୁଣା ଗଲେ ତାଙ୍କ ନିଜବାସ ।
ଶୁଣି ରାଜା ଧୃତରାଷ୍ଟ୍ର ବହୁତ ବିସ୍ମୟେ ।
ସବୁଠାରେ ରଖନ୍ତି ତ ପଣ୍ଡୁ ପାଞ୍ଚପୋଏ ।
ଏଥୁଅନନ୍ତରେ ଯାଇ ଦୁର୍ଯ୍ୟୋଧନ ବୀର
ପ୍ରବେଶ ହୋଇଲେ ଆସି ଆପଣା ନବର ।
ଯେ ବିଧିରେ ନିତ୍ୟକର୍ମ ସାରିଣ ନୃପତି
ଆସ୍ଥାନ ଉପରେ ଆସି ବିଜେକଲା ଧାତି ।
ଭୀଷ୍ମ କର୍ଣ୍ଣ ଭୂରିଶ୍ରବା ବାହ୍ଲୀକ ବିକର୍ଣ୍ଣ
ଦ୍ରୋଣ କୃପ ଅଶ୍ୱଥାମା ବସିଲେ ଆସ୍ଥାନ ।
ସମାରୋହରେ ଆସ୍ଥାନ କରି କୁରୁସାଇଁ
ସଞ୍ଜୟ ଯେ ଧୃତରାଷ୍ଟ୍ର ମିଳିଲେକ ଯାଇ ।
ଦେଖି ତାଙ୍କୁ ଯୋଦ୍ଧାମାନେ ଓଳଗିଲେ ଧାତି
ଶତେକ ପୁତ୍ର ଆସିଣ ଦର୍ଶନ କରନ୍ତି ।
ଭୀଷ୍ମ ଯେ କହିଲେ ତହିଁ ସକଳ ବୃତ୍ତାନ୍ତ
ଶୁଣି ସାନନ୍ଦ ହେଲେ ରାଜା କୁରୁନାଥ ।
ଏଥୁଅନ୍ତେ ସେ ଦିନର ସଭା ମଉଳିଲା
ଦୁର୍ଯ୍ୟୋଧନ ସେ ଭିତର ପୁରେ ବିଜେ କଲା ।
ଯେ ଯାହାର ପୁରେ ଯାଇ ହୋଇଲେ ପ୍ରବେଶ
ଶ୍ରୀଜଗନ୍ନାଥ ଚରଣ ଶ୍ରୀଶାରଳା ଦାସ ।
ଜୟ ଜୟ ଜଗନ୍ନାଥ ଜୟ ଦେବ ହରି
ଶ୍ରୀଜଗନ୍ନାଥ ସୁମରି ଥରେ ଯିବେ ତରି ।
ଜଗନ୍ନାଥ ବନ୍ଧୁ ମୋର ଜଗନ୍ନାଥ ପିତା
ଶ୍ରୀ ଜଗନ୍ନାଥ ମୋହର ଯେ ଇଷ୍ଟଦେବତା ।
ଶ୍ରୀଜଗନ୍ନାଥ ସୁମର ଜୀବଥିବାଯାଏ
ଶାରଳା ଦାସ ଶରଣ ଜଗନ୍ନାଥ ପାଏ ।
ଝଙ୍କଡ଼ପୁର ବାସିନୀ ଶ୍ରୀଶାରଳା ଚଣ୍ଡୀ
ଶ୍ରୀମୁଖ ତୋହର ଶୋଭା ସିନ୍ଦୂରରେ ମଣ୍ଡି ।
ଦ୍ୱାପରଯୁଗେ ହିଙ୍ଗୁଳା ନାମେ ଉତପତ୍ତି
ସେ ରୂପକୁ ଚିନ୍ତାକଲେ ଯୁଧିଷ୍ଠି ନୃପତି ।
କଳିଯୁଗେ ମାଗୋ ତୋର ଦେଖାଇଲୁ କାୟେ
ଶ୍ରୀ ଶାରଳାଚଣ୍ଡୀ ନାମ ବହୁ ମହାମାୟେ ।
ଜୟଦେବୀ ତୁ ଅନାଦି ଅଟୁ ସିଦ୍ଧକାୟେ
କଟକ ତେତିଶକୋଟି ନେବେ ତୋର ପାୟେ ।
ମାଗୋ ଏହା ଲେଖିବାକୁ ଭାବଇ ମୁଁ ଚିତ୍ତେ
ଶାରଳା ଦେବୀ ପ୍ରସନ୍ନ ହୁଅ ବାରେ ମୋତେ ।
ଶ୍ରୀ ଅନାଦି ଦେବୀର ମୁଁ ଅଟଇ ଚରଣେ
ଯେ ଗ୍ରନ୍ଥ ଶୁଣିଲେ ମୋକ୍ଷ ହୋଇଯିବେ ଜନେ ।
ଶ୍ରୀସିଦ୍ଧ ଶାରଳା ଦେବୀ ଚରଣେ ଦଇନି
ଯମଦଣ୍ଡ ଖଣ୍ଡିବାକୁ ନମେ ଶୂଦ୍ରମୁନି ।

ଜୟ ତୁ ସଦାଶିବ ହେ ପରମ ଈଶ୍ୱର
ତୁହିସିନା ଏ ସକଳ ଜଗତ ଠାକୁର ।
ଅର୍ଦ୍ଧାଙ୍ଗେ ଅମ୍ବିକା ତୋତେ ଶୋହେ ତ୍ରିଲୋଚନ
ଅର୍ଦ୍ଧଚନ୍ଦ୍ର ମଉଳି ତୁ ଦ୍ୱୀତି ନିରଞ୍ଜନ ।
ବୃଷଭ ପିଠିରେ ଦେବ ବିଜୟ ପ୍ରତ୍ୟକ୍ଷେ
ନବଲକ୍ଷ ଡମ୍ବରୁ ତୋ ବାଜେ ଅନ୍ତରୀକ୍ଷେ ।
କଣ୍ଠରେ ଗରଳ ଭସ୍ମ ବିଲେପନ କାୟ
କଣ୍ଠ କୁଷ୍ଠ ଦାରିଦ୍ର୍ୟ ଯା ଦରଶନେ କ୍ଷୟ ।
ଅନଳ ନୟନେ ଯାର ବାମଦେବ ଜାଳି
ତ୍ରିବେଣୀ ସଙ୍ଗମେ ଗଙ୍ଗା ଜଟାଜୁଟେ ଖେଳି ।
ଶ୍ରୀ ବିଶ୍ୱନାଥ ଚରଣେ ଅଟଇ ମୁଁ ଦାସ
ଶତସହସ୍ର ପ୍ରଣାମ ଶ୍ରୀ ଶାରଳା ଦାସ ।

-0-

## ନାରକାସୁର ବଧ ଓ ପାରିଜାତ ହରଣ

ବୈବସ୍ୱତ ମନୁ କଲେ ଅଗସ୍ତିଙ୍କୁ ପୂଜା
ଧୂପ ଦୀପ ଦେଇ ପୂଜାକଲେ ମହାରାଜା ।
ଆଦିପର୍ବ କହିଲେ ଯେ ଦିବ୍ୟରସ ବାଣୀ
ତୃପତ ହୋଇଲା ମନ ତବ ମୁଖୁ ଶୁଣି ।
କୁଣ୍ଡଳୀ ବଧ ଅନ୍ତେ କି ଚରିତ ହୋଇବ
ତହିଁର ବିଧାନ ମୋତେ ବୁଝାଇ କହିବ ।
ଅଗସ୍ତି କହନ୍ତି ତୁମ୍ଭେ ବଡ଼ ବିଜ୍ଞବନ୍ତ
ଶୁଣ ସାବଧାନେ ମଧ୍ୟ ପର୍ବର ଚରିତ ।
ନାରକାସୁରକୁ ବଧ କରି ନାରାୟଣ
ତହୁଁ ହରିଲେ ସେ ପାରିଜାତ ପୁଷ୍ପ ପୁଣ ।
ତହିଁର ପ୍ରସ୍ତାବ ତୋତେ କହିବି ନୃପତି
ହେତୁକରି ଶୁଣ ହେଲା ଯେସନେକ ରୀତି ।
ନାରକା ନାମରେ ଥିଲା ଏକଇ ଦଇତ୍ୟ
ସେ ଦୈତ୍ୟର ବଳବୀର୍ଯ୍ୟ ଅଟେ ଅପ୍ରମିତ ।
ସ୍ୱର୍ଗେ ପଶି ସବୁ ଭଗ୍ନ କରଇ ଅସୁର
ଡରିଲେ ତା ତେଜ ଦେଖି ଦେବ ଆଖଣ୍ଡଳ ।
ସମସ୍ତ ଦେବଙ୍କୁ ମେଳକରି ପୁରନ୍ଦର
ନିଶାକାଳେ ମିଳିଲା ସେ ଦ୍ୱାରକା ନଗର ।
ସତ୍ୟଭାମାଙ୍କର ପୁରେ ବିଜେ ଭଗବାନ
ଯାଇଣ ଇନ୍ଦ୍ର ଦେବତା କଲା ଦରଶନ ।
ଶ୍ରୀଚରଣେ ନିଉଛାଳି ଶିରେ ଦେଇ କର
ନମସ୍ତେ ଜଗତ ବନ୍ଧୁଜ ଜଗତ ସୋଦର ।
ନମସ୍ତେ ଶ୍ରୀକୃଷ୍ଣ ରୂପ ପୃଥ୍ୱୀଭାରା ହର
ଅସୁର ନାଶନେ ଦେବ ତୋର ଅବତାର ।

କଂସ କେଶୀ ନାଶକଲେ ଅଷ୍ଟମଲ୍ଲ ମୂଳେ
ପୃଥିବୀର ଭାରା ହର ତୁମ୍ଭେ ଭୁଜବଳେ ।
ଆମ୍ଭେ ଦେବଗଣ ଏବେ ଶରଣ ତୋହର
ଦୁଃଖ ଦିଅଇ ଆମ୍ଭଙ୍କୁ ନାରକା ଅସୁର ।
ସକଳ ଦେବତା ମିଳି ଏକମୁଖ ହୋଇ
ରୋଦନ କରନ୍ତି ସର୍ବେ ପ୍ରଭୁ ମୁଖ ଚାହିଁ ।
ପୁଣି ପଚାରନ୍ତି ତାଙ୍କୁ କମଳନୟନ
ଦେବତାଏ ଶୋକକର କେବଣ କାରଣ ।
ସେ ଅସୁର ଯେ କାହାର ଅଂଶେ ଜାତ ହୋଇ
କେଡ଼େ ବଳବନ୍ତ ସେହି ଗରିଷ୍ଠ ଅଟଇ ।
କେଉଁ ଦେଶେ ଅଟଇ ଯେ ତାର ବାସସ୍ଥାନ
କେତେକ ବଳ ଆବର କେତେ ତାର ସୈନ୍ୟ ।
ଶୁଣି ପୁରନ୍ଦର କହେ ଯୋଡ଼ି ବେନିକର
ଅବଧାନ ହେଉ ଦେବ ବ୍ରହ୍ମାଣ୍ଡ ଈଶ୍ୱର ।
ସତ୍ୟଯୁଗରେ ବକାରି ନାମେ ସମ୍ବତ୍ସର
ଚଇତ୍ର ଶୁକ୍ଳ ଅଷ୍ଟମୀ ତିଥି ଗୁରୁବାର ।
ସେଦିନ ସ୍ୱର୍ଗ ଗର୍ନ୍ଧବୀ ମେନକା ଅପସରୀ
ଗଣ୍ଡୁକୀ ନଦୀକି ସେହୁ ଗଲା ସ୍ନାନକରି ।
ବିସ୍ଫୋଟ ନାମେକ ଥିଲା ଏକ ମହାଋଷି
ତପ କରୁଥିଲେ ସେହି ନଦୀତୀରେ ବସି ।
ଅପସରୀ ତାର ସ୍ନାନ ସାରିଲା ବହନ
ସଙ୍ଗତରେ ଥିଲା ତାର ସହଚରୀଗଣ ।
ଅପରୂପ ସୁନ୍ଦରୀ ସେ ସ୍ୱର୍ଗ ଅପସରୀ
ତାକୁ ଦେଖି ମୁନି ହେଲେ କାମବାଣେ ଘାରି ।
ଅସାଷ୍ଟମ ହୋଇ ମୁନି ପଡ଼ିଲେ ସେଠାରେ
ରେତ ସ୍ଖଳିତ ହୋଇଲା ପୃଥିବୀ ଉପରେ ।
ଏମନ୍ତ ଦେଖିଲେ ଅପସରୀ ମୁନିଗୋଟି
କୋଳ କରି ତାକୁ ଯାଇଁ ଧରିଲା ସାଉଁଟି ।
ମୁଖରେ ଜଳ ସିଞ୍ଚିଣ ଚେତା ତାଙ୍କୁ କଲା
ଅଙ୍ଗ ସମର୍ପଣ କରି ରତିଦାନ ଦେଲା ।
ଋଷିଙ୍କ ସଙ୍ଗେ ରହିଲା ମେନକା ଅପ୍ସରୀ
ତିନିଦିନ ତିନିରାତ୍ରେ ସୁରତିକି ସାରି ।
ଅପସରୀ ସଙ୍ଗେ ଯେଉଁ ସହଚରୀ ଥିଲେ
ନିରାଶ ହୋଇ ବାହୁଡ଼ି ସ୍ୱର୍ଗପୁରେ ଗଲେ ।
ରେତ ସ୍ଖଳିତ ହୋଇଲା ସନ୍ଧ୍ୟା ସମୟରେ
ଯାଇଣ ପଡ଼ିଲା ପୁଣି ଭୂମିର ଉପରେ ।
ସେ ରେତୁ ପୁରୁଷ ଏକ ହୋଇଲାକ ଜାତ
ରାବେକ ଛାଡ଼ିଲା ସେହୁ କମ୍ପିଲା ଜଗତ ।
ସୁରତି ଶେଷେ ମେନକା ସ୍ୱର୍ଗପୁରେ ଗଲା
ପୁତ୍ର ଘେନି ମହାଋଷି ବନରେ ରହିଲା ।
ପୁତ୍ରକୁ ବୋଲନ୍ତି ଋଷି ଶୁଣରେ କୁମର
ନବଯୁବା ସ୍ୱରୂପ ତୁ ଏହିକ୍ଷଣି ଧର ।
ଋଷିଙ୍କର ବଚନ ଯେ ଅନ୍ୟଥା ନୋହିଲା
ତକ୍ଷଣେ କୁମରମଣି ଯୁବକ ହୋଇଲା ।
ସନ୍ଧ୍ୟା ସମୟରେ ଯହୁଁ ହୋଇଲାକ ଜାତ
ତେଣୁ ରାକ୍ଷସ ବୁଦ୍ଧି ସେ ଧଇଲା ବାଳୁତ ।
କରଯୋଡ଼ି ମୁନିଙ୍କି ଯେ ପ୍ରଣିପାତ କଲା
ଉତ୍ତମ ସ୍ଥାନରେ ମୋତେ ରଖସି ବୋଇଲା ।
ତାହାଶୁଣି ମୁନିବର ସନ୍ତୋଷ ହୋଇଲେ
କୌଶଳ ଦ୍ୱୀପରେ ନେଇ ତାକୁ ଠାବ ଦେଲେ ।
ଚୌରାଶୀ ସସ୍ର ଯୋଜନ ଦ୍ୱୀପ ଆୟତନ
ପାଚେରୀ ପ୍ରାୟ ପର୍ବତ ରହିଛି ବେଢ଼ିଣ ।
ତହିଁର ମଧ୍ୟରେ ସ୍ୱଚ୍ଛଜଳ ଅଛି ପୂରି
ବିଶାଶତେ ଯୋଜନ ଯେ ଗଭୀର ତାହାରି ।
ଆବର ତହିଁ ମଧ୍ୟରେ ଅଗ୍ନି ରହିଅଛି
ଶତେକ ଯୋଜନ ଯାଏ ଶିଖା ସେ ଟେକିଛି ।
ତହିଁର ମଧ୍ୟେ ପବନ ସର୍ବଦା ସଞ୍ଚାରି
ଅଣଚାଶ ମୂର୍ତ୍ତି ଧରି ରହିଅଛି ଘେରି ।
ସେହି ଦ୍ୱୀପରେ ତାହାକୁ ଋଷି ଦେଲେ ସ୍ଥାନ
ଦେବ ଅଗୋଚର ସେହି ଅଗମ୍ୟ ଭୁବନ ।
ସେଥିରେ ମଧ୍ୟ ରହିଲା ଯାଇ ନିଶାଚର
ଅପୂର୍ବ ଭୁବନ ସ୍ୱର୍ଗେ ନାହିଁ ପଟାନ୍ତର ।
ଦେବ ଅଗୋଚର ଯେଣୁ ନରେ କାହୁଁ ପଶି
ଏମନ୍ତ ସ୍ଥାନ ତାହାକୁ ଦେଲେ ମହାଋଷି ।
ଶୂନ୍ୟ ଅଗୋଚର ତାହା ନୁହଇ ଗୋଚର
ମାୟାରେ ଭିଆଣ ଏହା କଲେ ମୁନିବର ।
ଭୂମିରେ ଉତପନ୍ନ ସେ ହୋଇଲା ଯେଣୁ
ଭୂସୁତ ନାରକା ବୋଲି ନାମ ଦେଲେ ତେଣୁ ।
ଅର୍ବୁଦେକ ଗଜ ଦେଲେ ଦନ୍ତା କରିବାର
ବେନିଖର୍ବ ତୁରଙ୍ଗମ କହି ଅଗୋଚର ।
ବେନି ଯେ ଅୟୁତ ରଥ ସର୍ବ ରତ୍ନମୟେ
ଆଉ ଯେତେ ସୈନ୍ୟ ତାର କହିତ ନ ହୁଏ ।
ସେହି ସ୍ଥାନକୁ ଯିବାକୁ ଆଉ ପଥ ନାହିଁ
ଶୂନ୍ୟରେ ଅସୁର ଥାଇ ଚଳେ ରଥବାହି ।
ମୟ ଦଇତ୍ୟ ଦୁହିତା ନାମ ପଦ୍ମାବତୀ
ତାହାକୁ ବିବାହ କଲା ଦୈତ୍ୟ କୁଳପତି ।
ସେ ଅସୁର ବୀର୍ଯ୍ୟେ ପଦ୍ମାବତୀର ଗର୍ଭରୁ
ସପ୍ତପୁତ୍ର ଜାତ ହେଲେ ସର୍ବେ ମହାମେରୁ ।
ବିଶୋକ ଅଶୋକ ପୁଣି ମଳୟ ମହୀନ୍ଦ୍ର
କୃତଶ୍ରବା ମହିଷା ସେ କେତୁ କୁରୁବିନ୍ଦ ।

ଏ ଆଦି ଦୈତ୍ୟଙ୍କ ତେଜ କହି ନ ହୁଅଇ
ବୁଲନ୍ତି ଦିଗବିଜୟ କରି ସପ୍ତଭାଇ ।
କାଲି ସେହି ସପ୍ତଭାଇ ସ୍ୱର୍ଗପୁରେ ଗଲେ
ଅମର ଭଣ୍ଡାର ସବୁ ଲୁଟକରି ନେଲେ ।
ଦକ୍ଷ ପ୍ରଜାପତି କନ୍ୟା ମୋହର ଭଗିନୀ
ଅମୂଲ୍ୟ ରତ୍ନକୁଣ୍ଡଳ କର୍ଣ୍ଣେ ଥିଲେ ବେନି ।
ଗୋଳଯୁଦ୍ଧ କରି ମୋର ପୁରରେ ପଶିଲେ
ତାହାର କର୍ଣ୍ଣ କୁଣ୍ଡଳ ବଳେ କାଢ଼ି ନେଲେ ।
ବରୁଣର ଛତ୍ର ସ୍ୱର୍ଗ ଭୁବନରେ ଥିଲା
ମୋତେ ଘଉଡ଼ାଇ ତାହା ବାହୁବଳେ ନେଲା ।
ରାଜାମାନଙ୍କ ଦୁହିତା ବଳେ ଆଣିକରି
ଷୋଳସହସ୍ର ରଖିଛି ଏକଠାବ କରି ।
ଏକାବେଳେ ତାହାଙ୍କୁ ବିଭାହେବ ବୋଲି
ଗୋଟିଏ ଘରେ ରଖିଛି ତାଙ୍କୁ ବନ୍ଦୀକରି ।
ଷୋଳସସ୍ର କନ୍ୟା ଏକୁଁ ଆରେକ ସୁନ୍ଦରୀ
ଏକା ତୋତେ ଚିନ୍ତା କରୁଅଛନ୍ତି ଶ୍ରୀହରି ।
ସକଳ କଥା ଗୋଚର ଅଟେ ନାଥ ତୋତେ
ମୁଁ କିସ କହିବି ନ ଜାଣ କି ଜଗନ୍ନାଥେ ।
ବେଲୁ ବେଳ ଲୁଟକଲା ଅମରମଣ୍ଡଳ
ହରିନେଲା ଯେତେ ଥିଲା ଅମୂଲ୍ୟ ଭଣ୍ଡାର ।
ଏତେକ କହି ପଡ଼ିଲେ ପାଦେ ଦେବଗଣ
ଆକୁଳେ ଡାକନ୍ତି ଦେବେ ତୋହର ଶରଣ ।
ଜୟ ଜୟ ଜଗନ୍ନାଥ ମହିମା ସାଗର
ଭାରା ନିବାରଣେ ନାଥ ଅବତାର ତୋର ।
ଆମ୍ଭେ ସର୍ବେ ଦେବତାଏ ତୋର ଭୃତ୍ୟଜନ
କର ଅନୁଗ୍ରହ ତୁମ୍ଭେ କମଳ ଲୋଚନ ।
ତବ କୃପାବିନ୍ଦୁ ଦେଇ ପୁରାଇ ମାନସ
ଶୂଦ୍ରମୁନି ନିତ୍ୟ ତବ ପାଦେ କରେ ଆଶ ।
ଦେବଙ୍କ ଏସନ ବାକ୍ୟ ଶୁଣି ଦଇତ୍ୟାରି
କହନ୍ତି ଦରହସିତ ବଦନ ମୁରାରି ।
ଇନ୍ଦ୍ରସହ ତିନିପୁରେ ଯାଅ ଦେବଗଣ
ଏଥିରେ ପ୍ରତିକାର ମୁଁ କରିବଇଁ ପୁଣ ।
ସକଳ ଦେବଙ୍କୁ ସଙ୍ଗେ ଘେନି ବ୍ରଜପାଣି
ଶ୍ରୀହରିଙ୍କ ପାଶୁ ବେଗେ ହୋଇଲା ମେଲାଣି ।
ଦେବତାଙ୍କୁ ଘେନି ଇନ୍ଦ୍ର ସ୍ୱର୍ଗପୁରେ ଗଲା
ଏହିମତେ ସେଦିନର ରଜନୀ ପାହିଲା ।
ନିତ୍ୟକର୍ମମାନ ସାରି ଦେବ ଭଗବାନ
ସତ୍ୟଭାମା ପୁରେ ଯାଇ କରିଲେ ଭୋଜନ ।
ଭୋଜନର ଅନ୍ତେ ପ୍ରଭୁ ଆଚମନ ସାରି
କର୍ପୂର ତାମ୍ବୁଳ ଯହୁଁ ଭୁଞ୍ଜିଲେ ଶ୍ରୀହରି ।

ସତ୍ୟଭାମାଙ୍କର ଭୁଜ ଧରି ଭଗବାନ
ମନେ ସୁମରିଲେ ପ୍ରଭୁ ବିନତା ନନ୍ଦନ ।
ଜାଣିଲେ ଧ୍ୟାନ ନିରୋପି ତାହା ଖଗେଶ୍ୱର
ଧାଡିକାରେ ମିଳିଲେ ସେ ଦ୍ୱାରକା ମଣ୍ଡଳ ।
ଯହୁଁ ଶ୍ରୀହରି ଛାମୁରେ ମିଳିଲେକ ଆସି
ଦେଖି ତାଙ୍କୁ ଦୀନବନ୍ଧୁ ବହୁତ ପ୍ରଶଂସି ।
ସତ୍ୟଭାମାକୁ କୋଳରେ ଘେନି ଚକ୍ରପାଣି
ଗରୁଡ଼ କନ୍ଧରେ ବସି କଲେ ଶଙ୍ଖଧ୍ୱନି ।
ଶୂନ୍ୟେ ରହି ଦେଖୁଛନ୍ତି ତାହା ଦିଗପାଳେ
ଗରୁଡ଼ ତହୁଁ ଉଡ଼ିଲା ଯାଇ ଅନ୍ତରାଳେ ।
ନାରକାର ବାସ ଜ୍ୟୋତିପୁର ନାମେ ଗ୍ରାମ
ଶୂନ୍ୟରେ ମିଳିଲେ ଯାଇ ବିନତା ନନ୍ଦନ ।
ସହସ୍ର ଯୋଜନ ଅଟେ ସେହି ଗ୍ରାମସ୍ଥଳୀ
ଦେଖି ହସନ୍ତି ତାହାକୁ ଦେବ ବନମାଳୀ ।
ଅଛଇ ଦୁର୍ଗମ ଗିରି ତାର ଚାରିପାଶ
ଗିରି ଅନ୍ତେ ଜଳପୂର୍ଣ୍ଣ ଗଭୀର ଅଶେଷ ।
ଗ୍ରହଗଣ ରହିଛନ୍ତି ତହିଁ ବହୁ ପୂରି
ବେଢ଼ନ୍ତେ ଏକାଜଣଙ୍କୁ ସହସ୍ର ଯେ ଚାରି ।
ତହିଁର ଅନ୍ତେ ଦେଖନ୍ତେ ଅଛଇ ଅନଳ
ବିନା ଇନ୍ଧନରେ ଶିଖା ଉଠେ ତିନିତାଳ ।
ଅଗ୍ନିର ଅନ୍ତରେ ପୁଣି ଅଛଇ ପବନ
ପ୍ରଚଣ୍ଡ ହୋଇଣ ସେହୁ ବହେ ଘନ ଘନ ।
ରିପୁ ଦେଖିଲେ ଦୂରରୁ ବେଗେ ଯାନ୍ତି ଉଡ଼ି
ପଡ଼ନ୍ତି ଜଳେ ଅନଳେ ସୈନ୍ୟ ଯାନ୍ତି ମାଡ଼ି ।
ତହିଁର ମଧ୍ୟେ ଦେଖନ୍ତି ଅଛି ଦିବ୍ୟପୁର
ନୀଳମେଘ ପ୍ରାୟ ଦିଶେ ଦେବ ଅଗୋଚର ।
ଏହିମତି ଦୁର୍ଗମ ଯେ ପୁରେକ ଭିଆଇ
ତହିଁର ମଧ୍ୟେ ନାରକାସୁର ଅଛି ରହି ।
ହେଳେ ଜିଣିଲା ଦଇତ୍ୟ ଦେବତା ଅସୁର
ଦେଖିଣ ଆଶ୍ଚର୍ଯ୍ୟ ହେଲେ ଦେବ ଚକ୍ରଧର ।
ଗଦା ପ୍ରହାରିଲେ ନେଇ ଦେବକୀ ନନ୍ଦନ
ଦୁର୍ଗମ ଗିରି ସକଳ କରିଦେଲେ ଚୂର୍ଣ୍ଣ ।
ଜଳ ଅନଳ ଆବର ସମୀର ଘେନିଣ
ଚକ୍ର ପେଶି ନାଶକଲେ ଦେବ ନାରାୟଣ ।
ତହୁଁ ଶଙ୍ଖ ଶବଦ ଯେ କଲେ ନରହରି
ଶୁଭିଲା ସେହି ଶବଦ ଦଶଦିଗ ପୂରି ।
ଗଡ଼ର ଦୁଆରେ ରହି ଦୁର୍ଗକୁ ଆବୋରି
ବୀରମାନେ ଜଗିଥିଲେ କରେ ଶସ୍ତ୍ର ଧରି ।
ହୃଦୟ ହୋଇଲା କମ୍ପମାନ ତାହାଙ୍କରି
ଶସ୍ତ୍ରମାନ ହସ୍ତରୁ ଯେ ପଡ଼ିଲାକ ଝଡ଼ି ।

ବିନତା ନନ୍ଦନ ପୃଷ୍ଠେ ବସି ବନମାଳୀ
ନାରକାର ସିଂହଦ୍ୱାରେ ବେଗ ଯାନ୍ତି ମିଳି ।
ଅକର୍ମଶିଳା ପ୍ରାଚୀର ଥିଲା ଚାରିଦିଗେ
ଗଦାବର ପିଟି ଚୂର୍ଣ୍ଣକଲେ ତାହା ବେଗେ ।
ଶଙ୍ଖ ଶବଦରେ ପୂର୍ଣ୍ଣ ହେଲା ଦଶଦିଗ
ଅସୁର ତା ଶୁଣି ପୁରେ ପାଏ ମନେ ଖେଦ ।
ଯୁଗଅନ୍ତେ ପ୍ରାୟେ ଘୋର ଶବଦ ଯେ ଶୁଣି
ଅସୁର ଶ୍ରେଷ୍ଠ ବାହାର ହେଲା ସେହିକ୍ଷଣି ।
ପର୍ବତ ପ୍ରାୟେକ ତାର ଦିଶଇ ଶରୀର
ନିଦ୍ରାତେଜି ମହାବୀର ହୋଇଲା ବାହାର ।
ତ୍ରିଶୂଳ ଏକ ସେ ଧରିଅଛି ଦକ୍ଷକରେ
ଉପମା ଦେବାକୁ ତା'ର ନାହିଁ ବ୍ରହ୍ମାଣ୍ଡରେ ।
ପ୍ରଳୟକାଳ ଅନଳ ଜ୍ୟୋତିକୁ ସେ ଜାଣି
ଶୂଳ ଏକ ହସ୍ତେ ଧରି ଧାଏଁ ବୀରମଣି ।
ଗିଳିବାକୁ ସେହିକ୍ଷଣି ସପତ ବ୍ରହ୍ମାଣ୍ଡ
ପାଟି ବିସ୍ତାରି ଅସୁର ଗର୍ଜେ ପରଚଣ୍ଡ ।
ଦୂରରେ ଥାଇ ଦେଖନ୍ତି କୃଷ୍ଣ ତାହା ଆଗେ
ଗରୁଡ଼ ମୁଖେ ପଡ଼ିଲେ ଆସିକିନା ଆଗେ ।
ଦୂରରୁ ଧାମଇଁ ଦୈତ୍ୟ ମରଣ ନ ଜାଣି
ଦେଖି ତାଙ୍କୁ ଶଙ୍ଖନାଦ କଲେ ଚକ୍ରପାଣି ।
ରେରେକାର କରି ସେହୁ କରେ ଗରଜନ
ପଞ୍ଚ ମୁକୁଟ ତା ପାଞ୍ଚଶିରେ ଶୋଭାବନ ।
ତ୍ରିଶୂଳ ହସ୍ତରେ ଘେନି ଅତି ଗୁରୁ ରାଗେ
ପିଟିଲେ ସେ କୋପଭରେ ଅସୁରର ଅଙ୍ଗେ ।
ଶବଦ ସେ ପାଞ୍ଚ ତୁଣ୍ଡେ କଲା ପରଚଣ୍ଡ
ନାଦ ପୂରି ଉଚ୍ଛୁଳଇ ସପତ ବ୍ରହ୍ମାଣ୍ଡ ।
ଦଇତର ତେଜ ମୂର୍ତ୍ତି ଦେଖି ନାରାୟଣ
ଶାରଙ୍ଗ ଧନୁରେ ତହୁଁ ଚଢ଼ାଇଲେ ଗୁଣ ।
ତିନିଗୋଟି ବାଣ ହସ୍ତେ ଧରି ଦେବ ହରି
ତତକ୍ଷଣ ନାରକାର ଉପରେ ପ୍ରହାରି ।
ଆଷାଢ଼ର ମେଘ ଜାଣି କଲା ଗରଜନ
ଚଳିଗଲା ନାରାଚ ଯେ ପ୍ରଚଣ୍ଡ ହୋଇଣ ।
ଅସୁର ଉପରେ ଯାଇ ସେହି ଶସ୍ତ୍ର ପଡ଼ି
ମୋହ ଯାଇଣ ପଡ଼ିଲା ଦୈତ୍ୟ ଭୂମି ମାଡ଼ି ।
ତିନିଧାର ହୋଇ ଦେହୁଁ ବହଇ ରକତ
ଚେତି ମହାବୀର ତହୁଁ ଧାଇଁଲା ତୁରିତ ।
ପାଟି ବିସ୍ତାରିଣ ତାକୁ ଗିଳି ମନକଲା
ତା ଜାଣି ବିନତା ପୁତ୍ର ଆଡ଼ ହୋଇଗଲା ।
ଉଡ଼ାଇ ଗରୁଡ଼ ତାକୁ ଧରେ ଶୂନ୍ୟେ ଯାଇ
ଚକ୍ର ପେଶି ନିବାରିଲେ କମଳାର ସାଇଁ ।
ନିଜ ପୁରରେ ଅସୁର ବେଗେ ଯାଇ ମିଳି
ଲୌହପିଣ୍ଡ ଏକ ଧରି ଧାଏଁ ମହାବଳୀ ।
ପରବତା ନାମେ ଶର ବସାଇ ଗୁଣରେ
ତାହା କରେ ଧରି ଦୈତ୍ୟ ଧାଇଁଲା ସତ୍ୱରେ ।
ଧନୁ ଧରି ବେଗେ ସେହି ଆମଞ୍ଚନ କରି
ବଜ୍ରଶର ପେଶି ତାହା ଶ୍ରୀକୃଷ୍ଣ ନିବାରି ।
ଏପରି ବିନ୍ଧିଲେ ପାଞ୍ଚଶର ଦେବହରି
ବାବଲ ଶର ପେଶି ତା ଦଇତ୍ୟ ନିବାରି ।
ଲାଗିଲା ଉଭୟେ ଯୁଦ୍ଧ ଅତି ଗୁରୁଟାଣ
ଶୂନ୍ୟେ ଥାଇ ଦେଖୁଛନ୍ତି ତାହା ଦେବଗଣ ।
କୃତାନ୍ତକ ଶର ଘେନି ଦେବ ଜଗନ୍ନାଥ
ବିଶ୍ୱରୂପେ ପରକାଶି ବିନ୍ଧିଲେ ତୁରିତ ।
କଳାମେଘ ବର୍ଣ୍ଣ ପ୍ରାୟେ ଦିଶେ ଶସ୍ତ୍ରଜ୍ୟୋତି
ବ୍ରହ୍ମାଣ୍ଡ ଅନ୍ଧାର ହେଲା କୃତାନ୍ତକ ମୂର୍ତ୍ତି ।
ତାହା ଦେଖିଣ ଅସୁର କରଇ ବିଚାର
ସାଧୁ ସାଧୁ ତୋ ମହିମା ଅଟେ କ୍ଷତ୍ରିବର ।
ତହୁଁ ସୂର୍ଯ୍ୟାବର୍ତ୍ତ ଶର ମାଇଲେ ଶ୍ରୀଧର
ନିବାରି ନ ପାରେ ଦୈତ୍ୟ ଅଙ୍ଗଭେଦି ଶର ।
ଘୋଟିଲା ସେହି ଶର ଯାଇ ତ୍ରଇଲୋକ୍ୟେ
ଖାଇଲେ ଶର ଅସୁର ରକତ ନିଃଶଙ୍କେ ।
ତିନିଧାର ହୋଇ ରକ୍ତ ବହେ ଶିର ଭେଦି
ପର୍ବତ ଶିଖରୁ କିବା ବହୁଅଛି ନଦୀ ।
ଦେଖିଣ ଧାଇଁଲେ ତାହା ଅସୁର ସଇନ୍ୟ
ରେରେକାର ବିନ୍ଧିଲେ ସେ ବାଣ ଅବିଚ୍ଛିନ୍ନ ।
ମାଇଲେ ନିଘାତ ନାମେ ଶର ଦେବହରି
ଦୂରହୁଁ ନିବାରିଲେ ସେ ଦୈତ୍ୟଶର ଚାରି ।
ଶରୀରେ ଯହୁଁ ଆଘାତ ପାଇଲେ ଅସୁରେ
ଗଦା ଘେନିଣ ଧାଇଁଲେ ସେହୁ ଧାତିକାରେ ।
ଗରୁଡ଼ ଉପରେ ନେଇ କଲେକ ପ୍ରହାର
ଘାଏ ଘୁମାଇ ପଡ଼ିଲା ବିନତା କୁମର ।
ଦେଖି ତାହା ଜଗନ୍ନାଥ ତାରେ ଦୟାକଲେ
ଶଙ୍ଖ ଛୁଆଇଁ ତାହାକୁ ଜୀବନଦାନ ଦେଲେ ।
ତହୁଁ ଧଇଲା ବିକ୍ରମରୂପ ପକ୍ଷୀବର
ପଡ଼ିଲେ ତା ପକ୍ଷବାତେ ସର୍ବ ନିଶାଚର ।
ଶାର୍ଦ୍ଦୁଳ ଉଲ୍ଲୋଳ ନାମେ ବେନି ସେନାପତି
ଏହାଙ୍କ ତୁଲେ ସତୁରି ସହସ୍ର ପଦାତି ।
ଗରୁଡ଼ ପକ୍ଷବାତେ କେ କେଣେ ଉଡ଼ିଗଲେ
ବାରସହସ୍ର ଯୋଜନ ଅନ୍ତରେ ପଡ଼ିଲେ ।
ନାରକା ଦଇତ୍ୟ ତୁଲେ ପଞ୍ଚଲକ୍ଷ ହସ୍ତୀ
ଉଡ଼ିଯାଇ ସମୁଦ୍ରରେ ପଡ଼ିଲେ ଝଟତି ।

ଦେଖାଣାହାରୀ ଆବର ଯେତେ ସୈନ୍ୟଥିଲେ
ଶିମିଳିତୁଳା ପ୍ରାୟେକ କେଣେ ଉଡ଼ିଗଲେ ।
ଜୟ ଶଙ୍ଖ ଶବଦ ଯେ କଲେ ଦେବହରି
ନାରକା ଦୈତ୍ୟ ଭୁବନେ ପଡ଼ିଗଲା ହୁରି ।
ସାତପୁତ୍ର ଅଟନ୍ତି ତା ଅତି ବଳିୟାର
ଖଣ୍ଡା ଶାବେଳି ଘେନିଣହୋଇଲେ ବାହାର ।
ପଥେ ଯାଆନ୍ତେ ବଜାଇ ଟମକ ନିଶାଣ
ପଞ୍ଚସସ୍ର ରଥୀ ଥିଲେ ତାହାଙ୍କ ସଙ୍ଗେଣ ।
ଆରେ ଆରେ ବୋଲି ଡାକି ଯୁଦ୍ଧ ଆରମ୍ଭିଲେ
ରଥ ଘେନିଣ ଶ୍ରୀକୃଷ୍ଣ ଛାମୁରେ ମିଳିଲେ ।
ସପ୍ତପୁତ୍ର ତୁଲେ ଛନ୍ତି ପଞ୍ଚସସ୍ର ରଥୀ
ଚାରିଦିଗେ ବେଢ଼ି ରହି ସମର କରନ୍ତି ।
ଶରମାନଙ୍କର ଜ୍ୟୋସ୍ନା ବିଦ୍ୟୁତେଜ ଜିଣି
ଶ୍ରାବଣ ମାସେ ଯେମନ୍ତ ବରଷଇ ପାଣି ।
ବେଢ଼ି ସର୍ବେ ଶ୍ରୀକୃଷ୍ଣଙ୍କୁ ଶରପୀଡ଼ା କଲେ
ଆବର ସମସ୍ତେ ଯାଇ ତାହାଙ୍କୁ ବେଢ଼ିଲେ ।
ଝିଙ୍କପକ୍ଷୀ ଜାଣି ଶର ଗରୁଡ଼ ଉପରେ
ଡେଇଁଣ ନାରାଚମାନ ଅତି ପରଖରେ ।
ଡାକିଲେ ଯେ ଆରେ ଆରେ ବୋଲି ଯଦୁନାଥ
ଅଗ୍ନିଶର ହସ୍ତେ ଘେନି ବିନ୍ଧିଲେ ତୁରିତ ।
ପ୍ରଳୟ କାଳ ପ୍ରାୟେକ ଘୋଟିଲା ସେ ଅଗ୍ନି
ଭେଟିଲେ ଅସୁର ସୈନ୍ୟ ପଡ଼ିଲେ ଧରଣୀ ।
ଚାରିସହସ୍ର ରଥକୁ ତୁଲେ ପଞ୍ଚପୁତ୍ର
ଶସ୍ତ୍ର ଛାଡ଼ି ଭୂମିପରେ ପଡ଼ିଲେ ତୁରିତ ।
ଆଉ ବେନିସୁତ ତେଣେ ଯୁଦ୍ଧ କରୁଥିଲେ
ସଂଗ୍ରାମ ଗୋର ହେବାର ଦେଖି ପଳାଇଲେ ।
ନାରକା ଯେ ପକ୍ଷବାତେ ଉଡ଼ି ଯାଇଥିଲା
ବିକ୍ରମ ଗତି କରିଣ ସଂଗ୍ରାମେ ମିଳିଲା ।
ଦେଖ ନିରିଘାତ ବାଣ ମାଇଲେ ମାଧବ
ନାରାଚ ପଡ଼ନ୍ତେ ରହି ଛାଡ଼ିଲା ଦାନବ ।
ଶରେ ଶର ସମ୍ଭାଷଣ କରନ୍ତେଣ ବେନି
ମହାଘୋର ଅନ୍ଧକାର ଘୋଟିଲା ଧରଣୀ ।
ସୂର୍ଯ୍ୟାବର୍ତ୍ତ ନାମେ ଶର ବିନ୍ଧିଲା ଅସୁର
ସେହି ଶସ୍ତ୍ର ପଡ଼ନ୍ତେଣ କମ୍ପେ ଆଖଣ୍ଡଳ ।
ପ୍ରଳୟ ଅନ୍ତକ ଜାଣି କରନ୍ତେ ଶବଦ
କମ୍ପିଲେ ପାତାଳ ବାସୀ ସ୍ୱର୍ଗେ ଦେବବୃନ୍ଦ ।
କରନ୍ତେ ସଂଗ୍ରାମ ଦୈତ୍ୟ ତୁଲେ ଦେବସ୍ୱାମୀ
ସେ ସଂଗ୍ରାମେ କମ୍ପିଲାକ ଭୁବନ ଯେ ତିନି ।

ଶବଦେ ସାଗର ତହୁଁ ହେଲା କମ୍ପମାନ
ଶୂନ୍ୟପୁରୁଷେ ଛାଡ଼ିଲେ ଦେଖି ନିଜସ୍ଥାନ ।
ଆରେ ଆରେ ବୋଲି କରି ଡାକଇ ଅସୁର
କାହିଁରେ ମୂଢ଼ ପେଶିବି ତୋତେ ଯମପୁର ।
ସୁରସୁରଜିତ ବାନା ମୋହର ଜଗତେ
ତୁ ଛାର ପାମର ମୋତେ ଜିଣିବୁ କେମନ୍ତେ ।
ରହି ଯୁଦ୍ଧ ନକରି ତୁ ଏଣେ ତେଣେ ଯାଉ
ନ ଜାଣୁ ମହିମା କିରେ ଦୈତ୍ୟକୁଳ ରାହୁ ।
କହୁ କହୁ ସମର ସେ କରେ ମହାଘୋର
ତୀକ୍ଷଣ ଶର ଏକ ପୁଣି ମାଇଲା ଅସୁର ।
ଯେସନେକ ନିରିଘାତ ପଡ଼ଇ ଆକାଶୁ
କମ୍ପିଲା ସେ ଘନ ଘନ ଅସ୍ତ୍ର ଆସୁ ଆସୁ ।
ଗୋବିନ୍ଦ ବିନ୍ଧିଲେ ନାରାୟଣ ଅସ୍ତ୍ର ଘେନି
ଘୋଟିଲା ସପ୍ତବ୍ରହ୍ମାଣ୍ଡ ସେହି ବ୍ରହ୍ମଅଗ୍ନି ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ଦୈତ୍ୟକୁଳେଶ୍ୱର
ପନ୍ନଗା ନାମେଣ ଶସ୍ତ୍ର ଧରିଲା ହସ୍ତର ।
ଆମଞ୍ଛି ବିନ୍ଧନ୍ତେ ତାହା ଆକାଶ ଘୋଟିଲା
ଗରୁଡ଼କୁ ଦେଖି ପୁଣି ଅନ୍ତର ହୋଇଲା ।
ଶ୍ରୀହରି ଶର ପ୍ରଳୟ ଅନ୍ତର କି ଜାଣି
ପଡ଼ନ୍ତେ ଅସୁର ଅଙ୍ଗେ ଲୋଟିଲା ଧରଣୀ ।
ବେନି ସେନାପତି ଆସି ହେଲେ ଆଗୁସାର
ରାଜାଙ୍କୁ ପଛ କରି ସେ କଲେକ ସମର ।
ତକ୍ଷଣେ ଚେତନା ପାଇ ଦୈତ୍ୟକୁଳେଶ୍ୱର
ହସ୍ତରେ ଘେନିଲା ଏକ ବୃହତ ପ୍ରସ୍ତର ।
ଭୂମି ଛାଡ଼ିଣ ପ୍ରସ୍ତର ଶୂନ୍ୟକୁ ହିଁ ଗଲା
ଜଗନ୍ନାଥଙ୍କ ଉପରେ ଯାଇଣ ପଡ଼ିଲା ।
ତହୁଁ ଆଡ଼ହୋଇ ଚାଲିଗଲେ ଯଦୁବୀର
ବାବଲ ପେଶି ଛେଦିଲେ ସେ ବଡ଼ ପ୍ରସ୍ତର ।
ପୁଣି ଭୂମିଗତ ହୋଇ ଉଠିଲା ଅସୁର
ଲୋହମୟେ ଧନୁ ଏକ ଧଇଲା ହସ୍ତର ।
ରେରେକାର ଶବ୍ଦ କରି ଜମ୍ଭନାମ ଶର
ପ୍ରହାର କଲା ସେ ଜଗନ୍ନାଥଙ୍କ ଉପର ।
ଶ୍ରୀକରେ ଚକ୍ର ଘେନିଣ ଦେବ ଭଗବାନ
ଅସୁର ଶର ଦୂରରୁ କରିଦେଲେ ଚୂର୍ଣ୍ଣ ।
ଜଗନ୍ନାଥ କରେ ଧରି ନୀଳନାମେ ଶର
କୋପେ ପ୍ରହାରିଲେ ତାହା ଦାନବ ଉପର ।
ରକତେ କର୍ଦ୍ଦମ ହେଲା ଅସୁରଙ୍କ କାୟେ
ଦିଶିଲା ଦେହ ତାଙ୍କର ମନ୍ଦାରର ପ୍ରାୟେ ।
ଖେଚରୀ ନାମେ ଶରର କୋଟି ସୂର୍ଯ୍ୟଜ୍ୟୋତି
ସେ ଶରେ ଧ୍ୱଂସିଲେ ବାହୁ ସୈନ୍ୟ ଯଦୁପତି ।

ମଡ଼ାରେ କର୍ଦ୍ଦମ ହୋଇଗଲା ବସୁମତୀ
ଗୋଟିକ ପରେ ଆରେକ ପୁଣି ପହୁଡ଼ନ୍ତି ।
ତା ଦେଖି ନାରକାସୁର ବହୁ କ୍ରୋଧ କଲା
ବଜ୍ର ଶକତି ନେଇର ଗୁଣେ ବସାଇଲା ।
ମନ୍ତ୍ରିଣ ଶରକୁ ସେହି କହେ ତିଆରିଣ
ଯାଇ ତୁ ଜଗନ୍ନାଥ ପ୍ରାଣ ବେଗେ ଘେନ ।
ଚଳିଲାକ ଶର ପୁଣି ଘୋଟିଲା ଅନ୍ଧାର
ଶୂନ୍ୟରେ ପଡ଼ିଲା ଜଗନ୍ନାଥଙ୍କ ଉପର ।
ଚଉପାଶେ ପଡ଼ିଲାକ ଯାଇ ମହାଶର
ଚଳି ନ ପାରି ବିନତା ପୁତ୍ର ରହେ ସ୍ଥିର ।
ତା ଦେଖି ଜଗନ୍ନାଥ ଶ୍ରୀକରେ ଚକ୍ରଘେନି
ଦାନବ ଶର ଛେଦିଲେ ଦୂରୁଁ ଚକ୍ରପାଣି ।
ଗରୁଡ଼ ପୃଷ୍ଠୁ ଓହ୍ଲାଇ ବେଗେ ଜଗନ୍ନାଥ
ଚକ୍ରକରେ ଘେନି ଦେବ ହେଲେ ଭୂମିଗତ ।
ପଞ୍ଚଜନ୍ୟ ଶଙ୍ଖନାଦ କରି ଭଗବାନ
ଗୋଡ଼ାଇ ମାଇଲେ ତହୁଁ ଅସୁର ସଇନ୍ୟ ।
ଦେଖିଣ ନାରକାସୁର ଆଗେ ଓଗାଳିଲା
ଧନୁ ପକାଇଣ ଏକ ଗଦା ଯେ ମାଇଲା ।
ଆରେ ଆରେ ଗରୁଡ଼ ବୋଲିଣ ଗଦାଟୋଳି
ତୋହର ମାଂସ କରିବି ଆଜି ପୋଡ଼ାବଳି ।
ଶ୍ରୀଜଗନ୍ନାଥ ବୋଇଲେ ଶୁଣରେ ଅସୁର
ଆଜି ଜନ୍ତୁପତି ପାଞ୍ଜି ପୋଛିଲା ତୋହର ।
ଏହା କହୁ କହୁ ଦୈତ୍ୟ ଗଦା ପ୍ରହାରିଲା
ଜଗନ୍ନାଥଙ୍କ ଉପରେ ସେ ଗଦା ପଡ଼ିଲା ।
ବେଗେ ଅଙ୍ଗ ଢାଳିଦେଲେ ଦେବ ବନମାଳୀ
ଚକ୍ର ଘେନିଣ ପଟିଲେ ଦୈତ୍ୟ ବକ୍ଷସ୍ଥଳୀ ।
ଚକ୍ର ପଡ଼ିଲା ଲିତାଏ ତାକୁ ନ କାଟିଲା
ମହାଘୋର ରଡ଼ି ଏକ ଅସୁର ଛାଡ଼ିଲା ।
ଦେଖି ଜଗନ୍ନାଥ ହେଲେ କୋପେ ପରଖର
ପୁଣି ହିଁ ପିଟିଲେ ନେଇ ତାର ବକ୍ଷସ୍ଥଳ ।
ହସ୍ତୁଛୁଟି ଗଦା ତାର ଭୂମିରେ ପଡ଼ିଲା
ନିଶସ୍ତ୍ର ହୋଇ ସେ ଭୁଜ ଟୋଳିଣ ଧାଇଁଲା ।
ଧାମଇଁ ସେ ଘୋର ନାଦ କରି ମହାବୀର
ପଦାଘାତରେ କମ୍ପିଲା ସପତ ସାଗର ।
ଦେଖନ୍ତି ଦେବତାମାନେ ଶୂନ୍ୟେ ସର୍ବେ ମିଳି
ପୁଣି ହିଁ ଚକ୍ର ପେଶନ୍ତି ଦେବ ବନମାଳୀ ।
ଶସ୍ତ୍ରର ବିଘାତେ ସେହୁ ହେଲା ବେନିଖଣ୍ଡ
ରଡ଼ିଏ ଛାଡ଼ିଲା ପୁଣି କମ୍ପିଲା ବ୍ରହ୍ମାଣ୍ଡ ।
ବାସବର ବଜ୍ର ଯେହ୍ନେ ଝଡ଼େ ଗିରିଶୃଙ୍ଗ
ଛାଡ଼ିଲା ଦୈତ୍ୟ ପଡ଼ିଲା ତାର ମୃତ୍ୟୁ ପିଣ୍ଡ ।

ପିତାର ମରଣ ବାର୍ତ୍ତା ଶୁଣି ବେନି ସୁତ
ପିତୃରିପୁ ନାଶଲାଗି ହେଲେ ଉପଗତ ।
ନାନା ଶସ୍ତ୍ରମାନ କରେ ଦୈତ୍ୟମାନେ ଘେନି
ପୁଣି ହିଁ ସାଜିଲେ ସେହୁ ଅସୁର ସଇନି ।
ସେନାପତିମାନେ ବେଗେ ହୋଇଲେକ ଆଗେ
ନାରକା ଅସୁର ସୁତ ହୋଇ ବେନି ଭାଗେ ।
ବସୁ ଅରୁଣ ଏ ଦୁଇ ଭାଇ ପୁଣି ଥିଲେ
ବେନି ଭାଗ ହୋଇ ସେହୁ ଯୁଦ୍ଧେ ଆବୋରିଲେ ।
ବରଷନ୍ତି ବାଣମାନ ଜଳଧାରା ପ୍ରାୟେ
ପଡ଼ନ୍ତି ନାରାଚମାନେ ଗୋବିନ୍ଦର କାୟେ ।
ସହସ୍ରେ ରଥ ଯୁଝନ୍ତି ଏକମୁଖ ହୋଇ
ଦେଖି ଗୋପିନାଥ କରେ ଶାର୍ଙ୍ଗଧନୁ ନେଇ ।
ଆରେରେ ଅସୁର ବୋଲି କରି ଡାକି ଦ୍ୟନ୍ତି
ସୁତୀକ୍ଷ୍ଣ ନାରାଚମାନ ମନ୍ତ୍ରିଣ ବିନ୍ଧନ୍ତି ।
ଘୋଟିଲା ନାରାଚ ଯାଇଁ ଅସୁରଙ୍କ ଦେହେ
ପଡ଼ିଲେ ଅସୁର ବଳ ଅସୁରଙ୍କ ପ୍ରାୟେ ।
ରଡ଼ନ୍ତି ଗଡ଼ନ୍ତି ପୁଣି ଲୋଟନ୍ତି ଧରଣୀ
ରକତେ କର୍ଦ୍ଦମ ହେଲେ ନାରାଚେ ସଇନି ।
ଯେତେବେଳେ ସୈନ୍ୟ ବେନି ଭାଗ ହୋଇଥିଲେ
ନାରାଚକେ ସଂଯମନୀ ପୁରେ ସେହୁ ଗଲେ ।
ମସ୍ତକ ଭୁଜ ଚରଣ ଭୂମିପରେ ଲୋଟି
ଅସାକ୍ଷମ ହୋଇ ସର୍ବେ ଧୂଳି ଯେ ସାଉଁଟି ।
ମେଦିନୀ କର୍ଦ୍ଦମ ହେଲା ମଡ଼ାର ଗହଳେ
ଶ୍ରୀକୃଷ୍ଣଙ୍କ ବାଣେ ସର୍ବେ ଲୋଟିଲେ ଭୂମିରେ ।
ବେନି ସେନାପତି ତାଙ୍କ ଦୂତ ହୋଇଥିଲେ
ଧାଇଁ ଯାଇଁଣ ସମରେ ବେଗେ ଆବୋରିଲେ ।
ଅଶୀ ସହସ୍ର ତାଙ୍କର ଅଛି ଗଜଯୂଥ
ଜଳଧି ମନ୍ଥନରୁ ସେ ହୋଇଥିଲେ ଜାତ ।
କୁହୁଡ଼ିର ସ୍ୱରୂପ ଯେ ଦିଶେ ତାଙ୍କ କାୟେ
ଗର୍ଜ୍ଜନ କରିଣ ଗର୍ବେ ଧାମନ୍ତି ନିର୍ଭୟେ ।
ମାହୁନ୍ତେ ବସିଅଛନ୍ତି ତାଙ୍କରି ଉପରେ
ଅଙ୍କୁଶ ଆଘାତେ ଗଜ ଧାମନ୍ତି ସତ୍ୱରେ ।
ନାରକାର ପୁତ୍ରକୁ ସେ ଘେନିଣ ମଧ୍ୟରେ
ନାଦ କରିଣ ମିଳିଲେ ଶ୍ରୀକୃଷ୍ଣ ଛାମୁରେ ।
ବେଢ଼ିଲେ କୁଞ୍ଜରବଳ କୃଷ୍ଣେ ଅପ୍ରମିତ
ତାହାଙ୍କୁ ଦେଖିଲେ ନୟନରେ ପଦ୍ମନେତ୍ର ।
କୃତକେଶୀ ଦୈତ୍ୟପୁତ୍ର ଅଟେ ସଉଘନ
ଅଙ୍ଗବଳ ଘେନିଣ ସେ ସାଜିଲାକ ସୈନ୍ୟ ।
ଏହା ଶୁଣିଣ ବିଲଙ୍କା ଦେଶ ମହୀପତି
ଅଗସ୍ତିଙ୍କ ଚରଣରେ କଲାକ ଭକତି ।

ଭୋ ମୁନି କହେ ହେ କୃତକେଶୀର ନନ୍ଦନ
ସେ କିମ୍ପା ଅଇଲା ନାରକାର ରଣସ୍ଥାନ ।
ସେଥିରେ ଚରିତ ମୋତେ କହ ମହାମୁନେ
କହନ୍ତି ଅଗସ୍ତି ଶୁଣ ବିଲଙ୍କ ରାଜନେ ।
ଏକମନ ହୋଇ ତୁମ୍ଭେ ଶୁଣ ନରପତି
କୃତକେଶୀ ରାଜାର ଯେ ଯେସନକ ରୀତି ।
ପୂର୍ବେ ସୁମତୀ ନାମେଣ ହେଲା ସମ୍ବତ୍ସର
ମାଘ ସପତମୀ ପୁଣି ତିଥି ଗୁରୁବାର ।
ସେଦିନ ନାରକାସୁର ମୃଗୟାକୁ ଗଲା
ସୁମନ୍ତ ବନେ ସେ କୃତକେଶୀକୁ ଭେଟିଲା ।
ଘେନି ବେନି ଅମଙ୍ଗଳ ସେହୁ ବେନିରାୟେ
ମୃଗୟା ବିନୋଦେ ରହିଥାଆନ୍ତି ନିର୍ଭୟେ ।
ବେନିଥାଟ ମିଳିନ୍ତେ ଯେ ଅଗମ୍ୟ ବନର
ବେନି ରାଜା ମଧ୍ୟେ ତହିଁ ଲାଗିଲା ସମର ।
ନାରକାଅସୁର ସେହୁ ଅଟେ ମହାବଳୀ
କୃତକେଶୀ ରାଜା ସୈନ୍ୟ ପକାଇଲା ଦଳି ।
ସପତଦିନ ପର୍ଯ୍ୟନ୍ତ ସମର ହୋଇଲା
ହାରିଣ ସେ କୃତକେଶୀ ରଣ ଉପେକ୍ଷିଲା ।
ନାରକା ଅସୁର ସଙ୍ଗେ ପ୍ରୀତି ଆରମ୍ଭିଲେ
ବେନିରାଜା ପରସ୍ପରେ ମଇତ୍ର ହୋଇଲେ ।
ଯେ ଯାହାର ପୁରକୁ ସେ କଲେକ ଗମନ
ଏଥୁ ଅନନ୍ତରେ ପୁଣି ଗଲା କିଛି ଦିନ ।
ଶ୍ରୀକୃଷ୍ଣଙ୍କର ଦୋରେହା ହୋଇ ଶତଧନୁ
ଯେଉଁକାଳେ ପଳାଇଲେ ଦ୍ୱାରକା ଭୁବନୁ ।
କୃତକେଶୀ ରାଜାରେ ସେ ପଶିଲା ଶରଣ
ତାହା ଜାଣି ଦୀନବନ୍ଧୁ ମିଳିଲେଖି ପୁଣ ।
ଗୋଳଯୁଦ୍ଧ କରି ହରି କୃତକେଶୀ ନାଶି
ଆଗହୁଁ ସେ କଥା ତୋତେ କହିଛି ବିଶେଷି ।
ପିତା ନିଧନରେ ପୁତ୍ର ରାଜ୍ୟଭ୍ରଷ୍ଟ ହେଲା
ସଉଘନ ନାମେ ପୁତ୍ର ପଳାଇଣ ଗଲା ।
ନାରକାସୁର ଭବନେ ପ୍ରିୟଭାବେ ଥିଲା
ପିତାଶତ୍ରୁ ବୋଲି ଜାଣି ଯୁଦ୍ଧକୁ ଅଇଲା ।
ପଞ୍ଚାଶୋଇ ସସ୍ର ତାର ଥିଲେ ଅଙ୍ଗବଳ
ଘେନିଣ ମିଳିଲା ଜଗନ୍ନାଥଙ୍କ ଛାମୁର ।
ରେରେକାର ଶବ୍ଦ କରି ଗର୍ଜନ କରଇ
ଧନୁ ଧରି ଶର ଯୋଖି ଆକର୍ଣ୍ଣ ଟାଣଇ ।
ଦୂରହୁଁ ଡାକଇ ମୋର ବାଣକୁ ସମ୍ଭାଳ
ପିତାର ବଇରୀ ଯେଣୁ ଶତ୍ରୁ ତୁ ମୋହର ।
ଏତେକାଳ ଦଇବ ଯେ ଭେଟାଇଲା ଆଣି
ଆଜ ଏ ମାଂସ ଖାଇବ ତୋର ଗୋସାମଣି ।
ଏ କଥା ଶୁଣି ହସନ୍ତି କୃଷ୍ଣ ମନେ ମନ
ଶୁଣ ତୁରେ କୃତକେଶୀ ରାଜାର ନନ୍ଦନ ।
ତୋର ପିତା ଏକଦିନେ ସ୍ୱର୍ଗପୁରେ ଗଲା
ତାହାର ଆଜ ତୋତେରେ ସଙ୍ଖୋଳା ପଡ଼ିଲା ।
ପିତାର ସଙ୍ଗରେ ଏବେ ତୁହି ସ୍ୱର୍ଗେ ଯାଅ
ଏବେ ତୋହର ମନରେ ହୋଇଲା ତନୟ ।
ଏମନ୍ତ ଭେଟ ହୋଇଣ ସେହି ବେନି ଥାଟ
ଲାଗିଲାକ ସମର ଯେ ଅତି ଅମରାଟ ।
ବଜ୍ର ଶକତି ଅସୁର ଗୁଣରେ ବସାଇ
ଶ୍ରୀକୃଷ୍ଣଙ୍କ ଉପରକୁ ବିନ୍ଧେ ରୋଷବହି ।
ତାହା ଦେଖି ଦୀନବନ୍ଧୁ ଶଙ୍ଖଧ୍ୱନି କଲେ
ଶାର୍ଙ୍ଗଧନୁ ଧରି ଦୃଢ଼ ମୁଷ୍ଟିରେ ରହିଲେ ।
ତେଜ ବିରାଜଇ ତାଙ୍କ କୋଟି ସୂର୍ଯ୍ୟ ଜିଣି
ନୀଳଜୀମୁତ ଉଦୟ ହେଲା କି ଧରଣୀ ।
କଟିରେ କଟିମେଖଳା ଥାଇ ପୀତାମ୍ବର
ହୃଦୟରେ ଶୋଭାପାଏ ହେମ ପଦ୍ମମାଳ ।
କର୍ଣ୍ଣରେ କୁଣ୍ଡଳ କିବା ରବିଙ୍କର ଜ୍ୟୋସ୍ନା
କପାଳେ ଶୋହେ ତିଳକ ପୁଣି ଗୋରଚନା ।
ଅପୂର୍ବ ମୂରତି ପ୍ରଭୁ ଦେବେ ଅଗୋଚର
ଶୂଦ୍ରମୁନିର ଭକତି ଶ୍ରୀକୃଷ୍ଣ ପୟର ।
ଝଙ୍କଡ଼ପୁର ବାସିନୀ ଶ୍ରୀଶାରଳା ଚଣ୍ଡୀ
କର ଅନୁଗ୍ରହ ପାପଭାରା ହେଉ ଖଣ୍ଡି ।
ମାଗୋ ମୁହିଁ ଆଶ୍ରା କରି ରହିଅଛି ତୋତେ
ଏହି ସଂସାର ସାଗରୁ ତରିବା ନିମନ୍ତେ ।
ମଧ୍ୟପର୍ବର ଏହି ଯେ ଅପୂର୍ବ ଆଖ୍ୟାନ
ଶ୍ରୀ ଶାରଳା ଦାସ ନିଜେ କରଇ ଲିଖନ ।
ପରମ ସାଧ୍ୱୀ ଶ୍ରୀଚଣ୍ଡୀ ଚରଣେ ଉକତି
ଆଜ୍ଞାଦିଅ ମଧ୍ୟପର୍ବ କରିବି ଭକତି ।
ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
କେବଣ ସ୍ୱରୂପେ ଯୁଦ୍ଧ ହୋଇଲା ଏଣିକି ।
କହ ମହାମୁନି ସେହି ପବିତ୍ର ଆଖ୍ୟାନ
ଶରୀର ନିର୍ମଳ ମୋର କର ତହୁଁ ପୁଣ ।
କହନ୍ତି କୁମ୍ଭ ଋଷିଙ୍କ ସୁତ ପରଶଂସି
ଏକମନ ହୋଇଣ ତୁ ଶୁଣ ସୋମବଂଶୀ ।
ନାରକାର ସୁତ କୃତକେଶୀର ନନ୍ଦନ
ଏହାଙ୍କର ତୁଲେ ରଣ କଲେ ଭଗବାନ ।
କୃତକେଶୀର ନନ୍ଦନ ନାମ ସଉଘନ
ଶକ୍ତିଏ ମାଇଲା ଜଗନ୍ନାଥ ଉପରେଣ ।
ଚଳିଲା ଶକତି ବେଗ କରି ଘୋର ନାଦ
ଦୂରହୁଁ ଛେଦିଲେ ଚକ୍ର ପେଶି ଦେବରାଜ ।

ହାବୋଡ଼ା ନାମେଣ ଶର ଗୁଣରେ ବସାଇ
ବିନ୍ଧିଲା ବିନତା ସୁତ ଉପରକୁ ଚାହିଁ ।
ଚଳିଗଲାକ ନାରାଚ ଅତି ପରଚଣ୍ଡ
ହାବୋଡ଼ାଗଲା ଗରୁଡ଼ ପରେ ଯାଇ କାଣ୍ଡ ।
ଘୁଞ୍ଚିଗଲା ବୈନତେୟ ଷାଠିଏ ଯୋଜନ
ସମ୍ଭାଳି ନ ପାରିଲା ସେ ଶରର ତେଜେଣ ।
ପଲକମାତ୍ରେ ସେ ତହୁଁ ଯୁଦ୍ଧେ ଆସି ମିଳି
ଦେଖିଣ କୋପ କରିଲେ ପ୍ରଭୁ ବନମାଳୀ ।
ବଜ୍ର ଶକତିଏ ଦେବ ଗୁଣରେ ବସାଇ
ବିନ୍ଧିଲେକ ଗୋପୀନାଥ ଅସୁରଙ୍କୁ ଚାହିଁ ।
ଚଳିଲା ନାରଚ ଜିଣି ଆଦିତ୍ୟଙ୍କ ଜ୍ୟୋସ୍ନା
କାଟିଲାକ କୃତକେଶୀ ନନ୍ଦନର ଡେଣା ।
ରଥ ସହିତ ସାରଥି ମୁଣ୍ଡଗୋଟି ହାଣି
ଛିଡ଼ି ଅଶ୍ୱ ଶିର ପୁଣି ଲୋଟିଲା ଧରଣୀ ।
ଏକ କରେ ଗଦା ଘେନି ଅସୁର ଧାଇଁଲା
ପାଟି ବିସ୍ତାରିଣ ନିରିଘାତ ରଡ଼ିକଲା ।
ତାହା ଦେଖିଣ କତୁରୀ ବାଣ ଦେବ ଘେନି
ଅସୁର ପରେ ବିନ୍ଧିଲେ ଧନୁର୍ଗୁଣ ଟାଣି ।
ପ୍ରଚଣ୍ଡ ଶବଦ କରି ସେହି ଶର ଗଲା
କୃତକେଶୀ ନନ୍ଦନର ମୁଣ୍ଡଳି କାଟିଲା ।
ଆବର ଯେତେକ ତହିଁ ସୈନ୍ୟଗଣ ଥିଲେ
ପାଶୁପତ ନାରାଚରେ ସର୍ବେ ନାଶଗଲେ ।
ନାରକାର ବେନିସୁତ ବେନିଭାଗେ ହୋଇ
ଯୁଦ୍ଧ କରୁଥିଲେ ଦୁହେଁ ଶ୍ରୀକୃଷ୍ଣଙ୍କୁ ଚାହିଁ ।
ଦେଖି ତାଙ୍କୁ ଦୀନବନ୍ଧୁ ମହାକୋପ କଲେ
ସହସ୍ରେ ନାରାଚ ନେଇ ଗୁଣେ ବସାଇଲେ ।
ରଥୀକେ ପଚିଶ ଗଜେ ପାଞ୍ଚବାଣ ମାରି
ସୈନ୍ୟ ପ୍ରତି କାଣ୍ଡେ କାଣ୍ଡେ ମାଇଲେ ଶ୍ରୀହରି ।
ପଡ଼ିଲେ ଦୈତ୍ୟ ଛାଡ଼ିଲା ତାଙ୍କ ସ୍ନେହାମାନ
ପୁଣି ପେଶିଲେ ଶତେକ ବାଣ ଭଗବାନ ।
ନାରକା ଅସୁର ସୁତେ ଯୁଦ୍ଧ କରୁଥିଲେ
ବିଷମ ଆଘାତ ପାଇ ଛାଡ଼ି ପଳାଇଲେ ।
ଅରୁଣ ବୋଲି ଯେବଣ ସୁତ ଥିଲା ତାର
ଖଣ୍ଡେ ଦୂରକୁ ଯାଇଣ କଲାକ ବିଚାର ।
ଅବଶ୍ୟ ମରଣ ଆମ୍ଭ ଅଟଇ ନିୟତ
ରଣଯାଗ ହୋଇଅଛି ଏତେ ପରାପତ ।
ପଳାଇଗଲେ ବଇରୀ ନିଉନ ଦେଖିବ
ରାଜ୍ୟ ସମ୍ପଦ ଆବର ସକଳ ନାଶିବ ।
ଏତେକ ବିଚାରି ବାହୁଡ଼ିଣ ବିଜେ କଲା
ରତ୍ନମୟ ରଥେ ଚଢ଼ି ସମରେ ମିଳିଲା ।

ଶକତି ଏକ ଧରିଣ ଗୁଣରେ ବସାଇ
ଗର୍ଜି ଘୋରନାଦ କରି ଅସୁର ତନୟୀ ।
ଘୋର ଶବଦ କରିଣ ଶକ୍ତି ଚଳିଗଲା
ଶ୍ରୀଜଗନ୍ନାଥ ଦେବଙ୍କ ଉପରେ ପଡ଼ିଲା ।
ସେ ଶକତି ପ୍ରହାରଣେ ଦେବ ଭଗବାନ
ଗରୁଡ଼ରେ ବସିଲେକ ନିଶ୍ଚଳ ହୋଇଣ ।
ଫୁଲମଣ୍ଡା ଏକ ଯେହ୍ନେ ନିଜ କରେ ଧରି
କୁଞ୍ଜର ଉପରେ ନେଇ ଯେସନେ ପ୍ରହାରି ।
ଶ୍ରୀକୃଷ୍ଣପରେ ଶକତି ତେସନେକ ବାଜି
ବେନିଖଣ୍ଡ ହୋଇ ବେଗେ ପଡ଼ିଲାକ ଭାଜି ।
ପୁଣି ତ୍ରିଶୂଳେକ ଧରି ରେରେକାର କରି
ପିଟିଲା ନେଇ ତାହାକୁ ଶ୍ରୀକୃଷ୍ଣ ମଉଳି ।
ଶୂନ୍ୟେ ଥାଇଣ ଦେଖିଣ ତାହା ସୁରେଶ୍ୱର
ଚକ୍ରପେଶି ତାହା ଛେଦ କଲେ ଚକ୍ରଧର ।
ପୁଣି ଆଉଥରେ ଚକ୍ର ପେଶିଲେ ଶ୍ରୀହରି
କାଟିଲେ ଅସୁର ମୁଣ୍ଡ ବେନିଖଣ୍ଡ କରି ।
ରତ୍ନ ମୁକୁଟ ଆବର କିରୀଟ କୁଣ୍ଡଳ
ଭୂମିପରେ ଛିଡ଼ିପଡ଼ି ଦିଶିଲା ସୁନ୍ଦର ।
ହାହାକାର ଶବଦ ଯେ ଅନ୍ତଃପୁରେ ପଡ଼ି
ନାରକାର ବଧୂମାନେ ଘୋର ରାବ କରି ।
ଶୂନ୍ୟେ ଥାଇ ଦେବଲୋକେ ତାହା ଦେଖୁଥିଲେ
ଅଧାସ୍ୱର୍ଗେ ରହି ଜୟ ଜୟ ଶବ୍ଦ କଲେ ।
ଶୂନ୍ୟରୁ ଯେ ପୁଷ୍ପବୃଷ୍ଟି କଲେ ଦେବ୍ନରହି
ତ୍ରାହି ତ୍ରାହି ଶବଦରେ ଶିରେ କର ଦେଇ ।
ଭୂମି ନବରୂପ ଧରି ଦୈତ୍ୟପୁରେ ଥିଲା
ପୁତ୍ର ନାତିମାନଙ୍କର ମରଣ ଶୁଭିଲା ।
ସକଳ ସମ୍ପଦ ତହୁଁ ସଙ୍ଗତରେ ଘେନି
ଶ୍ରୀକୃଷ୍ଣେ ଯାଇଣ ସେହୁ ଭେଟିଲା କାମିନୀ ।
ହରିଣ୍ୟର ରତ୍ନମାଳା ଅମୃତ କୁଣ୍ଡଳ
ବରୁଣର ଦଣ୍ଡଛତ୍ର ଘେନିଣ ବାହାର ।
ବନମାଳା ଏକ କରେ ଧରିଣ କାମିନୀ
ଶ୍ରୀକୃଷ୍ଣଙ୍କ ଗଳେ ତାହା ଲମ୍ବାଇଲା ଆଣି ।
ସୁବର୍ଣ୍ଣ ଥାଳିରେ ତହୁଁ ଷଡ଼ଅର୍ଘ୍ୟ ଘେନି
ଅଭୟ ପାଦପଦ୍ମରେ ପୂଜିଲା ରମଣୀ ।
ପୁଣି ବେନିକର ଯୋଡ଼ି ବୋଲଇ ବଚନ
ତୁମ୍ଭେ ଅଟ ପ୍ରଭୁ ଦେବ ଦେବ ଭଗବାନ ।
ଶଙ୍ଖଚକ୍ରଧାରୀ ତୁମ୍ଭେ ଗରୁଡ଼ ବାହନ
ଶରଣ ରକ୍ଷଣ ଦେବ ପତିତପାବନ ।
ଜୟ ଜୟ ଜଗନ୍ନାଥ ଦୈତ୍ୟ ନିବାରଣ
ଭକତଜନ ରକ୍ଷଣ ଦୁଃଖ ବିମୋଚନ ।

ପର ଉପରେ ହେ ତୁମ୍ଭେ ଦେବ ଅଟ ସିନା
ଚାରିଖାନି ପାଳକ ଯେ ଜଗତ ମୋହନା ।
ପଳାନ ସମୟେ ତୁମ୍ଭେ ବହିଥାଅ ତମ
ଉପଜିବା କାଳେ ତୁମ୍ଭେ ବହ ରଜଗୁଣ ।
ଏବେ ତୁମ୍ଭ ପାଦେ ମୁହିଁ ପଶିଲି ଶରଣ
ନାରକାସୁର ପୁତ୍ରକୁ ରଖ ନାରାୟଣ ।
ତୁମ୍ଭ ପାଦପଦ୍ମେ ନାଥ ଅଛଇ ଯେ ଶୋଇ
ଶିର କମଳରେ ମୋର ବେନିକର ଦେଇ ।
ଏହାକୁ ତୁ ଏବେ ରକ୍ଷାକର ଜଗନ୍ନାଥ
ଘୋଡ଼ାଅ ଏହୁ ନିରେଖ ଜନ ପଦ୍ମମୁଖ ।
ଭୂମିର ବଚନେ ଦେବ କ୍ରୋଧ ଉପେକ୍ଷିଲେ
ଅଭୟବର ନାରକା ପୁତ୍ର ଶିରେ ଦେଲେ ।
ଆବର ତାହାକୁ ରାଜ୍ୟେ ରାଜପଣ ଦେଲେ
ସୁବର୍ଣ୍ଣ ମୁକୁଟ ଶିରେ ନେଇ ବନ୍ଧାଇଲେ ।
ରାଜାର ନଗରେ ତହୁଁ ଯାଇ ବିଜେ କଲେ
ପାତ୍ର ଅମାନତ୍ୟଗଣେ ବେଗେ ଅଣାଇଲେ ।
ଯେ ଯାହାର ଅଧିକାର ଦେଇ ଜଗନ୍ନାଥ
ଛତ୍ର ଧରାଇଣ ତାକୁ କଲେ ପୁରୁଷାର୍ଥ ।
ତହୁଁ ଅନ୍ତଃପୁରେ ଦେବ ପଶିଲେକ ଯାଇ
ରାଜକନ୍ୟାମାନେ ଯହିଁ ଛନ୍ତି ବନ୍ଦିହୋଇ ।
କନ୍ୟାଙ୍କର ବନ୍ଦିଘରେ ମିଳି ପଦ୍ମନେତ୍ର
ଷୋଳସହସ୍ର ଆବର ଛନ୍ତି ଏକଶତ ।
ଶ୍ରୀକୃଷ୍ଣଙ୍କର ରୂପକୁ ଚାହିଁ ସର୍ବନାରୀ
ଦେଖିଲେ ଏକୁ ଆରେକ ହୋଇ ଆଗସରି ।
ଚର୍ମଲୋଚନେ ମୋହନ ରୂପକୁ ସେ ଦେଖି
ପଲକ ନପଡ଼େ ସର୍ବେ ଚାହାଁନ୍ତି ନିରେଖି ।
ଜଡ଼ିତ ହୋଇଲା ସର୍ବଚିତ୍ତ କାମବାଣେ
ନ ପାରନ୍ତି ଚାଲି କେହୁ ଭେଡ଼ାଏତ କେଣେ ।
ଚିତ୍ତ ନିଶ୍ଚଳ କରିଣ ଚାହାନ୍ତି ଯୁବତୀ
ଦଇବ ଯେ ସମ୍ପାଦନ କଲା ଆଣି ପତି ।
ହୁଳହୁଳି ଦେଇ ତହୁଁ ସକଳ କାମିନୀ
ଶ୍ରୀକୃଷ୍ଣଙ୍କ ପାଦତଳେ ହେଲେ ପରିମାଣି ।
ଅପୂର୍ବ ସୁନ୍ଦରୀ ପାର୍ବତୀଙ୍କ ଅଂଶେ ଜାତ
ଭଳିଲେ ସେ ରୂପ ଗୁଣ ଦେଖି ପଦ୍ମନେତ୍ର ।
ପୂର୍ବ ପଶ୍ଚିମ ଆବର ଉତ୍ତର ଦକ୍ଷିଣ
ଚାରିଦିଗରେ ରାଜାଙ୍କୁ ଅସୁର ଜିଣିଣ ।
ସେମାନଙ୍କର ଦୁହିତା ଆଣି ଭୁଜବଳେ
ନଗରେ ରଖିଲା ବିଭା ହେବ ଏକ ବେଳେ ।
କନ୍ୟାଏ ଛନ୍ତି ଶ୍ରୀକୃଷ୍ଣ ଛାମୁରେଣ ରହି
ଚରଣ ଭୂମିରେ ଲୋଟି ଶିରେ କର ଦେଇ ।
ନମାମି ଜଗତବନ୍ଧୁ ଜଗତ ଜନର
ନମାମି ଦ୍ୱାପର ଦେବ କୃଷ୍ଣ ଅବତାର ।
ଖଳ ବିନାଶନେ ଦେବ କୃଷ୍ଣ ଅବତାର
ଭୋ ଦେବ କରୁଣା କରି ଆମ୍ଭଙ୍କୁ ଉଦ୍ଧାର ।
ଆମ୍ଭେମାନେ ତ ନିରେଖ ଅଟୁ ସ୍ତିରୀଗଣ
ଶ୍ରୀଚରଣ ତଳେ ପ୍ରଭୁ ରଖିବା ଶରଣ ।
ଜୟଶବ୍ଦ ଉଚ୍ଚାରିଲେ ତହୁଁ ନାରୟଣ
ବେଢ଼ିଲେ ଆକାଶେ ଯେହ୍ନେ ଚନ୍ଦ୍ରେ ତାରାଗଣ ।
ତାହା ଦେଖିଣ ଶ୍ରୀକୃଷ୍ଣ କରେ ଯମର୍ଜନ୍ତି
ରୁହ ରୁହ ନାରୀଗଣ ନକର ଗୋ ଭୀତି ।
ତମ୍ଭରି ପାଇଁ ଆସିଲି ସିନା ଏତେ ଦୂର
ଗୋଳଯୁଦ୍ଧ କରିଣ ମୁଁ ମାଇଲି ଅସୁର ।
ଏବେ ହୋ ଦ୍ୱାରକାପୁର ଗମନ ଗୋ କର
ମୁହିଁ ମନୋରଥ ସିଦ୍ଧ କରିବି ତୁମ୍ଭର ।
ଏତେକ ବୋଲିଣ ତହୁଁ ନନ୍ଦର ନନ୍ଦନ
ନାରକାସୁରର ଯେତେ ଅପୂରୁବ ଧନ ।
ଅଶୀ ସହସ୍ର ସେଠାରେ ଥିଲେକ କୁଞ୍ଜର
ଐରାବତ ହସ୍ତୀ କି ସେ ମର୍ତ୍ତ୍ୟେ ଅବତାର ।
ଅସୁର ପୁରେ ଅପୂର୍ବ ଦ୍ରବ୍ୟ ଥିଲା ଯେତେ
ଦ୍ୱାରକାକୁ ଘେନିଗଲେ କନ୍ୟାଙ୍କ ସହିତେ ।
ତହୁଁ ଦେବ ଜଗନ୍ନାଥ ଗରୁଡ଼ ଆରୋହୀ
ବରୁଣ ଛତ୍ର ଅମୃତ କୁଣ୍ଡଳକୁ ନେଇ ।
କଲେକ ସ୍ୱର୍ଗକୁ କଟକାଇ ଭଗବାନ
ଚଳିଯାନ୍ତି ଶଙ୍ଖଶବ୍ଦ ହୁଏ ଘନ ଘନ ।
ଶୂନ୍ୟେ ରହି ଦେବଲୋକେ ତାହା ଦେଖୁଥିଲେ
ସ୍ୱର୍ଗକୁ ଗମନ୍ତେ ସର୍ବେ ପଥରେ ଭେଟିଲେ ।
ଅଦିତିଙ୍କ ନବରରେ ଯାଇ ବେଗେ ପଶି
ଅମୃତ ବଚନ ଦେବ କହନ୍ତି ବିଶେଷି ।
ଅମୃତ କୁଣ୍ଡଳ ବନମାଳା ଥିଲେ ନେଇ
ଅଦିତିଙ୍କ କରେ ତାହା ସମର୍ପିଲେ ତହିଁ ।
ଦେଖିଣ ଅଦିତି ଦେବୀ ଆନନ୍ଦ ହୋଇଲେ
ଶ୍ରୀକୃଷ୍ଣଙ୍କୁ ଆସନରେ ନେଇ ବସାଇଲେ ।
ଶଚିଦେବୀଙ୍କ ସହିତେ ଦେବ ପୁରନ୍ଦର
ଆନନ୍ଦରେ ପୂଜାକଲେ ଶ୍ରୀକୃଷ୍ଣ ଯୟର ।
ଦେବଲୋକମାନେ ତାଙ୍କ ଛାମୁରେ ଯେ ମିଳି
ସ୍ତୁତି ପାଠ କଲେ ସର୍ବେ କରପତ୍ର ଯୋଡ଼ି ।
ଜୟ ଜୟ ଶ୍ରୀକୃଷ୍ଣ ହେ ପ୍ରସନ୍ନ ମୂରତି
ତୁମ୍ଭେ ସଞ୍ଚିଲାର ସିନା ଅଟେ ବାରସ୍ୱତୀ ।
ଯୁଗକୁ ଯୁଗ ନାଥ ଯେ ଅବତାର ତୋର
ଅସୁର ବିନାଶି ଦେବଗଣେ ରକ୍ଷାକର ।

କଂସ କେଶୀଙ୍କୁ ନାଶିଲ ଅଷ୍ଟମଲ୍ଲ ମୂଳେ
ଗୋବର୍ଦ୍ଧନ ତୋଳିଥିଲ ଗୋପୀଙ୍କର ଛଳେ ।
ଦାବାଅନଳ ଭକ୍ଷଣ କାଳୀୟ ନାଶନ
ନିଗୁଡ଼ ବନ୍ଧନୁ ମାତା ପିତା ଉଦ୍ଧାରଣ ।
ନାରକା ସହିତ ଥିଲେ ଦୈତ୍ୟଗଣ ଯେତେ
ମାରି ରଖିଲ ଦେବତାଗଣ ଯଦୁନାଥେ ।
ତେତିଶ କୋଟି ଦେବତା ଛାମୁରେ ମିଳିଣ
ଜୟ ଶବଦ ପଢ଼ନ୍ତି ସ୍ତୁତି ସ୍ତୋତ୍ରମାନ ।
ସନ୍ତୋଷ ହୋଇଣ ତହୁଁ ପ୍ରଭୁ ଦେବରାୟେ
ମେଲାଣି ମାଗିଲେ ଦେବ ଅଦିତିଙ୍କ ପାୟେ ।
ସନ୍ତୋଷ କରାଇ ତାଙ୍କୁ ଦେବ ଭଗବାନ
ଦ୍ୱାରକାପୁରେ ଚଳିଲେ ଗରୁଡ଼ ଚଢ଼ିଣ ।
ସଙ୍ଗତରେ ଛନ୍ତି ତାଙ୍କ ସାଧ୍ୱୀ ଶତ୍ରାବତୀ
ତାହାଙ୍କୁ ଘେନି ବାହାର ହେଲେ ଯଦୁପତି ।
ପଥେ ଯାଆନ୍ତେ ନନ୍ଦନ କାନନରେ ମିଳି
ଶୂନ୍ୟପଥରେ ଗରୁଡ଼ ଯାଏ ପକ୍ଷ ଚାଳି ।
ନନ୍ଦନ ନାମରେ ବନ ଅଟେ ସେହୁ ପୁଣ
ନାନାଦି ବୃକ୍ଷ ତହିଁ ଦିଶେ ଶୋଭାବନ ।
ନାନାବର୍ଣ୍ଣେ ପୁଷ୍ପ ତହିଁ ପାରିଜାତ ବନ
ଗନ୍ଧ ପ୍ରକଟଇ ସ୍ୱରଗର ସର୍ବସ୍ଥାନ ।
ପୁଷ୍ପେ ପରିପୂର୍ଣ୍ଣ ସେହି ପାରିଜାତ ବନ
ତା ଦେଖି ନେବାକୁ ବଳେ ସତ୍ୟଭାମା ମନ ।
ସ୍ୱାମୀଙ୍କ ମୁଖକୁ ଚାହିଁ ବୋଲେ ସତ୍ୟାସତୀ
ଶୁଣ ହେ ଦେବ ଅନନ୍ତ ବ୍ରହ୍ମାଣ୍ଡର ପତି ।
ମର୍ତ୍ତ୍ୟପୁରେ ନାହିଁ ଦେବ ପାରିଜାତ ବନ
ରୋପିବ ନେଇ ସ୍ୱରଗପୁର ଉପବନ ।
ଏତେ ବୋଲି କହି ଦେବୀ ଶିରେ କରଦେଇ
ଶ୍ରୀକୃଷ୍ଣଙ୍କ ଚରଣରେ ପ୍ରଣିପତ୍ୟ ହୋଇ ।
ଏହା ଶୁଣି ଜଗନ୍ନାଥ ଗରୁଡ଼କୁ ଚାହିଁ
ରହ ପକ୍ଷୀରେ ନନ୍ଦନବନେ ଆମ୍ଭେ ଯାଇ ।
ଆଜ୍ଞା ପାଇଣ ଗରୁଡ଼ ଶୂନ୍ୟରୁ ଖସିଲା
ନନ୍ଦନବନ ନିକଟେ ଯାଇଣ ମିଳିଲା ।
ଗରୁଡ଼ ପୃଷ୍ଠୁ ଉଭୁରି ଦେବକୀ ନନ୍ଦନ
ତୋଟାଦ୍ୱାରେ ବିଜେ କଲେ ଶ୍ରୀମଧୁସୂଦନ ।
ଲକ୍ଷେକ ଗନ୍ଧର୍ବେ ତହିଁ ତୋଟା ରଖିଥିଲେ
ଶ୍ରୀକୃଷ୍ଣଙ୍କୁ ଦେଖି ବେଗେ ପଥ ନିରୋଧିଲେ ।
କାହିର ମାନବା ପଶୁ ତୋଟାରେ ତୁ ଯାଇ
ତୋହର ମନରେ କିଛି ଭୟଭ୍ରାନ୍ତି ନାହିଁ ।
ଇନ୍ଦ୍ରରାଜା ଦୂତ ଆମ୍ଭେ ତୋଟା ରଖିଥାଉଁ
ତାହାର ବିନା ଆଜ୍ଞାରେ ପ୍ରବେଶି ନ ଦେଉଁ ।
ତୁ କେବଣ ଭରସାରେ ପଶରେ ମାନବ
ରହ ରହ ବୋଲି କରି ଓଗାଳିଲେ ସର୍ବ ।
ତାହା ଦେଖି ଜଗନ୍ନାଥ ବୋଲନ୍ତି ବଚନ
କହ ଯାଇ ତୁମ୍ଭେ ବେଗେ ରାଜାର ଆଗେଣ ।
ଏତେ ବୋଲିକରି ପ୍ରଭୁ ପଶିଲେ ଧସାଇ
ଶୁଣି ହିଁ ନିରୋଧ କଲେ ଗନ୍ଧରବେ ଯାଇ ।
ଆରେ ଆରେ ବୋଲି କରି ପୁଣି ହିଁ ଡାକିଲେ
ତାହା ଦେଖି ଦେବ ଯଦୁପତି କୋପକଲେ ।
ଶ୍ରୀକୃଷ୍ଣ କୁପିତ ହେବା ଜାଣି ଖଗବର
ଡେଣା ବିସ୍ତାରି ବାହିଲେ ବିନତା କୁମର ।
ପକ୍ଷବାତେ ଗନ୍ଧରବମାନେ ଉଡ଼ିଗଲେ
ଲକ୍ଷେ ଯୋଜନରେ କେହୁ ଦ୍ୱିଲକ୍ଷେ ପଡ଼ିଲେ ।
ତୋଟା ଭିତରେ ପେଶିଲେ ଦେବ ଭଗବାନ
ଲୋଡ଼ନ୍ତି କେଉଁଠି ଅଛି ପାରିଜାତ ବନ ।
ଇନ୍ଦ୍ରରାଜା ଆଗେ ଯାଇ କହିଲେ ଡଗର
ଶୁଣ ଆହେ ଶଚୀପତି ସ୍ୱରଗ ଠାକୁର ।
ଶ୍ରୀକୃଷ୍ଣ ପ୍ରଭୁ ସ୍ୱରଗପୁରେ ଆସୁଥିଲେ
ଆସନ୍ତେ ନନ୍ଦନବନେ ପ୍ରବେଶ ହୋଇଲେ ।
ସତ୍ୟଭାମାଙ୍କ ବଚନେ ପାରିଜାତ ବନ
ମର୍ତ୍ତ୍ୟପୁରେ ଘେନିଯିବେ ପୁରୁଷ ଉତ୍ତମ ।
ତୋଟା ଦ୍ୱାରାଦେଶେ ପ୍ରଭୁ ମିଳିଲେକ ଯାଇ
ଜାଣିଣ ଗନ୍ଧର୍ବବଳ ନିରୋଧିଲେ ତହିଁ ।
ଦେଖି ଦେବ ଦୀନବନ୍ଧୁ ତାଙ୍କୁ କୋପ କଲେ
ଗନ୍ଧର୍ବେ ଗରୁଡ଼ ପକ୍ଷବାତେ ଉଡ଼ିଗଲେ ।
ତାହା ଶୁଣି ସୁରପତି ସ୍ତବଧ ହୋଇଣ
ମହା କ୍ରୋଧଭରେ ସେହୁ କହଇ ବଚନ ।
ଯାଅ ଡଗର ଦେବଙ୍କୁ କହ ବେଗେ ଯାଇ
ଆସନ୍ତୁ ତେତିଶକୋଟି ଦେବ ସଜହୋଇ ।
ଏତେ ବୋଲି ଇନ୍ଦ୍ରଦେବ ସ୍ୱୟଂ ସଜହେଲେ
ଐରାବତ ହସ୍ତୀପୃଷ୍ଠେ ଯାଇଣ ବସିଲେ ।
ବଜ୍ରକରେ ଧରି ଚମକଇ ସୁରପତି
ସାଜ ସାଜ ବୋଲି କରି ଡଗରେ ଡାକନ୍ତି ।
ବାଜେ ଟମକ ନିଶାଣ ଆଦି ଗୁରୁଟାଣ
ଚମକ ପଡ଼ିଲା ବାରସ୍ୱତୀର ଭୁବନ ।
ଚନ୍ଦ୍ର ସୂର୍ଯ୍ୟଙ୍କ ସହିତେ ଚାରିମେଘ ଘେନି
ଯମ ନଇରତ ପୁଣି ପବନ ବହନି ।
ଏକାଦଶ ରୁଦ୍ର ହୋଇଲେକ ଏକମେଳ
ସାଜିଲେ ଗନ୍ଧର୍ବ ଦିଗପାଳ ସେ ସକଳ ।
ଯେତେ ନକ୍ଷତ୍ର ଆବର ତିଥି ଆଦିକରି
ଯୋଗ କରଣ ବାହାର କଲେ ଶସ୍ତ୍ର ଧରି ।

ବୈଶାଖ ଶୁକ୍ଳପଞ୍ଚମୀ ତିଥି ଗୁରୁବାର
ଶ୍ରବଣା ନକ୍ଷତ୍ର ଭୋଗ ଅଟେ ସେଦିନର ।
ଧୃତି ନାମେ ଯୋଗ ତଇତିଳ ଯେ କରଣ
ନବମ ଘରରେ ଚନ୍ଦ୍ର ବିଜୟ ସେଦିନ ।
ସାଜସାଜ ବୋଲିକରି ସ୍ୱର୍ଗେ ପଡ଼େ ଡାକ
ନାନାବାଦ୍ୟ ଶବଦରେ ଆକାଶ ଚମକ ।
ମିଳିଲେ ନନ୍ଦନବନ ପାଶେ ବେଗେ ଯାଇ
ଦ୍ୱାରେ ଥାଇଣ ଦେଖନ୍ତି ତାହା ଲକ୍ଷ୍ମୀ ସାଇଁ ।
ବିଚାରନ୍ତି ଦେବଗଣ ଅଟନ୍ତି ଅଜ୍ଞାନ
ଦେଖିବାକୁ ଆଜ ସୁରପତି ବଡ଼ପଣ ।
ଏମନ୍ତ ମନେ ବିଚାରି ଦେବ ଭଗବାନ
ପାରିଜାତ ବୃକ୍ଷ ଦେବ ଉପାଡ଼ି ବହନ ।
ରଖିଲେ ବୃକ୍ଷ ଗରୁଡ଼ ମସ୍ତକରେ ନେଇ
ବଇନତେୟ ଉପରେ ବିଜୟ ଗୋସାଇଁ ।
ପ୍ରିୟାଙ୍କୁ କୋଳେ କରିଣ ବୋଲନ୍ତି ବଚନ
ଶୁଣ ଦେବୀ ଦେବଗଣଙ୍କର ବଡ଼ପଣ ।
ପାରିଜାତ ପୁଷ୍ପବନ ପାଇଁ ପୁରନ୍ଦର
କ୍ରୋଧେ ଆସିଅଛି ଦେବୀ କରିବ ସମର ।
ମାୟାରେ ବିହ୍ୱଳ ହୋଇଅଛି ବଜ୍ରଧର
କରିବ ସମର ଆସି ମୋହର ଛାମୁର ।
ଜାଣିବଇଁ ଆଜ ଦେବଙ୍କର ବଡ଼ପଣ
ଭାଙ୍ଗି କରିବି ସ୍ୱର୍ଗର ସ୍ଥାନ ରଣଭଣ ।
ଏତେକ ବିଚାର କରନ୍ତେଣ ଚକ୍ରଧର
ଆଗୁଆଣି ଥାଟମାନ ମିଳିଲେ ଛାମୁର ।
ଚାରିମେଘ ଘେନିକରି ପବନ ବାହାର
ଶୂନ୍ୟରେ ଘୋଟିଲେ ଜଗନ୍ନାଥଙ୍କ ଉପର ।
ଝଟଝଟ ବିଜୁଳି ଯେ ମାରେ ଶୂନ୍ୟେ ଥାଇ
ପ୍ରଳୟ କାଳ ପ୍ରାୟେକ ଘୋଟିଲେକ ଯାଇ ।
ବର୍ଷଣ କରନ୍ତି ଜଳ ମିଶାମିଶି କରି
ବଜ୍ର ପ୍ରାୟେକ ପ୍ରସ୍ତରମାନ ଯେ ପ୍ରହାରି ।
ବହଇ ପବନ ଅଣଚାଷ ମୂର୍ତ୍ତି ଘେନି
ଚାହୁଁ ଚାହୁଁ ଅନ୍ଧକାର ଘୋଟେ ଶୂନ୍ୟଭୂମି ।
କରନ୍ତି ଗର୍ଜନ ଘଡ଼ଘଡ଼ି ମେଘମାନ
ଆଜି ପ୍ରଳୟ ହେବକି ଚଉଦ ଭୁବନ ।
ବଜ୍ର ଶବଦ କରଇ ଦେବ ମଘବାନ
ଅଠର ଖଣ୍ଡ ଘୋଟିଣ କରନ୍ତି ଗର୍ଜନ ।
ଗରୁଡ଼ର ପକ୍ଷତଳେ ରହି ଭଗବାନ
ବୋଲନ୍ତି ଦେଖିବା ଦେବତାଙ୍କ ବଡ଼ପଣ ।
ଶ୍ରୀକରେ ଚକ୍ର ଘେନିଣ ଦେବ ଦଇତ୍ୟାରି
ମେଘଙ୍କ ପରେ ପଶିଲେ ମହାକ୍ରୋଧ କରି ।

ଚଳିଗଲା ଚକ୍ର ଯାର କୋଟିସୂର୍ଯ୍ୟ ଜ୍ୟୋତି
ଚାରିମେଘ ଭାଜି ହୋଇ ଗଲେ ଛିନ୍ନମୂର୍ତ୍ତି ।
ପବନ ସ୍ତମ୍ଭିତ ହୋଇ ହୋଇଲା ନିଉନ
ଛାଡ଼ିଲା ଅନ୍ଧାର ଦିଶିଗଲା ଦିଗମାନ ।
ଐରାବତ ପୃଷ୍ଠେ ବସି କରେ ବଜ୍ରଧରି
ଶ୍ରୀକୃଷ୍ଣ ଛାମୁରେ ଇନ୍ଦ୍ର ମିଳେ କୋପକରି ।
ଦୂରହୁଁ ବୋଲଇ ଆରେ ଗଉଡ଼ ବାଉଡ଼
କିମ୍ପା ହାଲହୋଳି କରୁଅଛୁ ଆରେ ମୂଢ଼ ।
ପଶିଲୁ ମୋର ନନ୍ଦନନବନେ କାହିଁପାଇଁ
ପାରିଜାତ ପୁଷ୍ପ ନେବୁ କିମ୍ପା ମର୍ତ୍ତ୍ୟ ଭୂଇଁ ।
ଦେବତାଙ୍କ ବିନୁ ତାହା ଅନ୍ୟେ ଭୋଗ ନାହିଁ
ଦେବଙ୍କ ପୁଷ୍ପ ନନ୍ଦନ ବନେ ସେହୁ ଥାଇ ।
ଦେବତାଙ୍କ ପୁଷ୍ପ କାହିଁନରେ ଭୋଗହୋଇ
ନ ଜାଣି ଅନର୍ଥ କର ଆସି ସ୍ୱର୍ଗଭୂଇଁ ।
ଛାଡ଼ିକରି ପୁଷ୍ପବନ ବେଗେ ଏଥୁଯାଅ
ମାନବର ଦେହଧରି ଗାରିମା ନ ବହ ।
ଖାଣ୍ଡବବନ ମୋହର ପାଣ୍ଡବା ଦହିଲା
ନନ୍ଦନବନ ଯୋଗରୁ ପାସୋର ତା ଗଲା ।
ତୁମ୍ଭେ କି ନ ଜାଣ ଏହା ଦେବତାଙ୍କ ବନ
କିମ୍ପାଇଁ ଅନର୍ଥ କର ଆସି ସ୍ୱର୍ଗସ୍ଥାନ ।
ଏତେକ କହିଣ ତହୁଁ ଦେବ ପୁରନ୍ଦର
ଐରାବତ କନ୍ଧେ ଥାଇ ସମରେ ବାହାର ।
ତେତିଶକୋଟି ଦେବତା କରେ ଶସ୍ତ୍ର ଧରି
ବେଢ଼ିଲେ ଯାଇଣ ଜଗନ୍ନାଥଙ୍କୁ ଆବୋରି ।
କେହି କାହାର ସହିତେ ସମର ନକରି
ସ୍ତବଧ ହୋଇଣ ରହିଅଛନ୍ତି ଆବୋରି ।
ଅଶୀ ସହସ୍ର ଅଛନ୍ତି ଇନ୍ଦ୍ରର ନନ୍ଦନ
ତାହାର ପଛରେ ଧାନ୍ତି ଶସ୍ତ୍ରକୁ ଧରିଣ ।
ସୋମସ୍ରବା ବୋଲି ଏକ ଇନ୍ଦ୍ରର ନନ୍ଦନ
ମଘବାକୁ ପଛକରି ଆବୋରିଲେ ରଣ ।
ତୀକ୍ଷ୍ଣ ନାରାଚ ଏକ ସେ ଗୁଣରେ ବସାଇ
ରେ ରେ କାର ଶବ୍ଦ କରି ବିନ୍ଧିଲା ତୁହାଇ ।
ଚଳିଗଲାକ ନାରାଚ ଘୋର ନାଦ କରି
ଘୋଟିଲା ଅନ୍ଧକାର ନ ଦିଶେ ବନପୁରୀ ।
ଶ୍ରୀକୃଷ୍ଣ ଦେବଙ୍କ କରେ ଚକ୍ର ପୁଣି ଥିଲା
ତହିଁରେ ବାଜି ସେ ଶର ବାହୁଡ଼ି ଅଇଲା ।
ତାହା ଦେଖିଣ ବସିଲେ ଦେବ ଭଗବାନ
ସମସ୍ୟା ନ ଦଅନ୍ତି ସେ ଦେବଙ୍କୁ ଚାହିଁଣ ।
ଇନ୍ଦ୍ରର ନନ୍ଦନ ଦେଖି ଶୁଣି କୋପକଲା
ପରବତା ନାମେ ଶର ଗୁଣେ ବସାଇଲା ।

ବୋଇଲା ଆମ୍ଭର ଶତ୍ରୁ ଅଟରେ ପାମର
ସମ୍ଭାଳ ସମ୍ଭାଳ ଏବେ ଏ ପର୍ବତା ଶର ।
ଏହା ଦେଖି ଜଗନ୍ନାଥ କୋପେ ଥରହର
ଧଇଲେ ଶାରଙ୍ଗଧନୁ କରେ ଦାମୋଦର ।
ପ୍ରଳୟ ଅନ୍ତକ ରୂପ ଧରି ଦେବସ୍ୱାମୀ
କୋପେ ଗୁରୁତର କିବା କାଳସର୍ପ ଜାଣି ।
ପର୍ବତାଶର ନିବାରି ବଜ୍ରଶର ଧରି
ପେଶିଲେ ସେ ଗନ୍ଧର୍ବର ପର କୋପକରି ।
ଚଳିଗଲା ସେହି ଶର ବିଦ୍ୟୁତେଜ ଜିଣି
ପର୍ବତାଶର କାଟିଣ ଲୋଟିଲା ଧରଣୀ ।
ପଡ଼ିଲା ସହସ୍ରବାର ପରେ ବାଣ ଯାଇ
ଫୁଟିଗଲା ବକ୍ଷସ୍ଥଳେ ଲୋଟିଲା ସେ ମହୀ ।
ଦେଖିଣ ଇନ୍ଦ୍ରଦେବତା କୋପେ ପରଖର
ଅଶୀସସ୍ର ପୁତ୍ରସହ ମିଳିଲା ଛାମୁର ।
ମଘବାଙ୍କୁ ପଛକରି ପୁତ୍ରେ ଯୁଦ୍ଧ କଲେ
ଯେ ଯାହାର ଶସ୍ତ୍ର ଧରି କୃଷ୍ଣଙ୍କୁ ବିନ୍ଧିଲେ ।
ଗୋଟିଏ ଊଣା ଅଶୀ ସହସ୍ର ଏ ନାରାଚ
ଏକାବେଳକେ ବିନ୍ଧିଲେ ଇନ୍ଦ୍ରର ତନୁଜ ।
ଶତେଦିନ ପୂରିଗଲା ହେଲା ଅନ୍ଧକାର
କି ଅବା ପ୍ରଳୟ ହେଲା ମହୀ ହେଲା ଭାର ।
ଦେଖି ଜଗନ୍ନାଥ ଦେବ କୋପେ ଥରହର
ଛେଦିଲେ ଏକ ନାରାଚ ବିନ୍ଧି ସବୁ ଶର ।
କ୍ରୋଧରେ ପେଶିଲେ ଅଗ୍ନିଶର ନାରାୟଣ
ଶୋଇଲେ ଅଶୀ ସହସ୍ର ସୁତ ଭୂମିରେଣ ।
ତା ଦେଖି ଇନ୍ଦ୍ର ଦେବର ନ ସ୍ଫୁରଇ କିଛି
ବୋଇଲେ ସମ୍ପତ୍ତି ମୋର ନାଶ ହେଉଅଛି ।
ଐରାବତ ଗଜେ ବସି କୋପେ ବଜ୍ରପାଣି
ଶ୍ରୀକୃଷ୍ଣ ଉପରେ ବଜ୍ର ପ୍ରହାରିଲା ଆଣି ।
ଦେଖିଣ ଶ୍ରୀଜଗନ୍ନାଥ ରତ୍ନେ ନିବାରିଲେ
ତେତିଶକୋଟି ଦେବଙ୍କୁ ଚାହିଁଣ ବୋଇଲେ ।
ଇନ୍ଦ୍ରଦେବତା ତୁମ୍ଭର ଅଟଇ ରାଜନ
ତାହାପାଇଁ ତୁମ୍ଭେ ଯୁଦ୍ଧ କରିବଟି ପୁଣ ।
ଏମନ୍ତ କହିଣ ପ୍ରଭୁଦେବ ଭଗବାନ
ବାବଲ ଶର ପେଶିଲେ ଇନ୍ଦ୍ର ଉପରେଣ ।
ଗଜ ଉପରେ ପଡ଼ିଲା ସେହି ଶସ୍ତ୍ର ଯାଇ
ଅଚେତେ ସେ ଗଜଇନ୍ଦ୍ର ପଡ଼ିଲେକ ଶୋଇ ।
ବାହନ ଅଭାବେ ପୁଣି ଦେବ ପୁରନ୍ଦର
ମହା କୋପାନଳେ ସେହି ଗର୍ଜେ ଫୁଫୁକାର ।
ତ୍ରିଦଶ ଦେବତାଗଣ ଶାଖୀ ପ୍ରାୟ ହୋଇ
ଦେଖନ୍ତି ଇନ୍ଦ୍ର ଗୋବିନ୍ଦ ଯୁଦ୍ଧ ତହିଁ ରହି ।

ତହୁଁ ସୁରପତି ଅଶ୍ୱ ଉପରେ ଆରୋହି
ଗୋବିନ୍ଦଙ୍କର ଛାମୁରେ ମିଳିଲାକ ଯାଇ ।
କୋପେ ଗୁରୁତର ଇନ୍ଦ୍ର ପୁତ୍ରଙ୍କ ଶୋକରେ
ଶୁଣି ଧନୁ ଧରି କରେ ବାହାର ସମରେ ।
ସହସ୍ରେକ ନାରାଚ ସେ ଗୁଣରେ ବସାଇ
ପୁତ୍ରମାନଙ୍କ ଶୋକରେ ବିଜେ ଶଚୀସାଇଁ ।
ତାହା ଦେଖି ଭଗବାନ ଶଙ୍ଖନାଦ କଲେ
ବାବଲ ଶର ପେଶିଣ ତା ଶିର ନାଶିଲେ ।
ମୋହନ ଶର ଶ୍ରୀକୃଷ୍ଣ ଗୁଣରେ ବସାଇ
ବିନ୍ଧିଲେ ଦେବଗଣଙ୍କୁ ଜଗନ୍ନାଥ ଚାହିଁ ।
ଚଳିଲା ଶର ପ୍ରଳୟକାଳ ସିନ୍ଧ ଜାଣି
ଘୋଟିଲା ଅନ୍ଧକାର ଯେ ନ ଦିଶେ ଧରଣୀ ।
ଇନ୍ଦ୍ରଙ୍କୁ ମୁଖ୍ୟ କରିଣ ସର୍ବ ଦେବଗଣ
ଶସ୍ତ୍ର ଛାଡ଼ିଣ ଶୋଇଲେ ଭୂମି ଉପରେଣ ।
ଇନ୍ଦ୍ର ନଇରତୁ ପୁଣି ପବନ ବରୁଣ
ଦଶଦିଗପାଳ ଆଉ ନବଗ୍ରହଗଣ ।
କାହାର ଦେହରେ ଏବେ ଚଇତନ୍ୟ ନାହିଁ
ଅସାକ୍ଷମ ହୋଇ ସର୍ବେ ଶୋଇଛନ୍ତି ଭୂଇଁ ।
ଶୂନ୍ୟେ ରହିଣ ନାରଦ ଏହା ଦେଖୁଥିଲେ
ତହୁଁ ଯଶୋବନ୍ତୀ ପୁରେ ଯାଇଣ ମିଳିଲେ ।
ବ୍ରହ୍ମାଙ୍କ ଚରଣେ ସେହୁ କରି ନମସ୍କାର
କରପତ୍ର ଯୋଡ଼ିକରି କହନ୍ତି ଛାମୁର ।
ଶୁଣ ଆହେ ପିତାମହ ମୋହର ବଚନ
ପ୍ରମାଦ ପଡ଼ିଲା ଦେବ ଆଜ ସ୍ୱର୍ଗସ୍ଥାନ ।
ଦ୍ୱାରକାପୁରକୁ ବିଜେ କଲେ ଚକ୍ରଧର
ସେହି ନଗରର ନାମ ଅଟେ ଜ୍ୟୋତିପୁର ।
ଘୋରଯୁଦ୍ଧ କରି ଦେବ ଦାନବ ନାଶିଲେ
ଷୋଳ ସହସ୍ର କନ୍ୟାଙ୍କୁ ଦ୍ୱାରକା ପେଶିଲେ ।
ଅଦିତି କୁଣ୍ଡଳ ଜଳଦେବ ଦଣ୍ଡଛତ୍ର
ଅସୁର ପୁରେ ଦେଖିଲେ ଏହା ପଦ୍ମନେତ୍ର ।
ଅଦିତିଙ୍କ ସ୍ନେହେ ସେହୁ କୁଣ୍ଡଳ ଘେନିଣ
ସ୍ୱର୍ଗପୁରେ ଆସୁଥିଲେ ଗରୁଡ଼ ଚଢ଼ିଣ ।
ଅଦିତିଙ୍କର କୁଣ୍ଡଳ ସମର୍ପଣ ଦେଲେ
ମେଲାଣି ମାଗି ଦ୍ୱାରକାପୁର ଆସୁଥିଲେ ।
ସଙ୍ଗରେ ଅଛନ୍ତି ଶତ୍ରାଜିତର ନନ୍ଦିନୀ
ନନ୍ଦନବନ ବାଟରେ ଆସୁଥିଲେ ସ୍ୱାମୀ ।
ପାରିଜାତ ପୁଷ୍ପ ବନେ ଦେଖିଣ ଶ୍ରୀଧର
ପ୍ରିୟାର ବଚନେ ତାହା ନେଲେ ଚକ୍ରଧର ।
ତାହା ଦେଖି ସୁରପତି ମହାକ୍ରୋଧ କଲା
ଦେବତାଙ୍କୁ ସଙ୍ଗେ ଘେନି ଯୁଦ୍ଧ ଆରମ୍ଭିଲା ।

ଶ୍ରୀହରିଙ୍କ ସଙ୍ଗତରେ ଯୁଦ୍ଧ ସେହୁ କଲେ
ଅଶୀ ସହସ୍ର ନନ୍ଦନ ସମସ୍ତେ ବେଢ଼ିଲେ ।
ତା ଦେଖି ଶ୍ରୀକୃଷ୍ଣ ଚକ୍ର ପେଶିଲେକ ପୁଣି
ଇନ୍ଦ୍ର ସହିତ ତେତିଶକୋଟି ଦେବେ ଜାଣି ।
କାହାରି ଦେହରେ ଏବେ ନାହିଁ ଚଇତନ୍ୟ
ଏକ୍ଷଣି ଦେଖିଆସି ମୁଁ କହେ ଛାମୁରେଣ ।
ଏହା ଶୁଣି ପରମେଷ୍ଠୀ ମନରେ ବିଷାଦ
ତକ୍ଷଣେ ମିଳିଲେ ଯାଇ ଯୁଦ୍ଧଭୂମି ମଧ୍ୟ ।
ଦେଖିଲେ ଅଚେତ ଦେବଗଣ ତହିଁ ହୋଇ
ଗରୁଡ଼ ଉପରେ ବିଜେ ଜଗତର ସାଇଁ ।
ଦୂରହୁଁ ଦେଖିଣ ବ୍ରହ୍ମାପାଦେ ପ୍ରଣମିତ
କର ଦେଇ ଲଗାଇଲେ ଶ୍ରୀଚରଣେ ମାଥ ।
କରପତ୍ର ଯୋଡ଼ି ତହୁଁ ବୋଇଲେ ବଚନ
ଜୟ ଜୟ ଜଗନ୍ନାଥ ଜଗତ ଜୀବନ ।
ମହିମାସାଗର ଦେବ ପ୍ରଳୟାନ୍ତକାରୀ
ଭାରା ନିବାରଣେ ଅବତାର ଯେ ତୋହରି ।
ମହିମାସାଗର ଦେବ ଭକତ ସୋଦର
ଚତୁର ମୁଖେ ମୁଁ ସ୍ତୁତି କରେ ବେଦବର ।
ତୋହର ସଞ୍ଚଳା ନାଥ ଅଟଇ ତ୍ରିଦଶ
ତୁ ନାଥ ସକଳ ଭୁବନରେ ପରକାଶ ।
ଚନ୍ଦ୍ର ସୂର୍ଯ୍ୟ ଆଦିକରି ଦେବଗଣ ଯେତେ
ତୋହର ସଞ୍ଚଳା ସିନା ଅଟନ୍ତି ସମସ୍ତେ ।
ସୁରପତି ଏବେ କୋପ କଲା ତୋର ତହିଁ
ତୋର ସଞ୍ଚଳାର ଦ୍ରବ୍ୟ ନେଉଥିଲୁ ତୁହି ।
ତହିଁର ଫଳ ପାଇଲା ଏବେ ପୁରନ୍ଦର
ତୁ ନାଥ ଦେବତାଗଣଙ୍କୁ ହିଁ ରକ୍ଷାକର ।
ପୁଣି ପୁଣ ପ୍ରଣମିତ କଲେ ଛାମୁରେଣ
ଅଷ୍ଟକର ନିବେଶିଲେ ଶିର ଉପରେଣ ।
ପ୍ରଜାପତିର ବିନୟ ଦେଖି ଭଗବାନ
ମନ୍ଦହାସ ପରକାଶି କହନ୍ତି ବଚନ ।
ବୋଲନ୍ତି ଶୁଣ ଭୋ ପିତା ମୋହର ବଚନ
ଜ୍ଞାନହାରି ମନ୍ଦବୁଦ୍ଧି କଲା ଇନ୍ଦ୍ର ପୁଣ ।
ତୋହର ସ୍ତୁତିରେ ମୁହିଁ ଦୟାକଲି ତାରେ
ଦେବତାମାନଙ୍କୁ ଘେନି ଚଳ ନିଜପୁରେ ।
ଏତେକ ବୋଲିଣ ତହୁଁ ଦେବ ଭଗବାନ
ଚାହିଁଲେ ଅମୃତ ନୟନରେ ତତକ୍ଷଣ ।
ତ୍ରିଦଶ ଦେବତାଗଣ ଜୀବନ ପାଇଲେ
କରପତ୍ର ଯୋଡ଼ି ଉଭା ଛାମୁରେ ରହିଲେ ।
ଜୟ ଜୟ ଶବଦରେ ପୁରେ ସ୍ୱର୍ଗପୁର
ଯେ ଯାହାର ସ୍ତୁତିମାନ କରନ୍ତି ଛାମୁର ।

ଶ୍ରୀ ଶାରଳା ଦାସ ଶୂଦ୍ରମୁନି ଭାବେ ମନ
ଭୋ ମହାପ୍ରଭୁ ହୋଇବା ମୋତେ ପରସନ୍ନ ।
ଝଙ୍କଡ଼ପୁର ବାସିନୀ ନାମ ସିଦ୍ଧଚଣ୍ଡୀ
ମୋହର ବିପତ୍ତି ମାଗୋ ହୋଇବାକୁ ଖଣ୍ଡି ।
ନାରକା ହତ ଯେ ପାରିଜାତକ ହରଣ
ଶୁଣି ଜନେ ତର ମାୟା ସଂସାରରୁ ପୁଣ ।
ପୁଣିହିଁ ବିଲଙ୍କ ଦେଶର ଯେ ନରପତି
ଅଗସ୍ତିଙ୍କ ଚରଣରେ କଲାକ ଭକତି ।
ଭୋ ମୁନି କହ ଯେ ମଧ୍ୟପର୍ବର ଚରିତ
ପାରିଜାତକ ହରଣ ଅତି ହିଁ ପବିତ୍ର ।
ସେଠାରୁ କେବଣ କୃତ୍ୟ କଲେ ଭଗବାନ
ଏହା ମତେ ବୁଝାଇଣ କହିବାକୁ ପୁଣ ।
କହନ୍ତି ଅଗସ୍ତି ମୁନି ମହାବିଜ୍ଞବନ୍ତ
ଶୁଣ ଏକମନେ ମଧ୍ୟପର୍ବର ଚରିତ ।
ଦେବତାଙ୍କୁ ଜୀବଦାନ ଦେଇ ଭଗବାନ
ବ୍ରହ୍ମାଙ୍କୁ ବୋଇଲେ ତୁମ୍ଭେ ଯାଅ ନିଜସ୍ଥାନ ।
ପାରିଜାତକ ଘେନିଲେ ପ୍ରିୟା ସ୍ନେହପାଇ
ଦ୍ୱାରକାକୁ ବିଜେ କଲେ ବ୍ରହ୍ମାଣ୍ଡ ଗୋସାଇଁ ।
ପଥରେ ଯାଆନ୍ତେ ଶଙ୍ଖ ନାଦ ଘନ ଘନ
ଦ୍ୱାରକା ସଭାରେ ଯାଇ ବିଜେ ଭଗବାନ ।
ଦେଖିଣ ସାନନ୍ଦ ହେଲେ ପୁରବାସୀ ଜନ
ସାତବଂଶ ଯାଦବେ ଯେ ମିଳିଲେ ବହନ ।
ଉଗ୍ରସେନ ଆଦି ପୁଣି ଉଦ୍ଧବ ସାତ୍ୟକି
ଶ୍ରୀକୃଷ୍ଣ ଛାମୁରେ ଆସି ଦର୍ଶନ କରନ୍ତି ।
ସମସ୍ତଙ୍କୁ ତୋଷକରି ଦେବ ଭଗବାନ
ସାତ୍ୟକିକୁ ଚାହିଁ ପୁଣି କହିଲେ ବଚନ ।
ଶୁଣରେ ବାବୁ ସାତ୍ୟକି ମୋହର ତଦନ୍ତ
ସ୍ୱର୍ଗରୁ ମୁଁ ଆଣିଅଛି ବୃକ୍ଷ ପାରିଜାତ ।
ଉପବନେ ଏହାକୁ ତୁ ରୋପ ବେଗେ ନେଇ
ସ୍ୱରଗର ବୃକ୍ଷ ଏହା ମର୍ତ୍ତ୍ୟପୁରେ ନାହିଁ ।
ଇନ୍ଦ୍ର ବିବାଦୀ ହୋଇଲା ଏହି ପୁଷ୍ପପାଇଁ
ସାତ୍ୟକିର କରେ ଦେଲେ ବ୍ରହ୍ମାଣ୍ଡ ଗୋସାଇଁ ।
ଯୁବତୀଙ୍କ ପୁରେ ବିଜେ କଲେ ଭଗବାନ୍
ଅଷ୍ଟ ପାଟବଂଶୀ ତାଙ୍କୁ କଲେ ଦରଶନ ।
ସୁବର୍ଣ୍ଣର ଥାଳିରେ ସେ ଦୁର୍ବାକ୍ଷତ ଘେନି
ଶ୍ରୀକୃଷ୍ଣଙ୍କୁ ବନ୍ଦାଇଲେ ଆନନ୍ଦେ କାମିନୀ ।
ଜୟଶବ୍ଦେ ହୁଳହୁଳି ଦେଇ ନାରୀଗଣ
ଆନନ୍ଦେ ବିଜୟ ସତ୍ୟଭାମାଙ୍କ ଭୁବନ ।
ମାଜଣା ମଣୋହି ଶେଷକଲେ ଭଗବାନ
ଶୋଇଲେ ଶ୍ରୀ ସତ୍ୟଭାମା ତୁଲେ ପଲ୍ୟଙ୍କେଣ ।

ଏଥୁ ଅନନ୍ତରେ ପୁଣି ପାହିଲା ରଜନୀ
ଦେବତାମାନଙ୍କ ଆଳେ ଶୁଭେ ଶଙ୍ଖଧ୍ୱନି ।
ଉଠିଲେ ନିଦ୍ରା ତେଜିଣ ଦେବ ଭଗବାନ
ଉଦ୍ଧବକୁ ରାଇ ପୁଣି କହନ୍ତି ବଚନ ।
ବାରୁଣାବନ୍ତେ ବହନ ହୋଇ ତୁହି ଯାଅ
ମୋହର ବାରତା ବେଗେ ପାଣ୍ଡବଙ୍କୁ କହ ।
ଯୁଧିଷ୍ଠିର ଠାକୁରଙ୍କୁ ଦୁର୍ବାକ୍ଷତ ଦେଇ
ଆଣ ପାର୍ଥକୁ ବିବାହୋତ୍ସବ ବୋଲି କହି ।
ଆଜ୍ଞା ପାଇଣ ଉଦ୍ଧବ ବେଗେ ଚଳିଗଲା
ବାରୁଣାବନ୍ତରେ ଯାଇ ପ୍ରବେଶ ହୋଇଲା ।
ଯୁଧିଷ୍ଠିରଙ୍କ ଚରଣେ ପ୍ରଣାମ କରିଲା
ଶ୍ରୀକୃଷ୍ଣଙ୍କ ଆଜ୍ଞାମତେ ଦୁର୍ବାକ୍ଷତ ଦେଲା ।
ବିବାହ ଉତ୍ସବ ଦେବ ଦ୍ୱାରକା ଭୁବନ
ଅର୍ଜ୍ଜୁନକୁ ପେଶ ଦେବ ମୋହ ସଙ୍ଗତେଣ ।
ଶୁଣିଣ ଯୁଧିଷ୍ଠି ସହଦେବ ମୁଖ ଚାହିଁ
କିମ୍ପାଇଁ ଲୋଡ଼ନ୍ତି ବାବୁ ପାର୍ଥେ ଯଦୁସାଇଁ ।
ସହଦେବ ଏସନକ ଠାକୁରହୁଁ ଶୁଣି
କରପତ୍ର ଯୋଡ଼ିକରି କହେ ଗୁଣମଣି ।
ନାରକାକୁ ମାରି ଷୋଳସସ୍ର କନ୍ୟା ଆଣି
ଦ୍ୱାରକା ବିଜୟ କରିଛନ୍ତି ଚକ୍ରପାଣି ।
କନ୍ୟାଗଣଙ୍କର ହେବ ବିବାହ ଉତ୍ସବ
ତେଣୁକରି ପାର୍ଥେ ଲୋଡ଼ିଛନ୍ତ ବାସୁଦେବ ।
ଶୁଣିଣ ଯୁଧିଷ୍ଠି ଦେବ ଅର୍ଜ୍ଜୁନକୁ ଚାହିଁ
ଶ୍ରୀହରିଙ୍କୁ ଦେଖ ବାବୁ ଦ୍ୱାରକାକୁ ଯାଇ ।
ଆଜ୍ଞା ପାଇଣ ବାହାର ବେଗେ ଧନୁର୍ଦ୍ଧର
ଉଦ୍ଧବ ସଙ୍ଗେ ପ୍ରବେଶ ଦ୍ୱାରକା ନଗର ।
ଏଥୁ ଅନନ୍ତରେ ଦେବ ପ୍ରଭୁ ଭଗବାନ
ସାତ୍ୟକି ମୁଖକୁ ଚାହିଁ ବୋଲନ୍ତି ବଚନ ।
ରାଜାମାନଙ୍କୁ ଯାଇଣ ନିମନ୍ତ୍ରଣ କର
ବିବାହ ଉତ୍ସବ ହେବ ଦ୍ୱାରକା ନଗର ।
ପୂର୍ବ ପଶ୍ଚିମ ଆବର ଉତ୍ତର ଦକ୍ଷିଣ
ଚାରିଦିଗେ ବେଗେ ଦୂତ ପେଷିଲେ ବହନ ।
ପ୍ରଦ୍ୟୁମ୍ନ ପୂର୍ବକୁ ଗଲା ସାତ୍ୟକି ଦକ୍ଷିଣ
ଅନିରୁଦ୍ଧ ଜମ୍ବେୟ ଉତ୍ତର ପଶ୍ଚିମ ।
ଦୁର୍ବାକ୍ଷତମାନ ଦେଇ କଲେ ନିମନ୍ତ୍ରଣ
ଆନନ୍ଦେ ଆସନ୍ତି ସର୍ବେ ଦ୍ୱାରକା ଭୁବନ ।
ରାଜାମାନଙ୍କୁ ଆସନ ଦିଏ ଉଗ୍ରସେନ
ବସିଲେ ପୂଜା ଗୌରବ ପାଇ ରାଜାମାନ ।
ଆଜ୍ଞା ପାଇଣ ଆସନ୍ତି ସର୍ବରାଜା ପୁଣି
ଦୁହିତାମାନଙ୍କୁ ବିଭାହେବେ ଚକ୍ରପାଣି ।
ସମଦଣ୍ଡ ବିବାହର ଯୋଗାଡ଼ ଘେନିଣ
ଦ୍ୱାରକାପୁରେ ମିଳିଲେ ସକଳ ରାଜନ ।
ଦେଖିଣ ଆନନ୍ଦ ହେଲେ ପ୍ରଭୁ ଚକ୍ରପାଣି
ଯେ ଯାହା ଅନୁରୂପରେ ଠାବ ଦେଲେ ଆଣି ।
ଲାଗିଲେ ଶତ ଅର୍ବୁଦ ଦଶ ସୂପକାର
ରାନ୍ଧଣାବିଧି କରନ୍ତି ଅମୃତ ଯୋଗାଡ଼ ।
ତହୁଁ ଆରମ୍ଭିଲେ ସେହୁ ମଙ୍ଗଳ ବିଧାନ
ହୁଳହୁଳି ଦେଲେ ସର୍ବେ ପୁରନାରୀଗଣ ।
ବାଜଇ ବାଜଣାମାନ ଅତି ଗୁରୁଟାଣ
ଆବର ରାଜାମାନଙ୍କ ବାଜଣା ମିଶିଣ ।
ସ୍ୱର୍ଗପୂରିଲା ଶବଦେ କମ୍ପେ ବସୁମତୀ
ଦେବଗଣ ଘେନି ବିଜେ କଲେ ସୁରପତି ।
ଋଷିଗଣ ସେଠାରେ ଯେ ମିଳିଲେକ ଆସି
ଦେଖି ପୂଜାକଲେ ତାଙ୍କୁ ଦେବ ହୃଷୀକେଶୀ ।
ଆଣିଥିଲେ ଯେଉଁ ଷୋଳସସ୍ର କନ୍ୟାଗଣ
ଯେ ଯାହାର ଅନୁରୂପେ ଦେଇଛନ୍ତି ସ୍ଥାନ ।
ଆସିଲେ ଚୌଷଠିକୋଟି ସ୍ୱର୍ଗ ବିଳାସିନୀ
କରୁଛନ୍ତି ନୃତ୍ୟଗୀତ ସୁସ୍ୱରେ ଗାୟେଣୀ ।
ସୁସ୍ୱରେ ସର୍ବନାୟିକା ହୁଳହୁଳି ଦେଲେ
ଆବର ଯେ ଜୟ ଜୟ ଶବ୍ଦ ଉଚ୍ଚାରିଲେ ।
ଛାୟାମଣ୍ଡପେ ବିଜୟ କଲେ ଭଗବାନ
କନ୍ୟାଙ୍କୁ ସୁବେଶ କରୁଛନ୍ତି ନାରୀଗଣ ।
ଦେଲେ ରାଜାମାନଙ୍କୁ ଯେ ଯାହା କନ୍ୟା ଦେଇ
ଋଷିଗଣ ବେଦବାକ୍ୟ ଉଚ୍ଚାରନ୍ତି ତହି ।
ଯେଉଁପରି ଅଟେ ବେଦ ବିହିତ ବିଧାନ
ଶ୍ରୀକୃଷ୍ଣଙ୍କୁ ରାଜାମାନେ ଦେଲେ କନ୍ୟାଦାନ ।
ନାନା ଯଉତୁକ ମାନ ଦେଲେ ରାଜାଗଣ
ଏମନ୍ତେ ଶେଷ ହୋଇଲା ବିଭାର ବିଧାନ ।
ଧଇଲେ ଷୋଳସହସ୍ର ରୂପ ଭଗବାନ
ମିଳିଲେ ଯାଇଣ କନ୍ୟାମାନଙ୍କ ଭବନ ।
ଏଥୁଅନନ୍ତରେ ପୁଣି ପାହିଲା ରଜନୀ
ଶଯ୍ୟାତ୍ୟାଗ କରିଲେ ସେ ପ୍ରଭୁ ଚକ୍ରପାଣି ।
ରାଜାଏ ଦର୍ଶନ କଲେ ଶ୍ରୀଛାମୁରେ ଯାଇ
ଅକ୍ଷତ ଦେଇ ବିଦାୟ କଲେ ଯଦୁସାଇଁ ।
ଚାରିଦିଗର ଯେ ସର୍ବରାଜା ଆସିଥିଲେ
ମେଲାଣି ମାଗି ଯେ ଯାହା ଭୁବନକୁ ଗଲେ ।
ଅର୍ଜ୍ଜୁନକୁ ଚାହିଁ କହୁଛନ୍ତି ଭଗବାନ
ଜ୍ୟୋତିଷପୁରେ ନାରକା ଅସୁରର ସ୍ଥାନ ।
ବହୁ ଯୁଦ୍ଧ ମୋର ସଙ୍ଗେ କଲାକ ଅସୁର
ଚକ୍ର ପେଶିଣ କାଟିଲି ମୁହିଁ ତାର ଶିର ।

ନିର୍ଦ୍ଦୟ ମହାତ୍ମା ଏହାଙ୍କ ନାହିଁ ଉପରୋଧ
ଅଜେୟ ଅଭୟ ତିନିଲୋକ ମହାଯୋଦ୍ଧା ।
ଏହୁ କୋପ କରେ ବହୁ କେହି ଯେ ନବର୍ତ୍ତି
ଏକୋଇଶ ବାର ନାଶଗଲା ଏହୁ ପୃଥ୍ୱୀ ।
ସତ୍ୟଯୁଗେ ଭୋଗ କଲା ସତ୍ୟବ୍ରତ ପଣେ
ଅନେକ ଉପାୟେ ବିଦ୍ୟା ରଚିଲା ଆପଣେ ।
ଏହାର ସଙ୍ଗତେ ତୁହି ନ କର ବିବାଦ
କଟାକ୍ଷ ନେତ୍ରେ ଚାହିଁଲେ ହେବ ଶିରଚ୍ଛେଦ ।
ଆମ୍ଭର ଶପଥ ତୁହି ନାସ୍ତି ଯେ ନ କର
ଅମ୍ବା କନ୍ୟା ବିଭାହୁଅ ଯାଉ ପର୍ଶୁଧର ।
ଭୀଷ୍ମ ବୋଇଲେ କେମନ୍ତେ ମୁଁ ବିଭା ହୋଇବି
ଭାର୍ଯ୍ୟା ନିମନ୍ତେ କେମନ୍ତେ ପିତାଙ୍କୁ ନାଶିବି ।
ପରାଶର ବୋଇଲେ ତୁ ତାକୁ ବିଭାହୋଇ
ଶୃଙ୍ଗାର ବଞ୍ଚାୟ ପଛେ ଅପବାଦ ଦେଇ ।
ଭୀଷ୍ମ ବୋଇଲେ କହିଲ ତୁମ୍ଭେ ଗୁରୁପଣେ
ମୁହିଁ ଶୁଣିଅଛି ଯାହା ଅଗସ୍ତି ପୁରାଣେ ।
ତିରିଶ ଦିନେ ହୁଅନ୍ତି ଅଶୁଦ୍ଧା ଯେ ନାରୀ
ତାକୁ ଛୁଇଁଲେ ଚଣ୍ଡାଳ ଛୁଆଁ ଦୋଷ ସରି ।
ଯେ ବସ୍ତ୍ରେ ସେହି ଛୁଇଁବ ବସ୍ତ୍ରେ କରି ସ୍ନାନ
ଉପବାସେ ରହି ବ୍ରତ କରିବ ସେଦିନ ।
ଦ୍ୱିତୀୟ ଦିନେ ହୁଅନ୍ତି ଯେବେ ସେହି ନାରୀ
ପ୍ରତ୍ୟକ୍ଷେ ହୁଅଇ ବ୍ରହ୍ମହତ୍ୟା ଦୋଷ ସରି ।
ଯେବଣ ନରେ ତୃତୀୟ ଦିବସେ ଛୁଅନ୍ତି
ଅପୂଜା ଲିଙ୍ଗ ଭାଙ୍ଗିବା ଅଗତିକି ପାନ୍ତି ।
ଚତୁର୍ଥ ଦିବସେ ଯାନ୍ତି ଯେ ସ୍ତିରୀଙ୍କ ପାଶ
ପଞ୍ଚ ମହାପାପ କଲା ସରି ପାଇ ଦୋଷ ।
ଶୁଦ୍ଧସ୍ନାନ କରିବ ଯେ ପଞ୍ଚମ ଦିବସେ
ସେଦିନ ପୁରୁଷ ଯିବ ଜାଣ ତାର ପାଶେ ।
ନାନା ଧର୍ମ କର୍ମ ପିତୃକାର୍ଯ୍ୟ ଆଦି କରି
ସମସ୍ତ ତେଜ୍ୟା କରିଣ ହେବ ବ୍ରହ୍ମଚାରୀ ।
ପଞ୍ଚମ ଦିନୁ ସପ୍ତମ ଦିନ ପରିଯନ୍ତ
ଯେ ପୁରୁଷ ଉପେକ୍ଷନ୍ତି ଦୋଷେ ହୁନ୍ତି ଲିପ୍ତ ।
ରଜୋବତୀ ହୁଅଇଟି ଯେବଣ ସୁନ୍ଦରୀ
ସେ ଶୋଣିତ ପିତୃଲୋକ ତର୍ପଣର ସରି ।
ବିଭା ହୋଇଣ ଶୃଙ୍ଗାର କେହ୍ନେ ନ ଇଚ୍ଛିବି
ମୁଁ ପୁତ୍ରପଣେ ତୁମ୍ଭର ନାଶ କି କରିବି ।
ଏସନ ଯହୁଁ ବୋଇଲେ ଜାହ୍ନବୀ କୁମର
ଶୁଣି ସନ୍ତୁଷ୍ଟ ହୋଇଲେ ଋଷି ପରାଶର ।
ପର୍ଶୁରାମଙ୍କୁ ବୋଇଲେ କୋପେ ଭୀଷ୍ମରଥୀ
ଆହେ ପର୍ଶୁରାମ ତୋତେ ମୋହର କି ଭୀତି ।
ପଳା ଯା ମିଛେ ନ କହ ଏଥେ ବଡ଼ପଣ
ଆପଣା ମଧ୍ୟେ କଳହ ନ ଲଗା ଏକ୍ଷଣ ।
ତୁହି ମୋହର ଆତ୍ମୀୟ ଅଟୁ ଯେ ଯଥାର୍ଥେ
ଅନିମିତ କଥାରେ କି କରିବା ଅନର୍ଥେ ।
କିଞ୍ଚିତ ଦୋଷରେ ବଡ଼ପଣ ଯିବ ନାଶ
ଶୃଗାଳ କିଣଇ ସିଂହ ହୁଏଟି କି ଧ୍ୱଂସ ।
ଭୀଷ୍ମ ମୁଖୁ ଏସନକ କଟୁବାକ୍ୟ ଶୁଣି
କୋପେଣ ଧାଇଁଲେ ପର୍ଶୁଧରି ପର୍ଶୁପାଣି ।
ଯହୁଁ କୋପେଣ ଧାଇଁଲେ ଯମଦଗ୍ନି ବାଳ
ଧାଇଁଗଲେ ଭୀଷ୍ମ କୋପେ ହୋଇ ଅନର୍ଗଳ ।
ଭୀଷ୍ମଙ୍କୁ ଯେ ପର୍ଶୁରାମ ଧଇଲେ ଆକର୍ଷି
ତଳେ ପକାଇ ଉପରେ କୋପେ ମାଡ଼ିବସି ।
ମୁଣ୍ଡକୁ ମୋଡ଼ି ଲୋଡ଼ନ୍ତେ ସେ ପରଶୁଧ୍ୱଜ
ଧାତିକାରେ ଲେଉଟାଇ ଗଙ୍ଗାର ଆତ୍ମଜ ।
ତଳେ ପକାଇ ବସିଲେ ତାଙ୍କ ହୃଦଗତେ
କାର୍ମୁକରେ ଚାପି ମୁଖେ ପ୍ରହାରିଲେ ମୁଥେ ।
ଭୀଷ୍ମଙ୍କ ମୁଥ ପଡ଼ିଲା ବ୍ରଜଗିରି ଜାଣି
ନାସିକାବାଟେ ରୁଧିର ବହିଗଲା ପୁଣି ।
ଦେଖିଣ ଧାଇଁ ଅଇଲେ ନୃପତି ଶାନ୍ତନୁ
ଭୁଜ ଧରି ବୋଇଲେ ତୁ କୋପ ତେଜ ମନୁ ।
ରହ ରହ ବାବୁ ତୁରେ ଭୀଷ୍ମ ମହାରଥ
ସ୍ୱଜନେ ସ୍ୱଜନେ କିମ୍ପା ହୁଅ ନାଶପ୍ରାପ୍ତ ।
ରୁହାଇଲେ ପରାଶର ଶାନ୍ତନୁ ସଂଗ୍ରାମ
ଲଜ୍ଜା ପାଇ ତହୁଁ ବେଗେ ଗଲେ ପର୍ଶୁରାମ ।
ଅମ୍ବା କନ୍ୟା ଯେ ପ୍ରୟାଗ ତୀର୍ଥକୁ ହିଁ ଗଲା
ତ୍ରିବେଣୀରେ ସ୍ନାନ କରି ମାଧବ ପୂଜିଲା ।
ଭୋ ମାଧବ ହୋଇଥାଅ ମୋର ତୁହି ସାକ୍ଷୀ
ଭୀଷ୍ମଙ୍କ ଯୋଗୁଁ ହୋଇଲି ମୁଁ ସିନା ବିମୁଖୀ ।
ଭୀଷ୍ମଙ୍କ ଉପରେ ଯାଉ ହତ୍ୟାଦୋଷ ମୋର
ମାଧବଙ୍କୁ ସାକ୍ଷୀ କରି ଝାସିବି ଶରୀର
ମୁହିଁ ସ୍ତିରୀମାତ୍ର ଦେଇ ନୁହଁଇ ନାଁ ଯୋଧୀ
ଜନ୍ମେ ଜନ୍ମେ ଭୀଷ୍ମଙ୍କୁ ମୁଁ ପାରିବି କି ସାଧି ।
ଏ ମୋହର ରୂପ ଗୁଣ ଲକ୍ଷଣ କେମନ୍ତେ
ସଂଗ୍ରାମେ ଶସ୍ତ୍ର ଛାଡ଼ିବ ଭୀଷ୍ମ ମ୍ଳାନଚିତ୍ତେ ।
ତ୍ରିବେଣୀରେ ପଶି ଜଳେ ଜାଳିଲା ଅନଳ
ଲଗାନ୍ତେ ଅନଳ ଜଳି ଉଠିଲା ତତ୍କାଳ ।
କହନ୍ତି ଅଗସ୍ତି ଶୁଣ ଆହେ ଯୋଗେଶ୍ୱର
ଏସନ ଚରିତ ହାଦେ ହେଲା ଭୀଷ୍ମଙ୍କର ।
ଭୀଷ୍ମ ଦାର ସଂହାରିଲେ ପିତାଙ୍କ ନିମନ୍ତେ
ଗଙ୍ଗାଶାପେ ଅପୁତ୍ରିକ ହେଲେ ବେନି ଭ୍ରାତେ ।

ଅଦିତି ମାତା କୁଣ୍ଡଳ ଘେନି ସ୍ୱର୍ଗେ ଗଲି
ଲେଉଟି ନନ୍ଦନବନ ବାଟରେ ଅଇଲି ।
ପାରିଜାତ ପୁଷ୍ପ ଦେଖି ଦେବୀ ସତ୍ୟଭାମା
ସେ ପୁଷ୍ପ ନେବାକୁ ତାର ହୋଇଲା କାମନା ।
ତାହା ଆଣନ୍ତେ ବାସବ ଦେବ କୋପକଲା
ବହୁ ସମର ତାହାର ମୋହର ହୋଇଲା ।
ମୋହନ ଶରରେ ନାଶ ହେଲେ ଦେବଗଣ
ବ୍ରହ୍ମା ଆସିଣ ତାହାଙ୍କୁ ଦେଲେ ଜୀବଦାନ ।
ତହୁଁ ଦ୍ୱାରକାପୁରକୁ ଅଇଲଇଁ ମୁହିଁ
ବହୁତ ଶରଧା ତୋତେ ଦେଖିବାର ପାଇଁ ।
ତୁହିରେ ଅର୍ଜ୍ଜୁନ ଅଟୁ ମୋର ପଞ୍ଚପ୍ରାଣ
ନ ଦେଖିଲେ ତୋତେ ସ୍ଥିର ନୋହେ ମୋର ମନ ।
ଦ୍ୱାରକାରେ ଦିନାକେତେ ରହକିନା ବାବୁ
ଏ ଯେତେ ସମ୍ପଦ ମୋର ତୋର ସିନା ସବୁ ।
ଶୁଣିଣ ଅର୍ଜ୍ଜୁନ କହେ ଯୋଡ଼ି ବେନିପାଣି
ଠାକୁରଙ୍କ ଆଜ୍ଞା ନାହିଁ ଯିବି ଏହିକ୍ଷଣି ।
ସମ୍ଭାଷଣ କରି ପ୍ରଭୁ ତାଙ୍କୁ କୋଳ କଲେ
ଅକ୍ଷତ ଘେନିଣ ପାର୍ଥ ବାରୁଣୀକୁ ଗଲେ ।
ଯେତେ ଯେତେ ଋଷିଗଣ ତହିଁ ଆସିଥିଲେ
ମେଲାଣି ପାଇ ଯେ ଯାହା ସ୍ଥାନକୁ ଚଳିଲେ ।
ଆବର ଚନ୍ଦ୍ର ପ୍ରମୁଖ ଦେବଗଣ ଯେତେ
ମେଲାଣି ପାଇଣ ସର୍ବେ ଚଳିଲେ ତୁରିତେ ।
ରହିଲେ ଆନନ୍ଦେ ଦ୍ୱାରକାରେ ଭଗବାନ
ଶୂଦ୍ରମୁନି ଶ୍ରୀକୃଷ୍ଣଙ୍କ ଚରଣେ ଶରଣ ।

—0—

## ପୁଷ୍ୟାଭିଷେକ ଓ କାମାକ୍ଷୀ ବ୍ରତବିଧି

ଏଥୁଅନ୍ତେ ସେ ବିଳଙ୍କ ଦେଶ ମହାରାଜା
ଅଗସ୍ତିଙ୍କ ପାଦତଳେ କଲେ ପାଦପୂଜା ।
ଷୋଳସସ୍ର କନ୍ୟା ବିଭାହେଲେ ଚକ୍ରପାଣି
ତହୁଁ ଯେ କେବଣ କୃତ୍ୟ ହେଲା ମହାମୁନି ।
ବଦନ୍ତି ଅଗସ୍ତି ମୁନି ଆଦି ବ୍ରହ୍ମବେତ୍ତା
ଏକମନେ ଶୁଣ ମନୁ ବୈବସ୍ୱତ ଶ୍ରୋତା ।
ଧନୁମାସ ପୁଷ୍ୟା ଯୋଗ ପୂର୍ଣ୍ଣିମା ଯେ ତିଥି
ପୁଷ୍ୟା ଅଭିଷେକ ହେବେ ଦେବ ଦାଶରଥି ।
ଅଭିଷେକ ପାଞ୍ଚଦିନ ଥାଉଁ ଜଗନ୍ନାଥ
ବିଚାରିଲେ ଅଣାଇବା ସୁଭଦ୍ରା ହିଁ ପାର୍ଥ ।
ଅକ୍ରୂରକୁ ଆଜ୍ଞାଦେଲେ ଘେନିଆସ ଯାଇ
ଅଇଲା ଅକ୍ରୂର ଜଗନ୍ନାଥ ଆଜ୍ଞା ପାଇ ।
ଅର୍ଜ୍ଜୁନକୁ କହିଲା ଯେ ଶ୍ରୀକୃଷ୍ଣ ଆଦେଶ
ପୁଷ୍ୟା ଅଭିଷେକ ହେବେ ପୂର୍ଣ୍ଣିମା ଦିବସ ।
ପୁଷ୍ୟା ଅଭିଷେକ ହେବେ ଦେବ ଜଗନ୍ନାଥ
ସୁଭଦ୍ରାକୁ ଘେନି ବେଗେ ଚଳସି ଗୋପାର୍ଥ ।
ଅର୍ଜ୍ଜୁନ କହିଲେ ଯାଇ ଯୁଧିଷ୍ଠି ଅଗ୍ରତେ
ନାରାୟଣ ଆଜ୍ଞା ମୋତେ ଯିବାର ନିମନ୍ତେ ।
ପୁଷ୍ୟା ଅଭିଷେକ ହେବେ ପ୍ରଭୁ ଦାଶରଥି
ଆସିଅଛି ନେବାପାଇଁ ଅକ୍ରୂର ସାରଥି ।
ଯିବାପାଇଁ ସଜ ହେଲେ ତୁରିତ ଅର୍ଜ୍ଜୁନ
ସୁଭଦ୍ରାକୁ ଘେନି ବିଜେ ପୁଷ୍ପକ ବିମାନ ।
ଆଗେ ବାଟ କଢ଼ାଉଛି ସାରଥି ଅକ୍ରୂର
ଦ୍ୱାରକାରେ ବିଜେ କଲେ ପାର୍ଥ ଧନୁର୍ଦ୍ଧର ।
ଆସ୍ଥାନରେ ବିଜେ କରିଛନ୍ତି ରାମ ହରି
ଅର୍ଜ୍ଜୁନ ପ୍ରଣାମ କରି ପାଦପଦ୍ମ ଧରି ।
ଅନେକ କଲ୍ୟାଣ କଲେ ହରି ବଳାରାମେ
ଶୁଭ ଯଶ ପରାପତ ହେଉ ଯେ ସଂଗ୍ରାମେ ।
ପୁଷ୍ୟା ଅଭିଷେକ ହେବ ଯାତ୍ରାର ବିଧାନ
କରାଇଲେ ଦ୍ୱାରକାରେ ରାଜା ଉଗ୍ରସେନ ।
ଶ୍ରୀରାମର ଅଭିଷେକ ଯେତେକ ବିଧାନେ
ରଙ୍ଗଯାତ୍ରା ଭିଆଇଲେ ଦ୍ୱାରକା ଭୁବନେ ।
କୋଟି ତୀର୍ଥ ଘେନି ଯାତ୍ରାଧିପତି ପୁଷ୍କର
ପ୍ରବେଶିଲେ ଆସି ରାମ କୃଷ୍ଣଙ୍କ ଛାମୁର ।
ଜଗନ୍ନାଥ ବନ୍ଦାପନା ପୁଷ୍ୟା ଅଭିଷେକ
ବାହାନେ ଚଢ଼ି ଦେଖନ୍ତେ ଶୂନ୍ୟେ ବୃନ୍ଦାରକ ।
ଆକାଶରେ ପୁଷ୍ପବୃଷ୍ଟି କରେ ମଘବାନ
ଜୟ ଜୟ ଶବଦରେ ପୂରିଲା ଗଗନ ।
ତ୍ରୈଲୋକ୍ୟର ନାଥ ପ୍ରଭୁ ଜନ ଅଧିକାରୀ
ସମ୍ମୁଖରେ ଅଭିଷେକ ହେଉଛନ୍ତି ହରି ।
ଅର୍ଜ୍ଜୁନକୁ ଘେନି ଅଭିଷେକ ଶିରୀ ବସି
ଜଗନ୍ନାଥଙ୍କ ଜାନୁରେ ଅର୍ଜ୍ଜୁନ ବସିଛି ।
ଦେଖି ପରମ ସନ୍ତୋଷ ପ୍ରଭୁ ବଳରାମ
ସାଧୁ ସାଧୁ ଧନଞ୍ଜୟ ତୋ ମାନବ ଜନ୍ମ ।
ମାନବ ଅବତାର ଯେ ଦେବ ଜଗନ୍ନାଥ
ତାହା କୋଳେ ବସିବାକୁ ହୋଇଲୁ ସମର୍ଥ ।
କୋଟି ତୀର୍ଥ ଘେନି ଦିଗପାଳ ଯେ ପୁଷ୍କର
ଅଭିଷେକ କରନ୍ତି ଶ୍ରୀଜଗନ୍ନାଥ ଶିର ।
ଅଭିଷେକ ଦେଖି ଦେବ କଲେ ସାଧୁ ଧ୍ୱନି
ବେଦୀରେ ବସିଲେ କୃଷ୍ଣ ଅର୍ଜ୍ଜୁନକୁ ଘେନି ।
ଦଣ୍ଡ ଘେନି ଦକ୍ଷିଣରେ ସାତ୍ୟକି ଅଛଇ
ଆଗେ ଅକ୍ରୂର ସୁବର୍ଣ୍ଣ ଦଣ୍ଡ ଘେନି ରହି ।

ବିଜୟ ଜଗମୋହନ ଚଢ଼ି ଶ୍ୱେତ ହସ୍ତୀ
କୋଳରେ ବସିଅଛନ୍ତି ପାର୍ଥ ମହାରଥୀ ।
ବୁଲନ୍ତି ଦ୍ୱାରକାପୁର ଚୌବିଂଶ ଯୋଜନ
ବିଜୟ ହସ୍ତୀ ଉପରେ ଦେବ ଶଙ୍କର୍ଷଣ ।
ଜୟ ଜୟ ଭାଷନ୍ତି ଯେ ମିଳି ମୁନିମାନେ
ଆନନ୍ଦ ଜଳରେ ବୁଡ଼ିଛନ୍ତି ପୁରଜନେ ।
ଭ୍ରମଣ ସାରି ବିଜୟ ଚନ୍ଦ୍ରଶାଳା ପୁରୀ
ଖଟନ୍ତି ବିଳାସିନୀଏ ପୁର ନରନାରୀ ।
ଆହ୍ନିକ ସାରି ସେ ଦେବ ମଣୋହିରେ ବିଜେ
ଅର୍ଜୁନ ଘେନି ମଣୋହି କଲେ ଦେବରାଜେ ।
ମଣୋହିରୁ ଉଠିଦେବ କଲେ ଆଚମନ
ଜୟ ଜୟ ଭାଷନ୍ତି ଯେ ମୁନି ପୁରଜନ ।
କର୍ପୂର ତାମ୍ବୁଳ ବସି କରନ୍ତି ଭୋଜନ
ରାତ୍ର ପ୍ରହରକେ ଆସି ହେଲା ବର୍ତ୍ତମାନ ।
ସୁଭଦ୍ରାକୁ ଘେନି ବିଜେ ବୀର ଧନଞ୍ଜୟ
ଶନୟପୁରେ. ପ୍ରବେଶ ବାସବ ତନୟ ।
ଯେସନେକ ବ୍ୟବହାର ଅଛି ପତିପତ୍ନୀ
ତେସନ ସୁଖେ ବଞ୍ଚିଲେ ସେଦିନ ରଜନୀ ।
ଦ୍ୱାରକାରେ କିଛିଦିନ ରହିଲେ ଅର୍ଜୁନ
ଶ୍ରୀକୃଷ୍ଣଙ୍କ ଅନୁରାଗେ ବଢ଼େ ଯେତେଦିନ ।
ଯଶୋଦା ଦେବକୀ ଏକଦିନେ ଛନ୍ତି ବସି
ଦ୍ୱାରକାରେ ବିଜେ କଲେ ଶ୍ରୀନାରଦ ଆସି ।
ଦେବକୀ ଯଶୋଦା ବେନି ଦେଖି ନାରଦଙ୍କୁ
ପାଦ୍ୟ ଅର୍ଘ୍ୟଦେଇ ପାଦେ ସେବିଲେ ତାହାଙ୍କୁ ।
ବହୁ ପୂଜାବିଧି କଲେ ସେହି ଦୁଇ ମାଏ
ପୁଣ ପୁଣ ପ୍ରଣିପତ୍ୟ ହୋନ୍ତି ତାଙ୍କ ପାୟେ ।
ମୁନି ବୋଇଲେ ଗୋ ତୁମ୍ଭେ ଅଟେ ମାହେଶ୍ୱରୀ
ପୂର୍ବେ ତପକରି ପାଇଛନ୍ତି ନରହରି ।
ଯଶୋଦା ବୋଇଲେ ଭଲ କହିଲ ତ ମୁନି
ମହତ ଦର୍ଶନେ ପ୍ରାଣୀ ହୁଅନ୍ତି ଯେ ଜ୍ଞାନୀ ।
ଆମ୍ଭଙ୍କୁ କାରଣ ଏବେ କର ତପୋବନ୍ତ
ଜନ୍ମେ ଜନ୍ମେ ହେବୁ ଆମ୍ଭେ ଗୋବିନ୍ଦର ମାତ ।
ନାରଦ ବୋଇଲେ ଆଗେ ଏକବ୍ରତ ଅଛି
ତାହା କଲେ ଜନ୍ମେ ଜନ୍ମେ ପାଇବ ଶ୍ରୀବତ୍ସି ।
ଦେବକୀ ବୋଇଲେ ମୁନି ନ କର ସନ୍ଦେହ
ଦୟାକରି ମହାତମା ଆମ୍ଭ ଆଗେ କହ ।
ନାରଦ ବୋଇଲେ ଏବେ ଶୁଣ ଗୋ ଦେବକୀ
ପ୍ରସ୍ତାବେ କହିବା ଧର୍ମ ଥିବ ତହିଁରେ କି ।
ସକଳ ପୁରେ ପ୍ରବେଶି ଧର୍ମ ଅର୍ଥ ଜାଣୁ
ପଚାରିଲେ ସେ ସମସ୍ତ କଥାହିଁ ବଖାଣୁ ।
କାମାକ୍ଷୀ ବୋଲି ଅଛଇ ଗୋଟିଏ ଯେ ବ୍ରତ
ସେ ବ୍ରତ କରିଲେ ଧର୍ମ ହୋଇବ ପ୍ରାପତ ।
ଦେବକୀ ବୋଇଲେ ତୁମ୍ଭେ ଅଭିଜ୍ଞ ପଣ୍ଡିତ
କହିଲେ ସିନା ଜାଣିବା ବିଧାନ ସମସ୍ତ ।
ଓଷାର ଯେ ଉପଚାର ହୋଇବାକ କିସ
ଏହା ସଂକ୍ଷେପି କହିବା ମୋତେ ବ୍ରହ୍ମଶିଷ୍ୟ ।
କହନ୍ତି ଦେବକୀ ମୁଖ ଚାହିଁ ମୁନିଦେବ
ମକର ମାସରେ ଓଷା ସମ୍ପାଦନ ହେବ ।
ମାଘ କୃଷ୍ଣ ତ୍ରୟୋଦଶୀ ତିଥି ହିଁ ପବିତ୍ର
ବୃହସ୍ପତି ବାର ପୁଣି ପୁଷ୍ୟା ଯେ ନକ୍ଷତ୍ର ।
ତିଥିବାର ଯେବେ ଏକ ଯୋଗହିଁ ହୋଇବ
କୃଷ୍ଣ ଗଉରୀ ସେ ଓଷା ନାମ ବୋଲାଇବ ।
ଅପୋଡ଼ା ପୃଥ୍ୱୀ ଖଣ୍ଡିଏ ହେବ ଯଜ୍ଞଶାଳ
ଆହୁତି ଯେ ଆରୋପଣ ହେବ ଦିନ ଷୋଳ ।
ସାମବେଦୀ ଯେ ପଚିଶ ସହସ୍ର ବ୍ରାହ୍ମଣ
ଯଜୁର୍ବେଦ ଯେ ପଚିଶ ସହସ୍ର ପ୍ରମାଣ ।
ପଚିଶ ସହସ୍ର ପୁଣ ଋକବେଦ ଜାଣ
ଅଥର୍ବବେଦ ପଚିଶ ସହସ୍ର ବରଣ ।
ଏମନ୍ତେ ଲକ୍ଷେ ବ୍ରାହ୍ମଣ ହେବେ ଚାରିବେଦି
ଅଜପା ମନ୍ତ୍ରେ ଲକ୍ଷେକ ଜପ ହେବ ସିଦ୍ଧି ।
ସୁବର୍ଣ୍ଣର ହେବ ପୁଣ ଲକ୍ଷେ ଦୀପାବଳୀ
ଲକ୍ଷେକ ହୋଇବ ପୁଣି ସୁବର୍ଣ୍ଣ ପିତୁଳି ।
ଲକ୍ଷେକ ସୁବର୍ଣ୍ଣ ନିତି ଦେଉଥିବ ଦାନ
ଷୋଳଦିନ ପରିଯନ୍ତେ ଦେଉଥିବ ଅନ୍ନ ।
ଯେତେକ ଜନ ଭୁଞ୍ଜିବେ ଜାଣ ଯଜ୍ଞଶାଳେ
ସବୁଙ୍କୁ ହିଁ ବସ୍ତ୍ର ଦେବ ଭୁଞ୍ଜିବାର ବେଳେ ।
ମଣ୍ଡନ କରିବ ଅଷ୍ଟରତ୍ନେ ଲକ୍ଷେ ହସ୍ତୀ
ଲକ୍ଷେଭାର ସ୍ୱର୍ଣ୍ଣଦାନ ଦେବ ଯଶୋବନ୍ତୀ ।
ଚୋଖୀର ତୁରଗ ଏକ ପୁଣି ଲକ୍ଷେ ହୟ
ଏତେକ ଦାନ ଦେବ ସେ ରତ୍ନମଣିମୟ ।
ଆପଣାର ବଂଶୁ ଏକ ସୁଲଭ କୁମାରୀ
ଏହାକୁ ଦାନ କରିବ ଅଙ୍ଗେ ରତ୍ନଭରି ।
ଏକଲକ୍ଷ ରତ୍ନଘଟ କରିବ ମଣ୍ଡିତ
ତାକୁ ଦାନ ଦେବ ଏହି ଏସନ ସଞ୍ଜାତ ।
ଏମନ୍ତ ଯେ ଦାନ ଦେବ ସମସ୍ତ ସଜାଡ଼ି
ଏକଲକ୍ଷ ଦେବ କୃଷ୍ଣ ଅଜିନ ଛଉରି ।
କାମ୍ୟ ଶ୍ରାଦ୍ଧ ଦେବ ଗଣ୍ଡା ଗୋଟିଏକ ମାରି
ଓଷାର ବିଧାନ ଜାଣ ଏମନ୍ତ ହିଁ କରି ।
ଲକ୍ଷେକ ଭାର ହୋଇବ ଜାଣ ଗୁଆଘୃତ
ଲକ୍ଷେକ ଲିଙ୍ଗ ହୋଇବ ମଧୁରେ ମିଶ୍ରିତ ।

ସୁବର୍ଣ୍ଣର ଦେବ ଏକଲକ୍ଷ ଦେବୀ ମୂର୍ତ୍ତି
ପିଙ୍ଗଳ ନାସିକା ସବୁ କାମାକ୍ଷୀ ମୂରତି ।
ମହାଯୋଗେଶ୍ୱରୀ ସେହି ପରମା ବୈଷ୍ଣବୀ
ମୂର୍ତ୍ତି ଗୋଟିକେ ଲକ୍ଷେକ ଛାଗ ଦେବ ଦେବୀ ।
ଷୋଳଦିନ ପରିଯନ୍ତେ ବସି ଦିବାରାତ୍ରେ
ଆହାର ନିଦ୍ରା ମୁରୁଛି ମୈଥୁନ ସହିତ୍ରେ ।
ମିଥ୍ୟା ଅପବାଦ କିଛି ନ କହିବ ନାହିଁ
ତଇଳ ତାମ୍ବୁଳ ଆଦି ନିଷେଧିବ ତହିଁ ।
ଷଟ ସହସ୍ର ବ୍ରାହ୍ମଣ ବରିବ ପ୍ରଥମେ
ପୁରାଣର ଧ୍ୱନି ଦେଉଥିବ ଅନୁକ୍ରମେ ।
ଷୋଳଦିନ ପରିଯନ୍ତେ ଦେବ ଅନ୍ନଦାନ
ଯେ ମାଗିଲେ ସେ ଲେଉଟି ନ ଯିବ ସେଦିନ ।
ପୁଷ୍ପେକ ଅଛଇ ତାର ନାମ ହେ ସୁଗନ୍ଧି
ଷୋଳଦିନକୁ ସେ ପୁଷ୍ପ ଲକ୍ଷେକ ସମ୍ପାଦି ।
ଏହି ବ୍ରତର ଯେ ନାମ ଅଟଇ କାମାକ୍ଷୀ
ଜନ୍ମେ ଜନ୍ମେ ପୁତ୍ର ନିଶ୍ଚେ ହୋଇବ ଶ୍ରୀବକ୍ଷି ।
ଆପେ ବିଜୟ କରିବେ ଆସି ସେ କାମାକ୍ଷୀ
ମାଗିବ ନାରାୟଣଙ୍କୁ ପୁତ୍ରରୂପେ ବାଞ୍ଛି ।
ପୂର୍ବାପର କଥା ଯେତେ ସବୁ ଆମ୍ଭେ ଜାଣୁ
ପଚାରିଲେ ଆମ୍ଭ ପୁଣି ସତ୍ୟ ହିଁ ବଖାଣୁ ।
ଶୁଣି ସାନନ୍ଦ ହୋଇଲେ ଦେବୀ ଯଶୋବନ୍ତି
କରନ୍ତି ବ୍ରହ୍ମାନନ୍ଦନ ନାରଦଙ୍କୁ ସ୍ତୁତି ।
ଧାତାନନ୍ଦନ ପ୍ରତ୍ୟକ୍ଷେ ଅଟ ବ୍ରହ୍ମବେତ୍ତା
ପ୍ରଧାନ ପୁରୁଷ ଭୂତ ଭବିଷ୍ୟତ ଜ୍ଞାତା ।
ଅସଂଖ୍ୟ ସଂଖ୍ୟା କରାଇ ପାରୁ ମହାମନ୍ତେ
ଅବୋଧ ବୋଧ ହୁଅଇ ତୋହର କହନ୍ତେ ।
ଅମାର୍ଗ ମାର୍ଗ ହିଁ ଦୃଶ୍ୟ ହୁଅଇ ଯାହାକୁ
ଅଜପା ଜପି ଅନାଦି ପୁରୁଷକୁ ଦେଖୁ ।
କେଶ ମୁକୁଳା ତୋହର ତୁ ଉଲଗ୍ନଶାୟୀ
ଭ୍ରୁକୁଟି ନୃତ୍ୟ କରାଇ ବକ୍ର କରି ଚାହିଁ ।
ଭଣ୍ଡସଣ୍ଡ କରି କହି ହେଉ ତୁ ଖତାଇ
ବୀଣା ଘେନି ନାଚି ଦେଉ ଜିଭକୁ ହଲାଇ ।
ଡକାପାରୁ କ୍ଷଣକରେ ହସିପାରୁ ବୋବି
ଭଣ୍ଡେ ତାବଣ୍ଡ କରି ତୁ ଅନାଦିଙ୍କୁ ଦେବି ।
ଭର୍ତ୍ସନା କରି ଦିଅନ୍ତି ଯେବେ ତୋତେ ଗାଳି
ଗାଳତୁରୀ ମାରି ଆପେ ଦେଉ କରତାଳି ।
ଅବାଟରେ ଜାତ ତୋତେ କଲା ଦେବବ୍ରହ୍ମା
ତପେ ପ୍ରସନ୍ନେ ଚିହ୍ନିଲା ତୋତେ ମହାତମା ।
କୁତୁହଳୀ ତୋ ଭ୍ରମର ଦେଖି ସେ ପୁରୁଷ
କୁତୁହଳୀ ସେ ପୁରୁଷ ହୋଇଲା ଯେ ବଶ ।
ଅତି ତପେ ନ ପାରନ୍ତି ଅଣାକାର ସାଧି
ମହାଭଣ୍ଡପଣେ ତୁହି କାର୍ଯ୍ୟ କରୁ ସିଦ୍ଧି ।
ତୁ ମହାଋଷି ଧନ୍ୟ ସେ ପୁରୁଷ ପାଇଲୁ
ତେଣୁ ଧବଳ ଘରକୁ ତୁ ଚିହ୍ନି ଜାଣିଲୁ ।
ପ୍ରପଞ୍ଚ ରୂପେ ତୁ କେତେ ପ୍ରମାଦ ଦେଖିଲୁ
ତେଣୁ ପରମ ପୁରୁଷେ ପ୍ରବେଶ ହୋଇଲୁ ।
କଷ୍ଟେ ତପ କଲେ ଯାହା ନ ପାଆନ୍ତି ଲୋଡ଼ି
ନିରତେ ଥାଉ ତୁ ଘେନି କଳି ଯେ ଧୋକଡ଼ି ।
କଳିକଣ୍ଠା ବଳିଲତା କଳି ଆଭରଣ
କଳିପ୍ରିୟ ନାମେ ତୋର କଳି ଦେଖ ପୁଣ ।
ଅମୃତ ଯୋଗାଡ଼ ତୋତେ ହୋଇଲେ ପ୍ରାପତ
କଳି ନ ପାଇଲେ ନୋହୁ କଦାପି ତୃପତ ।
ଭଣ୍ଡପଣେ ତୋଷ କରୁ ସବୁଙ୍କର ଲାଉ
କଉତୁକ ଉପୁଜାଇ କରୁଥାଉ ନୃତ୍ୟ ।
ବିନା ତପେ ଅଣାକାର ଦୟା କଲା ତୋତେ
ବର୍ତ୍ତିଲୁ ତୁ ପୁରି ତିନିଯୁଗ ପରିଯନ୍ତେ ।
ମହାମାୟା ବରେ ତୋର ପିତା ସିନା ବ୍ରହ୍ମା
କହିବାକୁ କାହୁଁ କ୍ଷମ ମୁଁ ତୋର ମହିମା ।
ଯୁକତେ ଏ କାଳ କରେ ଜଗତକୁ ମୋହ
ବାଳବଞ୍ଚା ନାଥ ମୋତେ ଧର୍ମ ଅର୍ଥ କହ ।
ଶରଣ ଧାରଣ ତୁହି ପରମ ଯେ ବ୍ରହ୍ମ
କୃଷ୍ଣବଳ ଯୋଗୁ ତୋତେ କୃତାନ୍ତ ଅଗମ୍ୟ ।
ଆଦ୍ୟହୁଁ ଖଞ୍ଜିଲୁ ନାଥ କଳିର ପୀରତି
ପ୍ରସନ୍ନ ତୁ କରାଇଲୁ କଳକୀ ମୁରତୀ ।
ତୁମ୍ଭର ଭକତିଭାବ ମନେ କରି ଇଚ୍ଛା
ଭବ ସମୁଦ୍ର ଉଦ୍ଧର ପୁରୁ ମନୋବାଞ୍ଛା ।
ଶ୍ରୀନାରଦଙ୍କ ବଚନ ହୃଦେ ମୋର ପଶୁ
ନାରାୟଣଙ୍କ ଆଜ୍ଞାରେ କଷ୍ଟାୟୂଷ ଆସୁ ।
ଶ୍ରୀୟାବଲ୍ଲଭ ଚରଣ ରେଣୁ ଶିରେ ଘେନି
ଗ୍ରନ୍ଥ କରେ ଶ୍ରୀଶାରଳା ଦାସ ଶୂଦ୍ରମୁନି ।
ହୃଦରେ ଚିନ୍ତଇ ଯାହା ଗୋସାମଣି ବୋଲେ
ପାତକ ଧ୍ୱଂସିଲେ ବିଷ୍ଣୁ ପୁରାଣ ଶୁଣିଲେ ।
ପାରିଜାତ ହରଣ ଯା କହିଲେ ଅଗସ୍ତି
ପୀରତି ରସେ ବହିଲେ ମଧ୍ୟପର୍ବ ରୀତି ।
ନୁହଇ ପଣ୍ଡିତ ମୁହିଁ ଜନ୍ମରୁ ମୁରୁଖ
ଧନ ଧଇଲି ଖଡ଼ି ମୁଁ ନ ପଢ଼ି ଅକ୍ଷରେକ ।
ବେଦମନ୍ତ୍ର ସାଧ୍ୟ ମୋର ନୁହେଁ ଜନ୍ମେ ଜନ୍ମେ
ବୋଲଇ ବଚନ ମୁହିଁ ଶାରଳା ପ୍ରସନ୍ନେ ।
ଅସଂଖ୍ୟ ଏ ଅଗୋଚର ଅସମ୍ଭବ ବାଣୀ
ମଧ୍ୟପର୍ବ ଏ ଅମୃତ ଚରିତ ଯେ ପୁଣି ।

ଝଙ୍କଡ଼ପୁର ବାସିନୀ ସିଦ୍ଧ ଗୋ ସାଧବୀ
ସୁଗନ୍ଧିକା ହରଣ ମୁଁ କହିବାକୁ ଭାବି ।
ବାକ୍ୟ ମୋତେ ଦିଅ ମାଗୋ ସୁପ୍ରସନ୍ନ ହୋଇ
ଜନ୍ମେ ଜନ୍ମେ ମୁଁ ତୋହର ସେବକ ବୋଲଇ ।

-୦-

## ସୁଗନ୍ଧିକା ହରଣ, ଅର୍ଜ୍ଜୁନ ଶରରେ ସାଗର ବନ୍ଧନ

ଅଗସ୍ତି କହିଲେ ଶୁଣ ମନୁ ବ୍ରହ୍ମଜ୍ଞାନୀ
ବ୍ରତର ବିଧାନ ଯହୁଁ କହିଲେ ସେ ମୁନି ।
ନାରଦଙ୍କୁ ପୁଚ୍ଛାକଲେ ଦେବୀ ଯଶୋବନ୍ତୀ
ସକଳ ସମ୍ପାଦି ମୋତେ କହିବା ହେ ଯତି ।
ସୁଗନ୍ଧିକା ପୁଷ୍ପ ମୁନି ଅଛି କେଉଁସ୍ଥାନେ
ତାହା ମୋତେ କହିଦେବା ହେଉ ଯେ ଏ କ୍ଷଣେ ।
ନାରଦ ବୋଇଲେ ଅଛି ସେ ଦୂରାପ ଠାବେ
ଆଣିବାକୁ ଲୋକ ନାହିଁ ନ ପାଇବ ତୁମ୍ଭେ ।
ଯେବଣ ଠାବରେ ଅଛି କୁସୁମ ସୁଗନ୍ଧି
ହରିରାମ ବଚନରେ ନୁହଇ ସେ ସିଦ୍ଧି ।
ପୁଷ୍ପ ଫୁଟିଅଛି ପୁଣି ତହିଁ ଅପ୍ରମିତ
ନିରତେ ସେ ସ୍ଥାନ ଲଙ୍କାଦମନ ଆଶ୍ରିତ ।
ବିଷାଦ ପାଇଲେ ପୁଣି ଯଶୋବନ୍ତୀ ରାଣୀ
କାହାକୁ ବୋଲିବୁ କିଏ ପୁଷ୍ପଦେବ ଆଣି ।
କରପତ୍ର ଯୋଡ଼ି ଉଭା ହୋଇଲେ ଅର୍ଜ୍ଜୁନ
କିମ୍ପାଇ ବିଷାଦ ମାତ କରୁଅଛୁ ମନ ।
ଭୋ ପରମଗୁରୁ ଆଜ୍ଞା ମୋତେ ବେଗେ ଦେବା
ତବ ଆଜ୍ଞାରେ ମୁଁ ପୁଷ୍ପ ଆଣିପାରେ ଅବା ।
ଆଉ ଦ୍ରବ୍ୟ ମାତ ତୁମ୍ଭେ ବେଗେ ସଜକର
ଲାଗିବ ସୁଗନ୍ଧ ଯେତେ ସେ ହେଲା ମୋହର ।
ଯଦ୍ୟପି ଯକ୍ଷ ତାହାକୁ ଅଛଇ ଆବୋରି
କଳଙ୍କକୁ ନିଷ୍କଳଙ୍କ କରିବି ମୁଁ ମାରି ।
ଶୁଣି ଆନନ୍ଦ ହୋଇଲେ ଯଶୋଦା ଦେବକୀ
ନାରଦ ହିଁ ଗଲେ ରାମକୃଷ୍ଣଙ୍କ ତହିଁକି ।
ମାତ ଦୁହେଁ ବୋଇଲେରେ ଶୁଣ ରାମହରି
କାମାକ୍ଷୀ ନାମରେ ବ୍ରତ ନାରଦେ ପଚାରି ।
ସେ ଓଷା କରିବା ଯେବେ ତୁମ୍ଭଙ୍କୁ ପାଇବୁ
ଜନ୍ମେ ଜନ୍ମେ ତୁମ୍ଭର ଯେ ମାତ ହୋଇଥିବୁ ।
ବୋଇଲେ ନାରଦ ମୁଖ ଚାହିଁ ନାରାୟଣ
କଳହପ୍ରିୟା ମହାତ୍ମା କି କରୁ ଭିଆଣ ।
ନାରଦ ବୋଇଲେ ତୁମ୍ଭେ ଶୁଣ ପଦ୍ମନାଭ
ଦେବସ୍ତିରୀଙ୍କ ଓଷା ଏ ନାରୀଙ୍କୁ ଦୁର୍ଲ୍ଲଭ ।
ବାବୁ ନାରଦଙ୍କ କଥା ନ ଭାଙ୍ଗରେ କେହି
ମର୍ତ୍ତ୍ୟରେ ପ୍ରଚାର ହେଉ କରନ୍ତୁ ଯେ ସେହି ।
ଏସନ ବୋଇଲେ ଯହୁଁ ପ୍ରଭୁ ବଳଦେବ
ଭାଙ୍ଗି ନ ପାରିଲେ ପ୍ରଭୁକଥା ବାସୁଦେବ ।
ନାରଦ ବୋଇଲେ ହରି ପାର୍ଥଙ୍କୁ ଶ୍ରୀବତ୍ସି
ସୁଗନ୍ଧିକା ପୁଷ୍ପଆଣୁ ସରୋବରେ ପଶି ।
ଅର୍ଜ୍ଜୁନର ବଦନକୁ ଚାହିଁଲେ ଶ୍ରୀହରି
ପୁଷ୍ପଦେଇ ପାରିବୁ କି କହ ତୁ ବିଚାରି ।
ଅର୍ଜ୍ଜୁନ ବୋଇଲେ ଦେବ ଚିନ୍ତା ତୁ ନକର
ଯେତେ ସୁଗନ୍ଧି ଲାଗିବ ଦେବି ସତ୍ୟ ମୋର ।
ନାରଦ ବଚନ ଶୁଣି କହିଲେ ଶ୍ରୀହରି
ବ୍ରତର ଭିଆଣ କର ଆହେ ତପୋଚାରୀ ।
ଦ୍ୱାରକା ଭୁବନ ପୁଣି ଦକ୍ଷିଣ ଆଡ଼ରେ
ନୀଳସୁନ୍ଦର ବାଟରେ ଦକ୍ଷିଣ କୋଣରେ ।
ଅଢ଼ାଇହାତ ଅପୋଡ଼ା ଅଛି ଭୂମିଖଣ୍ଡି
ବିଜୟ ତହିଁ ବିଲଙ୍କ ନାମେ ମହାଚଣ୍ଡୀ ।
ବିନ୍ଧାଣିକି ଡାକି ଆଜ୍ଞାଦେଲେ ନନ୍ଦବାଳ
ସେ ସ୍ଥାନ ଆବୋରି ଦିଅ ଶୁଭ ଅନୁକୂଳ ।
ଅନ୍ତକରି କି କହିବ ଘଟଣା ବିନ୍ଧାଣୀ
ଅନେକ ରତ୍ନଦେଲେ ସେ ତହିଁର ନିର୍ମାଣି ।
ଆପେ ନିକେ ଥାଇ ସେହି ନାରଦ ମହର୍ଷି
କରନ୍ତି ସବୁ ଯୋଗାଡ଼ ଆପେ ଥାଇ ବସି ।
କୃଷ୍ଣ ବଳଦେବ ପୁଚ୍ଛାକଲେ ଅର୍ଜ୍ଜୁନକୁ
ତୋ ଯୋଗୁ ପୁଷ୍ପ ପ୍ରାପତ ହୋଇବ ଆମ୍ଭଙ୍କୁ ।
ଶୁଭ ଅନୁକୂଳ ଆଣିଦେଲେ ଚକ୍ରପାଣି
ଚଳଇ ବାସବୀ ସୁଗନ୍ଧିକା ପୁଷ୍ପ ଆଣି ।
ମାଘମାସ କୃଷ୍ଣପକ୍ଷ ଦ୍ୱିତୀୟାର ଦିନ
ଉତ୍ତମବାରେ ଯେ ମଘାନକ୍ଷତ୍ର ସେଦିନ ।
ବାଳବ ନାମେ କରଣ ଶୁଭନାମେ ଯୋଗ
ସତରଦିନ ମକର ସଂକ୍ରାନ୍ତିର ଭୋଗ ।
ବେଳ ମଧ୍ୟସ୍ଥାନ ସୂର୍ଯ୍ୟ ବୁଧ ଲଗାବେଳେ
ତିଥିବାର ନକ୍ଷତ୍ର ଯେ ଶୁଭ ଅନୁକୂଳେ ।
ଚଳଇ ପଶ୍ଚିମଦିଗେ ସେ ପାକଶାସନି
ନାରଦ ବୋଇଲେ ଦେବ ଶୁଣ ଚକ୍ରପାଣି ।
ଅର୍ଜ୍ଜୁନ ଯାଉଛି ପକ୍ଷୀରାଜ ମଧୁବନ
ମୋହର ବଚନ ଶୁଣ ଦେବ ଜନାର୍ଦ୍ଦନ ।
ପୂର୍ବର କଥାକୁ ତୁ ହୋ ହେତୁକର ମନେ
କାଳୀୟ ହ୍ରଦରେ ଥିଲେ ଯେଉଁ ସର୍ପମାନେ ।
ନୀଳ ଇନ୍ଦିବର ସହ ଯକ୍ଷ ପ୍ରତିପାଳି
ତୋ ଭୟେ ପଳାଇ ତହିଁ ପଶିଅଛି କାଳୀ ।

ସୁଗନ୍ଧି ପୁଷ୍ପ ଆବୋରିଅଛି କାଳସର୍ପ
ଅର୍ଜୁନ ସହିପାରିବ କାହୁଁ ତାର ଦର୍ପ ।
ଗରୁଡ଼କୁ ସୁମରନ୍ତେ ଦେବ ନାରାୟଣ
ତୁରିତେ ମିଳିଲା ଆସି ବିନତା ନନ୍ଦନ ।
ବୋଲନ୍ତି ସେ ଗରୁଡ଼କୁ ଦେଖି ଜଗନ୍ନାଥ
ତୋହର ପିଠିରେ ବିଜେ କରୁ ବୀର ପାର୍ଥ ।
ବୈନତେୟ ଅର୍ଜୁନକୁ ଗଲା ତହିଁ ଘେନି
ଖଗବରକୁ ସେ ବୀର କରଇ ଦୟିନୀ ।
ସ୍ୱାମୀ ନାରାୟଣ ବିଜେ କରନ୍ତି ତୋ ପିଠି
ମୁହିଁ ବହିଛି ମାନବ ହୀନ ଜନ୍ମଗୋଟି ।
ଗରୁଡ଼ ବୋଇଲା ତୁହୋ ନ କହ ଏମନ୍ତ
ଅଭେଦ ଶରୀର ଆତ୍ମା ଅଟୁ କୃଷ୍ଣ ପାର୍ଥ ।
ନର ନାରାୟଣ ତୁମ୍ଭେ ଅଟ ଏକ ମୂର୍ତ୍ତି
ମେଖଳା ଅନ୍ତରେ କୋଟି ନାମରେ ଗଣନ୍ତି ।
ଅର୍ଜୁନ ବୋଲେ ରମ୍ୟକ ଦ୍ୱୀପେ ତୁ ରହିବୁ
ମୋତେ ଅଗୋଚର ହେଲେ ସୁମରିଲେ ଯିବୁ ।
ଗରୁଡ଼ ବୋଇଲେ ମୋତେ ପେଶିଲେ ଶ୍ରୀହରି
ବହନ ଯିବା ମୋହର ପୃଷ୍ଠେ ବିଜେ କରି ।
ଅନେକ କଟାଳ ଯହୁଁ କଲା ପକ୍ଷୀରାଜ
ପୃଷ୍ଠେ ବିଜେକଲା ଯାଇ ବାସବ ଆତ୍ମଜ ।
ଚଳଇ ଅର୍ଜୁନ ଧରି ମୀନ ଲଗ୍ନ ବେଳା
ବାମେ ଯୋଗିନୀ ସପ୍ତମ ଘରେ ଚନ୍ଦ୍ରକଳା ।
ଲକ୍ଷେକ ବଳ ଗାଣ୍ଡିବ ନାମେ ମହାଧନୁ
ପ୍ରତ୍ୟକ୍ଷେ କି ନାରାୟଣ ବିଜୟ ଗଗନୁ ।
ସୁର ମଧୁବନ ନାମେ ମାରୁତିର ପୁର
ଏଗାର ସହସ୍ର ଯୁଣ ମନ୍ଦିରୁ ସେ ଦୂର ।
ପବନହୁଁ ଚଞ୍ଚଳ ତ ଅଟେ ଖଗେଶ୍ୱର
ଏକା ରାତିକେ ପ୍ରବେଶ ଯକ୍ଷରାଜପୁର ।
ଦେଲାକ ମଳୟ ବନ୍ତ ଅନନ୍ତ ଯେ ଗିରି
ମଧ୍ୟେ ସରୋବର ଚାରିଆଡ଼େ ଗିରି ଚାରି ।
ଯୋଜନଗନ୍ଧା ନାମରେ ଏକ କଳ୍ପବଟ
ସେ ବଟ ଅଟେ ଦକ୍ଷିଣ ଭାଗ ସିନ୍ଧୁ ତଟ ।
ମଧ୍ୟେ ସରୋବର ଗୋଟି ଶତେକ ଯୋଜନ
ପନ୍ଦର ଯୋଜନ ତାର ଗର୍ଭ ଆୟତନ ।
ତହିଁର ଭିତରେ ଅଛି କୁସୁମ ସୁଗନ୍ଧି
ନିରତେ ସେ ଜଳ ଘୋଟି ଅଛଇ ଜଳଧି ।
ପୁଷ୍ପଙ୍କର ଜ୍ୟୋତିକାଳ ଆଦିତ୍ୟକୁ ଜିଣି
ଦେବତାଏ କେହି ପଶି ନ ପାରନ୍ତି ପୁଣି ।
ଯମୁନା ହ୍ରଦ ପରାୟ ଝଲକଇ ପାଣି
ଜଳେ ଜଳ ପ୍ରାୟେ ପୂରି ଅଛନ୍ତି ନାଗୁଣୀ ।

ଆକାଶକୁ ତାଙ୍କ ତେଜ ଲାଗେ ଜଳବିମ୍ବ
ପର୍ବତେ ଅର୍ଜୁନ ଥାଇ ଦେଖଇ ତା ସର୍ବ ।
ମନ୍ଦାର ପୁଷ୍ପ ଯେସନେ ପ୍ରଭାତରେ ଝଳି
ମହାପ୍ରଳୟ ଜଳେ କି ଲୁଚିଅଛି କାଳୀ ।
ଅର୍ଜୁନ ବୋଲେ ଶୁଣିବ ବିନତାର ସୁତ
ଏହି ବଟ ଉପରେ ତୁ ହୋଇଥା ଗୁପତ ।
ଦେଖଇ ବୁଝଇ କିନା କାଳୀର ଯେ ଦର୍ପ
ମୋତେ ଦେଖିଣ ଆସନ୍ତି କିନା ଯେତେ ସର୍ପ ।
ବାମକରେ ଧନୁଶର ଡାହାଣରେ ଯଷ୍ଟି
ବଟର ତଳରେ ଉଭା ହୋଇଲା କିରିଟୀ ।
ହରିରାଜ ବନେ ସେହୁ ଅଟେ ଅଧିପତି
ସେବନ ରଖଇ ହରି ବଳ ଚକ୍ରବର୍ତ୍ତୀ ।
ସେ ଅପୂର୍ବ ପୁରୁଷକୁ ଦେଖି କପିବୀରେ
ଅର୍ଜୁନକୁ ହିଁ ବେଢ଼ିଲେ ଆସି ସେ ସଧିରେ ।
କିରିକିଟା ଶବ୍ଦ ଘୋର ବିକଟାଳ ମୁଖ
କାଳିମୁଖ ଦଧିମୁଖ ଦୁର୍ମୁଖ ସମୁଖ ।
ଅଧର ବିକାଶ ଆସି ମିଳିଲେ ସଇନ୍ୟ
ଯଷ୍ଟିକରେ ଘେନି ତାଙ୍କୁ ପିଟଇ ଅର୍ଜୁନ ।
ଧାତିକାରେ ଉଠିଲେ ସେ ଧାଇଁ ବୃକ୍ଷ ଶିଖେ
ଗୋଡ଼ାଇ ବାସର୍ବ ତାଙ୍କୁ ପିଟନ୍ତେ ବିମୁଖେ ।
ଡାଙ୍ଗେ ପିଟନ୍ତେ ତାଙ୍କର ନାହିଁ କିଛି ଭୀତି
ବୃକ୍ଷ ବୁଲାଇ ଧାଇଁଲେ ହୋଇ କୋପମୂର୍ତ୍ତି ।
ଶିଳାମାନ କରେ ଧରି ଧାଇଁଲେ ବାନରେ
ଅର୍ଜୁନକୁ ଫୋପାଡ଼ିଲେ ଥାଇଁ ବହୁଦୂରେ ।
ଅତ୍ୟନ୍ତ ବିମୁଖ ହୋଇ ବୀର ଫାଲଗୁନି
ଗୁଣନାଦ କରି ବୀର ଧନୁଶର ଘେନି ।
ଗାଣ୍ଡିବ ଧନୁରେ ବୀର ସନ୍ଧି ଶର ଚାରି
ବିନ୍ଧିଲା ଅର୍ଜୁନ ଦ୍ରୋଣ ଗୁରୁଙ୍କୁ ସୁମରି ।
ଅନୁକ୍ଷଣେ ଗୁଣେ ସନ୍ଧି ବୀର ଧନଞ୍ଜୟ
ବସିଲେ ନାରାଚେ ଯାଇ ବାନରଙ୍କ କାୟ ।
ପକ୍ଷୀପରମାଣେ ଯାଇ ଛଇଛାଡ଼େ ଗିଳି
ପୁଣି ସେ ବିନ୍ଧିଲା ଚାରି ବାଣ ମହାବଳୀ ।
ଶରକୁ ଆଘାତ ପାଇ ପଳାଇଲେ ଡରେ
ହନୁକୁ ଭେଟିଲେ ଖିନିଖିନା ପର୍ବତରେ ।
ବିକଳେ ଆକୁଳ ହୋଇ ପଳାନ୍ତି ସଇନି
ବୀରେକ ବିନ୍ଧଇ କରେ ଦେବଶସ୍ତ୍ର ଘେନି ।
ସୈନ୍ୟଙ୍କ ବିକଳ ଦେଖି ବୀର ହନୁମନ୍ତ
କୋପେଣ ଧାଇଁଲା କରେ ଘେନିଣ ପର୍ବତ ।
ବାନର ବଳକୁ ଛାଡ଼ିଯାଏ ବୀରମଣି
ଦିଶଇ ସୁନ୍ଦର କି ସେ ଦେବ ଚକ୍ରପାଣି ।

ହନୁମନ୍ତ ବିଜେକଲା ଏମନ୍ତ ସମୟେ
ଦେଖି ବୀର ଧନଞ୍ଜୟ ରହିଲା ନିର୍ଭୟେ ।
ରେରେକାର ଶବଦରେ ସେ ବୀର ଅର୍ଜ୍ଜୁନ
ବାନରଙ୍କୁ ବିନ୍ଧୁଅଛି ଅସ୍ତ୍ର ଅନୁକ୍ଷଣ ।
କୋପେ ମାରୁତି ପର୍ବତ ଗୋଟାଏ ବୁଲାଇ
ଆରେରେ ମାନବ ତୋର ଏଡ଼େ ଦର୍ପ କାହିଁ ।
ପର୍ବତ ବୁଲାଇ ହନୁ ମାଇଲାକ ବେଗେ
ବକ୍ରମୁନା ଶରେ ତାହା ପାର୍ଥ ଛେଦେ ଯୋଗେ ।
ଦେଖି ହନୁମାନକୁ ଯେ ନ ସ୍ଫୁରଇ କିଛି
ଏଡ଼େ ବଡ଼ ବୀର କେଉଁ ଭୁବନୁ ଆସିଛି ।
ପୁଣି ପର୍ବତେକ ଆଣି ମାରି ରାମଦୂତ
ବାବଲ ଶରେ ଛେଦିଲା ତାହା ବୀର ପାର୍ଥ ।
କୋପେ ହନୁମନ୍ତ ବେନି ମୁଥକୁ ଉଞ୍ଚାଇ
ଅର୍ଜ୍ଜୁନର ଉପରକୁ ଆସୁଅଛି ଧାଇଁ ।
ହନୁର ସେ ଉଗ୍ରମୂର୍ତ୍ତି ଦେଖିଣ ବାସବୀ
ମାଇଲା ବାବଲ ଶର ପାର୍ଥ ଭାବି ଭାବି ।
ନାରାଚ ବସିଲା ଯାଇ ହନୁମନ୍ତ କାୟେ
ଶରୀର ଦିଶଇ ତାର କିଂଶୁକ ପରାୟେ ।
ରୋମେ ରୋମେ ଫୁଟି ଦେହୁଁ ଗଳଇ ରୁଧିର
ଶାନ୍ତିମୂର୍ତ୍ତି ହୋଇ ତାକୁ ପୁଚ୍ଛେ ମହାବୀର ।
ରହ ରହ ବୋଲି ଉଚ୍ଚେ ହନୁମନ୍ତ ଡାକି
ଅମୋଘ ଶର ତୂଣୀରୁ କାଢ଼ିବାର ଦେଖି ।
ନାରାଚ ଗୋଟିକୁ ଦେଖି ବିଚାରେ କପିନ୍ଦ୍ର
ଏ ଶରେ ଅସୁର ବଧ କଲେ ରାମଚନ୍ଦ୍ର ।
ମହାଯୋଦ୍ଧା ଅଟଇ ଏ ନୁହଇ ମାନବ
ଅମର ଭୁବନ ତେଜି ବିଜେ କି ବାସବ ।
କିବା କପିଳାସ ତେଜି ବିଜେ ମହାଦେବ
କିଏ ଦେବକୀ ନନ୍ଦନ ଦେବ ବାସୁଦେବ ।
ହନୁମନ୍ତ ବୋଇଲା ହେ ମହାତମା ରହ
ନାରାଚ ସଂହରି କଥା ପଦେ ମୋତେ କହ ।
କିସ ନାମ କହ ତୋର କିସ ତୋର କାୟା
ମୋତେ ଅସମ୍ଭବ ହେଲା ଏ ତୋହର ମାୟା ।
ମୁହିଁ ଯୋଗେଶ୍ୱର ଖିନିଖିନା ଅଧିପତି
ଅସୁର ସାଗର ମୁହିଁ ପୂର୍ବେ ଥିଲି ମଛି ।
ପର୍ବତରେ ବନ୍ଧ ମୁହିଁ କଲଇଁ ବାରିଧି
ରଣରଙ୍ଗ ରସେ ମାତି କଉପଣ ଛେଦି ।
ଅର୍ଜ୍ଜୁନ ବୋଇଲା ଛାର ପାମର ତୋ କଥା
ସମୁଦ୍ରକୁ ବାନ୍ଧିକିରେ ହେବୁ ବଳବନ୍ତା ।
ଜାତିରେ ବାନର ତୁହି ଖାଉ ଫଳମୂଳ
ତୁ ପୁଣି ଦେଖାଉ ଆସି ମୋ ଆଗରେ ବଳ ।

ବିନାଦୋଷେ ମୋ ସଙ୍ଗରେ କରୁଅଛି କଳି
କାଟି ତୋର ଶିର ଦେବି ଏହିକ୍ଷଣି ବଳି ।
ହନୁ ବୋଲେ ଜାଣିଲି ମୁଁ ବିଚିତ୍ର ତୋହର
ଧନୁଶର କରେ ଧରି କରୁ ଅଂହକାର ।
କିମ୍ପାଇ ତୋଳିଲୁ ଫୁଲ ସରୋବରୁ ଆସି
ଏହି ସରୋବରେ ଇନ୍ଦ୍ର ନ ପାରଇ ପଶି ।
ଫୁଲ ନେଇ ନ ପାରନ୍ତି କେହି ମୋର ଡରେ
ଶ୍ରୀରାମଙ୍କୁ ନିତି ଏହି ଫୁଲେ ପୂଜା କରେ ।
ଅର୍ଜ୍ଜୁନ ବୋଇଲା କେଉଁ ରାମ କାହିଁ ଘର
କାହାକୁ ତୁ ପୂଜାକରୁ ଆରେରେ ବାନର ।
ହନୁ ବୋଲେ ନ ଜାଣୁ କି ତୁହି ସେ ରାମଙ୍କୁ
ପୁରନ୍ଦର ଭୟକରେ ଯାହାର ଧନୁକୁ ।
ଯାହାର ଆଜ୍ଞାରେ ଗିରି ଜଳରେ ଭାସଇ
ଯାହାର ଆଜ୍ଞାରେ ମୁହିଁ ବନ୍ଧ ବାନ୍ଧିଲଇଁ ।
ଚାରିଦିନେ ହେଲା ଶତ ଚୌବିଂଶ ଯୋଜନ
ଏ ପୁଷ୍ପେ ତାହାଙ୍କୁ ପୂଜା କରେ ପ୍ରତିଦିନ ।
ଅର୍ଜ୍ଜୁନ କହିଲା କହୁ ତୁ ସେ ରାମ ବଳ
ଦଣ୍ଡକ ମଧ୍ୟରେ ବାନ୍ଧିଦେବି ସିନ୍ଧୁଜଳ ।
ହନୁମନ୍ତ ବୋଇଲା ତୁ ଯାହା ବୋଲୁ ତୁଣ୍ଡେ
ବାନ୍ଧି ନ ପାରିଲେ କେହି ଚଉଦ ବ୍ରହ୍ମାଣ୍ଡେ ।
ଅର୍ଜ୍ଜୁନ ହୋଇଲା ତୋର ରାମର କି ବଳ
ଋଷିମର୍କଟ ଆଣିଲେ ମୁଣ୍ଡରେ ଶଇଳ ।
ବରଷକେ ସେହି ବନ୍ଧ ବାନ୍ଧିଲେ ଯେ ପୁଣି
ରାକ୍ଷସ କେତୁଟା ରାମ ପକାଇଲେ ହାଣି ।
ତା ପ୍ରଶଂସା କହୁ ତୋତେ ମାଡୁନାହିଁ ଲାଜ
ଶରରେ ସାଗର ମୁହିଁ ବାନ୍ଧିଦେବି ଆଜ ।
ହନୁ ବୋଲେ ଯେ ରାମଙ୍କୁ ନିନ୍ଦୁରେ ମାନବା
ତାଙ୍କୁ ଅସମ୍ଭବ ନୁହେଁ ଶରରେ ବାନ୍ଧିବା ।
ସେ ଶର କନ୍ଧ କି ଦାଉ ସହିବ ଆମ୍ଭର
ଏଣୁ ସେ ପର୍ବତେ ବାନ୍ଧି ଅଛନ୍ତି ସାଗର ।
ଅର୍ଜ୍ଜୁନ ବୋଇଲା ମୋର ଶରବନ୍ଧେ ଯେବେ
ଯକ୍ଷ କି ଉରଗ ଦେବ ଦାନବ ମାନବେ ।
ସମର କରିବେ ରହି ସହସ୍ର ବରଷ
ତଥାପି ସେ ଶରବନ୍ଧ ନୋହିବ ବିନାଶ ।
ଛାର ରକ୍ଷ ମର୍କଟକୁ କିଏ ଅବା ଗଣେ
ତୁଟିବକି ଶରବନ୍ଧ ତାହାଙ୍କର ରଣେ ।
ହନୁମନ୍ତ ବୋଇଲା ହୋ ଆସକିନା ଭାଇ
ମିଛେ ଏତେ ଦମ୍ଭ ତୁମ୍ଭେ କରୁଛ କିମ୍ପାଇଁ ।
ବୋଇଲା ସେ ଫାଲଗୁନି ଭାଙ୍ଗଇ ତୋ ଗାଲ
ବାନ୍ଧଇ ସାଗର ଦେଖ ଘେନି କପିପଲ ।

ଆସ ଆସ ବୋଲି ହନୁ କଢ଼ାଇଲା ବାଟ
ଦିବସକେ ହେଲେ ଯାଇ ମହୋଦଧି ତଟ ।
ଆରେରେ ପାମର ତୁହି ବୋଲୁ ମହାଯୋଦ୍ଧା
ବାନ୍ଧିଲୁ ଚାରିଦିବସ ମଧ୍ୟେ ଏ ବାରିଧି ।
ଶୁଣ ହୋ ମର୍କଟ ବୋଲି ବୋଲଇ ଫାଲଗୁନି
ମୁହିଁ ବନ୍ଧକରି ଦେବି ବେଳ ଦଣ୍ଡତିନି ।
ହନୁ ବୋଲେ ଚଉବିଂଶ ଯୋଜନ ଏ ଦୀର୍ଘ
ବିଂଶଯୁଣ ପ୍ରତି ବାରଯୋଜନ ଉସର୍ଗ ।
ବୋଲଇ ଧନଞ୍ଜୟ ତୁ କହିଲୁ ନ ଜାଣି
ସମୁଦ୍ରଯାକ ନାରାଚେ ବାନ୍ଧିବି ଏକ୍ଷଣି ।
ହନୁ ବୋଇଲା କହୁ ତୁ କେବଣ ବଚନେ
କରିପାରୁ ଯେବେ ମୁହିଁ ଦେଖିବି ନୟନେ ।
ହନୁମାନ ବଚନରେ କୁପିତ ଅର୍ଜ୍ଜୁନ
ମନଭେଦୀ ନାରାଚକୁ ମନେ କଲା ଧ୍ୟାନ ।
ଯାହା ତାକୁ ଦେଇଥିଲେ ତୋଷେ ବୈଶ୍ୱାନର
ଭେଟିଲା ସେ ଶର ଆସି ଅର୍ଜ୍ଜୁନ ପାଶର ।
ଅର୍ଜ୍ଜୁନ ବୋଇଲେ ତୁହୋ ମନଭେଦୀ ଶର
କଟାଳ କରୁଛି ମୋତେ ଏ ଛାର ବାନର ।
ଏ ସାଗର ବନ୍ଧତୁଲ୍ୟ ହୋଇବୁ ଏକ୍ଷଣେ
ଲଙ୍କାଗଡ଼େ ହାବୋଡ଼ିବୁ ପଚିଶ ଯୋଜନ ।
ଓସାର ହୋଇବୁ ପୁଣି ବିଂଶତି ଯୋଜନ
ବାରଯୋଜନ ଉସର୍ଗ ହୋଇବୁଟି ପୁଣ ।
ଏତେକ ତିଆରି ଛାଡ଼ିଦେଲା ମନଭେଦୀ
ପବନୁ ବେଗେ ବାନ୍ଧିଲା ସେ ଶର ବାରିଧି ।
ଆଜ୍ଞା ପ୍ରମାଣରେ ମନଭେଦୀ ଶର ଗଲା
ସମୁଦ୍ର ଭିତରେ ରହି ବନ୍ଧେକ ହୋଇଲା ।
ଏକଶତ ଚଉବିଂଶ ଯୁଣେ ଲମ୍ବହୋଇ
ଲଙ୍କାଗଡ଼ ପାଚେରୀରେ ହାବୁଡ଼ିଲା ଯାଇ ।
ବିଂଶତି ଯୋଜନ ପ୍ରତି ବାରଯୁଣ ଉଚ୍ଚ
ସାଗରେ ସେ ଶରବନ୍ଧ ହୋଇଲା ସୁସଞ୍ଚ ।
ଦେଖିଣ ଆଶ୍ଚର୍ଯ୍ୟ ହେଲା ଅଞ୍ଜନାର ବଳା
ନିଶ୍ଚୟ ଏ ମହାତମା ନାରାୟଣ ବଳା ।
ହନୁମନ୍ତ ବୋଇଲା ତୁ ବାନ୍ଧିଲୁ ନା ଶରେ
ସୋଲଭେଳା ଜାଣି ଉପୁଜିଆଇ ଜଳରେ ।
ତୁ ମହାକ୍ଷତ୍ରୀ ମହିମା ଧନ୍ୟ ହିଁ ତୋହର
କେହି ବାନ୍ଧି ନ ପାରଇ ଶରରେ ସାଗର ।
ପର୍ବତର ବନ୍ଧ ଯେବେ ସହିଲାକ ଭାର
ଏହା ସହିବ କି ଶରବନ୍ଧ ମାତ୍ର ସାର ।
ରାମ ରାବଣର ଥିଲା ଯେତେ ପୁଣି ଆଟ
ବନ୍ଧ ଉପରେ ସମରେ ନ ଦିଶିଲା ବାଟ ।
ଏ ବନ୍ଧ ସହିବ ବୋଲି ଅର୍ଜ୍ଜୁନ ବୋଇଲେ
ସହିବ ଏ ମହାଭାର ମେରୁ ହିଁ ହୋଇଲେ ।
ହନୁମାନ ବୋଇଲାକ ବେନିଥାଟ ଛାଡ଼ି
ଏକା ମୁଁ ଗଲେ ନ ପୁଣି ଭାଙ୍ଗିଏ ନ ପଡ଼ି ।
ଅର୍ଜ୍ଜୁନ ବୋଇଲେ ତୋର ପ୍ରାୟ ହେଲେ ଲକ୍ଷେ
ସହିବ ମୋ ବନ୍ଧ ଭାଙ୍ଗି ନ ଯିବ ପ୍ରତ୍ୟକ୍ଷେ ।
ଲକ୍ଷେ ରାବଣ ଯେବେଟି ଲକ୍ଷେ ରାମ ହେବେ
ମୋ ବନ୍ଧକୁ ତିଳେମାତ୍ର ଭାଙ୍ଗି ନ ପାରିବେ ।
ଲକ୍ଷେ ରାମ ଉଠନ୍ତୁ ଯେ ବନ୍ଧର ଉପରେ
ଲକ୍ଷେ ନାରାୟଣ ଯୁଦ୍ଧେ ହେଉନା ଏଥିରେ ।
ଦେଖିବୁ କିହୋ ବାନର ପୁଣି ହିଁ ବିନ୍ଧିବି
ଆହୁରି ବନ୍ଧକେ ଏହିପରି କରିଦେବି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ସୁତଳ ଅତଳ
ବିତଳ ଭୂତଳ ମହାତଳ ରସାତଳ ।
ଦେବଲୋକ ନାଗଲୋକ କୋଟି କୋଟି ଆସି
ସମସ୍ତେ ଉଠନ୍ତୁ କିନା ଏ ବନ୍ଧେ ଭରସି ।
ପ୍ରତ୍ୟକ୍ଷେ ଦେଖ ବାନର ସେତୁବନ୍ଧ କଥା
କ୍ଷତ୍ରୀବର ପ୍ରତିଜ୍ଞା ହିଁ ରହଇ ସର୍ବଥା ।
ହନୁ ବୋଇଲା କହିଲୁ କରି ତୁହି ଗର୍ବ
ଏକା ମୋହର ଭାରାକୁ ଏ ଯେବେ ସହିବ ।
ତେବେ ମୁହିଁ ତୋତେ ବୀର ମଧ୍ୟରେ ଗଣିବି
ନୋହିଲେ ଚାପୋଡ଼େ ମାରି ମୁଣ୍ଡ ଛିଣ୍ଡାଇବି ।
ଏତେକ ବୋଲି କୋପରେ ସେ ଅଞ୍ଜନା ଶିଷ୍ୟ
ଆକ୍ରୋଶି ପଶ୍ଚିମ ଦିଗେ ହୋଇଲା ପ୍ରବେଶ ।
ରାଗେ ହନୁମନ୍ତ ବିଶ୍ୱରୂପକୁ ଧଇଲା
ଆଦିତ୍ୟଙ୍କ ରଥେ ତାର ମସ୍ତକ ଲାଗିଲା ।
ଚଉଦ ଲକ୍ଷ ଯେ ଥିଲେ ବାନର ବାହିନୀ
ଲାଙ୍ଗୁଳରେ ବସାଇଲା ହନୁ ମହାଜ୍ଞାନୀ ।
ଗଳାରେ ହେ ବନମାଳ ଲକ୍ଷେକ ପର୍ବତ
ମହାବିଶ୍ୱରୂପ ହେଲା ଅଞ୍ଜନାର ସୁତ ।
ଲୋମକେ ପର୍ବତ ଲକ୍ଷେ ବାନ୍ଧିଅଛି ବୀର
ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ ତା ଗର୍ଭର ଭିତର ।
ଗରୁଡ଼ ବୃକ୍ଷରେ ଥାଇ ଦେଖଇ ପ୍ରତ୍ୟକ୍ଷେ
ଭଇରବ ରୂପ ଦେଖି ଅର୍ଜ୍ଜୁନ ସମକ୍ଷେ ।
ବିଚାରଇ ଗରୁଡ଼ ଏ ପାର୍ଥ ନାଶଗଲା
ହନୁର ସଙ୍ଗେ କିମ୍ପାଇ ବିବାଦୀ ହୋଇଲା ।
ସୁମରଇ ସେ ଗରୁଡ଼ ଭୟେ ନାରାୟଣ
ଚାହିଁ ନ ପାରିଲା ସେହି ରୂପକୁ ଅର୍ଜ୍ଜୁନ ।
ଘନ ଘନ ଭୟେ ତାର ଶରୀର କମ୍ପଇ
ହସ୍ତରେ ସେ ଧନୁଶର ଧରି ନ ପାରଇ ।

ବିଚାରଇ କି ଯୋଗେ ମୁଁ ହୋଇଲି ବାହାର
ତ୍ରେତାଯୁଗ ମଲ୍ଲ ଯେଉଁ ହନୁ ମହାବୀର ।
ସାକ୍ଷାତରେ ରୁଦ୍ରରୂପୀ ପବନ ନନ୍ଦନ
ନିଶ୍ଚୟ ଘେନିବ ଆଜ ମୋହର ଜୀବନ ।
ପୃଥ୍ୱୀଦେବୀ ଯାର ଭାରା ସହି ନ ପାରଇ
ଛାର ଶର ବନ୍ଧ କାହୁଁ ପାରିବ ତା ସହି ।
କି ବୁଦ୍ଧି କରିଣ ପାର ହୋଇବି କେମନ୍ତ
ଗୋବିନ୍ଦ ଆମ୍ଭର ବନ୍ଧୁ ଜାଣନ୍ତି ସମସ୍ତ ।
କେତେ କେତେ ଆପଦରୁ ରଖିଛନ୍ତି ହରି
ବେଳେ ରକ୍ଷାକର ମୋତେ ପ୍ରଭୁ ଦଇତ୍ୟାରି ।
ଏତେ ଭାଳି ପଦ୍ମପାଦେ ଲଗାଇଲା ଲୟ
ଅର୍ଜୁନ ଗରୁଡ଼ ମନ ଜାଣି ଦେବରାୟ ।
ଦ୍ୱାରକାରୁ ଆସି ବିଜେ ହେଲେ ତତକ୍ଷଣେ
ହନୁମାନ ଅର୍ଜୁନର ଅନ୍ୟୋଅନ୍ୟ ସ୍ଥାନେ ।
ଗରୁଡ଼ ଆଗେ ବିଜୟ ହେଲେ ଭାବଗ୍ରାହୀ
ଭାଳନ୍ତି ସେ ନାରାୟଣ ଗରୁଡ଼କୁ ଚାହିଁ ।
ତ୍ରେତାଯୁଗ ମଲ୍ଲ ଏହି ବୀର ହନୁମନ୍ତ
ଏହାର ପ୍ରତିଜ୍ଞାକୁ କି ଅର୍ଜୁନ ସମର୍ଥ ।
କଳ୍ପେ କଳ୍ପେ ଯୁଗେ ଯୁଗେ ବହିଛି ଶରୀର
ରାମାୟଣ ଭୋଗକଲା ଏକସ୍ତରୀ ବାର ।
ଏକ ଶରୀର ମୋହର ଅଟେ ବେନି ଆତ୍ମା
ମୋତେ ଆଶ୍ରେ କରି ସିନା ଏହାଙ୍କ ମହିମା ।
ଦ୍ୱାପର ଯୁଗରେ ମୋର ସଖା ବୀର ପାର୍ଥ
ରାମ ଅବତାର ମୋର ସଖା ହନୁମନ୍ତ ।
ଅର୍ଜୁନ ଯେବେଟି ଆଜ ହାରିବ ଯୁକତ
ରଖିବ କି ଅର୍ଜୁନର ପ୍ରାଣ ହନୁମନ୍ତ ।
ମୋହର କାର୍ଯ୍ୟେ ଅର୍ଜୁନ ଅଟେ ବଡ଼ ଦୁଃଖୀ
ଏହାର ପ୍ରତିଜ୍ଞା ଆଜି କେମନ୍ତେ ମୁଁ ରଖି ।
ଏସନକ ବିଚାରିଣ ଦେବକୀର ବସ୍ୟ
ସମୁଦ୍ରେ ପଶିଲେ ହୋଇ ଏକ ମହାମତ୍ସ ।
ଯେଉଁ ବିଶ୍ୱରୂପ ଧରି ଅଛନ୍ତି ପାବନି
ଭାଙ୍ଗିବ ସେ ବନ୍ଧ ଲଜ୍ଜା ପାଇବ ଫାଲଗୁନି ।
ଏସନ ବିଚାରି ମନେ ଦେବ ଚକ୍ରଧାରୀ
ମୀନରୂପ ହୋଇ ସିନ୍ଧୁ ଜଳେ ଅବତରି ।
ମହାମୀନରୂପ ହୋଇ ଦେବ ଦେବ ହରି
ଜଳର ଭିତରେ ପଶି ଶରବନ୍ଧ କରି ।
ପିଠିରେ ବସାଇ ଦେବ ଆବୋରିଲେ ବନ୍ଧ
ବିଶ୍ୱରୂପ ଧଇଲେ ତ ଏହି ସେ ଗୋବିନ୍ଦ ।
ଶରବନ୍ଧ ରହିଲାକ ନାରାୟଣ ପିଠି
ହୁଙ୍କାରି ସେ ହନୁମନ୍ତ ଶରବନ୍ଧେ ଉଠି ।
କହନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ମହାବିଶ୍ୱରୂପେ ବୀର ଘୋଟିଲା ସେ ହନୁ ।
ଏସନ ରୂପେ ଉଠିଲା ବନ୍ଧେ ମହାବଳୀ
ପାଦେକ ଦେଇ ପାଦେ ପକାଇଲା ତୋଳି ।
ମତ୍ସ୍ୟ ନାରାୟଣ ମୁଖୁଁ ଗଳିଲା ରୁଧିର
ତ୍ରୈଲୋକ୍ୟ ଆନ୍ଦୋଳ କଲା ବିଶ୍ୱରୂପ ତାର ।
ସପ୍ତଦ୍ୱୀପ ସହିତରେ କମ୍ପେ ବସୁମତୀ
ସମୁଦ୍ର ରୁଧିର ଜଳ କୂଳକୁ ଉଠନ୍ତି ।
ଆକାଶେ ଥାଇ କମ୍ପିଲେ ସର୍ବ ବୃନ୍ଦାରକେ
ତ୍ରାସେ ରହି ନ ପାରିଲେ ସ୍ୱର୍ଗେ ଦେବଲୋକେ ।
ଅସମ୍ଭାଳ ହୋଇଲେ ଯେ ଦେବ ପଦ୍ମଅକ୍ଷ
ଶୋଣିତ ବାହାରି ବହେ ନାରାୟଣ ମୁଖ ।
ଯେଉଁରୂପ ଧରିଅଛି ସେ ବୀର ପାବନୀ
ଶୋଣିତମୟ ହୋଇଲା ସମୁଦ୍ରର ପାଣି ।
ସମୁଦ୍ରଯାକ ହୋଇଲା ଯହୁଁ ସେ ରକତ
ଶୋଣିତ ଦେଖି ପୁଚ୍ଛଇ ବୀର ହନୁମନ୍ତ ।
ଏ କିସ ଦିଶଇ ରକ୍ତ ଜଳର ଭିତରେ
ଅର୍ଜୁନ ବୋଇଲା ଶୁଣ ଆହେ କପିବୀରେ ।
ଚାଲନ୍ତେ ଶସ୍ତ୍ର କଳଙ୍କ ଧୋଇ ହୋଇଗଲା
ତେଣୁଟି ରୁଧିର ବର୍ଣ୍ଣ ସମୁଦ୍ର ଦିଶିଲା ।
ସମୁଦ୍ରର ଜଳ ତେଣୁ ହେଲା ରଙ୍ଗବର୍ଣ୍ଣ
ହନୁମନ୍ତ ବୋଇଲାରେ ମାନବ ତୁ ଧନ୍ୟ ।
ଅଗସ୍ତିଙ୍କୁ ପୁଚ୍ଛାକଲେ ମନୁ ବୈବସ୍ୱତ
ଅର୍ଜୁନ ବୋଲି ଚିହ୍ନିଲା କେହ୍ନେ ହନୁମନ୍ତ ।
ଶୁଣ ହେ ମନୁ ପୁରୁଷ ବୋଲନ୍ତି ଅଗସ୍ତି
ବିଶ୍ୱରୂପ ବିକାଶିଲା ଯେ କାଳେ ମାରୁତି ।
ପ୍ରଚଣ୍ଡ କାୟରେ ସେହି ଘୋଟିଲା ବ୍ରହ୍ମାଣ୍ଡ
ବିଶ୍ୱରୂପ ବିକାଶିଲା ପୃଥ୍ୱୀ ନବଖଣ୍ଡ ।
ଦିବ୍ୟଚକ୍ଷୁ ବିକାଶିଲା ସେ ଭୁବନ ତିନି
ଜାଣିଲା ଯେ ହନୁମନ୍ତ ପାଣ୍ଡବ ଫାଲଗୁନି ।
ବନ୍ଧରୁ ଓହ୍ଲାଇ ସେହି ପବନର ବାଳ
ଅର୍ଜୁନକୁ ବସାଇଲା ନେଇକରି କୋଳ ।
ପ୍ରତ୍ୟକ୍ଷେ ତୁ ନାରାୟଣ ଅଟୁ ଆହେ ପାର୍ଥ
ମୁଁ ନ ଜାଣଇ ମାନବ ହୋଇଛୁ ତୁ ଜାତ ।
ଶ୍ରୀରାମଙ୍କ ଭାଇ ଅଟୁ ଭ୍ରତବୀର
ଯୋଗେ ଦିଶିଲା ତୁ ବିଷ୍ଣୁ ଅର୍ଦ୍ଧ ଯେ ଶରୀର ।
ଏବେ ଜାଣିଲଇଁ ତୁହି ସ୍ୱୟଂ ବିଷ୍ଣୁନାଥ
ମୋତେ ଅନୁଗ୍ରହ କରିଥିବ ବୀର ପାର୍ଥ ।
ଏ ରୂପେ ହନୁ ଅର୍ଜୁନ ହୋଇଲେ ପୀରତି
ବନ୍ଧତଳୁ ପ୍ରବେଶିଲେ ଆସି ଶିରୀପତି ।

ଦୁଇଜଣଙ୍କ ମିଳନ ହୋଇବାର କାଳେ
ଆଗରେ ଉଭାହୋଇଲେ ମଦନ ଗୋପାଳେ ।
ଶ୍ରୀକୃଷ୍ଣଙ୍କୁ ଦେଖି ବେନି ବୀର ପରଣାମି
ଅନେକ ସ୍ତୁତି କରନ୍ତି ମନେ ମନେ ଗୁଣି ।
ହନୁମନ୍ତଙ୍କୁ ଚାହିଁଣ ଜଗତ ଅଧିପ
ବହୁତ ରୂପେ କହନ୍ତି ପ୍ରଭୁ ବିଶ୍ୱରୂପ ।
ତୁ ହନୁମନ୍ତ ନ ଜାଣୁ ଧନଞ୍ଜୟ ବୋଲି
କ୍ଷତ୍ରି ମଧ୍ୟେ ବୀରବର ତୋତେ ମୁଁ କହିଲି ।
ଖାଣ୍ଡବ ବନ ଦହିଣ ଅଗ୍ନି ତୋଷ କଲେ
ଈଶ୍ୱର ତୋଷ ହୋଇଣ ଶସ୍ତ୍ର ତାକୁ ଦେଲେ ।
ସୁଭଦ୍ରା ହରଣେ ବଳଦେବଙ୍କୁ ଏ ଜିଣି
ଏହାର ମହିମା ତୁ ନ ଜାଣୁ କପିମଣି ।
ଦ୍ୱାପର ଯୁଗେ ଅଟଇ ଏ ଭାରୋଇ ମଲ୍ଲ
ଏହାର ସଙ୍ଗରେ କିସ ତୋହର ଯେ ଗୋଳ ।
ଏମନ୍ତ କହି ସେ ହନୁମନ୍ତଙ୍କୁ ପ୍ରବୋଧି
ଏକାନ୍ତେ ହକାରି ନେଇ ବୋଲେ ଜମ୍ଭଭେଦୀ ।
କାହିଁକି ପାର୍ଥ ହନୁରେ ବିବାଦୀ ହୋଇଲୁ
ତାହାର ମହିମା କର୍ଣ୍ଣେ ଶୁଣି କି ନ ଥିଲୁ ।
ତୁ କି ନ ଜାଣୁ ତ୍ରେତୟା ଯୁଗେ ଯା ଚରିତ
ଯେବଣ କଲା ରାବଣ ରାମ ଶୁଦ୍ଧଗତ ।
ସେହି ଦୈତ୍ୟଙ୍କୁ ସଂହାର କଲା ଏହୁ ପୁଣି
ଏହା ତୁଲେ କି ବୈରତା ତୋର ଫାଲଗୁନି ।
ଏହି ହନୁମନ୍ତ ବାବୁ ଅଟଇ ସୁଜ୍ଞାନୀ ।
ମାତାଗର୍ଭୁ ଜାତହୋଇ ସୂର୍ଯ୍ୟଙ୍କୁ ବାନ୍ଧିଲା
ତେତିଶ କୋଟି ଦେବତା ବଳ ଏ ବହିଲା ।
ଏବେ ଏହାର ସହିତ ପ୍ରିୟ ଭାବ କର
କହି ଅନ୍ତର୍ଦ୍ଧାନ ହେଲେ ଦେବ ଚକ୍ରଧର ।
ନିଶ୍ଚିତ ଶୁଣି ବିଚିତ୍ର ବୀର୍ଯ୍ୟଙ୍କର ନାତି
ହନୁମନ୍ତ ସହିତରେ କଲେକ ସେ ପ୍ରୀତି ।
ହନୁମନ୍ତ ଅର୍ଜ୍ଜୁନର ଅନେକ ପୀରତି
ଘେନିଗଲା ତହୁଁ ଖିନିଖିନା ଅଧିପତି ।
ଜାମ୍ବବ ଅଙ୍ଗଦ ଆଦି ବାନର ଯେତେକ
ଆନନ୍ଦରେ ପୂଜାକଲେ ପାର୍ଥଙ୍କୁ ଅନେକ ।
ମୋର ଜ୍ୟେଷ୍ଠଭ୍ରାତ ଭୀମ ପବନୁ ଉତ୍ପତ୍ତି ।
ତିନିପୁତ୍ର ଜାତ ଆମ୍ଭେ କୁନ୍ତୀଙ୍କର ଗର୍ଭୁ
ତୁମ୍ଭେ ଆମ୍ଭର ସୋଦର ଏକା ଆମ୍ଭେ ସବୁ ।
ମୋର ଦୋଷ ନ ଘେନିବ ମୁହିଁ ତୁମ୍ଭ ସାନ
ଜାତିରେ ମାନବ ମୋର କେତେ ଅବା ଜ୍ଞାନ ।
ହନୁମନ୍ତ ବୋଇଲା ତୁ ଶୁଣ ଫାଲଗୁନି
ମାହେଶ୍ୱରୀ ଅଞ୍ଜନା ଯେ ଗୌତମ ନନ୍ଦିନୀ ।

ପବନ ଦେବତାର ହୋ ଅଟେ ମହାତେଜ
ସେହି ସିନା ସହିପାରେ ତାହାଙ୍କର ବୀର୍ଯ୍ୟ ।
ତ୍ରେତାଯୁଗେ ନାମ ତାର ଅଟଇ ଅଞ୍ଜନା
ଏ ଦ୍ୱାପରଯୁଗେ ସେହୁ କୁନ୍ତୀଦେବୀ ସିନା ।
ତୁମ୍ଭର ଆମ୍ଭର ଅଟେ ଏକଇ ଜନନୀ
ଭାରା ନିବାରଣ ଅର୍ଥେ ଜାତ ଫାଲଗୁନି ।
ତୋର ପୂର୍ବ ଜନ୍ମକଥା ଶୁଣ ଦେଇ ମନ
ସତ୍ୟଯୁଗେ ଥିଲେ ବ୍ରହ୍ମା ତା ନାମ କାଞ୍ଚନ ।
ମୀନ କୃଷ୍ଣ ଚତୁର୍ଦ୍ଦଶୀ ତିଥି ରବିବାରେ
କୃତ୍ତିକା ନକ୍ଷତ୍ର ବେଳ ନବ ଘଡ଼ିଠାରେ ।
ବିଷ୍ଟି ନାମେ କରଣ ଯେ ଅତିଗଣ୍ଡ ଯୋଗେ
ମରାଳ ବାହନେ ଧାତା ବିଜେ କଲେ ସ୍ୱର୍ଗେ ।
ଚାରିବେଦ ଉଚ୍ଚାରଣ ଚାରିଗୋଟି ମୁଖେ
ବ୍ରହ୍ମାନନ୍ଦନ ବିରଞ୍ଚି ଅଛି ତାଙ୍କ ପାଖେ ।
ବାମଭାଗ ମୁଖେ ଧାତା ଋକ୍‌ବେଦ ପଢ଼େ
ଦକ୍ଷିଣ ପାଖ ବଦନୁ ସାମବେଦ ଝଡ଼େ ।
ପୂର୍ବ ବଦନରୁ ଧାତା ଯଜୁର୍ବେଦ ସଞ୍ଚି
ପଶ୍ଚିମେ ଅଥର୍ବ ବେଦ କହଇ ବିରଞ୍ଚି ।
ଏମନ୍ତେ ସେ ଚତୁର୍ବେଦ ଉଚ୍ଚାରି ଚଳଇ
ସାଧନା ବଳେ ସେ ଧାତା ପଢ଼ଇ ମିଶାଇ ।
ଯୋଗେ ବେଦ ସାଧିଲା ଯେ ଧାତା ଯେତେବେଳେ
ଶିବ ଆସନ କମ୍ପିଲା କୈଳାସ ଅଚଳେ ।
ସାଧନା ଭାଙ୍ଗିଲା ଯୋଗେ ଭାଙ୍ଗିଲା ତୁରିତେ
ବୃଷଭ ଆରୁଢ଼ ହୋଇ ବିଜେ ପଞ୍ଚବକ୍ତ୍ରେ ।
ଅତ୍ୟନ୍ତ ରୋଷେ ବିଜୟ କଲେକ ଧୂର୍ଜଟି
ବାରସ୍ୱତୀ ଭୁବନରେ ପିତାମହ ଭେଟି ।
ଈଶ୍ୱର ଦେବତା ରାଗେ ବ୍ରହ୍ମାଙ୍କୁ ସମ୍ଭାଷି
ଅନୀତି କଲୁ ତୁ ବ୍ରହ୍ମା ହୋଇ ଯୋଗାଭ୍ୟାସି ।
ବ୍ରହ୍ମା ବୋଇଲେ ମୁଁ ଅଟେ ସର୍ବବେଦ ସାଇଁ
ଦେବଙ୍କ ଉପରେ ମୁହିଁ ଜାଣ ପାଣିଗ୍ରାହୀ ।
ଦେବ ସର୍ଜିବା ନିମନ୍ତେ ଉତ୍ପତ୍ତି ହୋଇଛି
ଗୁଣ ଅବିଗୁଣ ଦେବ ମୁହିଁ ସର୍ବବାଛି ।
ଈଶ୍ୱର ବୋଇଲେ ତୋର ଚାରି ଯେ ବଦନ
ତେଣୁ ଚାରିଗୋଟି ବେଦ କର ଅଧ୍ୟୟନ ।
ମୁହିଁ ଯେ ପଞ୍ଚବଦନ ଅଟଇ ଯୁକତେ
ପଞ୍ଚବେଦ ଅଧ୍ୟୟନ କରେ ପଞ୍ଚବକ୍ତ୍ରେ ।
କରତା ପୁରୁଷ ହୋଇ ମନେ ନ ବିଚାରୁ
ପଞ୍ଚମ ବେଦକୁ କିମ୍ପା ଅଧ୍ୟୟନ କରୁ ।
ସଦ୍ୟ ବାମ ଅଘୋର ଯେ ତତ୍ତ୍ୱ ଈଶ ମୁଖେ
ଆୟଜ୍ୟୋତି ଧନୁ ମିଶୁ ଗନ୍ଧର୍ବ ହିଁ ଲେଖେ ।

ଚତୁଃମୁଖରେ ତୁ ଚତୁବେଦ ଉଚ୍ଚାରିବୁ
ଆମ୍ଭେ ପଞ୍ଚମୁଖେ ପଞ୍ଚ ବେଦ ଉଚ୍ଚାରିବୁ ।
ସଞ୍ଚିତ ତପ ବିନାଶେ ହୋଇଲା ଅନୀତି
ବ୍ରହ୍ମା ବୋଇଲେ ତୁ ଗର୍ବ କଲୁ ପଶୁପତି ।
ପଞ୍ଚବକ୍ତ୍ର ବୋଇଲେ ଯେ ମୋତେ ଖଣ୍ଡସ୍ୱର୍ଗେ
ସେ ଅଧିକ ବନେ ମୁଁ ପଢ଼େ ବେଦ ଯୋଗେ ।
ରାଗେଣ କହିଲେ ସେହି ସ୍ୱାମୀ ସଦାନନ୍ଦ
ଈଶ୍ୱର କମ୍ପଇ ଶୁଣି ବ୍ରହ୍ମା ଯୋଗ ବେଦ ।
ରାଗ ସଂହରି ନ ପାରି ଦେବ ଶୂଳପାଣି
ବ୍ରହ୍ମାଙ୍କୁ ବୋଇଲେ ପୁଣି ବହୁ କଟୁବାଣୀ ।
ଧାତା ବୋଇଲେ ତୁ ଶୁଣ ଆହେ ତ୍ରିଲୋଚନ
ଆଜହୁଁ ହୋଇଲି ମୁହିଁ ଦେବ ପଞ୍ଚାନନ ।
ତୋହର ପଞ୍ଚବଦନ ହରିବଇଁ ସାଧି
ମୁହିଁ ସିନା ବେଦବର ବେଦର ପ୍ରସିଦ୍ଧି ।
କି ନିମନ୍ତେ ଧାତା ତୋର ଏ ପଞ୍ଚବଦନ
ନଟକାର ଲୋକଙ୍କର ବେଭାର ଏସନ ।
ମୁଣ୍ଡର ଉପରେ ପୁଣି ମୁଣ୍ଡେ କିନ୍ତୁ ଜାତ
ବିଚାରନ୍ତେ ଜାଣ ତୁହୋ ହୋଇବ କି ସତ୍ୟ ।
ଈଶ୍ୱର ବଚନେ ଧାତା କରଇ ଅବଜ୍ଞା
ବେଳୁବେଳ ବହୁତର ବଢ଼ିଲା ପ୍ରତିଜ୍ଞା ।
ମଉଭୋଳ ପୁରୁଷ ସେ ହୋଇ ମହାରାଗୀ
ତତକ୍ଷଣେ ହେଲେ ସେହି ଉପରୋଧ ତ୍ୟାଗୀ ।
ବ୍ରହ୍ମାମୁଣ୍ଡେ ପ୍ରହାରିଲେ ନେଇ ଭୁଜଦଣ୍ଡ
ଧାତିକାରେ ଛିଡ଼ିଗଲା ପିତାମହ ମୁଣ୍ଡ ।
ଆଗେ ଈଶ୍ୱର ପ୍ରହାର କଲେ ବାମକରେ
ବ୍ରହ୍ମାର ମୁଣ୍ଡ ଲାଗିଲା ସେ ବାମ ହସ୍ତରେ ।
ଉଚ୍ଛୁଡ଼ ପକାଇ ଦେଲେ ଧାତା ମୁଣ୍ଡଗୋଟି
ନଗଲା ହସ୍ତୁ ବ୍ରହ୍ମାର ଶିରେ କେଉେ ଫିଟି ।
ଶୂଳେ ପ୍ରହାରିଣ ଦେବ କଲେ ଖଣ୍ଡ ଖଣ୍ଡ
ତେବେ ହେଁ ନ ଗଲା ଛିଡ଼ି ବ୍ରହ୍ମାର ସେ ମୁଣ୍ଡ ।
ବ୍ରହ୍ମାର ରୁଧିର ଯହୁଁ ପଡ଼ିଲାକ କ୍ଷିତି
ସେ ରୁଧିର ପୁରୁଷେକ ହେଲା ଉତପତ୍ତି ।
ମଧ୍ୟ ଭୁବନେ ତା ପାଦ ଆକାଶେ ତା ମଥା
ପ୍ରଶସ୍ତ ନାମ ତାହାର ଦେଲେ ତହିଁ ଧାତା ।
ସ୍ୱର୍ଗ ଭୁବନ ଆଦି ସେ ଘୋଟିଲା ବ୍ରହ୍ମାଣ୍ଡ
ସ୍ୱର୍ଗ ମଞ୍ଚ ବିସ୍ତାରିତ ଅଟେ ତାର ତୁଣ୍ଡ ।
ପିତାକୁ ପୁଚ୍ଛିଲା ମୋତେ କଲୁ ଉତପତ୍ତି
ଜଳୁଅଛି କ୍ଷୁଧାରେ ମୋ ପେଟ ପ୍ରଜାପତି ।
ପିତାମହ ଦେଖାଇଲେ ତର୍ଜନ ଅଙ୍ଗୁଳି
ଆରେରେ ପ୍ରଶସ୍ତ ତୁହି ଭକ୍ଷ ଏ କପାଳି ।

ପିତାମହର ବଚନ ଶୁଣି ସେ ପ୍ରଶସ୍ତ
ଈଶ୍ୱର ଦେବତାକୁ ସେ ଭେଟିଲା ତ୍ୱରିତ ।
ଦେଖି କୋପାନଳ ହୋଇ ଦେବ ତ୍ରିପୁରାରି
ପ୍ରଶସ୍ତ ଉପରେ ନେଇ ଶୂଳକୁ ପ୍ରହାରି ।
ସଦାନନ୍ଦ ଶୂଳକୁ ହିଁ ନ କଲା ସେ ଭୀତି
ଈଶ୍ୱର ହସ୍ତରୁ ଶୂଳ ଘେନିଲା ତଡ଼ତି ।
ସେହି ଶୂଳକୁ ବୁଲାଇ ପିଟିଲା ତାହାଙ୍କୁ
ଭୟେ ଈଶ୍ୱର ଘୁଞ୍ଚିଲା ନ ଯାଇ ଆଗକୁ ।
ପଳାନ୍ତେ ଈଶ୍ୱର ପଛେ ଗୋଡ଼ାଇଲେ ସେହି
ତିନିପୁରେ ମହାଦେବ ନ ପାରିଲେ ରହି ।
ମୁଖ ନ ଚାହିଁଲେ କେହି କଲେ ବ୍ରହ୍ମହତ୍ୟା
ବ୍ରହ୍ମଦୈତ୍ୟ ଗୋଡ଼ାଇଛି ବହିଣ ଅହନ୍ତା ।
ତ୍ରିଭୁବନ ଭ୍ରମି ଭ୍ରମି ବେଗେ ପଳାଇଲେ
ବ୍ରହ୍ମହତ୍ୟା ଦୋଷେ କେହି ମୁଖ ନ ଚାହିଁଲେ ।
ପଳାନ୍ତି ସେ ବିଶ୍ୱନାଥ ନ ଚାହିଁ ଲେଉଟି
କଟାଳି ବ୍ରହ୍ମରାକ୍ଷସ ପଛେ ଅଛି ଘୋଟି ।
ନିରାଶେ ଈଶ୍ୱର ତହୁଁ ହେଲେ ପାଦଗତି
ଆକାଶ ଭୁବନୁ ଡେଇଁପଡ଼ି ପଶୁପତି ।
ମେରୁ ପର୍ବତକୁ ଡେଇଁଗଲେ ସମୁଦ୍ରକୁ
ସମୁଦ୍ରକୁ ଡେଇଁ ଗଲେ ଅଗାଧ ଜଳକୁ ।
ସପ୍ତଦ୍ୱୀପ ସ୍ୱାମୀ ଡେଇଁଗଲେ ଏକପାଦେ
ପଡ଼ିଲେ ସେ ନୀଳକଣ୍ଠ ଗଭୀର ଅଗାଧେ ।
ଗୋଡ଼ାଇଛି ପଛେ ପଛେ ସେ ବ୍ରହ୍ମରାକ୍ଷସ
ସେହି ଏକପାଦ ହୋଇ ଡେଇଁଲା ପ୍ରତ୍ୟକ୍ଷ ।
ଈଶ୍ୱର ଯେ ପଳାଇଲେ ମହାଜଳେ ବୁଡ଼ି
ବିଷ୍ଣୁନାଥ ରଖବୋଲି ଦେଲେ ଘୋର ରଡ଼ି ।
ମହାଘୋର ରଡ଼ି ଯହୁଁ ଦେଲେ ମହାଦେବ
ଆସନ କମ୍ପୁଁ ଜାଣିଲେ ଦେବ ପଦ୍ମନାଭ ।
ଯୋଗଲୟ ତେଜି ଧୀରେ ଚାହିଁଲେ ଅନାଦି
ଈଶ୍ୱରଙ୍କୁ ଆଣୁଛନ୍ତି ବ୍ରହ୍ମଦୈତ୍ୟ ଖେଦି ।
ଶ୍ରୀଭୁଜକୁ ବଢ଼ାଇଣ ଦେଲେ ଦେବ ହରି
ବିଷ୍ଣୁନାଥ ଭୁଜ ବଢ଼ିଗଲା ଯୁଣ ଚାରି ।
ଈଶ୍ୱରଙ୍କୁ ଧରିଆଣି ବସାଇଲେ କଟି
ହସ୍ତେ ଚକ୍ର ଦେଖି ବ୍ରହ୍ମଦୈତ୍ୟ କଲା ଭୀତି ।
ସହସ୍ର ଯୋଜନେ ଥାଇ ହେଲା ସ୍ତମ୍ଭୀଭୂତ
ବିଷ୍ଣୁଙ୍କ ପାଖରେ ଆସି ନପାରେ ପ୍ରଶସ୍ତ ।
ନାରାୟଣ ସନ୍ନିଧିରେ ଦେଖେ ବିଶ୍ୱନାଥ
ପାଖେ ଆସି ନ ପାରଇ ଭୟେ ବ୍ରହ୍ମଦୈତ୍ୟ ।
ପଚାରିଲେ ବ୍ରହ୍ମାମୁଣ୍ଡ ଅଛି କିମ୍ପା ହସ୍ତେ
ଏତେ କଷଣ ପାଇଲ କହ କି ନିମନ୍ତେ ।

ଈଶ୍ୱର ବୋଇଲେ ମୁହିଁ ଧାତା ସଙ୍ଗେ ବାଦୀ
କଟୁବାକ୍ୟେ ମୋତେ ଧାତା ଏସନ ସମ୍ପାଦି ।
ଅଦ୍‌ଭୁତେ ମୁଣ୍ଡେକ ସେ ସମ୍ପାଦିଲା କାହୁଁ
ଅଭୁତ ବଚନ ସେହୁ କହିଲାକ ଯହୁଁ ।
କୋପେ ପ୍ରହାର କରିଲି ମୁହିଁ ଭୁଜଦଣ୍ଡ
ଛିଡ଼ିଗଲା ବ୍ରହ୍ମାର ସେ ଜାତ କଲା ମୁଣ୍ଡ ।
ସେ ବ୍ରହ୍ମାର ମୁଣ୍ଡ ଛିଡ଼ି ଲାଗିଲା ମୋ କରେ
ସେ ବ୍ରହ୍ମରୁଧିରୁ ଜାତ ଏ ବ୍ରହ୍ମ ଅସୁରେ ।
ଭକ୍ଷିବାକୁ ଏ ରାକ୍ଷସ ମୋତେ ଗୋଡ଼ାଇଛି
ତେଣୁ ତ୍ରାସକରି ମୁହିଁ ପଳାଇ ଆସିଛି ।
ଆକାଶରେ କେହି ମୋର ନୋହିଲା ରଖନ୍ତା
ସମସ୍ତେ ବୋଇଲେ ତୁହୋ କଲୁ ବ୍ରହ୍ମହତ୍ୟା ।
ମୁହିଁ ତୋହର ଶରଣ ଦେବ ଦାମୋଦର
ଏ ଦୁରାପକଷ୍ଟୁ ମୋତେ ବେଗେ ପାରିକର ।
ତୁଣ୍ଡେ ହସ୍ତଭରି କେଶ ମୁକୁଳିତ କରି
ଏମନ୍ତ ହୋଇ ସେ ଦେବ ଶରଣ ଫୁକାରି ।
ହସ୍ତର ମୁଣ୍ଡ ତାଙ୍କର ତୁଣ୍ଡକୁ ବିସ୍ତାରି
ଦେବେ ବୋଲି ମାଗଇ ସେ ବାକ୍ୟ ଅନୁସରି ।
ନାରାୟଣ ବୋଇଲେକି ମାଗେ ଶୂଳପତି
ପ୍ରେତ ପିଶାଚ ରୁଧିରେ ହୋଇବି ନୃପତି ।
ଶୁଣି ନାରାୟଣ ଚକ୍ର ଧଇଲେକ କରେ
ଆପଣା ଭୁଜରେ ଚିରିଦେଲେ ତିନିଗାରେ ।
ମେରୁ ଫୁଟିକି ଯମୁନା ଗଙ୍ଗା ସରସ୍ୱତୀ
ରୁଧିର ବାହାର ବାମଭୁଜୁ ତିନିମୂର୍ତ୍ତି ।
ବ୍ରହ୍ମାର ମୁଣ୍ଡ ତୁଣ୍ଡରେ ରୁଧିର ବରଷେ
ସହସ୍ରେ ବର୍ଷ ବରଷି ଲତାଏ ନ ଦିଶେ ।
ଏତେ ଶୋଣିତରେ ତାର ତୁଣ୍ଡ ନ ପୂରିଲା
ଦେ ଦେ ବୋଲୁଅଛି ସେହି ଶାନ୍ତି ନ ଭଜିଲା ।
ସେ ବ୍ରହ୍ମରାକ୍ଷସ ରହିଅଛି ଖଣ୍ଡଦୂରେ
ସଂଗ୍ରାମ ଦିଅ ବୋଲି ସେ ଡାକେ କୋପଭରେ ।
ଶିରେ ଖାଇବାକୁ ବ୍ରହ୍ମା ଆଜ୍ଞା ଦେଇଅଛି
ତୁ କିମ୍ପାଇ ତାକୁ ରଖୁ ମୁଁ ଆଶା କରୁଛି ।
ଆହୋ ମହାତ୍ମା ରୁଧିରେ ହେଉ ତୁ ଯେ ଶାନ୍ତ
ଏହିକ୍ଷଣି ଦେବା ତୋତେ ହୋଇବୁ ତୃପତ ।
ବ୍ରହ୍ମାର ମୁଣ୍ଡରେ ବିଷ୍ଣୁ ରୁଧିର ଲାଗଇ
ଈଶ୍ୱର ବିଭୂତି ତହିଁ ଭିତରେ ପୂରାଇ ।
ରୁଧିର ବିଭୂତି ପିତାମହ ମୁଣ୍ଡେ ଭେଦି
ପୁରୁଷେକ ହେଲା ହସ୍ତ ଚରଣେ ସମ୍ପାଦି ।
ବିଷ୍ଣୁଙ୍କର ଜୀବ ପୁଣି ସଦାଶିବ ଜୀବ
ତୋଳିଲେ ବ୍ରହ୍ମାର ମୁଣ୍ଡ ନେଇ ଆଦି ଦେବ ।

ବ୍ରହ୍ମାର ମୁଣ୍ଡରେ ଯେଉଁ ଜୀବ ରହିଥିଲା
ସେହି ପ୍ରତିମା ଭିତରେ ଯାଇ ସମ୍ଭାଇଲା ।
ସେ ତିନି ଜୀବକୁ ନେଇ ଦେବ ବନମାଳୀ
ଅମୃତ ଦୃଷ୍ଟିରେ ଚାହିଁ ଦେଲେ ଦେବ ଢାଳି ।
ବ୍ରହ୍ମା ବିଷ୍ଣୁ ଶିବ ଏହି ତିନି ତେଜେ ଝଳି
ଉଠିଲା ସେହି ପୁରୁଷ ହୋଇ ମହାବଳୀ ।
ବ୍ରହ୍ମାର ରୁଧିରୁ ଜାତ ହୋଇଲା ପ୍ରଶସ୍ତ
ନାରାୟଣଙ୍କ ଅଂଶରୁ ଜାତ ହେଲା ଶସ୍ତ ।
ନାରାୟଣ ଆଜ୍ଞା ଦେଲେ ତାହାକୁ ହକାରି
ଏ ବ୍ରହ୍ମରାକ୍ଷସକୁ ତୁ ବେଗେ ପକା ମାରି ।
ବିଷ୍ଣୁ ଆଜ୍ଞାପାଇ ବେଗେ ଗଲା ଶସ୍ତବୀର
ଆକର୍ଷି ଧଇଲା ତାକୁ ପ୍ରଶସ୍ତ ଅସୁର ।
ଶସ୍ତ ପ୍ରଶସ୍ତର ତହିଁ ଲାଗିଲା ସମର
ଆକାଶ ବ୍ୟାପିଲା ସେହି ଦୁହିଁଙ୍କ ଶରୀର ।
ମୁଖରଡ଼ି ଶବଦ ଯେ ମୁଥ ମରାମରି
ପଦେ ଆନ୍ଦୋଳିତ ହେଲା ସମୁଦ୍ରର ବାରି ।
କର ଶିର ତାଡ଼ନ୍ତି ଯେ ମହାବିଶ୍ୱରୂପୀ
ବେଳୁଁ ବେଳଗଲେ ସେହି ସମୁଦ୍ରରେ ବ୍ୟାପି ।
ତ୍ରିଦଶ ଦେବତା ଦେଖି ତାଟକା ହୋଇଲେ
ସହସ୍ରେ ବରଷ ସେହି ସଂଗ୍ରାମ ଯେ କଲେ ।
ନିତ୍ୟକର୍ମ ବନ୍ଦ କରି ମୁନି ବୃନ୍ଦାରକ
ଦୈତ୍ୟଙ୍କ ରଣ ଦେଖନ୍ତି ଶୂନ୍ୟେ କଉତୁକେ ।
ଦିବାରାତ୍ର ଯୁଦ୍ଧ ଜାଣ ହୋଇଲା ଏମନ୍ତ
ବହିଗଲା ସହସ୍ରେକ ବର୍ଷ ପରିଯନ୍ତ ।
ସଂସାର ପ୍ରଳୟ ହେବା ଦେଖି ଜନାର୍ଦ୍ଦନ
ଆପେ ଯାଇ କରାଇଲେ ତାକୁ ସାବଧାନ ।
ସମସ୍ତେ ତ୍ରାସିଲେ ଦୁହିଙ୍କର ଯୁଦ୍ଧ ଦେଖି
କେଶବ ବିଜେ କଲେ ସେ ଦୁହିଁଙ୍କ ତହିଁକି ।
ଏ ଯୁଗେ ତୁମ୍ଭ ସଂଗ୍ରାମ ଏତିକି ହେ ହେଉ
ତ୍ରେତାଯୁଗକୁ ତୁମ୍ଭର ଥୋକାଏକ ଥାଉ ।
ଦୁହିଁଙ୍କ ମଧ୍ୟରେ କଲେ ନାରାୟଣ ବିଜେ
ରହ ରହ ବୋଲି ତାଙ୍କୁ ଧରି ବେନି ଭୁଜେ ।
ବୋଇଲେ ବ୍ରହ୍ମାର ତହୁଁ ଏ ପ୍ରଶସ୍ତ ଜାତ
ଏହାଙ୍କୁ ତୁ ସଂହାରଣ କର ହେ ଆଦିତ୍ୟ ।
ଦିନକର ନାଥ ତାହା ଗର୍ଭେ ସଂହାରିଲା
ଶସ୍ତ ନାରାୟଣଠାରୁ ଉତ୍ପତ୍ତି ହୋଇଲା ।
ନାରାୟଣ ବୋଇଲେ ହେ ଦେବ ପୁରୁହୂତ
ତୁହି ସଂହରଣ କର ନେଇ ଏହି ଶସ୍ତ ।
ଶସ୍ତକୁ ନେଇ ବାସବ ସଂହରିଲେ ଗର୍ଭେ
ଯୁଦ୍ଧ ଶେଷକରି ତହୁଁ ଗଲେ ବାସୁଦେବ ।

ହନୁମାନ କହିଲା ହେ ଶୁଣ ଫାଲଗୁନି
ସତ୍ୟଯୁଗେ ତୁମ୍ଭେ ଶସ୍ତ ପ୍ରଶସ୍ତ ଏ ବେନି ।
ତେତ୍ରାଯୁଗେ ଗଉତମ ଋଷିଙ୍କ ଘରଣୀ
ଚୋରାପ୍ରୀତି କଲେ ଆସି ସୂର୍ଯ୍ୟ ବଜ୍ରପାଣି ।
ଅହଲ୍ୟା ଗର୍ଭରେ ଶସ୍ତ ପ୍ରଶସ୍ତ ରହିଲେ
ସମୟରେ ଦୁହେଁ ତାଙ୍କ ଗର୍ଭୁ ଉପୁଜିଲେ ।
ସେ ବେନି ବାଳକ ଦେଖି ମୁନି ଗଉତମ
ଶ୍ୟାମଶୀଳ ଯମଶୀଳ ଦେଲେ ତାଙ୍କ ନାମ ।
ଚୋରି ଶୃଙ୍ଗାରର କଥା ନ ଜାଣନ୍ତି ମୁନି
ସ୍ନାନକୁ ଗଲେ ପୁତ୍ର ସ୍ନେହେ କୋଳେ ଘେନି ।
ଗଉତମଙ୍କ ବୀର୍ଯ୍ୟରୁ ଜାତ ସେ ଅଞ୍ଜନା
ତାହାଙ୍କୁ ସଙ୍ଗରେ ନେଲେ ମୁନି ମହାମୁନି ।
ସ୍ନାନ ଆହ୍ନିକ ହିଁ ସାରି ଗାୟତ୍ରୀ ସୁମରି
ବାହୁଡ଼ନ୍ତି ମହାତମା ବେଳ ସାତଘଡ଼ି ।
ବଇଶାଖମାସ ଖରା ତାତିଅଛି ବାଲି
ଗୋଡ଼ ପୋଡ଼ିଗଲା ପୁତ୍ରେ ନ ପାରିଲେ ଚାଲି ।
ଶ୍ୟାମଶୀଳ ଯମଶୀଳ ପୁତ୍ର ଦୁଇ ଧରି
କାନ୍ଧେ କାଖେ ବସାଇଲେ ମୁନି ତପଚାରୀ ।
ଖଣ୍ଡେ ଦୂରେ ଆସି ତାକୁ ଅଞ୍ଜନା କହିଲା
ଚାଲି ନ ପାରିଲି ପିତା ଗୋଡ଼ ପୋଡ଼ିଗଲା ।
ଗଉତମ ବୋଇଲେକ ତୁ ବିକଳ ନୁହ
ତୋତେ କାଖେ ବସାଇବି ଓହ୍ଲାଇଲେ ପୁଅ ।
ଶୁଣି ରାଗ କରି କୋପେ ବୋଇଲା ଅଞ୍ଜନା
ଏମନ୍ତ ବୋଇଲୁ ତାତ ହୋଇ ମହାତମା ।
ମୁହିଁ ଯେ ତୋହରି ବୀର୍ଯ୍ୟେ ହୋଇଲଇଁ ଜାତ
ମୋତେ ଉପେକ୍ଷି ଘେନିଲୁ ଏ ଜାରଜ ପୁତ୍ର ।
ଅଞ୍ଜନା ବଚନେ ଗଉତମ ମହାଋଷି
ସନ୍ଦେହ ବୁଝିଲେ ଆମ୍ବଗଛ ତଳେ ବସି ।
ଅହଲ୍ୟାକୁ ଦେଖି ଆମ୍ଭେ ଅତ୍ୟନ୍ତ ସୁନ୍ଦର
କାଢ଼ି ଆଣିଥାଉ ପ୍ରାଣ ଶରୀର ତାହାର ।
ମୃତ ପିଣ୍ଡ ହିଁ କେବଳ ଆମ୍ଭେ ଥୋଇଥାଉଁ
ତର୍ପଣୁ ଯାଇ ତାହାକୁ ପୁଣି ହିଁ ବଞ୍ଚାଉ ।
ଯେତେବେଳେ ପ୍ରାଣଥାଏ ଅହଲ୍ୟା ଶରୀର
ଦଣ୍ଡେକ ନ ଛାଡୁ ଆମ୍ଭେ ସଙ୍ଗକୁ ତାହାର ।
ଥାଇ ଏମନ୍ତ ଅନେକ କାଳ ବହିଗଲା
କେମନ୍ତେ ସେ ପର ସଙ୍ଗେ ପ୍ରୀତି କରାଇଲା ।
ଅଞ୍ଜନା ବୋଇଲା ଶୁଣ ତୁ ମୋହର ପିତା
ଏମନ୍ତେ ସେ ପରପ୍ରୀତି କରେ ମୋର ମାତା ।
ମୃତପିଣ୍ଡ ଗୋଟି ମୁହିଁ ଜଗିଥାଇ ନିତ୍ୟେ
ଇନ୍ଦ୍ର ଆଦିତ୍ୟ ଅଇଲେ ଦିନେ ଯେ ଅଭୁତେ ।

ଇନ୍ଦ୍ରପ୍ରାଣ ହୋଇଲେ ସେ ଅହଲ୍ୟା ପିଣ୍ଡରେ
ଶୃଙ୍ଗାର କଲେ ଆଦିତ୍ୟ ଇଚ୍ଛା ଅନୁସାରେ ।
ପୁଣି ଦିନକର ପ୍ରାଣ ହୋଇଣ ପଶଇ
ଇନ୍ଦ୍ରଦେବତା ତାହାକୁ ରମଣ କରଇ ।
ବୋଇଲେ ସେ ହନୁମାନ ଶୁଣ ହେ ଅର୍ଜୁନ
ଅଜ୍ଞାନ ଭାବେ ଅଞ୍ଜନା କହିଲା ଏସନ ।
ଗଉତମ ବୋଇଲେ ତୁ ଦେଖିଛୁ ପ୍ରତ୍ୟକ୍ଷେ
ପରୀକ୍ଷା କରିବା ଆମ୍ଭେ ଏହା ତୋ ସମକ୍ଷେ ।
ପୁତ୍ର ଘେନି ବାହୁଡ଼ିଲେ ମୁନି ସମୁଦ୍ରକୁ
ସେ ପୁତ୍ରକୁ ଫିଙ୍ଗିଦେଲେ ସାଗର ଜଳକୁ ।
ଯେବେ ତୁମ୍ଭେ ଦୁଇପୁତ୍ର ମୋର ବୀର୍ଯ୍ୟେ ଜାତ
ଏହିରୂପରେ ଆସିବ ତୁମ୍ଭେ ବେନିପୁତ୍ର ।
ଅନ୍ୟ ବୀର୍ଯ୍ୟେ ଜାତ ଯେବେ କରିଥିବ ଜାୟା
କପିରୂପେ ହେଉ ବାବୁ ତୁମ୍ଭ ବେନି କାୟା ।
ସମୁଦ୍ର ବାହାର ହୋଇ ନ ଆସ ଲେଉଟି
ନିରାଶରେ ଫିଙ୍ଗିଦେଲେ ପୁତ୍ର ଦୁଇଗୋଟି ।
କପିରୂପେ ହେଲେ ଜଳ ସେବେନି କୁମରେ
ପଡ଼ିଲେ ସମୁଦ୍ରତୀରେ ଅଗାଧ ଗଭୀର ।
ଋଷି ଡାକ ଦେଲେ ଶ୍ୟାମଶୀଳ ଯମଶୀଳ
ମୋର ବୀର୍ଯ୍ୟେ ଜାତ ଯେବେ ତୁମ୍ଭେ ବେନିବାଳ ।
ଜଳରୁ ବାହାର ହୋଇ ଆସ କିନା ବେଗେ
ଡାକନ୍ତି ସେ ମୁନି ତାଙ୍କୁ ଅତି ପ୍ରିୟଭାବେ ।
ଅନେକ ବେଳ ଡାକିଲେ ମୁନି ତପୋଧନ
ସମୁଦ୍ର ଜଳୁ ବାହାର ନୋହିଲେ ନନ୍ଦନ ।
ବେଳ ଅଢ଼ାଇ ପ୍ରହାର ହେଲା ଦିନକର
ଅଞ୍ଜନା ବଚନ ସତ କଲେ ମୁନିବର ।
ମୋର ପୁତ୍ର ହୋଇଥିଲେ ଆସନ୍ତେ ନା ଭଲେ
ଆନବୀର୍ଯ୍ୟେ ଜାତ ଯେଣୁ ଜଳେ ନାଶଗଲେ ।
ଅଞ୍ଜନାକୁ ମୁନିବର ଘେନି ନିଜକାଖେ
ଆଶ୍ରମେ ପ୍ରବେଶ ହେଲେ ଯାଇ ମନଦୁଃଖେ ।
ପାଣି ଝରି ଘେନି ଘରୁ ବାହର ଅହଲ୍ୟା
ପୋଏତ ନାହାନ୍ତି ଗଉତମଙ୍କୁ ବୋଇଲା ।
ଅହଲ୍ୟାର ମୁଖ ଚାହିଁ ବଚନ ବୋଇଲେ
କୋପେ ମହାମୁନି ଚାହିଁ ପ୍ରଜ୍ୱଳିତ ହେଲେ ।
ପୋଡୁ ପୋଡୁ ସ୍ତିରୀଜନ୍ମ ନୋହୁସ୍ତିରୀ ଜାତି
ବିଧାତା କିମ୍ପାଇ କଲା ତାଙ୍କୁ ଉତପତ୍ତି ।
ଏତେ ବାଗେ ରକ୍ଷା ଯେବେ କଲୁ ଅବିରତେ
ତଥାପି ରକ୍ଷା ନୋହିଲା ସେହି କଦାଚିତେ ।
ପର ପୁରୁଷରେ ଜାତ କଲୁ ପୁତ୍ର ବେନି
କହିଲା ସବୁ ମୋ ଆଗେ ଅଞ୍ଜନା ନନ୍ଦିନୀ ।

ଦୋଚାରୁଣୀ ଗର୍ଭୁଜାତ ସେ ଜାରଜାତକ
ବିମୁଖ ହୋଇ ପୁତ୍ରଙ୍କୁ ରାଗେ କଲୁ ତ୍ୟାଗ ।
ଅଗାଧ ସମୁଦ୍ରେ ଦେଲି ସେ ଦୁହିଁକି ଫିଙ୍ଗି
ସମୁଦ୍ରରେ ନାଶଗଲେ କୂଳରେ ନ ଲାଗି ।
ଶୁଣି ଅହଲ୍ୟା ସୁନ୍ଦରୀ ଭୟରେ ଥରଇ
ଅଞ୍ଜନା ତୁ ଏହା ମୋତେ କଲୁ ଯେ ବୋଲଇ ।
ତୋର ମାତାହୋଇ ଯେବେ ହୋଇଲା ଦୋଚାରୀ
ନ ପାରିଲୁ ତୁ ଦୁହିତା ହୋଇ ତା ସଂହାରି ।
ଅଭେଦ ଆମ୍ଭାକୁ ତୁ ଲୋ ଏବେ ଭେଦକଲୁ
ପୁତ୍ର ହିଁ ମଲେ ଅଘରବାସ ମୋତେ ଦେଲୁ ।
ତୋହର ଗର୍ଭେ ଅବଶ୍ୟ ହୋଇବ ସନ୍ତତି
ସେହି କପିମୁଖ ହେଉ ମୁହିଁ ଯେବେ ସତୀ ।
ମୋହର ଇଚ୍ଛାରେ ମୁହିଁ ନ କରଇ ପ୍ରୀତି
ସେଥିପାଇଁ ମୁହିଁ କିମ୍ପା ହୋଇବି ଅସତୀ ।
ଗୌତମ ବୋଇଲେ ଦେବୀ ନ କରିବ ରୋଷ
ଇନ୍ଦ୍ର ଆଦିତ୍ୟ ରମିଲେ କିସ ତୋର ଦୋଷ ।
ଜ୍ଞାନେ କି ଅଜ୍ଞାନେ ତୁ ଗୋ ନକରୁ ପୀରତି
ହରିଲେ ଯେ ଦିଗପାଳ ହୋଇ ଗୁରୁପତ୍ନୀ ।
ସତୀକି ଦୂଷିତ ପରଘର ନାଶକଲେ
ଯାବତ କାଳକୁ ପୁଣି କଥା ରୁହାଇଲେ ।
ଆନର ପାପ କରନ୍ତେ ଆନକୁ ନିରୋଧି
ପରଦାର କଲେ ସେହି ଏ କେବଣ ବିଧି ।
ଦିଗପାଳ ହୋଇ କଲେ ଏଡ଼େକ ଅଧର୍ମ
କୋପେ ତାଙ୍କୁ ଶାପଦେଲେ ମୁନି ଗଉତମ ।
ଆଦିତ୍ୟକୁ ବୋଇଲେ ତୁ ଦିଗପାଳ ହୋଇ
ଏଡ଼େ ଅନୀତି କିମ୍ପାଇଁ କଲୁ ସଂଜ୍ଞାପାଇଁ ।
ଜଗତର ନାଥହୋଇ ପରଘରେ ପଶୁ
ମୋହର ଶାପେ ତୋତେରେ ରାହୁଯୋଗ ଗ୍ରାସୁ ।
ଇନ୍ଦ୍ରକୁ ବୋଇଲେ ତୁହି ହରିଲୁ ମୋ ପତ୍ନୀ
ଶରୀରରେ ହେଉ ତୋର ସହସ୍ରେକ ଯୋନି ।
ଆହେ ଅହଲ୍ୟା ତୋହର ଭ୍ରଷ୍ଟହେଲା କାୟା
ଇନ୍ଦ୍ର ଆଦିତ୍ୟ ତୋଠାରେ କଲେ ପୁଣି ମାୟା ।
ଆମ୍ଭେ କି ଛୁଇଁବା ଆଉ ଏ ତୋହର ଅଙ୍ଗ
ପାଷାଣ ରୂପରେ ଥାଅ ତୁହି ଯୁଗଯୁଗ ।
ଶ୍ରୀରାମଙ୍କ ପାଦ ଯେବେ ଲାଗିବ ତୋ ଅଙ୍ଗେ
ମୁକତ ହୋଇ ରହିବୁ ଯାଇ ଆମ୍ଭ ସଙ୍ଗେ ।
ହନୁମନ୍ତ ବୋଇଲା ତୁ ଶୁଣ ଫାଲଗୁନି
ଋଷିଶାପେ ନାଶଗଲେ ଇନ୍ଦ୍ର ସୂର୍ଯ୍ୟ ବେନି ।
ହନୁକୁ ଯେ ପୁଣି ପୁଚ୍ଛାକଲେ ଧନଞ୍ଜୟ
ସମୁଦ୍ରେ ପଡ଼ି କି କଲେ ସେ ବେନି ତନୟ ।
ବୋଲନ୍ତି ମାରୁତି ତୁ ହୋ ଶୁଣ ଫାଲଗୁନି
ବଡ଼ବା ଅନଳେ ପଡ଼ି ସେହି ପୁତ୍ରବେନି ।
ଆଦିତ୍ୟ ଦେବତା ରହିଥିଲେ ମଧ୍ୟସ୍ଥାନେ
କୋଳକରି ଧରି ପୁଣି ସେ ବେନି ନନ୍ଦନେ ।
ଗଉତମ ମୁନିଶାପ ଫଳିଲା ପ୍ରତ୍ୟକ୍ଷ
ଶ୍ୟାମଶୀଳ ଯମଶୀଳ ହେଲେ କପିମୁଖ ।
ବିକୃତ ସ୍ୱଭାବ ମୁଖ ଦେଖି ତାହାଙ୍କର
ବାହୁଡ଼ି ଅଇଲେ ମୁନି ରହିଲେ କୁମର ।
ଏହିରୂପେ ଦେଖୁଥାନ୍ତି ମୁନି ତାଙ୍କୁ ନିତ୍ୟେ
ସମୁଦ୍ର କୂଳରେ ରହିଥାନ୍ତି ବେନିପୁତ୍ରେ ।
ବିଚାରିଣ କାର୍ଯ୍ୟ କର ଆହେ ସ୍ତିରୀଜନେ
ସ୍ତିରୀଜନ୍ମକୁ ବିନାଶ ନ କର କୁକର୍ମେ ।
ପର ପୁରୁଷକୁ ଦେଖି ନକର କଦାପି ପୁରୁଷ
ଚୋରି ଶୃଙ୍ଗାର ନକର କଦାପି ପୁରୁଷ ।
କ୍ଷଣକ ପାପେଗୋ ଏତେ ଲୋକ ହେଲେ ଦୋଷୀ
କିଞ୍ଚିତ ଦୋଷ ବହୁତ ପାପେ ଗଲେ ପଶି ।
ଆଦି ଅପର୍ଣ୍ଣା ଯେ ସ୍ତିରୀ ତାଙ୍କ ବଡ଼ପଣ
ସମସ୍ତ ନାଶଯାଇଟି ଏହି ଦୋଷେ ଜାଣ ।
ବୃହସ୍ପତିଙ୍କ ଭାରିଯା ତାରା ମହାସତୀ
ପରପୀରତି କରି ସେ ହୋଇଲା ଅଜାତି ।
ଅନେକ ଦୋଷ ଏ ପରଦାର ପରିପ୍ରିୟ
କହୁଛନ୍ତି ହନୁମନ୍ତ ଶୁଣ ଧନଞ୍ଜୟ ।
ଆକାଶରେ ଅପସରା ପରପ୍ରୀତି ଦୋଷେ
ପୁଣ୍ୟସ୍ତିରୀ ହୋଇଆସି ମଧ୍ୟ ସ୍ୱର୍ଗେ ବସେ ।
ଗଉତମ ଋଷିଙ୍କର ଭାରିଯା ଅହଲ୍ୟା
ପରପ୍ରୀତି ଦୋଷେ ଦେଖ ପଥର ହୋଇଲା ।
ଶଙ୍ଖଚିଲ ପରପ୍ରୀତି ଦୋଷେ ପରଘରେ
ବିଶ୍ୱାମିତ୍ର ଶାପେ ନିତ୍ୟ ମୁଖେ ରେତ ଭରେ ।
ମଧୁକର୍ଣ୍ଣଙ୍କର ଯେହୁ ଭାରିଯା ଉର୍ମିଳା
ପରପ୍ରୀତି ଦୋଷେ କାମକ୍ଷୟ କରାଇଲା ।
ଜନ୍ମ ଜନ୍ମର ସୁକୃତ ହରେ ପରଦାର
ଖଣ୍ଡନ ନ ଯିବ ସେହି ପାପ ଭୟଙ୍କର ।
ପରଦାର ଦୋଷେ ଶାସ୍ତିଦିଏ ଯମଦେବ
ପରପୀରତି ନିମନ୍ତେ ନାଶଯାଏ ଧ୍ରୁବ ।
ପର ସଙ୍ଗମେଟି କେହି ନ ହୁଅନ୍ତି ରକ୍ଷା
ବିଷ ପୁରାଇ ଦିଅନ୍ତି ସ୍ତିରୀ ପାଇ ଶିକ୍ଷା ।
ପରମ ମାହେଶ୍ୱରୀ ତୁ ଝଙ୍କଡ଼ବାସିନୀ
ପରଦାର ଦୋଷ ମୋର ଅଙ୍ଗୁପକା ଛିନି ।
ତୋହର ପ୍ରସାଦେ ମୁହିଁ ନ କଳିତ କିଛି
ତୋହର ଭୋ ମାତାମୋହଠାରେ ଦୟାଅଛି ।

ପ୍ରସନ୍ନ ହୋଇ ଖଣ୍ଡନକର ମୋର କୋପ
ପ୍ରସନ୍ନ ଆନନ୍ଦେ ମୋର ବାଞ୍ଛାକର ତପ ।
ପରମ ମାହେଶ୍ୱରୀ ଗୋ ଶ୍ରୀଚଣ୍ଡୀ ଶାରଳା
ତୋ ଦାସକୁ ଦିଅ ଶୁଦ୍ଧ ମତି ଅନର୍ଗଳା ।
ଅର୍ଜ୍ଜୁନ ବୋଇଲେ ତୁ ହୋ ଶୁଣସି ମାରୁତି
ଶ୍ୟାମଶୀଳ ଯମଶୀଳ କଲେ କେଉଁ ଗତି ।
କହନ୍ତି ଯେ ହନୁମନ୍ତ ପବନର ବାଳ
ଲାଗିଲେ ସେ ଆସି ସିନ୍ଧୁ ଉତ୍ତର ଯେ କୂଳ ।
ଶଙ୍ଖରାଜ ବଂଶେ ଜାଣ ସୁଜାଣ ନୃପତି
ତାହାର ନନ୍ଦନ ନାମ ଅଟେ ଅଶ୍ୱଜାତି ।
ଶରଜାତି ନନ୍ଦନ ଯେ ଅଶ୍ୱ ନରପତି
ଜମ୍ବୁନଦ ନାମେ ଜାଣ ତାହାର ସନ୍ତତି ।
ଜମ୍ବୁନଦର ନନ୍ଦନ ଦିଗମ୍ବର ବୀର
ତାହାର ନନ୍ଦନ ନାମ ଅଟେ ସୁରେଶ୍ୱର ।
ମାଳତୀ ମାଧବ ନାମେ ତାହାର ନନ୍ଦନ
ତାହାର ପୁତ୍ରର ନାମ ଅଟେ ଭଗବାନ ।
କରୁଣାକର ବୋଲି ଯେ ତାହାର ତନୁଜ
କରୁଣାକରର ପୁତ୍ର ଜନେଶ୍ୱର ରାଜ ।
ମାଳତୀ ଅଞ୍ଜନା ନାମେ ତାହାର ସନ୍ତତି
ତାର ନନ୍ଦନ ଉଦୟ ନାମେ ଚକ୍ରବର୍ତ୍ତୀ ।
ବିଳାକ୍ଷ ନାମରେ ଜାଣ ଶଶଧର ରାୟ
ବିଳାକ୍ଷର ପୁତ୍ରଜାଣଏହାର ତନୟ ।
ବିଡ଼ଲାକ୍ଷ ନାମେ ହେଲା ତାହାର ସନ୍ତତି
ତାର ନନ୍ଦନ ଖଡ଼୍ଗ ନାମେ ଚକ୍ରବର୍ତ୍ତୀ ।
ସେ ଖଡ଼୍ଗ ରାଜାର ଯେ ନଥିଲା ସନ୍ତାନ
ସମୁଦ୍ରକୁ ହିଁ ସେ ସେବାକରେ ପ୍ରତିଦିନ ।
ସମୁଦ୍ରଠାରୁ ସହସ୍ର ଯୋଜନର ଅନ୍ତେ
କିଷ୍କିନ୍ଧ୍ୟା ବସାଇ ନବଯୋଜନ ପର୍ଯ୍ୟନ୍ତେ ।
ସେ ରାଜା ସମୁଦ୍ରେ ପଶି ସ୍ନାନ କରେ ନିତ୍ୟ
ସମୁଦ୍ରକୁ ସେବାକରି ମାଗୁଥାଏ ପୁତ୍ର ।
ବୃଷର ଶୁକଳ ପକ୍ଷ ଦ୍ୱିତୀୟା ଯେ ତିଥି
ଅର୍କବାର ମୃଗଶିରା ନକ୍ଷତ୍ର ପାହାନ୍ତି ।
ସେ ରାଜା ସେଦିନ କରେ ସମୁଦ୍ରର ସେବା
ଭୋ ରତ୍ନାକର ତୁ ମୋତେ ପୁତ୍ରଦାନ ଦେବା ।
ପୁତ୍ରବାଞ୍ଛା କରି ରାଜା କରଇ ଦଇନୀ
ଏମନ୍ତ ବେଳେ ମିଳିଲେ ଆସି ପୁତ୍ର ବେନି ।
କପି ମୁଖ ହିଁ ସୁନ୍ଦର ଆପଣାର କାୟ
ବଳବନ୍ତ ନନ୍ଦନ ସେ ଅନଙ୍ଗର ପ୍ରାୟ ।
ବୋଇଲେ ବିରଞ୍ଚି ନାରାୟଣ ସ୍ୱର୍ଗବାଣୀ
ଏ ଦୁହିଁଙ୍କୁ ପ୍ରତିପାଳ ତୁ ହୋ ନୃପମଣି ।
ସେ ପୁତ୍ର ଘେନି ଆସଇ ଗୃହେ ଦଣ୍ଡଧାରୀ
ତାଙ୍କ ନାମ ଦେଲା ବାଳି ସୁଗ୍ରୀବ ବିଚାରି ।
ପ୍ରଶସ୍ତ ଆଦିତ୍ୟ ଗର୍ଭେ ସତ୍ୟଯୁଗେ ଥିଲା
ତ୍ରେତାଯୁଗେ ତାର ନାମ ସୁଗ୍ରୀବ ହୋଇଲା ।
ଶସ୍ତ ରହିଥିଲା ଇନ୍ଦ୍ରଦେବତାର ତହିଁ
ତ୍ରେତାଯୁଗେ ତାର ନାମ ବାଳି ଯେ ହୁଅଇ ।
ପ୍ରଳୟେ କେତୁ ମଙ୍ଗଳ ନାମ ତାହାଙ୍କର
ଶସ୍ତ ପ୍ରଶସ୍ତ ରୂପରେ ସତେ ଅବତାର ।
ତ୍ରେତାଯୁଗେ ହେଲେ ବାଳି ସୁଗ୍ରୀବ ଭୂଭାଗେ
ଅର୍ଜ୍ଜୁନ ହେ ଶୁଣ ତୁହି ଏବେ ଏହିଯୁଗେ ।
ଏ ଦ୍ୱାପରଯୁଗେ ଜାଣ ଆଦିତ୍ୟର ବୀର୍ଯ୍ୟେ
ଉପୁଜିଲେ କନ୍ୟାକାଳେ କର୍ଣ୍ଣ କୁନ୍ତୀରଜେ ।
ବାସବର ଅଂଶେ ତୁହି ଜାତ ଫାଲଗୁନି
ଜଗନ୍ନାଥଙ୍କର ଆତ୍ମାରୂପେ ଅଛୁ ଘେନି ।
ପ୍ରଳୟ କାଳରେ ତୁମ୍ଭେ କେତୁ ଯେ ମଣ୍ଡଳ
ସତ୍ୟ ଶସ୍ତ ପ୍ରଶସ୍ତ ଯେ ଅଟ ମହାବଳ ।
ତ୍ରେତାଯୁଗେ ତୁମ୍ଭେ ବାଳି ସୁଗ୍ରୀବ ଉତ୍ପନ୍ନ
ଦ୍ୱାପରେ ଜାତ ହୋଇଲ କର୍ଣ୍ଣ ଅରଜୁନ ।
ବାଳି ସୁଗ୍ରୀବଙ୍କର ମୁଁ ଅଟଇ ଭଣଜା
ଖଡ଼୍ଗଦ ରାଜନ ମୋର ଅଟଇ ସେ ଅଜା ।
ପବନର ପୁତ୍ର ମୁହିଁ ଅଞ୍ଜନା ମୋ ମାତା
ଶ୍ରୀରାମଚନ୍ଦ୍ରଙ୍କ ବରେ ହୋଇଲି ମୁଁ ଦାତା ।
ଅନେକ କାଳର କଥା କହିଲା ପାବନି
ଶୁଣି ସାନନ୍ଦ ହୋଇଲା ବୀର ଫାଲଗୁନି ।
ଅନେକ ଦାରାକ୍ଷ ଫଳ ଦେଲେ ହନୁମନ୍ତ
ଭୁଞ୍ଜିଣ ତୃପତି ହେଲେ ପଣ୍ଡୁରାଜାସୁତ ।
କରପତ୍ର ଯୋଡ଼ି ପୁଣି ବୋଲେ ଧନଞ୍ଜୟ
ପରମଯୋଗୀ ନାଥ ତୁ ହୋଇଲୁ ସଦୟ ।
ଉଠି ଅର୍ଜ୍ଜୁନକୁ କୋଳ କରି ହନୁମାନ
ପ୍ରସନ୍ନ ହୋଇଲି ବର ମାଗ ହୋ ଅର୍ଜ୍ଜୁନ ।
ସାଧୁ ମହିମା ତୋହର ଜନମ ହିଁ ସାର୍ଥ
ଆଜୁହୁଁ ତୋ ନାମ ଶ୍ୱେତବାହ ହେଲାପାର୍ଥ ।
ଅର୍ଜ୍ଜୁନ ବୋଇଲେ ସ୍ୱାମୀ କର ଅନୁଗ୍ରହ
ନନ୍ଦିଘୋଷ ରଥେ ମୋର କପିରୂପେ ଥାଅ ।
ସଂଗ୍ରାମକୁ ଯିବାବେଳେ ଚାହିଁବି ତୋ ମୁଖ
ସମସ୍ତ ସିଦ୍ଧ ହୋଇବ ମୋହର ପ୍ରତ୍ୟକ୍ଷ ।
ହେ ପଣ୍ଡିତେ ବିଭାଯାତ୍ରା ଅନୁକୂଳ ବିଧି
ହନୁମନ୍ତ ପ୍ରସାଦରେ ସବୁକାର୍ଯ୍ୟ ସିଦ୍ଧି ।
ଯେବଣ ଭୁବନେ ବିଜେ କରିଥାଇ ହନୁ
ପଶି ନ ପାରଇ ତହିଁ ପାପ ରବିସୁନୁ ।

ଯେବା ପଣ୍ଡିତ ହୋଇବ ଜ୍ଞାନୀ ଶାନ୍ତିମନ୍ତ
ପ୍ରତିମା ଗୋଟିଏ ଦ୍ୱାରେ ଥିବ ହନୁମନ୍ତ ।
ଅସୁରକୁଳ ଅନ୍ତକ ସେ ପରମଯୋଗୀ
ଯାହଦ୍ୱାରେ ଥାଇ ନୁହେଁ ସେ ଅସୁରଭୋଗୀ ।
ଅନ୍ତକାଳେ ସୁମରଇ ଯେହୁ ହନୁମନ୍ତ
ଆକର୍ଷି ନ ପାରେ ତାକୁ କେବେ ଜନ୍ତୁନାଥ ।
କରପଦ୍ମ ଯୋଡ଼ି ପୁଣି ବୋଲଇ ଫାଲଗୁନି
ପାପେ ଦୂଷିତ ହୋଇଲି ତୋତେ ମୁଁ ନ ଚିହ୍ନି ।
ଶ୍ରୀରାମ ପ୍ରସନ୍ନେ ବରଦେଲେଟି ଯାହାକୁ
ପୂର୍ବପୁଣ୍ୟେ ମହାତମା ଭେଟିଲି ତୁମ୍ଭଙ୍କୁ ।
ଅନୁଗ୍ରହ ନାଥ ମୋତେ ଦୟା କରିଥିବା
ନନ୍ଦିଘୋଷ ରଥେ ମୋର ବିଜୟ କରିବା ।
ଶୁଣିଣ ସନ୍ତୋଷ ହେଲେ ବୀର ହନୁମନ୍ତ
କପିକେତନ ହେବ ତୋ ନନ୍ଦିଘୋଷ ରଥ ।
ବେନିକର ଯୋଡ଼ି ହନୁପାଦେ ପାର୍ଥଲାଗି
ଅନେକ ବିନୟେ କହେ ଅର୍ଜ୍ଜୁନ ବିରାଗୀ ।
ଜୟ ତୁ ଜୟ ତୁ ନାଥ ତୁ ରୁଦ୍ର ମୂରତି
ଜୟ ଜୟ ଦାଶରଥି ଭକ୍ତ ମହାଯତି ।
ଜୟ ଜୟ ଲଙ୍କ ଧ୍ୱଂସି ବୀର ଦର୍ପଶୂଳ
ଜୟ ତୁ ଜୟ ତୁ ତ୍ରେତାଯୁଗ ମହାମଲ୍ଲ ।
ଜୟ ତୁ ପରମାନନ୍ଦ ଗଉତମ ନାତି
ଜୟ ଅଜର ଅର୍ଗଳି ଭଙ୍ଗା ତୁ ମାରୁତି ।
ଜୟ ଜୟ ଶ୍ରୀରାମର ଭକ୍ତ ଦୁଷ୍ଟଶ୍ରେଷ୍ଠ
ଜୟ ନିଶାଚର ସିଂହ ଦର୍ପ କଲୁ ନଷ୍ଟ ।
ଜୟ ତୁ ଜୟ ତୁ ଭକ୍ତଜନଙ୍କ ବତ୍ସଳ
ଜୟ କରୁଣାସାଗର ଜୟ ମତିଭୋଳ ।
ଜୟ ପ୍ରସନ୍ନ ମୂରତି ଜଗତର ବନ୍ଧୁ
ଜୟ ଶରଣ ବତ୍ସଳ ନାମ କୃପାସିନ୍ଧୁ ।
ଜୟ କାଳନେମି ଗନ୍ଧ କାଳିଦର୍ପ ଗଞ୍ଜା
ଜୟ ଦୁର୍ଜ୍ଜୟ ଦାନବକୁଳ ଦର୍ପଭଞ୍ଜା ।
ଜୟ ତୁ ଜୟ ମାନବ ତୁ ମାନଗୋବିନ୍ଦ
ଜୟ ଭୁବନ ଉତ୍ସବ ତୁ ପରମାନନ୍ଦ ।
ଜୟ ମହାଯତି ମହାପଣ୍ଡିତର ବୁଦ୍ଧି
ଜୟ ଜୟ ଗିରିବରେ ବାନ୍ଧିଲୁ ବାରିଧି ।
ଶ୍ରୀ ହନୁମନ୍ତ ଚରଣେ ଶରଣ ମୋ ସେବା
ଶୂଦ୍ରମୁନି ଶ୍ରୀ ଶାରଳା ଦାଶେ ମୁକ୍ତିଦେବା ।
ମଧ୍ୟପର୍ବେ ସୁଗନ୍ଧିକା ହରଣ ଆଶ୍ଚର୍ଯ୍ୟ
ଶୁଣନ୍ତେ ଯେ ଧନଜନ ପ୍ରାପତ ଐଶ୍ୱର୍ଯ୍ୟ ।
ହନୁମାନ ଦରଶନେ ଆପଦରୁ ବଞ୍ଚା
ହନୁମାନ ଦରଶନେ ମୁକ୍ତିଗତି ଇଚ୍ଛା ।

ସୁମରିବୁ ପାର୍ଥେ ତୁହି ମୋତେ ଯେତେବେଳେ
କପିକେତନ ତୋ ରଥେ ଥିବି ତେତେବେଳେ ।
ସାରଥି ହୋଇଲେ ଯେବେ ରଥେ ଦେବରାଜେ
ସଂଗ୍ରାମ ରଥ ସହିତେ କରିବି ମୁଁ ବିଜେ ।
ହନୁ ଅର୍ଜ୍ଜୁନ ଏ ଦୁହେଁ ଚଳିଗଲେ ରଥେ
ପ୍ରବେଶ ହୋଇଲେ ଯାଇ ଅଭିନ୍ନ ପର୍ବତେ ।
ଦେଖିଲେ ସେଠାରେ ରହି ସରୋବର ସ୍ଥଳି
ବେନିଜୋଜନ ଆୟତ କୋଶହୁଁ ଉଗୁଳି ।
ଅନେକ ବିକାଶ ତହିଁ କୁସୁମ ସୁଗନ୍ଧି
ଉରଗବଳ ଅଛନ୍ତି ଶରଧାରେ ସାଧି ।
ବିଷ ଲହରୀ ପରାୟେ ଆନ୍ଦୋଳଇ ପାଣି
କଜ୍ଜଳପ୍ରାୟେ ପୂରିଛି ନାଗଙ୍କର ଫଣି ।
ହନୁମାନ ବୋଇଲା ତୁ ଶୁଣସି ହୋ ବାବୁ
ଏ ବିଷ ଲହରୀକୁ ତ କେସନେ ସାଧିବୁ ।
ନାରାୟଣ ଅବତାର ଶ୍ରୀରଙ୍ଗା ସ୍ୱରୂପେ
କରନ୍ତେ ସେ ଜଳକ୍ରୀଡ଼ା ଯମୁନାର କୋପେ ।
କଂସର ଅଗ୍ରତେ ଯାଇ କହିଲେ ନାରଦ
ଶ୍ରୀକୃଷ୍ଣଙ୍କ ହସ୍ତେ ତୁହି ହୋଇବୁ ଯେ ବଧ ।
କହ୍ନାଇ ନାମେ ନନ୍ଦର ଯେଉଁ ପୁତ୍ରଗୋଟି
ଅନାଦି ନାଥ ଶ୍ରୀକୃଷ୍ଣ ଅବତାର ସେଟି ।
ନାରଦ ବଚନେ ସେହି ଦୃମିଳାର ବଳା
ଲାଗିଲା ବିଷ୍ଣୁର ଭୟ ନିରତେ ଭାଳିଲା ।
ବାଳକାଳେ ଆଦ୍ୟେ ଦେଲା ପୁତନାକୁ ପେଶି
କ୍ଷୀରପାନେ ସେ ତାହାକୁ ପକାଇଲେ ଶୋଷି ।
ଦ୍ୱିତୀୟେ ବଧିଲେ ଦେବ ବୃକ୍ଷ ଯେ ଯାମଳା
ତୃତୀୟେ ଶକଟ ଭାଙ୍ଗିଦେଲେ ନନ୍ଦବଳା ।
ଷଣ୍ଢାସୁରକୁ ମାଇଲେ ଗୋପପୁରେ ପଶି
ତାହା ଶୁଣି କଂସ ରହେ ମନରେ ତରାସି ।
ପୁରେକ ରହିଲା ପୁଣି ପ୍ରଳମ୍ବା ବଚନେ
ମାଗିଲା ସେ ପଦ୍ମଫୁଲ ତାଙ୍କୁ କୁଟମନେ ।
କାହ୍ନୁ ସଙ୍କର୍ଷଣ ଗଲେ ପଦ୍ମଫୁଲ ତୋଳି
ପଛରେ ଯାନ୍ତି ସକଳ ଗୋପପୁର ଚଳି ।
କାଳୀୟ ହ୍ରଦେ ପଶିଲେ ଦେବ ଚକ୍ରପାଣି
ନାଗବଳ ଘେନିଗଲା କାଳୀୟ ନାଗୁଣୀ ।
ପଦ୍ମ ତୋଳନ୍ତେ କଟାଳ କଲା ବସି କାଳୀ
ପଦ୍ମେ ମର୍ଦ୍ଦିଲେ ତାହାର ଦର୍ପ ବନମାଳୀ ।
ଗରୁଡ଼ ବିଜେ କରନ୍ତେ ପଳାଇଲା ଡରେ
ଶରଣ ପଶିଲା ଆସି କେଶବ ପୟରେ ।
ତୋଷେ ତାକୁ ଆଜ୍ଞାଦେଲେ ପ୍ରଭୁ ଭଗବାନ
ବସାଇଲେ ତାର କରେ ଶଙ୍ଖ ଚକ୍ର ଚିହ୍ନ ।

ପ୍ରଣିପାତ କାଳେ ଖଗେଶ୍ୱରଙ୍କୁ ହିଁ ଦେଖି
ଶରଣ ପଞ୍ଜର ନାଥ ତା ଦୋଷ ଉପେକ୍ଷି ।
ପଳା ଯା କାଳୀ ତୋହର ଅଦୃଶ୍ୟ ସ୍ଥାନକୁ
କହି ଅନୁଗ୍ରହ କଲେ ନାରାୟଣ ତାକୁ ।
ଶୁଣ ହୋ ଅର୍ଜ୍ଜୁନ ଖଗବରଙ୍କ ବଚନେ
ଏହି ସରୋବରେ ଆସି ରହିଲା ଗୋପନେ ।
ବହୁତ ବୃନ୍ଦ ଅଛନ୍ତି ବଳ ତା ସଙ୍ଗରେ
ଗରୁଡ଼ ପଶି ନ ପାରେ ତହିଁର ଭିତରେ ।
ଆହୋ ଅନୁସର ବୋଲି ଏକ ସତ୍ୟଯୁଗେ
ଗରୁଡ଼ ମାଇଲା ନାଗବଳ ମାତା ଆଗେ ।
ଅରୁଣ ପର୍ବତେ ଆସି ଦିନେ ବିଶ୍ରାମିଲେ
ସେ ପକ୍ଷୀରାଜ କଚ୍ଛପ ଗୋଟିଏ ଦେଖିଲେ ।
ଆକର୍ଷି ଧଇଲେ ତାକୁ ଭକ୍ଷିବା ନିମନ୍ତେ
ଥଣ୍ଟରେ ମାରି ତାହାକୁ ଆଣି ଶୂନ୍ୟପଥେ ।
କଚ୍ଛପକୁ ହିଁ ଭକ୍ଷନ୍ତେ ବିନତାର ବଳା
ଭୂମି ଉପରେ ପକାଇ କରି କେଳା କେଳା ।
ସନ୍ଧ୍ୟା କରୁଛନ୍ତି ବସି କଶ୍ୟପ ମହର୍ଷି
ତାହାଙ୍କ ଉପରେ ପୃଷ୍ଠ ପଡ଼ିଲାକ ଆସି ।
ଦେଖିଲେ କଶ୍ୟପ ଋଷି କୁରୁମର ପୃଷ୍ଠ
ରାଗେ ଗରୁଡ଼କୁ ଶାପ ଦେଲେ ତପୋନିଷ୍ଠ ।
ଆରେ ଆମ୍ଭର ବାହନ ଅଟଇ କଚ୍ଛପ
ଏହା ଭକ୍ଷିଲେ ପିତାର ସରିସମ ପାପ ।
ଏହା ପକାଇଲୁ ଆଣି ଆମ୍ଭର ଉପରେ
ଆଉ ବେଳେ ନ ପଶିବୁ ଏହି ସରୋବରେ ।
ଆମ୍ଭ ଶାପ ମେଣ୍ଟି ଯେବେ ଏଥିରେ ପଶିବୁ
ଦହନ ହେବ ଶରୀର ଧୂଳି ପାଶୁଁ ହେବୁ ।
ରାଗେ ଶାପ ଦେଲେ ଯହୁଁ କଶ୍ୟପ ମହର୍ଷି
ତେଣୁ ଗରୁଡ଼ ଏଥିରେ ନ ପାରଇ ପଶି ।
ଶୁଣିଲୁ ବାବୁ ପୂର୍ବର କଥା ସବ୍ୟସାଚୀ
କାଳୀ ନାଗବଳ ଘେନି ଏଥେ ରହିଅଛି ।
ନାରାୟଣ ଅଙ୍ଗେ ଘାତ କଲା ଏ ଉରଗ
ଜାଣୁ ତୁ ଅର୍ଜ୍ଜୁନ ଏଥି କର ହୋ ସଂସର୍ଗ ।
ହନୁମାନର ବଚନ ଶୁଣି ଫାଲଗୁନି
ସରୋବର ପାଶେ ପାର୍ଥ କରେ ଚାପ ଘେନି ।
ପ୍ରଦୀପ୍ତ ମାରାଗ ଜିଣି ଦିଶେ ହେମବର୍ଣ୍ଣ
ବେନି ଚରଣ ପ୍ରକାଶେ ଜାଣି ପଦ୍ମ ଚିହ୍ନ ।
ପତ୍ରେ ପତ୍ରେ ଯାଇ ସରୋବର ମଧ୍ୟେ ଉଠି
କାଳୀ ନାଗୁଣୀ ବଳକୁ ଦେଖଇ କିରୀଟି ।
ତିନିଶତ ଫଣୀ ତାଙ୍କ ଶରୀରେ ବିରାଜେ
ଜୀମୁତ ପଟଳ ଯେହ୍ନେ ମିଥୁନରେ ସାଜେ ।

ବିଶେଷରେ ଅମ୍ବୁଦବର୍ଣ୍ଣ ଅଗାଧ ଗଭୀର
କାଳୀ ନାଗୁଣୀ ଗର୍ଜନ ଘନ ଘୋରତର ।
ଦ୍ୱିତୀକୃଷ୍ଣ ଅବତାର ଅଟେ ଧନଞ୍ଜୟ
ନାଗବଳଙ୍କୁ ଦେଖିଣ ନ କରଇ ଭୟ ।
ତୋଳଇ କୁସୁମ କରେ ପତ୍ରେ ପତ୍ରେ ଉଠି
ପିଟଇ ନାଗବଳଙ୍କୁ ହସ୍ତେ ଧରି ଯଷ୍ଟି ।
ଫଣାକୁ ବାଙ୍କୁଁ ହୁଅନ୍ତି ନାଗେ ମସିଗୁଣ୍ଡା
ନାଗୁଣୀ ବଳଙ୍କୁ ଦେଖି କୋପେଣ ପ୍ରଚଣ୍ଡା ।
ହୃଦକୁ ଶୋଭଇ ତାର ଗଳା ରତ୍ନମାଳା
ଜଗତବନ୍ଧୁ ମୋହନ ବାସବର ବଳା ।
ଏକ ପ୍ରବାର ଅନେକ ନାଗବଳ ଲୋଟି
କୋମଳ ଫଣା ଉପରେ ହୁଏ ରକ୍ତବୃଷ୍ଟି ।
ମହାବିଶ୍ୱରୂପ ଧରି ମାରି ଯାଉ ବେଗେ
ଜଳର ଭିତରେ କୁଢ଼ କୁଢ଼ ହେଲେ ନାଗେ ।
କଜ୍ଜଳ ବରନ ପାଣି ହେଲା ରକ୍ତମୟ
ବହୁତ ନାଗ ମାଇଲେ ବୀର ଧନଞ୍ଜୟ ।
ବାମେ କୁସୁମ ତୋଳଇ ଡାହାଣେ ଖଡ଼ଗ
ଅର୍ଜ୍ଜୁନ ବିଘାତେ ପାଇ ଛିଡ଼ିଲେ ଉରଗ ।
ଖଡ଼ଗେ ନାଗୁଣୀବଳ ମାଇଲା ଫାଲଗୁନି
ନିର୍ଭୟେ ତୋଳିଲେ ଫୁଲ କରେ ଯଷ୍ଟିଘେନି ।
ପଳାଇଯାଇ ଉରଗେ କହିଲେ କାଳୀକି
ତୋହର ଥାଆନ୍ତେ ଆମ୍ଭେ ହେଲୁ ନିରିମାଖି ।
ପୁରୁଷେକ ପ୍ରବେଶିଲେ କାହୁଁ ଅଦ୍‌ଭୂତେ
ସୁଗନ୍ଧି ପୁଷ୍ପ ତୋଳଇ ଆମ୍ଭର ଦେଖନ୍ତେ ।
କୋମଳ ପତ୍ରରେ ସେହି ବେନିପାଦ ଦେଇ
କେମନ୍ତେ ଉଶ୍ୱାସ ପୁଣି ଜଳେ ନ ବୁଡ଼ଇ ।
ତୋଟା ଭାଙ୍ଗନ୍ତେ ଧାଇଁଲୁ ମିଳି ସର୍ବସର୍ପେ
ଆକ୍ରୋଶି ଘୋଟିଲୁ ଯାଇ ଯେ ଯାହାର ଦର୍ପେ ।
ଅକାଟ ଅତୁଟ ଅଟେ ତାହାର ଯେ କାୟ
ନୁହଇ ମାନବ କେଉଁ ଦେବତା ନିଶ୍ଚୟ ।
ତାହାର ନାମ ଧରନ୍ତେ ତ୍ରାସନ୍ତି ଦିଗପାଳେ
ଏଡ଼େ ବଡ଼ ଫୁଲତୋଟା ଏକା ଧ୍ୱଂସେବଳେ ।
ବନ ବିନାଶ ବାରତା ବଳମୁଖୁ ଶୁଣି
ଆଗେ ବିଜେକଲେ କୋପେ ସେ କାଳନାଗୁଣୀ ।
ମନ୍ଦର କନ୍ଦରଗିରି ତାର ସପ୍ତଫେଣା
ଗର୍ଜନ ଶବଦ ଶୁଣି ଜନେ ହେଲେ ବଣା ।
ଜଳଭୂବନୁ ଆସଇ ଆକାଶକୁ ଘୋଟି
ହନୁମାନ ବୋଇଲାରେ ଶୁଣରେ କିରୀଟି ।
କାଳୀର ଯେ ବିଶ୍ୱରୂପ ଦେଖରେ ଫାଲଗୁନି
କୋପେ ପେଶିଲା ଫାଲଗୁନି ଦିବ୍ୟଶର ଘେନି ।

ତୁଣ୍ଡବିସ୍ତାରି ଆସୁଛି କୋପଭରେ କାଳୀ
ଭୟେ କଳଙ୍କ ଦିଶିଲେ ଦେବ ଅଂଶୁମାଳୀ ।
ଅର୍ଜ୍ଜୁନ ପେଶି ବିନ୍ଧିଲା ସାତଗୋଟି କାଣ୍ଡ
ସମସ୍ତ ପଶିଲା କାଳୀନାଗୁଣୀର ତୁଣ୍ଡ ।
ଶରସାଗର କରଇ ବୀର ଧନଞ୍ଜୟ
ନାଗୁଣୀ ଗର୍ଭରେ ପଡ଼ି ସବୁଗଲା କ୍ଷୟ ।
ପର୍ବତା ଶରେକ ଘେନି ବିନ୍ଧିଲା ଫାଲଗୁନି
ହେଲେ ଭକ୍ଷିଲା ତାହାକୁ ସେ କାଳନାଗୁଣୀ ।
ଅଗ୍ନିବାଣ ବିନ୍ଧିଲାକ ଆଣି ବୀରମଣି
ନାଗୁଣୀ ଗର୍ଭରେ ପଡ଼ି ନାଶଗଲା ପୁଣି ।
ଅଗ୍ନି ଦେବତାଏ ଦେଲେ ଯେଉଁ ମହୌଷଧି
ତାହାକୁ ଆଧାନ କଲା ପାର୍ଥ ମହାଯୋଦ୍ଧୀ ।
ପେଶିଲା ସେ ମଉଷଧି ଶର ଯହୁଁ ପାର୍ଥ
ତାହାର ଗନ୍ଧ ବାଜିଲା ନାଗୁଣୀର ମାଥ ।
ଅଉଷଧି ଗନ୍ଧଲାଗି ଭାଙ୍ଗିଲା ତା ଦର୍ପ
ବନ ଭୁବନକୁ ତେଜି ପଳାଇଲେ ସର୍ପ ।
କାଳୀ ଉପରେ ପଡ଼ିଲା ଖଗବର ଶର
ଅର୍ଜ୍ଜୁନ ବିନ୍ଧିଲା ଯହୁଁ ହୋଇ କୋପଭର ।
ମେରୁ ମର୍ଦ୍ଦନ ହୋଇଲା ଯହୁଁ ସେହି କାଳୀ
ସମର ତେଜ୍ୟା କରିଣ ଯାଇ ପାଶେ ମିଳି ।
ସର୍ପଧ୍ୱଂସନ ମାନସେ ବାସବ ଆକର୍ଷି
ଗୋଡ଼ାଇ ଗରୁଡ଼ଶସ୍ତ୍ର ବାରମ୍ବାର ପେଶି ।
ଗରୁଡ଼ ତେଜ ଲାଗିଲା ଯହୁଁ ମହୀତଳେ
ଅନ୍ତରୀକ୍ଷେ ଜଳେ ପଡ଼ି ମଲେ ନାଗବଳେ ।
ଅନେକ ନାଗଧ୍ୱଂସିଲା ବୀର ଧନଞ୍ଜୟ
ଥୋକେ ପାତାଳେ ପଶିଲେ ଥୋକେ ଗଲେ କ୍ଷୟ ।
ମଉଷଧି ଶରବଳେ ଅସାଷ୍ଟମ କାଳୀ
ବଇଷ୍ଣବୀ ଚକ୍ର ପାର୍ଥ ମାଇଲାକ ତୋଳି ।
ଚକ୍ରଘାତେ ବେନିଖଣ୍ଡ ହୋଇଗଲା ଛିଡ଼ି
ବେନିଖଣ୍ଡ ହୋଇ କାଳୀ ତଳେଗଲା ପଡ଼ି ।
ନାଗୁଣୀର ବଳ ନାଶକଲେ ଯେତେବେଳେ
ହନୁଯାଇ ଅର୍ଜ୍ଜୁନକୁ ଧଇଲାକ କୋଳେ ।
ସାଧୁ ଅର୍ଜ୍ଜୁନ ମହିମା ତୋର ଧନ୍ୟ ଧନ୍ୟ
ସାଧୁ ସାଧୁ ଅର୍ଜ୍ଜୁନରେ ତୋହର ଜୀବନ ।
ସାଧୁ ସାଧୁ ଅର୍ଜ୍ଜୁନରେ ତୋର ପିତାମାତା
ସାଧୁ ସାଧୁ ଅର୍ଜ୍ଜୁନରେ ତୋ ଗୁରୁଦେବତା ।
ସାଧୁ ସାଧୁ ଅର୍ଜ୍ଜୁନ ତୁ ଭାରତର ମଲ୍ଲ
ସାଧୁ ସାଧୁ ଅର୍ଜ୍ଜୁନ ତୁ ଦୁର୍ଜ୍ଜନର ଶଲ ।
ସାଧୁ ସାଧୁ ଅର୍ଜ୍ଜୁନ ତୁ ସୋମବଂଶ ଧର୍ମ
ସାଧୁ ସାଧୁ ଅର୍ଜ୍ଜୁନରେ ତୋର କୁଳଜନ୍ମ ।
ବହୁତର ସାଧୁ ସାଧୁ କଲା ହନୁମାନ
ବୋଇଲା ଦ୍ୱିତୀୟକୃଷ୍ଣ ସାକ୍ଷାତେ ଅର୍ଜ୍ଜୁନ ।
ହନୁମାନ ଆଶ୍ୱାସଇ ବାସବୀକୁ କୋଳେ
ବିଜୟ ସେ ଧନଞ୍ଜୟ ପୁଣି ଯାଇ ଜଳେ ।
ସୁଗନ୍ଧି ପୁଷ୍ପ ତୋଳଇ ହସରେ ବହୁତ
ସେହି ସରୋବରେ ପୁଣି ଅଛଇ ଦଇତ ।
ତୋଟା ବିଧ୍ୱଂସନ୍ତେ ସେହି ଭୁଜର ରୂପରେ
ଅର୍ଜ୍ଜୁନ ବେନିଚରଣ ଧଇଲା ପାଟିରେ ।
କୋପେ ଧରି ଆକର୍ଷଇ ଦୈତ୍ୟ ମହାବଳୀ
ଅର୍ଜ୍ଜୁନ ବେନିଚରଣ ଧରିଯାଏ ଗିଳି ।
କଟିଭାଗ ପଡ଼ିଯାନ୍ତେ ଗିଳିଯାନ୍ତେ ରକ୍ଷ
ଅର୍ଜ୍ଜୁନ ଡାକଇ ମୋତେ ହନୁମାନ ରଖ ।
କାଳୀନାଗଙ୍କର ବଳ ଧ୍ୱଂସିଲି ମୁଁ ବଳେ
କେ ମୋର ଚରଣ ଗିଳି ବୁଡ଼ାଉଛି ଜଳେ ।
ନଖ ମୁନ ନାସା କର ଚରଣ ହିଁ ନାହିଁ
ଶୂନ୍ୟଦେବତା ପରାଏ ଗିଳି ସେ ଆସଇ ।
କଟିଯାଏ ଗିଳିଲାଣି ଅଛି ମୁଖ ପାଣି
ହଂନୁ ଡେଇଁ ପଡ଼ିଲାକ ପାର୍ଥବାକ୍ୟ ଶୁଣି ।
ଅର୍ଜ୍ଜୁନକୁ ସେ ଆକର୍ଷି ଧନୁ ବାମକରେ
ଛାଡ଼ି ପଳାଇଲା ଦୈତ୍ୟ ହନୁମନ୍ତ ଡରେ ।
ହନୁମାନ ବୋଇଲାକ ଶୁଣରେ କିରୀଟି
ମୋହର ଆଡ଼କୁ ବାବୁ ଚାହାଁରେ ଲେଉଟି ।
ହନୁବଚନେ ଲେଉଟି ଚାହେଁ ସବ୍ୟସାଚୀ
ଦୂରନ୍ତ ଦଇତ ଛାଡ଼ି ପଳାଇ ଯାଉଛି ।
ଅର୍ଜ୍ଜୁନ ବୋଇଲେ ଦେବ ଶୁଣିମା ପାବନି
ଏ କେବଣ ଚରିତ ମୁଁ ନ ପାରିଲି ଜାଣି ।
ବଡ଼ ହିଁ ଅଗୋଚର ଏ ଅସମ୍ଭବ ମାୟା
କି ଘେନି ଗିଳିଲା ମୋତେ ନ ଦେଖିଲା କାୟା ।
ହନୁମାନ ବୋଇଲେ ହୋ ଶୁଣ ମହାରଥା
ତ୍ରେତାଯୁଗର ବହୁତ କାଳର ଏ କଥା ।
ରାମଲକ୍ଷ୍ମଣ ଭରତ ଶତ୍ରୁଘ୍ନ ଆବର
ଦଶରଥ ରାଜାଙ୍କର ଏ ଚାରିକୁମର ।
ରାମଙ୍କ ଭାରିଯା ହରିନେଲା ଦଶକନ୍ଧ
କପିବଳ ଘେନି ରାମ ବାନ୍ଧିଲେକ ବନ୍ଧ ।
ରାମରାବଣର ହେଲା ବହୁତ ସମର
ଅସୁର ଅନେକ ବଧ କଲେ ରଘୁବୀର ।
କୁମ୍ଭକର୍ଣ୍ଣ ବୋଲି ଏକ ବିଶ୍ରବାର ସୁନୁ
ରାବଣ ଅନୁଜ ତାର ଗିରିପ୍ରାୟ ତନୁ ।
ଦନୁଜ ବଳ ପଡ଼ନ୍ତେ କୁମ୍ଭକର୍ଣ୍ଣବୀର
ସଂଗ୍ରାମେ ପ୍ରବେଶ ଆସି ହେଲା ଏକେଶ୍ୱର ।

ଦୁର୍ଦ୍ଧାନ୍ତ ଅସୁର କପିବଳ ଦେଲା ଗିଳି
ନାସିକା ଶ୍ରବଣ ବାଟେ କପିଏ ନିକିଳି ।
ଦଧିମୁଖ ସେନାପତି ନଳନୀଳ ବୀର
ଅସୁରକୁ ପୋପାଡ଼ିଲେ ଧରି ଗିରିବର ।
କଲେକ ସେହି ଅନେକ ପର୍ବତ ପ୍ରହାର
ତାର ଶିରେପଡ଼ି ସବୁ ହେଲା ଶତେଚୂର ।
କେବେ ହେଁ ବଧ ନୋହିଲା ସେହି ମହାଦୈତ୍ୟ
ମାରିମାରି ପିଟିଲେ ଯେ ବାନର ସମସ୍ତ ।
ଆପେ ଶ୍ରୀରାମ ଅଇଲେ କରେ ଧରି ଧନୁ
ଗୁଣ ଟଙ୍କାର ଶବଦେ କମ୍ପାଇଲେ ସାନୁ ।
ବେନିଭୁଜେ ଧରି କପିଗିଳି ବଳବନ୍ତ
ନାରାଚ ପେଶି ଶ୍ରୀରାମ କାଟିଲେ ତା ହସ୍ତ ।
ଭୁଜ ଛିଡ଼ିନ୍ତେ ଅସୁର ବଡ଼ ହିଁ ପ୍ରଚଣ୍ଡା
ଡାଳ ବିହୁନେ ଯେସନେ ଦିଶେ ବୃକ୍ଷ ମୁଣ୍ଡା ।
କୋପେ ସେ ଅସୁର ଦେଲା ତୁଣ୍ଡକୁ ବିସ୍ତାରି
କାମୁଡ଼ି କରି ଗିଳଇ କପିବର ଧରି ।
ଶ୍ରୀରାମ ନାରାଚ ଧରି ପେଶିଲେ ପ୍ରଚଣ୍ଡ
ଶରୀର ବିକୋଟି ତାରେ ଛେଦିଲେକ ମୁଣ୍ଡ ।
ସେତୁବନ୍ଧର ଉପରେ ପଡ଼ିଲା ତା କାୟ
ଉସର୍ଗେ ଦିଶିଲା ଆନ ବନ୍ଧର ପରାୟ ।
ଛିଣ୍ଡିଲା ମୁଣ୍ଡ ତାହାର ଗିଳେ ହରିବଳ
ପୁଣି ଶ୍ରୀରାମ ତାହାକୁ କଲେ ବେନିଫାଳ ।
ଫାଳେକ ଉଡ଼ି ସମୁଦ୍ରେ ପଡ଼ିଲାକ ଯାଇ
ଉପର ମୁଣ୍ଡ ଫାଳକ ଆସୁଅଛି ଧାଇଁ ।
ଯେବଣଠାବେ ପଡ଼ଇ ତାହାର କପାଳ
ଧୂଳି ହୋଇଯାନ୍ତି ଶତଶତ କପିବଳ ।
ଦୁଃସହ ହେବାର ଦେଖି ରଘୁକୁଳରାଣ
ଯହୁଁ ସେ ଚାହିଁଲେ ବିଭୀଷଣ ମୁଖ ପୁଣ ।
ଅସୁର ରାଜା ବୋଇଲା ଶୁଣ ରଘୁପତି
ବ୍ରହ୍ମାଙ୍କୁ ଅନେକ ତପ କଲାକ ପ୍ରହେତି ।
ତିନିଶତ ଅଇବ୍ରତ ବରଷ ପର୍ଯ୍ୟନ୍ତ
ମହାତପେ ମନାଇଲା ବିଧାତା ଦୈବତ ।
କଠୋର ତା ତପ ଦେଖି ବିଜୟ ବିରଞ୍ଚି
ବର ମାଗିଲେ କୁମର ମନେ ତୋର ପାଞ୍ଚି ।
କରପତ୍ର ଯୋଡ଼ିକରି ବୋଲେ କୁମ୍ଭକର୍ଣ୍ଣ
ଭୁଞ୍ଜିଣ ନିଦ୍ରାଯିବି ମୁଁ ନମଣଇ ଆନ ।
ଯେବେ ମାରିବାକୁ ମୋତେ କରଇ ବିଚାର
ଶତ୍ରୁର ଚିଠି ଦେଖିଲେ ଛାଡ଼ିବି ସମର ।
ବିଭୀଷଣ ବୋଇଲା ଏ ଦୁର୍ବାର ବାଳଟି
ଧନୁ ଧରିଣ ସମର କରିଦିଅ ପିଠି ।

କାର୍ଯ୍ୟ ସମୟରେ କେବା ନାହିଁ କିଛି ଦୋଷ
ଯେବଣ ବାଗରେ ହେଲେ ଶତ୍ରୁଯାଉ ନାଶ ।
ଅନେକ ନାରାଚ ତହୁଁ ଶ୍ରୀରାମ ବିନ୍ଧିଲେ
କେବେ ହେଁ ସେ ରାକ୍ଷସକୁ ପିଠି ହିଁ ନ ଦେଲେ ।
ବିଭୀଷଣ ତହୁଁ ଏକ ଉପାୟ ଆଚରି
ଆଣିଲେ ଲକ୍ଷ୍ମଣ ଠାକୁରଙ୍କୁ ଦୂର କରି ।
ଶ୍ରୀରାମ ଲକ୍ଷ୍ମଣ ଶର ମାଗିଲେ ଲେଉଟି
ସମରେ ଦନୁଜ ଦେଖେ ଶ୍ରୀରାମର ପିଠି ।
ଯେଣୁ ତୋହର ପିଠିଏ ଦେଖିଲା କିରୀଟି
ତେଣୁ ପଡ଼ିଲା ରାକ୍ଷସ ଏଥି ମହୀଲୋଟି ।
ମୋତେ ଦେଖିଣ ଅସୁର କରଇ ସେ ଭୟ
ତେଣୁ ତୋତେ ବିରୋଧ ନ କଲୁ ଧନଞ୍ଜୟ ।
ହନୁବଚନେ ସାନନ୍ଦ ହୋଇଲେ ଫାଲଗୁନି
ଏତେ ଦୂର କେମନ୍ତେ ଏ ଅଇଲାକ ପୁଣି ।
ହନୁମନ୍ତ ବୋଇଲା ଏ ଶ୍ରୀରାମ ବିଚାରେ
ପବନାଶରେ ଉଡ଼ାଇ ପକାଇଲେ ଦୂରେ ।
ଶ୍ରୀରାମଙ୍କ ମୁଖ ଚାହିଁ ଅସୁର ବୋଇଲା
ମୁଁ କିସ ଭକ୍ଷିବି ବୋଲି କପାଳୀ କହିଲା ।
ରଘୁନାଥ ବୋଇଲେ ତୁ ସରୋବରେ ଥିବୁ
ଯେ ମୁଖେ ପଡ଼ିବ ତାକୁ ଆହାର କରିବୁ ।
ଏସନକ ବର ସେହୁ ମାଗି ଦୈତ୍ୟନାଥ
ସେହିଦିନୁ ଏହିସ୍ଥାନେ ରହେ ବୀରପାର୍ଥ ।
ତୁ ମୋହଠାରେ ଶରଣ ଯେବେ ନ ପଶନ୍ତୁ
ନିଶ୍ଚୟ ଏ ଅସୁରର ଭୋଜ୍ୟ ହୋଇଥାନ୍ତୁ ।
ହନୁମନ୍ତ ବାକ୍ୟେ ତୋଷହେଲା ଫାଲଗୁନି
ମାରୁତିର ଚରଣରେ କରଇ ଦଇନୀ ।
ବୈନତେୟ ସୁମରଣ କଲେ ସବ୍ୟସାଚୀ
ପକ୍ଷୀରାଜ ବିଜେ କଲେ ସରୋବରେ ଆସି ।
ଦେଖଇ ଯେ ନାଗବଳ ଭାସୁଛନ୍ତି ଜଳେ
ମନେ ବିଚାରେ କଶ୍ୟପବାଳ ତେତେବେଳେ ।
ନାରାୟଣ ଏହାକୁ ହି କରିଥିଲେ ରକ୍ଷା
ଚକ୍ରଚିହ୍ନ ଦେଖି ମୁହିଁ କଲଇଁ ଉପେକ୍ଷା ।
ମୋତେ ଅଦୃଶ୍ୟହୋଇ ଏ ଏଥେ ଥିଲେ ଲୁଚି
ମରିପଡ଼ିଲେ ତୋହସ୍ତେ ଏବେ ସବ୍ୟସାଚୀ ।
ଶୁଣି ଅର୍ଜୁନ ବିନତା କୁମର ବଚନ
ଅମୃତ ଶରକୁ ପାର୍ଥ ପେଶିଲା ବହନ ।
ଆକାଶ ମାର୍ଗୁ ଅମୃତଶର କଲା ବୃଷ୍ଟି
ଜୀବନ ପାଇଣ ସର୍ବ ନାଗବଳ ଉଠି ।
ଦେଖି ତାହା ଧନ୍ୟଧନ୍ୟ କଲେ ହନୁମନ୍ତ
ସୁଗନ୍ଧିକା ପୁଷ୍ପ ରଖିଲେ ବୈନତେୟ ପୃଷ୍ଠ ।

ସୁଗନ୍ଧିକା ପୁଷ୍ପ ଘେନି ବେଗେ ତହୁଁ ଉଠି
ଗରୁଡ଼ ପିଠିରେ ବିଜେ କଲାକ କିରୀଟି ।
ହନୁମନ୍ତ ଚରଣରେ ଅର୍ଜୁନ ପ୍ରଣମି
ଅନୁଗ୍ରହ କରି ମୋତେ ଆଜ୍ଞାଦେବା ସ୍ୱାମୀ ।
ହନୁମାନ ସୁମରଇ ଶ୍ରୀଦଧିବାମନ
ଶୁଭଯୋଗେ ଗମନ ତୁ କର ହେ ଅର୍ଜୁନ ।
ଆଜ୍ଞା ମାଗିଣ ଚଳଇ ବୀର ଧନଞ୍ଜୟ
ଆକାଶ ମାର୍ଗେ ଉଡ଼ଇ କଶ୍ୟପ ତନୟ ।
କୁଶସ୍ଥଳୀ ଦ୍ୱାରକା ଯେ ସମୁଦ୍ର ନିକଟେ
ଜଗତୀରେ ବିଜେ କରିଛନ୍ତି ନନ୍ଦଚାଟେ ।
ଦେବରଷି ରାଜରଷି ବ୍ରହ୍ମରଷିମାନେ
ବିଜେ ସମାରୋହେ ସେହି ଦ୍ୱାରକା ଭୁବନେ ।
ଏମନ୍ତ ସମୟେ ଯାଇ ବାସବର ବଳା
ଅନ୍ତରେ ଥାଇ ସେ ରାମକୃଷ୍ଣଙ୍କୁ ଦେଖିଲା ।
ଖଗେଶ୍ୱର ପିଠିରୁ ଯେ ଉତୁରି ଫାଲଗୁନି
ରାମକୃଷ୍ଣଙ୍କର ପାଦେ କରଇ ଦଇନି ।
ବିଳମ୍ବ ଦେଖି ପୁଚ୍ଛନ୍ତି ତାହାକୁ ଅଚ୍ୟୁତ
କହେ ଫାଲ୍‌ଗୁନି ତହିଁର ବାରତା ସମସ୍ତ ।
ଶୁଣି ହରଷିତ ହେଲେ ଦେବ ମଧୁରିପୁ
ତୁ ଭାଙ୍ଗିଲୁ ସିନା କାଳୀନାଗୁଣୀର ବପୁ ।
ଦେଖିଲେ ସେ ସୁଗନ୍ଧିକା କୁସୁମ ଅମ୍ଳାନ
ଦିଶନ୍ତି ସେ ବାଳଅର୍କ ଦିଶଇ ଯେସନ ।
ଅମ୍ଳାନ ପୁଷ୍ପ ସୁଗନ୍ଧି ଅଟଇ ଯୁକତେ
ଗନ୍ଧ ଆମୋଦଇ ପାଞ୍ଚକ୍ରୋଶ ପରିଯନ୍ତେ ।
ପୁଷ୍ପକ ଘେନି ବିଜୟ ହେଲେ ରାମକୃଷ୍ଣ
ରଷିମାନେ ଅର୍ଜୁନକୁ ଦେଖି ହେଲେ ତୁଷ୍ଟ ।
ଧନ୍ୟ ଧନ୍ୟ ଅର୍ଜୁନ ଏ ତୋହର ମହିମା
ଏ ସଂସାରେ ରୁହାଇଲୁ ତୁହି ଯଶସୀମା ।
କାଳିୟନାଗର ଦର୍ପ ଗଞ୍ଜିଲୁ ତୁ ହେଳେ
ରହିଲା ମହିମା ତୋର ଜାଣ ଚିରକାଳେ ।
ବହୁତ ହରଷ ଧ୍ୱନି ଶୁଭେ ପୁରେ ପୁରେ
ବହୁତ ପ୍ରଶଂସା ପାର୍ଥ ପାଇଲା ସେଠାରେ ।
ସର୍ବଭୁବନ ଜିଣିଲୁ ବିଷ୍ଣୁ ତୋ ଭରସା
ନାରଦ ପ୍ରତିଷ୍ଠା କଲେ ଦେବକୀର ଓଷା ।
ଦେବକୀ ଯଶୋଦାଙ୍କର ପୂରିଲା ମାନସ
ବାହୁଡ଼ିଲେ ଯେ ଯାହାରେ ହୋଇଣ ସନ୍ତୋଷ ।
ଅନେକ ଉତ୍ସବ ଦାନ ଦକ୍ଷିଣ ବଧାଇ
ଅଷ୍ଟରତ୍ନରେ ନିର୍ମିତ ଦେଲେ ଲକ୍ଷେ ଗାଈ ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ସୁଭଦ୍ରାକୁ ଘେନି ବିଜେ ବାସବର ସୁନୁ ।

ବହୁତ ରତ୍ନ ଅକ୍ଷତ ଦେଲେ ଜଗନ୍ନାଥେ
ସୁଭଦ୍ରା ପାର୍ଥକୁ ଘେନି ନନ୍ଦିଘୋଷ ରଥେ ।
ଦାରୁକ ସାରଥି ରହୁବର ବାହୁଅଛି
ହସ୍ତିନାଭୁବନ ବିଜେ କୃଷ୍ଣ ସବ୍ୟସାଚୀ ।
ରଥରୁ ଓହ୍ଲାଇ ବେଗେ କୃଷ୍ଣ ଧନଞ୍ଜୟ
ପ୍ରଣିପାତ କଲେ ଯାଇ ଯୁଧିଷ୍ଠିଙ୍କ ପାୟ ।
ଆସ୍ଥାନେ ବିଜୟ ରାଜା ଶ୍ରୀମାନଗୋବିନ୍ଦ
ତହିଁ ବିଜୟ ଅର୍ଜୁନ ପରମ ଆନନ୍ଦ ।
ବିଦୁର ବୋଇଲେ ଶୁଣ ଆହେ ଜଗନ୍ନାଥ
ଦ୍ୱାରକାକୁ ଗଲା ଏ ଯେ ବୀରବର ପାର୍ଥ ।
କେବଣ କୃତ୍ୟ ତହିଁରେ କଲା ଧନଞ୍ଜୟ
ଏଥିର ବାରତା କହି ପେଡ଼ିବା ସଂଶୟ ।
ସ୍ୱରୂପ ବାରତା ତାଙ୍କୁ କହନ୍ତି ଶ୍ରୀହରି
ହନୁମାନକୁ ଭେଟିଲା ଖିନିଖିନା ଗିରି ।
ସରୋବରେ ପଶି ପାର୍ଥ ତୋଳଇ ସୁଗନ୍ଧି
ହନୁର ତୁଳେ ଯେ ପାର୍ଥ ହୋଇଲା ବିବାଦୀ ।
ପ୍ରତିଜ୍ଞା କଲାକ ତହିଁ ପବନର ସୁତ
ବାରାନିଧି ବାନ୍ଧିଅଛୁ ଆମ୍ଭେ ରାମଦୂତ ।
ଅନେକ ଦୁର୍ଗମ ଗିରି ଆଣିଲି ଉପାଡ଼ି
ସାତଦିନ ମଧ୍ୟେ ସେତୁବନ୍ଧ ହିଁ ନିବାଡ଼ି ।
ପ୍ରତିଜ୍ଞା କରି ବୋଇଲା ତାହାକୁ ଅର୍ଜୁନ
ନିମିଷକେ କରିବି ମୁଁ ସାଗର ବନ୍ଧନ ।
ହନୁ ବୋଇଲା ତୁ ବନ୍ଧ ବାନ୍ଧୁ କିନା ଦେଖି
ନୋହିଲେ ତୁ ନାଶଗଲୁ କେ ପାରିବ ରଖି ।
ବିନ୍ଧିଲା ବାସବୀ ଶର ସମୁଦ୍ରକୁ କାଢ଼ି
ଏକା ନିମିଷକେ ସିନ୍ଧୁମଧ୍ୟେ ବନ୍ଧ ପଡ଼ି ।
ଶରେ ସାଗର ବାନ୍ଧିଲା ଅର୍ଜୁନ ତଡ଼ିତି
ତିନିଶତ ଯୋଜନ ଯେ ଉଚ୍ଚ ଦୀର୍ଘପ୍ରତି ।
ପାଞ୍ଚଶତ ଯୋଜନ ଯେ ହୋଇଲା ଉତ୍ସର୍ଗ
ବାରାନିଧି ଭିତରେ କି ହେଲା ମଧ୍ୟସ୍ୱର୍ଗ ।
ହନୁ ଯେ ପ୍ରଶଂସା କଲା ସାଧୁରେ କିରୀଟି
ତୋ ବନ୍ଧ ଉପରେ ମୁହିଁ ଯାଇକିନା ଉଠି ।
ଏତେ ବୋଲି ହନୁମାନ ମହା ବିଶ୍ୱରୂପେ
ଶରବନ୍ଧର ଉପରେ ଉଠିଲା ପ୍ରତାପେ ।
ବିଶ୍ୱରୂପେ ଚାପିଲା ସେ ଅଞ୍ଜନାର ବଳା
ମାଡ଼ିଲେ ଯେହ୍ନେ ଉକୁଚିଉଠେ ସେହ୍ନଭେଳା ।
ବହୁତ ପ୍ରଶଂସା କଲା ତାକୁ ହନୁମନ୍ତ
ତୋଷେ ହନୁମାନ ଦେଲାଶ୍ୱେତବାହୁ ପାର୍ଥ ।
ସରୋବରେ ଲୁଚିଥିଲା ବଳ ଘେନି କାଳୀ
ସୁଗନ୍ଧି ପୁଷ୍ପ ତୋଳିଲା କାଳୀଦର୍ପ ଦଳି ।

ଅନନ୍ତ ମୂରତି ଧରି ନାଗବଳ ଧ୍ୱଂସି
କାଳୀକୁ ଯେ ବିଦାରିଲା କୋପେ ଶରପେଶି ।
ବହୁତ ପ୍ରତିଜ୍ଞା ତାର କହିଲେ ସଭାଏ
ନ ଶୁଣନ୍ତି କଉରବେ ବଧିରଙ୍କ ପ୍ରାୟେ ।
ଶୁଣି ସାନନ୍ଦ ବିଦୁର ଶଲ୍ୟ ଭୀଷ୍ମ ଦ୍ରୋଣ
ଅଭିମାନେ ଉପହାସ କଲା ବୀର କର୍ଣ୍ଣ ।
ଏମନ୍ତ ସମୟେ ରାଜା ଗାନ୍ଧାରୀର ସୁ ନୁ
ଉଠିଣ ମାନଗୋବିନ୍ଦ ଚଳଇ ଆସ୍ଥାନୁ ।
ବିଜେ କଉରବ ଯାଇ ଆପଣା ଭୁବନ
ଦ୍ୱାରକାରେ ବିଜେ କଲେ ଶ୍ରୀ ଜଗମୋହନ ।
ଯେସନେ ବିଧାନ ଅଛି ଶାସ୍ତ୍ରେ ଗ୍ରନ୍ଥ ଆଦି
ଶ୍ରୀନାରାୟଣ ପ୍ରସାଦେ ସେ ହୋଏ ସମ୍ପାଦି ।
ଅନୁକୂଳ ସାଧବୀ ଯେ ପ୍ରସନ୍ନେ ଭବାନୀ
ସତେ ଅନୁଗ୍ରହ ମୋତେ କଲେ ମହାପ୍ରାଣୀ ।
ମାନବର ଦୃଷ୍ଟି କାହିଁ ଅଦୃଷ୍ଟି ଅଶ୍ରୁତି
ଆଜ୍ଞା ଦିଅନ୍ତି ଯେ ଯାହା ସୁପ୍ରସନ୍ନେ ନିତି ।
କଳିକାଳ ଧ୍ୱଂସିନୀ ଗୋ ଅଭୟ ମଙ୍ଗଳେ
ତୋ ପାଦ ଧ୍ୟାୟି ସେବିବି ମୁହିଁ ବୁଦ୍ଧିବଳେ ।
ମନ ବଚନେ କର୍ତ୍ତବ୍ୟ ଅଜପା ସାଧିଲି
ବାକ୍ୟଦେବୀ ଭଣ୍ଡାରକୁ ସୁଖେ ବିଧ୍ୱଂସିଲି ।
ସେବି ଶ୍ରୀଚଣ୍ଡୀ ଶାରଳା ଦେବୀ ପାଦପଦ୍ମ
ସେ ଦେବୀର ସୁପ୍ରସନ୍ନେ ପରମ ଆନନ୍ଦ ।
ସଦା ଅନୁଗ୍ରହ ମୋତେ କର କାତ୍ୟାୟିନୀ
ସଂସାରଜନ ବୋଧିଲି ତୋର ଆଜ୍ଞା ମେଣ୍ଟି ।
ସଂସାର ପାରାବାରକୁ ନ ପାରିଲି ମେଣ୍ଟି
ହୃଦରେ ଜପିଲି ନାରାୟଣ ନାମ ଗୋଟି ।
ହର ଉଦ୍ୟାନ ବନେ ମୁଁ କଲି ତପସ୍ଥାନ
କାଶୀନଦୀ ତୀରେ ସେବାକଲି ପଞ୍ଚାନନ ।
ଜନ୍ମରୁ ମୂରୁଖ ମୁହିଁ ନ ପଢ଼ିଲି ବିଦ୍ୟା
ବିନାତପେ ବାଞ୍ଛାସିଦ୍ଧି କଲେ ଯୋଗସିଦ୍ଧା ।
କୃପାଜଳ ନନ୍ଦିନୀ ଯେ ଦେବୀ ସରସ୍ୱତୀ
କଳିକାଳେ ବିକାଶିଲେ ଶାରଳା ମୂରତି ।
ଖଣ୍ଡିଲି ଦୁଷ୍କୃତ ମୁହିଁ ସେ ଦେବୀ ପ୍ରସନ୍ନେ
ଧନ ପୁତ୍ର ଆୟୁଯଶ ଦିଅନ୍ତି ସୁମନେ ।
ଶରଣ ରକ୍ଷଣ ଭକ୍ତିବତ୍ସଳା ହିଙ୍ଗୁଳା
ପ୍ରସନ୍ନେ ବରଦେଉ ଗୋ ଶ୍ରୀଚଣ୍ଡୀ ଶାରଳା ।
ଜୟ ଜୟ ଶୁଭ ଅବଧାରିଣୀ ମଙ୍ଗଳେ
ଆପଦ ଦୂରିତମାନ ହର ସର୍ବକାଳେ ।
ଶଇଳ ନନ୍ଦିନୀ ପଦ୍ମପାଦ ଭକ୍ତିଭାବେ
କହିଲି ମଧ୍ୟପର୍ବ ମୁଁ ଭାରତ ପ୍ରସ୍ତାବେ ।
ଶ୍ରୀଚଣ୍ଡୀ ଶାରଳା ଧ୍ୟାନ କରି ପଞ୍ଚାନନେ
କାଳଭୟ ମେଣ୍ଟିଲି ମୁଁ ହିଙ୍ଗୁଳା ପ୍ରସନ୍ନେ ।
ଶ୍ରୀଜଗନ୍ନାଥଙ୍କର ଚରଣେ ଶରଣ
ଶାରଳା ଦାସ ମୁଁ ଶୂଦ୍ର ନୁହଇ ବ୍ରାହ୍ମଣ ।
ଶ୍ରୀବାକ୍ୟଦେବୀଙ୍କ ପଦ୍ମପାଦ ଅନୁରାଗେ
ମୁହିଁ ଏହାକୁ ସର୍ଜ୍ଜନା କଲି ଶାସ୍ତ୍ରଯୋଗେ ।
ଶ୍ରୀ ମହାଭାରତ ଆଦ୍ୟପର୍ବର ଏ ଅଙ୍ଗ
ମଧ୍ୟପର୍ବ ହିଁ ଅଟଇ କଲଇଁ ସଂଯୋଗ ।
ବେଦ ପୁରାଣ ବାକ୍ୟରେ ଯେଉଁ ଫଳଶ୍ରୁତି
ତହିଁର ସମାନ ଏହୁ ମଧ୍ୟପର୍ବ ରୀତି ।
ପଢ଼ନ୍ତେ ଶୁଣନ୍ତେ ସାର୍ଥହେବ ମହାଯୋଗ
ଖଣ୍ଡନ ହେବ ଅନେକ ଜନ୍ମ ପାପରୋଗ ।
ଜୟ ଜୟ ନାରାୟଣ ବିଜୟ ଶବର
ବନକ୍ରୀଡ଼ା କଉତୁକ ବନେ ବେଣ୍ଟକାର ।
ଅଜମୀଢ଼ କିରାତର ଝିଅ ଯେ ମରୁତି
ତାହାକୁ ତୁ ବିଭାହେଲୁ ମେଳକରି ମତି ।
ମଉଳିଲେ ଶୋଭାବନ ଖାଙ୍କର କବରୀ
ଗୁଞ୍ଜି ଗୁଞ୍ଜମାଳ ଯାର ଲଲାଟେ କସ୍ତୁରୀ ।
ମାଳତୀର ବଲ୍ଲର ଯେ ପ୍ରଭୁ ନାରାୟଣ
ଶାରଳାଦାସ ତାହାର ପାଦରେ ଶରଣ ।
ଜୟ ତୁ ନାରାୟଣୀ ଗୋ ଅନାଦି ଶକତି
ପରମ ବଇଷ୍ଣବୀ ତୁ ଜଗତର ଧାତ୍ରୀ ।
ତୋର ବୁଦ୍ଧିବଳେ ହେଲା ରକ୍ତବୀର୍ଯ୍ୟ ଧ୍ୱଂସ
ତୋହର ଚକ୍ରରେ ହେଲେ ଅସୁର ବିନାଶ ।
ଧନୁଶର ଧରି ଚଣ୍ଡୀଯୁଦ୍ଧରେ ମୋ ମାଏ
ଦୈତ୍ୟତୁଲେ ଯୁଦ୍ଧ ଚଉବିଂଶ ଦିନଯାଏ ।
ରକତବୀର୍ଯ୍ୟକୁ ଯହୁଁ କଲୁ ତୁ ବିନାଶ
ତା ରୁଧିରୁ ଉପୁଜିଲେ ଅନେକ ତା ଅଂଶ ।
ଚିନ୍ତାକଲୁ ବସି ନାଶ ନୋହିଲେ ସେ ଯହୁଁ
ଚଉଦ ଅର୍ବୁଦ ମାତ ଜାତ କଲୁ ତହୁଁ ।
ରକ୍ତବୀର୍ଯ୍ୟ ବାହିନୀ ଯେ ବୋଲନ୍ତିଟି ତୋତେ
ଦାନବ କୁଳଧ୍ୱଂସିନୀ ଦୟାକର ମୋତେ ।
ତୋହର ଚରଣ ଆଶ୍ରାକଲି ଯହୁଁ ମୁହିଁ
ଏ ଭାରତ ରଚିବାକୁ ହୃଦେ ବିଚାରଇ ।
ତୁ ଦେବୀ ଦୟାକଲେ ଗୋ ପାଇବି କାରଣ
ମନୁଷ୍ୟ ଯୋନିରେ ମୁହିଁ ହୋଇଛି ଜନମ ।
ମୂର୍ଖ ଅପଣ୍ଡିତ ମୁହିଁ ନ ଜାଣଇ କିଛି
ତୋହର ଚରଣକୁ ମୁଁ ଆଶ୍ରା କରିଅଛି ।
ଏବେ ତୁ କରୁଣା କଲେ କହିବି ଭାରତ
ଅଗୋଚର ହେଲା ମଧ୍ୟପର୍ବର ଚରିତ ।

ଏଣୁ ଆଗୋ ନାରାୟଣୀ ଆଶ୍ରେ କରି ତୋତେ
ମୂର୍ଖ ଅପଣ୍ଡିତ ବୋଲି ଡରାଉଛି ମୋତେ ।
ତୋହର ସୁଦୟାରୁ ଗୋ ନିର୍ଭୟ ମୋ ଚିତ୍ତ
ଶୁଦ୍ରମୁନି ଏ ଶାରଳା ଦାସ ତୋ ଭକତ ।

—୦—

## ନୀଳେନ୍ଦ୍ରୀ ହରଣ

ବନ୍ଦଇ ଶ୍ରୀଲମ୍ବୋଦର ଗଉରୀ ନନ୍ଦନ
କପାଳରେ ଶୋଭାବନ ଶ୍ରୀଖଣ୍ଡୀ ଚନ୍ଦନ ।
ଥୋରହସ୍ତ ଏକଦନ୍ତ ମୁଖ ଶୋଭାବନ
ଅନନ୍ତ ବାସୁକୀନାଗେ ଶ୍ରୀହସ୍ତେ ଘେନିଣ ।
ଅଯୋନି ସମ୍ଭୂତ ତୋତେ ହର କଲେ ଜାତ
ପାର୍ବତୀ ଜନନୀ ତୋର ସଦାଶିବ ତାତ ।
ଦକ୍ଷିଣଦ୍ୱାର ରକ୍ଷକ ଅଟୁ କାଳେ କାଳେ
ସୁମରନ୍ତେ ନିବାରୁ ତୁ ବିଘ୍ନ ଅବହେଳେ ।
ପରଶୁ କୁଠାର ତୋର ସୂର୍ଯ୍ୟର କିରଣ
ଜଟା ମୁକୁଟ ତୋହର ଲଲାଟେ ଭୂଷଣ ।
ପୟରେ ନୂପୁର ତୋର ବାଜେ ରୁଣୁଝୁଣ
ନୃତ୍ୟରଙ୍ଗେ ମୋହିଲୁ ତୁ ଯେତେ ସୁରଗଣ ।
ତୁମ୍ଭର ଚରଣ ତଳେ ଲୋଟୁ ମୋର ମାଥ
ଅବ୍ୟକ୍ତ ବ୍ୟକତ ମୋରେ ଦିଅ ଗଣନାଥ ।
କାହ୍ନୁ ଶଙ୍କର୍ଷଣ ବାସୁଦେବ ଘରେ ଜାତ
ଜଗନ୍ନାଥଙ୍କର କଥା ଜଗତେ ବିଖ୍ୟାତ ।
ତାଙ୍କର ବତିଶସସ୍ର ଅଟେ ପାଟବଂଶୀ
ଏହାଙ୍କ ସ୍ୱାମୀ ଅଟନ୍ତି ପ୍ରଭୁ ହୃଷିକେଶୀ ।
କାହାଠାରୁ କେତେ ପୁତ୍ର ହୋଇଥଲେ ଜାତ
ଏହା ମୋତେ ସଞ୍ଚପିଣ କହ କୁମ୍ଭସୁତ ।
ଏହା ବୋଲି ମନୁ ତାଙ୍କୁ ପୁଚ୍ଛିଲେ ବଚନ
କହନ୍ତି ଅଗସ୍ତି ଏହା ପାପ ବିଧ୍ୱଂସନ ।
ଗୋପପୁରେ ଅବତାର ଷୋଳସସ୍ର ନାରୀ
ଷୋଳସସ୍ରେ କନ୍ୟା ନେଲେ ନାରକାକୁ ମାରି ।
ଏହାଙ୍କଠାରୁ ଜନ୍ମିଲେ କନ୍ୟା ଯେ କୁମର
ପ୍ରତି କନ୍ୟାଠାରୁ ଦଶପୁତ୍ର ଅବତାର ।
ଅଷ୍ଟ ପାଟବଂଶୀଙ୍କର ଦଶଦଶ ସୁତ
ଲକ୍ଷେ ଷାଠିସସ୍ର ଅଶୀ ଅଟନ୍ତି ସମସ୍ତ ।
ଏକକୁ ଏକ ସୁନ୍ଦର କୃଷ୍ଣରୂପ କଳା
ସମ୍ପୂର୍ଣ୍ଣ ଚନ୍ଦ୍ରମା ଜିଣି ମୁଖ ଯେ ସୁଢ଼ଳା ।
ଲକ୍ଷେ ଷାଠିଏ ସହସ୍ର ଅଶୀ ଯେ ନନ୍ଦନ
ଏହାଙ୍କ ମଧ୍ୟରେ ଶ୍ରେଷ୍ଠ କୁମର ପ୍ରଦ୍ୟୁମ୍ନ ।
ଅଗସ୍ତି ବୋଇଲେ ତୁ ଯେ ଶୁଣ ନୃପବର
ଏମନ୍ତ କୁମର ଜାତ କଲେ ଚକ୍ରଧର ।
ତାଙ୍କ ଜ୍ୟେଷ୍ଠଭାଇଙ୍କର ଯେତେ ଯେ କୁମର
ସଞ୍ଚପିଣ ଏହା ମୋତେ କହ ମୁନିବର ।
ଅଗସ୍ତି ବୋଇଲେ ତୁ ହୋ ଶୁଣ ନୃପନାଥ
ବଳରାମଙ୍କର ସର୍ବେ ଦୁଇଗୋଟି ପୁତ୍ର ।
ଆନନ୍ଦ ସାନନ୍ଦ ବୋଲି ଦୁହିଁଙ୍କର ନାମ
ସୁର ନର ମୋହନ ସେ ସାକ୍ଷାତରେ କାମ ।
ଯଦୁ ଭୋଜବଂଶରେ ସେ ଅଟନ୍ତି ଉତ୍ତମ
ତେଜ ବୀର୍ଯ୍ୟରେ ସେ ବଳରାମଙ୍କର ସମ ।
ସର୍ବଗୁଣରେ ନିର୍ଜିତ ସେହି ଭାଇ ବେନି
ଇନ୍ଦ୍ରଚନ୍ଦ୍ର କି ମାନବ ତନୁଛନ୍ତି ଘେନି ।
ଅଗସ୍ତି ବୋଇଲେ ତୁହୋ ଶୁଣ ନରନାଥ
ତାହାଙ୍କର ମହିମା ଯେ ତ୍ରୈଲୋକ୍ୟରେ ଖ୍ୟାତ ।
ବିଭା ହୋଇଲେ ସେ ପୁଣ କାହାର ନନ୍ଦିନୀ
ଏହା ମୋତେ ସଞ୍ଚପିଣ କହ ମହାମୁନି ।
ମୁନି ବୋଇଲେ ହୋ ଶୁଣ କଥା ମହାରଙ୍ଗ
ମହାଘୋର ଦ୍ୱନ୍ଦ୍ୱ ହେଲା ଦେବଙ୍କର ସଙ୍ଗ ।
ନୃପତି ବୋଇଲେ କଳିହେଲା କି ନିମନ୍ତେ
ଅନୁଗ୍ରହ କରି ମୋତେ କହ ମୁନିସୁତେ ।
କେବଣ କାରଣେ ପୁଣି କେବଣ ବିଧାନେ
ହରିହରଙ୍କର ଯୁଦ୍ଧ ହୋଇଲା କେସନେ ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ମହୀପତେ
ଯାହା ପଚାରିଲ ତାହା ବଢ଼ାଇ ବୃତ୍ତାନ୍ତେ ।
ସନ୍ଥ ସୁଶୀଳ ଅଟଇ ଜଳଧି ନୃପତି
ଲୀଳାବତୀ ନାମେ ତାର ଅଟଇ ଯୁବତୀ ।
ତାହାର ଗର୍ଭରୁ ଜାତ ଦୁହିତାଏ ହେଲା
ତାହାର ଜାତକ ଗଣି ଗଣକ କହିଲା ।
ଅଶ୍ୱିନୀ ଋକ୍ଷ ତାହାର ଖୋଜି ମିଶାଇଲା
ଶେଷଚନ୍ଦ୍ର ମେଷଯୋଗ ଗଣନ୍ତେ ପାଇଲା ।
ବାଳବ ନାମେ କରଣ ଭୋଗ ତେରଲିତା
ଏସନ ସମୟେ ଜାତ ହୋଇଲା ଦୁହିତା ।
ବରୁଣ ଅଗ୍ରତେ ଯାଇ ଜଣାଇଲା ଦାସୀ
କନ୍ୟା ଏକ ଜାତ ଦେବ ରୂପେ ଚାରୁହଂସୀ ।
ଶୁଣିଣ ହରଷ ରାଜା ମନ୍ତ୍ରୀକୁ ସମ୍ଭାଷି
କନ୍ୟାଜାତ ଦୋଷାଦୋଷ ବୁଝିଣ କହସି ।
ଜଳଧ ମନ୍ତ୍ରୀ ବୋଇଲେ ଶୁଣ ନୃପମଣି
ଅଶ୍ୱିନୀ ନକ୍ଷତ୍ରେ ଜାତ ହୋଇଲା ନନ୍ଦିନୀ ।
ଦିବସକୁ ପାଇଲା ଏ ଭୋଗ ତେରଦଣ୍ଡ
ଷୋଳ ବରଷ ଏହାର ନିରୋଧିଲେ ଗଣ୍ଡ ।
ଏହା ଶୁଣିଣ ନୃପତି ମନେ ଦୁଃଖପାଏ
ଷୋଳ ବରଷ କନ୍ୟାକୁ ହୋଇବାର ଯାଏ ।

ଏହାର ବଦନ ନ ଚାହିଁବି ବିଶେଷରେ
ଦଇବ କଷଣ ଦେଲା ଆସି ଏ କାଳରେ ।
ଏହା ଶୁଣି ଆଜ୍ଞାଦେଲା ତହୁଁ ନୃପମଣି
ଜମ୍ବୁଦ୍ୱୀପେ ଛାଡ଼ିଆସ ନେଇଣ ଦୁଲଣୀ ।
ନୃପତିର ଆଜ୍ଞାପାଇ ଦାସୀମାନେ ଗଲେ
ଶୁଣ ଗୋସାମଣି ଯାହା ନୃପତି ବୋଇଲେ ।
କନ୍ୟା ଜମ୍ବୁଦ୍ୱୀପେ ଛାଡ଼ିବାକୁ ଆଜ୍ଞାଦେଲେ
ରାଣୀ ବୋଲେ ମନ୍ତ୍ରୀତାରେ ରୋଷ ବଢ଼ାଇଲେ ।
ରାଜା ଦେଖି ନ ଯୋଗାଇ ଅଷ୍ଟ ଯେ ବରଷ
ଏହା ଶୁଣିକରି ରାଣୀ ମନରେ ବିରସ ।
ଏତେ ବୋଲିକରି ଲୋକେ କହିଲେ ଅପାର
ଦୁହିତାକୁ ଘେନି ରାଣୀ ହୋଇଲେ ବାହାର ।
ଗର୍ଭଧାରୀ ଜନନୀ ସେ ନପାରେ ମୁରୁଛି
ଦୁହିତାକୁ କୋଳେ ଧରି ଶୋକ କରୁଅଛି ।
ରାଜାର ହୁକୁମ କେବା କରିପାରେ ଆନ
ମାତା ଦୁହିତାକୁ ନେଇ ନିର୍ବାସିଲେ ବନ ।
ଏମନ୍ତ ସମୟେ ପୁଣି ଦେବ ତ୍ରିଲୋଚନ
ପାର୍ବତୀଙ୍କ ସହିତରେ କରନ୍ତେ ଗମନ ।
ବୃଷଭ ପିଠିରେ ବେନି କରନ୍ତେ ଭ୍ରମଣି
ପାର୍ବତୀ ଦେଖିଲେ ବନେ କାନ୍ଦେ ସୁଲକ୍ଷଣୀ ।
ବିଶ୍ୱନାଥ ବୋଇଲେ ସେ ଅଟେ କିସ ଜାତି
ତାହାର ଆମ୍ଭର କିବା କିସ ଯେ ଯୁକତି ।
ସ୍ତିରୀଙ୍କ ରୋଦନ ଶୁଣି ସ୍ତିରୀଏ ନ ଗଲେ
ଶତେଜନ୍ମ କାଠବେଙ୍ଗ ହୁଅନ୍ତି ବୋଇଲେ ।
ଏସନ ଶୁଣି ରହିଲେ ଦେବ ଦେବଈଶ
ଉମା ବିଜେକଲେ ବରୁଣର ରାଣୀପାଶ ।
ବୋଲନ୍ତି ଜଗତମାତ ଶୁଣ ସିଗୋ ଆଇ
କାହାର ନନ୍ଦିନୀ ତୁ ଯେ କିଏ ତୋର ସାଇଁ ।
ତା ମୁଖରେ ବସ୍ତ୍ରଦେଇ ଗୁହାଇଲେ ଉମା
ତହୁଁ ଶୋକ ସମ୍ଭାଳିଲେ ରତ୍ନାକର ବାମା ।
ଧଇର୍ଯ୍ୟ ଧରିଣ ପୁଣି ବୋଇଲା ସେ ରାଣୀ
ବରୁଣ ନୃପତିର ମୁଁ ଅଟେ ପାଟରାଣୀ ।
ଯହିର ନିମନ୍ତେ ମୁହିଁ କାନ୍ଦେ ଗୋସାମଣି
ମୋହର ଗର୍ଭରୁ ଜାତ ହୁଏ ଯେ ଦୁଲଣୀ ।
ଅଶ୍ୱିନୀ ଗଣ୍ଡ ନକ୍ଷତ୍ର ହେଲା ଯେ ଏହାକୁ
ପିତାକୁ ଲାଗିଲା ଗଣ୍ଡ ଷୋଳବରଷକୁ ।
ତେଣୁ ଲୋଡ଼ିଲେ ନୃପତି ଏହାକୁ ଯେ ମାରି
ମୂର୍ଚ୍ଛିବି କେମନ୍ତେ ମୁହିଁ ହୋଇ ଗର୍ଭଧାରୀ ।
ଏହାକୁ ଦେଖିଣ ବହେ ନୟନରୁ ବାରି
ଦୁହିତାକୁ ଘେନି ମୁହିଁ ହେଲି ବନଚାରୀ ।

ଏହା ଶୁଣି ପୁଚ୍ଛିଲେ ଶ୍ରୀ ଉମା ଦେବହର
ଭୋ ସ୍ୱାମୀ ଏ ହୋଇଅଛି ନଗ୍ରରୁ ବାହାର ।
ଦୁର୍ଗାଙ୍କ ବଚନେ ହର ହୋଇଲେ ପ୍ରସନ୍ନ
ଲୀଳାବତୀ ରାଣୀଙ୍କୁ ଯେ କହିଲେ ବଚନ ।
ଏତୋହର ଦୁହିତାର ଦୋଷ କ୍ଷୟଯାଉ
ତ୍ରଇଲୋକ୍ୟରେ ନୀଳେନ୍ଦ୍ରି ନାମ ଏହି ବହୁ ।
ବହୁତ ଯତ୍ନେ କନ୍ୟାକୁ ପାଳିବୁ ହରଷେ
ଗଣ୍ଡଦୋଷ ପାରହେଉ ଦ୍ୱାଦଶ ବରଷେ ।
ଆନକୁ ଏ କନ୍ୟା ବିଭା ନଦେବୁ ତୋହର
କାର୍ତ୍ତିକେଶ୍ୱରଙ୍କୁ ତୁହି ଦେବୁ ହରଷର ।
ମାଳା ଦେଇଣ ଈଶ୍ୱର ତହୁଁ ଚଳିଗଲେ
ବରୁଣ ଭୁବନେ ରାଣୀ ଗୁପତେ ରହିଲେ ।
ହାନ୍ଦୋଳାରେ ବସାଇଣ ଦାସୀଗଣ ନେଲେ
ଅନ୍ତଃପୁରେ ନେଇ ତାଙ୍କୁ ଗୁପତେ ରଖିଲେ ।
ଯହୁଁ ସେ ଆସି ପ୍ରବେଶ ହୋଇଲେ ମଉନ
ଦାନଧ୍ୟାନ କଲେ ମହାଦେଈ ତୋଷମନ ।
ଦିନୁଦିନ ବଢ଼େ କନ୍ୟା ରତିର ଆକାର
ହୃଦୟ ମଧ୍ୟଭାଗ ତା ଡମ୍ବରୁ ପ୍ରକାର ।
କେବଣ ଦଇବ ସେହୁ ଘଟାଇଲା ଏହା
ଧନ୍ୟ ଜନନୀ ତୋହର ଅଟେ ପୁଣ୍ୟଦେହା ।
ଏମନ୍ତ ପ୍ରଶଂସା କରୁଛନ୍ତି ନରନାରୀ
ଏବେ ଆପଣ ଜାଣିଲେ ତାହା ଦଣ୍ଡଧାରୀ ।
ଜଳକ୍ରୀଡ଼ା ବିନୋଦରେ ନୃପତି କୁମାରୀ
କନ୍ୟାମାନଙ୍କ ସଙ୍ଗରେ ବନରୁ ବାହାରି ।
ଦୁହିତା ବୋଲି ନ ଚିହ୍ନେ ବରୁଣ ରାଜନ
କନ୍ୟାରୂପେ ଦେଖି ତାର ତୋଷହେଲା ମନ ।
ଜଳଧି ମନ୍ତ୍ରୀକୁ ଚାହିଁ ପୁଚ୍ଛେ ନରସାଇଁ
ଆମ୍ଭର ପୁରେ ଏ କନ୍ୟା ଦେଖିଲା ତ ନାହିଁ ।
ମନ୍ତ୍ରୀ ବୋଇଲେ ରାଜା ହୋ ଯାହା ପୁଚ୍ଛାକଲ
ଗଣ୍ଡଦୋଷୁଁ ସେ ଦୁହିତା ତୁମ୍ଭେ ଉପେକ୍ଷିଲ ।
ସେହି ଦୁହିତା ନୀଳେନ୍ଦ୍ରି ନାମେ ଏହୁ ବାଳୀ
ଏ ଭୁବନ ମଧ୍ୟରେ ଏ ଅଟେ ଶୁଦ୍ଧଶାଳୀ ।
ବରୁଣ ବୋଇଲେ ଏ କି ମୋହର ଦୁଲାଳୀ
କାହାରେ ପ୍ରଦାନ ମନ୍ତ୍ରୀ କରିବା ଏ ବାଳୀ ।
କରପତ୍ର ଯୋଡ଼ି ମନ୍ତ୍ରୀ ବୋଇଲେ ବଚନ
ବିଭାଅର୍ଥେ ବର ଲୋଡ଼ ଶୁଣ ସାବଧାନ ।
ଦ୍ୱାରକାପୁର ଠାକୁର ଦେବ ଭଗବାନ
ତାହାଙ୍କର ଏକପୁତ୍ର କର ହେ ପ୍ରଦାନ ।
ଶଙ୍ଖାସୁର ମାଇଲେ ଯେ ମହାଜଳେ ପଶି
ବେଦ ଉଦ୍ଧାରିଲେ ଜଳୁଁ ବ୍ରହ୍ମା ମନତୋଷି ।

କୁର୍ମରୂପେ ବହିଲେ ସେ ଚରାଚର ମହୀ
ବରାହ ରୂପରେ ପୃଥ୍ୱୀ ଦନ୍ତଅଗ୍ରେ ବହି ।
ପ୍ରହଲାଦ ଅପମାନ ସହି ନ ପାରିଲେ
ନରସିଂହ ରୂପେ ହିରଣ୍ୟକୁ ବିଦାରିଲେ ।
ପର୍ଶୁରାମ ରୂପେ ମାରି ସହସ୍ରାର୍ଜ୍ଜୁନ
ପୃଥିବୀଭାର ଉଶ୍ୱାସ କଲେ ଭଗବାନ ।
ପୁଣି ରାମ ଅବତାରେ ବାନ୍ଧି ସେତୁବନ୍ଧ
ଲଙ୍କାପୁର ଧ୍ୱଂସି ଛେଦିଥିଲେ ଦଶକନ୍ଧ ।
ଏହିପରି ଦୈତ୍ୟ ନାରଦଙ୍କୁ କରି ହତ
ବାରେ ବାରେ ଆମ୍ଭଙ୍କୁ ଯେ ରଖନ୍ତି ଅଚ୍ୟୁତ ।
ଗୋବିନ୍ଦଙ୍କ ଜ୍ୟେଷ୍ଠଭାଇ ଦେବ ବଳରାମ
ଆନନ୍ଦାନନ୍ଦ ଅଟନ୍ତି ତାହାଙ୍କ ନନ୍ଦନ ।
ତାହାଙ୍କୁ ଏ କନ୍ୟାଗୋଟି କରିବା ପ୍ରଦାନ
ବିଚାରିଣ କାର୍ଯ୍ୟକର ଜଳଧି ରାଜନ ।
ହରଷ ହୋଇଲା ରାଜା ମନ୍ତ୍ରୀର ବଚନେ
ତକ୍ଷଣେ ବିଜୟକଲା ପୁଷ୍ପକ ବିମାନେ ।
ପ୍ରବେଶ ହୋଇଲା ଯାଇ ଦ୍ୱାରକା ଭୁବନ
ଦେଖିଣ ପରମତୋଷ କାହ୍ନୁ ଶଙ୍କର୍ଷଣ ।
ପୂଜାବିଧି କଲେ ତାଙ୍କୁ ଦେବ ଭଗବାନ
ଆସ୍ଥାନରେ ବିଜେକଲେ ବରୁଣ ରାଜନ ।
ଅମୃତ ଯୋଗାଡ଼ ତାଙ୍କୁ ଦେଲେ ଭାଇବେନି
ମଣୋହି କରିଲେ ଦେବ ବରୁଣଙ୍କୁ ଘେନି ।
ପୁଚ୍ଛନ୍ତି କେବଣ ହେତୁ ଆଗମନ ଭୟେ
ଗନ୍ଧ ପୁଷ୍ପମାଳ ତାର ଲମ୍ବାନ୍ତି ଗଳାୟେ ।
ବରୁଣ ବୋଲେ ଶୁଣିମା ହେଉ ଦେବରାଜ
ଯେବଣ କାରଣେ ମୋର ଆଗମନ ଆଜ ।
ମୋହର କନ୍ୟା ନୀଳେନ୍ଦ୍ରି ନାମେ ଯେଉଁ ବାଳୀ
ଆନନ୍ଦାନନ୍ଦେ ବରିବା ମନେ ମନେ ଭାଳି ।
ପୁରୋହିତ ରାଇ ସେହୁ ଉଚ୍ଚାରିଲେ ସତ୍ୟ
ପ୍ରଦାନ କରିବା କନ୍ୟା ଆନନ୍ଦାନନ୍ଦେତ ।
ଏତେକ ବୋଲିଣ ସେହୁ ବାକ୍ୟ ଉଚ୍ଚାରିଣ
ଚନ୍ଦନ ଅକ୍ଷତ ଦେଇ କଲେକ ବରଣ ।
ମେଷମାସ ଶୁକ୍ଳପକ୍ଷ ଚଉଠିର ଦିନ
ରୋହିଣୀ ନକ୍ଷତ୍ର କ୍ଷେମ ତାର ବିଦ୍ୟମାନ ।
ବରିଣସାରି ବାହୁଡ଼େ ଜଳଧିରାଜନ
ପ୍ରବେଶ ହୋଇଲେ ଯାଇ ଆପଣା ଭୁବନ ।
ବିଶ୍ୱକର୍ମାଙ୍କୁ ରାଇଣ ବହୁ ଆଜ୍ଞାଦେଲେ
ଛାୟାମଣ୍ଡପ ଭିଆଅ ବୋଲିଣ ବୋଇଲେ ।
ଆଜ୍ଞା ପାଇଣ ସେ ଛାୟାମଣ୍ଡପ ରଚିଲା
ସୁଧର୍ମା ସଭା ପ୍ରାୟେକ ସଭା ନିର୍ମାଣିଲା ।

ବିଭାର ସମ୍ଭାର କଲେ ପରମ ସାନନ୍ଦେ
ବ୍ରହ୍ମାର ନନ୍ଦନ ତାହା ଜାଣିଲେ ନାରଦେ ।
କେହି ନ କହିଲେ ସେହି ଜାଣେ ସର୍ବକଥା
ଯୋଗବଳେ ଜାଣନ୍ତି ସେ ସକଳ ବାରତା ।
ମନେ ବିଚାରି ନାରଦ ପାଇ ବଡ଼ ବ୍ୟଥା
ହରିହର ଅଟନ୍ତି ଯେ ଦୁହେଁ ସାମରଥା ।
ଏକଇ ଆତ୍ମା ଏ କଳି କରିବେ କେମନ୍ତେ
ଉଚିତ ବେଭାର ଆଉ ନଯୋଗାଇ ମୋତେ ।
ଏସନକ ବିଚାରି ସେ କରି ଅନୁମାନେ
କଳି ଉପଗତହେଲା ତାହାଙ୍କର ମନେ ।
କି ପ୍ରକାରେ କଳି ହେବ ଦେଖିବା ଆନନ୍ଦେ
ମହାକଳି ହୋଇବ ଯେ ହରିହର ଯୁଦେ ।
ଏହାଙ୍କ କଳି ଦେଖିଲେ ପୂରିବ ମୋ ପେଟ
ତକ୍ଷଣେ ବିଜୟ କଲେ ବରୁଣ ନିକଟ ।
ମନଯାନ ଆରୋହିଣ କଣ୍ଠୁକାନନ୍ଦନ
ଦେଖି ଆସନ ତେଜିଲା ବରୁଣ ରାଜନ ।
ଗଉରବ କରି ତହୁଁ କଲେ ପାଦପୂଜା
ବସିଲେ ଆସନ ପରେ ବ୍ରହ୍ମାଙ୍କ ତନୁଜା ।
ନାରଦ ବୋଇଲେ ଜାଣ ଜଳଧି ରାଜନ
ରାଜ୍ୟରେ ଉତ୍ସବ ତୋର କେବଣ କାରଣ ।
ବରୁଣ ବୋଇଲେ ତୁମ୍ଭେ ଶୁଣ ବ୍ରହ୍ମାବସ୍ଥି
ନୀଳେନ୍ଦ୍ରି ନାମରେ ମୋର ଦୁହିତା ଯେ ଅଛି ।
ଆନନ୍ଦାନନ୍ଦ ଯେ ବଳରାମଙ୍କର ପୁତ୍ର
ତାହାଙ୍କୁ ଦେବି ଦୁହିତା କରିଅଛି ସତ୍ୟ ।
ନାରଦ ବୋଇଲେ ରାଜା ମନ୍ଦକୃତ୍ୟ କଲୁ
ରାଣୀଙ୍କୁ ନ ବୋଲି କିମ୍ବା ଆପଣେ ବରିଲୁ ।
କାର୍ତ୍ତିକଙ୍କ ପାଇଁ କନ୍ୟା ବରିଛନ୍ତି ହର
ମଣିରତ୍ନମାଳା ଦେଇଅଛନ୍ତି କଣ୍ଠର ।
ତାଙ୍କୁ ହୁଡ଼ି କରିଲୁତୁ କେହ୍ନେ ଆନ ବର
କାର୍ତ୍ତିକେ ନ କଲୁ କିମ୍ବା ବରଣ ବେଭାର ।
ବ୍ରହ୍ମହତ୍ୟା କରିହର ବାରାଣସୀ ଗଲେ
ଦ୍ୱିତୀୟ ଈଶ୍ୱର ପଦ କାର୍ତ୍ତିକଙ୍କୁ ଦେଲେ ।
ଏହା ଜାଣିଲେ କରିବେ କୋପ ଷଡ଼ାନନ
ମୁନିଙ୍କୁ ବୋଲେ ବରୁଣ ଦୋଷମାନ ଘେନ ।
ନ ଜାଣି ବରିଲି ବଳରାମଙ୍କ ନନ୍ଦନ
ଏବେ ପ୍ରତିକାର ଦେବେ କରିବା ଆପଣ ।
ରାଣୀଙ୍କି ନ ପଚାରି ମୁଁ କଲି ଏଡ଼େ ଦ୍ରୋହ
କାର୍ତ୍ତିକେଶ୍ୱରଙ୍କୁ ଏହି ସନ୍ଦେଶ ମୋ କହ ।
ବରୁଣ ବଚନେ କହୁଛନ୍ତି ବ୍ରହ୍ମାସୁତ
ଦ୍ୱିତୀୟ ବରଣ ବିଧି ନୁହଇ ଉଚିତ ।

ଏତେକ କହି ନାରଦ ଗଲେ ଶୂନ୍ୟପଥେ
କପିଳାସପୁରେ ଯାଇ ମିଳିଲେ ତୁରିତେ ।
କାର୍ତ୍ତିକେଶ୍ୱର ଅଗ୍ରତେ ମିଳି ବ୍ରହ୍ମାସୁତେ
ବୋଇଲେ ସେ କନ୍ୟାଅନ୍ୟ ନେଉଛି ଯୁକତେ ।
ବରୁଣ କନ୍ୟା ନୀଳେନ୍ଦ୍ରି ନାମ ଯେହୁ ବାଳୀ
ତୋହର ବିବାହ ଅର୍ଥେ ବରିଲେ କପାଳୀ ।
ସନ୍ତକ ଦେଇ ଅଛନ୍ତି ମଣିରତ୍ନମାଳୀ
ଏବେ ସେ ଆନେ ବିରଲା ଏହା ନ ବିଚାରି ।
ବ୍ରହ୍ମହତ୍ୟା କରିଥିଲେ ଯେଣୁ ତୋର ପିତା
ତେଣୁ ବରଣ ନଦେଲା ତାହାର ଦୁହିତା ।
ଦ୍ୱିତୀୟ ଈଶ୍ୱର ପଦ ଦେଇଛନ୍ତି ତୋତେ
ଆବର ସମର୍ପିଣ ସେ ଯାଇଛନ୍ତି ମୋତେ ।
ଯେସନେକ ଏକଥା ମୁଁ ନ କହିବି ଜାଣି
ପଶ୍ଚାତେ କୋପ କରିବେ ମୋତେ ଶୂଳପାଣି ।
ନାରଦଙ୍କ ମୁଖୁ ଏହା ଶୁଣି ଦ୍ୱିତୀ କାଶୀ
କୋପେ ପ୍ରଜ୍ୱଳିତ ହୋଇ ବଚନ ପ୍ରକାଶି ।
ବରୁଣ ପୁରେ ଯିବାକୁ ସଜହେଲେ ବୀର
ବିଜୟ କଲେ କାର୍ତ୍ତିକ ମୟୁର ପିଠିର ।
ତ୍ରିଶୂଳ ଡମ୍ବରୁ ତାଙ୍କ ଶୋହେ ବେନିକର
ବୋଇଲେ କଢ଼ାଅ ବାଟ ବ୍ରହ୍ମାଙ୍କ କୁମର ।
ଡିବି ଡିବି ଡମ୍ବରୁ ଯେ ଡାକି ବୀଣାମାନ
ଦେଖିଣ ସନ୍ତୋଷ ହେଲେ ବରୁଣ ରାଜନ ।
ସୁବର୍ଣ୍ଣ ଥାଳୀରେ ପୂରାଇଣ ଅର୍ଘ୍ୟ ପୂଜା
ଉପହାର ଦେଲେ ତାକୁ ରତ୍ନାକର ରାଜା ।
ପରମ ଜ୍ୟୋତି ପୁରୁଷ ଦ୍ୱିତୀ ନିରଞ୍ଜନ
ପରମ-ଯୋଗୀ ପୁରୁଷ କୋଟି ମହାତମ ।
କାଳାନ୍ତକ ପୁରୁଷ ତୁ ମୃତ୍ୟୁ ଯେ ଆସନ
ବିଘୂର୍ଣ୍ଣିତ ଲୋଚନ ତୋ ପଦ୍ମଦଳ ବର୍ଣ୍ଣ ।
କାମଦେବ ପୁରୁଷ ତୁ ଅଟୁ ଜଗଜ୍ଜିତା
ଅଦ୍ଭୁତେ ଜାତ ହୋଇଲୁ ଦୁର୍ଗା ତୋର ମାତା ।
ତୋ ରୂପ ଦେଖି ଭୟକରେ ତୋର ପିତା
ଦ୍ୱିତୀୟ ଈଶ୍ୱର ତୁହି ଜଗତ ବିଖ୍ୟାତା ।
ଅବ୍ୟୟ ଅଜ ତୁହି ଯେ ଅସୁର ଭଞ୍ଜନ
ତ୍ରାତେ ନାଶକଲୁ ନାଶକର ଭୟମାନ ।
ଦେବଲୋକ ରଖି ଅସୁରଙ୍କୁ କଲୁ କ୍ଷୟେ
ଷଡ଼ମୁଖ ମଉଳି ତୋ ହୈମବତୀ ମାୟେ ।
ଯୋଗବଳରେ ଧଇଲୁ ବ୍ରହ୍ମାଣ୍ଡ ସପତ
ଅଜପା ଜପି ତୋଷିଲୁ ତୁହି ଜଗନ୍ନାଥ ।
ରାତ୍ର ଦିବସ ତୋହର କଟଇ ଏକଦ୍ୱ
ଦ୍ରୁବ ପ୍ରସାଦେ ଅକ୍ଷୟ କ୍ଷୟ ଜାତ କୃତ୍ୟ ।

ଖଟେ ତେଜ ମୂର୍ତ୍ତି ତୋର ଅଟଇ ଅନଙ୍ଗ
ପିନାକୀ କୋଦଣ୍ଡ ପୁଣି ସାରଙ୍ଗ ଅଜଗ ।
ଦ୍ୱାଦଶ ଭୁଜ ତୋହର ମୂରତି ପ୍ରଚଣ୍ଡ
ତୁହି କୋପ କଲେ ଦେବ କମ୍ପଇ ବ୍ରହ୍ମାଣ୍ଡ ।
ପୂରୁବେ ଶ୍ରୀରାମଚନ୍ଦ୍ର କଲେ ତୋତେ ସ୍ତୁତି
ରକ୍ଷ ବାନର ସେନାଙ୍କ ହେଲୁ ସେନାପତି ।
ତୋର ସାହାଯ୍ୟେ ଶ୍ରୀରାମ ଦୈତ୍ୟ କଲେ ସାଧ୍ୟ
ଦେବତାଙ୍କ ଲାଗି ଦଶାନନ କଲେ ବଧ ।
ଭକତବତ୍ସଳ ଦେବ ଅଟୁ ଚାରୁହଂସି
ଏତେ ବୋଲିଣ ବରୁଣ ବହୁ ପରଶଂସି ।
ଅଢ଼ାଇ ବରଷ ପୁଅ ଦୈତ୍ୟ ନାଶ କଲୁ
ଗିରିଜା ଦେବୀ ପରମ ପୁତ୍ର ତୁ ହୋଇଲୁ ।
ଏତେକ ସ୍ତୁତି କରିଣ ବରୁଣ ରାଜନ
ବୋଲେ କେବଣ ନିମନ୍ତେ ଦେବ ଆଗମନ ।
ଆଜ ମୁଁ ଦେଖିଲି ତୋତେ ସଫଳ ଜୀବନ
ଏହା ଶୁଣି ଆନନ୍ଦିତ ହେଲେ ଷଡ଼ାନନ ।
କୁମାର ବୋଇଲେ ତୋର ନୀଳେନ୍ଦ୍ରି ଦୁହିତା
ବାଳକାଳୁ ବରିଛନ୍ତି ମୋ ନିମନ୍ତେ ପିତା ।
ସେ କନ୍ୟା ମୋତେ ପ୍ରଦାନ କର ଜଳସାଇଁ
ଯୁବାକନ୍ୟାଘରେ ରଖିବାର ନ ଯୋଗାଇ ।
ରତ୍ନାକର ବୋଇଲେ ତ ମୋର ଜ୍ଞାନ ନାହିଁ
ତୁମ୍ଭର ପିଅର ତାକୁ ବରିଛନ୍ତି କାହିଁ ।
ନ ଜାଣି ଆନନ୍ଦାନନ୍ଦେ ଆଣିଲି ମୁଁ ବରି
ମାଳାଦେଇ ନିମନ୍ତ୍ରିଲି ସତ୍ୟ ବାଧ୍ୟକରି ।
ତୁମ୍ଭେ ମୋତେ କୋପ ଯେ ନକର ଷଡ଼ାନନ
ବଳରାମଙ୍କ କୋପକୁ ନୁହଇ ଭାଜନ ।
କାଦମ୍ବରୀ ପାନେ ସଦା ବଳରାମ ଭୋଳ
ତାହାଙ୍କ ସଙ୍ଗରେ ତୁମ୍ଭେ ନ କର ଯେ ଗୋଳ ।
କୁମାର ବୋଲେ କି ରୂପେ ନେବେ ସେ ଦୁଲଣୀ
ଏକ୍ଷଣି ତା ଦଶବର୍ଗ ନାଶିବଇଁ ପୁଣି ।
ଏହାଶୁଣି ବରୁଣର ନେତ୍ରୁ ବହେ ବାରି
ଷଡ଼ାନନ କୋପ ଦେଖି ଡରେ ଜଳଧାରୀ ।
କରପତ୍ର ଯୋଡ଼ିକରି କହଇ ଉତ୍ତର
ଦୋଷାଦୋଷ କ୍ଷମାକର ଧୂର୍ଜଟି କୁମର ।
ନାରଦ ବୋଇଲେ ତୁହୋ ଶୁଣ ନୃପବର
ତିନିପୁରେ ଯା ମହିମା ଅଟେ ଅଗୋଚର ।
ତାହାକୁ କିମ୍ପାଇଁ ନାସ୍ତି କରୁ ନ ବିଚାରି
ଏହିକ୍ଷଣି ଭୁବନ ତୋ ଭାଙ୍ଗିଣ ସେ ପାରି ।
ପଶ୍ଚାତେ ଯାହା କହିବେ ସିନା ହଳପାଣି
କେମନ୍ତ କରିବୁ ଏବେ କହସି ହୋ ପୁଣି ।

ମାଳାଦେଇ ଏବେତୁ କାର୍ତ୍ତିକେଶ୍ୱରେ ବର
ଏହି ବିବାହର ଦିନ ଆସିବେ ତୋ ପୁର ।
ଦୁଇ ବର ଉଭା ହୋଇ ଥିବେ ଦୁଇକତି
ମଧ୍ୟରେ ସମର୍ପିବୁ ତୁ ତୋହର ଦୁହିତୀ ।
ଯେହୁ ପାରିବ ସେ ବଳେ ସେହି କନ୍ୟା ନେଉ
ମନରୁ ଭ୍ରାନ୍ତି ତୁଟିବ ତୋର ଦୋଷ ଯାଉ ।
କାର୍ତ୍ତିକ ବୋଲେ ତୁମ୍ଭର ଏହି ଯେ ବିଚାର
ଦେଖିବା ରାମକୃଷ୍ଣ ଯେ କେତେ ବଳିୟାର ।
ଏସନ ବିଚାର ଯେଣୁ ଦେଲେ ବରୁଣଙ୍କୁ
ଏହା ଶୁଣି ବରିଲେ ଯେ କାର୍ତ୍ତିକେଶ୍ୱରଙ୍କୁ ।
ଏସନ ବିଚାରେ ଯହୁଁ ବରୁଣ ବରିଲା
ତୋଷେ କାର୍ତ୍ତିକେୟ କପିଳାସପୁରେ ଗଲା ।
ଏଥୁଅନ୍ତେ ଯାହା ହେଲା ଶୁଣ ହେ ରାଜନ
ଗୋବିନ୍ଦଙ୍କୁ ପଚାରିଲେ ରୋହିଣୀ ନନ୍ଦନ ।
ଚାଲ ଶୀଘ୍ରେ ଯିବା ବାବୁ ବରୁଣ ଭୁବନ
ସମଦଣ୍ଡ ସହ ବିଭା ଯୋଗାଡ଼ ଘେନିଣ ।
ଗୋବିନ୍ଦ ବୋଇଲେ ଦେବ ଏହା ନ ଯୋଗାଇ
ଆମ୍ଭେ ସେ ପୁରକୁ ଯିବା ଉଚିତ ନୁହଇ ।
କୁରୁ ପାଣ୍ଡବେ ନକହି ଯିବାକୁ କେମନ୍ତେ
ଏକଥା ବିଚାର ସ୍ୱାମୀ କର ହୃଦଗତେ ।
ଏହାଙ୍କ ଗମନେ ପୁରିଯିବ ସେହି ସ୍ଥାନ
କେବଣ୍‌ଠାରେ ରହିବେ ଜଳଧି ଭୁବନ ।
ପ୍ରଦ୍ୟୁମ୍ନ ବିବାହ କରି ଆସୁ କନ୍ୟା ଘେନି
ତା ଭୁବନେ କିମ୍ବା ଆମ୍ଭ ସୈନ୍ୟଙ୍କ ପଲାଣି ।
ପ୍ରଦ୍ୟୁମ୍ନ ହକାରି ଆଜ୍ଞା ଦେଲେ ଯେ ଶ୍ରୀହରି
ଭାଇଙ୍କୁ ସଙ୍ଗରେ ଧରି ଯା ବରୁଣ ପୁରୀ ।
ଶୁଣି ପ୍ରଦ୍ୟୁମ୍ନ ମନରେ ହୋଇଲା ହରଷ
ଆନନ୍ଦାନନ୍ଦକୁ ତହୁଁ କଲେ ବରବେଶ ।
ବଜାଇ ଶଙ୍ଖ ମହୁରୀ ଟମ୍‌କ ନିଶାଣ
ଭେରୀ ମର୍ଦ୍ଦଳ ଶବଦ ଉଠେ ଘନଘନ ।
ହନ୍ଦୋଳାରେ ବସାଇଲେ ଆନନ୍ଦାନନ୍ଦନ
ବିମାନ ଆରୋହି ଯାନ୍ତି ସେ ମୀନକେତନ ।
ବିରାଜଇ ସେ ବିମାନ ସୂର୍ଯ୍ୟ ତେଜ କାନ୍ତି
ଥୋପ ଥୋପ ବିରାଜଇ ତହିଁ ଗଜମୋତି ।
ଶିରେ ସୀମନ୍ତ ବାହୁଟି ଶୋହେ ଜଗଦ୍‌ବଳା
କଣ୍ଠରେ ଲମ୍ବେ ମୁକୁତା ମାଳୀ ଚଉସରା ।
ପ୍ରଭାତ ଆଦିତ୍ୟ ଜିଣି ତେଜ ଅନର୍ଗଳ
ନାନାରତ୍ନେ ଆଭରଣ ଶ୍ରୀକୃଷ୍ଣଙ୍କ ବାଳ ।
ତ୍ରୈଲୋକ୍ୟେ କେହୁ ସୁନ୍ଦରପଣେ ତା ସମାନ
ପୁରୋହିତ ରାଇ ଆଜ୍ଞା ଦେଲେ ଭଗବାନ ।
ପୁତ୍ରଙ୍କୁ ଘେନିଣ ତୁମ୍ଭେ ଚଳ ହୋ ତ୍ୱରିତ
ବିଭାକରି ଘେନିଆସ ବରୁଣ ଦୁହିତ ।
ଆନନ୍ଦାନନ୍ଦ କଣ୍ଠରେ ବରମାଲ୍ୟ ଭରି
ଆଜ ବିଭା ବୋଲି ସେ ଲଗ୍ନ ଅଛି ଧରି ।
ଏସନେକ ଶ୍ରୀହରି ଯେ ଆଜ୍ଞାଦେଲେ ଯହୁଁ
ପୁତ୍ର ଘେନି ପୁରୋହିତ ଚଳିଗଲେ ତହୁଁ ।
ପ୍ରବେଶ ହୋଇଲେ ଯାଇଁ ବରୁଣ ଭୁବନ
ଦେଖିଣ ଆନନ୍ଦ ହେଲେ ଜଳଧି ରାଜନ ।
ଛାୟା ମଣ୍ଡପେ ବିଜୟ କଲେ ପୁତ୍ର ଘେନି
ଆରମ୍ଭ କରେ ବିବାହ ବିଧି ନୃପମଣି ।
ବଡ଼ ପବିତ୍ର ଅଟଇ ଦେବ ଯେଉଁପୁର
ସ୍ୱର୍ଗ ପାସୋରନ୍ତି ତହିଁ ବିଜେ କଲେ ସୁର ।
ବସିଲେ ତହୁଁ ପୁରୋଧା କୁମରଙ୍କୁ ଘେନି
ସ୍ୱର୍ଣ୍ଣବେଦୀ ବିଶ୍ୱକର୍ମା ଯା ଥିଲା ନିର୍ମାଣି ।
ଉପରେ ବାନ୍ଧିଲେ ସେହୁ ଝୀନ ପାଟଛତି
ବିଭା ବିଧାନ ଆରମ୍ଭେ ବିପ୍ରେ ବେଦପତି ।
ନାରଦ ତାହା ଜାଣିଲେ ମନେ ଧ୍ୟାନ କରି
ବିବାହର ବିଧାନ ତ ଯାଉଅଛି ସରି ।
ଏହିଠାରେ ଯେ ହୋଇବ ବଡ଼ କୁତୁହଳ
ହରିହର ବେନି ମଧ୍ୟେ ହୋଇବ ଯେ ଗୋଳ ।
ଏତେ ବିଚାରି ଗମନ କଲେ ମୁନିବର
ପ୍ରବେଶ ହୋଇଲେ ଯାଇ କପିଳାସ ପୁର ।
ଝାଳେଣ ତ୍ରିପିଣ୍ଡି ତାଙ୍କ ଗଳଇ ଶରୀର
କାର୍ତ୍ତିକ ଆଗରେ ଉଭା ହେଲେ ମୁନିବର ।
ଭୋ ଦେବ ବହନ ଚଳ ବରୁଣର ପୁରେ
ବିବାହ ଉତ୍ସବ ଏବେ ହେଉଛି ସେଠାରେ ।
ଯଦୁବଂଶ ଆବର ଯେ ରାଜା ଉଗ୍ରସେନ
ସୈନ୍ୟ ସଖା ଘେନି ଆସି ଅଛଇ ପ୍ରଦ୍ୟୁମ୍ନ ।
ତୋତେ ପଠାଇ ବରୁଣ ଅଛି କନ୍ୟା ଥୋଇ
ବିଳମ୍ବ ହୋଇଲେ ସେହୁ ଯିବ ବିଭାହୋଇ ।
ନାରଦ ବାକ୍ୟେ କାର୍ତ୍ତିକେଶ୍ୱର ମହାଯତି
ଦ୍ୱାଦଶ ନେତ୍ର ବୁଲାଇ ଅତି କୋପମୂର୍ତ୍ତି ।
ତକ୍ଷଣେ ମୟୁର ପୃଷ୍ଠେ ଦେବ ବିଜେ କଲେ
ବରୁଣ ରାଜାର ପୁରେ ବହନ ମିଳିଲେ ।
ମନଯାନ ଚଢ଼ି ମୁନିଯାନ୍ତି ପଛ ପଛ
କହୁଁ କହୁଁ ବରୁଣର ଭୁବନେ ପ୍ରବେଶ ।
ନାରଦ ମୁଖୁ ଶୁଣିଣ କାର୍ତ୍ତିକ କୁମର
ମୟୁର ପିଠିରେ ବିଜେ କଲା ମହାବୀର ।
ବରୁଣ ପୁରକୁ ସେହୁ ଚଳିଲେ ବହନ
ଦେଖିଣ ନଗର ଜନେ ହେଲେ ତୋଷମନ ।

ଗମନ୍ତେ ପୃଥିବୀ ଦେବୀ ହୁଏ ଟଳମଳ
ଶିବଗଣଙ୍କର ଡାକ ସମୁଦ୍ର ଉଲ୍ଲୋଳ ।
ନବଲକ୍ଷ ଡମ୍ବରୁ ଯେ ବାଜେ ଅନ୍ତରୀକ୍ଷେ
ସମାରୋହେ ବିଜେ ଯାଇ କଲେ ବିରୁପାକ୍ଷେ ।
ବାଦ୍ୟମାନ ଶବଦରେ କମ୍ପେ ମହୀସ୍ଥଳୀ
ପ୍ରଦ୍ୟୁମ୍ନ ବୋଇଲେ କିମ୍ପା ଅଇଲେ କପାଳୀ ।
ବରୁଣ ବୋଇଲେ କିମ୍ପା ବିଜେ ଶୂଳଧର
ତାହାଙ୍କର ପୁତ୍ର ଆସେ କାର୍ତ୍ତିକ କୁମର ।
ପ୍ରଦ୍ୟୁମ୍ନ ବୋଇଲେ ଯେବେ ଅଇଲେକ ଶୂଳ
ବିଭାଘର ହିଁ ସଫଳ ହୋଇଲା ଆମ୍ଭର ।
ଆଣିବା ଚାଲ ହୋ ପୂଜାକରି ମହାଯତି
ଏତେକ ବୋଲି ଚଳିଲେ ଯହୁଁ ରତିପତି ।
ବରବେଶେ ବସିଅଛି ଯେ ଆନନ୍ଦାନନ୍ଦ
ବିପ୍ରେ ବେଦୀ ଚାରିପାଶେ ପଢୁଛନ୍ତି ବେଦ ।
ଗାର୍ଗ୍ୟ ପୁରୋହିତ ନାମ ଗୋତ୍ର ଉଚ୍ଚାରନ୍ତି
ବରୁଣ ଦୁହିତା ଘେନି ବସିଛନ୍ତି କତି ।
ଛାୟାମଣ୍ଡପେ କରନ୍ତି ସ୍ୱୀକାର ବରଣ
କାର୍ତ୍ତିକେୟ ଅଗ୍ରତରେ ମିଳି କାମରାଣ ।
ସୁବର୍ଣ୍ଣ ଥାଳିରେ ପଞ୍ଚରତନ ପୁରାଇ
କାର୍ତ୍ତିକେୟ କୁମରକୁ ପାଦ୍ୟ ଅର୍ଘ୍ୟଦେଇ ।
ଓଳଗି ଶୋଇଲେ ଶତ ଦଣ୍ଡବତ ହୋଇ
ପ୍ରଣାମ କରି ବୋଇଲେ ଅପସରି ଯାଇ ।
ଆଜ ମୋର ସର୍ବକାର୍ଯ୍ୟ ହୋଇବ ସଫଳ
ପ୍ରତ୍ୟକ୍ଷେ ଦେଖିଲି ଆଜି ଦ୍ୱିତୀ ଶୂଳଧର ।
ଏବେ ଆସ ବରୁଣର ପୁରେ ଦେବ ଯିବା
ଆନନ୍ଦାନନ୍ଦନକୁ ଦେବ ବିଭା କରାଇବା ।
ମଙ୍ଗଳ ମନାସି ତାକୁ ପୂଜାଅର୍ଘ୍ୟ ଦେବା
ଶୁଭେ କ୍ଷେଷ ହେଲେ ସ୍ୱାମୀ କରିବଇଁ ସେବା ।
ଏ ବଚନ ଶୁଣି କୋପେ ଧୂର୍ଜଟି ନନ୍ଦନ
ମୁକୁଟ କମ୍ପାଇ ଶିର ଝୁଣି ଘନ ଘନ ।
ପ୍ରଦ୍ୟୁମ୍ନ ମୁଖକୁ ଚାହିଁ ବୋଇଲେ ବଚନ
କେମନ୍ତେ କରୁଛ ପର କନ୍ୟାକୁ ହରଣ ।
କେଉଁ ବିଚାରରେ ତୁମ୍ଭେ କରୁଅଛ ଏହା
ରାଜକୁମାରୀ ନେବାକୁ ବଳିଅଛି ସ୍ପୃହା ।
ମୋ ପାଇଁ ଆଗହୁଁ ପିତା କନ୍ୟାଛନ୍ତି ବରି
ଏ ମୋହର ଯୁବତୀକି ବଳେ ନେବ ହରି ।
ଆନଠାରୁ କନ୍ୟା ଯେହ୍ନେ ଆଣ ଚୋରିକରି
ତେମନ୍ତ ପରା ବୁଝିଲ ତୁମ୍ଭେ ଏହି ପୁରୀ ।
ପ୍ରଦ୍ୟୁମ୍ନ ବୋଇଲେ ସ୍ୱାମୀ ପଛେ କୋପକରୁ
ନ ବିଚାରି କିମ୍ପାଇ ତୁ ତମ ମନେ ଧରୁ ।

ପ୍ରଦ୍ୟୁମ୍ନ ପ୍ରଶଂସା ଏଣେ କରୁଅଛି ସ୍କନ୍ଦେ
ବିଭାର ଶବଦ ତେଣେ ଶୁଭଇ ଆନନ୍ଦେ ।
ତାହା ଶୁଣି କୁମର ସେ ବିଚାରଇ ମନେ
ବୋଇଲେକ ବିଭାଘର ହେଉଅଛି ତେଣେ ।
ଏସନକ ବିଚାରିଣ ମୟୁରୁ ଉତୁରି
ବିଭାସ୍ଥାନେ ପ୍ରବେଶିଲା ବୀର ଶକ୍ତିଧାରୀ ।
ମୟୁର ରହିଲା ଛାୟାମଣ୍ଡପର ତଳେ
ବେଦୀରେ ଉଠିଲେ ଯାଇ ଅତି କୋପାନଳେ ।
ରାଗେଣ ପଶିଲେ ଯାଇ କୁମରଙ୍କ ମେଳେ
ଆନନ୍ଦାନନ୍ଦ ଯେ ହସ୍ତ ଯୋଡ଼ିବାର ବେଳେ ।
କନ୍ୟାକୁ କୁମରମଣି ଧରି କ୍ରୋଧଭରେ
ବିଜେ କର୍ଣ୍ଣକଟାରିକୁ ଧଇଲେ ଶ୍ରୀକରେ ।
ଆନନ୍ଦାନନ୍ଦର ବେଗେ ଧଇଲେକ ବାଳ
ବିଜୟ କର୍ଣ୍ଣ କଟାରୀ ମାଇଲେ ତତ୍କାଳ ।
କଟାରୀ ବାଜନ୍ତେ ବେନିଖଣ୍ଡ ତାର ଶିର
କନ୍ୟାକୁ ବସାଇ ବୀର ମୟୁର ପିଠିର ।
ଯେତେ ଧନରତ୍ନ ଥିଲା ସର୍ବ କଲେ ଚୂର
ବରୁଣ ଲୁଚିଲା ଯାଇ ଜଳମୟ ପୁର ।
ତାହା ଦେଖି ଅସାକ୍ଷମ ରକ୍ମିଣୀ ନନ୍ଦନ
ସ୍ମରଇ ପ୍ରଭୁ ବାସୁଦେବ ମନେ ମନ ।
ଭୋସ୍ୱାମୀ ଗୋବିନ୍ଦ ତୋର କି କଲି ବିଦ୍ରୋହ
କିମର୍ଥେ ଛାଡ଼ିଲ ସ୍ୱାମୀ ଆମ୍ଭଠାରୁ ସ୍ନେହ ।
ଏବେ ମୁଁ କିସ କରିବି ପୁଣି ଚଉବାହା
ଆପଦ ପଡ଼ିଲା ସ୍ୱାମୀ କେହି ନାହିଁ ସାହା ।
ଆପଣେ ନ ମାରି ଦେବ ମରାଇଲୁ ପରେ
ନିର୍ମାକ୍ଷୀ ହୋଇଲୁ ସ୍ୱାମୀ ବରୁଣର ପୁରେ ।
ଆନନ୍ଦାନନ୍ଦ ପରାୟ ମରାଇଲି ଭାଇ
ବଳରାରମଙ୍କର ମୁଖ ଚାହିଁବି କି ଯାଇ ।
ମୋହର ଜୀବନ ରହିଅଛଇ କିମ୍ପାଇଁ
ରଣଯୋଗ କରି ମୁହିଁ ଏଥେ ମରିବଇଁ ।
ଏତେକ ବୋଲି ପ୍ରଦ୍ୟୁମ୍ନ ଧାଇଁଲାକ ବେଗେ
କାର୍ତ୍ତିକେଶ୍ୱରଙ୍କୁ ଯାଇ ଓଗାଳିଲା ଆଗେ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏକ ଭାଇ
ତିନିପୁର କରି ଆଗେ ଓଗାଳିଲେ ଯାଇ ।
ଯେ ଯାହାର ଅସ୍ତ୍ରଘେନି ମାରନ୍ତି ଗୋଡ଼ାଇ
ତାହା ଦେଖି କାର୍ତ୍ତିକେୟ ରୋଷେ ଆସେ ଧାଇଁ ।
ତ୍ରିଶୂଳ ବୁଲାଇ ବୀର ପିଟିଲା ତଡ଼ତି
ଏକପ୍ରହାରେ ପଡ଼ିଲେ ତହିଁ ରତିପତି ।
ଶାମ୍ବ ଗଦ ମିଳି ତହିଁ କରନ୍ତି ସମର
ଶର ଏକ ପ୍ରହାରିଲା ଧୂର୍ଜଟି କୁମର ।

ଜ୍ଞାନ ହାରିଣ ପଡ଼ିଲେ ବିଷ୍ଣୁ ଦୁଇବାଳ
ଆବର ବାଳକମାନେ ହୁନ୍ତି ଅସମ୍ଭାଳ ।
କପିଳାସ କନ୍ଦରରେ ଥିଲେ ରୁଦ୍ରଗଣ
ତହିଁ କାର୍ତ୍ତିକେଶ୍ୱରଙ୍କୁ ଖୋଜି ନ ପାଇଣ ।
ଖୋଜନ୍ତି ସେ କେଣେ ଗଲେ ବୋଲି ଜଣେ ଜଣ
କାଳ ବିନାୟକ ଗଣ୍ଡ ପରଚଣ୍ଡ ପୁଣ ।
ଖୋଜିଣ ଭେଟିଲେ ଆସି ବରୁଣ ଭୁବନ
ଦେଖିଲେ କାର୍ତ୍ତିକେଶ୍ୱର ସମର ଅଙ୍ଗନ ।
ମହାଯୋଦ୍ଧା ଶ୍ରୀହରିଙ୍କ ପୁତ୍ରମାନେ ମିଳି
ତାହାଙ୍କର ସଙ୍ଗତରେ କରୁଛନ୍ତି କଳି ।
ମହାକାଳ ବିନାୟକ ଚଣ୍ଡ ଯେ ପ୍ରଚଣ୍ଡ
ଭୃକୁଟି ନନ୍ଦିକେଶ୍ୱର ଯମ କାଳଦଣ୍ଡ ।
ମହାଯୋଦ୍ଧା ଅଟନ୍ତି ଏ ପୁଣି ମହାବଳୀ
ତାହାଙ୍କ ସଙ୍ଗେ ଜିଣିବେ କେହୁ କରି କଳି ।
ତାହାଙ୍କର ଶସ୍ତ୍ରଯାଏ ପର୍ବତରୁ ଫୁଟି
ଦିଗପାଳେ ନ ପାରନ୍ତି ଯାହାକୁଟି କଣ୍ଟି ।
ତାହାଙ୍କୁ ସମରେ କିସ କରିବେ ବାଳୁତ
ଶାମ୍ବ ଗଦା ପ୍ରଦ୍ୟୁମ୍ନ ଏ ହେଲେ ପ୍ରାଣେ ହତ ।
ଭୟକରି ବିଷ୍ଣୁ ପୁତ୍ରମାନେ ପଳାଇଲେ
ଗୋଡ଼ାଇ ପ୍ରହାର କଲେ ଈଶ୍ୱର ଦୁଲାଳେ ।
ମୋହେ ପଡ଼ିଲେ ସମରେ ବିଷ୍ଣୁ ପୁତ୍ରଗଣ
ଏକାବେଳେ ହେଲା ତାଙ୍କୁ ଅକାଳ ମରଣ ।
ନିଃଶେଷ ହୋଇ ସମସ୍ତେ ଗଲେ ତହିଁ ନାଶ
କନ୍ୟାଘେନି କାର୍ତ୍ତିକେୟ ଗଲେ କଇଳାସ ।
ତାହାଦେଖି ବିଚାରନ୍ତି ନାରଦ ଯେ ତପୀ
ନିଶ୍ଚେଁ ଏହାଙ୍କୁ ନାଶିଲି ମୁହିଁ ମହାପାପୀ ।
କାର୍ତ୍ତିକକୁ ଦେଖାଇଲି କଳି ମନ୍ଦକୃତ୍ୟ
ଅଦୋକ୍ଷେ ମୁଁ ମରାଇଲି ବାଳୁତ ପୁତ୍ରନ୍ତ ।
କି ବୋଲି ବୋଲିବେ ମୋତେ କୃଷ୍ଣ ହଳପତି
ଦଣ୍ଡ ଚଢ଼ି ନାରଦ ଯେ ଗଲେ ଦ୍ୱାରାବତୀ ।
ପ୍ରବେଶ ହୋଇଲେ ଯାଇ ପୁର କୁଶସ୍ଥଳ
ଯହିଁ ବିଜେ କରିଛନ୍ତି କୃଷ୍ଣ କାମପାଳ ।
ତାହାଙ୍କର ସନ୍ନିଧିରେ ମିଳି ତପଶାଳୀ
ନାରଦଙ୍କୁ ଦେଖି ପୁଚ୍ଛାକଲେ ବନମାଳୀ ।
ପାଦ୍ୟଅର୍ଘ୍ୟ ଦେଇ ପୂଜାକଲେ ହୃଷୀକେଶ
ନାରଦ ବୋଇଲେ ଯେ ଥିଲୁ ଏହିବାସ ।
ନୀଳାମ୍ବର ବୋଇଲେ ଯେ ଥିଲୁ ଏହି ସ୍ଥାନେ
ବିଭାଅର୍ଥେ ଗଲେ ତହିଁ ଆମ୍ଭରି ନନ୍ଦନେ ।
ଦେବରଷି ବୋଇଲେ ହେ ଶୁଣ ସାବଧାନେ
କହିବାକୁ ଅଇଲୁ ଯେ ତବ ବିଦ୍ୟମାନେ ।

ବରୁଣ ଦେବତା ଦେବ ମନ୍ଦକୃତ୍ୟ କଲା
ତୁମ୍ଭର ପୁତ୍ରକୁ ଆସି ନିମନ୍ତ୍ରିତ ନେଲା ।
ତାହାର ଭାରିଯା ପୂର୍ବେ ବରିଥିଲା ସ୍କନ୍ଦ
ବିଭାକାଳେ ଯାଇ ସେହିକଲା ମହାଦ୍ୱନ୍ଦ୍ୱ ।
ହାତଯୋଡ଼ି ହୋଇଥିଲା ସେ ଆନନ୍ଦାନନ୍ଦ
ବିଜେ କର୍ଣ୍ଣ କଟାରୀରେ ଛେଦିଲା ତା କନ୍ଧ ।
ଆନନ୍ଦାନନ୍ଦକୁ ମାରି କନ୍ୟା ଘେନିଗଲା
ପ୍ରଦ୍ୟୁମ୍ନ ଗୋଡ଼ାଇ ତାର ସଙ୍ଗେ ଯୁଦ୍ଧକଲା ।
କୋପାନଳେ ଶକ୍ତି ଘେନି ମାଇଲା ସକଳ
ଶୂଳଘାତେ ନାଶକଲେ ତୋର ପୁତ୍ରବଳ ।
ନାରଦ ବଚନେ ରାମକୃଷ୍ଣ ଯେ ବିକଳେ
ମୂର୍ଚ୍ଛାଯାଇ ପଡ଼ିଲେକ ରାମ ସଭାତଳେ ।
କୋଳକରି ହରି ଧରୁ ଉଠି କାମପାଳ
ଉଚ୍ଚସ୍ୱରେ ଶୋକ ଧ୍ୱନି କଲେ ନନ୍ଦବାଳ ।
କାନ୍ଦନ୍ତି ଯେ ହାହା ପୁତ୍ରେ ବୋଲି ଚକ୍ରପାଣି
ଦ୍ୱାରକାପୁରେ ଶୁଭିଲା ଉଚ୍ଚେ ଶୋକବାଣୀ ।
ଷୋଳସହସ୍ର ଯେ ଅଷ୍ଟପାଟବଂଶୀ ରାଣୀ
ସମସ୍ତେ ପଡ଼ିଲେ ଢଳି ବଜ୍ରାଘାତ ଜାଣି ।
ଉଚ୍ଚରେ କାନ୍ଦିଣ ମାତା ପୁତ୍ରକୁ ସୁମରି
ସମ୍ବର ନାଶି ଆଣିଲୁ ମାୟାବତୀ ହରି ।
ଲକ୍ଷ୍ମୀ ଯାହାର ଜନନୀ ପିତା ଭଗବାନ
ଅକଳିତ ପରାକ୍ରମ ବହୁ ତୁ ପ୍ରଦ୍ୟୁମ୍ନ ।
ତ୍ରୈଲୋକ୍ୟ ଭିତରେ ତୋତେ ଅଛିକି ସମାନ
ତୋର ବାବୁ ଫୁଲବାଣ ଫୁଲ ଶରାସନ ।
ଅପୂର୍ବ ସୁନ୍ଦର ବାବୁ କନ୍ଦର୍ପ ମୂରତି
ରିପୁମର୍ଦ୍ଦନ ତୁ ବୀରବର ଚକ୍ରବର୍ତ୍ତୀ ।
ସତ୍ୟବତୀ ଜମ୍ବୁବତୀ ଯେ କାଳିନ୍ଦୀମେଳା
ଏ ସର୍ବ ଯୁବତୀ ମୋହେ ପଡ଼ି ହେଲେ ଭୋଳା ।
ରୋଦନ ଶବଦ ଘାତେ ବ୍ରହ୍ମାଣ୍ଡ ଉଛୁଳି
ପୁତ୍ର ସୁମରି କାନ୍ଦନ୍ତି ପ୍ରଭୁ ବନମାଳୀ ।
ସମ୍ବୋଧନ କରି ରାମ ବୋଲନ୍ତି ବଚନ
ଜୀଆଇଁ ଆଣିବା ଏହିକ୍ଷଣି ପୁତ୍ରମାନ ।
ଏତେ ବୋଲି ଆଜ୍ଞାଦେଲେ ରେବତୀର ପତି
ରଥ ଗଜଅଶ୍ୱ ସୈନ୍ୟ ସାଜ ହେ ଝଟତି ।
ଯଦୁବଂଶ ଭୋଜବଂଶ କୃଷ୍ଣବଂଶ ମୋର
ଅନ୍ଧକବଂଶ ଯେ କୁରୁବଂଶ ହିଁ ମୋହର ।
ହଇହୟ ବଂଶଘେନି ହୋଇଲେ ବାହାର
ସାତବଂଶ ଯାଦବଙ୍କୁ ଘେନି ସଙ୍ଗତର ।
ନନ୍ଦିଘୋଷ ରଥଚଢ଼ି କୃଷ୍ଣ ହେଲେ ସଜ
ବଳରାମ ଆରୋହିଲେ ରଥ ତାଳଧ୍ୱଜ ।

ଉଗ୍ରସେନ ରାଜା ଘେନି ସକଳ ସଇନି
ରଥଗଜ ତୁରଙ୍ଗମ ଚୋଖାବାଜୀ ଘେନି ।
ଦ୍ୱାରକାପୁରୁ ବାହାରି ହେଲେ ସର୍ବେଗୁଣ୍ଡ
ବାଦ୍ୟନାଦ ଶବଦରେ କମ୍ପଇ ବ୍ରହ୍ମାଣ୍ଡ ।
ତାହାଦେଖି ଭାଳନ୍ତି ଯେ ନାରଦ ମହର୍ଷି
ପୃଥ୍ୱୀ ଘୋଟିଯାଉଛନ୍ତି ଯଦୁ ଭୋଜବଂଶୀ ।
ଏହାଙ୍କ ମୁଖେ ପଡ଼ିଲେ ହେବ ସର୍ବଧ୍ୱଂସ
ନ ପୁଣ ଏ କାର୍ତ୍ତିକଙ୍କୁ କରନ୍ତି ବିନାଶ ।
ବେଗେ କହିବି ଯାଇ ମୁଁ ଷଣ୍ମାତୁର ପାଶେ
ଏମନ୍ତ ବିଚାରିଗଲେ ମନରେ ବିରସେ ।
ଏତେ ଭାଳି ନାରଦ ଯେ ଚଳିଲେ ତୁରିତେ
କାର୍ତ୍ତିକଙ୍କୁ ଦେଖିଲେ ଯେ କୈଳାସ ପର୍ବତେ ।
ନାରଦ ବୋଇଲେ ଶୁଣ ଈଶ୍ୱରଙ୍କ ପୁତ୍ର
ସମଦଣ୍ଡ ଘେନି କୋପେ ଆସନ୍ତି ଅଚ୍ୟୁତ ।
ପୁତ୍ରଛଳେ ରାମଙ୍କର କୋପ ଅପ୍ରମିତ
ଅକାରଣେ କିମ୍ପାଇଁ ତୁ ମାଇଲୁ ତା ପୁତ୍ର ।
ତାଙ୍କ କୋପେ ଆବର କି ଧରିବୁ ଜୀବନ
କେବଣ କାରଣେ ବାବୁ କଲୁରେ ନିଧନ ।
ସାତବଂଶ ଘେନି ଏବେ ଆସୁଛନ୍ତି ବହି
କର ଉପାୟ ତୁ କନ୍ୟା ସହ ଯିବୁ କାହିଁ ।
ବନଗିରି କନ୍ଦରରେ ଠାବଟିକେ ନାହିଁ
ଏ କନ୍ୟାକୁ ଘେନି ଏବେ ସମ୍ଭାଳିବୁ କାହିଁ ।
ପାଞ୍ଚକୋଶ ବେଢ଼ି ଥାଟ ଆସନ୍ତି ଗୋଡ଼ାଇ
ତାହା ଦେଖି କାର୍ତ୍ତିକେୟ ମୟୁର ଉଡ଼ାଇ ।
ନାରଦ ବୋଇଲେ ତୋର ଏ କି ବିପରୀତ
ରାମକୃଷ୍ଣ ଦେଖି କିମ୍ପା ହୋଇଲୁ ନିସତ ।
ଦ୍ୱିତୀୟ ଈଶ୍ୱରପଦ ହର ଦେଲେ ତୋତେ
ବୋଲିବେ ପଳାଇଗଲା ଛଦ୍ମମେ ନିସତେ ।
ପ୍ରାକର୍ମେ ଜିଣିଲେ ସିନାନେବୁ ତୁ କୁମାରୀ
ଚଉର୍ଯ୍ୟପଣେ ନେଲେଟି ହୁଏ ହତ୍ୟାସରି ।
କନ୍ଦର ବହିତେ ଭାଙ୍ଗି କଇଳାସ ନେବେ
ଶିବଗଣଙ୍କୁ ବହୁତ ଶାସ୍ତି ପୁଣ ଦେବେ ।
ରାମକୃଷ୍ଣଙ୍କୁ ଦେଖିଣ ନ ଯୁଝିବେ କେହି
ତୋର ପଳାନ୍ତେ ସମସ୍ତେ ନାଶଯିବେ ତହିଁ ।
ପ୍ରମାଦ ଚିନ୍ତିଲୁ ତାଙ୍କ ପୁତ୍ରକୁ ମାଇଲୁ
କୋପେ ତୁ ଆଗେ ଅନର୍ଥ ଗୋଟି ଜାତ କଲୁ ।
ନାରଦଙ୍କ ବଚନରେ ରହିଲେ ସେ ସ୍କନ୍ଦ
ହସ୍ତେ ଗଦାବର ଧରି ଆରମ୍ଭିଲେ ଦ୍ୱନ୍ଦ୍ୱ ।
ଚଉଦକୋଟି ଯେ ଶିବଗଣ ଘେନି ଯିବି
ଉଗ୍ରସେନ ବଳରାମ ଗୋବିନ୍ଦ ମାରିବି ।

ଯଦୁଭୋଜ ବଂଶଙ୍କୁ ମୁଁ ମାରିବି ବିକୋଟି
ପାଲଟିଲେ କାର୍ତ୍ତିକେୟ ଦକ୍ଷିଣ ମୂରତି ।
ଗୋବିନ୍ଦ ଭେଟିଲେ ବାଟେ ଶିବର କୁମର
ଆଗରେ ବିଜୟ ଦେବ ସ୍ୱାମୀ ହଳଧର ।
ଶ୍ରୀକୃଷ୍ଣ ବୋଇଲେ ଦେବ ଶୁଣ ହଳହସ୍ତ
କାର୍ତ୍ତିକେଶ୍ୱରଙ୍କୁ ତୁମ୍ଭେ କୋପ ନ କରନ୍ତ ।
ବୁଝିବା ନା ପୁଅଙ୍କୁ ସେ ମାଇଲା କିମ୍ପାଇଁ
ତୁମ୍ଭେ ରହିଥାଅ ମୁହିଁ ବୁଝେ ଏହା ଯାଇ ।
ନ ବୁଝି କୋପ କଲେଟି ବୁଝିବେ ନା ହର
ବ୍ରହ୍ମହତ୍ୟା କରିଗଲେ ବାରାଣସୀ ପୁର ।
ଏକଥା ଯେବେ ଜାଣିବେ ଦେବ କାଶୀବାସୀ
ପଛେ ଆମ୍ଭଙ୍କୁ ଦୂଷଣ ଦେବେ ଏଥେ ଆସି ।
ଏ ବଚନ ଶୁଣି ରାମ ସଂହାରିଲେ କୋପ
ଗୋବିନ୍ଦ ମିଳିଲେ ଯାଇ କାର୍ତ୍ତିକ ସମୀପ ।
ବୋଲନ୍ତି ଶ୍ରୀ ଜଗନ୍ନାଥ ଶୁଣ ମହାସେନ
କିମର୍ଥେ ପୁତ୍ରମାନଙ୍କୁ କଲୁ ତୁ ନିଧନ ।
ଏହାଶୁଣି କାର୍ତ୍ତିକେୟ ମହାକୋପମାନ
ଅଧର କମ୍ପାଇ ସେହୁ ବୋଇଲେ ବଚନ ।
ବରୁଣର ଦୁହିତା ନାମ ନୀଳେନ୍ଦ୍ରି ସୁନ୍ଦରୀ
କିମର୍ଥେ ତୋ ପୁତ୍ର ନେଉଥିଲା ତାକୁ ହରି ।
ବାଳକାଳୁଁ ବରିଛନ୍ତି ଈଶ୍ୱର ଯାହାକୁ
କିମ୍ପା ଆସି ନେଉଥିଲେ ତୋ ପୁତ୍ର ତାହାକୁ ।
ଆଗହୁଁ ବରିଛି ମୋତେ ବରୁଣ ଭାରିଯା
ତୁମ୍ଭେ କେଉଁମତେ ବିଭାହୁଅ ନାହିଁ ଲଜ୍ଜା ।
ପୁତ୍ରକୁ ପଠାଇ ଦେଲ ନ ପାଇଲ ଲାଜ
ମୋ ପତ୍ନୀ ନେବାକୁ ପୁଣି ଧାଇଁଅଛ ଆଜ ।
ନିଶ୍ଚୟରେ ମରାଇବ ଯଦୁବଂଶ ସୈନ୍ୟ
ମଣିଛ କି ମୋତେ ଆନ ନୃପତି ସମାନ ।
ତାହାକୁ ମରାଇ କିବା ଆପେ ଯିବ ବର୍ତ୍ତି
ଭାଇ ବନ୍ଧୁ ସହିତରେ ମାରିବି ବିକୋଟି ।
ଏସନକ ବୋଲି କୋପ କଲା ମହାକ୍ଷତ୍ରୀ
କରେ ଧରି ବୁଲାଇଲା ତ୍ରିଶୂଳ ଶକତି ।
କୋପେଣ ନେଇ ପିଟିଲା ଶ୍ରୀକୃଷ୍ଣ ଉପର
ନନ୍ଦିଘୋଷ ରଥେ ବାଜି ହେଲା ଶତେଚୂର ।
ପରନାରୀ ହରି ନେଉଥିଲା ପରା ଆଜ
କେମନ୍ତ ତୁ କରି ଏହା କହୁରେ ନିର୍ଲ୍ଲଜ ।
ବିରଥ ହୋଇଲେ ଯହୁଁ ଦେବ ଚକ୍ରଧର
ରମ୍ୟକ ଦ୍ୱୀପରେ ଥିଲା ବିନତା କୁମର ।
ଜଗନ୍ନାଥ ସୁମରନ୍ତେ ମିଳିଲା ଛାମୁରେ
ମଧୁହାରୀ କଲେ ବିଜେ ଗରୁଡ଼ ପିଠିରେ ।

କାର୍ତ୍ତିକ ରହିଲା ଆଗେ ମୟୁର ଉଭାରି
ଗରୁଡ଼ ପୃଷ୍ଠରେ ବିଜେ ଦେବ ଚକ୍ରଧାରୀ ।
ତାହା ଦେଖି ବଳରାମ ନ ପାରିଲେ ସହି
ଯେସନେକ କାଳାନଳ ବହ୍ନିଯାଏ ଦହି ।
ତାଳଧ୍ୱଜ ରଥରୁ ସେ ପଡ଼ିଲେକ ଡେଇଁ
ମୂଷଳ ପିଟିଲେ ଦେବ କାର୍ତ୍ତିକକୁ ନେଇ ।
ମୟୁର ଲୋଟି ପଡ଼ିଲା ମୂଷଳର ଘାତେ
କଦଳୀ ତରୁ ଲୋଟଇ ଯେହ୍ନେ ବାତଘାତେ ।
ତ୍ରିଶୂଳ ପିଟିଲା ସ୍କନ୍ଦହୋଇ କୋପମୂର୍ତ୍ତି
ଶୂନ୍ୟରେ ଭ୍ରମି ଆସନ୍ତେ ତ୍ରିଶୂଳ ଶକତି ।
ବାମଭୁଜେ ଧଇଲେ ତା ରେବତୀର ପତି
ତ୍ରିଦଶେ ସେ ମହାଘୋର ନାଦେ କଲା ଭୀତି ।
କୋପେ ତାହା ମହାସେନ ପିଟିଲା ନିଠାଇ
ଉପୁଡ଼ି ପଡ଼ିଲା ବାଣ ତୃଣପ୍ରାୟ ହୋଇ ।
ତାହା ଦେଖି ବଳରାମ କୋପେ ଗଲେ ଧାଇଁ
ସେ ତ୍ରିଶୂଳ ଶକ୍ତିଘେନି ପିଟିଲେ ତୁହାଇ ।
ପଡ଼ିଲା କାର୍ତ୍ତିକେଶ୍ୱର ତଳେ ମୂର୍ଚ୍ଛାଯାଇ
କନ୍ୟାକୁ ଧଇଲେ କୋପ କରି ଯଦୁସାଇଁ ।
ଗୋଡ଼ାନ୍ତେ ଯାଦବସୈନ୍ୟ ପଛେ ମହୀଲୋଟି
ଶିବଗଣମାନଙ୍କୁ ଯେ କରି ଶରବୃଷ୍ଟି ।
ଗଦା ବୁଲାଇ ମୂଷଳ ଘେନି କେହି ପିଟି
ପଡ଼ିଲେ ସେ ଅସାଷ୍ଟମ ହୋଇ ମହୀଲୋଟି ।
ଗୋବିନ୍ଦ ପାଶେ ମିଳିଲେ ରୋହିଣୀ ତନୟ
କରେ ଶସ୍ତ୍ର ଧରି କରେ ସଂଗ୍ରାମ ବିଜୟ ।
ସହସ୍ର ସହସ୍ର ଶର କୋପେଣ ପ୍ରହାରି
ଏକ ପ୍ରହାରକେ ହରି ଚଉବିଂଶ ମାରି ।
ଚତୁର୍ଦ୍ଦଶ କୋଟି ଶିବଗଣଙ୍କୁ ସଂହରି
ନୀଳେନ୍ଦ୍ରି କନ୍ୟାକୁ ଯାଇ ଆଣିଲେ ମୁରାରୀ ।
କନ୍ୟା ଘେନି ଆସି ବିଜେ ଗରୁଡ଼ ପିଠିରେ
ଗରୁଡ଼ ପିଠିରେ ବିଜେ କଲେ ଦାମୋଦରେ ।
ତାହା ଦେଖି ଭାଳନ୍ତି ଯେ ମନେ ମୁନିବର
କି ବୋଲି ବୋଲିବେ ମୋତେ ତ୍ରିପୁରାନ୍ତହର ।
ବ୍ରହ୍ମହତ୍ୟା କରି ହର ଗଲେ ତପ କରି
କାର୍ତ୍ତିକକୁ ସମର୍ପିଲେ ମୋର କର ଧରି ।
ବୋଇଲେ ଲାଗଇ ତୋତେ ଏହା ପାପପୁଣ୍ୟ
ଦେବଙ୍କର ଉପରେ ତୁ ଦେବରଷି ପୁଣ ।
ଏସନକ ବୋଲି ମୋତେ ଗଲେ ଏ ଲୋଚନ
ଏବେ ମୋହର ଦେଖନ୍ତେ କାର୍ତ୍ତିକ ନିଧନ ।
ଏହା କିମ୍ପା ନ କହିବ ଈଶ୍ୱରଙ୍କ ଆଗେ
କେମନ୍ତେ ବଞ୍ଚିବି ମହାଯୋଗୀଙ୍କର ଆଗେ ।

ଏତେ ବୋଲି ମନଦଣ୍ଡ ଉଡ଼ାଇଲେ ଖରେ
ପ୍ରବେଶ ହଟକେଶ୍ୱର ପୁରେ ମୁନିବରେ ।
ନାରଦଙ୍କୁ ଈଶ୍ୱର ଯେ ଦେଖି କଲେ ପୂଜା
ମଣିମୟ କଙ୍କଣ ଯେ ଅଷ୍ଟରତ୍ନ ଖଞ୍ଜା ।
କୁଣ୍ଡଳ ଦେଇଣ ପୁଚ୍ଛାକଲେ ତ୍ରିଲୋଚନ
କୁଶଳ ବାରତା କହ ବ୍ରହ୍ମାଙ୍କ ନନ୍ଦନ ।
କ୍ଷେମେ ଅଛନ୍ତି କି କହ ମୋତେ ମୋର ପୁଣ
କଷ୍ଟ କାହାରି ମନରେ ନାହିଁ ତ କି ପୁଣ ।
ଉତ୍ପାତ ଅରିଷ୍ଟ କିଛି ନାହିଁ ନା ଭୁବନେ
କ୍ଷେମେ ଅଛନ୍ତି ଦେବତାମାନେ କି ଗଗନେ ।
କ୍ଷେମେ ବାସବ ଦେବତା କରୁଛି କି ବୃଷ୍ଟି
ଦୈତ୍ୟଦାନାବାଦି ଭୟ ନାହିଁ ତ ଅରିଷ୍ଟି ।
ପୃଥିବୀରେ ହେଉଛି ନା ଶସ୍ୟ ଉତପତ୍ତି
ଭଲେ ଅଛନ୍ତି କି ମୋର ସ୍କନ୍ଦ ଗଣପତି ।
ଶୋକ ଗଦଗଦ ସ୍ୱରେ ବୋଲନ୍ତି ନାରଦ
କାର୍ତ୍ତିକେଶ୍ୱରଙ୍କୁ ତୋର ପଡ଼ିଲା ପ୍ରମାଦ ।
ଈଶ୍ୱର ବୋଇଲେ ମୁନି ଦୁର୍ଲ୍ଲଭ କହିଲୁ
ପରମାନନ୍ଦକୁ ମୋର କାହିଁ ହରାଇଲୁ ।
ଏଡ଼େ ଶତ୍ରୁପଣ ନେଇ କାହିଁ କରାଇଲୁ
ତାରକାଜିତକୁ ମୋର କାହିଁ ନିର୍ବାସିଲୁ ।
ଯାହାର ବାହୁରେ ଦେବ ସ୍ୱର୍ଗେ ସୁସ୍ଥେ ରହି
ତାକୁ ମାରିବାକୁ କେହୁ ଉପୁଜିଲା ମହୀ ।
ନାରଦ କହିଲେ ତୁମ୍ଭେ ଶୁଣ ଆଦିକର୍ତ୍ତା
ବାଳକାଳେ ବରିଲୁ ତୁ ବରୁଣ ଦୁହିତା ।
ବଳରାମ ପୁତ୍ରକୁ ବରିଲା ସେ ବରୁଣ
ତାର ବିଭାକାଳେ ଯାଇ ତୋହାର ନନ୍ଦନ ।
ଆନନ୍ଦାନନ୍ଦର ଶିର ଛେଦି ଖଡ଼ଗରେ
କନ୍ୟାଘେନି ଆସିଥିଲା କପିଳାସପୁରେ ।
ସୈନ୍ୟ ଘେନି ଘୋଡ଼ାଇଲେ କୃଷ୍ଣକାମପାଳ
ମୂଷଳ ଘେନି ମାଇଲେ ତୋହର ଯେ ବାଳ ।
ଚଉଦକୋଟି ଯେ ଶିବଗଣଙ୍କୁ ସଂହାରି
ନୀଳେନ୍ଦ୍ରି କନ୍ୟାକୁ ନେଲେ ଜଳେଶ୍ୱରପୁରୀ ।
କାର୍ତ୍ତିକ ନିଧନ ଶୁଣି ଦେବ ଶୂଳଧର
ଅଶ୍ରୁଜଳ ନୟନରୁ ବହେ ଝର ଝର ।
ପାଇଲେ ବହୁତ ଦୁଃଖ ଦେବ ତ୍ରିପୁରାରି
ଶୋକଜଳେ କାର୍ତ୍ତିକେୟ ଗୁଣମାନ ସ୍ମରି ।
ଆହା ପୁତ୍ର ସ୍କନ୍ଦରେ ତୁ ମଣିଭଦ୍ରା ସରି
ଦେବତାଙ୍କୁ ରଖିଲୁ ତୁ ତାରକାକୁ ମାରି ।
ତ୍ରୈଲୋକ୍ୟ ଅସଂଖ୍ୟ ଯାର ଅଟେ ପରାକ୍ରମ
ବାରେ ଉପେକ୍ଷା ନ କଲେ ତାକୁ ବଳରାମ ।

କରନ୍ତି ରୋଦନ ପୁତ୍ରକଷ୍ଟ ଶୂଳଧାରୀ
ନାରଦ ତାହାକୁ ବହୁ ସମାଜ୍ଞନା କରି ।
ବଡ଼େ ବଡ଼ ଦୋଷ କିମ୍ବା ସହିବି ତାଙ୍କର
ଅସଂଖ୍ୟ ଦୋଷ କଲେଣି ସେମାନେ ମୋହର ।
ଗଣପୁତ୍ରମାନଙ୍କୁ ସେ ମାଇଲେକ ରୋଳେ
ତୋତେ କି ମାରନ୍ତେ ଥିଲେ ମୁହିଁ ଯୁଦ୍ଧକାଳେ ।
ନାରଦ ବୋଇଲେ ଯାହା କହେ କାମପାଳ
ତା ତହୁଁ ଅଧିକ ତେଜବୀର୍ଯ୍ୟ ନନ୍ଦବାଳ ।
ଜଗତଜନେ ତାହାର ଦୁଷ୍ଟପଣ ଜାଣି
ତୋର ତୁଲେ ଦ୍ୱନ୍ଦ୍ୱ ଆସି କରେ ପୁଣି ପୁଣି ।
ଭାରାଭାର ନିବାରି ତୁ ପାରୁ ବିଶ୍ୱେଶ୍ୱର
ତ୍ରିପୁରା କନକ ନାମେ ନାଶିଲୁ ଅସୁର ।
ତୋତେ କାହୁଁ ଜିଣିବେ ସେ ହଳୀଜଗନ୍ନାଥ
କୈଳାସବାସୀ ବୋଇଲେ କହିଲ ଯଥାର୍ଥ ।
ସକଳ ପୁରକୁ ତୁହି ଭ୍ରମିଯାଉ ନିତ୍ୟେ
ଏବେ ସେ ଜାଣିଲି ଥାଉ ତୁହି ଆମ୍ଭ ହିତେ ।
ନାରଦ ବଚନ ଶୁଣି ପାର୍ବତୀଙ୍କ ବର
ପଞ୍ଚବଦନ ମଉଳି କମ୍ପେ ଥରହର ।
ନନ୍ଦିକେଶ୍ୱରକୁ ଆଜ୍ଞା ଦେଲେ ଦେବହର
ବୃଷଭ ବାହନ ମୋର ବେଗେ ସଜକର ।
ମାରିବଇଁ ଯଦୁବଂଶ କାହ୍ନୁ ଶଙ୍କର୍ଷଣ
ଯାବତ ଚନ୍ଦ୍ରାର୍କେ କଥା ରହିଥିବ ଜାଣ ।
ମୃଗସେନ ବସୁବୀର ଏ ଦୁଇ ରାଜନ
ଈଶ୍ୱରଙ୍କୁ ସେବା କରୁଥାନ୍ତି ପ୍ରତିଦିନ ।
ବରମାଗ ବୋଲି ତାଙ୍କୁ ବୋଇଲେ ତ୍ରିଶୂଳି
ସେ ବେନି ଦୈତ୍ୟ ବୋଇଲେ ଶୁଣ ହେ କପାଳି ।
ଶ୍ରୀହରି ଅଟନ୍ତି ସିନା ଆମ୍ଭର ବଇରୀ
ତାହାଙ୍କୁ ସଂଗ୍ରାମେ ଆମ୍ଭେ ଜିଣିବାନା ଧରି ।
ଏସନକ ବର ଦିଅ ସ୍ୱାମୀ କୃତ୍ତିବାସ
ଧୂର୍ଜଟି ବୋଇଲେ ତୁମ୍ଭେ ଆମ୍ଭ ସଙ୍ଗେ ଆସ ।
ତୁମ୍ଭରି ଆସେ ତାହାକୁ କରିବଇଁ ନାଶ
ଆମ୍ଭର ବଇରୀ ହେଲେ ଯିବେ ଯମପାଶ ।
ଅନେକ କାଳରୁ ସେବା କରିଛ ଆମ୍ଭଙ୍କୁ
ତାହାଙ୍କୁ ଧରିଣ ଦେବା ଆମ୍ଭେ ଯେ ତୁମ୍ଭଙ୍କୁ ।
ଶିବଙ୍କର ଆଜ୍ଞା ପାଇ ରାଜା ବସୁବୀର
ଅଷ୍ଟକୋଟି ଯୋଦ୍ଧା ସେହୁ ଘେନି ସଙ୍ଗତର ।
ପାଞ୍ଚକୋଟି ଯୋଦ୍ଧା ମୃଗସେନ ସଙ୍ଗେ ଘେନି
ଦୁଷ୍ଟ ରାଜାଙ୍କର ତାର କୋଟି ଯେ ସଇନି ।
ଆଣିଲା ନନ୍ଦିକେଶ୍ୱର ବୃଷଭକୁ ଡାକି
ବିବିଧ ରଙ୍ଗରେ ଘଣ୍ଟି ଘାଗୁଡ଼ି ସଜାଇ ।

ବୃଷଭ ପିଠିରେ ବିଜେ ଦେବ କାଶୀବାସୀ
ପାତାଳ ଭୁବନ ଦେବ ବିଜେ କରି ଆସି ।
ତେରଲକ୍ଷ ଡମ୍ବରୁ ଯେ ତିନିପୁର ତ୍ରାସି
ନାରଦଙ୍କୁ ବୋଲନ୍ତି ଯେ ଦେବ ବିଶ୍ୱାବସୀ ।
ଯେବଣଠାରେ ମୋହର ପୁତ୍ର ପଡ଼ିଅଛି
ତହିଁକି ବାଟ କଢ଼ାଅ ବ୍ରହ୍ମାଙ୍କର ବତ୍ସ ।
ନାରଦ ବୋଇଲେ ତୋର ପୁତ୍ରଙ୍କୁ ଦେଖନ୍ତେ
ହସ୍ତପାଦ ନ ଚଳିବ ନିଜ ପ୍ରାଣ ଥାନ୍ତେ ।
ଯେବଣ ଠାରେ ଅଛନ୍ତି ହରି ବଳରାମ
ତାହାଙ୍କର ସଙ୍ଗେ ତୁମ୍ଭେ କରିବ ସଂଗ୍ରାମ ।
ଈଶ୍ୱର ବୋଇଲେ ମୁନି କହିଲ ଯଥାର୍ଥ
ଆଗ କଷ୍ଟ ପାଇକିନା ଦେଖି ପୁତ୍ର ହତ ।
କେବଣ ଠାବେ ଅଛନ୍ତି ବସୁଦେବ ସୁତେ
ତହିଁକି ବାଟ କଢ଼ାଇ ନିଅ ତପୋବନ୍ତେ ।
ହରଷରେ ଆଗୁସରି ଯାନ୍ତେ ତପୋନିଷ୍ଠ
ଚନ୍ଦ୍ରଭାଗା କୂଳେ ହେଲା ଧୂର୍ଜଟିର ଭେଟ ।
ଅନ୍ତର୍ଦ୍ଧାନ ହୋଇ ତହୁଁ ଗଲେ ମହାମୁନି
ରାମକୃଷ୍ଣଙ୍କର ସନ୍ନିଧିରେ ବିଜେ ପୁଣି ।
ଦେଖିଣ ପୁଚ୍ଛିଲେ ସ୍ୱାମୀ ଶ୍ରୀମଧୁସୁଦନ
ଭିଆଇ ଆଇଲ କିସ ବ୍ରହ୍ମାଙ୍କ ନନ୍ଦନ ।
ହଳୀମୁଖ ଚାହିଁ ମୁନି ବଚନ ବୋଇଲେ
ଯୁଦ୍ଧ କରିବାକୁ ଦେବ ଈଶ୍ୱର ଅଇଲେ ।
ମୃଗସେନ ବସୁବୀର ଏ ଦୁଇ ରାଜନ
ଅଞ୍ଜ ଦୈତ୍ୟର ସେହି ଅଟନ୍ତି ନନ୍ଦନ ।
ଈଶ୍ୱରଙ୍କ ବରପାଇ ସେ ବେନି ଦନୁଜ
ଘୋର ସଂଗ୍ରାମ କରିବେ ବହି ମହାତେଜ ।
ନାରଦ ବଚନେ ରାମ କ୍ରୋଧରେ ପ୍ରଜ୍ୱଳ
ହସ୍ତେ ତୋଳି ବୁଲାଇଲେ ଲଙ୍ଗଳ ମୂଷଳ ।
କୋଟି କୋଟି ସିଂହ ପ୍ରାୟ ଯାର ପରାକ୍ରମ
ଗଣ୍ଡାଏ ଯୁଗ ଯାହାର ନିମିଷକେ ଭ୍ରମ ।
ନିରାକାର ପୁରୁଷ ସେ ନାହିଁ କୁଳଗୋତ୍ର
ଶିରରେ ସପତଫେଣୀ ଧବଳିତ ଗାତ୍ର ।
କାଦମ୍ବରୀ ପାନେ ସ୍ୱାମୀ ଅହର୍ନିଶ ଭୋଳା
ପରମ ଯୋଗୀ ଜ୍ଞାନ ସେ ନିରାକାର ବଳା ।
ଘୋର ନାଦ କରି ରାମ ଦେଲେ ସିଂହରଡ଼ି
ମେରୁ କନ୍ଦର ପର୍ବତ ପଡ଼ିଲାକ ଝଡ଼ି ।
ଉପରୁ ଉଲକାପାତ ହେଲା ଘନ ଘନ
ପୃଥିବୀ କମ୍ପିଲା ବଜ୍ର ପଡ଼ିଲା ସମାନ ।
ଦଶଦିଗ କମ୍ପିଗଲା ସ୍ୱର୍ଗ ବଜ୍ରଧାରୀ
ସିନ୍ଧୁଘୋଷ ପ୍ରାୟ ଶୁଭେ ନାଦ ଦିଗ ଚାରି ।

ସଦାଶିବ ବିଜେ ହେଲେ ତହିଁ ମହାଯତି
କୃଷ୍ଣ ବଳରାମ ହେଲେ ଦକ୍ଷିଣ ମୁରତି ।
ରାମଙ୍କୁ ହିଁ ତିଆରନ୍ତି କମଳା ରମଣ
ଈଶ୍ୱରଙ୍କୁ କୋପ ଦେବ ନ କରିବୁ ପୁଣ ।
ମୁହିଁ ଆଗ ଯାଇ ବାରେ ପଚାରଇ କଥା
ଅନାଦି ନାଥ କିମ୍ପାଇ ପାଇବେ ସେ ବ୍ୟଥା ।
ନାରଦ ବହୁତମତେ କରିଛନ୍ତି ଦ୍ୱନ୍ଦ୍ୱ
ଯାହାଙ୍କ ବଚନେ ଆସିଛନ୍ତି ସଦାନନ୍ଦ ।
ଆବର ମରିଛି ତାଙ୍କ ତନୟ ସେ ସ୍କନ୍ଦ
ତେଣୁ ବିଶ୍ୱନାଥଙ୍କର ବଢ଼ିଅଛି କ୍ରୋଧ ।
କୋପ ଶାନ୍ତି କରିବାନା ଯୁଗଧାରୀ ମଲ୍ଲ
କଳି ଦ୍ୱନ୍ଦ୍ୱ ନୋହୁ ନାଥ ସବୁ ହେଉ ଭଲ ।
ଏତେକ କହି ରାମକୁ ତିଆରି ମୁରାରି
ସଦାଶିବ ସନ୍ନିଧିକୁ ଗଲେ ମଧୁହାରୀ ।
ଯଦୁ ଭୋଜବଂଶେ ପଛେ ଅଛନ୍ତି ଉଭାରି
ରଥ ରଥୀ ଗଜ ଅଶ୍ୱ ସୈନ୍ୟ ପଟୁଆରୀ ।
ବାଜଇ ଅନେକ ଢୋଲ ଦମା ଶଙ୍ଖ ବାଦ୍ୟ
ରଥ ଗଜ କିବା ତହିଁ ଅଗାଧ ସମୁଦ୍ର ।
ଶସ୍ତ୍ରମାନ ନିନ୍ଦୁଛନ୍ତି ରବିର କିରଣ
ବୃଷଭ ପିଠିରେ ବିଜେ ପନ୍ନଗ ଭୂଷଣ ।
ପଞ୍ଚମୁଖରେ ମଉଳି ଘୋଟେ କି ଗଗନ
ଶିରେ ଜଟାଜୁଟ ଅଙ୍ଗେ ପାଂଶ ବିଲେପନ ।
ଖଟ୍ୱାଙ୍ଗ ପିନାକ ଧନୁ ତ୍ରିଶୁଳ ଶକତି
ଭସ୍ମ ଆଭରଣ ନାଥ ଚନ୍ଦ୍ର ମୌଳି ମୂର୍ତ୍ତି ।
ଦେଖି ମାଧବ ଗରୁଡ଼ ପିଠିରୁ ଓହ୍ଲାଇ
ପାଦ୍ୟ ଅର୍ଘ୍ୟ ଘେନି ନାଥ ବେଗେ ଚଳିଯାଇ ।
ଯେବଣ ଠାବେ ଅଛନ୍ତି ଅନାଦି ଗୋସାଇଁ
ଅର୍ଘ୍ୟ ପୂଜା ଦେଇ ଦୁରୁ ଓଳଗି ମେଲାଇ ।
ଯେସନେକ ଘୋଟେ ରାହୁ ଯାଇ ନିଶାକର
କୋପେ ଉତ୍ତର ଦିଅନ୍ତି ଉମାଦେବୀ ବର ।
ଆରେ ଆରେ ଗଉଡ଼ ତୁ ଏଡ଼େ ବଡ଼ ଜଣ
ମାନବ ରୂପରେ ମର୍ତ୍ତ୍ୟେ ଜନମିଲୁ ପୁଣ ।
ମାଇଲୁ ତୁ ବିଶ୍ରବାର ନନ୍ଦନ ରାବଣ
ମୁଖ ତୋଳି ନ ଚାହିଁଲେ ତୋତେ ଦେବଗଣ ।
ପ୍ରତ୍ୟକ୍ଷେ ତୁ ବ୍ରହ୍ମହତ୍ୟା କଲୁରେ ଅଜାତି
ପାଇଲୁ ତୁ ଦେବସଭା ମଧ୍ୟେ ଅପଖ୍ୟାତି ।
ଦ୍ୱାପରେ ଜାତ ହୋଇଲ ବସୁଦେବ ଘରେ
ପୁତନାକୁ ବଧିଲୁ ତୁ ସ୍ତନପାନ କ୍ଷୀରେ ।
ସ୍ତିରୀହତ୍ୟା କେମନ୍ତେ ତୁ କରୁରେ ପାମର
ଅବଧ୍ୟ ଷଣ୍ଢ ମାଇଲୁ ପଶି ଗୋଗୋଷ୍ଠର ।
ଗୌରବ ସ୍ତିରୀଙ୍କ ସଙ୍ଗେ ଆଚରିଲୁ କାମ
ଗଉଡ଼ ବାଉଡ଼ ପୁଣି ହାଉଡ଼ ତୋ ନାମ ।
ଏଡ଼େ ପାପ କରି ମୂଢ଼ ଅଛୁ ଦେହବହି
ଯାମଳା ଭାଙ୍ଗି ଭୋଜନ କଲୁ ତୁରେ ଦହି ।
ଈଶ୍ୱର ବୋଲନ୍ତେ ହରି ନ ପାରିଲେ ସହି
କୋପେ କମ୍ପିଲେ ଯେସନେ ହୁଏ କାଳ ଅହି ।
ବୋଲନ୍ତି ଗୋବିନ୍ଦ ସ୍ୱାମୀ କୋପେ ପରଶଂସି
ପରକୁ ଧିକ୍କାର ଆପେ ହୋଇ ମହାଦୋଷୀ ।
ତୁମ୍ଭେ ଯେ ବୋଇଲ ସ୍ୱାମୀ ଗଉଡ଼ ବାଉଡ଼
ଯୋଗୀ ତପସ୍ୱୀ ଆମ୍ଭେ ତ ନୋହୁ ନା ରାଉଳ ।
ତୁମ୍ଭେ ଯେ ବୋଇଲ ମୋତେ ବ୍ରହ୍ମହତ୍ୟା କଲୁ
ବିଶ୍ରମା ଋଷିର ପୁଅ ରାବଣ ମାଇଲୁ ।
ଦେବ ସଭା ମଧ୍ୟରେ ତୁ ଯଶ ନ ପାଇଲୁ
ଦେବଇନ୍ଦ୍ର ନ ଚାହିଁଲା ସ୍ୱର୍ଗେ ନ ରହିଲୁ ।
ସେ ରାବଣ କୁମ୍ଭକର୍ଣ୍ଣ କଲେ ଯେଉଁ କୃତ୍ୟ
ତୁମ୍ଭେ ଯେ ତାହା ଆଗରେ କରୁଥିଲ ନୃତ୍ୟ ।
ଲେପନ କରନ୍ତି ଚତୁଃସମ ବେଦବର
ତାଳ ଧରି ଗାଉଥାନ୍ତି ଗନ୍ଧର୍ବ କିନ୍ନର ।
ବୈଶ୍ୱାନର ଅନଳରେ ଧୁଅନ୍ତି ତା ଲୁଗା
ମର୍ଦ୍ଦଳ ବଜାନ୍ତି ହୋଇ ଦିଗପାଳେ ପୁଙ୍ଗା ।
ଗତିକି ନିଶାଣ ଜାଣି ଦିଅନ୍ତି ବିଧାତା
ସର୍ବଦା ହିଁ ଖଟିଥାନ୍ତି ଇନ୍ଦ୍ରର ବନିତା ।
ଦେବରଷି ବଖାଣନ୍ତି ପୁରାଣ ବାରତା
ବିନାୟକ ଭାଟଶୁଣେ ଥାଇଟି ସର୍ବଥା ।
ବୃହସ୍ପତି କହୁଥାଇ ଗ୍ରହଯୋଗ କଥା
ମେଘମାନେ ପଖାଳନ୍ତି ନିତି ତାର ମଥା ।
ସଂଯମନୀ ନାଥ ଥାଇ ବୈଦ୍ୟପଣେ ଖଟି
କୁବେର ସଭା ମଣ୍ଡପେ ଦିଏ ଝାଟିମାଟି ।
ଆବର ଯୋଗାଇ ଦିଏ ନେଇ ଦାନ୍ତକାଠି
ଦ୍ୱାଦଶ ଆଦିତ୍ୟ ତେଜେ ଜଗତୀକି ଉଠି ।
ବଳେ ହରିନେଲା ସେହି ଦେବକନ୍ୟାମାନ
ସବୁ ନେଇ ଭୋଗ କଲା ଅଳଙ୍କାର ଧନ ।
ମୋହର ପତ୍ନୀ ସୀତାକୁ ନେଲା ପୁଣି ଧରି
ସେ ଦୋଷେ ମାଇଲି ମୋର ସେ ଦାରାବଇରି ।
ସଂଗ୍ରାମରେ ଗୋ ବ୍ରାହ୍ମଣ ଶିରଚ୍ଛେଦ କରି
ବ୍ରହ୍ମହତ୍ୟା ଦୋଷ ମୋତେ ଦେଲେ ନ ବିଚାରି ।
ତୁ ପୂର୍ବେ ବ୍ରହ୍ମାଙ୍କୁ ଦେବ ମହାକୋପେ କଲୁ
ଚାପୋଡ଼େ ମାରି ତାହାର ଶିର ଛିଣ୍ଡାଇଲୁ ।
ସାକ୍ଷାତେ ତୁ ବ୍ରହ୍ମହତ୍ୟା କଲୁ ମହାଭୋଳେ
ଅଦ୍ୟାପି ହସ୍ତରେ ତୋର ଲାଗିଛି କପାଳେ ।

ସେ ମୁଣ୍ଡ ଗୋଟିଏ ତୁ କି ନ ଦେଖୁଛୁ ଡୋଳେ
ତୁ ସେ ବ୍ରହ୍ମହତ୍ୟା ପାପୀ ସିନା କାଳେ କାଳେ ।
ମୋତେ ବୋଲିବାକୁ କିମ୍ପା ନ ପାଇଲ ଲାଜ
ସ୍ତିରୀହତ୍ୟା କଲି ବୋଲି କହିଲୁ ତୁ ଆଜ ।
ତହିଁର ଚରିତ ତୁ କି କର୍ଣ୍ଣେ ନାହୁଁ ଶୁଣି
କହିବା ସେ କଥା ଏବେ ଶୁଣ ଶୂଳପାଣି ।
ମାୟା ରୂପରେ ଅଇଲା କଂସର ଭଉଣୀ
ବେନି ସ୍ତନେ ବିଷଭରି ଆସିଥିଲା ପୁଣି ।
ମୋତେ ମାରିବା ନିମନ୍ତେ କରିଥିଲା ଛନ୍ଦ
ତାହାକୁ ମାଇଲି ମୋତେ ହୋଇଲା ଯେ ମନ୍ଦ ।
ଗୋହତ୍ୟା କଲି ବୋଲି ଯେ ବୋଇଲୁ ତୁ ହର
ତାହା କିଛି ନ ଜାଣୁ କି ଅନାଦି ଈଶ୍ୱର ।
ନାନା ରୂପ ଧରି ତହିଁ ଅଇଲେ ଅସୁରେ
ଯାମଳା ଶକଟା ବକା ଅଘା ସ୍ୱରୂପରେ ।
ଷଣ୍ଢରୂପୀ ଦଇତ୍ୟକୁ ମାଇଲି ମୁଁ ଧରି
ତହିଁକି ଗୋବଧ ଦୋଷ ଦେଲୁ ନ ବିଚାରି ।
ତୋହାର ଗୋବଧ ଦୋଷ କହିଣ ନ ଯାଇ
ସତ୍ୟଯୁଗ କଥା ଏବେ ଦେଉଛି ଚେତାଇ ।
ଯୋଗଲୟେ ବସିଥିଲୁ ତୁ ମେରୁ ଶିଖରେ
ବେଦମାତା କପିଳା ଯେ ଥାଇ ସେଠାବରେ ।
ତାହାର ବାଛୁରୀ ବୁଲି ବୁଲି ଯେ ଆସନ୍ତେ
କୁଶବିଡ଼ା ଭକ୍ଷିଲା ଯେ ଆହାର ନିମନ୍ତେ ।
ଅଳପ ଦୋଷେ ବହୁତ କୋପ ତୁ ଯେ କଲୁ
କପିଳା ଗାଈର ଅଙ୍ଗେ ତ୍ରିଶୂଳ ମାଇଲୁ ।
ଗୋମାତାର ଶିର ଦେବ ଛେଦି ପକାଇଲୁ
ମୋତେ ବୋଲିବାକୁ କିମ୍ପା ଲାଜ ନ ପାଇଲୁ ।
ଭଇରବ ମୁରତି ତୁ ଧଇଲୁ ହେ ହର
ସେ ମୁଣ୍ଡଗୋଟି ଲାଗିଛି କପାଳେ ତୋହର ।
ତୁ ପୁଣି ବୋଇଲୁ ମୋତେ ଦେବ ଶୂଳପାଣି
ଗୋପରେ ହରିଲୁ ତୁହି ସର୍ବ ଗୋପାଳୁଣୀ ।
ମାନିତା ଅଟନ୍ତି ସେ ଯେ ହେବେ ମଉଳାଣୀ
ତାହାଙ୍କୁ ରମିଲି ଯହୁଁ ଦେଲେ କୁଶପାଣି ।
କୃଷ୍ଣ ଅବତାରେ ମୋତେ କରାଇଲେ ଜାତ
କଂସର ବଧ ନିମନ୍ତେ ଗୋପରେ ଉଦିତ ।
ଅନନ୍ତ ଶଯ୍ୟାରେ ମୋତେ ଦେବେ ସ୍ତୁତି କଲେ
ବ୍ରହ୍ମା ଇନ୍ଦ୍ର ସହିତରେ ଏହା କହିଗଲେ ।
ଷୋଳସସ୍ର ଗୋପକନ୍ୟା ରମିବି ବୋଇଲେ
ଗୋପପୁରେ କନ୍ୟାଗଣ ଜାତ କରାଇଲେ ।
ଗୋପୀଙ୍କି ହରିଣ ମୁହିଁ କଲି ଦେବକାର୍ଯ୍ୟ
ଏଥକୁ ଝିଙ୍ଗାସ ମୋତେ କଲୁ ଦେବରାଜ ।

ତ୍ରିପୁର ବଧ କାଳେ ତୁ କଲୁ ଯେତେ ରୀତି
କହିଲେ ଯେ ନ ସରଇ ତୋହର ଅନୀତି ।
କେତୁକା ନାମେ ଯେ ଦେବୀ ଅନାଦି ଶକତି
ଆମ୍ଭର ଜନନୀ ସେହି ଅଟେ ମହାସତୀ ।
ତାହାଙ୍କ ଗର୍ଭୁ ଜନ୍ମିଲୁ ଆମ୍ଭେ ତିନିମୂର୍ତ୍ତି
ହରିହର ବ୍ରହ୍ମାନାମେ ଲୋକେ ହେଲୁ ଖ୍ୟାତି ।
ତୁ ଦେବ ତାହାକୁ ପୁଣି ହରିଲୁ କେମନ୍ତେ
ମାତୃହରଣ ଦୋଷ କି ନ ଲାଗିଲା ତୋତେ ।
ପାର୍ବତୀ ଯେ ବାଟଚାହିଁ ପଶିଲା ବହନି
ପ୍ରାଣ ବିସର୍ଜିଲା ତୋତେ ନ ଦେଖି ଭବାନୀ ।
ତୁହି ସେ ସକଳ ପାପ କରିଅଛୁ ଭଣ୍ଡ
ଗଳାରେ ଅଛି ତୋହର ପାର୍ବତୀର ମୁଣ୍ଡ ।
ତୁ ଯେ ସ୍ତିରୀହତ୍ୟା ପାପ କଲୁ ସାକ୍ଷାତରେ
ଆପେ ଯେ ଅନୀତି କରୁ ନିନ୍ଦାକରୁ ପରେ ।
ମାତାଙ୍କ ଦୋଷ କହନ୍ତେ ପାର୍ବତୀଙ୍କ ବର
ତ୍ରିଶୂଳ ପିଟିଲେ ନେଇ ଶ୍ରୀକୃଷ୍ଣ ଉପର ।
ମୂର୍ଚ୍ଛାଯାଇ ପଡ଼ିଲେକ ତହିଁ ଦେବ ହରି
ତା ଦେଖି କୋପେ ଧାଇଁଲେ ଦେବହଳଧାରୀ ।
ଗରୁଡ଼ ପିଠିରେ ନେଇ ଶୁଆଇଲେ ହରି
ସୌନନ୍ଦ ମୂଷଳ ରାମ ବେନିଭୁଜେ ଧରି ।
ସଦାନନ୍ଦଙ୍କ ଛାମୁରେ ମିଳିଲେ ସେ ଯାଇ
ନୀଳାମ୍ବର କୋପେ ଦେଖି ଈଶ୍ୱର ଗୋସାଇଁ ।
ଶକତିଏ ପ୍ରହାରିଲେ ରାମଙ୍କୁ ସେ ନେଇ
ମାରନ୍ତେ ଧଇଲେ ସେହି ଶକ୍ତି ହଳସାଇଁ ।
କ୍ରୋଧଭରେ ଶକତିକୁ ବୁଲାଇ ବୁଲାଇ
ସଦାନନ୍ଦଙ୍କୁ ମାଇଲେ ତାହା ଲେଉଟାଇ ।
ପ୍ରଚଣ୍ଡ ଶକତି ଦେଖି ଦେବ ତ୍ରିପୁରାରି
ଅବଲୀଳା କ୍ରମେ ସ୍ୱାମୀ ତ୍ରିଶୂଳେ ନିବାରି ।
ଶକତି ବିଅର୍ଥ ଦେଖି ରୋହିଣୀ ତନୟ
ପ୍ରଚଣ୍ଡ କାଳ ଅନଳ ଜାଣି ତେଜୋମୟ ।
ବାହୁଡ଼ି ଆସିବା ବେଳେ ଦେବ ଶୂଳହସ୍ତ
ସମର୍ଥକ ହଳକୁ ସେ କରି କରଗତ ।
ରୋଷେଣ ପିଟିଲେ ନେଇ ରେବତୀର ନାଥ
ତା ଦେଖି ବୃଷଭ ନେଇ ପାତିଲାକ ମାଥ ।
ଶତଖଣ୍ଡ ହଳ ହୋଇ ପଡ଼ିଲାକ ଝଡ଼ି
ମୁଦ୍‌ଗର ଧରି ପିଟିଲେ ହର ଛାଡ଼ି ରଡ଼ି ।
ପିଟନ୍ତେ ତା ସଂହାରିଲେ ରେବତୀର ପତି
ହୃଦରେ ପଡ଼ି ମୁଦ୍‌ଗର ଭାଙ୍ଗିଲା ତଡ଼ତି ।
ସହସ୍ରକ ଶର ହର ଗୁଣରେ ବସାଇ
ନୀଳାମ୍ବର ଉପରକୁ ବିନ୍ଧିଲେ ନିଠାଇ ।

ନୀଳାମ୍ବରଙ୍କ ଉପରେ ପଡ଼ିଲା ନାରାଚ
ତିଳେ ନ ଭେଦି ପଡ଼ନ୍ତି ପାଇଣ ଶଙ୍କୋଚ ।
ବିନ୍ଧିଲେ ପୁଣି ଲକ୍ଷେକ ଶର ତ୍ରିଲୋଚନ
ବଳରାମ ଦେହେ ପଡ଼ି ହୋଇଲା ଦହନ ।
ପୁନରପି କୋଟି କୋଟି କଲେ ଶରବୃଷ୍ଟି
ଦହିଲେ ତା ବଳରାମ ଚାହିଁ କୋପଦୃଷ୍ଟି ।
ନୀଳାମ୍ବର ହୃଦେ ଯହୁଁ ନ ଭେଦିଲା ଶର
ପେଶିଲେକ ଦେବ ଅସ୍ତ୍ରମାନ ଦେବ, ହର ।
କୋପେ ପର୍ବତା ଶରକୁ ପେଶନ୍ତି ଶଙ୍କର
ତ୍ରୈଲୋକ୍ୟ ଭେଦିଲା ସେହି ମହା ଭୟଙ୍କର ।
ଦେଖି ବକ୍ଷସ୍ଥଳ ପାତିଦେଲେ ଦେବହଳୀ
ହୃଦେ ପଡ଼ି ସେ ପର୍ବତ ହୋଇଗଲା ଧୂଳି ।
ପବନ ଶର ମାଇଲେ ଏ ପୁର ଅନ୍ତକ
ଦଗ୍ଧ ହେଲା ପାଇ ରାମ ଚକ୍ଷୁର ଆଲୋକ ।
ଅଗ୍ନିବାଣ ମାଇଲେ ଯେ ପୁଣି ଉମାକାନ୍ତ
ଲାଗିଲା ସେ ବହ୍ନିଜ୍ୱାଳା ଆକାଶ ପର୍ଯ୍ୟନ୍ତ ।
ସଂସାର ଦହିବ କିବା ଏ ପ୍ରଳୟ କାଳ
ଶଷ୍ପ ଦେଖି ଦେବଲୋକ ହୋଇଲେ ବିକଳ ।
ସ୍ତୁତି କରିଣ ବୋଲନ୍ତି ସ୍ୱର୍ଗେ ସୁରଗଣ
ଅନଳ ନୟନ ବାଣ କର ସଂହାରଣ ।
ଦେବଲୋକଙ୍କ ବ୍ୟାକୁଳ ଦେଖି ସଙ୍କର୍ଷଣ
ଆକର୍ଷି ଅନଳ ବାଣ କଲେ ସଂହରଣ ।
ଅଗ୍ନି ବିନାଶ ହେବାର ଦେଖି ପଶୁପତି
ପରଶୁ କଠୋର ଘେନି ମାରନ୍ତି ବିକୋତି ।
ବଇଷ୍ଣବ ମୂର୍ତ୍ତି ତହିଁ ଧଇଲେକ ରାମ
କୋଟି କୋଟି ସିଂହ ପ୍ରାୟ ଯାର ପରାକ୍ରମ ।
ତାହାର ତୁଲେ କେ ରହି କରିବ ସଂଗ୍ରାମ
ଯାହାର ମହିମା ଦେବ ଦାନବେ ଅଗମ୍ୟ ।
ଈଶ୍ୱର ତୁଲେ ରାମର ଯୁଦ୍ଧ ଅଗୋଚର
ଆନ କେ ରହିବ ରଣେ ତାହାର ଆଗର ।
ପରମ ଯୋଗ ଲୟରେ ଯାର ମୂଳବନ୍ଧ
ତାହାଙ୍କୁ ସମ ନୁହନ୍ତି ଦେବ ସଦାନନ୍ଦ ।
ଦୁଇଜଣ ଏକମୁଖେ କରୁଛନ୍ତି ଦ୍ୱନ୍ଦ୍ୱ
ଆକାଶେ ଥାଇ ଦେଖନ୍ତୁ ବୃନ୍ଦାରକ ବୃନ୍ଦ ।
ଅଲଙ୍ଘ୍ୟ ବାଣ ମାଇଲେ ସଦାଶିବ ନେଇ
ତାଳଧ୍ୱଜ ରଥୁଁ ରାମ ପଡ଼ିଲେକ ଡେଇଁ ।
ଯେସନେକ ମତ୍ତଗଜ ଗମଇ ମହୁରେ
ବିକ୍ରମି ଉଠିଲେ ଯାଇ ବୃଷଭ ପିଠିରେ ।
ମାଳବନ୍ଧେ ଶିବଙ୍କୁ ସେ ଧରି ବାମକରେ
ବିନ୍ଧାଣ ରୀତିରେ ତହିଁ ପଶିଲେ ସମରେ ।
ଧରା ଧରି ମରାମରି ପାଦେ ପ୍ରହାରନ୍ତି
ଏକକୁ ଆରେକ କେହି ଶଙ୍କା ନ କରନ୍ତି ।
ଅଶେଷ ଶେଷ ଅଟନ୍ତି ସେହି ବେନି ଜନ
ମହାଯୋଗ ମୂରତି ସେ ଗଗନ ଶୋଭନ ।
ବର୍ଣ୍ଣରୂପେ ପ୍ରତ୍ୟକ୍ଷେ ସେ ଦେବ ନିରଞ୍ଜନ
ଅନାଦି ଯୋଗାଦି ଦ୍ୱିଲୋଚନ ତ୍ରିଲୋଚନ ।
ଅମର ପୁରୁଙ୍କର ଯୁଦ୍ଧେ ଅନ୍ୟୋଅନି
ଦେଖି ମହାଭୟ ପାଇ କମ୍ପଇ ମେଦିନୀ ।
ବିଚାରି ବୋଇଲା ଦେହ ଛାଡ଼ିବଇଁ ମୁହିଁ
ଏହାଙ୍କର ପାଦଘାତ କେ ପାରିବ ସହି ।
ବୃଷଭୁଁ ପଡ଼ିବେ ଯେବେ ହର କାମପାଳ
ଏ ମୋର ଦେହ ପଡ଼ିବ ଯାଇ ରସାତଳ ।
ଏସନ ବୋଲି କାନ୍ଦନ୍ତି ବେନି ବସୁମତୀ
ବୃଷଭର ମୁଖ ଚାହିଁ ବଖାଣନ୍ତି ସ୍ତୁତି ।
ଆହୋ ମହାବଳଦ ତୁ ଅଟୁ ଯୁଗପତି
ପ୍ରଚଣ୍ଡ ଅନଳ ଜାଣି ତୋହର ମୁରତି ।
ସଂସାର ମଣ୍ଡନ ହୁଏ ତୋର ପାଦତଳେ
ତ୍ରୈଲୋକ୍ୟ ତୁ ରଖିପାରୁ ତୋର ପାଦବଳେ ।
ତୋହର ଯେ ପରାକ୍ରମ ଦେବେ ଅଗୋଚର
ସମାନ ନୋହିଲା ତୋତେ ମେରୁ ଗିରିବର ।
ଯେବେ ପ୍ରକାଶ କରିବେ ବିଶ୍ୱରୂପ ହର
ମହାରୁଦ୍ରଙ୍କର ଦେହ ଦେବ ମହାଭାର ।
ଦେବାସୁର ବ୍ରହ୍ମରେ ସେ ନୁହଇ ଆୟତ୍ତ
ନିଃଶ୍ୱାସରେ ଉଡ଼ିଯିବେ ଯେତେକ ପର୍ବତ ।
ସତ୍ୟ ତ୍ରେତା ଦ୍ୱାପର ଯେ କଳି ଚାରିଯୁଗ
ଚଉସ୍ତରୀ ଗଣ୍ଡାରେଣ ମନୁ ଏକାଭୋଗ ।
ଚାରିକଳ୍ପେ ଏକଦିନେ ହୁଅଇ ଯେ ଯୋଗ
ଚଉଦ ମନୁରେ ଏକକଳ୍ପ ହୁଏ ଭୋଗ ।
ଏତେ କାଳେ ତୋ ବୟସ ଅଟେ ଚାରିଯୁଗ
ପରମ କାୟା ଯେ ତୋର ଦ୍ୱିତୀ ସଦାଶିବ ।
ମହାପ୍ରଳୟରେ ନ ତୁଟଇ ତୋର କାୟେ
ଅଦ୍ଭୁତେ ମୁଖରୁ ଶୁଭେ ଶବଦ ହେ ମାଏ ।
ନିଦ୍ରା ମଇଥୁନ ଆଦି ସର୍ବ କଲ ତେଜ୍ୟା
ରୋମକେ ଦେବତା ତୋତେ କରନ୍ତି ଯେ ପୂଜା ।
ଅନ୍ଧକ ଲୁଚିଲା ଯାଇ ମେରୁର ଭିତରେ
ଅଚଳ ପର୍ବତ ତୁହି ଖୋଳିଲୁ ଶୃଙ୍ଗରେ ।
ଅନ୍ଧକ ବାହାର ହେଲା ତୋ ଶୃଙ୍ଗରେ ଫୁଟି
ତ୍ରିଶୂଳ ପ୍ରହାର କରି ମାଇଲେ ଧୂର୍ଜଟି ।
ତୋତେ ଆଗେ ପୂଜା ତାହାପରେ ସଦାଶିବ
ତୋତେ ସେବାକଲେ ସଦା ହୁଅଇ ଯେ ଶିବ ।

ବୃଷଭ ଛୁଇଁଲେ ଦେବ ହୁଅଇ ମୁକତି
କୋଟିତୀର୍ଥର ଫଳକୁ ଜନମାନେ ପାନ୍ତି ।
ସଦାକାଳରେ ଈଶ୍ୱର ପାଦେ ତୋର ମତି
ଅନନ୍ତ କୋଟି ଶିବ ଯେ ତୁ ଏକ ମୂରତି ।
ନିଃଶ୍ୱାସ ପବନ ତୋର ଚନ୍ଦ୍ର ସୂର୍ଯ୍ୟେ ଆଖି
କୋଟିଏ ବ୍ରହ୍ମାଣ୍ଡ ତୋର ତେଜ ବିକାଶୁଛି ।
ଅଭୁତେ ବିଜୟ କରୁ ଛାଡୁ ମନଖେଦ
କପିଳାସ ଗିରି ତୋର ଜଳ ଅଙ୍ଗ ଭେଦ ।
ମନ୍ଦର ସମାନ ତୋର ବଢ଼ିଲାକ ମୂଳ
ସମସ୍ତେ ବୋଇଲେ ଏ ଅନାଦି ଯୋଗଫଳ ।
ମହାପ୍ରଳୟ କାଳରେ ତୁହି କଳ୍ପତରୁ
ସର୍ବଶସ୍ୟ ଚଳିଗଲା ତୋହର ମୁଖରୁ ।
କାଳକୂଟ କାମଦେବ ଭକ୍ଷିଲେକ ଯେବେ
ଧୂର୍ଜଟି ଘେନି ଗଙ୍ଗାରେ ପଶିଲୁ ତୁ ତେବେ ।
ଅନେକ ବାହନ ଚଢ଼ିଯାନ୍ତି ନାନାଦେବେ
ତୋହର ତୁଲ୍ୟରେ ପୂଜା ନ ପାନ୍ତି ସେ କେବେ ।
କାଳାନଳକୁ ନିନ୍ଦିଲା ତୋହର ସ୍ୱରୂପ
କାଳବଂଶ କରି କଲୁ ଶରୀରକୁ ଗୋପ୍ୟ ।
ତୋର ପିଠିରେ ଚଢ଼ନ୍ତି ଦେବଦେବ ଶୂଳୀ
ତୋହର ଶକ୍ତି କି ସହିପାରେ ମୋହଭଳି ।
ବଳରାମ ଈଶ୍ୱର ଯେ ଦୁହେଁ ମହାବଳୀ
ସହିବ କି ପଡ଼ିଲେ ସେ ମୋ ଉପରେ ଢଳି ।
ସଂଗ୍ରାମ ଦେଖି ମୋହର କମ୍ପୁଛି ହୃଦୟ
ନ ପୁଣ ମାଡ଼ି ବସନ୍ତି ମୋତେ ବେନିକାୟ ।
ତେଣୁ ଭୟ ବ୍ୟାକୁଳରେ କରୁଅଛି ସ୍ତୁତି
ବାରେ ରକ୍ଷାକର ମୋର ଘେନିଣ ଭକତି ।
ତାହାଙ୍କ ପଡ଼ନ୍ତେ ମୋର ଥିବ କି ଜୀବନ
ବାରେ ରକ୍ଷାକର ମୋତେ ଗୋକୁଳ ରାଜନ ।
ପୃଥିବୀ ବ୍ୟାକୁଳ ଦେଖି ବୃଷଭ ପ୍ରସନ୍ନ
ପିଠି ବିସ୍ତାରିଲା ଏକବିଂଶତି ଯୋଜନ ।
ତହିଁର ଉପରେ ରହି କରନ୍ତି ଯେ ଯୁଦ୍ଧ
ନାନା ଗତିରେ ବିନ୍ଧାଣ ବିଚିତ୍ର ପ୍ରବନ୍ଧ ।
ଭୁଜେ ଭୁଜ ଭିଡ଼ାଭିଡ଼ି ପାଦେ ଛନ୍ଦାଛନ୍ଦି
ବୃଷଭ ସହିଲା ମଲ୍ଲବିନ୍ଧା ଯୁଦ୍ଧ ବିଧି ।
ରୁଧିର ଗଳିଲା ତହୁଁ ରୋମେ ରୋମେ ଫୁଟି
କାହାର ହାତେ କାହାର ଜୀବନ ନ ତୁଟି ।
ଏକୁଁ ଏକ ମହାଯୋଦ୍ଧା ରୁଦ୍ର କାମପାଳ
ଅମର ପୁରୁଷ ଦେଖି ହେଲେ ଅସମ୍ଭାଳ ।
ଶିରେ ଶିର କୋଡ଼ାକୋଡ଼ି କରି ପରିତାଳ
ଉଠିଲା ବହନ ଜ୍ୱାଳା ପାଇଲା କି ଜଳ ।

ଆକାଶେ ଲାଗିଲା ଯାଇ ଅଗ୍ନି ତେଜୋମୟ
ରବି ଶଶି ସହିତରେ ଦେବେ କଲେ ଭୟ ।
ଏକକୁ ଆରେକ ଯହୁଁ ନ ପାରିଲେ କେହି
ମେରୁଗିରି କମ୍ପିଲାକ ଚରାଚର ମହୀ ।
ଏତେ ବଡ଼ ମହାଭାରା ସେ ବୃଷଭ ସହି
ମେରୁ ପରାୟ ଅଚଳ ହୋଇଅଛି ରହି ।
ସଂଗ୍ରାମ କରନ୍ତି ମହାଘୋର ବାରମ୍ବାର
ଆଣ୍ଠୁ ପିଠି ଚାପନ୍ତି ସେ ହିଆ ଦଣ୍ଡଭାର ।
ଶସ୍ତ୍ରର ଭାର ପଡ଼ନ୍ତେ ଶସ୍ତ୍ର ଘେନି ଭିଡ଼ି
ପାଦେ ପାଦ ଭିଡ଼ନ୍ତି ସେ ହସ୍ତେ ହସ୍ତ ଭିଡ଼ି ।
ହୁଙ୍କାର ଶବଦ ଉଚ୍ଚେ ଦେଲେକ ସେ ରଡ଼ି
ରାମ ଉପରେ ବସିଲେ କାମଦେବ ମାଡ଼ି ।
ମହାକୋପେ ବିକଶିଲା ଘେନି ଯୋଗମୁଷ୍ଟି
ବଳରାମଙ୍କୁ ମାଇଲେ ବଜ୍ର ସମ ମୁଷ୍ଟି ।
ବଳରାମର ବଳ ସିଂହ କୋଟି କୋଟି
ସେ ରାମ ସଦାଶିବଙ୍କୁ ଯୁଦ୍ଧେ ଗଲେ ହଟି ।
ଶୁଣ ମନୁ ନୃପତି ହୋ କହନ୍ତି ଯେ ମୁନି
ସମରେ ଅଚେତ ଯହୁଁ ହେଲେ ହଳପାଣି ।
ବୃଷଭ ଉପରୁ ପେଲି ପକାଇଲେ ହର
ନିମନ୍ଦିଲେ ରାମକୃଷ୍ଣ କୋପେ ରୁଦ୍ରଙ୍କର ।
ଯଦୁବଂଶ ଭୋଜବଂଶ ପଳାଇଲେ ଡରେ
ପ୍ରହାର କରନ୍ତି ଶିବଗଣ କୋପଭରେ ।
ମାର ମାର ବୋଲି ଯହୁଁ ବୋଇଲେକ ପାଳି
ମୃଗସେନ ଦୈତ୍ୟଙ୍କୁ ଯେ ଦେଲେ ହରଗାଳି ।
ତୋହର ଶତ୍ରୁଙ୍କୁ ମୁହିଁ ସଂହରିଲି ହେଲେ
ସୈନ୍ୟମାନଙ୍କୁ କିମ୍ପାଇଁ ଗୋଡ଼ଇ ଏ ବେଳେ ।
ଶୁଣି ଦାନବେ ଧାଇଁଲେ ମହା କୋପଭରେ
ଯଦୁ ଭୋଜବଂଶକୁ ଯେ ଓଗାଳିଲେ ବଳେ ।
ନନ୍ଦୀ ଭୃଙ୍ଗୀ ଦୁହେଁ ଶିବଗଣ ସେନାପତି
ଓଗାଳି ମାଇଲେ ଧରି ମୂଷଳ ଶକତି ।
ମହାଘୋର ସଂଗ୍ରାମ ଯେ କରନ୍ତି ଗରଜି
ହାଥୀ ରଥିଙ୍କୁ ମାରନ୍ତି ଅଶ୍ୱ ଗଜ ସାଜି ।
ଯଦୁବଂଶୀ ଭୋଜବଂଶୀ ଯେତେ ଆସିଥିଲେ
ରାମକୃଷ୍ଣ ପଡ଼ନ୍ତେ ସେ ଯାଇ ନ ପାରିଲେ ।
ସମରେ ପଡ଼ିଲେ ଥାଟ ନ ବର୍ତ୍ତିଲେ କେହି
ଯଦୁବଂଶ ସୈନ୍ୟମାନେ ମାରି ଘଉଡ଼ାଇ ।
ନୀଳେନ୍ଦ୍ରି କନ୍ୟାକୁ ଦେବ ଆଣିଲେ ଛଡ଼ାଇ
ବୃଷଭ ଉପରେ ତାଙ୍କୁ ବସାଇଲେ ନେଇ ।
ବାହୁଡ଼ନ୍ତି ମହାଦେବ ଜୟନାଦ କରି
ସଂଗ୍ରାମ ଭୂମିରୁ ରୁଦ୍ର ଗଲେ ବିଜେ କରି ।

କାର୍ତ୍ତିକ କୁମର ପଡ଼ିଅଛି ଯେଉଁଠାବେ
ତହିଁକି ବିଜୟ କରି ଯାନ୍ତି ସଦାଶିବେ ।
ବାରୁଣାରେ ବିଜେ କରିଅଛନ୍ତି ଯୁଧିଷ୍ଠି
ବେନିପାଶେ ବସିଛନ୍ତି ଭୀମ ଯେ କିରୀଟି ।
ମିଳିଲେ ନାରଦ ମୁନି ଏମନ୍ତ ସମୟେ
ପାଦ ପୂଜାକଲେ ତାଙ୍କୁ ପଣ୍ଡୁଙ୍କ ତନୟେ ।
କୃତାଞ୍ଜଳି ହୋଇ ରାଜା କହନ୍ତି ବଚନ
ସ୍ତୁକିତ ହୋଇ କିମ୍ପାଇ ହୋଇଲେ ମଉନ ।
କହ ହେ ମୁନି ଅମୃତ ରସମୟ କଥା
ଦ୍ୱାରକା ନଗର ରାମକୃଷ୍ଣଙ୍କ ବାରତା ।
କ୍ଷେମେ ଅଛନ୍ତି ନା ତହିଁ ହରି ବଳରାମ
ସମସ୍ତ କୁଶଳ କିନା କହ ତପୋଧନ ।
ନାରଦ ବୋଇଲେ ଶୁଣ ଧର୍ମଙ୍କ ତନୟ
ରାମକୃଷ୍ଣ ପାଇଲେ ତ ରଣେ ଅପଚୟ ।
ବିଭା ଅର୍ଥେ ଗଲେ ସେହି ବରୁଣ ନବରେ
ପଡ଼ିଲେ ଯେ ରାମକୃଷ୍ଣ ରୁଦ୍ର କୋପଭରେ ।
ପୁତ୍ର ବନ୍ଧୁ ସହିତରେ ସର୍ବେ ନାଶଗଲେ
ତାହାଶୁଣି ଅଜ୍ଞାତରେ ଯୁଧିଷ୍ଠି ପଡ଼ିଲେ ।
ତୋଳି ଧଇଲେକ କୋଳ କରି ଭାଇବେନି
ଉଚ୍ଚେ ରୋଦନ କରନ୍ତି କୃଷ୍ଣ ଗୁଣଗୁଣି ।
ଶୋକଭରେ ହେଲେ ନର ନାରୀଏ ସକଳ
ସମୁଦ୍ର ମନ୍ଥନ ପ୍ରାୟ ଶୁଭିଲା ଚହଳ ।
ନାରଦ ବୋଇଲେ ମୁହିଁ ମନ୍ଦକୃତ୍ୟ କଲି
ଏହା କହିବାକୁ କିମ୍ପା କପିଳାସ ଗଲି ।
କାର୍ତ୍ତିକ ପ୍ରଦ୍ୟୁମ୍ନ ଭେଟ କିମ୍ପା କରାଇଲି
ରାମ କୃଷ୍ଣ ସହିତରେ ସବୁ ମରାଇଲି ।
ଏଡ଼େ ଦ୍ୱନ୍ଦ୍ୱ ହେବ ବୋଲି ନାହିଁ ମୋର ଜ୍ଞାନ
ଏତେକ ବୋଲି ନାରଦ ହେଲେ ଅନ୍ତର୍ଦ୍ଧାନ ।
ଈଶ୍ୱରଙ୍କ ଦର୍ପ କେହୁ ପାରିବଟି ନାଶି
ଅର୍ଜ୍ଜୁନ ଜିଣିପାରିବ ଏକା କାଶୀବାସୀ ।
ଏସନକ ଭାବି ମୁନି ଶୀଘ୍ର ଚଳିଗଲେ
ହସ୍ତିନା କଟକେ ଯାଇ ପ୍ରବେଶ ହୋଇଲେ ।
ଆସ୍ଥାନରେ ବିଜେ କରିଅଛି ଦୁର୍ଯ୍ୟୋଧନ
ଭୀଷ୍ମ ଦ୍ରୋଣ ଅଶ୍ୱଥାମା କର୍ଣ୍ଣ ଦୁଃଶାସନ ।
ଶକୁନି ବାହ୍ଲିକ ଭୂରିଶ୍ରବାଙ୍କ ସହିତେ
ସାତ ସହସ୍ର ନୃପତି ଅଛନ୍ତି ସମସ୍ତେ ।
ଅଷ୍ଟାଦଶ ଅକ୍ଷୌହିଣୀ ବଳ ହିଁ ସକଳ
ଲକ୍ଷେକ ଚାମର ଢାଳୁଛନ୍ତି ବୃନ୍ଦବାଳ ।
ଲକ୍ଷେ ପାଟବସ୍ତ୍ର ତହିଁ ଅଛନ୍ତି ଉଭାରି
କୋଟିଏକ ବାଦ୍ୟକାର ବାଦ୍ୟ ନାଦ କରି ।

ଶବଦ ଶୁଭୁଛି ସପ୍ତସିନ୍ଧୁ ଘୋଷ ଘୋର
ଦକ୍ଷିଣ ଖମ୍ବ ଆଉଜି ବସିଛି ନୃବର ।
ନାରଦ ମିଳିଲେ ଯାଇ ଏହି ସମୟରେ
ପାଦ୍ୟ ଅର୍ଘ୍ୟ ନେଇ ପୂଜାକଲେ କୁରୁବୀରେ ।
କୃତଅଞ୍ଜଳି ପୁଟରେ ପୁଚ୍ଛନ୍ତି ବଚନ
କହ ମୁନିବର କିସ ଅର୍ଥେ ଆଗମନ ।
ଦ୍ୱାରକାପୁର ବାରତା କୁହ ସୁବିଧାନେ
କ୍ଷେମେ ଅଛନ୍ତି ନା ତହିଁ ହରି ବଳରାମେ ।
ନାରଦ ବୋଇଲେ ତୁହୋ ଶୁଣ କୁରୁରାୟେ
ରାମକୃଷ୍ଣ କ୍ଷୟ ଗଲେ ବରୁଣ ଆଳୟେ ।
ରୁଦ୍ର କୋପେ ନାଶକଲେ ଯଦୁ ଭୋଜବଂଶ
ଶୁଣି ଦୁର୍ଯ୍ୟୋଧନ ମୂର୍ଚ୍ଛାଗଲା ପାଇ ତ୍ରାସ ।
ନାରଦ ବୋଇଲେ କେତେକାନ୍ଦୁ ଶୋକଭରେ
ରାମ କୃଷ୍ଣଙ୍କୁ ବଞ୍ଚାଇ ଆଣ ଯାଇ ବାରେ ।
ରୋଦନ ତେଜି ନୃପତି ବୋଲେ କୋପ କରି
କେମନ୍ତେ ନ ଯିବା ଆମ୍ଭେ ରାମ ଛନ୍ତି ମରି ।
ବଳରାମ ବଧେ ମୋର ପଡ଼ିଛି ଜୀବନ
ସଦାଶିବ ସଙ୍ଗେ ଯୁଦ୍ଧ କରିବା ବହନ ।
ଏକାଳେ ଯୁଧିଷ୍ଠି ଆସି ମିଳିଲେକ ତହିଁ
ଦୁର୍ଯ୍ୟୋଧନ ରାଜା ବୋଲେ ଯୁଧିଷ୍ଠିଙ୍କୁ ଚାହିଁ ।
ତୁମ୍ଭେ ଦଣ୍ଡ ସାଜି ଆସ ଯିବା ହୋ ତଡ଼ତି
ରାମକୃଷ୍ଣ ବର୍ତ୍ତିଲେଟି ରହିବ କୀରତି ।
ଯୁଦ୍ଧରେ ଜିଣିବ ଯେବେ ଦିଶିବନା ଭାଗ୍ୟ
ନୋହିଲେ କରିବା ତାଙ୍କ ସଙ୍ଗେ ରଣଯୋଗ ।
ତେବେ ଆମ୍ଭର ଦିଶିବ ସିନା ଉପକାର
ଯୁଧିଷ୍ଠି ବୋଇଲେ ଏହା ଆମ୍ଭର ବିଚାର ।
ଏତେ ବୋଲି ସମଦଣ୍ଡ ସାଜିଲେ ଅପାର
ତୁରଙ୍ଗମ ସଜକଲେ କ୍ଷଉଣି ଅଠର ।
ଲକ୍ଷ ଲକ୍ଷ ଉଡ଼ାଇଲେ ରଥେ ଧ୍ୱଜ ଚିହ୍ନ
ନୃପତିର ସଙ୍ଗେ ସାତ ସହସ୍ର ସଇନ୍ୟ ।
ମର୍ଦ୍ଦଳ କଂସାଳ ଶତସହସ୍ରର ଧ୍ୱନି
ବାଦ୍ୟ ନାଦ ଶବଦରେ କମ୍ପିଲା ମେଦିନୀ ।
ଅନେକ ଥାଟ ସମ୍ଭାର ସଙ୍ଗତରେ ଘେନି
ଅଙ୍ଗଛଳେ କଉରବ ପାଣ୍ଡବ ଏ ବେନି ।
ବନ କନ୍ଦର ପୂରିଣ ଥାଟ ଚଳିଗଲେ
ତାହା ଦେଖିଣ ନାରଦ ଅନ୍ତର୍ଦ୍ଧାନ ହେଲେ ।
ବେଗେ ଯାଇଣ କହିଲେ ଈଶ୍ୱରଙ୍କୁ ଚାହିଁ
କୁରୁ ପାଣ୍ଡବ ଅଇଲେ ନିଜ ବଳ ବାହି ।
ତାହା ଶୁଣି ସଦାଶିବ ପଚାରନ୍ତି ରହି
କୌରବେ ଅଇଲେ ଯେବେ ରାମକୃଷ୍ଣ ପାଇଁ ।

ତାହାଙ୍କ ନିମନ୍ତେ ଶଙ୍କା ନାହିଁ ମୋର ମନ
ଥାଟରେ ଅଛଇ କିନା ପାଣ୍ଡବ ଅର୍ଜୁନ ।
ନାରଦ ବୋଇଲେ ସେହି କୃଷ୍ଣ ପଞ୍ଚଭୂତ
ସେ ମଧ୍ୟ ଆସୁଅଛଇ ଘେନି ଧର୍ମସୁତ ।
ସଂଗ୍ରାମ କରିବେ ନିଶ୍ଚେ ତୁମ୍ଭସଙ୍ଗେ ଆଜ
କୃଷ୍ଣ ବଳଦେବଙ୍କର ଉଦ୍ଧରିବ ଲାଜ ।
ନାରଦ ବଚନ ଶୁଣି କପାଳୀ ଆଶ୍ଚର୍ଯ୍ୟ
କ୍ଷତ୍ରିପଣ ଛାଡ଼ିଲେଇଁ ଗଲା ବଳବୀର୍ଯ୍ୟ ।
ବୃଷଭ ପିଠିରୁ ବେଗେ ଓହ୍ଲାଇଲେ ଖରେ
ଧନୁଶର ପକାଇଲେ ଅର୍ଜୁନର ଡରେ ।
ତ୍ରିଶୂଳ ଶକତି ଦେବେ ନ ଧଇଲେ କରେ
ନିଶସ୍ତ୍ର ହୋଇଣ ଉଭା ହୋଇଲେ ଭୂମିରେ ।
ନାରଦ ବୋଇଲେ ତୋର ଏ କି ବିପରୀତ
ଧନୁଶସ୍ତ୍ର ପକାଇଲୁ କିମ୍ପା ହୋଇ ଭୀତ ।
ସଂସାରେ ସୁନ୍ଦର ତୁ ଯେ ମାଇଲୁ ମଦନ
ତ୍ରିପୁର ଅନ୍ଧକାସୁର କଲୁ ନିସୁଦନ ।
ପାତାଳପୁର କେତୁକାସୁରକୁ ତୁ ବଧି
ଦଇତଙ୍କ ଶର ତୋର ଶରୀରେ ନ ଭେଦି ।
ଦର୍ପିଷ୍ଠ ଦାନବଗଣ କଲୁ ତୁହି ହତ
ଅତୁଟ ଦେବତା ତୋତେ ବୋଲନ୍ତି ଜଗତ ।
ଏବେ କିମ୍ପାଇ ନିସତେ ଚିନ୍ତିତ ତୋ ମନ
ଅର୍ଜୁନ ଆଗମେ କିମ୍ପା ହେଲୁ ବଳହୀନ ।
ସଦାଶିବ ବୋଇଲେ ତୁ ଶୁଣ ମହାମୁନି
ସଂଗ୍ରାମେ ପାର୍ଥଙ୍କୁ ସରି ନୁହଇ ମୁଁ ଜାଣି ।
ନାରଦ ବୋଇଲେ କେବେ ତୋତେ ଅଛି ଜିଣି
ମନୁଷ୍ୟ ମାତ୍ରକେ ଅଛି ଏଡ଼େ ଭୟ ଘେନି ।
ଏହାର କାରଣ ମୋତେ କହ ସଦାନନ୍ଦ
ଈଶ୍ୱର ବୋଲନ୍ତି ଏବେ ଶୁଣ ହୋ ନାରଦ ।
ବିନୋଦ କରନ୍ତେ ନିଦ୍ରା ଘାରିଲା ମୋ ଘାଟେ
ଜଳ ଖାଇବାକୁ ଗଣ୍ଡା ଗଲା ଜଳ ତଟେ ।
କିରାତ ରୂପରେ ପାର୍ଥ ଜଗିଥିଲା ଘାଟେ
ଦେଖିଲା ସେ ଗଣ୍ଡାଗୋଟି ଯାଉଅଛି ବାଟେ ।
ଧାମଣା କାଠର ଧନୁ କରିଣ ବିବସ୍ତ୍ର
ହସ୍ତରେ ଧରିଣ ଅଛି ଫରିକ ନାରାଚ ।
ସେହି ନାରାଚ ଧନୁରେ ବସାଇଲା ବୀର
ଉପରେ ପଡ଼ନ୍ତେ ଗଣ୍ଡା ପଡ଼ିଲା ଭୂମିର ।
ତାହା ଦେଖି ପାର୍ବତୀର ଅସ୍ଥିର ଜୀବନ
ରୋଦନ ଶୁଣନ୍ତେ ମୋର ପଶିଲା ଚେତନ ।
ଉମାକୁ ବୋଇଲି କିମ୍ପା କାନ୍ଦୁ ଭୂମି ଲୋଟି
ପାର୍ବତୀ ବୋଇଲେ ମଲା ମୋର ଗଣ୍ଡା ଗୋଟି ।

ତାହା ଦେଖିଣ ମୋହର ଅସ୍ଥିର ଜୀବନ
ଗଣ୍ଡା କେ ମାଇଲା ମୋର ଦେଖି ତ୍ରିଲୋଚନ ।
ତାହା ଶୁଣି ମୁହିଁ ଗଲି ହୋଇ ଅନ୍ତରାଳ
ଦେଖି ବୋଇଲି ଶବର ପୂରିଲା ତୋ କାଳ ।
ଏ ମୋହର ଗଣ୍ଡାକୁରେ ମାରିଲୁ ଚଣ୍ଡାଳ
ନିଜ ପତ୍ନୀଠାରୁ ମୁହିଁ ପାଇଲି ଜଞ୍ଜାଳ ।
ତୁଙ୍କାର ବଚନ ପାର୍ଥ ନ ସହିଲା ରାଗେ
ମୁହିଁ ମାଇଲି ବୋଲି ସେ ମିଳିଲା ମୋ ଆଗେ ।
ପ୍ରତିଜ୍ଞା ବଚନ ଶୁଣି କୋପେ ମୁଁ ପ୍ରଚଣ୍ଡ
ବଜ୍ର ପ୍ରାୟ ମାଇଲି ମୁଁ ନେଇ ଭୁଜଦଣ୍ଡ ।
କୋପେ ପାର୍ଥ ପ୍ରଜ୍ୱଳିତ ହୋଇ ଲଣ୍ଡଭଣ୍ଡ
ଲଗାଇଲା ମୋର କଣ୍ଠତଟରେ କୋଦଣ୍ଡ ।
କଣ୍ଠତଟେ ମନୁଦଣ୍ଡ ଦେଇ ବୁଲାଇଲା
ଏ ମୋହର ପଞ୍ଚମୁଖୁ ରୁଧିର ଗଳିଲା ।
ସଂଗ୍ରାମେ ଯହୁଁ ହୋଇଲି ମୁଁ ଅତି କାତର
ଡରେ ବୋଇଲିରେ ବୀର ମାଗକିନା ବର ।
ଆମ୍ଭେ ଅଟୁ ବାରେ ତ୍ରିପୁରାନ୍ତକ ଈଶ୍ୱର
ମନର ସନ୍ତୋଷେ ମୁହିଁ ଯାଚିଲଇଁ ବର ।
ତାହା ଶୁଣି କମ୍ପମାନ ହେଲା ଧନୁର୍ଦ୍ଧର
ମନୁ ଶରକୁ ପକାଇ ଯୋଡ଼ି ବେନିକର ।
ନ ଜାଣି ଦୋଷ କଲଇଁ ମୁହିଁ ଦେବସ୍ୱାମୀ
ସଂସାର ସମ୍ପଦ ମୋହେ ପଡ଼ି ମୁହିଁ ଭ୍ରମି ।
ପାର୍ଥଙ୍କୁ ବୋଇଲି ତୋର କିଛି ଭୟ ନାହିଁ
ଆମ୍ଭଙ୍କୁ ଜିଣିଲୁ ବୀର ସମର୍ଥ ପଣ ହିଁ ।
କିସ ନାମ ତୋହର ତୁ କାହାର ନନ୍ଦନ
ପୁଚ୍ଛନ୍ତେ କହିଲା ମୁହିଁ ପାଣ୍ଡବ ଅର୍ଜୁନ ।
ବିଚାରି ବୋଇଲି ମୋତେ ଜିଣିବ କେ ଆନ
ବହତୁ ପ୍ରଶଂସା କରି କଲି ସନମାନ ।
ସନ୍ତୋଷେ ବର ମାଗ ତୁ ପଣ୍ଡୁର ନନ୍ଦନ
ତାହା ଶୁଣି ବୋଲଇ ସେ ଯୁଧିଷ୍ଠିର ସାନ ।
ସତେ ଯେବେ ବର ମୋତେ ଦେବ କୃତ୍ତିବାସ
ସ୍ନାନ ସୁଚିମନ୍ତ ହୋଇ ବେଗେ ତେବେ ଆସ ।
ଶଉଚବନ୍ତ ହେବାକୁ ବେଗେ ମୁହିଁ ଯାନ୍ତେ
ପାର୍ବତୀ ତହୁଁ ତାହାକୁ ବୋଇଲେ ଏକାନ୍ତେ ।
କି ବର ଅର୍ଜୁନ ତୁହୋ ମାଗିବୁ ଯୁକତେ
ମୁହିଁ କିଛି ନ ଜାଣଇ ମାଗିବି କେମନ୍ତେ ।
ପାର୍ବତୀ ବୋଇଲେ ତୁ ହୋ ଶୁଣ ବୀରପାର୍ଥ
ଈଶ୍ୱର ଦେବଙ୍କୁ ମାଗ ଅସ୍ତ୍ର ପାଶୁପତ ।
କ୍ଷତ୍ରି ହୋଇ କି ଜିଣିବେ ତୋତେ ଭୂମିଭାଗେ
ହରିହର ବ୍ରହ୍ମା ଆଦି ନ ଜିଣିବେ ସ୍ୱର୍ଗେ ।

ଏସନକ ଉମା ତାଙ୍କୁ କହିଲେ ମଣାଇ
ସ୍ନାନ କରିସାରି ଆମ୍ଭେ ହୋଇଲୁ ଯେ ତହିଁ ।
ବୋଇଲୁ ବର ମାଗ ହୋ ଯୁଧିଷ୍ଠିର ଭାଇ
ହସିଲେ ଦେବୀ ପାର୍ବତୀ କରତାଳି ଦେଇ ।
ଯୁଦ୍ଧେ ହାରି ଆସି ବର ଯାଚୁଛୁ ଗୋସାଇଁ
ଏପରି ପୁରୁଷ ସିଂହ କାହିଁ ଦେଖାନାହିଁ ।
ଅର୍ଜୁନ ବୋଇଲା ତହିଁ ଯୋଡ଼ି ବେନିକର
ପାଶୁପତ ଦେବା ମୋତେ ତ୍ରିପୁର ଈଶ୍ୱର ।
ତାହା ଶୁଣି ବିଚାର ମୁଁ କଲଇଁ ମନର
ନିଶ୍ଚୟ ପାର୍ବତୀ କହିଦେଲେ ଏହି ବର ।
ନାସ୍ତି କରି ନ ପାରି ମୁଁ ଦେଲି ସେହି ବାଣ
ମୁହିଁଯେ କୁଟ ରଚିଲି କାରଣ ହୋ ଶୁଣ ।
ପାର୍ବତୀ ମୁଖକୁ ଚାହିଁ ବୋଇଲି ଏସନ
ଅର୍ଜୁନ ହେଲା ଆମ୍ଭର ଧର୍ମର ନନ୍ଦନ ।
ଆମ୍ଭେ ଦେଲୁ ବର ଏବେ ତୁମ୍ଭେ ଦିଅ ବର
ଯାବତ କାଳକୁ କଥା ଥିବ ନା ଆମ୍ଭର ।
ହସି ଯେ ଦୁର୍ଗା ବୋଇଲେ ମାଗୁକିନା ବର
ଶଉଚ ହୋଇ ଆସନ୍ତୁ ବୋଇଲାକ ବୀର ।
ସ୍ନାନ କରିବାକୁ ଦୁର୍ଗା ଗଲେ ନଦୀ ନୀର
ମୁଁ ବୋଇଲି ପାର୍ବତୀଙ୍କୁ ମାଗିବୁ କି ବର ।
ଅର୍ଜୁନ ବୋଇଲେ ଦେବ ଶୁଣ ଶୂଳଧର
ମୁଁ କିସ ମାଗିବି ମୋର ଅଜ୍ଞାନ ଶରୀର ।
ତୁମ୍ଭଙ୍କୁ ମାଗିଲି କହିଦେଲେ ମାହେଶ୍ୱରୀ
ତୁମ୍ଭେ ଏବେ କହିଦିଅ ମାଗେ ହେତୁକରି ।
ପୁଚ୍ଛନ୍ତେ କହିଲୁ ତାକୁ ନ ରଖି ସଂଶୟ
ତୁ ଯାହା ମାଗିବୁ ଏବେ ଶୁଣ ଧନଞ୍ଜୟ ।
ସତ୍ୟଯୁଗେ ଅଗ୍ନିରୁ ଏ ହେଲା ପୁଣି ଜାତ
ତ୍ରିଦଶ ଦେବତା ନାମ ଦେଲେ ଦୁର୍ଗାମାତ ।
ଶତସୂର୍ଯ୍ୟ ଜ୍ୟୋତି ଘେନି ବହିଲା ଶରୀର
ମଣିକୁଣ୍ଡଳ ଏହାର ହୃଦୟର ହାର ।
ଏସନ ରୂପେ ଅଗ୍ନିରୁ ଏହି ଅବତରି
ଅସୁର ସୈନ୍ୟଙ୍କ ଦେବଶସ୍ତ୍ର ଏ ପ୍ରହାରି ।
ଏସନକ ଶର ସବୁ କଲା ସେ ସାଧନ
ଘଡ଼ିକକୁ ନ ଅଣ୍ଟିଲା ଦେବ ଶରମାନ ।
ଅକ୍ଷୟ ତୂଣୀର ଦେବୀ ଅଙ୍ଗୁ କଲେ ଜାତ
ଅନୁକ୍ଷଣେ ଶରବୃଷ୍ଟି କଲେ ଶତ ଶତ ।
ତେଣେ ସେ ଅସୁରବଳ କଲେକ ନିପାତ
ଚଉରାଶୀ ଅକ୍ଷୌହିଣୀ ସବୁ କଲେ ହତ ।
ଚଉରାଶୀ ଦିବସରେ ମହିଷା ଯେ ମଲା
ଅକ୍ଷୟ ତୂଣୀର ବାଣ ତେବେ ନ ସରିଲା ।

ସେ ଅକ୍ଷୟ ତୂଣୀ ଏବେ ମାଗ ଧନଞ୍ଜୟ
ଦେବାସୁର ବ୍ରହ୍ମାଙ୍କୁ ନ ଥାଉ ତୋର ଭୟ ।
ସ୍ନାନ ସାରି ଦେବୀ ମିଳି ଏସନ ସମୟେ
ବୋଇଲେ ତୁ ବର ମାଗ ଇଚ୍ଛା ଯାହା ହୁଏ ।
ପ୍ରଣାମ କରିଣ ପାର୍ଥ ଯୋଡ଼ି ବେନିକର
ଅକ୍ଷୟ ତୂଣୀର ଦିଅ ମାଗୋ ଏହି ବର ।
ଶୁଣି ଦୁର୍ଗା ବୋଇଲେ ଯେ କରି ଦୁଃଖମନ
ଏଡ଼େ କୂଟ କଥା କିମ୍ପା କହିଲ ଈଶାନ ।
ପରକୁ ଯେ ଦେଉଅଛ ଆପଣାର ବଳ
ଉମାଙ୍କୁ ବୋଇଲେ ତୁମ୍ଭେ ଆଗ କଲ ଖଳ ।
ଲଜ୍ଜା ପାଇ ଦେବୀ ସେହି ତୂଣୀରକୁ ଦେଲେ
ଶତେକ ଈଶ୍ୱର ତୋରେ ନ ଜିଣୁ ବୋଇଲେ ।
ଅକ୍ଷୟ ତୂଣୀର ପାଶୁପତ ଯେ ପାଇଲା
ତିନିପୁରେ କ୍ଷତ୍ରିତାକୁ ଜିଣନ୍ତା ନୋହିଲା ।
ଅନ୍ୟା ଅନ୍ୟ ହୋଇ ତାକୁ ଦେଉଅଛୁ ବର
ତେଣୁ ସିନା ନାରଦ ହୋ ଅର୍ଜୁନକୁ ଡର ।
ଦେବର୍ଷି ବୋଇଲେ ବର ଦେଇଛ ଆପଣ
ତେଣୁ ସଂଗ୍ରାମେ ଛାଡ଼ିଲୁ ଶସ୍ତ୍ର ତେଜି ପ୍ରାଣ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ପାର୍ଥ ହିଁ ଧାରଣ
ନିସତ ହୋଇ ଭଵିଲୁ ନ କରିବୁ ରଣ ।
କେବା ତାର ମୁଖେ ପଡ଼ି ଯିବାକୁ ଉବୁରି
ବ୍ରହ୍ମାଣ୍ଡ ମଧ୍ୟରେ ପାର୍ଥ ଏକା ଧନୁର୍ଦ୍ଧାରୀ ।
ବିଶ୍ୱନାଥ ବୋଇଲେକ ଏସନକ କଥା
ତାହାକୁ ସମରେ ଆମ୍ଭେ ନୋହୁ ସାମରଥା ।
ଏସନ ବଚନ ଶୁଣି ରାଜା ବସୁବୀର
ମୃଗସେନ ଆଦି ଥିଲେ ଯେତେକ ଅସୁର ।
ବୋଇଲେ ତାହାକୁ ଭୟ ନ କରିବା ହର
ଆମ୍ଭେ ତାହା ଆଗେ ରହି କରିବୁ ସମର ।
ଅସୁରଙ୍କର ଭରସା ପାଇ ଦେବଶୂଳୀ
ବୃଷଭରେ ବିଜେ କଲେ ତ୍ରିଜଟା ମଉଳି ।
ଏଥୁଅନ୍ତେ କଉରବେ ପାଣ୍ଡବ ଏ ବେନି
ରହିଲେ ଶିବଙ୍କ ଆଗେ ଯାଇ ସୈନ୍ୟ ଘେନି ।
ଦେଖନ୍ତି ଅମ୍ବରେ ରହି ଦେବେ ସର୍ବ ମୁନି
ଖୁରାରେଣୁ ଘାତେ କମ୍ପୁଅଛଇ ମେଦିନୀ ।
ଯେ ଯାହାର ମୁଖେ ଭେଟ ହେଲେ ସୈନ୍ୟଦଣ୍ଡ
ଆକାଶେ ଲୁଚିଲେ ଶତ ତେଜ ମାରତଣ୍ଡ ।
କୁରୁଥାଟେ ଆଗୁଆଣି ରାଜା ଦୁର୍ଯ୍ୟୋଧନ
କୋଟିଏ ଯୋଦ୍ଧା ଘେନିଣ ଧାଏଁ ମୃଗସେନ ।
ଦୁର୍ଯ୍ୟୋଧନ ତୁଲେ ତାର ଯୁଦ୍ଧ ଗୁରୁତର
ଦ୍ୱାଦଶ ସସ୍ର ଯୋଦ୍ଧାଙ୍କୁ ଘେନି ଦୁଃଶା ବୀର ।

ସହସ୍ରେ ନାରାଚ ଘେନି ରାଜା ମୃଗସେନ
ଦୁଃଶାସନ ଉପରକୁ ବିନ୍ଧିଲା ବହନ ।
କଳାମେଘ ଯେହ୍ନେ ବେଗେ ଗମିଯାନ୍ତି ଶୂନ୍ୟେ
ଅପ୍ରମିତ ହିଁ ନାରାଚ ଦିଶଇ ତେସନେ ।
ବାବଲ ଶରକୁ ବେଗେ ଦୁଃଶାସନ ସନ୍ଧି
ପୁଣି ତୀକ୍ଷ୍ଣ ବାଣ ରାଜା ମୃଗସେନ ବିନ୍ଧି ।
ହେଳେ ନିବାରିଲା ତାହା ଦୁଃଶାସନ ବୀର
କୋପେ ଅନ୍ଧକାର ଶର ବିନ୍ଧିଲା ଅସୁର ।
ଶରୀରେ ପଡ଼ି ସେ ବା ତା ରୋମେ ରୋମେ ଫୁଟି
ପଡ଼ିଲାକ ଦୁଃଶାସନ ପ୍ରାଣ ଗଲା ତୁଟି ।
ଦୁର୍ଯ୍ୟୋଧନର ସୋଦର ପ୍ରାଣ ବିସର୍ଜନ୍ତେ
ଭୀଷ୍ମ ମହାରଥି ଦେଖି କୋପକଲେ ଚିତ୍ତେ ।
ଦୈତ୍ୟର ପାଖକୁ ବୋଲି ରଥ ବାହିନେଲେ
ଆରେ ଆରେ ବୋଲି କୋପେ ବାଣ ଛାଡ଼ିଦେଲେ ।
ଅସଂଖ୍ୟ ନାରାଚ ଭୀଷ୍ମ କୋପେଣ ମାଇଲେ
ଅସୁରଙ୍କ ହୃଦେ ପଡ଼ି ଅଗ୍ନି ଝଲକିଲେ ।
ମୁଦ୍‌ଗର ପିଟିଲା ନେଇ ଦୁର୍ବାର ଅସୁର
ଭୀଷ୍ମଙ୍କର ରଥ ଭାଙ୍ଗି କଲା ଶତେ ଚୂର ।
କୋପେଣ ଦୈତ୍ୟ ଗୋଡ଼ାଇ ଗଲା କିଛିଦୂର
ବେଗେ ଗଦା ପ୍ରହାରିଲା ସାରଥି ଉପର ।
ସାରଥି ନିଧନ ଦେଖି ଭୀଷ୍ମ ରଣେ ଭାଜି
ଦ୍ରୋଣ ତପୋଧନ ଆସି ମିଳିଲେ ଗରଜି ।
ଡାକ ହାକ ଦେଇ ଗୁରୁ କରନ୍ତି ସମର
ଯେସନେକ ଜଳବୃଷ୍ଟି କଲେ ସୁରେଶ୍ୱର ।
ତେସନ ନାରାଚବୃଷ୍ଟି କଲେ ନିରନ୍ତର
ଦିଶନ୍ତି ଅନଳ ପ୍ରାୟ ଦ୍ରୋଣଙ୍କର ଶର ।
ଭଗ୍ନ ହେଲେ ଶରସବୁ ଦୈତ୍ୟଅଙ୍ଗେ ବାଜି
ଧାମନ୍ତି ଦଇତେ କୋପେ ସଂଗ୍ରାମେ ଗରଜି ।
ପାଞ୍ଚକୋଟି ଯୋଦ୍ଧା ମୃଗସେନ ବୀର ତୁଲେ
ଦ୍ରୋଣଙ୍କ ମୁଖେ ପଡ଼ିଲେ ଆସି ରଣଗୋଳେ ।
କର୍ଣ୍ଣ ମହାରଥି ଦେଖି ପାଇଲାକ ଖଙ୍ଗ
ସଂଗ୍ରାମେ ମିଳିଲେ ଯାଇ ନୃପତିର ଆଗ ।
ବଇଷ୍ଣବୀ ଗଦା ଘେନି ରାଜା ବସୁବୀର
କୋପେଣ ପିଟିଲା ଦୁଇ ରଥିଙ୍କ ଉପର ।
ରଥ ଭାଙ୍ଗିଗଲା ଭୂମିଗତେ ବେନି ବୀରେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଯହୁଁ ପଡ଼ିଲେ ସମରେ ।
ଯୁଦ୍ଧକୁ ଅସୁର ବୀର ନ କରନ୍ତି ଭୟ
ରଥି ହାତୀ ପଦାତିଙ୍କୁ ମାରି କଲେ କ୍ଷୟ ।
ସୈନ୍ୟରଥ କ୍ଷୟ ଦେଖି ଦ୍ରୋଣଙ୍କ ତନୟ
ସୈନ୍ୟ ପଛ କରି ଆଗେ ଚଳାଇଲା ହୟ ।

ବାହ୍ଲିକ ଯେ ସୋମଦତ୍ତ ଶଲ୍ୟଙ୍କ ସହିତେ
ଅସୁରଙ୍କ ତୁଳେ ଯୁଦ୍ଧକଲେ କୋପଚିତ୍ତେ ।
ଏମନ୍ତ ସମୟେ ଯାଇ ରାଜା ବସୁବୀର
ଚାଳିଶ ଲକ୍ଷ ଯୋଦ୍ଧାଙ୍କୁ ଘେନି ସଙ୍ଗତର ।
ଗାଢ଼େଣ ପଶିଲା ଯାଇ ସଂଗ୍ରାମ ଭିତର
ରହି ଗୋଳଯୁଦ୍ଧ କଲେ ମିଳି ନିଶାଚର ।
ରୁଦ୍ରାଙ୍କ ଖଡ଼ଗ ଧରି ବେଗେ ପ୍ରହାରନ୍ତି
କଉରବ ବଳଙ୍କୁ ସେ ଭୟ ନ କରନ୍ତି ।
ଅଗସ୍ତି ବୋଇଲେ ତୁମ୍ଭେ ଶୁଣ ହେ ରାଜନ
ହରିହର ଚରିତକୁ ହୁଅ ସାବଧାନ ।
ବିଚିତ୍ର ଚରିତ ଏ ଯେ ପବିତ୍ର ଆଖ୍ୟାନ
ଶୁଣନ୍ତେ ମୁକତ ହେବୁ ଭାରତ ପୁରାଣ ।
ଅପାର ରଣ ହୋଇଲା ହରିହରଙ୍କର
ଶୂନ୍ୟପଥେ ରହିଛନ୍ତି ଦେବ ଦିବାକର ।
ଅପ୍ରମିତ ଯୁଦ୍ଧ ଦେଖି ଦେବ ଦେବରାୟ
ବଜ୍ରୀ ପେଶି ବଜ୍ର କଲେ ଦୈତ୍ୟଙ୍କର କାୟ ।
ଦ୍ୱିଗୁଣ ଅସୁର ସୈନ୍ୟ ତେଜ ଗଲା ବଢ଼ି
ରଣ ରସକ୍ରୀଡ଼ା କଲେ ଦେଇ ସିଂହରଡ଼ି ।
କୁରୁବଳ ସେନାପତି ପଡ଼ିଲେ ସମରେ
ଧନୁ ଧରିଣ ନାରାଚ ବିନ୍ଧନ୍ତି ଅସୁରେ ।
ସ୍ୱର୍ଗପୁରେ ରହି ଚାହିଁଅଛନ୍ତି ବିବୁଧେ
ପଳାଇଲେ କୁରୁସୈନ୍ୟ ନ ରହିଲେ ଯୁଦ୍ଧେ ।
ସୈନ୍ୟଭଗ୍ନ ଦେଖି କୋପେ ଧାଇଁଲା ରାଜନ
ରୁହ ରୁହ ବୋଲି କଳି କଲେ ଦୈତ୍ୟ ସୈନ୍ୟ ।
କୁରୁପତି ସଙ୍ଗତରେ ଅଛନ୍ତି ଭୂପାଳେ
ରଣ ଭୂମିକୁ ଆବୋରି ପଶିଲେ ସେ ରୋଳେ ।
ପନ୍ଦର ଅର୍ବୁଦ ଯୋଦ୍ଧା ରଥେ ରଥେ ଚଢ଼ି
ତେତିଶ ସହସ୍ର ଯୋଦ୍ଧା ଯାନ୍ତି ହସ୍ତୀ ଚଢ଼ି ।
ଅଶୀଏ ଅର୍ବୁଦ ସୈନ୍ୟ ତୁରଗ ଚୋଖାର
ଏକାଦଶ ଅକ୍ଷୌହିଣୀ ନୃପତି ସଙ୍ଗର ।
ଏଥକୁ ଆରେକ କରି ପ୍ରତିଜ୍ଞା ଅପାର
ଯୁଦ୍ଧେ ପଞ୍ଚଭୂତ ଜାଣି ବିଚାରନ୍ତେ ବୀର ।
ପଡ଼ି ଉଠି ଯୁଝୁଛି ସେ ଉଭୟଙ୍କ ସୈନ୍ୟ
ହୁଙ୍କାର ଶବଦେ ବାଣ ବିନ୍ଧି ଘନ ଘନ ।
ବସୁବୀର ଅସୁର ଯେ ଧାଏଁ ହୋଇ ରାଗୀ
ବିକ୍ରମି ମାଇଲା ବଳ ରଥମାନ ଭାଙ୍ଗି ।
ଭାଙ୍ଗି ସୈନ୍ୟବଳ ହୋଇଗଲେ ବେନିଭାଗେ
ତୁରିତେ ମିଳିଲା ଯାଇ ଦୁର୍ଯ୍ୟୋଧନ ଆଗେ ।
ବଜ୍ରସମ ଗଦା ଘେନି ରାଜା ବସୁବୀର
ରୋଷେଣ ପିଟିଲା ନେଇ ନୃପତି ଉପର ।

ହସ୍ତୀ ଚଢ଼ି ନରପତି ହୋଇଲାକ ଆଗ
ଗଦାର ଆଘାତେ ଲୋଟିପଡ଼େ ମତ୍ତନାଗ ।
ବାହନ ନିଧନ ହେବା ଦେଖି ନୃପବର
ଗଦାଏ ପିଟିଲା ନେଇ ଅସୁର ଉପର ।
ଅସୁରବୀର ପାତିଲା ନିଜ ବକ୍ଷସ୍ଥଳ
ବାଜି ଗଦାବର ପଡ଼େ ଆସି ଭୂମିତଳ ।
ପୁଣି ଅସୁର ଗଦାଏ ପ୍ରହାରିଲା ନେଇ
ମୂର୍ଚ୍ଛାଗତ ପଡ଼ିଲାକ ରଣେ କୁରୁସାଇଁ ।
ଅଶ୍ୱଥାମା ରଥରୁ ଯେ ପଡ଼ିଲା ଓହ୍ଲାଇ
କୋଳ କରି ନୃପତିକି ଧଇଲାକ ଯାଇ ।
ବିକ୍ରମି ଅସୁର ଗଦା ପ୍ରହାରିଲା ଖରେ
ଏକଠାବେ ଅଚେତନ ହେଲେ ଦୁଇବୀରେ ।
ଦୁର୍ଯ୍ୟୋଧନ ଅଶ୍ୱଥାମା ନେଇ କଲା ବନ୍ଦୀ
ଆପଣାର ରଥେ ନେଇ ପକାଇଲା ବାନ୍ଧି ।
ଯୁଧିଷ୍ଠିଙ୍କ ଆଗେ ଚାରେ କହିଲେକ ଯାଇ
ରାଜା ଅଶ୍ୱଥାମା ବନ୍ଦି ପଡ଼ିଲେ ଗୋସାଇଁ ।
ଭୀମର ମୁଖକୁ ଚାହିଁ ଯୁଧିଷ୍ଠିର କାନ୍ଦି
ଆମ୍ଭେ ଥାଉଁ ଦୁର୍ଯ୍ୟୋଧନ ରାଜା ହେଲେ ବନ୍ଦି ।
ବୃଦ୍ଧକାଳେ ପିତାକୁ ମୋ ହେଲା ପୁତ୍ର କଷ୍ଟ
ଦୁର୍ଯ୍ୟୋଧନ ବିନେ ନାଶ ଯିବ ଧୃତରାଷ୍ଟ୍ର ।
ଗାନ୍ଧାରୀର ମୁଖ ଚାହିଁ ଚାହିଁବି କେମନ୍ତେ
ରଣଯୋଗ କରିବି ମୁଁ ଭାଇର ନିମନ୍ତେ ।
ଏତେ ବୋଲି ଆରୋହିଲେ ରଥେ ଧର୍ମସୁତ
ତାହା ଦେଖି ମାରୁତିର ହେଲା କୋପଚିତ୍ତ ।
ଉଚ୍ଚସ୍ୱରେ ଡାକଦେଇ ପଶିଲା ସମରେ
ବୃକୋଦର ମୂର୍ତ୍ତି ଦେଖି କମ୍ପନ୍ତି ଅମରେ ।
ଭୀମ ଦେଖି ବସୁବୀରେ କୋପେଣ ପ୍ରଚଣ୍ଡ
ଉପରେ ଗଦାକୁ ନେଇ ପିଟିଲା ଦୁର୍ଦ୍ଦଣ୍ଡ ।
ତୁରିତେ ପବନସୁତ ବାମଅଙ୍ଗ ପାତି
ବାଜି ଗଦାବର ଭାଙ୍ଗି ପଡ଼ିଲାକ କ୍ଷିତି ।
ପିଟିଲା ତା କାଳଦଣ୍ଡ ଗଦା ବୃକୋଦର
ଶତଖଣ୍ଡ ହୁଏ ପଡ଼ି ଦୈତ୍ୟର ଉପର ।
ଧୂମମୟ ଦିଶିଲାକ ନବଖଣ୍ଡ ମହୀ
ପୁଣି ହିଁ ପିଟିଲା ଗଦା ଭୀମ କୋପବହି ।
ଅସୁର ନୃପତି ତଳେ ପଡ଼ିଲା ଗରଜି
ଯେସନେ ମନ୍ଦରଗିରି ପଡ଼ିଲାକ ଭାଜି ।
ଦୈତ୍ୟର ଉପରେ ଭୀମ ବସିଲାକ ଡେଇଁ
କଟିଭାଗେ ବକ୍ଷସ୍ଥଳେ ବେନିପାଦ ଦେଇ ।
ଅସୁରର ସୈନ୍ୟ କେହି ନ ରହିଲେ ଆଗେ
ମୁଣ୍ଡକୁ ମୋଡ଼ିଲା ଭୀମ ମୂଷଳ ସଂଯୋଗେ ।
ହୁଙ୍କାର କରିଣ ଭୀମ ଫିଙ୍ଗିଦେଲା ରାଗେ
ଶିବଙ୍କ ଆଗେ ପଡ଼ିଲା ଯାଇ ମୁଣ୍ଡ ବେଗେ ।
ନୃପତି ପଡ଼ିଲା ସୈନ୍ୟ ଭାଙ୍ଗି ପଳାଇଲେ
ଭୀମସେନ ଆଗେ କେହି ଜଣେ ନ ରହିଲେ ।
ରଥେ ରଥ ଗଜେ ଗଜ କଚାଡ଼ଇ ନେଇ
ସକଳ ସୈନ୍ୟ ମାଇଲା ହିଡ଼ମ୍ବିକୀ ସାଇଁ ।
ମୋହରେ ପଡ଼ି ପଳାଇ ନ ପାରିଲେ କେହି
ରଣ ଦେଖିଣ ହସନ୍ତି ଚାରିଭାଇ ରହି ।
ଅସୁର ସୈନ୍ୟ ନିପାତ ଦେଖି କାଶୀପତି
ବୃଷଭ ଆରୋହୀ ରଣେ ମିଳିଲେ ତଡ଼ତି ।
ହସ୍ତରେ ପିନାକ ଧନୁ ତ୍ରିଜଟା ମଉଳି
ଅଶ୍ରୁଧାର ପ୍ରାୟ କଲେ ବାଣ ଜ୍ୱାଳାବଳି ।
ହାବୋଡ଼ା ଶରେକ ଘେନି ମାଇଲେକ ପାଳି
ଘାଏ ମାରୁତି ପଡ଼ିଲା ମହୀପରେ ଢଳି ।
ଭୀମର ପଡ଼ିବା ଦେଖି ଦେବ ଶୂଳଧର
ଅନୁକ୍ଷଣେ ଶରବୃଷ୍ଟି କଲେ ନିରନ୍ତର ।
ଗୋଡ଼ାଇ ମାରନ୍ତି ଶିବ କୁରୁ ପଣ୍ଡୁବଳ
ମହାବାତେ ଯେହ୍ନେ ଖସିପଡ଼େ ଚୂତଫଳ ।
ରକତେ କର୍ଦ୍ଦମ କଲେ ବାଣେ ମହୀତଳ
ରଣ ଛାଡ଼ି ପଳାଇଲେ ସୈନ୍ୟ ହିଁ ସକଳ ।
ଥାଟ ନିସୂଦନ ଦେଖି ବୀର ଧନଞ୍ଜୟ
ରଥକୁ ଆରୋହୀ କଲା ସଂଗ୍ରାମେ ବିଜୟ ।
ଶଙ୍ଖ କାମ ଗୋକ୍ଷୀର ଏ ଚାରି ହୟବର
ସାତ୍ୟକି ବାହଇ ରଥ ପବନହୁଁ ଖର ।
କପିଧ୍ୱଜର ପତାକା ଉଡ଼େ ଫରଫର
ମିଳିଲେ ସେ ସଦାଶିବ ଆଗେ ଧନୁର୍ଦ୍ଧର ।
ଅର୍ଜ୍ଜୁନକୁ ଦେଖି କୋପକଲେ ଦେବରାଜ
ଅକ୍ଷୟ ତୂଣୀରୁ ଦେବ କାଢ଼ିଲେ ନାରାଚ ।
ସେ ନାରାଚ ଅର୍ଜ୍ଜୁନର ଉପରେ ପ୍ରହାରି
ଗଉରବ ଛାଡ଼ି ହର ଶରବୃଷ୍ଟି କରି ।
ନାରାଚ ଆସନ୍ତେ ତାହା ସଂହାରିଲେ ପାର୍ଥ
ଅତି କ୍ରୋଧଭର ହୋଇ ପ୍ରଭୁ ବିଶ୍ୱନାଥ ।
ଦେଖି ବୀର ଧନଞ୍ଜୟ ମନେ ଧ୍ୟାନ କଲା
ଅର୍ଜ୍ଜୁନ ହସ୍ତକୁ ବାଣେ ଶୂନ୍ୟେ ଚଳିଗଲା ।
ଶିବ ମାଇଲେ ଶକତି ବାଣ କାଳାନଳ
ଅର୍ଜ୍ଜୁନ ଶକତି ଏକ କଲେ ପରିତାଳ ।
ଦୁଇବାଣ ଏକହୋଇ ଗଲେ ଅନ୍ତର୍ଦ୍ଧାନେ
ନିଶସ୍ତ୍ର ହୋଇଲେ ଦେବ ତ୍ରୈଲୋକ୍ୟ ଈଶାନେ ।
ଏକମାତ୍ର ପିନାକ ଯେ ଅଛି ହର ତହିଁ
ତୂଣୀରେ ଦେଖିଲେ ବାଣଗୋଟିଏ ଯେ ନାହିଁ ।

ମହାମନ୍ତ୍ର ସୁମରିଲେ ଦେବ ଉମାସାଇଁ
ପର୍ବତା ଶର ପ୍ରହାର କଲେ ବେଗେ ନେଇ ।
ପୃଥିବୀକି ଘୋଟିଆସେ ଲକ୍ଷେକ ପର୍ବତ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ହିଁ ଶୂନ୍ୟ ସ୍ୱର୍ଗପଥ ।
ତା ଦେଖି ପେଶିଲା ବଜ୍ରଶର ଧନଞ୍ଜୟ
ଲକ୍ଷେକ ପର୍ବତ ଧୂଳି ହୋଇଗଲା କ୍ଷୟ ।
ପର୍ବତକୁ ଚୂର୍ଣ୍ଣ ଦେଖି ହର କୋପେ କଲେ
ଯୋଗଲୟ କରି ଅଗ୍ନି ବାଣେକ ପେଶିଲେ ।
ତ୍ରୈଲୋକ୍ୟ ବିକାଶି ଆସେ ପ୍ରଳୟ ବଦନି
ଦିଗ ବହନ ହେବାର ଦେଖି ଫାଲଗୁନି ।
ମେଘାଶରେ ପ୍ରହାରିଲେ ବିଚାରି କିରୀଟି
ଅଗ୍ନିବାଣ ଉପରେ ସେ କଲେ ଜଳବୃଷ୍ଟି ।
ସାଧୁ ସାଧୁ କଲେ ତାଙ୍କୁ ବ୍ରହ୍ମାର ନନ୍ଦନ
ଧନ୍ୟ ଧନ୍ୟ ଅର୍ଜ୍ଜୁନ ତୋ ମହିମା ହିଁ ଧନ୍ୟ ।
ଈଶ୍ୱରଙ୍କୁ ସରି କେହୁ ଅଛଇ ତ୍ରୈଲୋକ୍ୟେ
ରଣରଙ୍ଗ ସହିଲୁ ତୁ କ୍ଷତ୍ରୀ ହୋଇ ଏକେ ।
ଏସନ ବୋଲି ତ୍ରିଦଣ୍ଡ ଗୋଟି ବୁଲାଇଲେ
କଳି ଧୋକଡ଼ିରୁ ଭସ୍ମ ମୁଠାଏ ମାଇଲେ ।
ରୁଦ୍ରଚକ୍ରକୁ ସ୍ମରଣ କଲେ ବିଶ୍ୱନାଥ
ନାଭୀଚକ୍ରେ ଛେଦିଲା ତା ବୀରବର ପାର୍ଥ ।
ମାଇଲେ ସେ ନାଗଫାଶ ବାଣ ବିରୁପାକ୍ଷ
ଗର୍ଜିଣ ପନ୍ନଗମାନେ ଧାଇଁଲେ ପ୍ରତ୍ୟକ୍ଷ ।
ଗରୁଡ଼ ଶସ୍ତ୍ର ପାଇଲା ଦେଖି ଧନଞ୍ଜୟ
ପନ୍ନଗ ଶରକୁ ସେହି କଲା ଯାଇ କ୍ଷୟ ।
ନାରାୟଣ ଶରଗୋଟି ପେଶିଲା ଅର୍ଜ୍ଜୁନ
ମୋହେ ମୂର୍ଚ୍ଛାଗତ ହେଲେ ଦେବ ତ୍ରିଲୋଚନ ।
ରବି ଶଶିପୁରେ ପଶି ଉହାଡ଼େ ରହିଲେ
ପର୍ବତ ସହିତେ ଚରାଚର ହିଁ କମ୍ପିଲେ ।
ସମୁଦ୍ର ହିଁ ଗଲା ଘୁଞ୍ଚି କୁରୁମ ଚମକି
ପାତାଳପୁର କମ୍ପିଲା ମହୀଗଲା ବାଙ୍କି ।
ମରୁତ କୁବେର ବସୁ ବାସବ ଅନଳ
ବୃହସ୍ପତି ଆଦି ଗ୍ରହ ଦଶଦିଗପାଳ ।
ନାରାୟଣ ଶସ୍ତ୍ର ଦେଖି କଲେ ଭୟ ମନେ
ପଳାଇ ପଶିଲେ ଯାଇ ବ୍ରହ୍ମାର ଭୁବନେ ।
ଈଶ୍ୱର ହିଁ ନାଶଗଲେ ଯାହାର ଆଧାନେ
ତେଣୁ ଭୟେ ପଳାଇଲେ ଦେବାସୁରମାନେ ।
ଆରତ ହୋଇ ପଳାଇଗଲେ ଶିବଗଣ
ପଞ୍ଚମନରେ ଭାଳିଣ କରନ୍ତି ରୋଦନ ।
କପାଳୀର ନିଧନରେ ପଳାଇଲେ ବଳ
ହାତୀ ରଥ ଯେତେ ଥିଲେ ଗଲେ ଯମଆଳ ।

ନଦୀଏ ତହିଁ ବହିଲା ଦୈତ୍ୟଙ୍କ ରକତେ
ବୃକ୍ଷମୂଳୁ ଭାଙ୍ଗିପଡ଼େ ଯେହ୍ନେ ମହାବାତେ ।
ତେସନ ହୋଇ ପଡ଼ିଲେ ଅସୁର ସଇନ୍ୟ
ସମସ୍ତ ଘେନି ପଡ଼ିଲା ରାଜା ମୃଗସେନ ।
ଯୁଝିବା ଶକତି ତହିଁ ନାହିଁ ଏକ ଜଣେ
ସମସ୍ତଙ୍କୁ ସଂହାରିଲା ପାର୍ଥ ଏକବାଣେ ।
ନୀଳେନ୍ଦ୍ରି କନ୍ୟାକୁ ପାର୍ଥ ରଥରେ ବସାଇ
ବାହୁଡ଼ି ଆସଇ ଜୟ ଶଙ୍ଖକୁ ବଜାଇ ।
ସୁର ଇନ୍ଦ୍ରର ସମାନେ ବିକାଶଇ ତେଜ
ଯୁଧିଷ୍ଠି ପାଶେ ମିଳିଲେ ବାସବ ଆତ୍ମଜ ।
କହନ୍ତି ଯୁଧିଷ୍ଠି ଦେବ ଅର୍ଜ୍ଜୁନକୁ ଚାହିଁ
ଦେଖ ବାବୁ ପଡ଼ିଛନ୍ତି ଅନ୍ଧସୁତେ ତହିଁ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥମା ହୋଇଲେ ନିଧନ
ଆବର ପଡ଼ିଲେ ରଣେ କର୍ଣ୍ଣ ଦୁଃଶାସନ ।
ଭୀମସେନ ହାତକୁ ତ ଶଙ୍କା ନାହିଁ ମନେ
ଦୁର୍ଯ୍ୟୋଧନ ହତେ ରହି ନ ପାରେ ଜୀବନେ ।
ଗାନ୍ଧାରୀ ବଦନ ମୁହିଁ ଚାହିଁବି କେମନ୍ତେ
ଅର୍ଜ୍ଜୁନ ବୋଇଲେ ଶୋକ ନ ଘେନ ହେ ଚିତ୍ତେ ।
ସଂଗ୍ରାମରେ ପଡ଼ିଛନ୍ତି କୃଷ୍ଣ ହଳଧର
ଯଦୁବଂଶ ଭୋଜବଂଶ ଘେନି ସଙ୍ଗତର ।
ସୋଦର ଛାରକୁ କିମ୍ପା କର ଏଡ଼େ ଶୋକ
ଜଗତର ଜୀବନ ଯେ ତ୍ରିଲୋକ୍ୟ ପାଳକ ।
ଅବଶ୍ୟ କଥାଏ ଏଥେ ହୋଇବ ଗୋସାଇଁ
ଯୁଧିଷ୍ଠି ବୋଇଲେ ଏହା କହୁ କାହିଁପାଇଁ ।
ଦୁର୍ଯ୍ୟୋଧନ ନାମଧାରୀ ଯେବଣ ହିଁ ଲୋକ
ତାହାର ନିଧନେ ମୋର ହୃଦ ଦକ ଦକ ।
ତୁ ବାବୁ ସୁମରୁ କିନା ଦେବ ମଘବାନ
ଅମୃତ ବରଷୁ ସର୍ବେ ପାଆନ୍ତୁ ଜୀବନ ।
ଯୁଧିଷ୍ଠିଙ୍କ ବଚନରେ ପାର୍ଥ ତୋଷ ହୋଇ
ଇନ୍ଦ୍ରଙ୍କୁ ଯେ ସ୍ତୁତି କଲେ ସ୍ୱର୍ଗକୁ ହିଁ ଚାହିଁ ।
ଭୋ ଦେବ ଅମରନାଥ ସୁରପୁର ସାଇଁ
ସଙ୍କଟେ ସ୍ମରଣ ନାଥକର ମୋତେ ତ୍ରାହି ।
ସଂସାର ପାଳକ ନାଥ ଜଗତ ତାରଣ
ପ୍ରସନ୍ନେ ଅଭୟବର ଦେଉ ମଘବାନ ।
ଜମ୍ଭଭେଦୀ ନାମ ତୋର ଜମ୍ଭଦୈତ୍ୟ ମାରି
କାମୁକ ପୁରୁଷ ତୋର କୋଟି ଅପସରୀ ।
ଦିଗପାଳମାନେ ତୋର ସଦା ଆଜ୍ଞାକାରୀ
ନିର୍ଘାତ ଥିବାରୁ ହସ୍ତେ କାମ ବଜ୍ରଧାରୀ ।
ଗଉତମ ମୁନି ଶାପେ ତୁ ସହସ୍ର ଯୋନି
ସହସ୍ର ଲୋଚନ କଲୁ ଶୁଦ୍ଧଯୋଗ ଘେନି ।

ଜନ ଜନ୍ତୁ ପାଳୁ ତୁହି ସଂସାର ତାରଣ
ପାରିଜାତ ଫୁଲମାନ ତୋର ଆଭରଣ ।
ସର୍ବଜନ୍ତୁଙ୍କ ଉପରେ ଦେବଙ୍କ ଉତ୍ତମ
ତୋହର ବଚନ ଭାଙ୍ଗି ନ ପାରଇ ଯମ ।
ଭୋ ଇନ୍ଦ୍ର ଦେବତା ତୁମ୍ଭେ ପ୍ରତିକାର କର
ଏ ମୋହର ଦଇନୀ ତୁ ଘେନ ସୁନାସୀର ।
ତୋ ସଙ୍ଗେ ବିବାଦ କଲା ହିମବାନ ଯହୁଁ
ପର୍ବତଙ୍କ ପକ୍ଷଛେଦି ପକାଇଲୁ ତହୁଁ ।
ଦେବଙ୍କ ଉପରେ ତୁହି ଦେବନାମ ବହୁ
ଗୋବିନ୍ଦର ଅପମାନ ଦଣ୍ଡେ ହେଁ ନ ସହୁ ।
ତୋହର ଦେଖନ୍ତେ ରାମକୃଷ୍ଣ ହେଲେ ହତ
ସମସ୍ତେ ବଞ୍ଚନ୍ତୁ ବୃଷ୍ଟି କର ତୁ ଅମୃତ ।
ଏତେ ବୋଲି ପାର୍ଥ ତାଙ୍କୁ ସୁମରଣା କଲା
ଇନ୍ଦ୍ରଙ୍କୁ ସେ ସ୍ତୁତିକରି ଓଳଗି ଶୋଇଲା ।
ତଥାପି ଅମୃତ ବୃଷ୍ଟି ବାସବ ନ କଲା
କୋପେ ବୀର ଧନଞ୍ଜୟ ପ୍ରଜ୍ୱଳିତ ହେଲା ।
ଅଧର ଦଶନେ ଚାପି ବୋଇଲା ଉତ୍ତର
ମୁହିଁ ତୋହର ନନ୍ଦନ ତୁ ମୋର ପିଅର ।
ଏ ମୋହର ଭକତି ନ ଘେନୁ ଏତେବେଳେ
ଭକତ ବତ୍ସଳ ତୋତେ ବୋଲନ୍ତି ସକଳେ ।
ଶ୍ରୀକୃଷ୍ଣଙ୍କ ସ୍ନେହ ତୋତେ ଥାଇ ସବୁକାଳେ
ନିର୍ଦ୍ଦୟ ପୁରୁଷ ଦୟା ନାହିଁ ତୋର ତିଳେ ।
ସଂସାର ତାରଣ ନାଥ ନାହିଁ ତୋର ଜ୍ଞାନ
ଦୁଃଖକାଳେ ବନ୍ଧୁ ଯେବେ ନୁହନ୍ତି ପ୍ରସନ୍ନ ।
କି କରିବେ ବଞ୍ଚିଥାଇ ସେମାନେ ସଂସାରେ
ଏହାକହି ଗାଣ୍ଡୀବକୁ ଧଇଲେ ସେ କରେ ।
ଭୂମିଗତ କରିବି ମୁଁ ଅମର ଭୁବନ
ଅମୃତ ଆଣି ରଖିବି ଶ୍ରୀହରି ଜୀବନ ।
ପୁତ୍ର ବନ୍ଧୁ ଘେନି ଯେବେ ଗୋବିନ୍ଦ ମରିବ
ତୁ କିମ୍ପା ସମ୍ପଦେ ଥିବୁ ନିର୍ଭୟେ ବାସବ ।
ଐରାବତକୁ ଯେ ଶରେ ବାସବକୁ ଶରେ
ସ୍ୱର୍ଗପୁର ଛେଦିବାକୁ ମାରେ ମୁଦ୍‌ଗରେ ।
ତିନିବାଣ ଏକାବେଳେ ଧନୁରେ ଯୋଚିଲା
ସ୍ୱର୍ଗ ଛାଡ଼ି ସୁରେଶ୍ୱର ଶୂନ୍ୟରେ ରହିଲା ।
ପଚାରଇ ବୃହସ୍ପତି ଚାହିଁ ସୁରପତି
କିମ୍ପାଇ କମ୍ପୁ ଅଛଇ ପୁର ବାରସ୍ୱତୀ ।
ଦେବଗୁରୁ ବୋଇଲେ ହେ ଶୁଣ ସହସ୍ରାକ୍ଷ
ରାମକୃଷ୍ଣ ସହିତରେ ମଲେ ସର୍ବଲୋକ ।
ତେଣୁ ଅର୍ଜ୍ଜୁନର ଅତି ବିଚଳିତ କାୟ
ତୋତେ ଯେ ବହୁତ ସ୍ତୁତି କଲା ଧନଞ୍ଜୟ ।

ଯହୁଁ ଅମୃତ ନ ଦେଲୁ ତୁହୋ ସୁରଗଣ
କୋପେ ଅର୍ଜ୍ଜୁନ ତୋ ପାଇଁ ଯୋଚିଅଛି ବାଣ ।
ସଂଗ୍ରାମେ ପଡ଼ିଥିବାରୁ ରାମ ନାରାୟଣ
ଉପରୋଧ ଛାଡ଼ିଲା ସେ ସୁଭଦ୍ରା ରମଣ ।
ଅମୃତ ବୃଷ୍ଟି ତୁ କର ରହୁ ସ୍ୱର୍ଗବାସ
ଏ ଅମର ଭୁବନକୁ ନ କର ବିନାଶ ।
ଦେବଗୁରୁ ବଚନରେ ସହସ୍ରାକ୍ଷ ତୁଷ୍ଟି
ରାମକୃଷ୍ଣଙ୍କ ଉପରେ କଲା ସୁଧା ବୃଷ୍ଟି ।
ଅମୃତ ପାଇଣ ଚେତି ଉଠିଲେ ସକଳ
ମାର ମାର ବୋଲି ତହିଁ କରିଲେ ଚହଳ ।
ବଳରାମ ଉଠି କୋପେ ଗଲେ ପୁତ୍ରଛଳେ
କପିଳାସ କନ୍ଦରକୁ ଉପାଡ଼ିଲେ ହେଳେ ।
ପକାଇ ଦେବି ମୁଁ ନେଇ ମହାସିନ୍ଧୁ ଜଳେ
କଥାଗୋଟି ରହିଥିବ ଏ ମହୀମଣ୍ଡଳେ ।
କପିଳାସ ଉପାଡ଼ନ୍ତେ ଦେଖି ଗଣେଶ୍ୱର
କୋପେଣ ଧାଇଁଲେ ଏକଦନ୍ତ ଲମ୍ବୋଦର ।
ନନ୍ଦିଘୋଷ ରଥେ ଥିଲା ପବନର ସୁତ
ଉଗାଳିଲେ ଯାଇ ଗଣନାଥଙ୍କୁ ତୁରିତ ।
ତାହା ଦେଖି କୋପ କଲେ ଗଉରୀ ନନ୍ଦନ
ପରଶୁ କୁଠାର ଘେନି ଧାଇଁଲେ ବହନ ।
ବିକ୍ରମି ଯାଇଣ ଗଦା ପ୍ରହାରିଲେ ଖରେ
ଉଛୁଳି ପଡ଼ିଲା ବାଜି ହନୁର ଉପରେ ।
ପରଶୁ ହସ୍ତ ତା ଦେଖି ହୋଇ କୋପମୂର୍ତ୍ତି
ହନୁକୁ ଧଇଲେ ଥୋର ହସ୍ତେ ଗଣପତି ।
ଶ୍ରୀରାମଙ୍କୁ ସୁରମଣା କଲା ହନୁଯତି
ଯୋଜନ ପର୍ଯ୍ୟନ୍ତେ ଲାଞ୍ଜ ବଢ଼ାଇଲା ଧାତି ।
ଗଣନାଥଙ୍କୁ ବାନ୍ଧିଲା ସେହି ଲାଙ୍ଗୁଳରେ
ବନ୍ଧା ହୋଇଲେ ସେ ଦୁହେଁ ସଂଗ୍ରାମ ଭୂମିରେ ।
ଧରା ଧରି ହୋଇ ପଡ଼ିଗଲେ ମାଲବନ୍ଧେ
କେହୁ ବା ତଳେ ପଡ଼ନ୍ତି କେ ଉଠନ୍ତି କନ୍ଧେ ।
ଗଡ଼ାଗଡ଼ି ଘାତେ କଲେ ପର୍ବତକୁ ଚୂର
ମୁଖ ବାଟରେ ରୁଧିର ବହେ ଝର ଝର ।
କୈଳାସ ନିମନ୍ତେ କୋପେ କଲେ ଯେ ପାର୍ବତୀ
ପିଶାଚୁଣୀ ବୃନ୍ଦ ଘେନି ସେ ଧାଇଁ ଆସନ୍ତି ।
କେ ବ୍ୟାଘ୍ର ବାହନେ କେହୁ ମରାଳ ବାହନେ
ଶାର୍ଦ୍ଦୁଳ ଚଢ଼ି ଗମନ କରନ୍ତି କେ ରଣେ ।
ଏମନ୍ତେ ସେ ନବକୋଟି ଚାମୁଣ୍ଡା ଅଇଲେ
ଶତେପୁର କରି ବଳରାମଙ୍କୁ ବେଢ଼ିଲେ ।
ଘୋର କିଳିକିଳା ଶବ୍ଦ କରନ୍ତି ସେ ଚଣ୍ଡୀ
ଊର୍ଦ୍ଧ୍ୱକେଶୀ ମୁଣ୍ଡମାନ ସିନ୍ଦୂରରେ ମଣ୍ଡି ।

ଦନ୍ତରେ ଧରି ଅଛନ୍ତି ନରଶିର ମଣ୍ଡି
ରୁଧିର ପାନରେ ମତ୍ତ ଶୋହେ ନାଚଖଣ୍ଡି ।
ଏସନ ରୂପ ଦେଖାଇ କରାନ୍ତି ଯେ ଭୟ
ଫୁଫୁକାର ଉଠେ ମହାଅଗ୍ନି ତେଜୋମୟ ।
ମୃତ ସଞ୍ଜୀବନୀ ମନ୍ତ୍ର ପଢ଼ିଲେ ପାର୍ବତୀ
ଈଶ୍ୱର ସଙ୍ଗେ ଚଉଦକୋଟି ଗଣ ବର୍ତ୍ତି ।
କପିଳାସ ଉପାଡ଼ିବା ଦେଖି ପଶୁପତି
ବୃଷଭ ଆରୋହୀ ଦେବ ଆଗରେ ହୁଅନ୍ତି ।
ବିଶ୍ୱନାଥ କୋପେ ଦେଖି ଦେବ ନାରାୟଣ
ସୁଦର୍ଶନ ଚକ୍ରଧରି ବିଜୟ ଆପଣ ।
ସଦାଶିବ ବିଶ୍ୱରୂପ ଦେବେ ଅଗୋଚର
ଅର୍ଜ୍ଜୁନର କୋପାନଳେ କମ୍ପଇ ଅମର ।
ବଳରାମର ପ୍ରତିଜ୍ଞା ମହା ପରାକ୍ରମ
ଅନ୍ୟୋଅନ୍ୟରେ କରନ୍ତି ସେଠାରେ ସଂଗ୍ରାମ ।
ହରି ହର ଯୁଦ୍ଧ ଯହୁଁ ବାସବ ଜାଣିଲେ
ଐରାବତ ଚଢ଼ି ଇନ୍ଦ୍ର ତହୁଁ ବିଜେ କଲେ ।
ଦେବ କିନ୍ନର ଗନ୍ଧର୍ବ ଘେନିଣ ଆକାଶେ
ବୃହସ୍ପତି ବିଜେ କଲେ ବ୍ରହ୍ମାଙ୍କର ପାଶେ ।
ତ୍ରିଦଶ ଦେବତା ଘେନି ବିଶ୍ୱଦେବା ଗଲେ
ଦକ୍ଷ ପ୍ରଜାପତି ସହ ସମସ୍ତେ ମିଳିଲେ ।
ନାଦର ବୋଇଲେ ପିତା ବେଗେ ରୁହା କଲି
ଏହିକ୍ଷଣି ରସାଗତ ହେବ ମହିସ୍ଥଳୀ ।
ବ୍ରହ୍ମା ବୋଇଲେ ରେ ବାବୁ ତୁହି ମୂଳମନ୍ଦ
ତୁହି ସିନା ଭିଆଇଲୁ ଏଡ଼େକ ପ୍ରମାଦ ।
ନାରଦ ବୋଇଲେ ପିତା ସଂସାରର ହିତେ
କୁତୂହଳ ଭିଆଇଲି ଦେଖିବା ନିମନ୍ତେ ।
ବସୁବୀର ମୃଗସେନ ପାଇ ସିନା ଦ୍ୱନ୍ଦ୍ୱ
ସଂସାର କି ରଖିଥାନ୍ତେ ସେ ଅସୁର ମନ୍ଦ ।
ବିଶ୍ୱନାଥଠାରୁ ସେହି ପାଇଥିଲେ ବର
ପୁର କରି ନେଇଥାନ୍ତେ ଏହି ସୁର କ୍ରୂର ।
ହରିହର ଏକ ଆତ୍ମା ବୋଲନ୍ତି ଜଗତେ
ସହି ନ ପାରିଲେ କଳି କଲେ ଅନିମିତ୍ତେ ।
ଏବେ ପିତା ଯାଇ ତୁମ୍ଭେ ସନ୍ଧି ବେଗେ କର
ନ ବୁଡୁ ସଂହାର ନୋହୁ ନୋହୁ ଏ ସମର ।
ନାରଦ ବଚନେ ବ୍ରହ୍ମା କରନ୍ତି ଗମନ
ତୁରିତେ ମିଳିଲେ ଯାଇ ରଣ ସନ୍ନିଧାନ ।
କୁଶହସ୍ତ ହୋଇ ବ୍ରହ୍ମା ମଧ୍ୟରେ ପଶିଲେ
ଦୁଇ କତିକି ଯେ ଦୁଇ ଦୁଇ ମୁଖ କଲେ ।
ଦୁଇ ବଦନ୍ତେ କରନ୍ତି ଶ୍ରୀକୃଷ୍ଣଙ୍କୁ ସ୍ତୁତି
ଦୁଇ ମୁଖେ ସ୍ତୁତି ମହାଦେବଙ୍କୁ କରନ୍ତି ।
ଜୟ ଜୟ ନୀଳକଣ୍ଠ ଉମା ପ୍ରାଣନାଥ
ଜୟ ତୁ ଅନାଦିନାଥ ସପ୍ତଫେଣୀ ମାଥ ।
ସମର୍ଥ ହଳ ସୌନନ୍ଦ ମୂଷଳ ତୋ ହସ୍ତେ
ଜୟ ତୁ ପରମଯୋଗୀ ଜୟ ବିଶ୍ୱନାଥେ ।
ଦେବକୀ ଦୁର୍ଲ୍ଲଭ ଅଟେ ତୁମ୍ଭର ମହିମା
ଯାହାର ଘଡ଼ିକେ ହୁଏ ଦିବସେକ ବ୍ରହ୍ମା ।
ଚାରି ସହସ୍ର ଯୁଗରେ ବ୍ରହ୍ମାଙ୍କୁ ଦିବସେ
ବ୍ରହ୍ମାଙ୍କର ଚାରିଯୁଗ ବିଷ୍ଣୁଙ୍କୁ ନିମିଷେ ।
ବ୍ରହ୍ମା ବିଷ୍ଣୁଙ୍କର ଚାରିଯୁଗ ହୁଏ ଜାଣ
ଈଶ୍ୱରଙ୍କୁ ନିମିଷ ଏ କଥା ହିଁ ପ୍ରମାଣ ।
ତୋ ମହିମା କହିବାକୁ ଅଛି କେ ଭାଜନ
ଯାହାଙ୍କୁ ଚିନ୍ତନ୍ତି ମୁନିଜନେ କରି ଧ୍ୟାନ ।
ତୋର ଚାରିଯୁଗେ ପୃଥ୍ୱୀ କୋଟିବାର ନାଶ
ଅନାଦି ପୁରୁଷ ତୁହି ଅଟୁ ବିଶ୍ୱବାସ ।
ସିଦ୍ଧ ପୁରୁଷ ଯୋଗୀନ୍ଦ୍ର ଜନ ତୁ ଶ୍ରୀରାମ
ଭକତ ବତ୍ସଳ ଅନ୍ତରାତ୍ମା ପରଂବ୍ରହ୍ମ ।
ଯୁଗାନ୍ତକ ପୁରୁଷ ତୁ ମହା ସିଦ୍ଧଯୋଗୀ
ଗୁଣ ଘୋଷରେ ସଂହାରୁ ତୁହି ମହାରାଗୀ ।
ପୃଥ୍ୱୀର ନିମନ୍ତେ ତୋର କହ୍ନା ଅବତାର
ଜନମ ନାଶିଲୁ ଦୈତ୍ୟଗଣ ତୁ ଅପାର ।
ବିଷ୍ଣୁ ଘେନି ଫେଡ଼ିଲୁ ତୁ ବିଶ୍ୱଭାର
କାଳ କାମ ନାହିଁ ଦିନରାତି ତାହିଁ ତୋର ।
ଏସନକ ସ୍ତୁତି ଯହୁଁ କଲେ ବେଦପତି
ଶୁଣି ବଳରାମଙ୍କର ତୋଷ ହେଲା ମତି ।
ବ୍ରହ୍ମା ମୁଖ ଚାହିଁ ରାମ ବୋଲନ୍ତି ଏମନ୍ତ
କିମ୍ପା ମୋତେ ସ୍ତୁତି କରୁ କହ ଲୋକ ତାତ ।
ବ୍ରହ୍ମାଏ ବୋଇଲେ ରାମ କୋପ ହିଁ ସଂହର
ନିଜସ୍ଥାନେ ଥୁଅ ନେଇ କୈଳାସ କନ୍ଦର ।
କେବଣ ଚରିତ ଶୁଣି ବୁଝିବାନା ଭାବ
ଦୁଇଜଣଙ୍କର କଥା କହ ଦୁଇ ଦେବ ।
ଏ ବଚନ ଶୁଣି ରାମ୍ ସଂହରିଲେ ରାଗ
କପିଳାସ କନ୍ଦରକୁ କଲେ ଭୂମିଭାଗ ।
ବ୍ରହ୍ମାଙ୍କ ଆଗେ ମିଳିଲେ ଯାଇ ହରିହର
ନୀଳାମ୍ବର ସହିତରେ କରନ୍ତି ଉତ୍ତର ।
ସଦାଶିବ ବୋଲନ୍ତି ହୋ ଶୁଣ ପଦ୍ମଯୋନି
ଗଣ୍ଡମୂଳ ପାଇଲା ଏ ବରୁଣ ନନ୍ଦିନୀ ।
ବନସ୍ତେ ମାତା ତାହାର କାନ୍ଦୁଥିଲା ଘେନି
ବନେ ଭ୍ରମି ଯାଉଥିଲୁ ଦୁର୍ଗା ଆମ୍ଭେ ବେନି ।
ଦେଖିଲେ ପାର୍ବତୀ ତାର ବାଳିକା ରୋଦନ
ବୃଷଭୁଁ ଓହ୍ଲାଇ ତାକୁ ପୁଚ୍ଛନ୍ତେ କାରଣ ।

ସେ ବୋଲେ ଯାର ହୋଇଛି ଗଣ୍ଡମୂଳ ଦୋଷ
ଯେବେ ରଖିବୁ ଦୁହିତା ଦେବଇଁ ଅବଶ୍ୟ ।
ସତ୍ୟ କରିବାରୁ ତାକୁ ଆମ୍ଭେ ରକ୍ଷା କଲୁ
କାର୍ତ୍ତିକ ନିମନ୍ତେ ମଣି ଦେଇଣ ବରିଲୁ ।
ବିଭା ହେବାବେଳେ ମୋର ଗଲା ପୁତ୍ରସ୍କନ୍ଧ
ଏହାଙ୍କର ପୁତ୍ରେ ଆସି କଲେ କଳି ଦ୍ୱନ୍ଦ୍ୱ ।
ନୀଳାମ୍ବର ବୋଇଲେ ତୁ ଶୁଣ ବେଦବର
ବରୁଣ ଯାଇ ବରିଲା ମୋହର କୁମର ।
ବିଭା କରୁଥିଲା ବସି ଶୁଭଲଗ୍ନ ଧରି
ଏହାର ପୁତ୍ର ତହିଁକି ଆସେ କି ବିଚାରି ।
ମୋର ପୁତ୍ରକୁ ମାଇଲା ହସ୍ତଗଣ୍ଠିବେଳେ
ବେଦୀରୁ କନ୍ୟାକୁ ଘେନିଗଲ ଧରି ବଳେ ।
ବିଷ୍ଣୁର ପୁତ୍ରମାନଙ୍କୁ ମାରି ଠାବେ ଠାବେ
ଏକଥା ବିଚାରି ବ୍ରହ୍ମା ମଧ୍ୟସ୍ଥ ପ୍ରସ୍ତାବେ ।
ବୋଇଲେକ ବ୍ରହ୍ମଯୋନି ବୁଝିବା ପ୍ରମାଣ
ବରୁଣ ଦେବଙ୍କୁ ଏଥେ ବେଗକରି ଆଣ ।
ସଂକ୍ଷେପି ବୁଝିବା ଆମ୍ଭେ ତାହାକୁ ହକାରି
ଆଜ୍ଞାଦେଲେ ବେଦବ୍ରହ୍ମା ନାରଦେ ହକାରି ।
ଶୀଘ୍ର ଯାଅ ଘେନିଆସ ବରୁଣକୁ ଏଥେ
ଆଜ୍ଞାମାତ୍ରେ ଚଳିଗଲେ ତହୁଁ ତପୋବନ୍ତେ ।
ସମୁଦ୍ର ହ୍ରଦେ ବରୁଣ ରାଜା ଲୁଚିଥିଲା
ନାରଦ ବୋଇଲେ ଯିବା ବ୍ରହ୍ମା ଆଜ୍ଞାଦେଲା ।
ମନରୁ ଫେଡ଼ିଲା ଚିନ୍ତା ଘୁଣି ଏ ବଚନ
ନାରଦ ସଙ୍ଗେ ଚଳିଲା ବରୁଣ ରାଜନ ।
ଯେଉଁଣଠାରେ ଅଛନ୍ତି ବ୍ରହ୍ମା ତ୍ରିଲୋଚନ
ତାହାଙ୍କ ଆଗେ ମିଳିଲେ ରାଜା ତପୋଧନ ।
ପ୍ରଣମି ଉଭା ହୋଇଲା ଯୋଡ଼ି ବେନିକର
ନମିଲା ସେ ନୀଳାମ୍ବର ଶ୍ରୀକୃଷ୍ଣ ପୟର ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ଶୁଣ ହୋ ବରୁଣ
ବିଭାର ଚରିତ କହ ଆମ୍ଭ ଆଗେ ପୁଣ ।
ଶୁଣି ବରୁଣ ରାଜନ କହେ କରଯୋଡ଼ି
ଆନନ୍ଦାନନ୍ଦନକୁ ଯାଇ ଆଣିଲି ମୁଁ ବରି ।
ବିଭାଘର କରାଉଛି ବର କନ୍ୟା ଘେନି
ବିଦ୍ୱଜ୍ଜନ ସୀଉକାରେ ଘେନିଣ କାମିନୀ ।
ହସ୍ତଗଣ୍ଠି ବେଳେ କାହୁଁ କାର୍ତ୍ତିକ ଅଇଲେ
ଆନନ୍ଦାନନ୍ଦନକୁ ମାରି କନ୍ୟା ଘେନିଗଲେ ।
ସଂଗ୍ରାମେ କୁମରମାନେ ପଡ଼ିଲେକ ଯହୁଁ
ପଳାଇ ଡରେ ଲୁଚିଲେ ହ୍ରଦେ ଯାଇ ତହୁଁ ।
ବ୍ରହ୍ମାଏ ବୋଇଲେ ତୁମ୍ଭେ ଶୁଣ ନୀଳାମ୍ବର
ବରୁଣ ବରିଲା ଯେବେ ତୁମ୍ଭର କୁମର ।
ବିଶ୍ୱନାଥ କୁମରକୁ ବରିଲା ତ ନାରୀ
ଦୁହିଁଙ୍କ ବରଣ ଆମ୍ଭେ ଭାଙ୍ଗି ତ ନ ପାରି ।
ଏ ମୋହର ବଚନକୁ ଶୁଣ ତ୍ରିପୁରାରୀ
ମଧ୍ୟସ୍ଥ ପଣେ କହିବୁ ଆମ୍ଭେ ତ ବିଚାରି ।
କାର୍ତ୍ତିକ ଆନନ୍ଦାନନ୍ଦେ ବରବେଶ କର
ଚାଲ ଘେନିଯିବା ଆମ୍ଭେ ବରୁଣର ପୁର ।
ଦୁଇ ବର ବସାଇବା ବେଦୀର ଉପରେ
ଅଳଙ୍କାରମାନ ଦେବା କନ୍ୟାର ଶରୀରେ ।
ବରଣମାଳା କନ୍ୟାର ହସ୍ତେ ଦେଇ ଦେବ
ଯାହାର କଣ୍ଠରେ କନ୍ୟା ମାଳା ଲମ୍ବାଇବ ।
ତାହାର ହୋଇବ କନ୍ୟା ଆମ୍ଭର ବିଚାରେ
ଶୁଣି ସନମତ କଲେ ହର ନିଳାମ୍ବରେ ।
ତୁରିତେ ମିଳିଲେ ଯାଇ ବରୁଣ ଭୁବନେ
ବ୍ରହ୍ମା ବିଷ୍ଣୁ ସହିତରେ ଘେନି ନୀଳାମ୍ବରେ ।
ଆନନ୍ଦାନନ୍ଦ ଯେ ବେନିଖଣ୍ଡ ହୋଇଥିଲେ
କମଣ୍ଡଳୁ ପାଣି ସିଞ୍ଚି ବ୍ରହ୍ମା ଜୀଆଇଲେ ।
ଦେଖି ନୀଳାମ୍ବର ନେଇ କୋଳେ ବସାଇଲେ
ଆଲିଙ୍ଗନ କରି ରାମ ମୁଖେ ଚୁମ୍ବ ଦେଲେ ।
କାର୍ତ୍ତିକ ଆନନ୍ଦାନନ୍ଦେ ବରବେଶ କରି
କୋଳକରି ଘେନିଗଲେ ତହୁଁ କୁଶଧାରୀ ।
ରତ୍ନ ବେଦୀର ଉପରେ ତହୁଁ ବସାଇଲେ
ବରୁଣ ରାଜାକୁ ଚାହିଁ ବ୍ରହ୍ମାଏ ବୋଇଲେ ।
କନ୍ୟାକୁ ଆଣ ସୁବେଶ ବେଗେ ତୁ କରାଇ
ଆଜ୍ଞା ଦେଲେ ବ୍ରହ୍ମା ତହୁଁ ବରୁଣକୁ ଚାହିଁ ।
ବ୍ରହ୍ମା ଆଜ୍ଞା ପାଇ ତହୁଁ ଗଲା ଦଣ୍ଡଧାରୀ
ଅର୍ଜ୍ଜୁନ କୋଳରୁ ବେଗେ ଆଣିଲା କୁମାରୀ ।
ଦିବ୍ୟବେଶ କରାଇଣ କନ୍ୟାରତ୍ନ ନେଲେ
ବେଦୀ ଛାମୁଣ୍ଡିଆ ତଳେ ନେଇ ଉଭା କଲେ ।
ବରୁଣ ବୋଇଲେ ମାଗୋ ଶୁଣ ମୋ ଉତ୍ତର
ଦୁଇ ବର ବିଚାରିଣ ଯାହାକୁ ତୁ ବର ।
ପିତାର ବଚନେ ବାଳା କଲାକ ଗମନ
ପ୍ରବେଶ ହୋଇଲେ ଯାଇ ରତ୍ନବେଦୀ ସ୍ଥାନ ।
ପ୍ରଥମେ ଚାହିଁଲା ଯାଇ କାର୍ତ୍ତିକର ମୁଖ
ଏହାକୁ ବରିଲେ ମୋର ନାହିଁ କିଛି ସୁଖ ।
ଏକମୁଖେ ପୁରୁଷକୁ ମନାଇ ନୁହଇ
ଷଡ଼ଗୋଟା ମୁଖ କେହ୍ନେ ମୁହିଁ ବୋଧିବଇଁ ।
ଆନନ୍ଦାନନ୍ଦନକୁ ଦେଖି ବରୁଣ ଦୁହିତା
କନ୍ଦର୍ପ ସମ ସୁନ୍ଦର ଦେଖି ବଳବନ୍ତା ।
ବିଚାରି ବୋଇଲା ବାଳୀ ଏହି ମୋର କାନ୍ତ
ଏହାର ରୂପ ହିଁ ମୋର ମନରେ ସିଦ୍ଧାନ୍ତ ।

ଏତେକ ବିଚାରି ବାଳୀ ମନେ ମନେ ଭାଳି
ଆନନ୍ଦାନନ୍ଦ କଣ୍ଠରେ ଲମ୍ବାଇଲା ମାଳୀ ।
ଦେଖିଣ ସନ୍ତୋଷ ହେଲେ କାହ୍ନୁ ସଂକର୍ଷଣ
ବ୍ରହ୍ମା ବୋଇଲେ ରୁଚିଲା ଯାକୁ କନ୍ୟା ମନ ।
ନ ବିଚାରି କିମ୍ପା ତୁମ୍ଭେ ଯୁଝ ଅନ୍ୟୋଅନ୍ୟେ
ସମସ୍ତେ ମିଳିବା ଚାଲ ବରୁଣ ଭୁବନେ ।
ଦୁହିତା ଗୋଟିକୁ ତାର କରାଇବା ଦାନ
କୈଳାସ ଯିବାକୁ ମନ କଲେ ତ୍ରିଲୋଚନ ।
ବ୍ରହ୍ମାଏ ବୋଇଲେ ମନ ଆନକି ହୋଇଲା
ଆମ୍ଭ ବିଚାର କି ତୁମ୍ଭ ମନକୁ ନଇଲା ।
ସଦାଶିବ ବୋଇଲେ ହେ ମରାଳ ବାହନ
ଯୁକ୍ତି କଥାରେ ଆମ୍ଭର କିମ୍ପା ଆନ ମନ ।
ବ୍ରହ୍ମା ବୋଇଲେ ଏ କଥା ନୁହଇ ତ ଭଲ
କପିଳାସ ଯିବା ବୋଲି କିମ୍ପାଇ ବୋଇଲ ।
ଶୁଭଯୋଗେ ରାମ ପୁତ୍ର ତୁମ୍ଭେ ବିଭା କର
ତେବେ ବୋଲିବା ନା ଏକ ଆମ୍ଭ ହରିହର ।
ଶୁଣି ପରମ ସନ୍ତୋଷ ହୋଇଲେ ଶଙ୍କର
ବରୁଣକୁ ବୋଇଲେ ହେ ଶୀଘ୍ର ବିଭାକର ।
ସମସ୍ତ ଯୋଗାଡ଼ମାନ କଲା ଜଳପତି
ବିଚାର ବିଧି ଯେତେକ ଆଣିଲେ ଝଟତି ।
ବଳରାମ ବସିଲେକ ପୁତ୍ର କୋଳେ ଧରି
ମଙ୍ଗଳବିଧି ସ୍ୱୀକାର ବରଣ ଉଚ୍ଚାରି ।
ଯଥା ଅନୁମତେ ସାରି ବିଭାର ବିଧାନ
ବେନି ହସ୍ତକୁ ବାନ୍ଧିଲେ ଗାର୍ଗ୍ୟ ଯେ ବ୍ରାହ୍ମଣ ।
ଯଉତୁକ ଦେଲା ରାଜା ଅନେକ ସମ୍ଭାର
ରଥ ଗଜ ତୁରଙ୍ଗମ ଅନେକ ପ୍ରକାର ।
ଥାଳି ଗରିଆ ଅନେକ କୁଣ୍ଡ କଂସା ଗିନା
ଆଲଟ ଆଲମ ପାଟଛତ୍ର ରୂପା ସୁନା ।
ନାନାବିଧ ଯଉତୁକ ଅପାରୁ ଅପାର
ଦାସୀ ପରିବାରୀ କେତେ ଦାସ ପରିବାର ।
କର ଯୋଡ଼ିଣ ବରୁଣ ବହୁତ କାନ୍ଦିଲା
କନ୍ୟାରତ୍ନ ସହିତରେ ସମର୍ପିଣ ଦେଲା ।
ଦେଖି କାହ୍ନୁ ବଳରାମ ସନ୍ତୋଷ ହୋଇଲେ
ବିଭାର ବିଧାନ ସାରି ଗୃହକୁ ଚଳିଲେ ।
ଦେବବ୍ରହ୍ମା ଚଳିଗଲେ ଆପଣାର ଦେଶ
ବିଚିତ୍ର କୁତୁହଳ ଏ ବିଭାଘର ରସ ।
କପିଳାସେ ବିଜେ କଲେ ଦେବ ତ୍ରିଲୋଚନ
ଯେ ଯାହା ସ୍ଥାନକୁ ବିଜେ କଲେ ସର୍ବଜନ ।
ଦୁର୍ଯ୍ୟୋଧନ ଭୀଷ୍ମ ଦ୍ରୋଣ ଦୁଃଶାସନ କର୍ଣ୍ଣ
ସୈନ୍ୟବଳ ଘେନିଗଲେ ଆପଣା ଭୁବନ ।
ରାମକୃଷ୍ଣ ଆଦି ଯେତେ ଭୋଜ ଯଦୁ ସୈନ୍ୟ
ଯୁଧିଷ୍ଠି ସହିତେ ଭୀମ ନକୁଳ ଅର୍ଜ୍ଜୁନ ।
ବରକନ୍ୟା ଘେନିଯାଇ ଦ୍ୱାରକାରେ ମିଳି
ଦେଖି ପାଟବଂଶୀ କନ୍ୟା ଦେଲେ ହୁଳହୁଳି ।
ବରକନ୍ୟା ଘେନି ହେଲେ ଭିତରେ ପ୍ରବେଶ
ଦେଖିଣ ଯୁବତୀମାନେ ହୋଇଲେ ହରଷ ।
ଶୀତଳ ମଣୋହି ତହିଁ ବରକନ୍ୟା ସାରି
ଆସ୍ଥାନେ ବିଜୟ କଲେ ରାମ ବଂଶୀଧାରୀ ।
ଯୁଧିଷ୍ଠି ଭୀମ ନକୁଳ ସହଦେବ ମିଳି
ଅର୍ଜ୍ଜୁନ ବସିଲେ ଯହିଁ ବିଜେ ବନମାଳୀ ।
ଆସନରେ ବସାଇଣ ପୁଚ୍ଛନ୍ତି ଗୋବିନ୍ଦ
ଦ୍ୱାରକାରେ ପୁରଜନେ ସମସ୍ତ ଆନନ୍ଦ ।
ନିତ୍ୟକର୍ମମାନ ସାରି ରାମ ଭଗବାନ
ପାଣ୍ଡବଙ୍କୁ ସଙ୍ଗେ ଘେନି କରନ୍ତି ଭୋଜନ ।
ଆଚମନ ସାରି ତାଙ୍କୁ ତାମ୍ବୁଳ ଭୁଞ୍ଜାଇ
ସୁବର୍ଣ୍ଣ ଆସନେ ପାଞ୍ଚଭାଇଙ୍କୁ ବସାଇ ।
ବଳରାମ ବୋଇଲେ ହେ ଶୁଣ ତୁ ଯୁଧିଷ୍ଠି
ବହୁ ଆପଦୁଁ ଆମ୍ଭଙ୍କୁ ରଖିଲା କିରୀଟି ।
ଯୁଧିଷ୍ଠି ଦେବ ବୋଇଲେ ତୁ ଯେ ନିରାକାର
ତୋ ତହୁଁ ବଡ଼ ଆଉ କେ ଅଛଇ ସଂସାର ।
ତୁହି ଯେ ଅନାଦିପତି ଜଗତ କରତା
ତୁହି ଯେ ଅନାଦି ମୂଳ ଜଗତର ପିତା ।
ତୁହି ଯେ ଅନାଦି ବ୍ରହ୍ମ ପରଂବ୍ରହ୍ମ ଜ୍ଞାନୀ
ଭାରାଭର ଉଦ୍ଧାରିବୁ ତୁ ଯେ ଦେବସ୍ୱାମୀ ।
ଶ୍ରୀ ନୀଳାମ୍ବର ଦେବଙ୍କ ଚରଣେ ମୋ ସେବା
ଶ୍ରୀ ଶାରଳା ଦାସକୁ ଯେ ଗତିମୁକ୍ତି ଦେବା ।
ଯୁଧିଷ୍ଠିଙ୍କୁ ଶଙ୍କର୍ଷଣ କରାଇ ଶୟନ
ଯାଇ ମିଳିଲେ ସେ ଦେବ ଆପଣା ଭୁବନ ।
ପାଶେ ଖଟିଲେ ରେବତୀ ବାରୁଣୀ ତାଙ୍କର
ବହିଲେ ସେ ବେନିଜନ ଆଗେ ନୀଳାମ୍ବର ।
ଶୁଣିଣ ସବୁ ରେବତୀ କହିଲେ ଛାମୁରେ
ବହୁତର ଅପମାନ ପାଇଲେ ତହିଁରେ ।
ପାଇଲେ କାର୍ତ୍ତିକେଶ୍ୱର ମନେ ଗୁରୁବ୍ୟଥା
ରାମ ବୋଇଲେ କାହିଁକି କହିଲ ଏକଥା ।
ସଦାନନ୍ଦ ଆମ୍ଭେ ଦୁହେଁ ଏକ ଆତ୍ମା ସିନା
କାର୍ତ୍ତିକ ଆନନ୍ଦାନନ୍ଦ ଭିନ୍ନ ନୁହନ୍ତି ନା ।
ଲଜ୍ଜିତ ହୋଇ ରେବତୀ ବାରୁଣୀ ରହିଲେ
ପ୍ରଭୁଙ୍କୁ ଖଟିଣ ଅବକାଶେ ସେବା କଲେ ।
ଶ୍ରୀକୃଷ୍ଣଚନ୍ଦ୍ର ମିଳିଲେ ଆପଣାର ପୁରୀ
ପାଟବଂଶୀମାନେ ମିଳି ଅବକାଶ କରି ।

ଉପୁଜିଲା ଯେତେ ଯେତେ କଥାନ୍ତ ବେଭାର ।
ସମସ୍ତେ କହିଲେ ପ୍ରିୟାବତୀଙ୍କ ଆଗର ।
ରୁକ୍ମିଣୀ ଯେ ସତ୍ୟଭାମା କାଳନ୍ଦୀ ତୁଳସୀ
ଜାମ୍ବବତୀ ପଦ୍ମାବତୀ ଅଷ୍ଟ ପାଟବଂଶୀ ।
ସମସ୍ତେ ହସିଣ ତହିଁ ପ୍ରଭୁଙ୍କୁ କହିଲେ
ଶଙ୍କର ଅନେକ ଅପମାନତ ପାଇଲେ ।
ଶୁଣି ତାହାଙ୍କୁ କହିଲେ ପ୍ରଭୁ ପୀତବାସ
ହରିହର ଏକ ଆତ୍ମା ନାହିଁ କିଛି ଦୋଷ ।
ବ୍ରହ୍ମା ନିଜେ ଆସି ଯାହା କରିଗଲେ ଭଲ
ସେ କଥାକୁ ତୁମ୍ଭେମାନେ ଆନଯେ ନ ବୋଲ ।
ଶୁଣି ସମସ୍ତେ ମସ୍ତକେ କର ନେଇ ଦେଲେ
ବେନିପ୍ରାୟେ ପଡ଼ି ଶୋଇ ମଉନେ ରହିଲେ ।
ଏ ପ୍ରକାରେ ଏ ନୀଳେନ୍ଦ୍ରି ବିଭାଘର ରସ
ସୁଜନ ଜନେ ମୋହର ନ ଘେନିବ ଦୋଷ ।
ଶ୍ରୀହରି ଚରିତ ଏହି ବିଚିତ୍ର ଆଖ୍ୟାନ
ସୁମରିଲେ ଲଭିବ ଯେ ବୈକୁଣ୍ଠ ଭୁବନ ।
ଶ୍ରୀକୃଷ୍ଣଚନ୍ଦ୍ର ଚରିତ ସୁଧାମୟ ରସ
ଶ୍ରୀହରି ଚରଣ ଧ୍ୟାୟେ ଶ୍ରୀ ଶାରଳା ଦାସ ।

—o—

## କୁଦାଳସେନ ବଧ

ବଦନ୍ତି ଅଗସ୍ତି ମନୁ ବୈବସ୍ୱତ ଶ୍ରୋତା
ଏ ସେ ମହାଭାରତର ମଧ୍ୟପର୍ବ କଥା ।
ବହୁତ ଆଦର ପାଇ ଧର୍ମର ନନ୍ଦନ
ରହିଲେ ସପତଦିନ ଦ୍ୱାରକା ଭୁବନ ।
ବାରୁଣାବନ୍ତକୁ ସେହି ଆସିବାର ବେଳେ
ଅସୁରେକ ମାଇଲେଟି ମାଦ୍ରୀର ଦୁଲାଳେ ।
ଶୁଣି ବୈବସ୍ୱତ ମନୁ ପ୍ରଣମିଲେ ଉଠି
ପୁଣ ପୁଣ ଅଗସ୍ତିଙ୍କ ପାଦତଳେ ଲୋଟି ।
ଭୋ ମହାମୁନି ତୁ ମୋତେ ଅନୁଗ୍ରହ କର
ମହାଭାରତ ଶ୍ରବଣେ ଶରଧା ମୋହର ।
ତୁମ୍ଭେ ମହାମୁନି ପୁଣି ଅଟ ମହାଜ୍ଞାନୀ
କହିବା ଅସୁର ବଧ ମୋତେ ମହାମୁନି ।
ବଦନ୍ତି ଅଗସ୍ତି ମୁନି ଶୁଣ ମନୁ ଶ୍ରୋତା
ସାବଧାନେ ଶୁଣି ସେହି ଅସୁର ବାରତା ।
କୁଣ୍ଡଳୀ ଦୈତ୍ୟ ମରଣ ଅନ୍ତେ ତାର ସୁତ
କର୍ଣ୍ଣକେଶରୀ ମନ୍ତ୍ରୀକୁ ପୁଚ୍ଛଇ ଏମନ୍ତ ।
ସାତମାସ ଭୋଗ ହେଲା ନୃପତି ନଇଲେ
ଥାଟ ସୈନ୍ୟ ସଙ୍ଗେ ନାହିଁ ଏକା ହୋଇଗଲେ ।
ମନ୍ତ୍ରୀ ବୋଇଲା ଏବେ ହୋ ପେଶିବାନା ଚାର
ତେବେ ପାଇବାନା ଆମ୍ଭେ ବାର୍ତ୍ତା ନୃପତିର ।

ଏତେକ କହି ପାଶକୁ ଅଣାଇଲେ ଦୂତ
ନୃପତି ଜେଣେ ଅଛନ୍ତି ବୁଝ ହୋ ତଦନ୍ତ ।
ଆଜ୍ଞାପାଇ ଦୂତମାନେ ଗଲେ ଚାରିଦିଗେ
ଖୋଜନ୍ତି ପଶି ଦୁର୍ଗମ ବନଗିରି ଲାଗେ ।
ଆରଡ଼କ ପର୍ବତରେ ଉଠିଲେକ ଯାଇ
ଶୃଗାଳ ଗୃଧ୍ର ସେଠାରେ ଛନ୍ତି ରୁଣ୍ଡହୋଇ ।
ଅସୁର ମାଂସ ସରବେ ଖାଉଛନ୍ତି ମିଳି
ଭୟଙ୍କର ମୁଖ ଦିଶୁଅଛି ବିକଟାଳି ।
ଡଗର ଯେ ବିଚାରନ୍ତି ଏ କାହାର ଶବ
କେବଣ ମହାତ୍ମା ଏଥେ ନାଶ ହୋଇଥିବ ।
ଏଥେ ବିଚାରି ମିଳିଲେ ଯାଇ ତାର କତି
ଦେଖିଲେ ପଡ଼ି ଅଛଇ କୁଣ୍ଡଳୀ ନୃପତି ।
ଅନେକ ଯେ ବନଗିରି ହୋଇଅଛି ଚୂନା
ସମରେ କେ ମାଇଲା ଏ ଦୈତ୍ୟକୁଳ ସ୍ନେହା ।
ଏତେକ ବିଚାରି ରହି ଲୋଡ଼ନ୍ତି ଡଗରେ
ପ୍ରବେଶ ହୋଇଲେ ଯାଇ ହସ୍ତିନା ନବରେ ।
ଗୁପତ ପ୍ରଘଟ ତହୁଁ ପାଇଲେ ବାରତା
ଧୃତରାଷ୍ଟ୍ର ନୃପତି ଯେ ଦୁର୍ଯ୍ୟୋଧନ ପିତା ।
ଦୁର୍ଯ୍ୟୋଧନର ସୋଦର ଯୁଧିଷ୍ଠି କନିଷ୍ଠ
ନାମ ନକୁଳ ମାଇଲା ଅସୁର ଗରିଷ୍ଠ ।
କର ଯୋଡ଼ିଣ କହନ୍ତି ଭୋ କୁଦାଳସେନ
ହସ୍ତିନା ନଗରବାସୀ ରାଜା ଦୁର୍ଯ୍ୟୋଧନ ।
ମୃଗୟା ବିନୋଦେ ଆସିଥିଲେ ସେ ନୃପତି
ଭ୍ରମନ୍ତେ ଦେଖିଲା ତାକୁ କୁଣ୍ଡଳୀ ଭୂପତି ।
ବେନିଜନଙ୍କର ହେଲା ବହୁତ ସମର
ଦୁର୍ଯ୍ୟୋଧନ ସହ ଥାଟ ପଡ଼ିଲା ତାହାର ।
ଶତଭାର ସଙ୍ଗେ ଘେନି ନୃପତି ପଡ଼ିଲା
କୁଣ୍ଡଳେଶ୍ୱର ନୃପତି ରଣଜୟ କଲା ।
ସଂଗ୍ରାମକୁ ଜୟ କରି ଆସନ୍ତେ ରାଜନ
ନକୁଳ ବୋଲି କରି ସେ ଯୁଧିଷ୍ଠିର ସାନ ।
ସେ ଆସି ସଂଗ୍ରାମ ରାଜା ସହିତ କରିଲେ
ଚଉଦ ଦବିସ ଯୁଝି ରାଜାକୁ ମାଇଲେ ।
ଶୁଣିଣ କୁଦ୍ଦାଳେଶ୍ୱର ବୋଇଲା ମନ୍ତ୍ରୀକି
ଆମ୍ଭ ଥାଟ ସଜ କରି ଯିବାକି ତହିଁକି ।
ପିତାଙ୍କର ବଇରିକି ଯେବେ ମାରି ପାରି
ତେବେ ସାର୍ଥକ ଜୀବନ ହୋଇବ ମୋହରି ।
ଏତେକ ବୋଲି ଅସୁର ହୋଇଲାକ ସଜ
ଲୁହାର ରଥରେ ବିଜେ କଲାକ ଦନୁଜ ।
ମନ୍ତ୍ରୀକୁ ବୋଇଲା ମୋର ସାଜରେ ସଇନି
ମଦିରା ରସେ ଖାଇବା ମଧୁମାଂସ ଘେନି ।

ଆଜ୍ଞା ପ୍ରମାଣେ ସାଜିଲେ ଚତୁରଙ୍ଗ ବଳ
ଧାଇଁଲେ ଅସୁରମାନେ କରି କୋଳାହଳ ।
ମହା ପ୍ରତିଜ୍ଞା କରଇ କୁଦ୍ଦାଳେଶ ବୀର
କୁଦ୍ଦାଳ ଗୋଟିଏ ଘେନି ଅଛଇ ହସ୍ତର ।
ହସ୍ତିନାକୁ ଆସଇ ସେ କୋପେ ଦଣ୍ଡ ସାଜି
ଗର୍ଜ୍ଜନଘାତେ କି ମେରୁ ପଡୁଅଛୁ ଭାଜି ।
ଅସୁରର ପାଦଭାରା ନ ସହେ ମେଦିନୀ
ନବ ଅକ୍ଷୌହିଣୀ ଥାଟ ଅଛଇ ପଲାଣୀ ।
ଧାମନ୍ତି ଅସୁର ବଳ ଗର୍ଜି ଘନ ଘନ
ଅନୁକ୍ଷଣେ ଚଳନ୍ତି ସେ ଅସୁର ସଇନ୍ୟ ।
ବନଗିରି କନ୍ଦର ଯେ ଜିଣି ଚାଲିଗଲେ
ଅନେକ ଦେଶ ପରଜା ବାଟେ ନାଶ କଲେ ।
ନୃପତିମାନେ ଶୁଣିଣ ପଳାଇଲେ ଡରେ
କେହି ରହି ନ ପାରିଲେ ଅସୁର ଆଗରେ ।
ଅଯୋଗେ ଅସୁର ଆସି ପଶିଛନ୍ତି ରାଜ୍ୟ
ଗୋ ବିପ୍ରସ୍ତିରୀ ବାଳକ କରନ୍ତି ଗ୍ରାହିର୍ଯ୍ୟ ।
ରଜନୀ ଦିବସ ନାହିଁ ଚଳିଗଲେ ଥାଟେ
ପ୍ରବେଶ ହୋଇଲେ ଯାଇ ହସ୍ତିନା ନିକଟେ ।
ଡଗର କହିଲା ଯାଇ ଶୁଣ କୁରୁରାୟ
କୁଦ୍ଦାଳସେନ ଅଟଇ କୁଣ୍ଡଳୀ ତନୟ ।
ଯେ କୁଣ୍ଡଳୀକୁ ନକୁଳବୀର ବଧ କଲେ
ତାର ପୁତ୍ର ଥାଟଘେନି ଏଥକୁ ଅଇଲେ ।
ଅନେକ ଅସୁର ଛନ୍ତି ସଙ୍ଗତେ ତାହାର
ହସ୍ତିନା ନଗ୍ରକୁ ହୋଇଅଛି ଆଗୁସାର ।
ଅନେକ ରାଜ୍ୟ ନାଶି ସେ ପ୍ରଜାଜନ ଖାଇ
ପନ୍ଦର ଯୋଜନ ମାଡ଼ି ଆସନ୍ତି ଗୋସାଇଁ ।
ବଡ଼ପ୍ରତାପୀ ଅଟଇ ଅସୁର ଗରିଷ୍ଠ
ସ୍ୱର୍ଗେ ରହି ନ ପାରନ୍ତି ଭୟେ ସୁରଶ୍ରେଷ୍ଠ ।
ଅସମ୍ଭାଳ ହୋଇ ତୋର ରାଜ୍ୟେ ଏବେ ପଡ଼ି
ଯମର ଉପରେ ଯମ ଦିଅଇ କି ଧାଡ଼ି ।
ଶୁଣିଣ ତରସ୍ତ ହେଲା କୁରୁକୁଳ ରାୟ
କମ୍ପାନ୍ତି ଯୋଦ୍ଧାଏ ପାଇ ଅସୁରଙ୍କ ଭୟ ।
ଭୀଷ୍ମ ବୋଇଲେ ହୋ ଉଠ କୁରୁବୀରମାନେ
ସଜହୁଅ ଅସୁରକୁ ମାରିବା ସସୈନ୍ୟେ ।
ଆମ୍ଭେ ଦଣ୍ଡ ସାଜି ଚାଲ ଥୋକେ ଦୂର ଯିବା
ବାଟରେ ସେ ଅସୁରକୁ ଓଗାଳି ଯୁଝିବା ।
ନ ପଶିବେ ସେ ଆମ୍ଭର ରାଜ୍ୟରେ ଯେମନ୍ତେ
ପଥ ଓଗାଳି ମାରିବା ବାଟରେ ଯେମନ୍ତେ ।
ସମରେ ଆମ୍ଭେ ତାହାଙ୍କୁ ନ ପାରିଲେ ଜିଣି
ବନସ୍ତକୁ କଢ଼ାଇଣ ଘେନିଯିବା ପୁଣି ।
ଆନ ଦେଶକୁ ନେଇଣ ଲଗାଇବା ଯୁଦ୍ଧ
ବନସ୍ତେ ବୁଲାଇ ତାଙ୍କୁ କରିବାକ ବଧ ।
ଭୀଷ୍ମଙ୍କର ବଚନ ହିଁ ସବୁଙ୍କୁ ଯୋଗାଇ
ଦ୍ରୋଣ କୃପ ବୋଇଲେ ଏ ଉଚିତ ନୁହଇ ।
ସଞ୍ଜୟ ବିଦୁରେ ଚାହିଁ କହେ କୁରୁରାୟେ
ନଗ୍ର ରଖିଥିବ ତୁମ୍ଭେ ବିବିଧ ଉପାୟେ ।
ଯୋଦ୍ଧା ଘେନି ଆମ୍ଭେମାନେ ଯାଉଛୁ ଆଗକୁ
ରାଜା ପ୍ରଜାଜନ ଏବେ ଲାଗିଲା ତୁମ୍ଭଙ୍କୁ ।
ଆମ୍ଭଙ୍କୁ ବଳଇ ଯେବେ ସେ ଅସୁରେ ଆସି
ଆନ ପ୍ରଜା ଘେନି ତୁମ୍ଭେ ବନେ ଯିବ ପଶି ।
ଏତେକ କହି ନୃପତି ହୋଇଲା ବାହାର
ସଙ୍ଗତରେ ଶତଭାଇ ଅଛନ୍ତି ତାହାର ।
ଭୀଷ୍ମ ଦ୍ରୋଣ ଶଲ୍ୟ କୃପ କର୍ଣ୍ଣ ଅଶ୍ୱତ୍ଥାମା
ଜୟଦ୍ରଥ ଶକୁନି ଯେ ରାଜ କୃତବର୍ମା ।
ରଥ ଆରୋହୀ ଚଳନ୍ତି କୁରୁ ଯୋଦ୍ଧାମାନେ
ପ୍ରବେଶ ହୋଇଲେ ଯାଇ ଆରଡ଼କ ବନେ ।
ବିଚାର କରନ୍ତି ଆମ୍ଭେ ଏହିଠାରେ ଥିବା
ଅସୁର ଅଇଲେ ଏଥେ ସମର କରିବା ।
ଏସନକ ସମୟେ ସେ ଦୈତ୍ୟ ସୈନ୍ୟ ଦିଶି
ମହାପ୍ରଳୟ କାଳେ କି ଘୋଟିଲାକ ଆସି ।
ବହୁତ ଦୂରରୁ ଯହୁଁ ଦିଶିଲେ ଅସୁରେ
ଶସ୍ତ୍ର ଧରି ନ ପାରିଲେ ଭୟେ କୁରୁବୀରେ ।
ସୈନ୍ୟ ବହୁତର ଦେଖି ତ୍ରସ୍ତ ଯୋଦ୍ଧାମାନେ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଗ ହେଲେ ବିଦ୍ୟମାନେ ।
ରେରେକାର କରି ଚାପେ ନାରାଚ ପୂରାଇ
ଅସୁରଙ୍କ ଉପରକୁ ବିନ୍ଧିଲେ ତୁହାଇ ।
ମାଇଲେ ସେ ବଜ୍ରସମ ବାଣ ଏକୁ ଏକ
ମାଇଲେ ଯୁଦ୍ଧରେ ସେହି ଅସୁର ଅନେକ ।
ରହିଲେ ଅସୁରେ ସୈନ୍ୟ ସହିଲେକ ଯୁଦ୍ଧ
ମାରନ୍ତି ଅସୁର ଘେନି ଯେ ଯାହା ଆୟୁଧ ।
ମୂଷଳ ମୁଦ୍‌ଗର ଶୂଳ ପରିଘ ଶକତି
ମହାଯୁଦ୍ଧକୁ ସେ କେହି ନ କରନ୍ତି ଭୀତି ।
ଦେଖି କର୍ଣ୍ଣବୀର କୋପେ ହେଲେ ଆଗସରି
ବଜ୍ରସମ ଶକତିଏ ମାଇଲେକ ଧରି ।
ତିନିଶତ ଅସୁର ହିଁ ପଡ଼ିଲେ ତ ଘାଏ
ଦେଖିଣ ଅସୁର ସେନାପତି କୋପେ ଧାଏଁ ।
ବକ୍ରଅଙ୍ଗ ଭାସକର୍ଣ୍ଣ ମେଧାବୀ ଅସୁର
କର୍ଣ୍ଣ ତୁଲେ ଏ ତିନିହେଁ କଲେକ ସମର ।
ଏକ କର୍ଣ୍ଣକୁ ବିନ୍ଧିଲେ ଏହି ତିନି ସେନା
ଅସୁରର ସୈନ୍ୟ କେତେ ନ ଯାଇ କଳନା ।

ଶସ୍ତ୍ରମାନ ନ ଭେଦଇ ତାହାଙ୍କର କାୟେ
ଏକବୀର ପଡ଼ନ୍ତେ ଆରେକ ଆଗ ହୁଏ ।
କର୍ଣ୍ଣବୀର ହିଁ ତହିଁଟି ଅଟେ ମହାଯୋଦ୍ଧୀ
ନିମିଷକେ କୋଟି କୋଟି ଶର ବିନ୍ଧେ ସନ୍ଧି ।
ଅସୁରଙ୍କ ଶରୀରକୁ ବାଣେ ଦେଲା ଛାଇ
ବଜ୍ରାଙ୍ଗ ବୀର ପରିଘ କରେ ଘେନି ଧାଇଁ ।
କର୍ଣ୍ଣ ଉପରକୁ ବେଗେ ମାଇଲା ଅସୁର
ବେଢ଼ରେ ପଡ଼ି ଅଛଇ ରାଧାର କୁମର ।
ଦୁର୍ଯ୍ୟୋଧନ କହଇ ଯେ ଦ୍ରୋଣ ମୁଖ ଚାହିଁ
ସମସ୍ତେ ସମର କର ଏକ ଘାନ୍ତି ରହି ।
ଗୋଳଯୁଦ୍ଧ କରି ଆମ୍ଭେ ମାରିବା ଅସୁର
ଧର୍ମ ଅଧର୍ମ ବୋଲି ଯେ ବିଚାର ନ କର ।
ଦୁଃଶାସନକୁ କହିଲା ଅନାଉଁ ନା ଭାଇ
ଅସୁରେ ଯୁଝନ୍ତି କର୍ଣ୍ଣସଙ୍ଗେ ପରିଘାଇ ।
ମାର ଅସୁରକୁ ଭାଇ ପିଟ ଗଦା ଘେନି
ମରନ୍ତୁ କିନା ସଂଗ୍ରାମେ ଦର୍ପିଷ୍ଟ ସଇନି ।
ଶୁଣିଣ କୁମରମାନେ ଗଦା ଘେନି ଉଠି
ଅସୁରଙ୍କୁ ପିଟନ୍ତି ସେ କରି କୋପ ଦୃଷ୍ଟି ।
ରେ ରେ କାର କରି ଧାଏଁ ଦୁଃଶାସନ ବୀର
ଭାସକର୍ଣ୍ଣକୁ ପିଟିଲା ନେଇ ଗଦାବର ।
ଗଦା ବାଜି ସେ ଅସୁର ପଡ଼ିଲା ଧଇଣୀ
ମେଧାବୀ ମହାବୀର ଯେ ଧାଇଁଲାକ ଯୁଣି ।
ଗର୍ଜିଣ ମାଇଲା ସେହୁ ଶକତିଏ ପୁଣ
ଦୁଃଶାସନର ଉପରେ ପଡ଼ି ହେଲା ଚୂର୍ଣ୍ଣ ।
ଗର୍ଜିଣ କୋପେ ଉଠିଲା ଦୁଃଶାସନ ବୀର
ଅସୁର ଉପରେ ଗଦା କଲାକ ପ୍ରହାର ।
ପଡ଼ିଲା ସେ ଗଦାବର ଭାଙ୍ଗିଗଲା ମୁଣ୍ଡ
ଗର୍ଜି ଉଠନ୍ତେ ଅସୁର କମ୍ପିଲା ବ୍ରହ୍ମାଣ୍ଡ ।
ଘୋର ନାଦ କରି ଯହୁଁ ସେ ଅସୁର ମରି
ସୈନ୍ୟ ଉପରକୁ ଧାଏଁ ଦୁଃଶା କୋପ କରି ।
ଚଉଷଠି ଚଉଷଠି ଭାର୍ ତାର ଗଦା
ବାଜନ୍ତେ ଅସୁର ସୈନ୍ୟ ହେଉଛନ୍ତି ପଦା ।
କର୍ଣ୍ଣର ତୁଲେ ବଜ୍ରାଙ୍ଗ ବୀର ଯୁଝୁଥିଲା
କର୍ଣ୍ଣର ଶରାଘାତେ ସେ ଦୈତ୍ୟବୀର ମଲା ।
ବିଷକର୍ଣ୍ଣ ନାମେ ଥିଲା ଏକଇ ଅସୁର
କର୍ଣ୍ଣକୁ ଘେନିଣ କରେ ଧରି ଗଦାବର ।
ମାରନ୍ତେ ଅସୁର ଗଦା କର୍ଣ୍ଣ କାଟି ବେଗେ
ପାଶୁପତ ବାଣ ତାକୁ ମାଇଲାକ ବେଗେ ।
ପଡ଼ିଲା ଅସୁର ବୀର କମ୍ପିଲାକ ମହୀ
କର୍ଣ୍ଣର ଛାମୁରେ ଦୈତ୍ୟେ ନ ପାରିଲେ ରହି ।

ପଳାଇଲେ ସଂଗ୍ରାମରୁ ଦୈତ୍ୟ ସୈନ୍ୟମାନେ
ଅସୁର ରାଜନ ଦେଖେ ଥାଇ ସନ୍ନିଧାନେ ।
ରଥରୁ ଓହ୍ଲାଇ ଆସି କର୍ଣ୍ଣକୁ ଓଗାଳି
କୁଠାର ଘେନି ପିଟିଲା ଦୈତ୍ୟ ମହାବଳୀ ।
କର୍ଣ୍ଣବୀର ରଥ ଭାଙ୍ଗି ହୋଇଗଲା ଚୂନା
କୁଦ୍ଦାଳ ଘେନି ଧାମଇ ଦୈତ୍ୟକୁଳ ସ୍ନେହା ।
ସେ କୁଦ୍ଦାଳ ଘେନି ବୀର ମାଇଲା କର୍ଣ୍ଣକୁ
ବାଜିଲା କର୍ଣ୍ଣର ଅଙ୍ଗେ ଭାଙ୍ଗିଲା ତା ବୁକୁ ।
ଦୁଃଶାସନ ତାର ଆଗେ ଓଗାଳିଲା ଯାଇ
ବେନି ଗଦାବର ନେଇ ମାଇଲା ନିଠାଇ ।
ଧନ୍ୟ ସେହି ଅସୁରର କିଛି ହିଁ ନୋହିଲା
ହସ୍ତରେ କୁଦ୍ଦାଳ ଘେନି ଅସୁର ଧାଇଁଲା ।
ଦେଖି ଦ୍ରୋଣଗୁରୁ ତାକୁ ଓଗାଳେ ଆଗର
କି ଅବା ମେରୁର ଆଗେ ରହିଛି ମନ୍ଦର ।
ସମ୍ଭାଳ ଅସୁର ବୋଲି ମାଇଲେକ ଶର
ଏ ବିଧିରେ ବିନ୍ଧୁଛନ୍ତି ଗଙ୍ଗାଙ୍କ କୁମର ।
ମାରନ୍ତି ଶତେକ ଭାଇ କରେ ଗଦା ଘେନି
ଭାଜନ୍ତି ସେ ଶାସ୍ତ୍ରମାନେ ଝଲକନ୍ତି ବହ୍ନି ।
ମୁଣ୍ଡକୁ ପୋତି ଅଛଇ ପ୍ରତାପୀ ଅସୁର
ଗଦାମାନ ଭାଜିଦେହେ ହେଉଛନ୍ତି ଚୂର ।
ମେରୁ ଅଙ୍ଗେ ପଡ଼ି ଯେହ୍ନେ ପଡ଼ଇ ଉଛୁଡ଼ି
ତେସନ ଶର ଦଇତ୍ୟ ଦେହେ ପଡ଼େ ଝଡ଼ି ।
ସାଷ୍ଟାମ ହୋଇ ଉଠିଲେ ଶୁଣି ରାଧାସୁତ
ସମର କରଇ ସେହି ଚଢ଼ି ଆନ ରଥ ।
କୋଟି ପର୍ବତ ଶର ବିନ୍ଧିଲାକ କର୍ଣ୍ଣ
ଅସୁର ଦେହରେ ପଡ଼ି ସବୁ ହେଲା ଚୂର୍ଣ୍ଣ ।
ଅର୍ବୁଦେ ଶର ପେଶିଲା ପୁଣି ରାଧାସୁତ
ମୁଣ୍ଡ ପୋତିଣ ସହିଲା ତାହାକୁ ଦଇତ୍ୟ ।
ବିନ୍ଧିଲାକ ଅଗ୍ନିଶର ପୁଣି ଘେନି କର୍ଣ୍ଣ
ଏହିକ୍ଷଣି ଜଗତ କି ହୋଇବ ଦହନ ।
ପ୍ରଳୟର ଦାବାନଳ ଜିଣି ତାର ତେଜ
ପାଟି ବିସ୍ତାରି ଗିଳିଲା ତାହାକୁ ଦନୁଜ ।
ବଜ୍ରଶକ୍ତି କର୍ଣ୍ଣ ପୁଣି ଅସୁରେ ପ୍ରହାରି
ତହିଁରେ ସେ ଦାନବକୁ ନ ପାରିଲା ମାରି ।
ଗଙ୍ଗାର ନନ୍ଦନ ପୁଣି ବିନ୍ଧେ ଶର ଯେତେ
ସମସ୍ତ ଚୂର ହୁଅଇ ସେ ଅସୁର ଗାତ୍ରେ ।
ଦ୍ରୋଣଙ୍କର ଶର ସବୁ ବିଅର୍ଥ ହୋଇଲା
ମୁଣ୍ଡ ପୋତି ସେ ଦାନବ ସମସ୍ତ ସହିଲା ।
ଦୁଃଶାସନ ଗଦା ତାର ଦେହେ ନ କାଟଇ
ଜୟଦ୍ରଥ ଭୂରିଶ୍ରବା ଶରେ କିବା ହୋଇ ।

ଧୃତରାଷ୍ଟ୍ରର ପୋଏତ ସମରେ ବିମୁଖ
ଦୈତ୍ୟର ସୈନ୍ୟ ମରନ୍ତି ତେଣେ ଲକ୍ଷଲକ୍ଷ ।
ଅସୁରର ବଳ ପାଞ୍ଚକ୍ଷଉଣୀ ପଡ଼ିଲା
ଚାରି ଅକ୍ଷୌହିଣୀ ଘେନି ଦୈତ୍ୟ ଗୋଡ଼ାଇଲା ।
କୁଦ୍ଦାଳ ବୁଲାଇ ଦୈତ୍ୟ ଧାଏଁ ଅତି ବେଗେ
କେହି ରହି ନ ପାରିଲେ ଦାନବର ଆଗେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ପଛଘୁଞ୍ଚା ଦେଇଯାଇ
କୁଦ୍ଦାଳ ଘେନି ଅସୁର ଅଛଇ ଗୋଡ଼ାଇ ।
ପଳାନ୍ତି କୁରୁସାଗର ନ ରହନ୍ତି ଜଣେ
ଭୀଷ୍ମଙ୍କୁ ଚାହିଁ କହନ୍ତି ଡାକି ଗୁରୁ ଦ୍ରୋଣେ ।
କ୍ଷୁଦ୍ର ହୋଇଣ ପଳାଇ ଆମ୍ଭେ ଯେବେ ଯିବା
କେତେଦୂରେ ଯାଇ ଅବା କାହିଁରେ ରହିବା ।
ହାରିବା ଜିଣିବା ଏହି କ୍ଷତ୍ରିୟଙ୍କ ବୃତ୍ତି
କେତେକାଳ ହିଁ ବର୍ତ୍ତିବା କରି ଆମ୍ଭେ ଭୀତି ।
ରହିଣ ଯୁଝିବା ଯେବେ ସମସ୍ତେ ଯେ ଆସ
ଅସୁରକୁ ଅବା ପୁଣି କରିବା ବିନାଶ ।
ଭୀଷ୍ମ ବୋଇଲେ ହୋ ରହ ରହ ସର୍ବବୀର
ଅସୁରଙ୍କ ସଙ୍ଗେ ଦ୍ରୋଣ କରିବେ ସମର ।
ଭୀଷ୍ମଙ୍କ ବଚନେ କର୍ଣ୍ଣବୀର ହିଁ ରହିଲା
କରେ ଧନୁ ଧରି ବୀର ଶରବୃଷ୍ଟି କଲା ।
ବିନ୍ଧୁଛନ୍ତି ଭୀଷ୍ମ ଦ୍ରୋଣ କର୍ଣ୍ଣ ଅନୁକ୍ଷଣ
ଆକାଶେ ଅଦୃଶ୍ୟ ହେଲେ ଗ୍ରହ ତାରାଗଣ ।
ଦୁର୍ଯ୍ୟୋଧନ ପଚାରଇ ହେ ମନ୍ତ୍ରୀ ଶକୁନି
ଦିବସ ଯେ ଷୋଳଦଣ୍ଡ ହୋଇଲାକ ପୁଣି ।
ଆଦିତ୍ୟ ଅସ୍ତ ହେଲାକି ରାତ୍ରି ପ୍ରାୟ ଦିଶି
ମୁହିଁ ଜାଣଇ ପ୍ରବେଶ ହୋଇଲାକ ନିଶି ।
ଶକୁନି ବୋଇଲା ରାୟେ ରହିକରି ଦେଖ
ଅସୁର ସଙ୍ଗରେ ଭୀଷ୍ମ ଦ୍ରୋଣ କର୍ଣ୍ଣ ତାକ ।
ବରଷା ପ୍ରାୟ କରି ସେ ବିନ୍ଧୁଛନ୍ତି ଶର
ତେଣୁ ଅଦୃଶ୍ୟ ହୋଇଲେ ଦିନେ ଦିନକର ।
ମନ୍ତ୍ରୀବର ବଚନରେ ବୋଲେ କୁରୁସାଇଁ
ଅସୁର ଯୁଦ୍ଧ ଦେଖିଣ ମୁଁ ଚକ୍ଷୁ ବୁଜଇ ।
କର୍ଣ୍ଣ ଯେ ମାଇଲା ବଜ୍ରାବଳି ମୁଦ୍ଗର
ସେ ବାଣ ପଡ଼ିଲା ଯାଇ ଅସୁର ଉପର ।
ତେଡ଼େ ଶସ୍ତ୍ର ଗୋଟା ତାର ଉପୁଡ଼ି ପଡ଼ିଲା
ଲେଉଟି ତରକି ବୀର ଦକ୍ଷିଣକୁ ଗଲା ।
ଶତେବାଣ ଅସୁରକୁ ବାଛିକରି ମାରି
ସାଧୁକର୍ଣ୍ଣ ବୋଲି ଦୈତ୍ୟ ପ୍ରଶଂସା ଉଚ୍ଚାରି ।
କୁଦ୍ଦାଳ ବୁଲାଇ ପୁଣି ମାଇଲା ନିଠାଇ
ଭାଙ୍ଗିଲା କର୍ଣ୍ଣର ରଥ ଏକା ଅଛି ରହି ।

ଗଦାଏ ଘେନିଲା ନାମ ଧୂମକେତୁ ତାର
ମାଇଲା ସେ ଅସୁରକୁ ରାଧାସୁତ ବୀର ।
ଗଦା ପଡ଼ନ୍ତେ ଅସୁର ବୀର ହାତପାତି
କର୍ଣ୍ଣର ଗଦା ଉଛୁଡ଼ି ଘେନିଲା ତଡ଼ତି ।
ବାହୁଡ଼ି କର୍ଣ୍ଣର ଗଦା ମାଇଲା କର୍ଣ୍ଣକୁ
ପଡ଼ନ୍ତେ ସେ ଗଦା କର୍ଣ୍ଣ ପାତିଦେଲା ବୁକୁ ।
ଧନ୍ୟ କର୍ଣ୍ଣବୀର ବୋଲି ଅସୁର କହିଲା
ପୁଣି ପରିଘେକ ଘେନି ବୁଲାଇ ମାଇଲା ।
ଅସୁର ଉପରେ ଯାଇ ପଡ଼ିଲା ସେ ଶର
ଟହ ଟହ ହୋଇ ତହିଁ ହସିଲା ଅସୁର ।
ବୋଇଲା ପାମର ତୁମ୍ଭେ ଅଟ ଆମ୍ଭ ଭକ୍ଷ
ଆମ୍ଭଙ୍କୁ ମାରିବାକୁ ତୁ ଆସିଛୁ ପ୍ରତ୍ୟକ୍ଷ ।
ଜାଣିଲି ଅଜ୍ଞାନ ତୁମ୍ଭେ ସମସ୍ତେରେ ଅଟ
ଏଥୁ ଯିବ କି ଆଜ ପଡ଼ିଛ ମୋ ଭେଟ ।
କର୍ଣ୍ଣବୀର ବୋଇଲେ ତୁ ଶୁଣରେ ଅସୁର
ତୋହର ବାପ ଯେ ମଲା ହସ୍ତରେ ଆମ୍ଭର
ତୋହର ବଳେ ଆମ୍ଭର ପାରିବୁ କି କରି
ବିଧାତା ଭିଆଉଅଛି ଆମ୍ଭ ହସ୍ତେ ମରି ।
ଯାହାର ବାପ ଆମ୍ଭଙ୍କୁ ସଂଗ୍ରାମେ ହାରିଲା
ତାହାର ପୁତ୍ର ମରଣେ ଧାରଣା ପଡ଼ିଲା ।
ଶୁଣିବାକୁ ଏକଥା ତ ଅଟେ ଆଚମ୍ବିତ
ଏବେ ପିତା ପାଶେ ଯିବାବେଳେ ତୋ ନିୟତ ।
ଅସୁର ବୋଇଲା ଜାଣ ଅଇଲଇଁ ମୁହିଁ
ମୋ ପିତା ମାରିଛ ଆଜ ଯିବ ତୁମ୍ଭେ କାହିଁ ।
ପାଞ୍ଚଯୋଜନ ଯାଏ ଯେ ନ ରହି ଅଇଲ
କାହାର ବୋଲେ ପୁଣିରେ ସମରେ ପଶିଲ ।
ଏତେକ ବୋଲି ସେ ଦୈତ୍ୟ ବିଧାଏ ମାଇଲା
ଜାଣି କର୍ଣ୍ଣବୀର ତାହା ଆଡ଼ ହୋଇଗଲା ।
ଦ୍ରୋଣ ମହାରଥୀ ଆସି ମିଳିଲେ ତା ଆଗେ
ପାଞ୍ଚଶତ ନାରାଚ ସେ ବିନ୍ଧିଦେଲେ ବେଗେ ।
ଅସୁର ଦେହରେ ବାଜି ଭାଙ୍ଗିଗଲା ଶର
ପୁଣି ସେ କୋଡ଼ିଏ ଶର କଲେକ ପ୍ରହାର ।
ନିଃଶ୍ୱାସକେ ବିନ୍ଧନ୍ତି ସେ ଶର ଦଶଘାନ୍ତି
ଅସୁର ଦେହେ ପଡ଼ିଣ ସବୁ ନାଶଯାନ୍ତି ।
ସୂର୍ଯ୍ୟାବର୍ତ୍ତ ନାମେ ଶର ବିନ୍ଧିଲେକ ଗୁରୁ
ପୃଥ୍ୱୀ ଛନ୍ନ ଛନ୍ନ ଭାଙ୍ଗି ପଡ଼ିଲା କି ମେରୁ ।
ଅସୁର ଶରୀର ବାଣ ପଡ଼ିଲାକ ଯାଇ
କିଛି ହିଁ ନୋହିଣ ଦୈତ୍ୟ ଅଛି ଉଭା ହୋଇ ।
ପୁଣି ଏକ ପବନାସ୍ତ୍ର ମାଇଲେକ ଦ୍ରୋଣ
ଅସୁର କର୍ଣ୍ଣରେ ଯାଇ ପଡ଼ିଲା ସେ ବାଣ ।

ପାଞ୍ଚ ପହଣ୍ଡ ପଛକୁ ଦୈତ୍ୟ ଘୁଞ୍ଚିଗଲା
ଅସୁର ଦେହରେ ବାଜି ଉପୁଡ଼ି ପଡ଼ିଲା ।
ପୁଣି ଦ୍ରୋଣ ବିନ୍ଧିଲେକ ଅର୍ଦ୍ଧଚନ୍ଦ୍ର ବାଣ
ଅସୁର ଦେହରେ ବାଜି ହୋଇଲା ସେ ଚୂର୍ଣ୍ଣ ।
ନୈର୍ଋତ ପବନ ମେରୁ ବାଣ କାଳଫାଶି
ଅଗ୍ନିଶର ମୁଦ୍ଗର ପଡ଼ି ହେଲେ ଧ୍ୱଂସି ।
ଦ୍ରୋଣଙ୍କର ପାଶେ ଥିଲେ ଭୀଷ୍ମ ମହାରଥି
ବିନ୍ଧନ୍ତି ନାରାଚ ହୋଇ ଅତି କୋପ ମୂର୍ତ୍ତି ।
ପୁଣି ହିଁ ଆରେକ ରଥ କର୍ଣ୍ଣ ଯେ ଆରୋହି
ଦୈତ୍ୟକୁ ବିନ୍ଧଇ ବାଣ କୋପଭର ହୋଇ ।
ଦୁର୍ଯ୍ୟୋଧନ ଶତଭାର ଗଦା କରେ ଘେନି
ଅନୁକ୍ଷଣେ ମାରନ୍ତି ସେ ଅସୁର ସଇନି ।
ପଡ଼ନ୍ତି ଅସୁରମାନେ ଲୋଟନ୍ତି ଧରଣୀ
ଗଗନ ପୂରାଉଅଛି ମୁଖରାବ ଧ୍ୱନି ।
କେ ବୋଲଇ ମାରମାର କେ ବୋଲଇ ଧର
କେ ବୋଲଇ ଆଜି ନିଶ୍ଚେ ମାରିବା ଅସୁର ।
ଏକ ପଡ଼ନ୍ତେ ଆରେକ ଉଠଇ ଗରଜି
ଅସୁର ସଇନ୍ୟ ଭୟେ ପଳାଇଲେ ଭାଜି ।
ଗୋଡ଼ାଇ କୌରବ ପଛେ ମାରୁଛନ୍ତି ଶସ୍ତ୍ର
ଜୟଦ୍ରଥ ଭୂରିଶ୍ରବା ଶକୁନି ସହିତ ।
ଏକମୁଖା ହୋଇ ସର୍ବେ ମାରୁଛନ୍ତି ଶର
ଧୃତରାଷ୍ଟ୍ର ପୁତ୍ରେ ଗଦା କରନ୍ତି ପ୍ରହାର ।
ଅପର୍ଯ୍ୟାପ୍ତ ଶର କୋପେ ମାଇଲେକ ଯହୁଁ
ଅନେକ ଅସୁର ମରି ପଡ଼ିଲେକ ଯହୁଁ ।
ଦେଖିଣ କୁଦ୍ଦାଳେଶ୍ୱର ବିଚାରଇ ମନେ
ମୋହର ସୈନ୍ୟକୁ ନାଶ କଲେ ତ ଏମାନେ ।
ଏତେ ବିଚାରି ଉଠିଲା ବୀର ମୁଣ୍ଡିଆଇ
ଦ୍ରୋଣଙ୍କର ରଥ ବେଗେ ଧଇଲାକ ଯାଇ ।
ବୁଲାନ୍ତି ପିଟନ୍ତି ସେହୁ ବହୁଦୂର ଗଲେ
ରଥୀ ସାରଥି ଅନେକ ଦୂରରେ ପଡ଼ିଲେ ।
ମାଇଲା ଭୀଷ୍ମଙ୍କ ରଥେ ନେଇ ଭୁଜଦଣ୍ଡ
ଭାଙ୍ଗିଲା ସେ ରଥଗୋଟି ହେଲା ଖଣ୍ଡ ଖଣ୍ଡ ।
ଭାଗ୍ୟେ ଭୀଷ୍ମ ପଳାଇଲେ ମହାଭୟ ପାଇ
କର୍ଣ୍ଣକୁ କୁଦ୍ଦାଳ ଘେନି ମାଇଲା ନିଠାଇ ।
ଅଶ୍ୱ ସାରଥି ରଥ ଏ ସମସ୍ତ ପଡ଼ିଲା
ଦୁଃଶାକୁ ଦେଖି କୁଦ୍ଦାଳ ଈଶ୍ୱର ଧାଇଁଲା ।
କୁଦ୍ଦାଳ ବୁଲାଇ ନେଇ ପିଟିଲା ଅସୁର
ଦୁଃଶାସନ ଆଡ଼ିଆଇ ପାତେ ଗଦାବର ।
ଅସୁର କୁଦ୍ଦାଳ ପଡ଼ି ଗଦା ଗଲା ଭାଙ୍ଗି
ମାଇଲା ଅସୁର ବୀର ହୋଇ ମହାରାଗୀ ।

ଏକ ପ୍ରହାରକେ ଦଶବିଂଶ ସଂହାରଇ
ଦୁର୍ଯ୍ୟୋଧନ ସତଭାଇ ଉଗାଳିଲେ ଯାଇ ।
ଦୁର୍ଯ୍ୟୋଧନ ରାଜା ତହିଁ ରହିଅଛି ଆଗେ
ଅତି ଆଷ୍ଟେ ତା ରଥକୁ ଧଇଲାକ ବେଗେ ।
ମହାପ୍ରତାପୀ ଅଟନ୍ତି ଦୂରନ୍ତ ଦନୁଜ
କରନ୍ତି ସମର ତେଜ ଯଥା ଚନ୍ଦ୍ରସୂର୍ଯ୍ୟ ।
ଆପଣା ସୈନ୍ୟଙ୍କୁ ଚାହିଁ କହେ କୁରୁପତି
ପଳାଇ ଯାଇ ଲୁଚିଲେ ଯେ ତହିଁ ତଡ଼ତି ।
ଶୁଣି ସୈନ୍ୟମାନେ ଯାନବାହନକୁ ଛାଡ଼ି
ବନସ୍ତ ମଧ୍ୟେ ଲୁଚିଲେ ଅତି ଦୁଃଖେ ପଡ଼ି ।
ଦୁର୍ଯ୍ୟୋଧନ ଅସୁର ଯେ କରୁଛନ୍ତି ରଣ
ଅନୁକ୍ଷଣେ ବାଣ ଧରି ବିନ୍ଧେ କୁରୁରାଣ ।
ନିମିଷକେ ଲକ୍ଷ ଲକ୍ଷ ବିନ୍ଧୁଅଛି ଶର
କୋଟି କୋଟି ମାରୁଅଛି ମୂଷଳ ମୁଦ୍‌ଗର ।
ଅନୁକ୍ଷଣେ ବାଣବିନ୍ଧେ ଚକ୍ଷୁର ଛଟକେ
ଦୁର୍ଯ୍ୟୋଧନ ଯୁଦ୍ଧକୁ ଯେ ସାରା ଦେବଲୋକେ ।
ଏମନ୍ତ ସମର କଲେ ଦୁଇ ମହାବଳ
ଗଗନେ ଅସ୍ତ ହୋଇଲେ କଶପ୍ୟର ବାଳ ।
କୁମ୍ଭମାସ କୃଷ୍ଣପକ୍ଷ ଚଉଠି ଯେ ତିଥି
ବିଶାଖା ନକ୍ଷତ୍ର ତୁଳ ପାଞ୍ଚଦଣ୍ଡ ରାତି ।
ଚନ୍ଦ୍ରବାସର ସେ ଦିନ ସମର ଅନେକ
ଦୁର୍ଯ୍ୟୋଧନ ତୁଳେ କଲା ଅସୁର ନାୟକ ।
ମହାଘୋର ନିଶା ତହିଁ ନ ଦିଶଇ କିଛି
ଦୁର୍ଯ୍ୟୋଧନ ଅସୁରର ସମର ଲାଗିଛି ।
କୁଦ୍ଦାଳେଶ୍ୱର ମାଇଲା କୋପେ ବଜ୍ରମୁଷ୍ଟି
ରଥୀ ସାରଥି ଯେ ତୁଳେ ଗୁଣ୍ଡା ହୋଇଉଠି ।
ପାଦଗାମୀ ହୋଇ ମାନଗୋବିନ୍ଦ ଯେ ବୀର
ଅସୁର ତୁଳେ କରଇ ବିଷମ ସମର ।
ଗଦା ଘେନି ଧଇଲା ସେ କୁରୁତୁଳ ରାୟେ
ପଡ଼ିଲାକ ଗଦାବର ଅସୁରର କାୟେ ।
ମେରୁଗିରି ଚୂର ହୁଏ ଯେଉଁ ଗଦା ବାଜି
ଅସୁର ଦେହେ ସେ ଗଦା ପଡ଼ିଗଲା ଭାଜି ।
ଆନ ଗଦା ବୁଲାଇଣ ମାନଚକ୍ରବର୍ତ୍ତୀ
ଅସୁର ଉପରେ ବୀର ପିଟିଲାକ ଧାତି ।
ଗର୍ଜି ଉଠିଲା ଦାନବକୁଳ ବୀରବର
କୁଦ୍ଦାଳ ଘେନି ମାଇଲା ନୃପତି ଉପର ।
ଘାଏ ଘୂମାଇଲା ତହିଁ ମାନଚକ୍ରବର୍ତ୍ତୀ
ସାଉଁଟି ଧଇଲା ବୀର ଉଠିଯାଇ ଧାତି ।
ରଥରେ ପକାଇ ମନେ ବିଚାରେ ଅସୁର
ହସ୍ତିନାର ରାଜା ଏହି ଅଟେ ନୃପବର ।

ବହୁତ ସ୍ୱାଦୁ ଏହାର ମାଂସରେ ତ ଅଛି
ଏହା ସଙ୍ଗେ ଯୁଦ୍ଧକରି ମୋ ପିତା ମରିଛି ।
ଏତେକ ବିଚାର ସେହି ଦୈତ୍ୟକୁଳ ସାଇଁ
ରନ୍ଧନ କରି ଏହାକୁ ଖାଇବଇଁ ମୁହିଁ ।
ରଜନୀ ପାହିଲେ ଏହା ପାଖକୁ ମୁଁ ଯିବି
ଆଜି ଏହିଠାରେ ରହି ଏ ନିଶ ବଞ୍ଚିବି ।
ଏମନ୍ତେ ଅସୁର ବୀର ରହିଲାକ ତହିଁ
ମନରେ ବିଚାରୁ ଗଲା ସେ ରଜନୀ ପାହି ।
ଅସୁର କୁଦ୍ଦାଳେ କର୍ଣ୍ଣ ପଡ଼ିଲାକ ମୋହେ
ସୂର୍ଯ୍ୟକିରଣ ପଡ଼ିଲା ଯହୁଁ ତାର ଦେହେ ।
ଅମୃତ କୁଣ୍ଡଳୁ ଯହୁଁ ଝରିଲା ଅମୃତ
ଚେତନା ପାଇ ଉଠିଲା ତହୁଁ ରାଧାସୁତ ।
ମୁଖରେ ଅମୃତ ପଶୁ ପାଇଲା ସେ ଜ୍ଞାନ
କରେ ଶସ୍ତ୍ର ଧରି ବେଗେ ଧାମଇ ବହନ ।
କେହି କେତେବେଳେ ତାର ପାଶରେ ନାହାନ୍ତି
ବିଚାରଇ କେଣିକି ସେ ଗଲା ଦୈତ୍ୟପତି ।
କାହାରିଠାରୁ ନ ପାଏ କିଛି ହିଁ ସନ୍ଦେହ
କିବା ସମସ୍ତଙ୍କୁ ରଣେ ମାଇଲା ରାକ୍ଷସ ।
ଏସନ ବିଚାରି ବୀର ହସ୍ତିନା ଗମଇ
ବାଟେ ଅସୁରକୁ କର୍ଣ୍ଣ ଭେଟିଲାକ ଯାଇ ।
ହସ୍ତିନାକୁ ମୁଖ କରି ଅସୁର ଚାଲଇ
ବୋଇଲା ଅସୁର କେଣେ ଯାଉଅଛି ତୁହି ।
ଏତେକ ବୋଲି ବିନ୍ଧିଲା ସହସ୍ର ନାରାଚ
ଗର୍ଜି ଆସଇ ନାରାଚ ଘେନି ସୂର୍ଯ୍ୟତେଜ ।
ବାଜନ୍ତେ ଅସୁର ଦେହେ ତିଳେ ନ ଭେଦିଲା
ପୁଣି କୋଡ଼ିଏକ ଶର ବୀରହିଁ ବିନ୍ଧିଲା ।
ଅପ୍ରମିତ ଶର ମାରେ ବୀର ଅନୁସରି
ହସ୍ତର ଛଟକ ତାର କହି ତ ନ ପାରି ।
ଅସଂଖ୍ୟ ନାରାଚ ସେହି ପେଶେ ନମିଷକେ
ଦେଖନ୍ତି ସ୍ୱର୍ଗ ଭୁବନେ ଥାଇ ବୃନ୍ଦାରକେ ।
ଆଖି ନ ପିଛାଡୁ ଶର ଶତେବଳେ ପେଶେ
ପ୍ରଳୟ ମେଘ ପରାୟ ନାରାଚ ବରଷେ ।
କେବଣ ଶର ବ୍ୟଗ୍ରରେ ହୁଏ ଶର ଆଗ
କେବଣ ଶର ଚଳନ୍ତେ କମ୍ପଇ ଭୂଭାଗ ।
ପବନୁ ବେଗେ କେ ଅବା ମନୁ ବେଗେଯାଇ
ବାଣରେ ଅସୁର ଦେହେ ହୋଇଲାକ ଛାଇ ।
ଦୁର୍ଯ୍ୟୋଧନର ନିଧନେ କର୍ଣ୍ଣବୀର ରାଗେ
ଅନୁକ୍ଷଣେ ନାରାଚ ସେ ପେଶେ ବେଗେ ବେଗେ ।
ଅସୁରର ଦେହେ ଶର ହୋଇଲା ବିଦୀର୍ଣ୍ଣ
ନାରାଚ ମାଇଲା ପୁଣ ପୁଣ ବୀର କର୍ଣ୍ଣ ।

ଅତ୍ୟନ୍ତ ବିମୁଖ ହେଲା ଦୈତ୍ୟକୁଳ ଷଣ୍ଢ
ରଡ଼ିଏକ ଛାଡ଼ିଲା ସେ କମ୍ପିଲା ବ୍ରହ୍ମାଣ୍ଡ ।
କୋଦ୍ଦାଳ ଧରିଣ କରେ ମୁଣ୍ଡିଆଇ ପଶି
କର୍ଣ୍ଣର ଉପରେ କ୍ରୋଧେ ପିଟିଲା ନିରାଶି ।
ଦେଖ ଆଡ଼ ହୋଇଗଲା ତହୁଁ ରାଧାବାଳ
କୋପରେ ଗର୍ଜଇ ତହିଁ ଦୈତ୍ୟ ଅନର୍ଗଳ ।
କୁଦ୍ଦାଳ ଧରିଣ ପୁଣି କର୍ଣ୍ଣକୁ ଗୋଡ଼ାଇ
ନ ରହିଣ କର୍ଣ୍ଣବୀର ଅଛଇ ପଳାଇ ।
କେତେହେଁ କ ଦୂରେ ଯାଇ ଦେଖିଲାକ କର୍ଣ୍ଣ
ଦ୍ୱାରକାରୁ ଆସୁଛନ୍ତି ଭୀମ ଅରଜୁନ ।
ଯୁଧିଷ୍ଠି ନକୁଳ ସହଦେବ ହିଁ ଅଛନ୍ତି
ଦେଖିଲେ ଯୁଧିଷ୍ଠି କର୍ଣ୍ଣବୀର କରି ଭୀତି ।
ପଳାଉଛି ଅସୁରେକ ଗୋଡ଼ାଉ ଅଛଇ
କୁଦ୍ଦାଳ ଗୋଟିଏ ହସ୍ତେ ଧରିଅଛି ସେହି ।
ଯୁଧିଷ୍ଠି ବୋଇଲେ ଭୀମସେନକୁ ଅନାଇ
କର୍ଣ୍ଣ ପଳାଉଛି କେହି ଅଛଇ ଗୋଡ଼ାଇ ।
ଭୀମ ବୋଲେ ମନ୍ତ୍ରୀ ସହଦେବଙ୍କୁ ପଚାର
କର୍ଣ୍ଣକୁ ଗୋଡ଼ାଇଅଛି କେବଣ ଅସୁର ।
କାହାର ହସ୍ତରେ ଅଛି ଅସୁର ମରଣ
ସେ ସିନା ଅସୁର ସଙ୍ଗେ କରିବ ଯେ ରଣ ।
ଆନ ଯୁଦ୍ଧ କଲେ ତାକୁ ହୋଇବ ଯେ ହାନି
କେବଣ ଶରେ ଅସୁର ଅଛି ମୃତ୍ୟୁ ଘେନି ।
ଭୀମର ବଚନେ ସହଦେବଙ୍କୁ ପୁଛିଲେ
କେମନ୍ତ ମରିବ ତାହା ମନ୍ତ୍ରୀବର ଭଲେ ।
ସହଦେବ ବୋଇଲେ ଏ କୁଣ୍ଡଳୀର ସୁତ
ନକୁଳ ଠାକୁର ବଳେ ଯାହା ପ୍ରାଣହତ ।
ପିତାର ନିଧନ ଶୁଣି ହସ୍ତିନା ଅଇଲା
ନବ ଅକ୍ଷୌହିଣୀ ବଳ ସଙ୍ଗେ ଆଣିଥିଲା ।
ଜାଣି ଦୁର୍ଯ୍ୟୋଧନ ଦୈତ୍ୟ ସଙ୍ଗରେ ଯୁଝିଲେ
ନବ ଅକ୍ଷୌହିଣୀ ବଳ ସମରେ ପଡ଼ିଲେ ।
ସୈନ୍ୟ ନାଶ ଦେଖି ଦୈତ୍ୟ ଆପ୍ତେ ଯୁଦ୍ଧ କଲା
କୁଦ୍ଦାଳ ଘେନିଣ ବୀର କର୍ଣ୍ଣକୁ ମାଇଲା ।
ଦ୍ରୋଣଙ୍କର ରଥ ଧରି ଦେଲା ଫୋପଡ଼ାଇ
ତିନି ଯୋଜନେ ଅଛଇ ଦ୍ରୋଣ ମୋହଯାଇ ।
ବାହାଦଣ୍ଡ ମାରି ଭୀଷ୍ମ ରଥ ଦେଲା ଭାଙ୍ଗି
ଭୟେ ଆଡ଼ ହୋଇ ସେହୁ ହେଲେ ରଣତ୍ୟାଗୀ ।
ଦୁଃଶାସନ ସଙ୍ଗତରେ ଶତେ ଭାଇ ଗଲେ
ଅସୁର ହସ୍ତରେ ଦେବ ସର୍ବ ନାଶ ଗଲେ ।
ଦେଖି ଦୁଃଶାସନ ରାଜା ଭାଇଙ୍କ ମରଣ
ଅପେ ଦନୁଜର ସଙ୍ଗେ କଲେ ଘୋର ରଣ ।

ଅନେକ ଯୁଦ୍ଧ କଲେ ସେ ଅସୁର ସଙ୍ଗରେ
ରାତ୍ର ହୋଇଥିଲା ଦେବ ଅଢ଼ାଇ ପ୍ରହରେ ।
କୋପେ ଦୁର୍ଯ୍ୟୋଧନକୁ ସେ କୁଦାଳରେ ପିଟି
ବାଜନ୍ତେ ମାନଗୋବିନ୍ଦ ଭୂମିପରେ ଲୋଟି ।
ଧରିଣ ଅସୁରବୀର ରଥରେ ପକାଇ
ଆପଣା ରାଜ୍ୟେ ଖାଇବ ବୋଲି ତାକୁ ନେଇ ।
ରଜନୀ ପ୍ରଭାତେ ଦେଲା ହସ୍ତିନାକୁ ଧାଡ଼ି
ଅସୁର କୁଦ୍ଦାଳ ବାଜି କର୍ଣ୍ଣ ଥିଲେ ପଡ଼ି ।
ସୂର୍ଯ୍ୟର କିରଣ ଅଙ୍ଗେ ଲାଗିଲାକ ଯହୁଁ
ଅମୃତ କୁଣ୍ଡଳୁ ସୁଧା ଝରିଲାକ ତହୁଁ ।
ତୁଣ୍ଡରେ ପଶନ୍ତେ ସେହୁ ପାଇଲେ ଚେତନ
ଗୋଡ଼ାଇଲେ କରେ ଶସ୍ତ୍ର ଧରି ବୀରକର୍ଣ୍ଣ ।
ଅସୁରକୁ ଓଗାଳିଣ ଘୋର ଯୁଦ୍ଧ କଲେ
କେବେ ହେଁ ସେ ଅସୁରକୁ ଜିଣି ନ ପାରିଲେ ।
ଅସୁର ମାରନ୍ତେ ତହୁଁ ପଳାଇଲେ ଭୟେ
ଏହାଙ୍କ ହସ୍ତେ ଅସୁର ନ ଯିବଟି କ୍ଷୟେ ।
ଯୁଧିଷ୍ଠି ବୋଇଲେ ତୁହୋ ସହଦେବ ଶୁଣ
କାହାର ହସ୍ତେ ଅଛଇ ଅସୁର ମରଣ ।
କାହାଠାରୁ ବର ପାଇ ଏଡ଼େ ବଳବାନ
ମରିବ କି ନ ମରିବ ଅସୁର ରାଜନ ।
ସହଦେବ ବୋଇଲେ ହେ ଶୁଣ ଧର୍ମରାୟେ
ବଡ଼ ପ୍ରତାପୀ କୁଦ୍ଦାଳେଶ୍ୱର ଦୈତ୍ୟରାୟେ ।
କାଳିକାକୁ ସେବା କରି ସେ କୁଣ୍ଡଳୀବୀର
ଇଷ୍ଟଦେବତା କରି ସେ ରଖି ନିଜପୁର ।
ଭୋଗରାଗ ବଳିଦେଇ ସେବା କରୁଥିଲା
ଯହୁଁ କାଳିକା ତାହାକୁ ପ୍ରସନ୍ନ ନୋହିଲା ।
ଦିନେ ଯେ କୁଦ୍ଦାଳେଶ୍ୱର ନିଶି ଭ୍ରମି ଆସି
ମଣ୍ଡପରେ ପ୍ରବେଶିଲା ନାହିଁ ନିଶି ବେଶୀ ।
କାଳିକା ଯେ ଭ୍ରମିଯାଇଥିଲେ ଯେତେଦୂରେ
ସେ ଆପି ପ୍ରବେଶ ହେଲେ ସେହି ମଣ୍ଡପରେ ।
ଅସୁର ବିଚାରଇ ଏ କେବଣ ମୁରତି
ଏହୁ କାହାର ଯେ ପୁଣ ଅଟଇ ଯୁବତୀ ।
ସ୍ୱଭାବେ ବଳ ବୟସ ନ ଜାଣଇ କିଛି
ଦେଉଳ ଦ୍ୱାର କିମ୍ପାଇ ଆବୋରି ରହିଛି ।
କାଳିକା ବୋଇଲେ ଆରେ ଅଟୁ ତୁ ପାମର
କି ନିମନ୍ତେ ବସିଅଛୁ ଦୁଆରେ ମୋହର ।
ଶୁଣିଣ ସେ ବଚନ ଖଡ଼ଗ ବୁଲାଇଲା
କାଳିକାଙ୍କ ଉପରକୁ ବେଗେ ଧାଇଁଗଲା ।
କାହିଁର ପାମରୀ ତୁ ଲୋ କାହିଁ ତୋର ଘର
ମିଛରେ ତୁ ବୋଲୁ ଅଛୁ ଦୁଆର ମୋହର ।

ଏତେ ବୋଲି ଧଇଲା ସେ କାଳିକାର ବାଳ
କାଳିକା ବୋଇଲେ ଛାଡ଼ ଅସୁର ଦୁଲାଳ ।
ତୋପିଅର ମୋର ସେବାକରେ ନିରନ୍ତର
ତେଣୁ କରି ସଂସାରେ ସେ ଅଟେ ବଳିୟାର ।
ପିତାସେବାରେ ମୁଁ ତୋତେ ହୋଇଲି ପ୍ରସନ୍ନ
ମାଗରେ କୁମର ଯାହା ଇଚ୍ଛା ତୋର ମନ ।
କୁଦ୍ଦାଳସେନ ବୋଲେ ମୁଁ ନ ଜାଣଇ କିଛି
ତୋହର ଇଚ୍ଛାରେ ମାଗୋ ବର ଦିଅ କିଛି ।
ତୋହର ଏ ନିଜ ଦେହ ହୋଇବ ଅକ୍ଷୟ
ଶସ୍ତ୍ରେ ବିଘାତ ନୋହିବ ଏ ତୋହର କାୟ ।
ଦେବେ ନ ମରିବୁ ତୁହି ନରେ ନ ମରିବୁ
ଯେହୁଁ ଅବତରି ଥିବ ଦେବତା ମାନିବୁଁ ।
ସେ ପୁଣି ସଂଗ୍ରାମେ ତୋତେ ନ ପାରିବ ଜିଣି
ଦେବ ମାନବ ହୋଇବ ଆଗତ ହିଁ ଜାଣି ।
ଅନିମିତ୍ତେ ଝିଙ୍କିଲୁ ତୁ ମୋତେ କେଶ ଧରି
ଏ ରୂପେ ତୁ ନାଶଯିବୁ ବୋଇଲେ ଈଶ୍ୱରୀ ।
ତେଣୁ ସେ ଅସୁର ଗୋଟି ଅଟେ ବଳିୟାର
ଯୁଧିଷ୍ଠି ବୋଇଲେ ହସ୍ତେ ମରିବ ତୋହର ।
ସୋଦର ନିଧନ କଲା ଗରିଷ୍ଠ ଅସୁର
ବେଗେ ସହଦେବ ଏହି ପାପୀଷ୍ଠକୁ ମାର ।
ଶୁଣି ମାଦ୍ରୀସୁତ ହେଲା ଯୁଦ୍ଧ ଅର୍ଥେ ବେଗେ
କଣ୍ଠ ହିଁ ମିଳିଲା ଆସି ଯୁଧିଷ୍ଠିଙ୍କ ଆଗେ ।
ଅସୁର ଗୋଡ଼ାଇ ଅଛି ତାର ପଛକତି
ସହଦେବ ଦେଖି ତାକୁ ଓଗାଳିଲା ଧାତି ।
ଅସୁର ବୋଇଲେ ତୁହୋ ଆଡ଼ ହୁଅ ଭାଇ
ମୋହର ଶତ୍ରୁକୁ ମୁହିଁ ଅଛଇ ଗୋଡ଼ାଇ ।
ମରଣକୁ ଭୟ କିରେ ନାହିଁକି ତୁମ୍ଭର
ମୋତେ ଜିଣିବୁ ବୋଲି କି ବିଚାରୁ ପାମର ।
ସହଦେବ ବୋଇଲାରେ ଶୁଣ ତୁ ଦନୁଜ
ପଳାଇବା ଶତ୍ରୁକୁ ତୁ ଗୋଡ଼ାଇ କି କାର୍ଯ୍ୟ ।
ପଳାଇବା ଶତ୍ରୁକୁ ତୁ ଗୋଡ଼ାଉଛୁ ମାରି
ବିଧାତା ତୋତେ ସହିବ କହରେ କିପରି ।
ଶୁଣି ଅସୁର କୁଦ୍ଦାଳ ଘେନି ବେଗେ ପିଟି
ଭାଙ୍ଗି ପକାଇଲା ସହଦେବ ରଥଗୋଟି ।
ବିଚାରଇ ପାଦଗାମୀ ହୋଇ ସହଦେବ
ଅସୁରର ଦେହେ ବାଜି ଶସ୍ତ୍ର ନାଶଯିବ ।
କାଳିକାର ଶାପ ଆସି ପଡ଼ିଲା ତାହାକୁ
ବଳବପୁ କ୍ଷୀଣ ହେଲା ଦେଖିଣ ମନ୍ତ୍ରୀକୁ ।
କୁଦ୍ଦାଳ ଘେନିଣ କୋପେ ମାଇଲା ଦନୁଜ
ସହଦେବ ବିନ୍ଧେ ବାଣ କୋଟି ସୂର୍ଯ୍ୟତେଜ ।

ଅସୁର ଆୟୁଧ ତେଣେ ହେଲା ଭଗ୍ନବତ
କୁଦ୍ଧାଳ ଭାଙ୍ଗନ୍ତେ ଦୈତ୍ୟ ହେଲା ଶୂନ୍ୟହସ୍ତ ।
ପର୍ବତ ଏକ ଉପାଡ଼ି ବୁଲାଇ ଫିଙ୍ଗିଲା
ବଜ୍ରଶରେ ତାହା ସହଦେବ ନିବାରିଲା ।
କୋପେ ସେ ଅସୁରବର ଆସେ ବେଘେ ଧାଇଁ
ଧନୁଶରକୁ ହସ୍ତରୁ ନେଲାକ ଛଡ଼ାଇ ।
ଶୂନ୍ୟହସ୍ତ ହୋଇଲା ସେ ମାଦ୍ରୀର କୁମର
ମଲ୍ଲଯୁଦ୍ଧ ଆରମ୍ଭିଲା ଦୈତ୍ୟ ସଙ୍ଗତର ।
ରେରେକାର କରି ସେହି ଦୈତ୍ୟ ମହାବୀର
ବଜ୍ରମୁଥ ପ୍ରହାରିଲା ଅଙ୍ଗରେ ତାହାର ।
ମୁଥ ମାରନ୍ତେ ଦଇଲା ମନ୍ତ୍ରୀ ତାର ହସ୍ତ
ଛାଟି ପକାଇଲା ତାକୁ ମାଦ୍ରୀ ଦେବୀ ସୁତ ।
ସମ୍ଭାଳି ନ ପାରି ଦୈତ୍ୟ ପଡ଼େ ମୁଖମାଡ଼ି
ତା ଉପରେ ସହଦେବ ବସିଲାକ ଚଢ଼ି ।
ଛାଟି ପକାଇଲା ତହୁଁ ମାଦ୍ରୀ ଦେବୀ ସୁତ
ସମ୍ଭାଳି ନ ପାରି ତଳେ ପଡ଼ିଲା ଦଇତ୍ୟ ।
ବିଧାତା ପୁଣି ଯାହାକୁ ଆସି ବାମହୋଇ
ତାହାର ଯେ ବୁଦ୍ଧିବଳ ସବୁ ନାଶଯାଇ ।
ଯେତେବେଳେ ଯାକୁ ହୁଏ ଶୁଭ ପରାପତ
ଦୂରର ପଦାର୍ଥ ଆସି ମିଳଇ ତା ହସ୍ତ ।
ବସିଲା ଠାବରେ ତାର ସବୁ ସିଦ୍ଧହୋଇ
ବିଧାତା ବଳକୁ ଆନ କରି ନାହିଁ କେହି ।
ଯେତେବେଳେ ଯାଏ ତାର ସୁଦଶା ହିଁ ଥିଲା
ଭୀଷ୍ମ ଦ୍ରୋଣ ଘୁଞ୍ଚିଗଲେ ସମସ୍ତ ମାଇଲା ।
କର୍ଣ୍ଣ ପଳାଇ ଅଇଲା ନ ରହିଲା ଆଗେ
ବିଧାତା ନିର୍ଭା କରିଛି ଏସନକ ବାଗେ ।
ସହଦେବର ହସ୍ତରେ ମରଣ ହିଁ ଥିଲା
କାଳିକାର ଶାପ ଆସି ଏକାଳେ ପଡ଼ିଲା ।
ସହଦେବ ବାଣେ ତାର ଭାଙ୍ଗିଲା କୁଦ୍ଧାଳ
ତହୁଁ ଅସୁରକୁ ଆସି ଘୋଟିଲାକ କାଳ ।
ମୁଥ ମାରନ୍ତେ ଧଇଲା ସହଦେବ ହସ୍ତ
ଛାଟନ୍ତେ ପୁଣି ଦଇତ୍ୟ ହେଲା ଭୂମିଗତ ।
ଉପରେ ମାଡ଼ିବସିଲା ମାଦ୍ରୀଦେବୀ ସୁତ
ଅସୁର କେଶରେ ଦେଇଛନ୍ତି ବାମହସ୍ତ ।
ନିଠାଇ ଝିଙ୍କନ୍ତେ ତାର ପ୍ରାଣ ଚାଲିଗଲା
କାଳିକା ଦେବୀ ଶାପରେ ସେ ଅସୁର ମଲା ।
ତିନି ଯୋଜନକୁ ମାଡ଼ି ସେ ଅସୁର ପଡ଼ି
ମଲା ସେ ଅସୁରବୀର ଗଲା ପ୍ରାଣ ଛାଡ଼ି ।
ଦେଖିଣ ଦେବତାମାନେ ସାନନ୍ଦ ହୋଇଲେ
ସହଦେବ ଶିରେ ନେଇ ପୁଷ୍ପ ବରଷିଲେ ।

ଅସୁରକୁ ମାରିଣ ସେ ମନ୍ତ୍ରୀ ବୀରବର
ଯୁଧିଷ୍ଠିଙ୍କ ପାଦେ ଆସି କଲା ନମସ୍କାର ।
ଭୀମ ଅର୍ଜୁନ ନକୁଳ ପାଦେ ମାନ୍ୟକଲା
କର୍ଣ୍ଣକୁ ବହୁତ ରୂପେ ବିନୟ ହୋଇଲା ।
କୋଳ କରି ଧଇଲେ ସେ ବୀର ରାଧାସୁତ
କଲ୍ୟାଣ କରନ୍ତି ତାକୁ ଶିରେ ଦେଇ ହସ୍ତ ।
ମୁଖରେ ଚୁମ୍ବନ ଦେଇ ଆଉଷନ୍ତି ଦେହ
ଦୁର୍ଯ୍ୟୋଧନ ମଲା ବୋଲି କର୍ଣ୍ଣ କରେ କୋହ ।
ବାବୁ ସହଦେବ ତୋର ମହିମା ହିଁ ଧନ୍ୟ
ସର୍ବଜ୍ଞାତା ପୁରୁଷ ତୁ ମନ୍ତ୍ରୀବର ମାନ୍ୟ ।
ବାବୁ ଭୀଷ୍ମ ପଳାଇଲେ ଦ୍ରୋଣ ହେଲେ ହତ
ମାନଗୋବିନ୍ଦ ପଡ଼ିଲା ଘେନି ଭାଇ ଶତ ।
ତିନିବେଳେ ରଥ ମୋର ଭାଙ୍ଗି ପକାଇଲା
କୁଦ୍ଧାଳ ମାରି ମୋହର ଜ୍ଞାନ ହତକଲା ।
ଭୟେ ପଳାଇ ଅଇଲି ହୋଇ ମୁହିଁ ଏକା
ସୈନ୍ୟକେଣେ ଗଲେ ମୁଁ ଯେ ନ ପାଇଲି ଦେଖା ।
ଅଶ୍ୱଥାମା ବାହ୍ଲିକ ଯେ କୃପ ଜୟଦ୍ରଥ
ଶକୁନି ପକାଇଗଲା ଛାଡ଼ି ତାର ରଥ ।
ଏଡ଼େ ଦର୍ପିଷ୍ଠ ଅସୁର ତୋର ହସ୍ତେ ମଲା
ଦୁର୍ଯ୍ୟୋଧନ ପାଇଁ କର୍ଣ୍ଣବୀର ଶୋକ କଲା ।
ଧର୍ମର ନନ୍ଦନ ଦେବ ଯୁଧିଷ୍ଠିର ରାୟେ
ଦୁର୍ଯ୍ୟୋଧନକୁ ନ ଦେଖି ତାପିତ ହୃଦୟେ ।
ଆହା ଭାଇ ମୋର ତୁରେ ମାନଚକ୍ରବର୍ତ୍ତୀ
ପଞ୍ଚକଟକରେ ତୁହି ଅଟୁ ଅଧିପତି ।
ବାବୁ ତୋର ହତ ଦେଖି ନ ସହଇ ଦେହ
ପାର୍ଥକୁ ଚାହିଁ ଯୁଧିଷ୍ଠି ଦେବ ଗଲେ ମୋହ ।
ଭୂମିରେ ପଡ଼ନ୍ତେ ରାୟ ମୃତ୍ୟୁପିଣ୍ଡ ଜାଣି
କୋଳ କରିଣ ଅର୍ଜୁନ ଧରିଲେକ ଆଣି ।
ଶୀତଳ ଜଳ ନକୁଳ ମୁଖେ ଆଣି ସିଞ୍ଚି
ଆଲଟ ଚାମର ଘେନି ସହଦେବ ବିଞ୍ଚି ।
ଚରଣ ଚାପଇ ଧୀରେ ପବନ କୁମର
ଚେତନା ପାଇ ଉଠିଲେ ଧର୍ମ ନୃପବର ।
ଯୁଧିଷ୍ଠି ବୋଇଲେ ଆରେ ଶୁଣ ମୋର ଭାଇ
ଦୁର୍ଯ୍ୟୋଧନର ନିଧନେ ମୁହିଁ ନ ବର୍ତ୍ତଇ ।
ଅନ୍ଧସୁତ ହତରେ ମୁଁ କି ବୁଦ୍ଧି କରିବି
ଧୃତରାଷ୍ଟ୍ର କଷ୍ଟ ଦେଖି ନିଶ୍ଚୟ ମରିବି ।
ଚଣ୍ଡାଳ ଅସୁର ମଲା ହୋଇଲା କିଅବା
ସୋଦର ନିଧନେ ବାବୁ କେମନ୍ତେ ବର୍ତ୍ତିବା ।
ଅର୍ଜୁନ ବୋଇଲେ ଦେବ ମନ ସ୍ଥିର କର
ଅମର ମହୌଷଧି ଯେ ଅଛଇ ମୋହର ।

ଯେବେଟି ଆୟୁଷ ଥିବ ବର୍ତ୍ତୁ କୁରୁରାୟେ
ଖାଣ୍ଡବ ବନ ଦହନେ ଅଗ୍ନିର ଉପାୟେ ।
ଅମର ମହାଔଷଧି ବୃକ୍ଷ ଭସ୍ମସାର
ମୋର କରେ ଦେଇଛନ୍ତି ଦେବ ବୈଶ୍ୱାନର ।
ସେ ଭସ୍ମ ପକାଇଦେଲେ ମଲାଲୋକ ବର୍ତ୍ତେ
ମନ୍ତ୍ରେକ କହିଅଛନ୍ତି ଅଗ୍ନି ଦଇବତେ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣରେ ଅର୍ଜୁନ
ସମସ୍ତେ ବର୍ତ୍ତିବେ ଘେନି ଗାନ୍ଧାରୀ ନନ୍ଦନ ।
ମନ ଶୁଦ୍ଧ କରି ବୈଶ୍ୱାନରଙ୍କ ବିଭୂତି
ଜୀବନ୍ୟାସ ଶରେ ପାର୍ଥ ଲଗାଇଲେ ଧାତି ।
ମନ୍ତ୍ର ସୁମରିଣ ବିନ୍ଧଦେଲେ ସେହି ଶର
ବୋଇଲେ ଯେତେକ ପଡ଼ିଅଛନ୍ତି ସୋଦର ।
ସମସ୍ତେ ବର୍ତ୍ତିବେ କେହି ନ ରହିବେ ଜଣେ
ପ୍ରସନ୍ନେ ଅନଳ ଦେଇଅଛନ୍ତି ଆପଣେ ।
ଏତେକ କହି ସେ ମନ୍ତ୍ର ସୁମରିଣ ପେଶି
ସବୁରି ଅଙ୍ଗେ ସେ ଶର ପଡ଼ିଲାକ ଆସି ।
ନିଦ୍ରାରୁ ଉଠିଲା ପ୍ରାୟେ ଉଠିଲେ କୌରବେ
କରେ ଅସ୍ତ୍ର ଧରି ସେହୁ ଧାଉଁ ଘୋରରବେ ।
ଅସୁରକୁ ନ ଦେଖି ସେ ବହୁତ ଖୋଜିଲେ
ବଞ୍ଚିବାଲୋକଙ୍କୁ ବାଟେ ଯାଉଁ ସେ ଦେଖିଲେ ।
ଦ୍ରୋଣଗୁରୁ ବର୍ତ୍ତିଲେ ସେ ମହୌଷଧିବାୟେ
ଗଙ୍ଗାପୁତ୍ର ଲୁଚିଥିଲେ ଦାନବର ଭୟେ ।
ସମସ୍ତେ ରୁଣ୍ଡ ହୋଇଲେ ଆସି ଏକମେଳେ
ଲୁଚିଲା ସୈନ୍ୟ ମିଳିଲେ ସେଠାରେ ସକଳେ ।
ଦୁର୍ଯ୍ୟୋଧନ କର୍ଣ୍ଣକୁ ସେ ନ ଦେଖିଣ ଭାଳି
ହସ୍ତିନା ନବରେ ଯାଇ ମନଦୁଃଖେ ମିଳି ।
ଦେଖିଲେ ନଗରେ ଜନ ଗୋଟିଏ ଯେ ନାହିଁ
ବନସ୍ତେ ସେ ଲୁଚିଥିଲେ ମହାଭୟ ପାଇ ।
ଅର୍ଜୁନର ମହୌଷଧି ପାଇ କୁର୍ମଗତି
ଚେତିଉଠିଣ ମନରେ କରି ମହାଭୀତି ।
ଦେଖିଲା କର୍ଣ୍ଣ ଯୁଧିଷ୍ଠି ଭୀମ ଅର୍ଜୁନ
ଏହାଙ୍କୁ ପୁଚ୍ଛଇ ସେହି ହସ୍ତିନା ରାଜନ ।
ଅସୁର ସମର କଲା ଆସ ମୋର ତୁଲେ
ଦୁଃଶାସନ ମୂଳେ ସବୁ ଭାଇ ମୋର ମଲେ ।
ଭୀଷ୍ମ ଘୁଞ୍ଚିଗଲେ ଦ୍ରୋଣ ପଡ଼ିଲେ ଯେ କାହିଁ
ସୈନ୍ୟ ପଳାଇ ପଶିଲେ ବନସ୍ତରେ ଯାଇ ।
ତୁମ୍ଭେ ହୋ ମଇତ୍ର ପରା ମୋହ ଯାଇଥିଲେ
କେବଣ ପ୍ରକାରେ ତୁମ୍ଭେ ହୋଇଲ ଯେ ଭଲ ।
ଅସୁରକୁ କେ ମାଇଲା କହ କେଉଁମତେ
ସମରେ ହାରିଲୁ ଆମ୍ଭେ ନ ରହି ଜୀବିତେ ।

କର୍ଣ୍ଣ ବୋଇଲେ ଶୁଣିମା ମାନଚକ୍ରବର୍ତ୍ତୀ
ବଡ଼ ପ୍ରତାପୀ ଅସୁରବଳ ମହାକ୍ଷତ୍ରୀ ।
ତୁମ୍ଭଙ୍କୁ ମାରିଣ ସେହି ରଥରେ ପକାଇ
ହସ୍ତିନା ନବରମୁଖେ ଯାଉଅଛି ଧାଇଁ ।
ରଜନୀ ପ୍ରଭାତେ ଯାଇଁ ଦେଖିଲଇଁ ମୁହି
ଅସୁର ତୁଳେ ସଂଗ୍ରାମ କଲି ପୁଣି ଯାଇ ।
ବହୁତ ସମର କରି ଜିଣି ନ ପାରିଲି
ମହାଭୟ କରି ତହୁଁ ପଳାଇ ଅଇଲି ।
ଏହାଙ୍କୁ ଦେଖିଲି ଦ୍ୱାରକାରୁ ଆସୁଥିଲେ
ଅସୁର ସଙ୍ଗତେ ଯାଇ ସେହୁ ଯୁଦ୍ଧକଲେ ।
ମରଣ ତାର ଜାଣଇ ସହଦେବ ମନ୍ତ୍ରୀ
ଅସୁର ସଙ୍ଗତେ ଯୁଦ୍ଧ ଯାଇ ସେ କରନ୍ତି ।
କେଶ ଝିଙ୍କନ୍ତେ ଅସୁର ପ୍ରାଣ ଛିଡ଼ିଗଲା
ପୂର୍ବେ ତାଙ୍କୁ ଶାପ କାଳିଦେବୀ ଦେଇଥିଲା ।
ସଇନ୍ୟ ନିଧନ ଯହୁଁ ଯୁଧିଷ୍ଠି କହିଲେ
ଅର୍ଜୁନ ଶର ପେଶନ୍ତେ ସମସ୍ତେ ବଞ୍ଚିଲେ ।
ତୁମ୍ଭଙ୍କୁ ରଥେ ପକାଇ ଦୈତ୍ୟ ନେଇଥାନ୍ତା
ସ୍ୱାଦୁମାଂସ ବୋଲି ପୋଡ଼ି ଅବଶ୍ୟ ଭକ୍ଷନ୍ତା ।
ଏଥିଅନ୍ତେ ସେ ପାଣ୍ଡବ ଉଠି ଚାରିଭାଇ
ଦୁର୍ଯ୍ୟୋଧନକୁ ପ୍ରଣାମ କଲେ ବେଗେ ଯାଇଁ ।
କଲ୍ୟାଣ ବାଞ୍ଛାକରି ସେ ଧୃତରାଷ୍ଟ୍ର ସୁତ
ସହଦେବକୁ ଧରିଣ କଲେ କୋଳାଗ୍ରତ ।
ଅର୍ଜୁନକୁ ଆଶ୍ୱାସି ଯେ ମୁଖେ ଚୁମ୍ବଦେଲା
ଯୁଧିଷ୍ଠି ଭୀମ ନକୁଳେ ଗଉରବ କଲା ।
ଆନନ୍ଦ ସେ ବେନିକୁଳ ହୋଇ ଏକସଙ୍ଗେ
ଉତ୍ସବ କରି ପତାକା ବାନ୍ଧିଲେ ରଥାଙ୍ଗେ ।
ହସ୍ତିନା ନଗରେ ଯାଇ ହୋଇଲେ ପ୍ରବେଶ
ଭୀଷ୍ମଦ୍ରୋଣ ଶକୁନି ଯେ ମିଳିଲେକ ପାଶ ।
ବହୁତ ପ୍ରଶଂସା କଲେ ତାଙ୍କୁ ଭୀଷ୍ମଦ୍ରୋଣ
କର୍ଣ୍ଣଠାରୁ ଶୁଣି ଦୁଷ୍ଟ ଅସୁର ମରଣ ।
ନୃପତି ବୋଇଲା ରାଜ୍ୟେ ଘୋଷଣା ଦିଆଅ
ଅସୁରକୁ ମାଇଲା ଯେ ମାଦ୍ରୀଦେବୀ ପୁଅ ।
ଯେ ଯେଣେ ଅଛ ସମସ୍ତେ ନଗରକୁ ଆସ
ତୁମ୍ଭର ଶତ୍ରୁକୁ କଲା ସହଦେବ ନାଶ ।
ଜୟ ଘୋଷଣା ଶୁଣି ସର୍ବଜନ ମିଳି
ଆସ୍ଥାନରେ ଦୁର୍ଯ୍ୟୋଧନ କର୍ଣ୍ଣଘେନି ଭାଳି ।
ଅସୁର ଭୟେ ରଖିଲେ ଆମ୍ଭଙ୍କୁ ପାଣ୍ଡବ
ରାଜ୍ୟରେ ହୋଇବ ତେହ୍ନେ ପାଣ୍ଡବ ଉତ୍ସବ ।
କୋଟିଏ ସୁବର୍ଣ୍ଣ ଦେଇ ସହଦେବ ଶିରେ
ଆପେ ଦୁର୍ଯ୍ୟୋଧନ କଲେ ଅଭିଷେକ ନୀରେ ।

ମୁକୁଟ କୁଣ୍ଡଳ ଦେଲେ କୁଷ୍ଣକୁ ହିଁ ହାର
ହସ୍ତରେ କଙ୍କଣ ପୁଣି ପୟରେ ନୂପୁର ।
ଚତୁଃସମ ସୁଗନ୍ଧିକା ଗନ୍ଧପୁଷ୍ପ ଦେଇ
ଅନେକ ସମ୍ଭାର ତାଙ୍କୁ ରାଜ୍ୟରେ ଚଳାଇ ।
ଅନେକ ଯେ ପୁରୁଷାର୍ଥ କଲାକ ନୃପତି
କୋଟିଏକ ଅଶ୍ୱ ଦେଲେ କୋଟିଏକ ହସ୍ତୀ ।
ସହଦେବ ରଥେ ପ୍ରାଣିଦ୍ରବ୍ୟ ହିଁ ପୂରାଇ
ଯୁଧିଷ୍ଠିଙ୍କୁ ପୂଜନ୍ତି ଯେ ବହୁତ ବିନୟୀ ।
ମାର୍ଜନା ମାଜଣା ଶେଷକରି କୁରୁପତି
ଅମୃତ ଭୋଜନ କରି ବଞ୍ଚିଲେ ଯେ ରାତି ।
ରାଜ୍ୟରେ ଉତ୍ସବ ପ୍ରଜାମାନଙ୍କ ହରଷ
ହସ୍ତିନାରେ ପାଣ୍ଡବ ଯେ ରହି ଦିନାଦଶ ।
ଧୃତରାଷ୍ଟ୍ରଙ୍କ ଚରଣେ ବହୁତ ବିନୟୀ
ବାରୁଣାବନ୍ତକୁ ବିଜେ କଲେ ପାଞ୍ଚଭାଇ ।
ବାଜଇ ଯେ ବୀରତୁର ଟମକ ମହୁରୀ
ଆଲମ୍ୱ ଯେ ପାଟଛତ୍ର ଅଛନ୍ତି ଉଭାରି ।
ବାଟ ବଳାଇ ଦେବାକୁ ଆସେ କୁରୁସାଇଁ
ଅନେକ ଉତ୍ସବ ତହିଁ କଳନା ନ ଯାଇ ।
ବାରୁଣାବନ୍ତରେ ଯାଇଁ ହୋଇଲେ ପ୍ରବେଶ
ରଜନୀ ବଞ୍ଚନ୍ତି କରି କଉତୁକ ରସ ।
ପ୍ରଭାତେ ପୁଣି ହସ୍ତିନା ଆସେ କୁରୁସାଇଁ
ଧୃତରାଷ୍ଟ୍ରଙ୍କ ଅଗ୍ରତେ ସମସ୍ତ କହଇ ।
ଦୁର୍ଯ୍ୟୋଧନ ପାଣ୍ଡବଙ୍କ ଅନେକ ବିଶ୍ୱାସ
ପାଣ୍ଡବେ ଆସନ୍ତି ନିତ୍ୟ ଦୁର୍ଯ୍ୟୋଧନ ପାଶ ।
ପାଣ୍ଡବ ଶ୍ରୀକୃଷ୍ଣପାଦେ କରିଥାନ୍ତି ଧ୍ୟାନ
ଜୟ ଜୟ ଜଗନ୍ନାଥ ଜୟ ଭଗବାନ ।
ଶ୍ରୀକୃଷ୍ଣଙ୍କ ଚରଣରେ ମନକୁ ନିବେଶି
ଶ୍ରୀଶାରଳା ଦାସ ଜନ୍ମେ ଜନ୍ମେ ତା ଅଭ୍ୟାସି ।

—୦—

## କୁନ୍ତୀ ଓ ଗାନ୍ଧାରୀର ବିବାଦ

ବନ୍ଦଇ ଶ୍ରୀଗଣମୁଖ ଦେବ ଗଣପତି
ସୁର ସିଦ୍ଧଗଣେ ଯାର ଚରଣେ ସେବନ୍ତି ।
ଜୟ ଜୟ ଲମ୍ୱୋଦର ବିକ୍ରମ ମୂରତି
ପରଶୁଧର ସୁନ୍ଦର ତୁହି ଗଣପତି ।
ସଦା ବିଘ୍ନ ନାଶକରୁ ବିଘ୍ନରାଜ ତୁଟି
ଆପଦଖଣ୍ଡନ ନାଥ ହରୁ ତୁ ଦୁର୍ଗତି ।
ଲଲାଟେ ମୁକୁଟ ତୋର ଶିରରେ ସିଂତାଶୁ
ଅନଳ ତେଜ ହରଣ ଶ୍ରୀକରେ ପରଶୁ ।
ଅମୃତାକ୍ଷ ନୟନ ଯେ ଦେବାଙ୍ଗ ତୋ ମୂର୍ତ୍ତି
ଇହପର ଲୋକେ ନାଥ ଦେଉ ସଦଗତି ।
ସେ ଦେବ ଅଭୟପାଦେ ମୁଁ ହୀନ ଆରାଧି
ଯାର ପ୍ରସନ୍ନେ ପ୍ରସାର ହୁଅଇ ଯେ ବୁଦ୍ଧି ।
ଗିରିଜା ଦେବୀ ନନ୍ଦନ ଚରଣ ପଙ୍କଜେ
ଯାର ବର୍ଣ୍ଣନା କରନ୍ତି ସ୍ୱୟଂ ଦେବରାଜେ ।
ଶ୍ରୀବିଘ୍ନ ରାଜ ଦେବଙ୍କ ଚରଣ ପୟରେ
ଶାରଳା ଦାସ ମୁଁ ହୀନଭାବେ ନିରନ୍ତରେ ।
ନମସ୍ତେ କାତ୍ୟାୟନୀ ଗୋ ଜଗତର ଧାତ୍ରୀ
ତବ ଚରଣ ସରୋଜେ ସଦା ମୋ ଭକତି ।
ପରମ ସାଧବୀ ମାଗୋ ଶଇଳ ନନ୍ଦିନୀ
ଦନୁଜବଳ ଧ୍ୱଂସିନୀ ପୃଥ୍ୱୀ ଉଦ୍ଧାରିଣୀ ।
କୃପାଜଳ ମହାରଷି କୋଳେ ତୁହି ଜାତ
ନମସ୍ତେ ଭବାନୀ ମାଗୋ ଜଗଜ୍ଜନ ମାତ ।
ପିତାର ଆଜ୍ଞାରେ ତୋର ମର୍ତ୍ତ୍ୟପୁରେ ସ୍ଥିତି
ଝଙ୍କଡ଼ପୁରେ ଶାରଳା ବିଜେ ସିଦ୍ଧମୂର୍ତ୍ତି ।
ତୋହର ଚରଣ ମାଗୋ ନିତ୍ୟ ମୁହିଁ ଭାବି
ମଧ୍ୟପର୍ବ କହନ୍ତି ଯେ ଶୂଦ୍ରମୁନି କବି ।
ମୁନିପୁଚ୍ଛା କଲେ ତୁହୋ ଶୁଣ ତପୋବନ୍ତ
ଏଥୁ ଅନନ୍ତରେ ପୁଣ କିସ ଯେ ଚରିତ ।
ବଦନ୍ତି ଅଗସ୍ତି ଶୁଣ ମନୁ ନରପତି
କୁନ୍ତୀ ଗାନ୍ଧାରୀ ଦୁହିଁଙ୍କ କଳିର ଉକତି ।
ମନୁ ପୁଚ୍ଛାକଲେ ପୁଣି ଅଗସ୍ତି ଅଗ୍ରତେ
କିଅର୍ଥେ ସେ କଳି କଲେ କହ ତପୋବନ୍ତେ ।
ବୋଲନ୍ତି ଯେ ମୁନିବର ଶୁଣ ନରପତି
ମହାଭାରତ ଶୁଣିଣ ଖଣ୍ଡ ତୁ ଦୁର୍ଗତି ।
ଏଥୁଅନନ୍ତରେ ଭାଗୀରଥି ନାମେ ଗଙ୍ଗା
ନୀଳ ଉତ୍ପଳ ଗିରିକୁ ଅଟେ ସେହି ଲଗା ।
ବିରାଜେଶ୍ୱର ନାମରେ ବିଜେ ଦେବ କାଶୀ
ପ୍ରତ୍ୟକ୍ଷରେ ଅଟଇ ସେ ଜାଣ ବାରାଣସୀ ।
ବାଳବୃଦ୍ଧ ତରୁଣ ସେ ସ୍ତ୍ରୀରୂପ ବହନ୍ତି
ଯାଚିଣ ବର ଦିଅନ୍ତି ଯେ ଯାହା ବାଞ୍ଛନ୍ତି ।
ଇନ୍ଦ୍ରପ୍ରସ୍ଥ ରାଜ୍ୟ ତେଜି ଆସି ବନେ କୁନ୍ତୀ
ସେହି ଈଶ୍ୱରଙ୍କୁ ପୂଜା କରନ୍ତି ଯେ ନିତି ।
ପ୍ରହରେକ ରାତ୍ର ଥାଉ ପୂଜାବିଧି ସାରି
ବିମାନେ ଆରୋହୀ ଦେବୀ ଆସନ୍ତି ଯେ ଫେରି ।
କନକର ଚମ୍ପାଫୁଲ ସହସ୍ରେକ ଦେଇ
ନିତିକୁନ୍ତୀ ପୂଜା ସାରି ଲେଉଟି ଆସଇ ।
ଗାନ୍ଧାରୀ ସ୍ନାହାନ ସାରି ଯାଇଁ ପ୍ରାତଃକାଳେ
ପୂଜନ୍ତି ବିରାଜେଶ୍ୱର ସେହୁ ଅବଲୀଳେ ।
ନିତ୍ୟ ଆସନ୍ତି ଗାନ୍ଧାରୀ ଶିବ ପୂଜିବାରେ
ପୂଜା ସାରିଣ ଯାଆନ୍ତ ଅଢ଼ାଇ ପ୍ରହରେ ।

କୁନ୍ତୀଙ୍କର ପୂଜା ଯେ ଗାନ୍ଧାରୀ ନ ଜାଣନ୍ତି
ଗାନ୍ଧାରୀର ପୂଜା ନ ଜାଣଇ ଦେବୀକୁନ୍ତୀ ।
ରାଜଭୋଗେ ଗରିଷ୍ଠ ଯେ ଦୁର୍ଯ୍ୟୋଧନ ମାତା
ଲିଙ୍ଗପୂଜା ଭଗ୍ନ ଦେଖି ହୁନ୍ତି ପ୍ରଜ୍ୱଳିତା ।
କୋପରେ ବୋଲନ୍ତି ଦେବୀ ପରିଜନ ଆଗେ
ମୋଠାରୁ ଗରିଷ୍ଠ କେହୁ ଜମ୍ବୁଦ୍ୱୀପ ଭୋଗେ ।
ଶୁକଳ ବରନ ଚମ୍ପା ଶତଗୋଟି ଘେନି
ପୂଜା ମୁଁ କରଇ ନିତ୍ୟେ ସୁଲଭ କାମିନୀ ।
ପଦରଜ ପରିଯନ୍ତେ ନିଷ୍ଠାପରେ ଜାଗି
ଖଟିଣ ମୁଁ ମନାଇବି ସଦାଶିବ ଯୋଗୀ ।
ଯାହା ମୁଁ ମନେ ପାଞ୍ଚଇ ସିଦ୍ଧ ହେବାପାଇଁ
ଜମ୍ବୁ ଦ୍ୱୀପରେ ମୋ ପୁତ୍ର ଚକ୍ରବର୍ତ୍ତୀ ହୋଇ ।
ଅନେକ ସମ୍ପଦ ମୋତେ ଦେଇଛନ୍ତି କାଶୀ
ତାହାଙ୍କ ପାଦତଳେ ମୁଁ ସଦାକାଳେ ଦାସୀ ।
ବହୁତ ସୁଦୟା ମୋତେ କରନ୍ତି କପାଳୀ
ସେବା କରୁଥାଏ ମୁହିଁ ଶରୀର ପଖାଳି ।
ମୋହର ଭକତି ଭାଙ୍ଗି କେ କରଇ ପୂଜା
ଲିଙ୍ଗପୂଜା କଲେ ହେବ ସପ୍ତଦ୍ୱୀପେ ରାଜା ।
କେସନକ ପୂଜା ଅବା ଭାଙ୍ଗିବି ଏହାର
ଏମନ୍ତ ବିଚାରି ଗଲେ ହସ୍ତିନା ନଗର ।
ବିସ୍ମୟ ହୋଇଣ ପୁରେ ବିଜୟ ଗାନ୍ଧାରୀ
ଆଜ୍ଞାଦେଲେ ଦୁର୍ଯ୍ୟୋଧନେ ପୁଣି ଡାକି କରି ।
ବିରାଜେଶ୍ୱର ଲିଙ୍ଗକୁ ପୂଜଇ ମୁଁ ନିତି
ସେ ଲିଙ୍ଗ ପୂଜିବେ ସପ୍ତଦ୍ୱୀପ ନରପତି ।
ସସ୍ରେ ଚମ୍ପକ ଆବର ବିବିଧ କୁସୁମ
ନିତି ହିଁ ମୁଁ ଉପହାର ଦିଏ ଅନୁପମ ।
ମୋର ପୁଷ୍ପ କେ ପକାଇ ଦିଏ ପ୍ରତିଦିନ
କନକ ଚମ୍ପାରେ ପୂଜି ଆସେ ତୋଷମନ ।
ତେଣୁଟି ବରସ ବାବୁ ମୋର ପଞ୍ଚମତି
ନିଶ୍ଚଳ ପୂଜାକୁ ଘେନନ୍ତି ସେ ପଶୁପତି ।
ତୁହି ମୋର ପୁତ୍ର ଆରେ ଏକାଙ୍ଗ ରାଜନ
ତୋହର ପ୍ରସାଦେ ମୋର ସର୍ବ ଶୁଭମାନ ।
କାଶୀପତି ପ୍ରସାଦେ ମୁଁ ମାଗିବି ସଦ୍‌ଗତି
ସେ ଈଶ୍ୱର ପରସନ୍ନେ ହେବୁ ଚକ୍ରବର୍ତ୍ତୀ ।
କନକ ଛମ୍ପା ବୋଲି ସେ ଅଟଇ କେମନ୍ତ
ଏହା ବିଚାରିଣ ମୋତେ କହିବୁରେ ପୁତ୍ର ।
ଦୁର୍ଯ୍ୟୋଧନ ବୋଲେ ମାଗୋ ଶୁଣ ମୋ ବଚନ
ପାଣ୍ଡବଙ୍କ ମାତା ତାକୁ ପୂଜେ ପ୍ରତିଦିନ ।
ରାତ୍ର ପ୍ରହରେକ ଥାଉଁ ପଦେ ଦେବୀକୁନ୍ତୀ
କନକର ଚମ୍ପା ସହସ୍ରେକ ଘେନି ନିତି ।
ତାହାଙ୍କ ପୂଜାରେ କିସ ଅଭିମାନ ତୋର
ଅଭିମାନ ଯୋଗୁଁ ନିଶ୍ଚେ ଛାଡ଼ିବି ଶରୀର ।
ମାତାଙ୍କ ଅଗ୍ରତେ କହେ ମାନଚକ୍ରବର୍ତ୍ତୀ
ସୁବର୍ଣ୍ଣ ଚମ୍ପକ ଶତ ଚଢ଼ାଅ ତୁ ନିତି ।
ଅଳପ ଦିନରେ ରାଜ୍ୟ ସେ ପାଣ୍ଡବଙ୍କର
କିସ ଅବା ଅଛି ତାଙ୍କ କଣୟ ଭଣ୍ଡାର ।
ନିତିକାହୁଁ ସ୍ୱର୍ଣ୍ଣଚମ୍ପା ପାଇବେ ସେ କୁନ୍ତୀ
ବଳ କ୍ଷୀଣ କରେ ସିନା ଈଶ୍ୱର ଭକତି ।
ଦୁର୍ଯ୍ୟୋଧନ ବାକ୍ୟେ ମାତା ହେଲେ ତୋଷ ମନ
ସୁବର୍ଣ୍ଣ ଚମ୍ପକ ନେଇ ଗଲେ ଆରଦିନ ।
ଆରଦିନ ପୂଜା କରି ଆସୁ ଦେବୀକୁନ୍ତୀ
ସୁବର୍ଣ୍ଣ ଚମ୍ପାକୁ ଦେଖି ବିସ୍ମୟ ସେ ଅତି ।
ପୂଜା କରି ଦେବୀ ଯହୁଁ ବାହୁଡ଼ିଣ ଗଲେ
ଆରଦିନ ଚମ୍ପା ଘେନି କୁନ୍ତୀ ଯେ ଅଇଲେ ।
ଦୁଇଦିନ ପୂଜାକୁ ଯେ ଯେତେ ଚମ୍ପାଲାଗି
ପ୍ରଭାତୁ ପୂଜା କରନ୍ତି କୁନ୍ତୀ ବେଗାବେଗି ।
ଏମନ୍ତ ସମୟେ ଆସି ଦୁର୍ଯ୍ୟୋଧନ ମାତ
ସେ ବିରାଜେଶ୍ୱର ପାଶେ ମିଳିଲେ ତୁରିତ ।
କୁନ୍ତୀକୁ ଦେଖି ଗାନ୍ଧାରୀ ହେଲେ କୋପଚିତ୍ତ
ମନ ବିରସ କଲା ସେ ଦୁର୍ଯ୍ୟୋଧନ ମାତ ।
ରାଗେ ଗାନ୍ଧାରୀ ଯେ ତାକୁ ବୋଇଲେ ବଚନ
ମୁଁ ସେ ଲିଙ୍ଗ ପୂଜିବାକୁ ଅଟଇ ଭାଜନ ।
ତୁ ଯେ ପୂଜାଭାଙ୍ଗୁ ମୋର କିପରି ଜଗତ
ଏତେ ବୋଲି କୋପେ ଯେ ବୋଲେ ରାଜମାତ ।
ଅନେକ ଝିଙ୍ଗାସ କରି ଗାନ୍ଧାରୀ କହିଲେ
ଅପମାନ ପାଇ କୁନ୍ତୀ ଦୁଃଖେ ବାହୁଡ଼ିଲେ ।
କୁନ୍ତି ଯେ ବୋଇଲେ ମୁହିଁ ପୂଜେ ନିତିନିତି
ତୁମ୍ଭେ କିମ୍ପାଇ କହିଲ ଏବେ ଗୋ ଅନୀତି ।
ଗାନ୍ଧାରୀ ବୋଇଲେ ନିତ୍ୟ ହୁଏ ମୋର ପୂଜା
ଚମ୍ପା ଲାଗିକରି ମୁହିଁ ପୂଜେ ଦେବରାଜା ।
ତୋହର ଅନୀତି ହୋଇଲା ଯେ ଅବିଚାର
ତୁ ସେ ପୂଜା ନିତିନିତି ଭାଙ୍ଗୁ ଗୋ ମୋହର ।
ଏସନକ ଉଚ୍ଚବାଚ ହେଉ ବେନିବାମା
ଦୁହିଁଙ୍କ ନିକଟେ ବିଜେ ଦେବ ମହାତମା ।
ମଧ୍ୟରେ ଯେ ଉଭା ହୋଇ ବୋଲେ ଦେବହର
ତୁମ୍ଭେ ବେନିବାମା ଶୁଣ ମୋହର ଉତ୍ତର ।
କି ନିମନ୍ତେ ତୁମ୍ଭେ ଦୁହେଁ ହୁଅ ଅନ୍ୟୋଅନି
କୁରୁପାଣ୍ଡବଙ୍କ ତୁମ୍ଭେ ପରା ଯେ ଜନନୀ ।
ବୋଲନ୍ତି ଗାନ୍ଧାରୀ ତୁମ୍ଭେ ଶୁଣ ଆହେ ଦ୍ୱିଜ
ନିତିପ୍ରତି ସେବଇଁ ମୁଁ ଏହି ଦେବରାଜ ।
ଆଜି ଆସି ଏ ମୋହର ପୂଜାକୁ ଭାଙ୍ଗିଲା
କି ନିମନ୍ତେ ମୋର ସଙ୍ଗେ କଳି ଭିଆଇଲା ।

ବୋଲନ୍ତି ଧୂର୍ଜଟି ଦେବ ନ କର ଯେ ଗୋଳ
ଏବେ ତୁମ୍ଭେ ମୋର ବୋଲେ ବେଗେ ଏଥୁ ଚଳ ।
କାଲି ରାତ୍ର ପ୍ରଭାତରେ ସସ୍ର ଚମ୍ପା ଘେନି
ଯେ ପୂଜି ପାରଇ ସେହି ପ୍ରଭାତ ରଜନୀ ।
ତାହାର ଏ ଲିଙ୍ଗ କେହି ପୂଜିବ ଯୁକତେ
ଯାଅ ଯାଅ ଦୁହେଁ ନୁହଁ ବିମୁଖ ଯେ ଚିତ୍ତେ ।
ଗାନ୍ଧାରୀ ବୋଲେ ଏଡ଼େ କେ ହୋଇବ ସମତ
କାଲି ଆମ୍ଭେ ଏହି ପୂଜା କରିବୁ ଯୁକତ ।
ସହସ୍ରେ ଚମ୍ପା ଘେନି ଯେ ଆଗେ ପୂଜା କରି
ଯୁକତେ ନିଶ୍ଚୟ ଲିଙ୍ଗ ହୋଇବ ତାହାରି ।
ଏଥକୁ ଭାଜନ ଅବା ହୋଇବ କେମନ୍ତେ
ଏତେ ବୋଲି କୋପେ କଲେ ଦୁର୍ଯ୍ୟୋଧନ ମାତେ ।
ଗାନ୍ଧାରୀ ବଚେନ କୁଇନ୍ତା ଏ ବାହୁଡ଼ିଲେ
ନିଜ ଘରେ ଯାଇ ଉପବାସେ ସେ ଶୋଇଲେ ।
ପଞ୍ଚପାଣ୍ଡବେ ନମନ୍ତି କୁନ୍ତୀଙ୍କ ଚରଣ
ପ୍ରଣାମ କରନ୍ତି ନିତ୍ୟକର୍ମ ଯେ ସାରିଣ ।
ଯୁଧିଷ୍ଠିର ପଚାରନ୍ତି କିମ୍ପାଇ ବିମନ
କିଛି ଜଣାପଡୁନାହିଁ ଏଥିର କାରଣ ।
ତୁମ୍ଭର ମନରେ ମାଗୋ ବିସ୍ମୟ କିମର୍ଥେ
ଏ କି ଅସମ୍ଭବ କଥା କହିବାନା ମୋତେ ।
କୁନ୍ତୀ ବୋଇଲେ ବାବୁରେ ଶୁଣ ପଞ୍ଚମନ
ଶିବପୂଜି ପାଇଲି ମୁଁ ବହୁ ଅପମାନ ।
ମୋର ପୂଜା ପୁଷ୍ପକୁ ଗାନ୍ଧାରୀ ପକାଇଲେ
ସୁବର୍ଣ୍ଣର ଶତଚମ୍ପା ଘେନି ପୂଜାକଲେ ।
ମୋତେ କି ଶକତି କରିବାକୁ ସେହିକଥା
ତେଣୁ ହରି ପାଇଲି ମୁଁ ଲଜ୍ଜା ଅପ୍ରମିତା ।
ଗାନ୍ଧାରୀ ଭାରିଯା କଲେ କଥା କୁତୁହଳେ
ସହସ୍ରେ ସୁବର୍ଣ୍ଣ ଚମ୍ପାଦେବା ଯେ ପ୍ରାତଃରେ ।
ତାହାର ସେ ସୁଫଳ ହୋଇବ ପୂଜା ଧ୍ୟାନ
ଏସନ ପ୍ରତିଜ୍ଞା କରେ ଗାନ୍ଧାରୀ ଯେ ପୁଣ ।
ମାତାଙ୍କ ବଚନ ଶୁଣି ବୋଇଲେ ଅର୍ଜ୍ଜୁନ
ଏ ଛାର କଥାକୁ ଯେ ବିସ୍ମୟ ତୁହି ମନ ।
କୁନ୍ତୀ ବୋଲେ ବାବୁ ଗାନ୍ଧାରୀ ଯେ କୋପ କଲା
ସହସ୍ରେ ସୁବର୍ଣ୍ଣ ଚମ୍ପା ପୁତ୍ରକୁ ମାଗିଲା ।
ଦୁହେଁ ପ୍ରତିଜ୍ଞା କଲୁ ଯେ କରିବାକୁ ପୂଜା
ଯୁକତେ ତାହାର ସେହି ହେବେ ଦେବରାଜ ।
ବାବୁ ଶତ ପୁତ୍ରବତୀ ଅଟଇ ଗାନ୍ଧାରୀ
ପ୍ରତିପୁତ୍ର ଦଶପୁଷ୍ପ ଦେଲେ ସସ୍ରେ ପୂରି ।
ଆମ୍ଭେ ଦୁଇଜଣ ଗାଢ଼ ପ୍ରତିଜ୍ଞା ଯେ କଲୁ
ଉଛବାଛ ହେଉ ହେଉ କଳି ଆରମ୍ଭିଲୁ ।
ସସ୍ରେ ଚମ୍ପା ଦେଇ ଆଗେ ଯେ କରିବ ପୂଜା
ତେବେ ତାହାର ନିଶ୍ଚୟ ହେବେ ଦେବରାଜା ।
ରଜନୀ ପ୍ରଭାତୁଁ ପୂଜା ଯେ କରିବ ଆଗେ
ମୁଁ କିସ କରିବି ବୋଲି ଶୋଇଲି ବିରାଗେ ।
ତୁମ୍ଭେ ପୁତ୍ର ଶୁରବନ୍ତ କହିବି ମୁଁ କିସ
ଅବଶ୍ୟ ଗାନ୍ଧାରୀ କାଲି ନେବ ପୂଜା ଯଶ ।
ଶତପୁତ୍ର ଜାତ କଲା ସେହି ମହାବଳୀ
ସର୍ବେ ପାଞ୍ଚଗୋଟି ପୁତ୍ର ମୁଁ ଉପୁଜାଇଲି ।
କାହୁଁ ଏତେ ଚମ୍ପା ଏହୁ ଦେବେ ମୁଁ ଭାଳଇ
ଏତେକ କହିଣ ଦେବୀ କ୍ରନ୍ଦନ କରଇ ।
ମାତାଙ୍କ ବିକଳ ଦେଖି ପାର୍ଥ ମନେ ଭାଳି
ଜନନୀଙ୍କ ବିକଳ ତ ନୁହଇ ସମ୍ଭାଳି ।
ଅର୍ଜ୍ଜୁନ ବୋଲେ ମଣୋହି କର ତୁ ଗୋ ମାଏ
ତୁମ୍ଭ ବାଞ୍ଛା ପୂରଣ ମୁଁ କରିବି ନିଶ୍ଚୟେ ।
କାଲି ପ୍ରଭାତେ ପୂଜାକୁ ଯାଅ ଆଗ ହୋଇ
ସୁବର୍ଣ୍ଣ ପୁଷ୍ପେ ଦେଉଳ ଦେବି ମୁଁ ଘୋଡ଼ାଇ ।
ଅର୍ଜ୍ଜୁନର ଏ ବଚନ ଶୁଣି ଦେବୀ କୁନ୍ତୀ
ସ୍ନାନ ଷଟକର୍ମ କରି ମଣୋହି କରନ୍ତି ।
ରବି ଅସ୍ତେ ପଲ୍ୟଙ୍କରେ ଯାଇ ସେ ଶୁଅନ୍ତେ
ମନ ଉଦେବେଗେ ନିଦ୍ରା ନ ମାଡ଼ଇ ନେତ୍ରେ ।
ପ୍ରହରେକ ରାତ୍ର ଥାଉଁ ନିତ୍ୟକର୍ମ ସାରି
ଶିବ ପୂଜିବାକୁ ପାଣ୍ଡବଙ୍କ ଗର୍ଭଧାରୀ ।
ବିମାନରୁ ଉତୁରି ସେ ପାଣ୍ଡବଙ୍କ ମାତ
ଭକତିରେ ପୂଜା କରନ୍ତି ସେ ବିଶ୍ୱନାଥ ।
ଲୟ କରିଣ ଅର୍ଜ୍ଜୁନ ପୂଜା ବେଳ ଜାଣି
କରେ ଧରି ଗାଣ୍ଡୀବକୁ ଧନୁଗୁଣ ଟାଣି ।
ମନଭେଦୀ ନାରାଚକୁ ପୂରାଇଣ ପାର୍ଥ
ବୋଇଲା ବାସବ ଆଗେ ପଡ଼ିବୁ ତୁରିତ ।
କତୁରି ଶର ଆବର ବିନ୍ଧିଲାକ ପୁଣି
ଦେଉଳେ ଅଏଁଳା ଶିରୀ ପୁରାଇଣ ଆଣି ।
ପବନ ଶରକୁ ଆଡ଼ି କରି ଦେଲା ଥୋଇ
ମନଭେଦୀ ପଡ଼ିଲା ସେ ଇନ୍ଦ୍ର ଆଗେ ଯାଇ ।
ଅର୍ଜ୍ଜୁନର ସଙ୍କେତକୁ ଜାଣି ସୁରନାଥ
କୁବେରକୁ ଡାକି ଆଜ୍ଞା ଦେଲେକ ତୁରିତ ।
ଆହେ କୁବେର ଆମ୍ଭର ବୋଲ ତୁହି କର
ସ୍ୱର୍ଣ୍ଣ ଚମ୍ପା ବୃଷ୍ଟି କର ଶିବଙ୍କ ମନ୍ଦିର ।
ଇନ୍ଦ୍ରଙ୍କ ଆଜ୍ଞାରେ ଦିଗପାଳ ଯେ କୁବେର
ତତକ୍ଷଣେ ବିଜେ କଲେ ଗଗନ ମଣ୍ଡଳ ।
କୁନ୍ତୀ ଦେବୀ ଶିବପୂଜା କରିବାର ବେଳେ
ସ୍ୱର୍ଣ୍ଣ ଚମ୍ପା ବୃଷ୍ଟି କଲେ ସେହି ଦିଗପାଳ ।

ପାଚେରୀ ଦେଉଳ ସବୁ ପୂର୍ଣ୍ଣ ହୋଇଗଲା
କୁନ୍ତୀଙ୍କର ମନୋବାଞ୍ଛା ସମ୍ପୂର୍ଣ୍ଣ ହୋଇଲା ।
ସନ୍ତୋଷରେ ବର ଦେଲେ ଅନ୍ଧକ ଅଇରି
ପଞ୍ଚନଗ୍ରେ ତୋର ପୁତ୍ରହ୍ୱନ୍ତୁ ଦଣ୍ଡଧାରୀ ।
ନାମ ଆମ୍ଭର ଅଟଇ ଯେ ବିରାଜେଶ୍ୱର
ଆଜ କୁନ୍ତୀଶ୍ୱର ବୋଲି ବୋଲିବେ ଯେ ନର ।
ବାଞ୍ଛା ପୂରାଇଣ ଯେ କୁନ୍ତୀପୁରକୁ ଆସିଲେ
ପଛେ ଗାନ୍ଧାରୀ ଯାଇଣ ଦେଉଳେ ପଶିଲେ ।
ସୁବର୍ଣ୍ଣ ଚମ୍ପାରେ ଦେଉଳକୁ ବାଟ ନାହିଁ
ବାହୁଡ଼ିଲେ ଗାନ୍ଧାରୀ ଯେ ବହୁ ଲଜ୍ଜା ପାଇ ।
ତ୍ରୈଲୋକ୍ୟରେ ପାଣ୍ଡବଙ୍କ ମହିମା ଏସନ
ଜଗତେ ବିଦିତ ହେଲେ ପଣ୍ଡୁର ନନ୍ଦନ ।
ସୁପୁତ୍ର ଉପୁଜାଇଣ କୁନ୍ତୀ ସାଧ୍ୱୀ ହେଲେ
ଲଜ୍ଜା ପାଇଣ ଗାନ୍ଧାରୀ ନିଜ ପୁରେ ଗଲେ ।
କୁନ୍ତୀ ପଞ୍ଚପୁତ୍ର କଲେ ଜଗତ ଉଦ୍ଧାର
ଗାନ୍ଧାରୀର ଶତପୁତ୍ର ଥାଇ ଲଜ୍ଜାଭର ।
ତୁ ଯେଣୁଟି ପୁଚ୍ଛାକଲୁ ମନୁ ମହାରାଜା
ସନ୍ଥଜନଙ୍କୁ ସମସ୍ତେ କରନ୍ତି ଯେ ପୂଜା ।
ତହୁଁ ଏସନ ପରିଯା ସାରି ବେନି ନାରୀ
ଜାଇନ୍ତାକୁ ଗଲେ କୁନ୍ତୀ ହସ୍ତିନା ଗାନ୍ଧାରୀ ।
ବଦନ୍ତି ଅଗସ୍ତି ମୁନି ଆଦି ବ୍ରହ୍ମବେତ୍ତା
ଶୁଦ୍ଧ ଚିତ୍ତରେ ଶୁଣନ୍ତି ବୈବସ୍ୱତ ଶ୍ରୋତା ।
ଶ୍ରୀ ମହାଭାରତ ଏହୁ ଅତି ଶବ୍ଦମାନ
ଶୁଣନ୍ତେ ପାନ ନାଶନ ବର୍ଦ୍ଧିତ ସନ୍ତାନ ।
ଶ୍ରୀଚଣ୍ଡୀ ଶାରଳା ଦେବୀ ଚରଣେ ଦୟିନୀ
ଶାରଳା ଦାସ କହଇ ପାଦେ ଲୟ ଘେନି ।

—o—

## ଚନ୍ଦ୍ରବତୀ ହରଣ

ବୋଇଲେକ ବୈବସ୍ୱତ ଶୁଣ ଅଗସ୍ତି ହେ
ଗୁପତ କଥାଏ ଅଛି ଫେଡ଼ିବା ସନ୍ଦେହେ ।
ଜମ୍ବୁଦ୍ୱୀପ ମଧ୍ୟେ ଛନ୍ତି ଲକ୍ଷେ ନୃପବର
ସମସ୍ତଙ୍କ ମୁଖ୍ୟ ମାନଗୋବିନ୍ଦ ନୃବର ।
ହସ୍ତିନା ନଗରେ ତାର ସିଂହଦ୍ୱାର ବାଙ୍କ
ବଡ଼ପଣେ ଯାର ନାମେ ପଡ଼ଇ ଚମକ ।
ଏଥିର ଚରିତ ମୁହିଁ କରୁଅଛି ପୁଚ୍ଛା
ଶୁଣିବାକୁ ଶରଧା ଏ ମୋର ବଡ଼ ଇଚ୍ଛା ।
ବଦନ୍ତି ଅଗସ୍ତି ଶୁଣ ହେ ମନୁ ପୁରୁଷ
ମହା ଗୁପତ କଥା ଏ କରିବି ପ୍ରକାଶ ।

ପଞ୍ଚ କଟକର ରାଜା ମାନଚକ୍ରବର୍ତ୍ତୀ
ତାହାର ଭାରିଯା ନାମ ଅଟେ ଭାନୁମତୀ ।
ତା ଗର୍ଭୁ ପୁତ୍ରେକ ଜାତ ହେଲା ସୁଲକ୍ଷଣ
ଜାଣି ପିତାମାତା ନାମ ଦେଲେ ତା ଲକ୍ଷ୍ମଣ ।
ଦୁହିତାଏ ଉପୁଜିଲା ସର୍ବ ସୁଲକ୍ଷଣା
ଜାଣି ପିତାମାତା ନାମ ରଖିଲେ ଲକ୍ଷଣା ।
ଚନ୍ଦ୍ରକିରଣକୁ ଜିଣି ଦିଶେ ତାର ଜ୍ୟୋତି
ତେଣୁ ଶ୍ରଦ୍ଧାରେ ତ ପିତା ଡାକେ ଚନ୍ଦ୍ରାବତୀ ।
ତ୍ରୈଲୋକ୍ୟ ମଧ୍ୟରେ ସେହି ଅଟେ କ୍ଷତ୍ରିବର
ମାନେ ମାନଗୋବିନ୍ଦଟି ବୀରଧୁ ଯାହାର ।
ଭରସି ରାଜାଏ ତାକୁ କନ୍ୟା ନ ମାଗନ୍ତି
ହୃଦୟ ମଧ୍ୟରେ ଥାଇ ତାହାଙ୍କର ଭୀତି ।
ଭାନୁମତୀ ବୋଇଲେ ହୋ ଶୁଣ ନୃପବର
ବିଭାକୁ ବଳାଇଲାଣି କନ୍ୟା ଯେ ଆମ୍ଭର ।
ଆହେ ନୃପବର ଏବେ କର ସ୍ୱୟମ୍ବର
ସମସ୍ତ ଦେଶରୁ ବରି ଆଣ ନୃପବର ।
କନ୍ୟାର ହସ୍ତରେ ନୀଳା ରତ୍ନମାଳୀ
ଇଚ୍ଛାରେ ବରିବ ସେହି ମନେ ମନେ ଭାଳି ।
ନିର୍ମଳ ବଚନ ଗୋଟି ରୁଚିଲା ମନକୁ
ଭାଳଇ ରାଜା ରାଜାଙ୍କ ଘେନିଣ ମନ୍ତ୍ରୀଙ୍କୁ ।
ସ୍ୱୟମ୍ବରର ବିଧାନ କର ବେଗ କରି
ନୃପତିମାନଙ୍କୁ ବେଗେ ଆଣିବାକ ବରି ।
ରାଜାର ଆଜ୍ଞାରେ ଚାବି ଭଣ୍ଡାରରୁ ଫିଟି
ଭୀଷ୍ମ ଦ୍ରୋଣ ଘେନି ବସେ ରାଜା ଧାର୍ତ୍ତରାଷ୍ଟ୍ରୀ ।
ଭୂରିଶ୍ରବା ସୋମଦତ୍ତ କୃପ କୃତବର୍ମା
ସଞ୍ଜୟ ବିଦୁର ଧୃତରାଷ୍ଟ୍ର ଅଶ୍ୱଥାମା ।
ସମସ୍ତେ ବସିଲେ ଆସି ଏକଇ ଆସନେ
ଚରଚାମାନ କରନ୍ତି ଯେ ବିଧିବିଧାନେ ।
ମାନଗୋବିନ୍ଦ ବୋଇଲୁ ଶୁଣିମା ସମସ୍ତେ
ସ୍ୱୟମ୍ବର ଭିଆଇବା କନ୍ୟାର ନିମନ୍ତେ ।
ସ୍ୱୟମ୍ବରେ ମିଳିବେକ ଲକ୍ଷେ ଦଣ୍ଡଧାରୀ
ମନର ଇଚ୍ଛାଏ ବରବରୁ ଏ କୁମାରୀ ।
ଭୀଷ୍ମ ଦ୍ରୋଣାଦି ବୋଇଲେ ବିଚାର ଉତ୍ତମ
ସ୍ୱୟମ୍ବର ଲାଗି ତେବେ କର ହେ ଉଦ୍ୟମ ।
ରାଜା ଆଜ୍ଞା ଦେଲେ ସର୍ବ ବନ୍ଧାଣ ମାନନ୍ତ
ଛାୟାମଣ୍ଡପ ଗୋଟିଏ ଭିଆଅ ତୁରିତ ।
ଛାୟାମଣ୍ଡପ ହୋଇଲା ବେନି ଯେ ଯୋଜନ
ଯମୁନା ନଦୀରେ କୂଳେ ରାଜାଙ୍କ ଆସ୍ଥାନ ।
ସଭାସ୍ଥଳୀ ଯେ ବାରୁଣବନ୍ତ ନଗ୍ରଯାଏ
ସ୍ୱୟମ୍ବରକୁ ଆସିବେ ସମସ୍ତ ରାଜାଏ ।

ଲାଗିଲେକ ବିଶ୍ୱକର୍ମା ଗଠନ ବିନ୍ଧାଣୀ
ସେ ସ୍ଥାନେ ମିଳିଲେ ଯାଇ କୁରୁକୁଳମଣି ।
ସୁବର୍ଣ୍ଣ ଯୋଗାଡ଼ମାନ ସମସ୍ତ ରାଜାଙ୍କୁ
ଶତେକ ଭାର ଚନ୍ଦନ ଲେପନ ହେବାକୁ ।
ଏସନକ ଆଜ୍ଞା ତହିଁ ଦେଲେ ଧାର୍ତ୍ତରାଷ୍ଟ୍ରୀ
ପରିଚ୍ଛାଙ୍କ ମୂଳେ ରାୟେ ଦେଲେ ଧନବାଣ୍ଟି ।
ଅଶ୍ୱଶାଳ ଗଜଶାଳ ନିର୍ମାଣ କରନ୍ତି
ଚନ୍ଦ୍ରଶାଳା ଭୁବନ ଯେ ସୁବର୍ଣ୍ଣ ଜଗତୀ ।
ଅଷ୍ଟରତନ କଳାସ ସୁବର୍ଣ୍ଣ ପତାକା
ଫରଫର ଉଡ଼ନ୍ତି ଯେ ଶୂନ୍ୟେ ଲାଗେ ଶିଖା ।
ହସ୍ତିନା ରାଜ୍ୟ ଅନେକ ସମାରୋହେ ପୂରି
ସେନାପତିମାନଙ୍କୁ ସେ ଆଜ୍ଞା ଅବଧାରୀ ।
ସଞ୍ଜୟକୁ ବୋଇଲେ ତୁ ଯିବୁ ପଶ୍ଚିମକୁ
ପଞ୍ଚାଶ ସହସ୍ର ରାଜାଗଣ ବରିବାକୁ ।
ତୋର ସଙ୍ଗେ ଥିବେ ଦଶସହସ୍ର ଯେ ରଥ
ସଙ୍ଗତେ ଥିବେ ବହୁତ ପୁଣି ଘୋଡ଼ାହାତୀ ।
ଚାରିଦିଗକୁ ପେଶିବେ ଦୂତଗୋଟି ଚାରି
ରାଜାମାନଙ୍କୁ ଆଣିବ ନିମନ୍ତ୍ରଣ କରି ।
ଅକ୍ଷତ ପାଦାର୍ଘ୍ୟ ଦେବ ଗୋଟିଏ ଗୋଟିଏ
ମଙ୍ଗଳ ବିଧାନେ ଯିବ ସବୁଦେଶ ରାୟେ ।
ଦୁଷ୍ଟ ରାଜାଙ୍କୁ ସନ୍ତୋଷି କରିବ ବରଣ
ସମସ୍ତ ରାଜାମାନଙ୍କୁ ନିମନ୍ତ୍ରିଣ ଆଣ ।
ଜୟଦ୍ରଥ ତୁଲେ ଗଲେ ସହସ୍ର ଯେ ହସ୍ତୀ
ସଞ୍ଜୟର ତୁଲେ ଦଶସହସ୍ର ଯେ ରଥୀ ।
ଦଶସହସ୍ର ଯୋଦ୍ଧା ଯେ ବିକର୍ଣ୍ଣର ତୁଲେ
ଅୟୁତେକ ଯୋଦ୍ଧାଗଲେ ସାମନ୍ତର ମୂଳେ ।
ନିମନ୍ତ୍ରଣ ପାଇ ଚାରିଦିଗେ ବିଜେ କରି
ରାଜାମନ ତୋଷକଥା କହିତ କେ ପାରି ।
ଯାହା ମଙ୍ଗଳ ଯେମନ୍ତେ ଉତ୍ସବ ବିଧାନେ
ତୁଳମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନେ ।
ବୃହସ୍ପତି ବାର ତହିଁ ରୋହିଣୀ ନକ୍ଷତ୍ରେ
ପ୍ରୀତିନାମ ଯୋଗ ଘେନି ଗମିଲେ ଯେ ଦୂତେ ।
ରାଜାଙ୍କର ନିମନ୍ତ୍ରଣ ଅର୍ଥେ ସେନାପତି
ଯାନ୍ତେ ମାନଗୋବିନ୍ଦର ଆନନ୍ଦିତ ମତି ।
ତୋଳନ୍ତି ଯେ ଶତ୍ରଶାଳାମାନ ଗଙ୍ଗାକୂଳେ
ମଙ୍ଗଳବିଧି କରନ୍ତି ଯେ ଯାହାର ମୂଳେ ।
କାଷ୍ଠ ପାଷାଣ ବିନ୍ଧାଣୀ ଗଲେ ଦଶଲକ୍ଷ
ଭୀଷ୍ମଙ୍କୁ ବୋଇଲେ ତୁମ୍ଭେ ଭଣ୍ଡାରକୁ ରଖ ।
ବିନ୍ଧାଣୀଙ୍କ ଅଧିପତି ଶଲ୍ୟ ମହାରଥି
ଦ୍ରୋଣ ହେଲେ ପାଞ୍ଚଲକ୍ଷ ସୂପକାର ପତି ।
ଶତ୍ରଶାଳା ଅଧିପତି ଭୂରିଶ୍ରବା ହୋଏ
ଏହାଙ୍କ ପାଶେ ଅଛନ୍ତି ପାରିଶଦ ଶଏ ।
ତୁଳମାସ ଶୁକ୍ଳପକ୍ଷ ଦ୍ୱିତୀୟାର ଦିନ
ନାରଦ ଯେ ବିଜେ କଲେ ହସ୍ତିନା ଭୁବନ ।
ଦଣ୍ଡ କମଣ୍ଡଳୁ ଛାଲ କଷା କଉପୁନି
କଳି ଧୋକଡ଼ି ମୁଣିକି ମୁନି କାଖେ ଘେନି ।
ସଭାରେ ସେ ବିଜେ କଲେ ଆସି ମହାଋଷି
ଦେଖି ଦୁର୍ଯ୍ୟୋଧନ ପୂଜା ବିଧିରେ ସନ୍ତୋଷି ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଭୂରିଶ୍ରବା ରଥୀ
ନାରଦଙ୍କ ପାଦତଳେ ପ୍ରଣାମ କରନ୍ତି ।
କନକର ଝରା ଘେନି ରାଜା ଦୁର୍ଯ୍ୟୋଧନ
ଚରଣ ପଖାଳଇ ସେ ଆନନ୍ଦିତ ମନ ।
ଚରଣ ପଖାଳି ପୁଣି ପାଦ୍ୟ ଅର୍ଘ୍ୟଦେଇ
ଶତପଳ ଚନ୍ଦନ ସେ ଶରୀରେ ଲେପଇ ।
ସୁବର୍ଣ୍ଣର ପଲଙ୍କରେ ନେତର ସୁପାତି
ତହିଁର ଉପରେ ବିଜେ କଲେ ବ୍ରହ୍ମପତି ।
ଦୁର୍ଯ୍ୟୋଧନ ବୋଇଲା ହୋ ଶୁଣ ତପଚାରୀ
ଅନେକ ଉତ୍ସବ ଆଜି ମୋ ହସ୍ତିନାପୁରୀ ।
ଯେ ଅବା ପାତକ ମୋର ପୂର୍ବଜନ୍ମେ ଥିଲା
ଏ ତୋ ପଦରଜ ଲାଗି ସବୁ ନାଶଗଲା ।
ନାରଦ ବୋଇଲେ କ୍ଷେମେ ଅଛୁକିନା ରାଜା
ସାବଧାନେ ଖଟନ୍ତି ନା ତୋତେ ଜନପ୍ରଜା ।
ତାହାଙ୍କୁ ରଖି ପାଳନ କରୁଛୁ ନୃପତି
ଯାଗ ଯଜ୍ଞ କରି ପ୍ରଜା ପାଳୁଛନା କ୍ଷିତି ।
ଋଷିମାନେ ନିର୍ଭୟରେ ଅଛନ୍ତିନା ବର୍ତ୍ତି
ମେଘମାନେ ଦିବ୍ୟବୃଷ୍ଟି କରନ୍ତି ନା ପୃଥ୍ୱୀ ।
ଦୋଷୀରେ ତୁ ସାବଧାନେ ଦେଉକିନା ରାୟ
ଯାଗ ଯଜ୍ଞ ଦେଉଥିଲେ ଖଣ୍ଡେ ଅପଚୟ ।
ପରରାଷ୍ଟ୍ର ଉତପାତ ନାହିଁ ନା ବଇରୀ
ଏ ମହୀମଣ୍ଡଳେ ତୋତେ କେହି ନାହିଁ ସରି ।
ମାନଗୋବିନ୍ଦ କହଇ ହେ ମୁନି ନାରଦେ
ସମସ୍ତ କୁଶଳ ମୋର ତୋହରି ପ୍ରସାଦେ ।
ନାରଦ ଯେ ପଚାରିଲେ ଏ କିସ ଉତ୍ସବ
ବଡ଼ ସମାରୋହେ ଏ ତ ବଡ଼ ଅସମ୍ଭବ ।
କେବଣ ଶତ୍ରୁକୁ ରଣେ ଜିଣିଲୁ ନୃପତି
ଯେଣୁ ଏ ଉତ୍ସବେ ତୋର ରାଜ୍ୟେ ସର୍ବେ ମାତି ।
କହଇ ସେ ମୁନିବର ଆଗେ ମହାରାୟେ
କରପତ୍ର ଯୋଡ଼ିକରି ବହୁତ ବିନୟେ ।
ମୋହର ଦୁହିତା ଏକ ହେଲା ଉତପତ୍ତି
ତାହାର ନାମ ହେ ମୁନି ଦେଲି ଚନ୍ଦ୍ରାବତୀ ।

କନ୍ୟା ଅପରୂପେ ମୁନି ନ ପାଇଲି ବର
ତେଣୁ ଏଥେ କରୁଅଛି ମୁଁ ଯେ ସ୍ୱୟମ୍ବର ।
ଲକ୍ଷେକ ନୃପତିଙ୍କୁ ମୁଁ ଆଣିବି ନିମନ୍ତ୍ରି
ଉତ୍ସବ ତୋହର ରାଜ୍ୟେ ହେବ ବ୍ରହ୍ମପତି ।
ନାରଦ ବୋଇଲେ ରାଜା ମନ୍ଦକୃତ୍ୟ କଲୁ
ଆମ୍ଭଙ୍କୁ ତୁ ନ ବିଚାରି ସଭା ଭିଆଇଲୁ ।
ତୋହର ଭୁବନେ କେହୁ ପଶିବ ଭରସି
କେହୁ ତୋତେ କନ୍ୟାଗୋଟି ମାଗିବ ବା ଆସି ।
ଏହିକ୍ଷଣି ଯେ ଦ୍ୱାରକାପୁରେ ଆମ୍ଭେ ଥିଲୁ
କୃଷ୍ଣଙ୍କ ପୁତ୍ର ଯେତେକ ସମସ୍ତ ଦେଖିଲୁ ।
ସମସ୍ତେ ଦିଶନ୍ତି ଯେହ୍ନେ ମକର କେତନ
ତହିଁରୁ ଗୋଟିକୁ କିମ୍ପା ନ କଲୁ ପ୍ରଦାନ ।
ତ୍ରିଲୋକ୍ୟର ଠାକୁର ଯେ ଅଟନ୍ତି ଶ୍ରୀବତ୍ସ
ଗତକାଳୁ ତୁମ୍ଭର ତ ବନ୍ଧୁପଣ ଅଛି ।
ଶୁଣି ଉପହାସ କଲା ସେ ମାନଗୋବିନ୍ଦ
ଏ ଭବିଷ୍ୟ କଥା କିମ୍ପା କୁହ ହେ ନାରଦ ।
ମୋହର କନିଷ୍ଠ ଭାଇ ଅଟଇ ଫାଲଗୁନି
ତାଙ୍କୁ ଦେଇଛନ୍ତି ରାମକୃଷ୍ଣ ଯେ ଭଗିନୀ ।
ଯେହୁ ମୋହର ଭାଇର ପାଦ ପଖାଳିଲେ
ଅନେକ ବିନୟ କରି ଭଗିନୀକି ଦେଲେ ।
ମୁଁ ଅଟଇ ନିଷ୍କଳଙ୍କ କୁଳ ସୋମ ଗୋତ୍ରୀ
ବିଶେଷ କ୍ୱଳଙ୍କି ରାମକୃଷ୍ଣ ଯେ ଅଟନ୍ତି ।
ସଚରାଚର ପୃଥ୍ୱୀର ମୁଁ ଅଟେ ଧାରଣ
ଗୋପାଳେ ଦୁହିତା ଦେଲେ ଲଜ୍ଜା ହେବ ଜାଣ ।
ବହୁତ ଲଜ୍ଜା ପାଇଲେ ତହୁଁ ମହାମୁନି
ଆସ୍ଥାନୁ ଉଠିଲେ ବେଗେ ବୀଣାହସ୍ତେ ଘେନି ।
ବିନୟ କରି କହିଲା ପୁଣି କୁରୁରାଜା
ବସ ବସ ମହାମୁନି ପାଇଲେ କି ଲଜ୍ଜା ।
ସ୍ୱୟମ୍ବର ଅଷ୍ଟାଦଶ ଦିବସ ପର୍ଯ୍ୟନ୍ତେ
ଅଛି ମହାତ୍ମା ଲୋଡ଼ିବି କାହିଁ ମୁହିଁ ତୋତେ ।
ବଶିଷ୍ଠ ଦୁର୍ବାସା ବ୍ୟାସ ବାଲ୍ମୀକି ଅଗସ୍ତି
ଏମାନଙ୍କୁ ମୁହିଁ ଏଥେ ଆଣିବି ନିମନ୍ତ୍ରି ।
ତୋହର ନ ଥିଲେ ମୋର ସ୍ୱୟମ୍ବର କାହିଁ
ସଂସାର ଜନଟି ମୋକ୍ଷ ହେବେ ତୋତେ ଚାହିଁ ।
ରାଜାମାନଙ୍କୁ ନିମନ୍ତ୍ରି ଗଲେ ମୋର ଦୂତେ
ସମସ୍ତେ ପ୍ରବେଶ ହେବେ ଚତୁର୍ମାସ୍ୟା ଅନ୍ତେ ।
କରିବନା ମୁନି ତୁମ୍ଭେ ଥାଇ ସ୍ୱୟମ୍ବର
ଯେ ତହିଁକି ଲୋଡ଼ା ହେଉଥିବ ତା ସମ୍ଭାର ।
ରାଜା ବଚନେ କହିଲେ ତହିଁ ମହାମୁନି
ଏବେ ଯିବୁ ରାଜା ଆମ୍ଭେ ପୁର ସଂଯମନୀ ।

ସ୍ୱୟମ୍ବର କାଳେ ଏଥେ ଅବଶ୍ୟ ଆସିବୁ
ଯେତେଦିନଯାଏ ପୁଣି ରହି ନ ପାରିବୁ ।
ଏତେ ବୋଲି ବିଜେ କଲେ ତହୁଁ ବ୍ରହ୍ମଋଷି
ଆକାଶ ପଥେ ମହାତ୍ମା ପ୍ରବେଶିଲେ ଆସି ।
ଏଥୁ ଅନନ୍ତରେ ଶୁଣ ଦୁହିଁଙ୍କର କଥା
ପୃଥିବୀ ରାଜାମାନଙ୍କ ଆସିବା ବ୍ୟବସ୍ଥା ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଏ ଚାରି
ଦେଶେ ଦେଶେ ରାଜାଙ୍କୁ ଯେ ନିମନ୍ତ୍ରଣ କରି ।
ନିମନ୍ତ୍ରିଣ ଘେନି ପୂର୍ବ ରାଜାଏ ଆସନ୍ତି
ଶୁଭଯୋଗେ ହସ୍ତିନାରେ ପ୍ରବେଶ ହୁଅନ୍ତି ।
ରଥ ଗଜ ଅଶ୍ୱ ଘେନି ସଇନ୍ୟ ପଦାତି
ସମାରୋହେ ଆସନ୍ତି ସେ ସମସ୍ତ ନୃପତି ।
ପଶ୍ଚିମ ଦିଗକୁ ବିଜେ କଲେକ ସଞ୍ଜୟ
ନିମନ୍ତ୍ରିଲେ ସେ ପଚାଶ ସହସ୍ର ଯେ ରାୟ ।
ଚନ୍ଦ୍ରାବତୀ ସ୍ୱୟମ୍ବର ବୋଲି ସେ ଜଣାନ୍ତି
ରାଜ୍ୟେ ରାଜ୍ୟେ ପଶି ଗୁଆ ଅକ୍ଷତ ଚଳାନ୍ତି ।
ସ୍ୱୟମ୍ବର ପୁଣି ମାନଗୋବିନ୍ଦର ଆଜ୍ଞା
ମର୍ତ୍ତ୍ୟମଣ୍ଡଳରେ କେହୁ କରିବ ଅବଜ୍ଞା ।
ଏକୁ ଆରେକ ଆସନ୍ତି ମହା ସମାରୋହେ
ରଥ ଗଜ ଅଶ୍ୱ ଘେନି ଆସନ୍ତି ଯେ ରାୟେ ।
ଉତ୍ତର ଦିଗକୁ ଗଲେ ନିମନ୍ତ୍ରି ବିଦୂରେ
ନିମନ୍ତ୍ରଣ ଦେଲେ ତାଙ୍କୁ ଯେ ବିଧି ବେଭାରେ ।
ବଡ଼ ପ୍ରତାପୀ ଚାଳିଶ ସହସ୍ର ଯେ ରାଜା
ବହୁ ସମାରୋହେ ଜଣେ ଜଣେ କଲେ ପୂଜା ।
ସମସ୍ତ ସଇନ୍ୟ ସଙ୍ଗେ ସମଦଣ୍ଡ ଥାଟ
ଆସନ୍ତେ ରାଜାଙ୍କ ସୈନ୍ୟ ନ ମିଳଇ ବାଟ ।
ତୁଳମାସ କୃଷ୍ଣପକ୍ଷ ପଞ୍ଚମୀର ଦିନେ
ପାଣ୍ଡବେ ଯେ ଥିଲେ ରହି ଜୟନ୍ତ ଭୁବନେ ।
ଆସନ୍ତି ଧୃତରାଷ୍ଟ୍ରଙ୍କୁ ଦେଖି ପାଞ୍ଚଭାଇ
ହସ୍ତିନାପୁରେ ପ୍ରବେଶ ହେଲେ ତହୁଁ ଯାଇ ।
ଧୃତରାଷ୍ଟ୍ରଙ୍କ ଚରଣେ ପ୍ରଣାମ କରନ୍ତି
ଆସ୍ଥାନରେ ବସ ବୋଲି ରାଜା ଆଜ୍ଞା ଦ୍ୟନ୍ତି ।
ସମାରୋହେ ଆସ୍ଥାନରେ ଅଛି ଧାର୍ତ୍ତରାଷ୍ଟ୍ରି
ସେଠାରେ ଯାଇ ପ୍ରବେଶ ହୋଇଲେ ଯୁଧିଷ୍ଠି ।
ଭୀଷ୍ମ ଦ୍ରୋଣ ଭୁରିଶ୍ରବା ଚରଣେ ପ୍ରଣମି
ପ୍ରୀତିଭାବେ ଆସ୍ଥାନରେ ବିଜେ କଲେ ସ୍ୱାମୀ ।
ଯୁଧିଷ୍ଠି ଦେବ କହନ୍ତି ଆସ୍ଥାନରେ ବସି
ଦୁର୍ଯ୍ୟୋଧନଙ୍କୁ ଚାହିଁଣ ବଚନ ପ୍ରକାଶି ।
ତୁହି ଯେ ମାନଗୋବିନ୍ଦ ନୃପ ଚୂଡ଼ାମଣି
ସ୍ୱୟମ୍ବର କଥା ଆମ୍ଭେ ନ ପାରିଲୁ ଜାଣି ।

ରାଜା ବୋଲେ ତୁମ୍ଭେ ଭ୍ରାତା ମଧ୍ୟେ ଅଟ ଶ୍ରେଷ୍ଠ
ଏହା ଜାଣି କରି ତୁମ୍ଭେ ହୋଇଲ ଯେ ତୁଷ୍ଟ ।
ଦୁହିତା ହୋଇଲେ ପିତାଘରେ ରଜୋବତୀ
ଏକାବନ ପୁରୁଷ ତା ନରକେ ପଡ଼ନ୍ତି ।
ଚନ୍ଦ୍ରାବତୀ ବାଳୀ ଅଟେ ମୋହର ନନ୍ଦିନୀ
ଏହାକୁ ବିଭା ନ କରି ହେଲ ତୁମ୍ଭେ ତୁନି ।
ଯହୁଁ ମୁଁ ତଦନ୍ତ କରି ନ ପାରିଲି ବର
ରାଜାମାନଙ୍କୁ ଲୋଡ଼ିଣ କରି ସ୍ୱୟମ୍ବର ।
ତୁମ୍ଭେ ଜ୍ୟେଷ୍ଠଭ୍ରାତା ହୋଇ ମଉନ ହୋଇଲ
ମୋହର ଦୁହିତା ବୋଲି କଥା ନ କହିଲ ।
ଯୁଧିଷ୍ଠି ବୋଇଲେ ବାବୁ ଶୁଣ ସହଦେବ
ଚନ୍ଦ୍ରାବତୀର ବଲ୍ଲଭ କେ ପୁଣି ହୋଇବ ।
ଦକ୍ଷିଣ କରକୁ ଚାହିଁ ବୀର ସହଦେବ
ବିନୟୀ ହୋଇ କହଇ ବହି ସଦ୍‌ଭାବ ।
ମନେ ମନେ ପୁଣି ବୋଲେ ମାଦ୍ରୀ ଦେବୀ ବାଳ
ଏଡ଼େ ବଡ଼ ସ୍ୱୟମ୍ବର ହୋଇବ ନିଷ୍ଫଳ ।
ଯୁଧିଷ୍ଠି ଦେବ ବୋଇଲେ ସହଦେବ ଚାହିଁ
କି ବିଚାର କରୁ ମନେ ମନେ ପୁଣି ତୁହି ।
ସହଦେବ ବୋଲେ ଦେବ ବିଚାର ଏଥିକି
ବର ନାହିଁ ଏଥେ ଜାଣ ଏ ଚନ୍ଦ୍ରାବତୀକି ।
ଆହେ ଦେବ ଏହା ଅଟେ ଲଲାଟ ଘଟଣ
ଦକ୍ଷିଣ ଦିଗ ଭାଗରେ ଅଛି ଏକ ଜାଣ ।
ମହୋଦଧିର ଉତ୍ତରେ ଦ୍ୱାରାବତୀ ଗ୍ରାମ
ବାସୁଦେବର ନନ୍ଦନ ଶାମ୍ବ ତାର ନାମ ।
କମ୍ପିଲା କପାଳ ପାଟି ଧର୍ମ ନନ୍ଦନର
ପ୍ରତିବାକ୍ୟ ଦେଲେ ପୁଣି ବିଚାରି ହୃଦର ।
ତୁ ଦୁର୍ଯ୍ୟୋଧନ ଆମ୍ଭଙ୍କୁ ଏହା ନ ପୁଚ୍ଛିଲୁ
ତୋହର ଇଚ୍ଛାରେ ସ୍ୱୟମ୍ବର ଭିଆଇଲୁ ।
ଆମ୍ଭ ସକ୍ଷମ ଅଟନ୍ତି ସଦା ରାମକୃଷ୍ଣ
ତାହାଙ୍କୁ ଅବଜ୍ଞା କଲୁ ହୋଇ ଜ୍ଞାନଭ୍ରଷ୍ଟ ।
ବଳରାମ ଦେବଙ୍କର ଛନ୍ତି ବେନି ସୁତ
ଆନନ୍ଦ ସାନନ୍ଦ ନାମେ ଅଟଇ ତାହାନ୍ତ ।
ତହୁଁ ଆଣିଥାନ୍ତ ତୁମ୍ଭେ ଗୋଟିଏକ ସୁତ
ଚନ୍ଦ୍ରାବତୀକୁ ପ୍ରଦାନ ତାକୁ କରିଥାନ୍ତ ।
ଏବେ ବରି ଆଣିଲୁଣି ରାଜାଙ୍କୁ ତୁ ଆଜ
ଲାଜ ପାଇବୁ ନୋହିବ ତହିଁ କିଛି କାର୍ଯ୍ୟ ।
ମାନଗୋବିନ୍ଦ ବୋଇଲା ସେ ଯେ ବଳଦେବ
ସକଳ ଭଲେ ଯିବ କି କଳଙ୍କର ଭାବ ।
ମନୁଷ୍ୟେ ଗଣଇ କେହୁ ଶ୍ରୀକୃଷ୍ଣଙ୍କୁ ଅବା
କଳଙ୍କ ବଂଶରେ କନ୍ୟା କେଉଁପରି ଦେବା ।
ଉପର ବଂଶେ ତାହାର ଯଦିନାମେ ଋଷି
ନିଷ୍କଳଙ୍କ ନିଷ୍ପାପର କହନ୍ତି ପ୍ରଶଂସି ।
ଏବେ ଆସି ବଢ଼ିଲା ସେ ଗୋପାଳଙ୍କ ମେଳେ
ଜ୍ଞାନ ବୁଡ଼ାଇଲା ରସ କାଦମ୍ବରୀ ଭୋଳେ ।
ଆବର ବିଶେଷେ ଆମ୍ଭେ ଅଟୁ କୁଳଜ୍ୟେଷ୍ଠ
ପୁଣି କେମନ୍ତେ ହୋଇବୁ ତାଠାରୁ କନିଷ୍ଠ ।
ଅର୍ଜ୍ଜୁନର ପାଦଧୋଇ ଦେଇଅଛି ଭଗ୍ନୀ
ନନ୍ଦ ମହାଖୁଡ଼ ଦାନ କଲାକ ନନ୍ଦିନୀ ।
ମୋହର ଦୁହିତା ତାକୁ କେମନ୍ତେ ବା ଦେବି
ସ୍ୱହସ୍ତରେ ଗଉଡ଼ର ପାଦ ପଖାଳିବି ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଯା କହିଲ ସତ
ବଳାତ୍କାରେ ନ୍ୟନ୍ତି ଯେବେ ରାମକୃଷ୍ଣ ସୁତ ।
ତୁମ୍ଭେ କହିଲେ ଅବଶ୍ୟ ଉପୁଜିବ ଦ୍ୱନ୍ଦ୍ୱ
ଆସ୍ଥାନରେ ଥିଲେ ପୁଣି ଲକ୍ଷେକ ନରେନ୍ଦ୍ର ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଅଶ୍ୱତ୍ଥାମା ଥିବେ
ଯଦ୍ୟପି ସେ ଏହାଙ୍କର ଛାମୁରେ ମିଳିବେ ।
ଆବର ବିଶେଷ ଥିବ ବୀର ଫାଲଗୁନି
ଯଥାର୍ଥ ସଂଗ୍ରାମ କଲେ ଯିବେ କି ସେ ପୁଣି ।
କି କରି ପାରନ୍ତି ସେହୁ ବଳେ ବଳାତ୍କାର
ଅପ୍ରୀତି ହେଲେ ଆପଣା ହୁଅନ୍ତିଟି ପର ।
ଯୁଧିଷ୍ଠି ବୋଇଲେ ଯାହା କହିଲୁ ବିଚାରି
ଏମାନେ ସମସ୍ତେ ତୋର ପାରିବେ କି କରି ।
କୁହୁଡ଼ି ଜ୍ୟୋସ୍ନା ଯେମନ୍ତେ ଯାଏ କ୍ଷଣମଧ୍ୟେ
ଏଥେ କୃଷ୍ଣ ଭାନୁ ଯେହ୍ନେ ହୋଇବଟି ଉଦେ ।
ଶଙ୍ଖଚକ୍ର ଧରି ଯହିଁ ଥିବେ ବସୁଦେବ
ବ୍ରହ୍ମଲୋକ ନାଗଲୋକ ସୁରଲୋକ ଥିବ ।
ତେତିଶକୋଟି ଦେବେଟି ଥିଲେ ଯାହାପାଶେ
କେହି ରହି ନ ପାରିବେ ବାସୁଦେବ ତ୍ରାସେ ।
କହି ଆସ୍ଥାନରୁ ଉଠିଗଲେ ପାଞ୍ଚବୀରେ
ଚଳିଲେ ପାଣ୍ଡବେ ତହୁଁ ଜୟନ୍ତୀ ନଗରେ ।
ଏଥୁଅନନ୍ତରେ ଶୁଣ ହେ ମନୁ ନୃପତି
ବଦୟନ୍ତି ଧାର୍ମିକ ଯେ ବିବେକୀ ଅଗସ୍ତି ।
ଏହା ଶୁଣି ବୈବସ୍ୱତ ମନୁ ଯେ ବୋଇଲେ
ରାଜାଙ୍କର ନିମନ୍ତ୍ରଣେ ଦୂତମାନେ ଗଲେ ।
ସମସ୍ତ ରାଜାଙ୍କୁ ସେହୁ ଅଇଲେଟି ଘେନି
ଏକଥା ସଞ୍ଚିପି ମୋତେ କହ ତପୋଧନୀ ।
ବଦନ୍ତି ଅଗସ୍ତି ମୁନି ପୁଚ୍ଛାକଲୁ ଯାହା
ପ୍ରସ୍ତାବ ବାକ୍ୟରେ ତୋତେ କହିବା ନା ତାହା ।
ପୂର୍ବ ଦିଗକୁ ନିମନ୍ତ୍ରି ଗଲା ଜୟଦ୍ରଥ
ଉଦେଗିରି ଦେଶେ ଯାଇ ମିଳିଲେ ତୁରିତ ।

ଉଦପେଶରୀ ନାମେଣ ତହିଁର ନୃପତି
ସପ୍ତଦଶ ଘେନି ସେହୁ ଅଇଲା ତଡ଼ତି ।
ମାନଭଙ୍ଗ ଦେଶ ରାଜାମାନ ଅରଜୁନ
ସେହି ରାଜା ବିଜେ କଲା ହସ୍ତିନା ଭୁବନ ।
ସଙ୍ଗରେ ଅଛନ୍ତି ତାର ସାତଖଣ୍ଡ ସୈନ୍ୟ
ପାର୍ବତୀୟ ଦେଶ ରାଜା ନାମ ଚିତ୍ରସେନ ।
ଚନ୍ଦ୍ରକେତୁ ଯେ ଧୂମ୍ରାକ୍ଷ ଦେଶର ନୃପତି
ହସ୍ତିନା ରାଜ୍ୟେ ମିଳିଲେ ଆସି ସେ ତଡ଼ତି ।
ଦକ୍ଷିଣ ଦେଶୁଁ ଅଇଲେ ମଳୟ ନୃପତି
ଆବର ଅଇଲେ ବଇଦୁର୍ଯ୍ୟ ଚକ୍ରବର୍ତ୍ତୀ ।
ଅତିସୁଖୀ ନାମେ ବାମପୁର ନୃପବର
ହସ୍ତିନାରେ ପ୍ରବେଶିଲେ ସୈନ୍ୟ ସଙ୍ଗତର ।
ନୀଳସେନ ନୃପତି ଯେ ନୀଳେନ୍ଦ୍ରି ଦେଶର
ହସ୍ତିନା ଦେଶେ ପ୍ରବେଶ ହୋଇଲେ ସତ୍ୱର ।
ମହୀନ୍ଦ୍ର ଦେଶ ନୃପତି ନାମ ବିଷ୍ଣୁ କର
ହସ୍ତିନା ଦେଶରେ ମିଳେ ନାହିଁ ସ୍ୱୟମ୍ବର ।
ଭୀମଦେଶ ରାଜା ବୀରଭଦ୍ର ନରପତି
ମଦନ ମହାଦେବ ତା ସଙ୍ଗରେ ଅଛନ୍ତି ।
ବଳଦର୍ଭ ଦେଶ ଅନ୍ଧ ଗୋପାଳ ରାଜନ
ହସ୍ତିନାରେ ମିଳିଲା ସେ ଘେନି ଥାଟସୈନ୍ୟ ।
ମଘଦେଶ ନରପତି ଅଇଲା ତ୍ରିଗର୍ତ୍ତ
ସ୍ୱୟମ୍ବର ବିଧାନେ ସେ ଆସଇ ତୁରିତ ।
କନ୍ଦଳ ଦେଶର କାଳବର ନରପତି
ନିମନ୍ତ୍ରଣ ପାଇ ସେହି ଆସଇ ତଡ଼ତି ।
ମନ୍ଦର ଦେଶର ରାଜା ଅଟେ କାଳନେମୀ
ହାସ୍ତିନାରେ ପ୍ରବେଶିଲା ଦଣ୍ଡଛତ୍ର ଘେନି ।
ମରୁଦେଶ ନରପତି ଅଟଇ ବିରାଟ
ସାତ ଅକ୍ଷୌହିଣୀ ତାର ଅଙ୍ଗବଳ ଥାଟ ।
କଳିଙ୍ଗ ଦେଶର ରାଜା ସେ କଳିଙ୍ଗ ସେନ
ହସ୍ତିନାରେ ମିଳିଲା ସେ ସଙ୍ଗେ ଘେନି ସୈନ୍ୟ ।
କାଳିନ୍ଦୀ ଦେଶର ରାଜା ନୀଳସେନ ରାୟେ
ସଙ୍ଗତେ ଘେନି ଅଇଲା ସହସ୍ରେକ ହୟେ ।
ଖଞ୍ଜନ ଦେଶୁ ଅନନ୍ତ ବୀରସେନ ଆସେ
ହସ୍ତିନାରେ ସ୍ୱୟମ୍ବର ସ୍ଥାନେ ଯାଇ ବସେ ।
ମନ୍ଦର ଦେଶର ରାଜା କେଶର ନୃପତି
ମହାର୍ଣ୍ଣବ ନରପତି ସଙ୍ଗରେ ଅଛନ୍ତି ।
ନିର୍ଝର ଦେଶର ରାଜା ନାମ ଗଣପତି
ବଡ଼ ସମାରୋହେ ବିଜେ କଲା ସେ ନୃପତି ।
କରଞ୍ଜ ଦେଶର ରାଜା ନାମ ଚନ୍ଦ୍ରଧ୍ୱଜ
ତେଣୁ ଅର୍ବୁଦ ସଇନ ସଙ୍ଗତରେ ଗଜ ।
କାର୍ତ୍ତରୀ ଦେଶ ନୃପତି ନାମ କାଳେଶ୍ୱର
ସେ ଆସି ପ୍ରବେଶ ହେଲା ହସ୍ତିନା ନଗର ।
ତିରଣ ମଣ୍ଡଳ ନୃପ ତିଳଧ୍ୱଜ ରାଜା
ହସ୍ତିନା ରାଜେ ପାଇଲା ଆସି ପାଦପୂଜା ।
ଭୈରବ ଦେଶ ନୃପତି ନାମ କେତୁଧ୍ୱଜ
ସେ ଆସି ପ୍ରବେଶ ହେଲା ହସ୍ତିନାର ରାଜ୍ୟ ।
କରମଣ୍ଡଳ ନୃପତି ନାମ ମହୀଧର
ହସ୍ତିନା ରାଜ୍ୟେ ପ୍ରବେଶ ହେଲା ନୃପବର ।
ମାଳବ ଦେଶ ନୃପତି ନାମ କୃତବର୍ମା
ତାହାର ହସ୍ତୀର ନାମ ଅଟେ ଅଶ୍ୱତ୍ଥାମା ।
ଅନେଶ୍ୱତ ଅର୍ବୁଦ ତା ସଙ୍ଗରେ ସୈନ୍ୟ
ପ୍ରବେଶ ହୋଇଲେ ଆସି ହସ୍ତିନା ଭୁବନ ।
ଗିରିଜା ଦେଶର ରାଜା ନାମ ଜମାଗୋଷ୍ଠ
ହସ୍ତିନା ନଗର ବିଜେ କଲା ଘେନି ଥାଟ ।
ମଳୟ ଦେଶର ରାଜା ଯେ ମଳୟସେନ
ମିଳିଲା ସେ ହସ୍ତିନାରେ ସଙ୍ଗେ ଘେନି ସୈନ୍ୟ ।
ସମାରୋହେ ଆସ୍ଥାନରେ ମିଳିଲେ ନୃପତି
ବହଇ ଯମୁନା ନଦୀ ଉତ୍ତର ମୂରତି ।
ସ୍ନାନ ଦେବାର୍ଚ୍ଚନ ତହିଁ କଲେ ନୃପଗଣ
କଲେ ଅମୃତ ଯୋଗାଡ଼ ମାଣୋହି ସେ ପୁଣ ।
ଆଚମନସାରି ଯାଇ ବିଜେ ରଙ୍ଖଟେ
ଦେବାଙ୍ଗ ବସନମାନ ପିନ୍ଧନ୍ତି ସନ୍ତୁଷ୍ଟେ ।
ସୁରଙ୍ଗ ପଟନୀ ପୁଣି ସୁରଙ୍ଗ ବସନ
ରାଜାଙ୍କେ ଲଗାଇ ଯେତେ ଯେତେ ପ୍ରତିଦିନ ।
ଭୋକୀ ଶୋଷୀମାନେ ଯେତେବେଳେ ଯାହା ମାଗି
ଜାଣି ପ୍ରାପତ କରନ୍ତି ତାହାଙ୍କୁ ନିଯୋଗୀ ।
ଭଣ୍ଡାର ଫେଡ଼ିଣ ନିତ୍ୟ ଦିଆହୁଏ ଦାନ
ଯେ ଯାହା ମାଗନ୍ତି ତାହା ପାନ୍ତି ଅନୁକ୍ଷଣ ।
ଶିବାଳୟେ ଗୋଦୋହନ ବାରଗୋଷ୍ଠି ଗାଇ
ବିଷ୍ଣୁଆଳେ ବଇଷ୍ଣବମାନେ ଗୀତ ଗାଇ ।
ଦେବାଦେବୀଙ୍କୁ ଅନେକ ମତେ କଲେ ପୂଜା
ମେଷ ଛାଗଳ ଦିଅନ୍ତି ମାରି ବଳିଭୋଜା ।
ଏସନକ ଉତ୍ସବ ଯେ ହସ୍ତିନା ନଗରୀ
ଦିଶନ୍ତି ଯେ ଦେବ ଦେବୀ ପ୍ରାୟ ନରନାରୀ ।
ଷାଠିଏ ସହସ୍ର ଶିଷ୍ୟ ଘେନି ବେଦବ୍ୟାସ
ପ୍ରବେଶ ହେଲେ ଅଗସ୍ତି ବାଲ୍ମୀକି ଲୋମଶ ।
ବାମଦେବ ବିଶ୍ୱାମିତ୍ର ବଶିଷ୍ଠ ମାର୍କଣ୍ଡ
ସୁଦେବ ଯେ ସତ୍ୟବ୍ରତ ଆବର ବିଭାଣ୍ଡ ।
ଅଇଲେ ଦୁର୍ବାସା ମୁନି ଋଷିଶୃଙ୍ଗ ଯତି
ଶକ୍ତିଋଷି ପରାଶର ଏମାନେ ମିଳନ୍ତି ।

ସପ୍ତବର୍ଷରେ ସ୍ୱୟମ୍ବର ହୁଏ ବାର୍ତ୍ତାପାଇ
ହସ୍ତିନାରେ ତପୋବନ୍ତ ପ୍ରବେଶିଲେ ଯାଇ ।
ଲମ୍ବିତ ଜଡ଼ା ଆବର ତ୍ରିକଚ୍ଛ ବସନ
ମୁନିଙ୍କୁ ମାନଗୋବିନ୍ଦ କଲେ ସନମାନ ।
ସ୍ୱହସ୍ତେ ପାଦ ପଖାଳି କରଇ ସେ ପୂଜା
ସମସ୍ତଙ୍କୁ ଗନ୍ଧ ପୁଷ୍ପ ଦିଏ ମହାରାଜା ।
ଆସନରେ ବସାଇଲେ ସମସ୍ତଙ୍କୁ ନେଇ
ବିନୟ ହୋଇଣ ତାଙ୍କୁ କହେ କୁରୁସାଇଁ ।
ଅନେକ ବିନୟ କରି କହେ କୁରୁସାଇଁ
ଦେଖି ଆନନ୍ଦ ନୃପତିମାନଙ୍କୁ ସେ ଚାହିଁ ।
ଜୀବନ ସାଧୁ ଦେଖଇ ଯେବଣ ପୁରୁଷ
ଆକାଶରେ ବସିବାକୁ ତାହାର ମାନସ ।
ପୂର୍ବଜନ୍ମ ଭାଗ୍ୟ ଆମ୍ଭେ ଜିଣିବା କେମନ୍ତେ
ଭାଗ୍ୟବନ୍ତ ଶୁରବନ୍ତ ବୋଲିବା ଜଗତେ ।
ପୁରୀତୀର୍ଥେ ସ୍ନାନ ପୁଣି ସୁଦେବ ଦର୍ଶନ
ସୁସଙ୍ଗ ମେଳେ ଯାହାର ସଙ୍ଗ ଅନୁକ୍ଷଣ ।
ସୁନ୍ଦରୀ ସଙ୍ଗେ ଯେବଣ ପୁରୁଷ ବିଳସି
ତାହାଙ୍କୁ ଜିଣିବା ସିନା କପିଳାସବାସୀ ।
ଲକ୍ଷେ ରାଜାଙ୍କର ମିଳି ଯେତେକ ସଇନ୍ୟ
ମନ ଜାଣି ନୃପମଣି ଦେଉଥାନ୍ତି ଅନ୍ନ ।
ଗଜ ଅଶ୍ୱମାନଙ୍କୁ ସେ ଦେଉଥାନ୍ତି ବିରି
ବହୁ ସମ୍ଭାର ଭିଆଇଅଛି ଦଣ୍ଡଧାରୀ ।
ନିତି ନିତି ଯାହା ବ୍ୟୟ ହୁଏ ତାଙ୍କ ଲାଗି
ବାଣ୍ଟିଣ ତାହା ଦିଅନ୍ତି ସମସ୍ତ ନିଯୋଗୀ ।
ମୁନିଙ୍କୁ ଆସନ କୃଷ୍ଣଅଜିନ ଛଉରୀ
ଗଣ୍ଡା ମାରିଣ ଭୋଜନ ଦିଏ ଦଣ୍ଡଧାରୀ ।
ମୁନିମାନେ ଯେଉଁପରି ହୁଅନ୍ତି ତୃପତି
ତେସନ ପ୍ରକାରେ ତାଙ୍କୁ ଦିଅନ୍ତି ନୃପତି ।
ରାଜାମାନଙ୍କୁ ଯୋଗାଡ଼ ଦିଏ ଅପ୍ରମିତ
ଚଡ଼ପ ଦିଅଇ ଲାଗି ହେବାକୁ ସେ ନିତ୍ୟ ।
ତାଡ଼ଝୁମ୍ପା ବାହୁଟି ଯେ ପାଦେ ପାଦବଳା
ଶିରକୁ ସୀମନ୍ତହାର ହୃଦୟକୁ ମାଳା ।
ରତ୍ନମଣି ମୁକୁଟ ସେ ବିରାଜଇ ଶିରେ
ବିଦମୁଦି କଙ୍କଣ ଯେ ଶୋଭଇ ବାହାରେ ।
ନାଚନ୍ତି ବନିତାମାନେ ସୁର ବିଳାସିନୀ
ଗାଆନ୍ତେ ବିବିଧ ରସେ ବଜାଇ ବାଜେଣି ।
ମର୍ଦ୍ଦଳ ତାଳ କଂସାଳ ବଇଁଶୀ ଶବଦେ
ଚଞ୍ଚୁପୁଟ ଚାଞ୍ଚପୁଟ ଆଦି ନାନାଛନ୍ଦେ ।
ଜଗତ ମୋହିନୀଙ୍କ ପଞ୍ଚମ ଯେ ସ୍ୱର
ଦିନରାତି ନ ଆଣ୍ଟଇ କୌତୁକ ଅପାର ।

ଏମନ୍ତ ସଭା ମଧ୍ୟରେ ବିଜେ କୁରୁସାଇଁ
ସମସ୍ତ ରାଜାଙ୍କୁ ଚାହିଁ କହନ୍ତି ବୁଝାଇ ।
ମୋହର ଅଛଇ ପୁଣି ଏକଇ ଦୁହିତ
ମୋର ପାଟରାଣୀ ଗର୍ଭୁଜାତ ସେହି ସୁତ ।
ଚନ୍ଦ୍ରକିରଣରୁ ଜିଣି ଦିଶିବାରୁ ଜ୍ୟୋତି
ଶ୍ରଦ୍ଧାରେ ତା ନାମ ମୁହିଁ ଦେଲି ଚନ୍ଦ୍ରାବତୀ ।
ନ ମାଗିଲେ କେହି ମୁହିଁ ନ ଦିଶଇ ଯାଚି
ଏଣୁ ତୁମ୍ଭମାନଙ୍କୁ ମୁଁ ନିମନ୍ତ୍ରି ଆଣିଛି ।
ଏକ କନ୍ୟାକୁ ଯେ ତୁମ୍ଭେ ଲକ୍ଷେକ ନୃପତି
ଗୋଟିଏ ଦୁହିତା ତାର ନାମ ଚନ୍ଦ୍ରାବତୀ ।
ତେଣୁ ସମସ୍ତ ନୃପତି ଶୁଣିବା କଥାଏ
ଅନ୍ୟ ଆଡ଼କୁ ଯେ ମନ ନ ଦେବ ରାଜାଏ ।
ଯାହାକୁ ମନ ଇଚ୍ଛାରେ ବରିବ କୁମାରୀ
ମାଳଦେଇ ସେ ଯାହାର ନେବ ହସ୍ତଧରି ।
ତାହାର ସେ କନ୍ୟାଗୋଟି ହୋଇବ ଯୁକତେ
ଆନ କେହି ନ ଲଙ୍ଘିବ ସତ୍ୟ କହ ମୋତେ ।
ବଳାତ୍କାରେ କେହି ପୁଣ ନ କରିବ ଗୋଳ
ଏହା ବିଚାରିଣ ମୋତେ କୁହ ମହୀପାଳ ।
ରାଜାଏ ବୋଇଲେ ସତ୍ୟ ସତ୍ୟ ତିନିବାର
ଯାହାକୁ ବରିବ ଜାଣ ଦୁହିତା ତୁମ୍ଭର ।
ସେହି ତାହାର ନିଶ୍ଚୟ ହେବ ପ୍ରାଣନାଥ
କେହି ନ କରିବେ କାହା ସଙ୍ଗରେ ଅନର୍ଥ ।
ଯେବଣ ରାଜା ଚଳିବ ଏ କଥାକୁ ଲଙ୍ଘି
ସମସ୍ତ ରାଜାଙ୍କ ହାତେ ହେବ ପ୍ରାଣତ୍ୟାଗୀ ।
ଏ କଥା ଆମ୍ଭର ସତ୍ୟବାକ୍ୟ ଦୃଢ଼ବାଣୀ
ସଭାକୁ ଏବେ ଆଣ ହେ ତୁମ୍ଭର ନନ୍ଦିନୀ ।
ରାଜାମାନଙ୍କୁ ନୃପତି ନିବର୍ତ୍ତ କରାଇ
ସୁରେଖା ନାମରେ ମୁଦୁସୁଲୀକି ସେ ରାଇ ।
ଯାଅ ତୁ ଗୋ ମୁଦୁସୁଲୀ ଭିତର ପୁରକୁ
ବେଗ କରାଇ ଆଣିବୁ କନ୍ୟା ଏ ସଭାକୁ ।
ରାଜାର ବଚନେ ଚଳିଗଲା ମୁଦୁସୁଲୀ
କନ୍ୟା ସୁବେଶ କରାଇ ଆଣି ତହିଁ ମିଳି ।
ବିଶେଷ ସୁନ୍ଦରୀ ସେହି ପୁଣି ଗୁଣବତୀ
ଅଧିକ ବିରାଜେ ରତ୍ନ ହାନ୍ଦୋଳାରେ ଜ୍ୟୋତି ।
ବହୁତ ସେ ପାଟଛତ୍ର ଉହାଡ଼ ବସନ
ବାଜଇ ଦୁନ୍ଦୁଭି ଶଙ୍ଖ ଭେରୀ ବାଦ୍ୟମାନ ।
ଚାରିପାଖରେ ମଣ୍ଡଣି ସହସ୍ର ଚାମର
ଶ୍ୟାମଳ ମେଘରେ ଯେହ୍ନେ ବିଜୁଳିର ଗାର ।
ତ୍ରୈଲୋକ୍ୟ ମୋହିନୀ ସେହି ଶରଇନ୍ଦ୍ର ମୁହିଁ
ରାଜାମାନେ ବଶ ହେଲେ ତାର ମୁଖ ଚାହିଁ ।

ବିଚାରନ୍ତି ରାୟେ ଧନ୍ୟ ଧନ୍ୟ ତୁରେ ବାଳୀ
କାମଦେବ ଏ କନ୍ୟାକୁ ବରପଣେ ମିଳି ।
ପ୍ରତ୍ୟକ୍ଷେ ରତି ଏ କାମଦେବଙ୍କର ନାରୀ
ଅମର ସାଧବୀ ଏହୁ ମର୍ତ୍ତ୍ୟେ ଅବତରି ।
ରମ୍ଭା ଉର୍ବଶୀ ମେନକା କିବା ଏ ମୋହିନୀ
ଏହାକୁ କିବା ଉପେକ୍ଷା କଲେ ସସ୍ତ୍ରଯୋନି ।
ନ ପାଇ ପାଇଲା କେହି ନ ଦେଖି ଦେଖିଲା
ସ୍ତିରୀ ପୁରୁଷଙ୍କ ପୁଣ୍ୟ ଏମନ୍ତ ରହିଲା ।
ମୋହବଶ ହୋଇଣ ସେ ସମରେ ନିମଜ୍ଜି
ଏମନ୍ତ ରାଜାଏ ମନେ ବିଚାରିଲେ ହେଜି ।
ପୁଣି ପ୍ରଶଂସି ବୋଲନ୍ତି ତହିଁ ସର୍ବରାଜା
ଧନ୍ୟ ଧନ୍ୟ ନୃପତି ଏ ତୋହର ତନୁଜା ।
ଚନ୍ଦ୍ରାବତୀ ମୁଖ ଦେଖି ସବୁ କଲେ ତେଜ୍ୟା
ଏଡ଼େ ବଡ଼ ସଭାରେ ତ ପାଇବ ନା ଲଜ୍ଜା ।
ଏତେକ ବୋଲି ରାଜାଏ ହେଲେ ମୌନବ୍ରତ
ସମସ୍ୟା ଦେବାକୁ କେହି ନୋହିଲେ ସମର୍ଥ ।
ଏମନ୍ତ ଦେଖିଣ ସେହି ମାନଚକ୍ରବର୍ତ୍ତୀ
ମୃଦୁସ୍ଥଳୀକି ଚାହିଁଣ କଲାକ ତଡ଼ତି ।
ଚନ୍ଦ୍ରାବତୀକି ଏଠାରୁ ନିଅ ମେଢ଼କତି
କାଲି ପ୍ରଭାତେ ହୋଇବ ସ୍ୱୟମ୍ବର ଯୁକ୍ତି ।
ଏମନ୍ତ ଶୁଣି କନ୍ୟାକୁ ବାହୁଡ଼ାଇ ନେଲେ
ନିଜ ମନ୍ଦିରେ ଯାଇଣ ସମସ୍ତେ ରହିଲେ ।
ବେଶ ବସନ ଓହ୍ଲାଇ ବିମାନରେ ବସି
ଭୋଜନ ମାଜଣା ଶେଷକରି ଶୁଭ୍ରକେଶୀ ।
ଏମନ୍ତେ ଏହି ସଭାରେ ଅଛନ୍ତି ସମସ୍ତେ
ବ୍ରହ୍ମାନନ୍ଦନ ନାରଦ ମିଳିଲେ ତୁରିତେ ।
ହସ୍ତର କଳହମୂଣି ବୀଣାଦଣ୍ଡ ଘେନି
କାଖରେ କଳି ଧୋକଡ଼ି ଯାକିଛନ୍ତି ପୁଣି ।
କଳିକାଳ ଉପଗତ କରନ୍ତି ସେ ମୁନି
ଲାଗୁ ଲାଗୁ ବୋଲି ନୃତ୍ୟ କରନ୍ତି ଯେ ଜ୍ଞାନୀ ।
ଭାରିଯା ନାମ ଡେଙ୍ଗୁରା ପୁତ୍ର ହିଁ ଗୁଣ୍ଡିଆ
ଦୁହିତା ନାମ ଜଞ୍ଜାଳୀ ଆପଣେ କଳିହା ।
ଏତେକ କଳିକି ମୁନି ସବୁ ରୁଣ୍ଡକରି
ବିଜେ କଲେ ଯାଇ ସେହି ହସ୍ତିନା ନଗରୀ ।
ନାରଦ ମୁନିଙ୍କୁ ଦେଖି ଉଠି ସବୁ ରାଜା
ବିନୟେ ଚରଣ ଧରି କଲେ ଦିବ୍ୟପୂଜା ।
ଅନେକ ସାନନ୍ଦେ ତହିଁ ହୋଇଲେ ନୃପତି
ପାପ କ୍ଷୟଗଲା ଫିଟିଗଲା ମନଭ୍ରାନ୍ତି ।
ଆସିବାର ଫଳ ଜାଣ ଅଟଇ ଏତିକି
ଦ୍ୱିତୀୟ ବ୍ରହ୍ମା ରୂପକୁ ନୟନରେ ଦେଖି ।

ଅନେକ ଯେ ପୂଜାବିଧି କଲା କୁରୁସାଇଁ
କନକ ପିଢ଼ାରେ ତାଙ୍କୁ ବସାଇଲା ନେଇ ।
ଆଜି ମୁଁ ନେତ୍ରେ ଦେଖିଲି ଯୁଗାନ୍ତକଯୋଗୀ
କଳିକାଳ ବିଚାରଣେ ସେ ଅଭୟ ଭୋଗୀ ।
କଳିର ଧର୍ମରେ ସେହି କଳି କୁତୂହଳେ
କଲ୍ୟାଣ କରନ୍ତି ମୁନି ନୃପତି ମଣ୍ଡଳେ ।
ଶ୍ରୀ ନାରଦ ଋଷିଙ୍କର ଚରଣେ ଶରଣ
ଜନ୍ମେ ଜନ୍ମେ ଶ୍ରୀଶାରଳା ଦାସ ମୁହିଁ ଜାଣ ।
ରାଜାଙ୍କୁ ଚାହିଁ ବଦନ୍ତି ସେହି ବ୍ରହ୍ମଋଷି
ଆମ୍ଭ କଲ୍ୟାଣେ ତୁ ବହୁକାଳ ଥାଅ ବସି ।
ଦୁର୍ଯ୍ୟୋଧନ ବୋଲେ ମୁନି ରହ ମୋର ପୁରୀ
ସ୍ୱୟମ୍ବର ମଣ୍ଡପରେ ବିଜେ ଦଣ୍ଡଧାରୀ ।
ଏମନ୍ତବେଳେ ପାଣ୍ଡବ ପାଞ୍ଚଭାଇ ମିଳି
ନାରଦଙ୍କ ଚରଣରେ ହେଲେ ନିଉଛାଳି ।
ଯୁଧିଷ୍ଠି ବୋଇଲେ ମୁନି ଦୁହିତା ନିମନ୍ତେ
ସ୍ୱୟମ୍ବର କଲା ରାଜା କୁରୁନାଥ ଏଥେ ।
ତୁମ୍ଭ ବିଚାରକୁ ଏହା ଯୋଗାଇ କି ମୁନି
ସ୍ୱୟମ୍ବର କଥାକୁ ମୋ ମନ ହିଁ ନ ଘେନି ।
ନାରଦ ବୋଇଲେ ମନ୍ଦ କଲା ହୋ ଯୁଧିଷ୍ଠି
ଦୂଷିତା ହେଲା ପରାୟେ ଲାଗୁଛି ଏହିଟି ।
ଦ୍ୱାରକାପୁରେ ଅନେକ ବର ରହିଅଛି
ତହୁଁ ଗୋଟିଏ ଏ ରାଜା ନ ଆଣିଲା ବାଛି ।
ରାମକୃଷ୍ଣଙ୍କୁ କିମ୍ପାଇ କଥା ନ କହିଲା
କାହାର ବିଚାରେ ଏହୁ ସ୍ୱୟମ୍ବର କଲା ।
ହସ୍ତରେ ଘେନି ଅଛଇ ପାଦାର୍ଘ୍ୟ ଗୋଟାଏ
କୃଷ୍ଣ କାହିଁ ଅର୍ଘ୍ୟ ପୁଣି ଦେବ କାହା ପାଏ ।
ରାମ କୃଷ୍ଣ ପୁଣି ଯେଉଁ ସଭାରେ ନ ଥିବେ
ଅର୍ଘ୍ୟ ହିଁ ଘେନନ୍ତି ନାହିଁ ବ୍ରହ୍ମା ରୁଦ୍ର ଦେବେ ।
ଯୁଧିଷ୍ଠି ବୋଇଲେ ତୁମ୍ଭେ ଶୁଣ ବ୍ରହ୍ମପତି
ଏହା ଶୁଣିଲେଟି କୋପ କରିବ ନୃପତି ।
ଏକାନ୍ତରେ ଯୁଧିଷ୍ଠିଙ୍କୁ ନାରଦ କହିଲେ
କନ୍ୟାକୁ ଆବୋରି ରଖିଥିବ ତୁମ୍ଭେ ଭଲେ ।
ଆଜ ଏ କନ୍ୟା ଯେମନ୍ତେ କାହାକୁ ନବରି
ରାତ୍ରକ ଭିତରେ ବର ଆଣିବି ମୁଁ ଧରି ।
ସବୁରି ଦର୍ପ ଧ୍ୱଂସିବି ପାଇବେଟି ଲାଜ
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଯେତେ ମହାରାଜା ।
ଏତେ କହି ମୁନି ଚଳିଗଲେ ଅନ୍ତର୍ଦ୍ଧାନେ
ସାନନ୍ଦ ହୋଇଣ ପୁଣି ବିଚାରନ୍ତି ମନେ ।
ବଡ଼ ରହସ୍ୟ କଥା ଏ ହେବ କୁତୂହଳ
କନ୍ୟାର ମତ କେମନ୍ତେ ବୁଝିବା ପ୍ରବଳ ।

ଏତେକ ବିଚାରି ମନେ ଚଳିଲେ ତୁରିତେ
ଚନ୍ଦ୍ରାବତୀର ମନ୍ଦିରେ ପ୍ରବେଶିଲେ ରାତ୍ରେ ।
ଦେଖିଲେ ସେ ଚନ୍ଦ୍ରାବତୀ ବସିଅଛି ତହିଁ
ପରିବାରୀ ମୁଦୁସୁଲୀ ବେଢ଼ିଛନ୍ତି ଯହିଁ ।
ନାରଦଙ୍କୁ ଦେଖି ବେଗେ ଉଠି ଚନ୍ଦ୍ରାବତୀ
ବିନୟ କରନ୍ତେ ମୁନି କଲ୍ୟାଣ କରନ୍ତି ।
ଅହିଅ ସୁଲକ୍ଷଣୀ ତୁ ହୁଅ ପୁତବ୍ରତୀ
ପତି ପୁତ୍ର ଘେନି ହୁଅ ସଉଭାଗ୍ୟବତୀ ।
ପତିର ବଲ୍ଲଭା ହୋଇ ବଞ୍ଚ ପ୍ରତିଦିନ
ତୋହର ବଲ୍ଲଭ ହେଉ କୃଷ୍ଣଙ୍କ ନନ୍ଦନ ।
ବୋଇଲେକ ଏ ବଚନ ଶୁଣି ଚନ୍ଦ୍ରାବତୀ
ଏ କଲ୍ୟାଣ କେମନ୍ତେ ଯେ କଲ ମହାଯତି ।
ମୋହର ପିତା ଦେଖୁଛ ଦୁଷ୍ଟ ବୁଦ୍ଧି ଧରି
ରାଜାମାନଙ୍କୁ ଆଣିଛି ସ୍ୱୟମ୍ବରେ ବରି ।
କେବଣ ବର ମୋହର ମନକୁ ନ ଖଟେ
ରାତ୍ର ଦିବସ ମୁଁ ରହିଥାଇ ମହାକଷ୍ଟେ ।
ତୁମ୍ଭେ ମହାମୁନି ମୋତେ କହ ଦିବ୍ୟବାଣୀ
ମୋହର ମନ ଆନନ୍ଦ ତୁମ୍ଭ ବାକ୍ୟ ଶୁଣି ।
କୃଷ୍ଣର ନନ୍ଦନ ହେଉ ମୋର ପ୍ରାଣପତି
ତାହାବିନେ ମୋର ମୁନି ନାହିଁ ଅନ୍ୟଗତି ।
ଅଟଇ ଜଗମୋହନ ନାଥର ନନ୍ଦନ
କେମନ୍ତେ ସୁନ୍ଦର ରୂପ ଦେଖୁ ମୋ ନୟନ ।
ଏହାଶୁଣି ସେ ନାରଦ ମୁନି ତପୋନିଷ୍ଠ
କଳି ଧୋକଡ଼ି ମୁଣିରୁ କାଢ଼ି ଚିତ୍ରପଟ ।
ଚନ୍ଦ୍ରାବତୀ ଆଗେନେଇ ଥୋଇଦେଲେ ମୁନି
ଦେଖି ସୁନ୍ଦରୀର ମନ ସେ ବରରେ ମାନି ।
ଏହିଟି କୃଷ୍ଣ ନନ୍ଦନ ବୀରବର ଶାମ୍ବ
ଏହାସ୍ୱରୂପ ସାକ୍ଷାତେ ଅଟେ କାମଦେବ ।
ଏ ବର ଯେବେ ତୋହର ମନକୁ ଗଛଇ
ଏହିକ୍ଷଣି ଆଣି ତୋତେ ମୁଁ ଦେଇ ପାରଇ ।
ଦେଖି ଶାମ୍ବ ଚିତ୍ରପଟ ମୋହ ଗଲା ବାଳୀ
ନାରଦଙ୍କ ଶ୍ରୀଚରଣ ଧରି କହେ ଭାଳି ।
ଅଶ୍ରୁଜଳକୁ ସଂହରି କହେ ଗଦ ଗଦ
ଏହି ବର ମୋତେ ଆଣି ଦିଅ ହେ ନାରଦ ।
ମୋହର ପିତା ନ ଜାଣି ସ୍ୱୟମ୍ବର କଲା
ଲକ୍ଷେ ନୃପତି ବରଣ କରିଣ ଆଣିଲା ।
କାହାକୁ ମୋହର ମନ ନ ବଳଇ ମୁନି
ଚିତ୍ରପଟ ମୋ ମନକୁ ନେଲା ମୁନି କିଣି ।
ଏହି ବର ଗୋଟି ଆଣିଦେବ ମୁନି ମୋତେ
ତୁମ୍ଭ ଚରଣେ ଭକତି ଥିବ ସଦା ଚିତ୍ତେ ।

ଅନ୍ତର୍ଦ୍ଧାନେ ମୁନି ଗଲେ ଦ୍ୱାରକା ଭୁବନେ
ଚଢ଼ି ମୁନି ଦଣ୍ଡ ମନପବନ ଯେ ଯାନେ ।
ପ୍ରବେଶ ହୋଇଲେ ଯାଇ ଭୁବନ ଦ୍ୱାରକା
ଦେଖିଲେ ଶାମ୍ବ କୁମର ବସିଅଛି ଏକା ।
ହୋଇଛନ୍ତି ସାତବଂଶ ତହିଁ ପଟୁଆରୀ
ଏକାନ୍ତେ ଶାମ୍ବକୁ ମୁନି କହିଲେ ହକାରି ।
ଜାମ୍ବବତୀର ନନ୍ଦନ ପ୍ରତ୍ୟକ୍ଷେ ମୋହନ
କାମଦେବ ପ୍ରାୟ ତାର ଦିଶଇ ବଦନ ।
କୃଷ୍ଣ ସାଦୃଶ୍ୟ ବିକ୍ରମ ବୀର୍ଯ୍ୟ କୃଷ୍ଣପ୍ରାୟ
ବଳରାମଙ୍କ ସଦୃଶ୍ୟ ଅଟେ ତେଜୋମୟ ।
ପିତାମହଙ୍କ ସଦୃଶ୍ୟ ଅଟେ ତାର ବୁଦ୍ଧି
ମହିମା ମେରୁ ସାଦୃଶ୍ୟ କିବା ଜମ୍ଭଭେଦୀ ।
ପଣ୍ଡିତପଣରେ ସେହି ବୃହସ୍ପତି ସମ
ବୀର ପଣରେ ପ୍ରତ୍ୟକ୍ଷ ଦ୍ୱିତୀ କାଳଯମ ।
ଚଉରାଣୀ ଗୁଣ ତାର ନିରୁପନ୍ତି ମୁନି
ବିଚାରନ୍ତି ସେ ନାରଦ ଯିବି ଏହା ଘେନି ।
ଏତେ ବିଚାରି ଉଠିଲେ ତହିଁ ବ୍ରହ୍ମାସୁତ
ଶାମ୍ବ କୁମରକୁ ଚାହିଁ କହନ୍ତି ଗୁପତ ।
ନାରଦ ମୁନି ବୋଇଲେ ଶୁଣ ବାବୁ ଶାମ୍ବ
ତୋହର ନିମନ୍ତେ ସିନା ଆମ୍ଭର ଆରମ୍ଭ ।
ଆମ୍ଭଙ୍କୁ ବଧାଇ ଦେବୁ ତୁହି ନରଶ୍ରେଷ୍ଠ
କନ୍ୟା ଏକ ଠାବକଲୁ ପ୍ରଦ୍ୟୁମ୍ନ କନିଷ୍ଠ ।
ଅଭୟ ବାରସ୍ୱତୀ ଏ ଭୁବନ ଦ୍ୱାରକା
ଅନେକ ସ୍ତିରୀ ଅଛନ୍ତି କେ କରିବ ଲେଖା ।
ପ୍ରଭାବତୀ ଦ୍ୱାରାବତୀ ଭୁବନ ମୋହିନୀ
କାଳିନ୍ଦୀ ନୀଳେନ୍ଦ୍ରି ଆଦି ଯେତେକ କାମିନୀ ।
ରୂପକୁ ଯେ ପଟାନ୍ତର ନାହିଁ ତିନିପୁରେ
ଏମାନେ ତାହାକୁ ଲକ୍ଷ୍ୟ ନୋହିବେ ରୂପରେ ।
ସୋମବଂଶୀ ରାଜା ନାମ ମାନଚକ୍ରବର୍ତ୍ତୀ
ଅତିମାନେ ସେହୁ ମାନଗୋବିନ୍ଦ ନୃପତି ।
ତାହାଙ୍କର ଦୁହିତା ଯେ ଚନ୍ଦ୍ରାବତୀ ବାଳୀ
ସେ ତୋହର ରୂପଗୁଣେ ସରି ହେବାଭଳି ।
ତୁହି ପୁରୁଷରତ୍ନ ସେ ସ୍ତିରୀରତ୍ନ ଏକା
ତିନିଭୁବନର ମଧ୍ୟେ ପଟାନ୍ତର ଯୋଖା ।
ଯେତେ କନ୍ୟା ଏ ଦ୍ୱାରାକାପୁରେ ରହିଛନ୍ତି
ତାହାର ରୂପକୁ କେହି ସମାନ ନୁହନ୍ତି ।
ଅତି ହିଁ ସୁସଞ୍ଚ ଦିଶୁ ଅଛଇ ମୃଗାକ୍ଷୀ ।
କେଉଁ ଦେବତା ତାହାକୁ ନିର୍ମାଣ କରିଛି ।
କୁଞ୍ଚିତ କେଶ ତହିଁରେ ନୀଳାର ଖଞ୍ଜାଣୀ
ଅତି ତୀକ୍ଷ୍ଣ ନୁହଇ ସେ ଅଟଇ ସୁଠାଣୀ ।

ରତ୍ନ ଖଞ୍ଜିଲା ପରାୟେ ଲଲାଟର ପାଟି
ତହିଁ ଉପରେ ରହିଛି ସିନ୍ଦୂର ଟୋପାଟି ।
ନୟନର ଭ୍ରୂଲତା କି କାମଦେବ ଧନୁ
ପୁରୁଷ ମାତ୍ର ଦେଖିଲେ ଧରିବ କି ତନୁ ।
ତହିଁକି ଯେ ତୀକ୍ଷ୍ଣ ଶର ନୟନର ବାଣ
ତଡ଼ିତ ସୁନାକୁ ଜିଣି ଦିଶଇ ରସାଣ ।
ଏସନକ ଅଣକଟେ ଚାପଇ ସେ ଦୃଷ୍ଟି
ଲୌହ ପାଷାଣ ହୋଇଲେ ଯିବ ସେହୁ ଫାଟି ।
ଅବଲୋକନେ ତାହାର ଅଳପ ଚାହାଁଣୀ
ଅବହେଳେ ସଂସାରକୁ ପାରଇ ସେ ଜିଣି ।
ଏକା କଥାଏ ମାତ୍ରକ କଲା ପ୍ରଜାପତି
ମାରେ ତାରେ ସେ ଅମୂଲ୍ୟ ରୂପରତ୍ନ କାନ୍ତି ।
ନାସାକୁ ତା ପଟାନ୍ତର ତିଳପୁଷ୍ପ ପ୍ରଭା
ନୀଳ ଉତ୍ପଳକୁ ଜିଣି ଦିଶେ ମୁଖ ଶୋଭା ।
ଅଳପ ଅପାଙ୍ଗେ ଯେବେ କରଇ ସେ ଦୃଷ୍ଟି
ଦେଖିଲେ ମଦନ ଶରେ ଧୈର୍ଯ୍ୟ ଯାଏ ତୁଟି ।
ମଧ୍ୟଭାଗ ଅଟଇ ତା ଅତିହିଁ ସଂକୀର୍ଣ୍ଣ
ପଟାନ୍ତର କିସ ମତ୍ତଗଜ ଚାଲି ପୁଣ ।
ଘନ ପବନ ବହିଲେ ନ ପଡ଼େ ସେ ଭାଜି
ପୁଣି କେତେବେଳେ ତାକୁ ପାରିବକି ଗଞ୍ଜି ।
ଚାଲନ୍ତେ ସୁନ୍ଦରୀ ତାର ତପେ ପାଦଗତି
ସଂସାର ଜନେ ରହିବେ ଦେଖି ତାର ମୂର୍ତ୍ତି ।
ଜଳେ ଯେସନ କ୍ରୀଡ଼ନ୍ତି ରାଜହଂସପନ୍ତି
ତେସନକ ଶୋଭାବନ ଚାଲିବାର ଗତି ।
ଅଳତା ବିହୁନେ ଶୋଭା ତା ପାଦ ଅଙ୍ଗୁଷ୍ଠି
ଦେଖିବା ଜନମାନେଟି ଅଧୈର୍ଯ୍ୟ ହେବେଟି ।
ନାରଦ ବୋଇଲେ ବାବୁ ଶୁଣ ଶାମ୍ବବୀର
ଚନ୍ଦ୍ରାବତୀ ନାମ ଜାଣ ଅଟଇ ତାହାର ।
ପିତା ଦୁର୍ଯ୍ୟୋଧନ ତାର ମାତା ଭାନୁମତୀ
ମାତୁଳ ଅଂଶ ତାହାର ଭୂମନ୍ୟୁ ନୃପତି ।
ପିତା ମାନଗୋବିନ୍ଦ ଯେ ସୋମବଂଶ ବସି
ବାଛିବାକୁ କୁଳ ଗୋତ୍ର ନାହିଁ ତାର କିଛି ।
ଏବେ ତୃତୀୟ ପ୍ରହର ଦିନକର ଜ୍ୟୋତି
ନିଶା ଅର୍ଦ୍ଧମାନେ ତୁହି ଭେଟିବୁ ଯୁବତୀ ।
ଶୁଣିଣ ସାନନ୍ଦ ଜାମ୍ବବତୀଙ୍କ ନନ୍ଦନ
କୃଷ୍ଣର ସମାନ ଦିଶେ ତାର ରୂପବର୍ଣ୍ଣ ।
ପୁଷ୍ପକ ଆରୋହି ତହୁଁ ଚଳଇ କୁମର
ନାରଦ ମୁନି ଅଛନ୍ତି ସଙ୍ଗତେ ତାହାର ।
ଯମୁନା କୂଳେ ପର୍ବତ ପାଏ ଅତି ଶୋଭା
ଦିଶଇ ସେ ପର୍ବତକୁ ହସ୍ତିନାର ସଭା ।

ଦିହୁଡ଼ି ତେଜେ ହୋଇଛି ଯେ ଆଲୋକମୟ
ରାତ୍ରି ଦିଶୁଅଛି ତହିଁ ଆଲୋକ ପରାୟ ।
ଶାମ୍ବ ପଚାରଇ ମୁନି କେମନ୍ତେ ଏ ସଭା
କେଉଁବାଟେ ଯାଇ ଆମ୍ଭେ ତହିଁରେ ପଶିବା ।
ଆଗରେ ନାରଦ ମୁନି ପଛରେ କୁମର
ପ୍ରବେଶ ହୋଇଲେ ଯାଇ ମେଢ଼ପାରୁଶର ।
ନାରଦ ବୋଇଲେ ବାବୁ ଏଥେ ଥାଅ ବସି
କନ୍ୟା ତୁଲେ ଆମ୍ଭେ ଆସୁ ବଚନ ସମ୍ଭାଷି ।
ଏତେ ବୋଲି ମୁନି ତହୁଁ ଅନ୍ତରୀକ୍ଷେ ଗଲେ
କନ୍ୟାର ନିକଟେ ଯାଇ ପ୍ରବେଶ ହୋଇଲେ ।
ମୃଦୁସୁଲୀଏ କହନ୍ତି ଶୁଣ ତୁ ଗୋ ମାଏ
ତୋହର ଅର୍ଥେ ଅଇଲେ ଏଥେସର୍ବ ରାୟେ ।
ରାଜାମାନଙ୍କର ତୁ ଗୋ ଦେଖି ବର୍ଣ୍ଣଚିହ୍ନ
ତୋହର ସାଦୃଶ୍ୟ ବର କର ଗୋ ବରଣ ।
ଚନ୍ଦ୍ରାବତୀ ବୋଇଲା ଗୋ ଶୁଣ ମୃଦୁସୁଲୀ
ରାଜାମାନଙ୍କର ବର୍ଣ୍ଣ ଚିହ୍ନ ହିଁ ଦେଖିଲି ।
ଯେତେ ସମାରୋହେ ଆସିଛନ୍ତି ନୃପବର
କାହାରି ଠାବରେ ମନ ନବଳେ ମୋହର ।
କଉଣସି ରୂପେ ମୋର ନ ବଳଇ ମତି
ଏହି ସ୍ୱୟମ୍ବର ମଧ୍ୟେ ନାହିଁ ମୋର ପତି ।
କେମନ୍ତ କରି ଅଛଇ ଅଭୟା ହିଙ୍ଗୁଳା
ପ୍ରାଣର ବିକଳ ସିନା ଜାଣଇ ମଙ୍ଗଳା ।
ଜୟ ତୁ ମଙ୍ଗଳା ମାଗୋ ଝଙ୍କଡ଼ ବାସିନୀ
ଜଗତଜନ ବୋଧିନୀ ଜଗତ ଜନନୀ ।
ସେ ଦେବୀ ଆଜ୍ଞାରେ ଫିଟେ କାଳଦଣ୍ଡ ଫାଶ
କଳିକଳୁଷ ତାରେଣୀ ଝଙ୍କଡ଼େ ତୋ ବାସ ।
ସେହୁ ସିଦ୍ଧ ଶାରଳାର ଚରଣେ ମୁଁ ଦାସ
ଜନ୍ମେ ଜନ୍ମେ ତୋର ନାମ କରଇ ଅଭ୍ୟାସ ।
ହେ ପ୍ରାଣୀମାନେ ବିଚାର କର ତୁମ୍ଭେ ମନେ
ଏ କଳିକାଳରୁ ତର ଶାରଳା ପ୍ରସନ୍ନେ ।
ଶ୍ରୀହସ୍ତରେ ଅର୍ଘ୍ୟ ଘେନି ବାଳୀ ଚନ୍ଦ୍ରାବତୀ
କରଇ ସେ ବନ୍ଦାପନା ସୁଖେ କାଳରାତ୍ରି ।
ସେ ଦେବୀ ସର୍ବମଙ୍ଗଳା ଚରଣେ ମୋ ସେବା
ଆପଦଖଣ୍ଡିନୀ ମୋତେ ସ୍ୱାମୀ ଦାନ ଦେବା ।
ଆପଣେ ଦେବୀ ଗୋ ଆସି ପରମ ସାନନ୍ଦେ
ତ୍ରୈଲୋକ୍ୟ ତାରିଣୀ ଖଣ୍ଡ ନ ପଡ଼େ ଆପଦେ ।
ଦର୍ଶନ ନିଷ୍ଫଳ ତୋର ନୋହେ ସର୍ବକାଳେ
ପରଦୁଃଖ କାରିଣୀ ଗୋ ଶ୍ରୀ ସର୍ବମଙ୍ଗଳେ ।
ହୃଦୟେ ସାନନ୍ଦେ ତାର ବିଧ୍ୱଂସିତ ମନ
ସୁମରନ୍ତେ ସ୍ଫୁରୁଅଛି ତା ବାମ ନୟନ ।

ସୁଲଭ ଶକୁନ ଯହୁଁ ଦେଖିଲାକ ବାଳୀ
ବାମ ପାଖରେ ଛିଙ୍କିଲା ଏକ ମୃଦୁସୁଲୀ ।
ସୁଲଭ ଦେଖି ଆନନ୍ଦ ତାର ପଞ୍ଚମନ
ଏହି ସମୟେ ବିଜୟ କଲେ ତପୋଧନ ।
ପୂଜାସ୍ଥାନୁ ଉଠି ବାଳୀ ନାରଦଙ୍କୁ ଦେଖି
ଶତଦଣ୍ଡ ପ୍ରଣିପାତ କଲା ଶଶିମୁଖୀ ।
ନାରଦ ବୋଇଲେ ମନୋବାଞ୍ଛା ସିଦ୍ଧହେଉ
ଅଇସୁଲକ୍ଷଣୀ ହୁଅ ତୋର ଦୁଃଖ ଯାଉ ।
ନାରଦ ବୋଇଲେ ମାଗୋ ତୋହର ନିମନ୍ତେ
ବହୁତ ଠାବେ ବୁଲିଲୁ ଭାବି ହୃଦଗତେ ।
ତହୁଁ ବିଷ୍ଣୁର ଭବନେ ଦ୍ୱାରକାକୁ ଗଲୁ
ପୁରେ ପୁରେ ପଶି ତହିଁ ବର ଅନ୍ୱେଷିଲୁ ।
ରାମ ଅବତାରେ ଥିଲେ ଜାମ୍ବବ ଯେ ମନ୍ତ୍ରୀ
ତାହାଙ୍କୁ ଦୁହିତା ନାମ ଅଟେ ଜାମ୍ବବତୀ ।
ସେ କନ୍ୟା ପୁତ୍ର ପ୍ରତ୍ୟକ୍ଷେ ଅଟେ ଦ୍ୱିତୀକାମ
ତ୍ରଇଲୋକ୍ୟ ମୋହନ ଯେ ଶାମ୍ବ ତାରନାମ ।
ତୋହର ରୂପ ଗୁଣକୁ କହିଲି ମଣାଇ
ତେଣୁ ସନମତ କରି ଅଇଲାକ ସେହି ।
ଆସ ଆସ ଶାମ୍ବ ବୋଲି ଡାକିଲେ ସେ ମୁନି
ବିଜେ କଲେ ଯେ କୁମର ବୀର ଚୂଡ଼ାମଣି ।
ଶରୀର ଯେ ନିଷ୍କଳଙ୍କ ଅଗ୍ନି ତେଜୋମୟ
ଏକବଦନ କି ଶତ ଚନ୍ଦ୍ରମା ଉଦୟ ।
ନିଜ ପାଶେ ବାଳୀ ଯହୁଁ ଦେଖିଲା ପୁରୁଷ
କାମ ମୋହରେ ସେ ବାଳୀ ହୋଇଲା ହରଷ ।
ମୁଁ ଆଜ ଏ ପୁରୁଷକୁ ଲଭିବି କେମନ୍ତେ
ଏ ପୁଣ ଉପେକ୍ଷା କରି ଚଳିଯାନ୍ତି ମୋତେ ।
ଏତେକ ବିଚାରି ସେହୁ ହୋଇଲାକ ତୁନି
ଦରହସିତ ବଦନେ କହିଲେକ ମୁନି ।
ଗୋବିନ୍ଦ ପୁତ୍ର ମଧ୍ୟେ ଏ ଅଟେ ମୋକ୍ଷପାନ
ହୃଦୟେ ଭାବି ଏହାର ଭକ୍ତି ତୁହି ଘେନ ।
ତୋହର ମନକୁ ଯେବେ ଯୋଗାଏ ଏ ବୀର
ମାଳା ଦେଇଣ ବରଣ ବେଗେ ତୁହି କର ।
ନାରଦ ବଚନେ ମାନଗୋବିନ୍ଦ ଦୁଲଣୀ
ଶାମ୍ବ କଣ୍ଠେ ବନ୍ଧାଇଲା ନେଇ ରତ୍ନମାଳୀ ।
ନାରଦ ବୋଇଲେ ତୁହି ନିଶ୍ଚିନ୍ତେ ରହସି
ଏଥୁ ତୋତେ ଘେନିଯିବେ ଗୋବିନ୍ଦ ଯେ ଆସି ।
ଦେଖି ଧଇଲା କୁମରମଣି ତାକୁ କୋଳେ
ମେଢ଼ ଭିତରେ ପଶିଲା ଯାଇ ନିଶାକାଳେ ।
କୁମାର କୁମାରୀ ତହିଁ ହେଲେ ଏକଯୋଗ
ହେଲା ପୀରତି ଆବର ବଢ଼େ ଭାବରଙ୍ଗ ।

ସ୍ୱାମୀଏ ପାଇଲା ବାଳୀ ମନର ହିଆଳି
ବାଞ୍ଛା ପୂର୍ଣ୍ଣକଲା ମାନଗୋବିନ୍ଦର ବାଳୀ ।
ଜାମ୍ବବତୀର ନନ୍ଦନ ରତିଶାସ୍ତ୍ରେ ଜିତା
କ୍ରୀଡ଼ା କୁତୁହଳେ ରତ ହୋଇଲା ବନିତା ।
କାମେ ଅସାଷ୍ଟମ ହେଲା ଚନ୍ଦ୍ରାବତୀ ବାଳୀ
କଉତୁକ କ୍ରୀଡ଼ା କଲେ କୁମାର କୁମାରୀ ।
ଚନ୍ଦ୍ରାବତୀ ବୋଇଲେ ତୁ ମୋର ପ୍ରାଣନାଥ
ତୋର ବ୍ୟତିରେକ ମୋର ଆନେ ନାହିଁ ଚିତ୍ତ
ପିତା ଜନନୀ ପଛକେ ପାଆନ୍ତୁ ଯେ ଲାଜ
ବିଳମ୍ବ ନ କରି ନାଥ ବେଗେ ଯିବା ଆଜ ।
ତିମିର ତୁଟିଲା ଦେଖ ବାଜିଲାଣି ଶଙ୍ଖ
ଉଦେ ଦିନକର ତାମ୍ରଚୂଡ଼େ ଦେଲେ ଡାକ ।
ରଜନୀ ପାହିଲେ ନାଥ ହେବ ବଡ଼ ଦ୍ୱନ୍ଦ୍ୱ
ସଭାରେ ଅଛନ୍ତି ପୁଣି ଲକ୍ଷେକ ନରେନ୍ଦ୍ର ।
କେତେଦୂର ଏଠାବକୁ ଅଟେ ତୁମ୍ଭ ପୁର
ବେଗେ ଯିବା ବିମାନରେ ବସି ପ୍ରାଣେଶ୍ୱର ।
ଶାମ୍ବ ବୋଇଲା ଗୋ ପ୍ରିୟେ ନ କହ ଏ ବାଣୀ
ଶରୀର କମ୍ପଇ ମୋର ତୋର କଥା ଶୁଣି ।
ଚଉର୍ଯ୍ୟପଣେ ତ ତୋତେ ନିଅଇ ସୁନ୍ଦରୀ
ତସ୍କର ବୃତ୍ତି କଦାପି ନୁହଇ ଆମ୍ଭରି ।
ଚଉର୍ଯ୍ୟପଣେ ଯଦ୍ୟପି ନେବି ଶୁଭ୍ରକେଶୀ
ଦ୍ୱାରକାଭୁବନେ ଲାଜେ ନ ପାରିବି ପଶି ।
ବଳେ ଧରି ଯେବେ କନ୍ୟାରତ୍ନ ଆମ୍ଭେ ନେବୁ
ତେବେ କୃଷ୍ଣର ତନୁଜ ସିନା ବୋଲାଇବୁ ।
ଏମନ୍ତ ସେ ବିଚାରନ୍ତେ ପାହିଲାକ ରାତି
ଦେବାଳୟେ ଶଙ୍ଖଶବ୍ଦ ଶୁଭେ ଚଉକତି ।
ବିରାଜିଲା ମର୍ତ୍ତ୍ୟପୁରେ ଦିନକର ଜ୍ୟୋତି
ନିଦ୍ରାରୁ ଉଠିଲେ ସେନାପତି ନରପତି ।
ଯମୁନା ନଦୀରେ ସ୍ନାନ କରନ୍ତି ଯେ ରାୟେ
ନିତ୍ୟକର୍ମ ସାରି ଯାଇ ଆସ୍ଥାନେ ବିଜୟେ ।
ପରିବାରୀଙ୍କୁ ସେ ଆଜ୍ଞାଦେଲେ ଦଣ୍ଡଧାରୀ
ସଭାକୁ ଘେନି ଆସ ଗୋ ମୋହର କୁମାରୀ ।
ଆଜ୍ଞା ପ୍ରମାଣେ ଚଳିଲେ ତହିଁ ମୃଦୁସୁଲୀ
ମେଢ଼ର ଭିତରେ ଯାଇ ପ୍ରବେଶ ହୋଇଲୀ ।
ଶାମ୍ବକୁମାର ଅଛଇ ଦିବ୍ୟବେଶ ଧରି
ମେଢ଼ ଭିତରକୁ ଯାଇ ଦେଖିଲେ ଚତୁରୀ ।
ପରିବାରୀଏ କହିଲେ ବିନୟ ଯୁକତେ
ସଭାକୁ ବିଜୟ କର ସ୍ୱୟମ୍ବର ଅର୍ଥେ ।
ମିଳିଛନ୍ତି ରାଜାମାନେ ଏ ତୋର ଆଶେ
ଲକ୍ଷେ ଭ୍ରମର ଭ୍ରମନ୍ତି ଏକ ପଦ୍ମବାସେ ।

ଏମନ୍ତ ଦାସୀ କହନ୍ତି ପୁଣ ପୁଣ ବାଣୀ
ରାଜାମାନେ ଚାହିଁଛନ୍ତି ତୋତେ ଠାକୁରାଣୀ ।
ତୋହର ନ ଗଲେ ମାଗୋ ସ୍ୱୟମ୍ବର କାହିଁ
ରାଜା ଆଜ୍ଞାଦେଲେ ବିଜେ କର ଚନ୍ଦ୍ରମୁହିଁ ।
ଲକ୍ଷେକ ନୃପତି ତୋତେ କରିଛନ୍ତି ଆଶ
ତୁମ୍ଭେ ତାଙ୍କ ପ୍ରିୟବତୀ ହେବ ବେଗେ ଆସ ।
ହୋଇଅଛନ୍ତି ସମସ୍ତେ ସୁବେଶ ଭୂଷଣ
ବେଦୀରେ ବସିଅଛନ୍ତ ସମସ୍ତ ରାଜନ ।
ଅନେକ ପାଟଛତ୍ର ଯେ ଆବର ଚାମର
ଲକ୍ଷ ବନିତା ଚାମର ଢାଳନ୍ତି ଆଗର ।
ରାଜାଙ୍କୁ ବରିଅଛଇ ସେ ମାନଗୋବିନ୍ଦ
ଏସନ ବେଳେ ସଭାରେ ମିଳିଲେ ନାରଦ ।
ନାରଦ କହିଲେ ଆହେ ମାନଚକ୍ରବର୍ତ୍ତୀ
ଏଡ଼େ ସଭା ତୋର ବ୍ୟର୍ଥ ହୋଇଲା ସଂପ୍ରତି ।
ରକ୍ଷାକରି ନ ପାରିଲୁ ତୋହର ଦୁହିତା
ପରପୁରୁଷର ସଙ୍ଗେ ହେଲାଣି ଦୂଷିତା ।
ଏମନ୍ତ ବଚନ ଯହୁଁ କହିଲେ ନାରଦ
ଶୁଣିଣ ବରିସମନା ସେ ମାନଗୋବିନ୍ଦ ।
ଦୁର୍ଲ୍ଲଭ କଥା କହିଲେ ଆହେ ମହାମୁନି
ପଶିବାକୁ ଭାଜନ କେ ନରଦେହ ଘେନି ।
ବଳବନ୍ତ ପଣେ କେହୁ ପଶିବ ମୋ ପୁରେ
କାଳସର୍ପ ତୁଲେ କେହୁ ଖଣ୍ଡିଆଳି କରେ ।
ମୃଦୁସୁଲୀ ରାଇ ଆଜ୍ଞା ଦେଲେ ନରପତି
ମେଢ଼ରେ ପଶି ବୁଝିଲୋ ଏ କେମନ୍ତ ରୀତି ।
ମେଧାନାମେ ମୃଦୁସୁଲୀ ପଶିଲା ଭିତରେ
ଚନ୍ଦ୍ରାବତୀ ନିରୋଧିଲା ଆସି ତାକୁ ଦ୍ୱାରେ ।
ଅଗୋ ମୃଦୁସୁଲୀ ପେଶି ପଶଇ ଚତୁରୀ
ଦେଖିଲା କୁମର ଏକ ଶସ୍ତ୍ର ଅଛି ଧରି ।
ନିର୍ଧୂମ ଅନଳ ଜିଣି ବିରାଜେ ତା ତେଜ
କରେ ଧନୁ ଅଛି ପୁଣି ବିଷମ ନାରାଚ ।
ବିକ୍ରମ ସିଂହର ପ୍ରାୟେ ଦିଶେ ତାର ମୂର୍ତ୍ତି
ଚନ୍ଦ୍ରରୁ ଉଜ୍ଜ୍ୱଳ ଦିଶୁଅଛି ମୁଖକାନ୍ତି ।
ନାରୀଗଣ ଦେଖି ତାକୁ ହୋଇଲେ ତାଟକା
ଯମପୁରେ ଏକା ପଶେ ମନେ ନାହିଁ ଶଙ୍କା ।
କାହୁଁ ଅଇଲୁ ତୁ ବାବୁ କାହିଁ ତୋରଦେଶ
କେ ତୋହରି ପିତାମାତା କେଉଁପୁରେ ବାସ ।
କି କାରଣେ ପଶିଲୁ ତୁ ଏଥେଁ ନ ବିଚାରି
ଯମ ଭୁବନେ ପଶିଲୁ କେହ୍ନେ ଶସ୍ତ୍ର ଧରି ।
ଦେଖ ଏ ମାନଗୋବିନ୍ଦ ରାଜା ମହାକ୍ଷତ୍ରୀ
ଦୁଃଶାସନ ଭାଇ ତାର ଶକୁନି ଯେ ମନ୍ତ୍ରୀ ।
ସମୁଦ୍ର ଲଙ୍ଘିଲେ ପୃଥ୍ୱୀ ରହିବ ବା କାହିଁ
ଶାମ୍ବକୁମାର ଆଗରେ ମୃଦୁସୁଲୀ କହି ।
କୁମର ବୋଇଲା ଆଗୋ ଶୁଣ ମୃଦୁସୁଲୀ
ଚନ୍ଦ୍ରାବତୀ ହସ୍ତିନାର ନାଶିନୀ ଜାଣିଲି ।
ଏହାଯୋଗୁଁ ଆଜି ନାଶଯିବେ କଉରବେ
ସମସ୍ତ ରାଜା ମରିବେ ଏହାର ଅଭାବେ ।
ମୃଦୁସୁଲୀ ବୋଇଲା ତୁ ବଡ଼ଲୋକ ବଳା
ସ୍ତିରୀଯୋଗୁ ନ ମର ତୁ ବେଗେ ଏଥୁ ପଳା ।
ସୁକୁମାର ସୁନ୍ଦର ତୁ ବଳେ ବଳବନ୍ତା
ତୋର ନାଶଗଲେ ଦୁଃଖୀ ହେବେ ପିତାମାତା ।
ଶାମ୍ବ ବୋଇଲା ହସ୍ତିନା ପୁରକୁ ଅଇଲି
ଯାଇ କହ ଦୁର୍ଯ୍ୟୋଧନେ ଆଗୋ ମୃଦୁସୁଲୀ ।
କୁମରର ଦେଖିଲେ ଯେ ଯହୁଁ ଦୁଷ୍ଟମତି
ଦୁଃଶାସନ ଆଗେ ଯାଇ ବାରତା କହନ୍ତି ।
ଶୁଣିମା ହେଉ ଭୋ କୁରୁବଂଶ ଶିରୋମଣି
ମେଢ଼ର ବାରତା ଦେବ ଅଇଲି ଯେ ଘେନି ।
ଅଦ୍ଭୁତେ ପୁରୁଷେକ ଅଇଲାକ କାହୁଁ
ସେ ତୋହର ଦୁହିତାକୁ ପ୍ରଭୁ ମହାବାହୁ ।
ଶୁଣିଲା ଏମନ୍ତ ବାର୍ତ୍ତା ଯହୁଁ ଦୁଃଶାସନ
କରେ ଗଦା ଧଇଲା ସେ ଗାନ୍ଧାରୀ ନନ୍ଦନ ।
ଚଉଷଠି ଚଉଷଠି ଭାର ଗଦା ଘେନି
ଧାମଇଁ ସେ ଦୁଃଶାସନ ମଉମରୀ ଜାଣି ।
ସହସ୍ରେକ ରଥ ଦୁଇ ସହସ୍ରେକ ହସ୍ତୀ
ଅଗଣିତ ହୟ ବାରକ୍ଷଉଣୀ ପଦାତି ।
ଅନେକ ଶସ୍ତ୍ର ଆବର ଛନ୍ତି କରେ ଧରି
ଶତେପୁର କରି ମେଢ଼ ଚାରିପାଖେ ବେଢ଼ି ।
ଧର ଧର ମାର ମାର ପଡୁଅଛି ଡାକ
ଦୁନ୍ଦୁଭି ଶବଦ ଘାତେ କମ୍ପେ ପୃଥ୍ୱୀଯାକ ।
ଦୁର୍ଯ୍ୟୋଧନ ଆଗେ ଯାଇ କହିଲେକ ଚାର
ମେଢ଼ର ଚରିତ ତୁମ୍ଭେ ଶୁଣ ନୃପବର ।
ଅତୁଳ ପୁରୁଷ ଦେବ ତୁଳ ତାକୁ ନାହିଁ
ଚଉର୍ଯ୍ୟପଣେ ପଶିଲା ନ ଦେଖିଲେ କେହି ।
କନ୍ୟାକୁ ସେ ବିଡ଼ମ୍ବନା କଲା ଆଜ ରାତି
ବୁଝି ନ ପାରିଲୁ କେହି ସ୍ୱୟମ୍ବର ରୀତି ।
ସ୍ୱୟମ୍ବର କରି ଦେବ ପାଇଲି ତ ଲାଜ
ଦୂଷିତ ହୋଇଲୁ ଦେବ ନ ହୋଇଲା କାର୍ଯ୍ୟ ।
ରାଜାମାନେ ଯିବେ ଦେବ ଅପମାନ ପାଇ
ଏସନ ବିଡ଼ମ୍ବନ ତୋର କୁରୁସାଇଁ ।
ଶୁଣିଣ ମାନଗୋବିନ୍ଦ ପ୍ରଜ୍ୱଳିତ କାୟ
ରୋଷଭରେ ଗର୍ଜ୍ଜଇ ସେ କାଳସର୍ପ ପ୍ରାୟ ।

ହସ୍ତରେ ଖଡ଼ଗ ଧରି କୋପେଣ ପ୍ରଚଣ୍ଡ
ଆଜ ଆରେ ଚୋର ତୋର କାଟିବଇଁ ମୁଣ୍ଡ ।
ରଥ ରଥି ଗଜ ଅଶ୍ୱ ସଇନି ପଦାତି
ରାଜାର ଆଜ୍ଞା ପାଇ ସେ ବେଗେରେ ଧାମନ୍ତି ।
ଉଚ୍ଚବାଚ ହେବା ଦେଖି ବୋଇଲେ ଯୁଧିଷ୍ଠି
ଗୁପତେ ଏକଥା ହେଲା ହୋଇବ ଅରିଷ୍ଟି ।
ପାପ କଥାକୁ ଗୁପତ କରି ନ ଯୋଗାଇ
ଲୋକରେ ଅଯଶ ପୁଣି ଆପେ ନାଶଯାଇ ।
ଦୁହିତାର ମନ୍ଦପଣ ନ ଜାଣିବେ ଲୋକେ
ଆମ୍ଭଙ୍କୁ ତ ମନ୍ଦବୋଲି ବୋଲିବେଟି ଥୋକେ ।
ବୋଇଲେ ଦୁରାକର୍ଣ୍ଣକୁ ରାଇ ଧର୍ମସୁତ
ମନ୍ଦ କପାଳରୁ ବାବୁ ହୋଇଲା ଏମନ୍ତ ।
ପ୍ରାଣେ ନ ମାରି ତାହାକୁ ଧରି ରଖିଥିବା
ସ୍ୱୟମ୍ବର ସାରିଲେଟି ବିଚାରି ମାରିବା ।
କାହାର ପୁତ୍ର ତାହାର କିଏ ପୁଣି ପିତା
କେବଣ କୁଳଗୋତ୍ରୀ ସେ କେ ତାହାର ମାତା ।
ଏସବୁ ବିଚାର କରି କରିବାନା କାର୍ଯ୍ୟ
ଲୋକେ ଏକଥା ଶୁଣିଲେ ହେବ ବଡ଼ ଲାଜ ।
ଏବେ ତୁ ପ୍ରାଣେ ନ ମାର ଉପୁଜିବ ଗୋଳ
ଲଜ୍ଜା ପାଇବେ ସକଳ ଦେଶ ମହୀପାଳ ।
ଯୁଧିଷ୍ଠିଙ୍କ ବଚନରେ ଗଲା ଦୁରାକର୍ଣ୍ଣ
ତୁଲେ ଘେନି ପାଞ୍ଚଲକ୍ଷ ଯୋଦ୍ଧାଥାଟ ସୈନ୍ୟ ।
ମେଢ଼ର ଦୁଆରେ ଯାଇ ହୋଇଲା ପ୍ରବେଶ
ଆରେ ସ୍ତିରୀଚୋର ତୁହି ବେଗ ହୋଇଆସ ।
ବିକଳ ହୋଇ ରୋଦନ କରେ ଚନ୍ଦ୍ରାବତୀ
ଏଥେ କିବା କାର୍ଯ୍ୟ ସ୍ୱାମୀ ଯିବା ଦ୍ୱାରାବତୀ ।
ଦୁଃସହ ସଙ୍କଟୁ ନାଥ ବର୍ତ୍ତିବା କେମନ୍ତେ
ଶତେପୁର କରି ନାଥ ବେଢ଼ିଲେଣି ତୋତେ ।
ଜୟ ଜୟ ମାତା ତୁ ଗୋ ଆପଦ ଖଣ୍ଡିନୀ
ଜୟ ମାତା ସୁରପୁର ବିଦିତ ହାରିଣୀ ।
କୁମର ମୁଖକୁ ଦେଖି ବହୁତ ବିକଳ
ଢଳ ଢଳ ନୟନରୁ ବହେ ଅଶ୍ରୁଜଳ ।
ପୁଣି ସୂତାରେ ମୁକୁତା ଗୁନ୍ଥିଲେ ତେସନ
ଭୋ ପ୍ରାଣନାଥ ତୋହର ଲୋତକ କେଶନ ।
ଭୋ ପ୍ରାଣନାଥ ତୋହର ଘେନଇ ଆପଦ
ଯେସନେ ତୋତେ ଏଠାରେ ନ ପଡ଼େ ପ୍ରମାଦ ।
ନ କାନ୍ଦ ସୁମର ବୋଲି ବୋଲେ କୃଷ୍ଣବାଳ
ହସ୍ତରେ ଅଞ୍ଚଳ ଘେନି ପୋଛେ ଅଶ୍ରୁଜଳ ।
ତୁ ସଖୀ ନ ଜାଣୁ ମୋର ବଳ ପରାକ୍ରମ
ସ୍ଥିର ହୋଇ ଦେଖ ବାରେ ବୋଲେ ବୀରଶାମ୍ବ ।

ଯୋଦ୍ଧାଏ ଡାକନ୍ତେ ଜାମ୍ବବତୀର ଯେ ବଳ
ହସ୍ତରେ କୁମରମଣି ଧରି ଖଡ଼୍ଗଫଳା ।
ମେଢ଼ରୁ ବାହାର ହୋଇ ବିକ୍ରମ ମୁରତି
ତତକ୍ଷଣେ ଛେଦିଲା ସେ ବେନି ସେନାପତି ।
ପୁଣି ଖଡ଼ଗ ପ୍ରହାର କରନ୍ତେ ସେ ରାଗେ
ବେନିଯୋଦ୍ଧା ପଡ଼ନ୍ତେ କେ ନ ରହିଲେ ଆଗେ ।
ଦୂରରୁ ଥାଇ ଦେଖିଲା ତାହା ଦୁଃଶାସନ
ପବନହୁଁ ବେଗ ହୋଇ ଧାମଇ ବହନ ।
ହସ୍ତରେ ଗଦା ଘେନିଣ ସେହି ବୀରମଣି
ମେଢ଼େ ଉଠିଲା ବିକ୍ରମସିଂହ ମୂର୍ତ୍ତି ଜାଣି ।
ଚନ୍ଦ୍ରାବତୀ ବୋଇଲା ତୁ ଏକା ବଳବନ୍ତା
ଏ ଚଣ୍ଡାଳ ଦୁଃଶାସନ ଅଟଇ ଖୁଡୁତା
ପୃଥିବୀ ଚମକି ପଡ଼େ ଯାର ସିଂହନାଦେ
ପ୍ରତିଜ୍ଞାବନ୍ତ ବୋଲନ୍ତି ଏ ପୃଥିବୀ ମଧ୍ୟେ ।
ଯୋଦ୍ଧାଙ୍କ ମଉଡ଼ମଣି ଧାଇଁଯାଇ ବେଗେ
ମେଢ଼ର ଉପରେ ଯାଇ ମିଳିଲା ସେ ରାଗେ ।
କୋପେ ପ୍ରଜ୍ୱଳିତ ସେହି ଯଦୁକୁଳକଣ୍ଠା
ହାତେ ଧରିଛି ଦୁର୍ଦ୍ଦଣ୍ଡ ନାମେ ଏକ ଖଣ୍ଡା ।
ଦେଖି ବିସ୍ମୟ ହୋଇଲା ଗାନ୍ଧାରୀର ବାଳ
ବଳିୟାର ଚୋର ଏହା ତେଜ ଅନର୍ଗଳ ।
ମେଢ଼ର ଭିତରେ ପଶି ହରିଲା କୁମାରୀ
ଶସ୍ତ୍ର ଧରି ମୋ ଛାମୁକୁ ଆସୁଛି ଆହୁରି ।
ଦୁଃଶାସନ ସଙ୍ଗତରେ ଥିଲେ ଯେତେ ଯୋଦ୍ଧୀ
ବୋଇଲେ ଚୋରକୁ ଚାଲ ଘେନିଯିବା ବାନ୍ଧି ।
କେ ବୋଲଇ ମୁଣ୍ଡ କାଟି ଘେନିବା ପରାଣ
କେ ବୋଲଇ ନ ମାର ହେ ଯୁଧିଷ୍ଠିଙ୍କ ରାଣ ।
ରେରେକାର କରି ଧାଇଁଗଲେ ଯୋଦ୍ଧାଗଣ
ଶସ୍ତ୍ର ଧରି ବୋଲନ୍ତି ଯେ ବିକୃତ ବଚନ ।
ବଳିଷ୍ଠ ପଣେ ଧାଇଁଲେ ଶସ୍ତ୍ରକୁ ବୁଲାଇ
ମେଢ଼ରୁ ଶାମ୍ବକୁମର ଆସେ ବେଗେ ଧାଇଁ ।
ହାତେ ଖଣ୍ଡା ଘେନିଅଛି ମହା ତେଜୋମୟ
ଏକ ପ୍ରହାର ମରନ୍ତି ଛିଡ଼ି ଯୋଦ୍ଧାଚୟ ।
ବେଢ଼ି ରହିବାକୁ କରୁଅଛନ୍ତି ସେ ବୁଦ୍ଧି
ପାଞ୍ଚଶତ ଯୋଦ୍ଧାଙ୍କୁ ଯେ ପକାଇଲା ଛେଦି ।
ପଳାଇଲେ ସୈନ୍ୟ ଶସ୍ତ୍ରମାନଙ୍କୁ ପକାଇ
ଦୁଃଶାସନ ଆଗେ ବେଗେ କହିଲେ ସେ ଯାଇ ।
ସ୍ୱାମୀ ପଞ୍ଚାଶତ ଯୋଦ୍ଧା କଲାଣି ନିପାତ
ବ୍ରଜହୁଁ ଆଣ୍ଟ ତାହାର ଜାଣ ଶସ୍ତ୍ରାଘାତ ।
ପ୍ରତ୍ୟକ୍ଷେ ପରଶୁରାମ ତେଜପ୍ରାୟେ ଦିଶେ
କାର୍ତ୍ତିକେଶ୍ୱର ପରାୟେ ଶଉର୍ଯ୍ୟ ପ୍ରକାଶେ ।

କ୍ଷତ୍ରିୟ କୁଳରେ ତାର ବଢ଼ାଇ ମହିମା
ଯୋଦ୍ଧାଙ୍କ ଉପରେ ତାର ଅଶେଷ ଗାରିମା ।
ବଦନ୍ତି ଅଗସ୍ତି ଶୁଣ ବୈବସ୍ୱତ ମନୁ
ବିଜୟ ମାନଗୋବିନ୍ଦ ସ୍ୱୟମ୍ବର ସ୍ଥାନୁ ।
ନିର୍ଝର ଦେଶର ରାଜା ନାମ ଗଣପତି
ବୋଇଲା ତୁମ୍ଭ ଦୁହିତା ଆଣ ହେ ନୃପତି ।
ଦୁର୍ଯ୍ୟୋଧନ ହିଁ ସମସ୍ୟା ଦେଲା ସେ ରାଜାଙ୍କୁ
ଏହିକ୍ଷଣି ମୋ ଦହୁବା ଆସିବ ସଭାକୁ ।
ଆଜ୍ଞାଦେଲା ରାଜା ମୃଦୁସୁଲୀକୁ ଯେ ରାଇ
ଚନ୍ଦ୍ରାବତୀକି ଆଣ ଯା ବେଶ ଯେ କରାଇ ।
କରଯୋଡ଼ିଣ କହଇ ତାଙ୍କୁ ମୃଦୁସୁଲୀ
ଦୁର୍ଲ୍ଲଭ ଚରିତ ଦେବ ଅପୂର୍ବ ଦେଖିଲି ।
ତିନିଶତ ଯୋଦ୍ଧା ଦେବ ପଡ଼ିଲେଣି ରଣେ
ଥାଟ ମର୍ଦ୍ଦନ କରୁଛି ସେହି ଏକା ଜଣେ ।
ଶୁଣି ବିରସ ହୋଇଲା ରାଜା କୁରୁସାଇଁ
ଦୁଶାସନ ଦୁର୍ଜ୍ଜୟ ଏ ଗଲେ ମୋର କାହିଁ ।
ଏତେ ବୋଲିରାଜା ତହୁଁ ମହାକୋପଭରେ
ସନ୍ତାପେ କର୍ମକୁ ନିନ୍ଦି ବସିଲା ସଭାରେ ।
ଏଥୁଅନ୍ତେ ଶୁଣ ମେଢ଼ ସ୍ଥାନର ଯେ କଥା
ଶୁଣ ଆହେ ମନୁରାୟ ତହିଁର ବ୍ୟବସ୍ଥା ।
ସଂଗ୍ରାମରେ ଅପମାନ ପାଇ ଦୁଃଶାସନ
ଚାରିଶତ ପାରିଦଣ୍ଡ ସଙ୍ଗତେ ଘେନିଣ ।
ପାଞ୍ଚ ଅୟୁତ ସଙ୍ଗରେ ପଦାତି ସଇନ୍ୟ
ଏତେ ମୋତେ ଯୋଦ୍ଧା ଘେନି ବେଢ଼େ ଦୁଃଶାସନ ।
ଦେଖିଣ ବିକଳ ହେଲା ବାଳୀ ଚନ୍ଦ୍ରାବତୀ
ନ ଜାଣି ପାମରୀ ମୁହିଁ ବଳାଇଲି ପ୍ରୀତି ।
ସ୍ୱାମୀକି ମୁଁ ମରାଇଲି ତଥ୍ୟ ନ ଜାଣିଲି
ଏକୁଳେ ସେକୁଳେ ମୁହିଁ କାହିଁର ନୋହିଲି ।
ଅଜ୍ଞାତ ବାଳସ୍ତିରୀ ମୁଁ ନ ଜାଣଇ କଥା
ଏକା ଜଣକେ କି ରଣେ ହୋଇବ ଶକତା ।
ମୁହିଁ ଆପଦ ତୋହର ଘେନିଯାଇ ନାହା
ଆସ୍ଥାନେ ବସି ତୋହର ପୁରକୁ ତୁ ଯାଆ ।
ଶାମ୍ବ କୁମରେ ବୋଇଲା ଶୁଣ ପ୍ରାଣସଖୀ
ଏମାନେ ଶୃଗାଳ ମୁହିଁ ସିଂହ ଶଶିମୁଖୀ ।
ଏକ ଆରେକକୁ ଧରି ମାରିବଇଁ ଯୁଦ୍ଧେ
ଦେଖ ଦେଖ ମୋ ସମର ରଖି ରଣମଧ୍ୟେ ।
ଏତେକ ବୋଲି ବିକ୍ରମସିଂହ ଗତି କରି
ମେଢ଼ ଭିତରୁ ବାହାର ହେଲା ଖଣ୍ଡା ଧରି ।
ଭାଙ୍ଗିଗଲେ ଯୋଦ୍ଧାମାନେ ସଂଗ୍ରାମ ଉପେକ୍ଷି
ଶ୍ୟାମଳ ମେଘ ଯେସନେ ଉଡ଼ିଯାନ୍ତି ପକ୍ଷୀ ।

ମେଢ଼ର ଉପରୁ ବୀର ପଡ଼ିଲାକ ଡେଇଁ
କରଇ ସେ ରଣରଙ୍ଗ ଖଡ଼ଗ ବୁଲାଇ ।
ବଜ୍ରମୁଷ୍ଟି ଧରି ଦିଏ ଅସିପତ୍ର ଝୁଣି
ଅନେକ ପଦାତି ବଳ ପକାଇଲା ହାଣି ।
ପବନାଘାତେ ଯେସନେ ଝଡ଼େ ପକ୍ୱଫଳ
ଭାଙ୍ଗିଲେ ଯୋଦ୍ଧାଏ ଥୋକେ ପଡ଼ିଲେ ଭୂତଳ ।
ସୈନ୍ୟ ପଛକରି ଆଗ ହୁଏ ଦୁଃଶାସନ
ଦୁର୍ଜ୍ଜୟ ସେ ଦୁରାନ୍ତକ ସଙ୍ଗେ ଦୁରାକର୍ଣ୍ଣ ।
ଏହାଙ୍କ ମୂଳେ ଅନେକ ସୈନ୍ୟଘେନି ସଙ୍ଗେ
ଧନୁରେ ନାରାଚ ଯୋଚି ଧାଇଁଲେ ସେ ବେଗେ ।
ସହସ୍ରେକ ଯୋଦ୍ଧା ଏକମୁଖେ କଲେ ରଣ
ଶାମ୍ବକୁ ମାରନ୍ତି ଶସ୍ତ୍ରମାନ ଟାଣ ଟାଣ ।
ସମରେ ନିର୍ଭୟ ସେ ଯେ ଜାମ୍ବବତୀ ବାଳ
ବିଚିତ୍ର ଗତିକି କରେ ତେଜ ଅନର୍ଗଳ ।
ଯେସନେକ ଗଜ ପଶି ଭାଙ୍ଗେ ରମ୍ଭାବନ
ମାରି ଚୂର କରିଦେଲା କଉରବ ସୈନ୍ୟ ।
ଏକ ପ୍ରହାରେକ ଦଶ ବିଂଶତି ପଚିଶ
ପଳାନ୍ତି ସଇନ୍ୟ କେହି ନ ରୁହନ୍ତି ପାଶ ।
ଯେସନେକ ନୀଳମେଘେ ବିଜୁଳୀ ଝଟକେ
ରହି ନ ପାରନ୍ତି କେହି ଯୋଦ୍ଧା ଶାମ୍ବପାଖେ ।
ସମରେ ଶଉର୍ଯ୍ୟବନ୍ତ କଷା ଜଗଜ୍ଜେଠୀ
ମେଲା ମତ୍ତଗଜ ଯେହ୍ନେ ଏକସ୍ୱରେ ଉଠି ।
ପୁଣ ପୁଣ ପ୍ରହାରଇ ବୀରବର ଏକା
ଅଜାଯୁଦ୍ଧେ ବ୍ୟାଘ୍ର ଯେହ୍ନେ ଅଟଇ ନିଃଶଙ୍କା ।
ଏମନ୍ତେ ସେ ଦୁଃଶାସନ ଘେନି ସର୍ବଥାଟ
ମେଢ଼ ଉପରେ ଯିବାକୁ ନ ପାନ୍ତି ସେ ବାଟ ।
ବିଷମ ସମର ଶାମ୍ବକୁମରର ଦେଖି
ଦୁଃଶାସନ ପଚାରଇ ଧର୍ମ ଯୁଧିଷ୍ଠିଙ୍କି ।
ସ୍ୱାମୀ ତୁମ୍ଭେ ଯେ ବୋଇଲୁ ଏ ଚୋରକୁ ଧର
ଗୁପତରେ ଶୋଇଥିବ ଗୋଳ ଯେ ନ କର ।
ଦେଖ ଅନେକ ସଇନ୍ୟ ପକାଇଲା ମାରି
ତୋହର ଆଜ୍ଞା ଭୋ ଦେବ ଭାଙ୍ଗିତ କେ ପାରି ।
ଯୁଧିଷ୍ଠି ବୋଇଲେ ମରୁଛନ୍ତି ଅକାରଣେ
ସାମାନ୍ୟ ନୁହଇ ସେହି ଅଟେ ବଡ଼ଜଣେ ।
ବାସବ ନନ୍ଦନ ଅବା ଅଟେ ଜୟସେନ
କି ଅବା ଅନଳ କରେ ସଇନ୍ୟ ନିଧନ ।
କି ଅବା କାର୍ତ୍ତିକେଶ୍ୱର ପାର୍ବତୀର ବାଳ
ବରୁଣର ନନ୍ଦନ କି ରୂପେ ଅନର୍ଗଳ ।
ଏକଥା ତଦନ୍ତ କରି ତୁମ୍ଭେମାନେ ଜାଣ
ତଥ୍ୟ କରି ଏ କଥାର ନିଶ୍ଚୟ ପ୍ରମାଣ ।

ଦେଖିଣ ବିବାଦ ବାବୁ ବୁଝି ଶୁଝି କର
ନିଷ୍ଫଳ ହେଲାଣି ଏଡ଼େ ବଡ଼ ସ୍ୱୟମ୍ବର ।
ଦିନକର ଦେବତା ଯେ ଆସି ଅସ୍ତଗଲା
ରାଜାଗଣ ମଧ୍ୟରେ ତ ଗୋଳ ଉପୁଜିଲା ।
ଏକାଦିନେ ସଭାମଧ୍ୟେ ଆଣିଲ କୁମାରୀ
ଏବେ ଗୋପ୍ୟ କରି ଚିତ୍ତେ କିସ ହିଁ ବିଚାରି ।
ଆସ୍ଥାନୁ ଉଠିଲା କାମେଶ୍ୱର ମହୀପାଳ
ମାନଗୋବିନ୍ଦଙ୍କୁ କହେ ବାକ୍ୟ ଅନର୍ଗଳ ।
ଏ ତୋହର କଥା କହ କେବଣ ବିଧାନ
କନ୍ୟାର ନିମନ୍ତେ ବର କରିଅଛୁ ଆନ ।
ରାଜାମାନଙ୍କୁ କିମ୍ପାଇ ଆଣିଲୁ ନିମନ୍ତ୍ରି
ଶୁଣି ବିରସ ହୋଇଲା ମାନଚକ୍ରବର୍ତ୍ତୀ ।
ଜୋକ ମୁଖରେ ଯେସନ ପଡ଼ଇ ଲବଣ
ସୂର୍ଯ୍ୟମୁଖେ ଯେସନେକ କୁସୁମ ମଳିନ ।
ମାନଗୋବିନ୍ଦ ବୋଇଲା କହିଲୁ କି ଜାଣି
ପଶ୍ଚିମେ ଯେବେ ଉଦୟେ ହେବେ ଦିନମଣି ।
ଲକ୍ଷେ ରାଜା ବରିଲି ମୁଁ ଦୁହିତା ନିମନ୍ତେ
ଉପୁଜିଲା ଏ ଦୁଃସହ କଥା ହୋ କେମନ୍ତେ ।
ପୁଣ ପୁଣ ବୋଲେ କାମେଶ୍ୱର ନରପତି
କନ୍ୟାକୁ ତୋହର ଆଣ ବୁଝିବା ସଙ୍ଗତି ।
ମାନଗୋବିନ୍ଦ ବୋଇଲା ଆଣୁଛି କୁମାରୀ
ଯେବେ ତୁମ୍ଭେ ଆଜ୍ଞା ଦେଲ ଆହେ ଦଣ୍ଡଧାରୀ ।
କାମେଶ୍ୱର ରାଜା ଯାଇ ସଭାରେ ବସିଲେ
ଏସନ ବେଳେ ନାରଦ ସେଠାରେ ମିଳିଲେ ।
ନାର[illegible] ବୋଇଲେ ଶୁଣ ଲକ୍ଷେକ ନୃପତି
ଦ୍ୱାର[illegible]ପୁର ଶ୍ରୀକୃଷ୍ଣ ଆସି ତ ନାହାନ୍ତି ।
ଚନ୍ଦ୍ର ନ ଥିଲେ ନିର୍ମଳ ତାରାରେ କି ନିଶି
ତୁମ୍ଭେ ମେ ତାରା ଶ୍ରୀକୃଷ୍ଣଚନ୍ଦ୍ର ଏକାଦଶୀ ।
ଏହା ଶୁଣିଣ ବୋଇଲା ଭୁପାଳ ନୃପତି
ଏ ଅଲକ୍ଷଣ ଦେଖିଲ କାହିଁ ବ୍ରହ୍ମଯତି ।
ତ୍ରିଦଣ୍ଡ ବୁଲାଇ ନିତ୍ୟକରି ବ୍ରହ୍ମଚାରୀ
ପରେ ଦୂଷିତା ହେଲାଣି ତେଣେ ସେ କୁମାରୀ ।
ଅଦ୍‌ଭୁତେ କୁମରେକ ପଶିଲା ତା ମେଢ଼େ
ଯାହାକୁ ବେଢ଼ି ଅଛନ୍ତି ସୈନ୍ୟ ଅତିଗାଢ଼େ ।
କୁମର ତୁଲେ କୁମାରୀ ବହୁତ ପୀରତି
ତୁମ୍ଭମାନଙ୍କୁ ବିଅର୍ଥେ ଆଣିଲେ ନିମନ୍ତ୍ରି ।
ମୁନି ବୋଇଲେ ପୁରକୁ ବିଜେ କରି ଯାଅ
ଯାବତ କାଳକୁ ତୁମ୍ଭେମାନେ ଲଜ୍ଜା ପାଅ ।
ନାରଦଙ୍କ ବଦନରୁ ଏ ବଚନ ଶୁଣି
ରାଜାଏ ଉଠିଲେ ହସ୍ତେ ଖଡ଼ଗକୁ ଘେନି ।

ଏଡ଼େକ ଦର୍ପ ତାହାର ହେଲା ମଧ୍ୟସ୍ୱର୍ଗେ
କନ୍ୟାଘେନି ଏଥୁ ଯିବ କେବଣ ହିଁ ବାଗେ ।
ରାଜାମାନଙ୍କର ଶୁଣି ଉଚ୍ଚବାଚ ବାଣୀ
ଯୁଧିଷ୍ଠିର ହକାରିଲେ ମନ୍ତ୍ରୀ ଚୂଡ଼ାମଣି ।
ବାବୁ ମେଢ଼ର ବାରତା କହ ସହଦେବ
କେହୁ ସେ ଅଟଇ ପୁଣି କହ ତାର ଭାବ ।
ସହଦେବ କହେ ଧର୍ମ କର୍ମ ସନ୍ନିଧାନେ
ସାବଧାନ ହୋଇ ଶୁଣ ଭୋ ଧର୍ମ ରାଜନେ ।
ବିଚିତ୍ର ଚରିତ୍ର ଏହୁ ବଡ଼ ବିଚକ୍ଷଣ
ମେଢ଼ ମଧ୍ୟେ ପଶିବାକୁ ଆନ କେ ଭାଜନ ।
ଶ୍ରୀକୃଷ୍ଣଙ୍କ ବାଳ ଜାମ୍ବବତୀର ନନ୍ଦନ
ତାହାର ନାମ ଅଟଇ ବୀରବର ଶାମ୍ବ ।
ତା ବିନୁ ମେଢ଼ ଯିବାକୁ କେ ଅଟେ ସାମର୍ଥ
ନାରଦ ମୁନି ଭିଆଇ ଅଛନ୍ତି ଏମନ୍ତ ।
ଲକ୍ଷେ ଷାଠିଏ ସହସ୍ର ଅଶୀଏ ନନ୍ଦନ
ଶାମ୍ବ କୁମର ଏଥକୁ କଲା ଆଗମନ ।
ଆଣନ୍ତି ଏଥେ ନାରଦ ବଡ଼ଇ ସରାଗେ
ମାନଗୋବିନ୍ଦ ନୃପତି କମ୍ପୁଅଛି ରାଗେ ।
ଆନର କୃତ୍ୟ ନୁହଇ ନାରଦ ଭିଆଣଇ
କୃଷ୍ଣର ପୁତ୍ର ବିନା କେ ଆନ ନୁହେ ଜାଣ ।
ସହଦେବଙ୍କ ମୁହଁରୁ ଏସନକ ଶୁଣି
ଯୁଧିଷ୍ଠି ଦେବ ହସିଲେ ମନେ ମନେ ଗୁଣି ।
ରାଜାମାନେ ଏଥୁଯିବେ ଲଜ୍ଜାଭର ହୋଇ
ବହୁ ଦ୍ୱନ୍ଦ୍ୱ ଉପୁଜିବ ଏଥିରୁ ଗୋସାଇଁ ।
ସହଦେବ ବୋଲେ ଏଥି ଉପୁଯିବ ଗୋଳ
ଅବଶ୍ୟ ନୃପତିଗଣ କରିବେଟି ରୋଳ ।
ସଭାରେ ନାରଦ ଯହୁଁ ସିଦ୍ଧାନ୍ତ କହିଲେ
ଶୁଣି ସର୍ବ ନରପତି ମହାକୋପେ କଲେ ।
ସମସ୍ତ ଦେଶ ରାଜାଏ ବେଗହୋଇ ଆସି
ଦୁର୍ଯ୍ୟୋଧନ ରାଜା ଆଗେ ବଚନ ସମ୍ଭାଷି ।
ଏ ତୋହର ଚରିତ ହୋ କେବଣ ପ୍ରକାର
କନ୍ୟା ହିଁ ପରେ ଦୂଷିତା ହେଲାଣି ତୋହର ।
ସଭାରେ ତଥ୍ୟ କହିଲେ ସେ ନାରଦ ମୁନି
ଏକଥା ବିଚାରି ମନେ ବୁଝ ନୃପମଣି ।
ମାନଗୋବିନ୍ଦ ବୋଇଲା ସାମାନ୍ୟ ଏ ବୁଦ୍ଧି
ଯାହାର ନାମେ କମ୍ପଇ ଭୟେ ଜମ୍ବୁଭେଦୀ ।
ଏ ଭୁବନେ ପଶିବାକୁ କାହାର ଭରସା
ଯମ ଭୁବନକୁ କେହି ବଳାଏ କି ଆଶା ।
ଆଜିର ମଧ୍ୟେ ସଭାକୁ ଆଣିବି କୁମାରୀ
ଏବେ ନିଜ ନିଜ ସ୍ଥାନେ ଥାଅ ବିଜେ କରି ।

ଦୁର୍ଯ୍ୟୋଧନର ବଚନେ ଗଲେ ସର୍ବରାୟେ
ଯେ ଯାହାର ସ୍ଥାନେ ଯାଇ କଲେକ ବିଜୟେ ।
ସ୍ନାନ ଭୋଜନାଦି କ୍ରିୟା ସାରିଲେ ନୃପତି
ଆଚମନ ସାରି ଦିବ୍ୟ ଆସନେ ବସନ୍ତି ।
ସେଠାରୁ ଯୁଧିଷ୍ଠି ଦେବ ଚଳିଗଲେ ବେଗେ
ଯାଇ ପ୍ରବେଶ ହୋଇଲେ କୁରୁପତି ଆଗେ ।
ଯୁଧିଷ୍ଠି ଦେବ ବୋଲନ୍ତି ଦୁର୍ଯ୍ୟୋଧନେ ଚାହିଁ
ଭୀଷ୍ମ ଦ୍ରୋଣ ଭୁରିଶ୍ରବା ବିଜେ କଲେ ତହିଁ ।
ଯୁଧିଷ୍ଠି ବୋଇଲେ ଶୁଣ ଗଙ୍ଗାଦେବୀ ସୁତ
ଏ ସ୍ୱୟମ୍ବର ଚରିତ ହୋଇଲା କେମନ୍ତ ।
ଦେଖିନାହୁଁ ଆମ୍ଭେ କେବେ ଏଡ଼େ ବିଡ଼ମ୍ବନ
ଏଡ଼େ ବଡ଼ କାର୍ଯ୍ୟଗୋଟା ହେଲା ଅକାରଣ ।
କେମନ୍ତେ କୁମାରୀ ପୁରେ ଗଲା ଏକେଶ୍ୱର
ରଥ ଗଜ ଯୋଦ୍ଧା ତାର ନାହିଁ ସଙ୍ଗତର ।
ସହଦେବ କେଉଁପରି ନ ଜାଣେ ଏ ବାଣୀ
ଶକୁନି ଜ୍ଞାତ ନୋହିଲା ମନ୍ତ୍ରୀ ଚୂଡ଼ାମଣି ।
ଦୂଷିତ ହୋଇଲେ ମାନଗୋବିନ୍ଦ ଯେ ରାଜା
ହସ୍ତିନା ପୁରକୁ ହେଲା ଆମ୍ଭକୁଳେ ଲଜ୍ଜା ।
ଯୋଦ୍ଧାଏ ନ ଘୁଞ୍ଚନ୍ତି ମନ୍ତ୍ରୀଏ କହନ୍ତି
ସଭାରେ ଗୋଳ ହୋଇବ ବଢ଼ିବ ଅଖ୍ୟାତି ।
ଭୀଷ୍ମ ବୋଇଲେ ତୁ ତୁନି ହୋଇଲୁ କି ଅର୍ଥେ
ଭୂତ ଭବିଷ୍ୟତ କଥା ଦିଶଇ ତ ତୋତେ ।
ସହଦେବ ବୋଲେ ଦେବ ସାବଧାନେ ଶୁଣ
ନାଶକାଳେ ବିପରୀତ ବୁଦ୍ଧି ହୁଏ ଜାଣ ।
ନିଷ୍କଳଙ୍କ ରାଜା ଏ ତ ମାନଚକ୍ରବର୍ତ୍ତୀ
ଦୁହିତା ଗୁଣେ ଦୂଷିତ ହୋଇଲା ଏ ଏଥି ।
ନାରଦ ମୁନି କହିଲେ ବିଚାର କରିବା
ଯଦୁବଂଶରୁ ଗୋଟିଏ ଆଣି କନ୍ୟା ଦେବା ।
ଅବିଗୁଣେ ଧଇଲେକ ରାଜା ତାହା ଶୁଣି
ମୋର ସାନଭାଇକି ସେ ଦେଇଛି ବହେଣୀ ।
ମୁଁ ତାହାର ପାଦ ପଖାଳିବି କି ଲୋଉଟି
ଯାଦବ କୁଳକୁ ନିନ୍ଦାକଲେ ଧାର୍ତ୍ତରାଷ୍ଟ୍ରି ।
ସେଠାବରୁ ଉପୁଜିଲା ବିପରୀତ କୃତ୍ୟ
ନାରଦ ଏଥେ ପାଇଲେ ଲଜ୍ଜା ହିଁ ବହୁତ ।
ଅନ୍ତରୀକ୍ଷ ମାର୍ଗେ ଗଲେ ସେ ମୁନି ଉତ୍ତମ
ରାମକୃଷ୍ଣ ନ ଜାଣନ୍ତି ଆଣିଲେ ତ ଶାମ୍ବ ।
ଯୁଧିଷ୍ଠି ବୋଇଲେ ଶୁଣ ଆହେ ଭୀଷ୍ମ ଦ୍ରୋଣ
ଚନ୍ଦ୍ରାବତୀକି ହରିଲା ଶାମ୍ବ ଯେବେ ଜାଣ ।
ସେ କନ୍ୟା କୁମର ପାଇ ଭଜିଲାଣି ଶାନ୍ତି
କୁମାରକୁ ବରିଲେ ତ ମନେ ନାହିଁ ଭୀତି ।

ଦୁର୍ଯ୍ୟୋଧନ ବୋଇଲାକ ହୋଇଲା ଅନର୍ଥ
ଆହେ ସହଦେବ ତୁମ୍ଭେ ଯାଅ ଯା ତୁରିତ ।
ଶାମ୍ବକୁ ବୋଲିବ ଚନ୍ଦ୍ରାବତୀ ଛାଡ଼ିଦେଉ
ସ୍ୱୟମ୍ବର ସ୍ଥାନେ ସେହି ବେଶ ହୋଇ ଯାଉ ।
ରାଜାମାନଙ୍କୁ ସେ ପଛେ ନ ବରୁ ସୁନ୍ଦରୀ
ସେ ଶାମ୍ବକୁମର ନେଉ ସ୍ୱୟମ୍ବରୁ ହରି ।
ରାଜାମାନେଟି ସମସ୍ତେ ପାଇଲେ ବାରତା
ଏହି ଚୋରିକଥା ସବୁଠାରୁ ବଳବନ୍ତା ।
ଚୋର ଧରି ମାର ବୋଲି ଶୁଭିଲାକ ଧ୍ୱନି
ଏକ କୁମରକୁ ଏକଲକ୍ଷ ନୃପମଣି ।
ଶୁଣି ବଇକୁଲ୍ୟ ମାନଗୋବିନ୍ଦ ଦୁଲଣୀ
ବେନି ନେତ୍ରୁ ଝରଝର ହୋଇ ବହେ ପାଣି ।
ସୂତାରୁ ମୁକୁତା ଝଡ଼ିଗଲେ କି ଭୂତଳେ
ପଡ଼ିଲାବାଳା କୁମର ପାଦ ଧରି ତଳେ ।
ହେ ନାଥ ତୁମ୍ଭଙ୍କୁ ମୁହିଁ କରେ ନିଉଛାଳି
ଅଳପ କଥା ତ ହେଲା ବହୁତର ଭଳି ।
କେବଣ ଭୁବନୁ ନାଥ ପ୍ରବେଶ କରିଲ
କାହାର ନନ୍ଦନ ନାଥ ମୋତେ ନ କହିଲ ।
ଆଶା ପାଇଣ ନିରାଶ ହେ କଳହ ପ୍ରିୟା
ମୁହିଁ ତୋହର ଆପଦ ଘେନିଯାଇ ନାହା ।
ବିମାନରେ ବସି ନାଥ ଯିବ ଅପସରି
ଅନ୍ତରୀକ୍ଷେ ଯିବା ପୁଣି ମେଢ଼ ଛାଡ଼ିକରି ।
କୁମର ବୋଇଲା ସଖୀ ନ ବୋଲ ଏ ବାଣୀ
ଶରୀର କମ୍ପଇ ମୋର ତୋହ କଥା ଶୁଣି ।
ଅଟନ୍ତି ଏ ଗଜଯୁଥ ସର୍ବ ଦଣ୍ଡଧାରୀ
ଏହାଙ୍କ ଉପରେ ମୁହିଁ ବିକ୍ରମ କେଶରୀ ।
କହୁଁ କହୁଁ କୁପିତ ସେ ବାସୁଦେବ ସୁତ
ରାଜାମାନଙ୍କର କୋପ ବଢ଼ିଲା ବହୁତ ।
ହସ୍ତକେ ଶାୟକ ହସ୍ତେ ଖଡ଼ଗର ଫଳା
ମେଢ଼ରୁ ବାହାର ହେଲା ଶ୍ରୀକୃଷ୍ଣର ବଳା ।
ଦେଖ ଦେଖ ଚୋରକୁ ହୋ ବୋଲନ୍ତି ସେ ରାୟ
ସାମାନ୍ୟ ଜନର ଏହୁ ନୁହଇ ତନୟ ।
କେବଣ ଦିଗପାଳର ଅଟଇ ଏ ବଳା
ମର୍ତ୍ତ୍ୟପୁର ନୁହଇ ଏ ମାନବର କଳା ।
ରାଜାଏ ବୋଇଲେ ଆମ୍ଭେ ହୋଇଲୁଣି ବନ୍ଦି
ଏ କନ୍ୟା ପାଇଁ ସମସ୍ତେ ହେଉଥାଉଁ ଧନ୍ଦି ।
ପଣ୍ଡିତ ରାଜାମାନେ ଯେ ଗଲେ ଅପସରି
ଧାଇଁଲେକ ଦୁଷ୍ଟ ରାଜାମାନେ ଶସ୍ତ୍ର ଧରି ।
ଶୁଣିବେ ବହୁତ ମନୁ ବନ୍ଦନ୍ତି ଅଗସ୍ତି
ଦେବ ଦାନବ ମାନବେ ନାହିଁ ତାର ଭୀତି ।

ପୁତ୍ର ନୀଳଲେଖରକୁ ଚାହିଁ ପଚାରିଲା
ସୁରେଖା ବାଳୀକୁ ଏଥେ ରଖିବା ବୋଇଲା ।
ପୋଇଲି ପରିବାରୀଏ ଏହା ସଙ୍ଗେ ଥାନ୍ତୁ
ନାନା କଉତୁକେ ତାର ମନକୁ ରଞ୍ଜନ୍ତୁ ।
ଏମନ୍ତ ଆଜ୍ଞା ଦେଇଣ ନୃପତି ଚଳିଲେ
କନ୍ୟାକୁ ନେଇ ଏକାନ୍ତ ଭୁବନେ ରଖିଲେ ।
ଏମନ୍ତେ ଥୋକାଏ ଦିନ ତହିଁ ବହିଗଲା
ନାନା ଦେଶକୁ ସେ ରାଜା ଦୂତ ପଠାଇଲା ।
ଅନେକ ଦେଶରେ ରାଜା ବୁଲାଇଲା ଚର
ଦୁହିତା ସମାନେ କାହିଁ ନ ପାଇଲା ବର ।
ବିସ୍ମୟ ହୋଇ ଭାଳଇ ମନରେ ନୃପତି
ଦୁହିତାଙ୍କୁ ବିଭା ଦେବି କାହାକୁ ସଂପ୍ରତି ।
ମନେ ମନେ ମହାରାଜା କରଇ ବିଚାର
ଦୁହିତା ବିଭା ନ କଲେ ନାହିଁ ପ୍ରତିକାର ।
ମନେ ଭାଳୁଥାଏ ରାଜା କାହାକୁ ନ କହି
ଏଣେ ପ୍ରତିଦିନ ରାଜା ମୃଗୟା କରଇ ।
ମାରଇ ବିରାହ ମୃଗ ହରିଣ ସମ୍ବର
ପ୍ରଜାମାନଙ୍କୁ ତା ବାଣ୍ଟିଦିଏ ନୃପବର ।
ରାଜା ପରସାଦେ ପ୍ରଜାଜନ ବଡ଼ସୁଖୀ
ବାଟକ ଭୂମିରୁ ପାଞ୍ଚଚିନା ସ୍ୱର୍ଣ୍ଣ ଲେଖି ।
ପରଜା ଗୁହାରିମାନ ବୁଝଇ ଆପଣେ
କାହାରି ପ୍ରତି ବିମୁଖ ନ ଧରଇ ମନେ ।
ନିଶ୍ଚିନ୍ତେ ରାଜ୍ୟ କରଇ ସେ କୃତଶେଖର
ଦୁହିତା କଥାରେ ଚିନ୍ତା ମନେ ଥାଏ ତାର ।
ଏଥୁଅନ୍ତେ ବୁଝ ଆହେ ବିଧାତାର କୃତ୍ୟ
ଦୁହିତା କର୍ମେ ଲେଖନ୍ତି ଯାହା ଦଇବତ ।
ବୈଶାଖ କୃଷ୍ଣ ତୃତୀୟା ଅଟେ ଶନିବାର
ସେଦିନ ରୋହିଣୀ ବୃଷଚନ୍ଦ୍ର ଏକମେଳ ।
ପ୍ରତିନାମେ ଯୋଗ ନବ ନାମରେ କରଣ
ସାଧକ ତାର ରାଜାର ହୋଇଛି ସେଦିନ ।
ସେଦିନ ନାରଦ ବୀଣା ଯନ୍ତ୍ରକୁ ବଜାଇ
ମଳି ଧୋକଡ଼ି ମୁଣିକୁ କାଖରେ ସେ ନେଇ ।
ବେଦଧ୍ୱନି କରି ମୁନି ହୋଇଲେ ବାହାର
କଳିପ୍ରିୟ ନ ରହନ୍ତି କାହିଁ ଏକଠାର ।
ସ୍ୱର୍ଗରୁ ଓହ୍ଲାଇ ମୁନି ମଞ୍ଚକୁ ଅଇଲେ
କୃତଶେଖର ନୃପତି ରାଜ୍ୟରେ ମିଳିଲେ ।
ମୁନିଙ୍କୁ ଦେଖିଲା କୃତଶେଖର ରାଜନ
ନମସ୍କାର କଲା ଯାଇ ମୁନିଙ୍କ ଚରଣ ।
କଲ୍ୟାଣ କରି ବସିଲେ ସେହି ମୁନିବର
ରାଜା ଦେଖି ପ୍ରଶଂସଇ ବ୍ରହ୍ମାଙ୍କ କୁମର ।

ରାଜ୍ୟର ବିଧି ଚରଚାମାନ ପଚାରିଲେ
ସବୁ ଭଲ ବୋଲି କୃତଶେଖର ବୋଇଲେ ।
ପୁତ୍ର ଯେ ନୀଳଶେଖର ଦେଖିଣ ଅଇଲା
ମୁନିଙ୍କ ଚରଣେ ସେହି ଓଳଗି ଶୋଇଲା ।
ଅନେକ କଲ୍ୟାଣ ତାକୁ କଲେ ତପୋବନ୍ତ
ଧନ୍ୟ ଧନ୍ୟ ରାଜା ତୁହି ଅଟୁ ଭାଗ୍ୟବନ୍ତ ।
ବିରୁପାକ୍ଷ ମନ୍ତ୍ରୀକୁ ଯେ ବହୁ ପ୍ରଶଂସିଲେ
ଏମନ୍ତେ ମୁନି ସେଠାରେ ପ୍ରହରେ ରହିଲେ ।
ରାଜାକୁ ମେଲାଣି ମାଗି ହୋଇଲେ ବାହାର
ମନଦଣ୍ଡ ଚଢ଼ି ତହିଁ ଗଲେ ମୁନିବର ।
ମେଢ଼ର ପାଖରେ ଲାଗି ଯାଉଛନ୍ତି ମୁନି
ମେଢ଼େ ଥାଇ ଦେଖ କୃତଶେଖର ନନ୍ଦିନୀ ।
ବୋଇଲେ ଏଣିକି ମୁନି ଅବଧାନ କଲେ
ମୋହର ମନବେଦନା କହିବି ଛାମୁରେ ।
ଏମନ୍ତ ଶୁଣିଏ ମୁନି ଭିତରକୁ ଗଲେ
ସୁରେଖା ଆସି ମୁନିଙ୍କୁ ନମସ୍କାର କଲେ ।
କଲ୍ୟାଣ କରି ବୋଲନ୍ତି ତାକୁ ମୁନିବର
ରୂପ ଦେଖିଣ ପ୍ରଶଂସା କରନ୍ତି ଅପାର ।
ଅହ୍ୟ ସୁଲକ୍ଷଣୀ ତୁହି ହୁଅ ଗୋ ନନ୍ଦିନୀ
ବହୁତ ପୁତ୍ର ତୋହର ହେଉ ଗୋ ତରୁଣୀ ।
ନାରାୟଣର ନନ୍ଦନ ହେଉ ତୋର ବର
ଏହା ଶୁଣିଣ ସୁରେଖା କରଇ ଉତ୍ତର ।
ଆଜିଯାଏ ମୁନି ମୁହିଁ ବିଭା ହୋଇନାହିଁ
ମୋହର ସମାନ ବର ନ ମିଳିଲା କାହିଁ ।
ତୁମ୍ଭେ ମହାମୁନି ଯେବେ ଦୟାକଲ ମୋତେ
ଭଲ ବର ଖୋଜିଆଣ ମୋହର ନିମନ୍ତେ ।
ମୁନି ବୋଇଲେ କହିବା କଥାଏ ଯେ ଆମେ
ତୋହର ସମାନ ବର ଅଛି ଏକଠାବେ ।
କୁଶସ୍ଥଳୀ ବୋଲି ନାମ ଦ୍ୱାରକାରେ ଅଛି
ଉଗ୍ରସେନ ନାମେ ରାଜା ରାଜ୍ୟ କରୁଅଛି ।
ତାହାର ଦୁହିତା ନାମ ଦଇବକୀ ବାଳୀ
ବୃଷ୍ଣିବଂଶ ବୋଲି ବିଭା ବସୁଦେବ ବରି ।
ତାହାଙ୍କ ପୁତ୍ର ଅଟନ୍ତି ରାମକୃଷ୍ଣ ବେନି
କଂସର ଡରେ ଗୋପରେ ରହିଲେ ସେ ପୁଣି ।
ଦଇବ ବଳେ ଅଣାଇ ଆପେ କଂସରାଣ
ରାମକୃଷ୍ଣଙ୍କୁ ଦେଖିଣ ହରାଇଲା ପ୍ରାଣ ।
କଂସର ଭାରିଯା ନାମ ହେତି ଯେ ପ୍ରହେତି
ଜରାସନ୍ଧ ରାଜା ତାଙ୍କ ପିଅର ଅଟନ୍ତି ।
ସେ ଯାଇ ଗୁହାରି କଲେ ପିତାଙ୍କ ଛାମୁରେ
ଉଗ୍ରସେନ ରାଜା ହୋଇଥିଲେ ମଥୁରାରେ ।

ତାହା ଉପରେ ଆସି କୁଶସ୍ଥଳିରେ ରହିଲେ
ଭୀଷ୍ମ ରାଜା ଦୁହିତାକୁ କୃଷ୍ଣ ବିଭା ହେଲେ ।
ତାହାର ନାମ ରୁକ୍ମିଣୀ ତାହାର ଉଦରେ
କାମଦେବ ଆସି ଜାତ ପୁତ୍ର ସ୍ୱରୂପରେ ।
ତାହାର ନାମ ପ୍ରଦ୍ୟୁମ୍ନ ପଟାନ୍ତର ନାହିଁ
ରତି କାମପ୍ରାୟ ତୁମ୍ଭେ ଦିଶିବ ଯେ ଦୁଇ ।
ଆମ୍ଭ ମନକୁ ଏମନ୍ତ ଆସଇ ଗୋ ମାୟେ
ମୁନିବର କହନ୍ତେ ସେ ସୁରେଖା ଅଥୟେ ।
ମୁନିଙ୍କ ଚରଣ ତଳେ ଦଣ୍ଡବତ କଲା
କେଉଁଦିନ ମୁନିବର ଆଣିବ ବୋଇଲା ।
ନାରଦ ବୋଇଲେ ବସି ଦିନ ଗଣୁଥାଅ
ଘେନି ଆସିବି ମୁଁ ଚାରିଦିନେ କୃଷ୍ଣପୁଅ ।
କଲ୍ୟାଣ କରିଣ ମୁନି ହୋଇଲେ ବାହାର
ମନଦଣ୍ଡ ଚଢ଼ିଗଲେ ଦ୍ୱାରାବତୀପୁର ।
ଦେଖିଲେ ଆସ୍ଥାନେ ଅଛି ଉଗ୍ରସେନ ରାଜା
ମୁନିଙ୍କୁ ଦେଖି ଉଠିଣ କଲେ ପାଦପୂଜା ।
ଉଦ୍ଧବ ଅକ୍ରୁର ଆଦି ଧନାଦୃଷ୍ଟ ମୂଳେ
ସଭାରେ ବସିଅଛନ୍ତି ଆସ୍ଥାନର ତଳେ ।
ବସୁଦେବ ଆଦି କରି ସାତ୍ୟକି ସହିତେ
ରାମକୃଷ୍ଣ ଭାଇ ବେନି ଅଛନ୍ତି ସମସ୍ତେ ।
ଏସନ ସମୟେ ମୁନି ନାରଦ ମିଳିଲେ
କୁଶଳ ବାରତା ପୁଚ୍ଛି କଲ୍ୟାଣ ବାଞ୍ଛିଲେ ।
ଉଗ୍ରସେନ ବୋଇଲେ ମୁଁ ତମ୍ଭ ପରସାଦେ
ଶୁଭେ ରାଜପଣ ବସି କରେ ପରମାଦେ ।
ରାମକୃଷ୍ଣଙ୍କୁ ବୋଲନ୍ତି ଚାହିଁ ମହାମୁନି
ପୁତ୍ର ପଉତ୍ର କୁଶଳ କହ ହଳପାଣି ।
ଗୋବିନ୍ଦ ବୋଇଲେ ମୁନି ତୁମ୍ଭର କଲ୍ୟାଣ
ସମସ୍ତେ ସୁଖେ ଅଛନ୍ତି ଏଥେ ସାବଧାନେ ।
ଗଉରବ ପାଇ ମୁନି ବସିଲେ ଆସ୍ଥାନେ
ଉଗ୍ରସେନ କହିଲେକ ସର୍ବ ସୁବିଧାନେ ।
କିଛି ହିଁ ବେଳ ତହିଁରେ ସେ ମୁନି ରହିଲେ
ଯାଉଅଛୁ ବୋଲି ତହୁଁ ମେଲାଣି ମାଗିଲେ ।
ରାଜା ବୋଇଲେ ଆଜକ ରହ ଆମ୍ଭପୁରେ
ନାରଦ ବୋଇଲେ କ୍ଷଣେ ନ ରହୁ ସୁସ୍ଥରେ ।
ନାମ ଆମର କଳହ ପ୍ରିୟ ଆମ୍ଭେ ଋଷି
ଏକଠାବେ ଆମ୍ଭେ କେବେ ନ ପାରୁ ଯେ ବସି ।
ଏତେ କହି ମୁନି ତହୁଁ ହୋଇଲେ ବାହାର
କୃଷ୍ଣର ମନ୍ଦିରେ ଯାଇ ମିଳିଲେ ତତ୍ପର ।
ଦେଖିଲେ ପ୍ରଦ୍ୟୁମ୍ନ ବସିଅଛି ଏକା ହୋଇ
ବ୍ରହ୍ମଶାଖା ମୁନି ତହୁଁ ମିଳିଲେକ ଯାଇ ।
ନାରଦଙ୍କୁ ଦେଖିକରି ପ୍ରଦ୍ୟୁମ୍ନ ଉଠିଲା
ମୁନିଙ୍କ ଚରଣ ତଳେ ପ୍ରଣମି ଶୋଇଲା ।
କଲ୍ୟାଣ କରି ବସିଲେ ତହୁଁ ମୁନିବର
ଗଉରବେ ପୂଜା କଲେ ପ୍ରଦ୍ୟୁମ୍ନ କୁମର ।
ବୋଇଲେ କାହିଁଥିଲ ହେ କଳିପ୍ରିୟ ଋଷି
ମୋହର ଆଗରେ ତାହା କହିବା ବିଶେଷି ।
ମୁନି ବୋଲେ ଥିଲୁ କୃତଶେଖର ରାଜ୍ୟରେ
ସେଠାରୁ ଆସିଲୁ ଆମ୍ଭେ ଦ୍ୱାରାବତୀ ପୁରେ ।
ପ୍ରଦ୍ୟୁମ୍ନ ତୁ ଯେ ଆମ୍ଭରି ଅଟୁ ପ୍ରାଣସଖା
ତେଣୁ ଅଇଲୁ ତୁମ୍ଭଙ୍କୁ କରିବାକୁ ଦେଖା ।
ସବୁକାଳେ ତୁ ଆମ୍ଭଙ୍କୁ ସେବା କରିଥାଉ
ଅପୂର୍ବ ବାରତା ଏକ ଆଣିଅଛୁ ତହୁଁ ।
କୃତଶେଖର ରାଜାର ଦୁହିତା ସୁରେଖା
ରୂପ ଗୁଣରେ ସେ ଅଟେ ରତି ସଙ୍ଗେ ଲେଖା ।
ଅତ୍ୟନ୍ତ ସୁନ୍ଦର ତାକୁ ପଟାନ୍ତର ନାହିଁ
ଡମ୍ବରୁ ମଝା ପରାୟ ମଝା ସରୁ ହୋଇ ।
ଉଲଟ ରମ୍ଭା ପରାୟ ତାର ବେନି ଜଙ୍ଘ
ମୃଣାଳ ଲତା ପରାୟ ତାର ଭୁଜଯୁଗ ।
ତା ନାସିକା ତିଳ ପୁଲ ପଟାନ୍ତର ନାହିଁ
ଶ୍ରୀଖଣ୍ଡ କପୋଳ ତାକୁ ତୁଳାଇବ କାହିଁ ।
ବିମ୍ବଫଳ ପ୍ରାୟ ତାର ଅଧର ଦିଶଇ
କୁଙ୍କୁମ ବର୍ଣ୍ଣ ପରାୟ କାୟା ପ୍ରକାଶଇ ।
ତୁ ତାହାକୁ ପଟାନ୍ତର ସେ ତୋତେ ଘଟଇ
ତେଣୁ ପ୍ରଦ୍ୟୁମ୍ନ ଅଇଲୁ ତୋତେ ଆମ୍ଭେ କହି ।
ଶୁଣିଲା ଯହୁଁ ତୋହର ରୂପ ଗୁଣ ବାଳୀ
ବୋଇଲା ସେ ବର ଆଣିଦିଅ ତପଶାଳୀ ।
ଏବେ ରଥ ସଜକର ବେଗହୋଇ ଯିବା
ରାମକୃଷ୍ଣ ନ ଜାଣନ୍ତୁ କନ୍ୟାକୁ ଆଣିବା ।
ମୁନି ଏସନ କହନ୍ତେ ପ୍ରଦ୍ୟୁମ୍ନ ହସିଲା
କନ୍ୟାର ରୂପ ଶୁଣିଣ ଶରଧା ବଳିଲା ।
ଦାରକ ସାରଥିକୁ ସେ ଏକାନ୍ତରେ ନେଇ
ପ୍ରଦ୍ୟୁମ୍ନ କହଇ ରଥ ସାଜିଆଣ ଯାଇ ।
ତାର ଆଜ୍ଞାରେ ଦାରୁକ ରଥ ସଜ କଲା
ଦିବ୍ୟବେଶ ହୋଇଯାଇ ରଥରେ ବସିଲା ।
କାମଦେବହୁଁ ଅଧିକ ଦିଶିଲାକ ଶୋଭା
କୃଷ୍ଣର କୁମର କିସ ପଟାନ୍ତର ଦେବା ।
ରଥ ଚଳାଇ ତିନିହେଁ ହୋଇଲେ ବାହାର
ରଥେ ନ ଦେଖିଲେ ତହୁଁ କୁମର ଯିବାର ।
ଦ୍ୱିଦିନେ କୃତ ଶେଖର ରାଜ୍ୟରେ ମିଳିଲେ
ଅଭ୍ୟନ୍ତର ସ୍ଥାନେ ମୁନି କୁମର ରହିଲେ ।

ରାତ୍ରି ପ୍ରଥମ ପ୍ରହର ହୋଇଲାକ ଯହୁଁ
ମେଢ଼ ଭିତରକୁ ମୁନି ପଶିଲେକ ତହୁଁ ।
ମୁନିଙ୍କୁ ଦେଖି କୁମାରୀ ଓଳଗି ହୋଇଲା
ବୋଲେ କିସ କୃତ୍ୟ କଲ ପଦ୍ମ ଯୋନିବଳା ।
ନାରଦ ବୋଇଲେ ଗଲୁ ଦ୍ୱାରବତୀପୁର
ସଙ୍ଗତେ ଘେନି ଆସିଲୁ କୃଷ୍ଣର କୁମର ।
ତୁ ଯହୁଁ ଆମ୍ଭଙ୍କୁ ଏହା କହିଲୁ ବିକଳେ
ତେଣୁ ସଙ୍ଗେ ଘେନି ଆମ୍ଭେ ଅଇଲୁ କୁମରେ ।
କୁମାରୀ ବୋଇଲା ଘେନିଆସ ମହାମୁନି
ଦେଖିଲେ ସିନା ପ୍ରତୀତି କରିବି ମୁଁ ପୁଣି ।
ଏତେ ବୋଲିଣ ନାରଦ ମୁନି ଚଳିଗଲେ
ପ୍ରଦ୍ୟୁମ୍ନକୁ ସଙ୍ଗେ ଘେନି ସେଠାରୁ ଅଇଲେ ।
ଦାରୁକକୁ ବୋଇଲେ ତୁ ଲୁଚି ଏଥେ ଥାଅ
ଆମ୍ଭର ଆସିବାଯାଏ ଏହିଠାରେ ରହ ।
ଏତେ ବୋଲି କୁମରକୁ ମୁନି ଘେନିଗଲେ
କନ୍ୟାର ପୁରେ ପ୍ରବେଶ କରାଇ କହିଲେ ।
ଏହି କୁମର ଗୋଟିକୁ ବର ତୁ ଗୋ ମାଏ
ସୁରେଖା ଚାହିଁଲା ତହୁଁ କୃଷ୍ଣର ତନୟେ ।
ଦେଖି କାମଶରେ ମୋହ ପାଇଲା ସୁନ୍ଦରୀ
ବହୁତ ପ୍ରଶଂସା କନ୍ୟା ମୁନିଙ୍କୁ ଯେ କରି ।
କୁମାର କୁମାରୀ ଯହୁଁ ହୋଇଲାକ ଭେଟ
ଆନନ୍ଦେ ହସି ବୋଲନ୍ତି ବ୍ରହ୍ମାଙ୍କର ଚାଟ ।
ବୋଇଲେ ସୁରେଖା ବର ରୁଚିଲାକି ତୋତେ
ଲାଜଭରେ କୁମାରୀ ଯେ ଚାହେଁ ନେତ୍ରପ୍ରାନ୍ତେ ।
କହୁଁ କହୁଁ ରାତ୍ର ଦୁଇ ପ୍ରହର ହୋଇଲା
କୁମାର କୁମାରୀଙ୍କର କଥା ନ ସରିଲା ।
ଅଗସ୍ତି ଯେ ବୈବସ୍ୱତ ମନୁଙ୍କୁ କହିଲେ
ଭେଟ କରାଇଣ ମୁନି ଅନ୍ତର୍ଦ୍ଧାନେ ଗଲେ ।
ପ୍ରଦ୍ୟୁମ୍ନ ସୁରେଖା ଦୁହେଁ ରହିଲେ ମେଢ଼ରେ
ହାସ ପରିହାସ ହେଲେ ବହୁତ ପ୍ରକାରେ ।
ପ୍ରଦ୍ୟୁମ୍ନ ବୋଇଲେ ଶୁଣ ଆଗୋ ପ୍ରାଣସହି
ଆମ୍ଭର ରାଜ୍ୟକୁ ଚାଲ ଯିବା ବେଗହୋଇ ।
ତୁମ୍ଭର ବାପା ଭାଇ ଯେ ଦେଖିଲେ କୋପିବେ
ଆମର ସହିତ ବହୁ ବାଦ ଆରମ୍ଭିବେ ।
କଳିଦ୍ୱନ୍ଦ୍ୱ ଏଥି ନିଶ୍ଚେ ହୋଇବ ଅପାର
କେହୁ ନ ଜାଣନ୍ତୁ ବସ ରଥର ଉପର ।
ଏତେ ବୋଲି ମେଢୁ ଦୁହେଁ ହୋଇଲେ ବାହାର
ଦାସୀ ପରିବାରୀମାନେ ଅଛନ୍ତି ସଙ୍ଗର ।
ଏତେ ବିଚାରୁ ଦାରୁକ ରଥ ଆଣିଦେଲା
କୁମାରୀ ଘେନି କୁମର ରଥରେ ବସିଲା ।
ଦାସୀ ପରିବାରୀମାନେ ଯେତେ ତହିଁ ଥିଲେ
କନ୍ୟାକୁ କୁମର ଯହୁଁ ଘେନି ଚଳିଗଲେ ।
ପରସ୍ପର ମଧ୍ୟେ ସେହି କରନ୍ତି ବିଚାର
ଜାଣିଲେ କୋପ କରିବେ ଆମ୍ଭଙ୍କୁ ନୃବର ।
ଶୀଘ୍ର ହୋଇ ତହୁଁ ଦାସୀ ପରିବାର ଗଲେ
ରାତ୍ର ନ ପାହୁ ରାଜାକୁ ଦରଶନ କଲେ ।
ନମସ୍କାର କରିଣ ଯେ ବୋଲନ୍ତି ଗୋସାଇଁ
ସାବଧାନ ହୋଇ ଶୁଣ ଆହେ ନରସାଇଁ ।
ଏକ ପୁରୁଷ ମେଢ଼ରେ କାଲି ପଶିଥିଲା
କନ୍ୟାର ସଙ୍ଗରେ ରାତ୍ରେ ଭେଟ ସେହୁ ହେଲା ।
ଦୁହେଁ ଏକମନ ହୋଇ ସଂଯୋଗ ହୋଇଲେ
ରୂପେ ପଟାନ୍ତର ଦୁହେଁ ଦୁହିଁଙ୍କୁ ଦିଶିଲେ ।
ରତି କାମଦେବ ପ୍ରାୟ ଦିଶିଲେ ସେ ଶୋଭା
ନାହିଁ ପଟାନ୍ତର ତାଙ୍କୁ କି ଉପମା ଦେବା ।
କୁମାରୀକୁ ବଳେ ଘେନି ରଥେ ବସାଇଲା
ଆକାଶ ମାର୍ଗରେ ବଳେ ରଥ ବାହିନେଲା ।
ଆମ୍ଭ ମଧ୍ୟରୁ ଜଣଙ୍କୁ ସଙ୍ଗେ ସେ ନ ନେଲେ
ଏକା ହୋଇଣ ସୁରେଖା ତାଙ୍କ ସଙ୍ଗେ ଗଲେ ।
କୃତଶେଖର ରାଜାର ଉଡ଼ିଲା ସାହସ
ବୋଇଲେ ଆଉ ବେଳେଲୋ କହ ମୋର ପାଶ ।
ଦାସୀ ବୋଇଲେ କୁମର କନ୍ୟା ଘେନିଗଲା
ରଥ ବାହିଣ ଗଗନ ମାର୍ଗରେ ଚଳିଲା ।
ଏହାଶୁଣି ରାଜା ବେଗେ ମନ୍ତ୍ରୀକି ରାଇଲା
ନୀଳଶେଖର ପୁତ୍ରକୁ ଚାହିଁଣ ବୋଇଲା ।
ମେଢ଼ରୁ ଯେ ସୁରେଖାକୁ କେ ନେଲା ଚୋରାଇ
ବାନ୍ଧି ଘେନିଆସ ବୋଲି ରାଜା ଆଜ୍ଞା ଦେଇ ।
ଥାଟ ଘେନିଣ ନୃପତି କୁମର ଧାଇଁଲା
ପାଞ୍ଚକ୍ରୋଶରେ କୃଷ୍ଣପୁତ୍ରକୁ ଭେଟିଲା ।
ଡାକିଲା କେଣିକି ଯାଉ ଆରେ କନ୍ୟା ଚୋର
ରହ ରହ ବୋଲି ବାଟ ଓଗାଳେ ଆଗର ।
ମାରମାର ଧର ଧର ଶୁଭଇ ଶବଦ
କୁମାର କୁମାରୀ ଚାହିଁ ମନରେ ବିଷାଦ ।
କୁମାରୀ ବୋଇଲେ ଆହେ ବୀରମଣି ଶୁଣ
ତୁମ୍ଭ ସଙ୍ଗତରେ ଏମାନେ କରିବେକ ରଣ ।
ପ୍ରଦ୍ୟୁମ୍ନକୁ ଶତେପୁର କରିଣ ବେଢ଼ିଲେ
ତୀକ୍ଷଣ ଶରମାନ ସେହୁ ନିଠାଇ ବିନ୍ଧିଲେ ।
କରେ ଧନୁଶର ଧରି ମାରେ ମହାବଳି
କୃତଶେଖର ସୈନ୍ୟଙ୍କୁ ପକାଇଲେ ଦଳି ।
ଦେଖି ମହାକୋପ କଲା ସେ ନୀଳଶେଖର
ପ୍ରଦ୍ୟୁମ୍ନକୁ ବିନ୍ଧିଲାକ ତୀକ୍ଷ୍ଣ ତୀକ୍ଷ୍ଣ ଶର ।

ଅଙ୍ଗରେ ବାଜିଣ ଶରମାନ ଗଳିଗଲା
ଗଳ ଗଳ ହୋଇ ତହୁଁ ରକତ ବହିଲା ।
କନ୍ୟାକୁ ନିର୍ବନ୍ଧ କରି ଧରିଅଛି କୋଳେ
ଆପେ ଯୁଦ୍ଧ କରୁଅଛି ବସି ନିର୍ଭୟରେ ।
ଘଡ଼ିଏକ ପରିଯନ୍ତେ ସେହି ଯୁଦ୍ଧ କଲେ
ସଂଗ୍ରାମେ ପ୍ରଦ୍ୟୁମ୍ନକୁ ସେ ଜିଣି ନ ପାରିଲେ ।
କୃଷ୍ଣର କୁମର ସେହୁ ଏକା ମହାଦେବ
ତାହାକୁ କାହୁଁ ଏ ଛାର ଦବ ପରାଭବ ।
କୁମରକୁ ସେ ଅନେକ ନାରାଚ ବିନ୍ଧିଲେ
କେବେ ହେଁ ସଂଗ୍ରାମେ ତାକୁ ଜିଣି ନ ପାରିଲେ ।
ଦୁଇପ୍ରହର ପର୍ଯ୍ୟନ୍ତେ ହେଲା ରଣଗୋଳ
ବହୁତ ଯୁଝିଲା କୃତକେଶୀର ଦୁଲାଳ ।
ଏକ ଜଣକୁ ସହସ୍ର ଜଣ ସେ ବେଢ଼ିଲେ
ପ୍ରଦ୍ୟୁମ୍ନ ସଙ୍ଗେ ବହୁତ ରଣଗୋଳ କଲେ ।
ବହୁତର ସୈନ୍ୟ ଯହୁଁ ବେଢ଼ିଲେକ ଯାଇ
ବିସ୍ମୟ ହୋଇଣ ମନେ କୁମର ଭାଳଇ ।
ବଳାତ୍କାରେ ପ୍ରଦ୍ୟୁମ୍ନକୁ ଯାଇଣ ଧରିଲେ
ରଥର ଉପରୁ ତାକୁ ତଳକୁ ଆଣିଲେ ।
ପାଟଡୋର ଘେନିକରି ବାନ୍ଧିଲେ କୁମରେ
କୁମାରୀ ଯେ ବସିଅଛି ରଥର ଉପରେ ।
ସାରଥିକି ବୋଇଲେ ସେ ରଥ ବେଗେ ଚଳା
ଆଜ୍ଞା ପ୍ରମାଣେ ସାରଥି ରଥ ବାହିନେଲା ।
କରମଣ୍ଡଳ ରାଜ୍ୟରେ ପ୍ରବେଶ ହୋଇଲେ
ମେଢ଼ର ଭିତରେ ନେଇ କନ୍ୟାକୁ ଥୋଇଲେ ।
କୁମରକୁ ବାନ୍ଧି ରାଜା ଆଗେ ଦେଲେ ନେଇ
କାହିଁର ତୁ କନ୍ୟାଚୋର ବୋଲି ପଚାରଇ ।
ଲାଜେ ପ୍ରଦ୍ୟୁମ୍ନ କୁମର ପୋତିଅଛି ମଥା
କାହାକୁ ସେ ଫେଡ଼ିକରି ନ କହଇ କଥା ।
କୃତଶେଷର ରାଜା ତା ମନ୍ତ୍ରୀକି କହଇ
କୁମରକୁ ବେଗେ ହାଣିପକାଅ ତୁ ନେଇ ।
ଏଡ଼େ ଭରସା ଏହାର ମେଢ଼ରେ ପଶିଲା
ମୋର କୁମାରୀ ଚୋରାଇ ରଥେ ନେଇଥିଲା ।
ରାଜାର ବଚନେ ମନ୍ତ୍ରୀ ବିରୁପାକ୍ଷ କହି
ଅବାଧନ କରି ତୁମ୍ଭେ ଶୁଣିମା ଗୋସାଇଁ ।
ପୁରୁଷାନୁକ୍ରମରେ ମୁଁ ସେବକ ତୋହର
ମୋହର କଥା ଘେନିବା ଯେବେ ନୃପବର ।
ରାଜା ବୋଇଲେ ନ କହି ଅଛୁ କାହିଁପାଇଁ
ମନ୍ତ୍ରୀ ବୋଲେ ଦୋଷ କ୍ଷମା କରିବା ଗୋସାଇଁ ।
ଏ କନ୍ୟାକୁ ଚୋରକୁ ଆମ୍ଭେ ବାନ୍ଧି ଥୋଇଥିବା
କାହାର କୁମର ତାହା ପଚାରି ବୁଝିବା ।
ସୁନ୍ଦର ପୁରୁଷ ଏହୁ ଅଟେ ନବଯୁବା
କାମଦେବ ପ୍ରାୟ ରୂପ ପାଉଅଛି ଶୋଭା ।
ମହତ ବଂଶରେ ଏହୁ ହୋଇଅଛି ଜାତ
ବିଚାରିଣ ଆଜ୍ଞା ଦିଅ ଆହେ ନରନାଥ ।
ଏହିପରି ବୁଝାଇଣ ସୁମନ୍ତ୍ରୀ କହିଲା
ରାଜା ମନକୁ ଅମୃତ ପ୍ରାୟ ସେ ରୁଚିଲା ।
ମନ୍ତ୍ରୀକି ବହୁ ପ୍ରଶଂସା କରି ମହାରାୟ
ବନ୍ଧନରୁ ଫିଟାଇଲା କୃଷ୍ଣଙ୍କ ତନୟ ।
ବନ୍ଦୀ ପ୍ରକାରେ ରଖିଲେ ଜଗୁଆଳି ଦେଇ
ଯେତେବେଳରେ କୁମର ବନ୍ଧନେ ବନ୍ଧଇ ।
ସୁରେଖା କୁମାରୀକି ହେ ଅନ୍ନ ନ ରୁଚିଲା
କୁମର ନାମ ଧରିଣ ବିକଳେ କାନ୍ଦିଲା ।
ଦାସୀ ପରିବାରିମାନେ ବସି ତିଆରିଲେ
ଅନେକ ପ୍ରକାରେ ତାକୁ ପ୍ରବୋଧନା କଲେ ।
ବୋଇଲେ କୁମରେ ବନ୍ଦୀକରି ରଖିଛନ୍ତି
ଏଥକୁ ତୁ ଆନଚିନ୍ତା ନ କର ଗୋ ସତୀ !
ଜୟ ଝଙ୍କଡ଼ବାସିନୀ ଶାରଳା ଗୋ ମାଏ
ତୋହର ପ୍ରସାଦେ ସିନା ମୁଁ ପଣ୍ଡିତ ହୁଏ ।
ତୁ ଯାହା କହ ତାହା ମୁଁ ଲେଖନେ ଲେଖଇ
ଶାରଳା ଦାସ ତୋ ପାଦେ ଶରଣ ମାଗଇ ।

—0—

## ପ୍ରଦ୍ୟୁମ୍ନର ବନ୍ଦୀ ମୋଚନ

ଅଗସ୍ତି କହନ୍ତି ମନୁରାଜା ପଚାରଇ
ଏଥିଉତ୍ତାରୁ ଯେ କିସ ହୋଇଲା ଗୋସାଇଁ ।
ପ୍ରଦ୍ୟୁମ୍ନ ବନ୍ଦୀ ହୋଇବ ଜାଣିଣ ନାରଦ
ପଞ୍ଚଭୂତ ଆତ୍ମାରେ ସେ ପାଇଣ ବିଷାଦ ।
ମନଦଣ୍ଡ ଚଢ଼ି ସେହି ବାହାର ହୋଇଲେ
ଦ୍ୱାରାବତୀ ପୁର ମଧ୍ୟେ ଯାଇ ପ୍ରବେଶିଲେ ।
କୃଷ୍ଣ ନବରେ ପଡ଼ିଛି ବହୁତ ଚହଳ
ସମସ୍ତେ ଯେ କାନ୍ଦୁଛନ୍ତି ହୋଇଣ ବିକଳ ।
ଗୋବିନ୍ଦ ବୋଇଲେ ତୁମ୍ଭେ ସମସ୍ତେ ତ ଅଛ
ପ୍ରଦ୍ୟୁମ୍ନ କାହିଁ ଅଛଇ ଜଣେ ଜଣେ ପୁଛ ।
ସାତଦିନ ହେଲା ମୋର ପୁଅ କାହିଁଗଲା
ପଞ୍ଚଭୂତ ଆତ୍ମାକୁ ମୋ କେହୁ କାଢ଼ିନେଲା ।
ଶୁଣି ବଳରାମ ଶୋକ କରନ୍ତି ବହୁତ
ଉଗ୍ରସେନ ବିଚାରେ ଏ କେବଣ ଚରିତ ।
ସାତବଂଶ ଯାଦବ ଯେ ଯାହାର ଖୋଜନ୍ତି
ପ୍ରଦ୍ୟୁମ୍ନର ବର୍ଣ୍ଣ ଚିହ୍ନ କାହିଁ ନ ଦେଖନ୍ତି ।
ବହୁତ ବିକଳ ହେଲେ ପ୍ରଭୁ ଭାବଗ୍ରାହୀ
ଆପଣେ ଜାଣି ମାୟାରେ ହେଉଛନ୍ତି ମୋହି ।

ଭିତରେ ମହିଷୀମାନେ ବିକଳେ ରୋଦନ୍ତି
କପାଳରେ କରମାରି ରେବତୀ କାନ୍ଦନ୍ତି ।
କାନ୍ଦୁଛନ୍ତି ରତି ଦେବୀ ହୋଇଣ ବିକଳ
ଦ୍ୱାରକା ନଗରଯାକ ପଡ଼ିଛି ଚହଳ ।
ଅନେକ ଯେ ହାଳହୁଳି ହେଲା ଦ୍ୱାରକାରେ
କାହାକୁ କେ ପଚାରିବ କହିବ ଛାମୁରେ ।
ନାମଧରି ରାମକୃଷ୍ଣ କରନ୍ତି ରୋଦନ
ଲୋକିତ କଥା ପେଡ଼ି ନ କହନ୍ତି ବଚନ ।
ଅନ୍ତର୍ଯ୍ୟାମୀ ନାମ ତାହା କିବା ନ ଜାଣନ୍ତି
ତାଙ୍କୁ କି ଉବାର ଅଛି ସେ ତ ଶିରୀପତି ।
ମାୟାରେ ରୋଦନ କଲେ ଦେବ ଚକ୍ରଧର
କାହିଁଗଲା ମୋର ବାବୁ ପ୍ରଦ୍ୟୁମ୍ନ କୁମାର ।
ବଳରାମ ତାଙ୍କ ସଙ୍ଗେ ରୋଦନ କରନ୍ତି
ବହୁତ ରୋଦନ କଲେ ଦେବକୀ ଯେ ସତୀ ।
ଏମନ୍ତ ସମୟେ ଯାଇ ନାରଦ ମିଳିଲେ
ଦେଖି ବଳରାମ ହରି ଓଳଗି ହୋଇଲେ ।
କଲ୍ୟାଣ କରି ବୋଇଲେ ତାଙ୍କୁ ମୁନିବର
ସର୍ବେ ବିରସ ହରଷ ନାହିଁ ତ କାହାର ।
ଗୋବିନ୍ଦ ବୋଲନ୍ତି ଶୁଣ ଆହେ ମୁନିମଣି
ପ୍ରଦ୍ୟୁମ୍ନ ମୋ କେଣେ ଗଲା ନ ପାରିଲୁ ଜାଣି ।
ବହୁତ ବିକଳ ହେଉ ଅଛଇ ଶରୀର
କୂଳର ଧାରଣା ସେ ମୋ ଅଲ୍ୟଳ କୁମର ।
ଦେଶ ବିଦେଶରେ ବୁଲୁଥାଅ ଦିନରାତି
କାହିଁ ଦେଖିଲେ କି ମୋର କନ୍ଦର୍ପ ମୂରତି ।
ମୁନି ବୋଇଲେ ସମସ୍ତେ ତୁମ୍ଭେ ଶାନ୍ତ ହୁଅ
ତହିଁର ବିଧାନ ଆମ୍ଭେ କହିବା ହେ ରହ ।
ନାରଦଙ୍କ ଏ ବଚନେ ସର୍ବେ ତୁନି ହେଲେ
କହ ମୁନିବର ତୁମ୍ଭେ ଗୋବିନ୍ଦ ବୋଇଲେ ।
ହସିଣ ନାରଦ ମୁନି କହନ୍ତି ଉତ୍ତର
କୃତଶେଖର ନୃପତି ପୁରେ ତୋକୁମର ।
ସୁରେଖା ନାମ ତାହାର ଦୁହିତାଏ ଥିଲା
ତୋହର କୁମରକୁ ଯାଇ ମେଢ଼ରେ ପଶିଲା ।
କନ୍ୟାକୁ ବଳରେ ସେହି ଆଣୁଥିଲା ହରି
ବେଢ଼ି କୁମରକୁ ବଳେ ଘେନିଗଲା ଧରି ।
ମାରିପକାଅ ଏହାକୁ ରାଜା ଆଜ୍ଞା ଦେଲା
ମନ୍ତ୍ରୀ ବିରୁପାକ୍ଷ ତହିଁ ନିବାରଣ କଲା ।
ବଡ଼କୂଳେ ଉପୁଜିଲା ପ୍ରାୟେକ ଦିଶଇ
ମନ୍ତ୍ରୀବର ବୋଲନ୍ତି ସେ ରାଜା ବୋଧଯାଇ ।
ବନ୍ଦୀକରି କୁମରକୁ ଅଛନ୍ତି ରଖାଇ
ଏଥକୁ ବିଚାର ତୁମ୍ଭେ କର ଭାବଗ୍ରାହୀ ।

ନାରଦ ମୁଖରୁଂ ଏହା ଶ୍ରୀହରି ଶୁଣିଲେ
କୋପଭର ହୋଇ ପୁଣି ମୁନିକୁ ବୋଇଲେ ।
ବାଟ କଢ଼ାଅ ଭୋ ମୁନି ଯିବି ତହିଁ ଯାଏ
ବଂଶ ତାହାର ନିଧନ କରିବି ନିଶ୍ଚୟେ ।
ଶୁଣିଣ ଶ୍ରୀ ବଳରାମ ମହାକୋପ କଲେ
ହଳ ମୂଷଳେ ତା ରାଜ୍ୟ ତାଡ଼ିବି ବୋଇଲେ ।
କରମଣ୍ଡଳ ରାଜ୍ୟ ତା ଲଙ୍ଗଳେ ତାଡ଼ିବି
କୃତକେଶୀକୁ ଶମନ ପୁରକୁ ପେଷିବି ।
ଯେତେ ସୈନ୍ୟବଳ ତାର ସମସ୍ତ ନାଶିବି
ତେବେ ହଳଧର ନାମ ସାର୍ଥକ କରିବି ।
ବହୁତ ପ୍ରତିଜ୍ଞା ତହୁଁ ବଳରାମ କଲେ
ହଳ ମୂଷଳକୁ ଦେବ ଶ୍ରୀକରେ ଧଇଲେ ।
ଗୋବିନ୍ଦ ବୋଇଲେ ଶୁଣ ଆହେ ହଳଧର
ଆଗହୁଁ ଏଡ଼େ ପ୍ରତିଜ୍ଞା କେବେ ହେଁ ନ କର ।
ଆମ୍ଭର ତାହାର ଯେବେ ହୋଇବାକ ଭେଟ
ତେବେ ଜାଣିବା ତାହାର ସିନା କେଡ଼େ ଆଣ୍ଟ ।
ନାରଦ ବୋଇଲେ ଶୁଣ ଆହେ ଭାବଗ୍ରାହୀ
ନିଜ କଥାକୁ ନିଜେ ନ ବୁଝ କାହିଁପାଇଁ ।
ମେଢ଼ର ଭିତରେ ତୋର କୁମର ପଶିଲା
ତାର ଦୁହିତାକୁ ଚୋରି କରି ଆଣୁଥିଲା ।
ଏଥିରେ ତାହାର ଦୋଷ କେଭେ ନ ଯୋଗାଇ
ସାବଧାନ ହୋଇ ତୁହୋ ଶୁଣ ଭାବଗ୍ରାହୀ ।
ବଳରାମ ବୋଲୁଛନ୍ତି ଶୁଣ ମୁନିବର
କରମଣ୍ଡଳକୁ ଆମ୍ଭ ସଙ୍ଗରେ ବାହାର ।
ହସିଣ ନାରଦ ମୁନି ବୋଲନ୍ତି ବଚନ
ବାଟ କଢ଼ାଇଣ ଘେନିଯିବି ବଳରାମ ।
ନାଦର ଗୋବିନ୍ଦ ବଳରାମଙ୍କ ସହିତ
ଉଗ୍ରସେନଙ୍କ ନିକଟେ ଚଳିଲେ ତୁରିତ ।
ଉଗ୍ରସେନ ରାମ ହରି କଲେ ନମସ୍କାର
ମୁନି ଦେଖି ଉଗ୍ରସେନ ନମଇଁ ପୟର ।
କଲ୍ୟାଣ କରନ୍ତି ତାଙ୍କୁ ବ୍ରହ୍ମାଙ୍କ ନନ୍ଦନ
ଉଠ ହୋ ରାଜା ବିରସ ନ କର ତୁ ମନ ।
ଉଗ୍ରସେନ ବୋଇଲା ହେ ଶୁଣ ମୁନିମଣି
ପ୍ରଦ୍ୟୁମ୍ନ ବାରତା ତୁମ୍ଭେ ଅଛ କିହୋ ଜାଣି ।
ତୁମ୍ଭେ ମୁନିବର ବୁଲ ସମସ୍ତ ଭୁବନେ
ତେଣୁ ତୁମ୍ଭଙ୍କୁ ପଚାରୁ ଆହେ ମହାମୁନେ ।
ନାରଦ ବୋଇଲେ ଆମ୍ଭେ ପାଇଛୁ ବାରତା
କରମଣ୍ଡଳ ରାଜ୍ୟରେ ପୁତ୍ର ବଳବନ୍ତା ।
ତହିଁର ରାଜା ହୋ କୃତକେଶର ଅଟଇ
ସୁରେଖା ବୋଲିଣ ତାର ଦୁହିତା ଅଛଇ ।

ସୁନ୍ଦର ପଣରେ ସେହି ରମ୍ଭାର ସମାନ
ବାର୍ତ୍ତାପାଇ ହରି ଆଣୁଥିଲା ତା ପ୍ରଦ୍ୟୁମ୍ନ ।
ତାହା ଜାଣିଣ ସେ କୃତଶେଖର ନୃପତି
ଥାଟ ପେଷି ଧରାଇଣ ନେଇ ତାର କତି ।
ହାଣି ପକାଅ ଏହାକୁ ମନ୍ତ୍ରୀକି ବୋଇଲା
ନ ମାର ବୋଲିଣ ମନ୍ତ୍ରୀ ତାକୁ ନିରୋଧିଲା ।
ମନ୍ତ୍ରୀ ବୋଇଲା ଅଟଇ ସୁନ୍ଦର ଏ ବଳା
ଅବଶ୍ୟ ଏହାକୁ କେହି କରିବ ସଙ୍ଖୋଳା ।
ବଡ଼କୂଳେ ଜାତ ହେବା ପ୍ରାୟେକ ଦିଶଇ
ଧରି ରଖିଥିବା ନାଶ ନ କରି ଗୋସାଇଁ ।
ମନ୍ତ୍ରୀର ବଚନେ ରାଜା ପ୍ରବୋଧ ହୋଇଲା
ଆକଟ କରି ପୁତ୍ରକୁ ବନ୍ଧାଇ ରଖିଲା ।
ଏହାଶୁଣି ଉଗ୍ରସେନ କୋପେ ପ୍ରଜ୍ୱଳିତ
ଥରହର ହୋଇ ସେହୁ କମ୍ପେ ନରନାଥ ।
ରାଜା କୋପ ଦେଖି ତାକୁ ବୋଲେ ମୁନିବର
ଆଗହୁଁ ତୁ କୋପ କିମ୍ପା କରୁ ଦଣ୍ଡଧର ।
ଥାଟ ସଜକର ବେଗେ ଯିବା ତହିଁ ଯାଏ
ହାନି ଅପଯଶ ବୁଝିବାକୁ ସେହିଠାଏ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ନରରାଣ
ଥାଟ ସଜକରି ଯିବା ଆମ୍ଭେ ଏହିକ୍ଷଣ ।
ବଳରାମ ବୋଲୁଛନ୍ତି ଉଗ୍ରସେନ ଚାହିଁ
ସାତବଂଶ ଯାଦବଙ୍କୁ ସାଜିଆଣ ଯାଇଁ ।
ରାମବାକ୍ୟେ ଉଗ୍ରସେନ ଅକ୍ରୁରକୁ ରାଇ
ବୋଲେ ଥାଟ ସଜକର ତୁମ୍ଭେ ବେଗହୋଇ ।
ଅକ୍ରୂରର ରାଜା ଆଜ୍ଞା ପାଇ ବେଗେ ଗଲା
ସିଂହ ଦୁଆରେ ଟମକ ରହି ଦିଆଇଲା ।
ବୋଲେ ସମସ୍ତ ଯାଦବ ଆସ ସଜହୋଇ
ଯାହାର ଯେତକ ଅଙ୍ଗବଳ ଯେ ଅଛଇ ।
ହାତୀ ରଥ ପଦାତିକ ଯାର ଯେତେ ବଳ
ସଜହୋଇ ଆସି ସର୍ବେ ସିଂହଦ୍ୱାରେ ମିଳ ।
ଉଦ୍ଧବ ଅନାଧୃଷ୍ଟ ଯେ ସାତ୍ୟକି ସହିତେ
ଶକ୍ରାଜିତ ବାସୁଦେବ ଅଇଲେ ସମସ୍ତେ ।
ସାତବଂଶ ଯାଦବ ଯେ ଆସି ମେଳ ହେଲେ
ହାତୀ ରଥ ପଦାତିକ ସମସ୍ତେ ଅଇଲେ ।
ଅଶ୍ୱଚଢ଼ି ଆଶୁଆରେ ଭିଡ଼ିଲେ କମାଣ
ଢୋଲ ଟମକ ମହୁରୀ ବାଜଇ ନିଶାଣ ।
ସୈନ୍ୟଙ୍କ ମୁଖ ଶବଦ ଶୁଭେ ଘନ ଘନ
ମଦିରା ତାଳ ବୀଣାର ନାଦ ଅତି ଛନ୍ନ ।
ବାଦ୍ୟନାଦ ଶବଦରେ ମହୀ ଉଛୁଳଇ
ବକଟାଳ ମୁଖରାବ ଶବଦ ଶୁଭଇ ।

ଉଗ୍ରସେନର ଛାମୁରେ ଜଣାଇ ଅକ୍ରୂର
ସର୍ବ ସୈନ୍ୟ ସଜହୋଇ ଅଛନ୍ତି ଦୁଆର ।
ଉଗ୍ରସେନ ଚାହିଁ ରାମ କୃଷ୍ଣଙ୍କୁ କହନ୍ତି
ସର୍ବସୈନ୍ୟ ସଜହୋଇ ଦୁଆରେ ଅଛନ୍ତି ।
ଉଗ୍ରସେନର ମୁଖରୁ ଏସନକ ଶୁଣି
ସଜହୋଇ ଅଇଲେକ ଆପେ ହଳପାଣି ।
ସାତ୍ୟକିକୁ ଚାହିଁ ବୋଇଲେକ ଦାମୋଦର
ସଜକର ରଥ ଯିବା କଉମଣ୍ଡଳର ।
ଦିବ୍ୟରଥ ଉଦ୍ଧବ ଯେ ସଜକରି ନେଲା
ଗୋବିନ୍ଦଙ୍କ ଛାମୁରେଣ ନେଇ ଉଭାକଲା ।
ବଳରାମଙ୍କର ରଥ ସଜକରି ଆଣି
ତା ଉପରେ ବିଜେ କଲେ ଦେବ ହଳପାଣି ।
ଶଙ୍ଖ ଚକ୍ର ଗଦାପଦ୍ମ ଧରି ନରହରି
ଦେବଦତ୍ତ ଶଙ୍ଖ ଧରି ବଜାନ୍ତି ମୁରାରୀ ।
ରାମଙ୍କ ପୁତ୍ର ଆନନ୍ଦ ସାନନ୍ଦ ସହିତେ
ଶାମ୍ବ ଗଦା ମୂଳେ ଥିଲେ କୃଷ୍ଣପୁତ୍ର ଯେତେ ।
ରଥେ ରଥେ ଚଢ଼ି କରି ସମସ୍ତେ ଅଇଲେ
ନବର ଦୁଆରେ ଆସି ସମସ୍ତେ ମିଳିଲେ ।
ଏକାନ୍ତରେ ଭଗବାନ ସାତ୍ୟକିକୁ ରାଇ
ଗୁପତ କରିଣ ତାକୁ ବିଶ୍ୱସରେ କହି ।
ତୁ ବାବୁ ସାତ୍ୟକି ଏବେ କଥା ଏକ କର
ରଥ ଚଢ଼ିଯାଅ ଏଥୁ ବାରୁଣାବନ୍ତର ।
ଯୁଧିଷ୍ଠି ଆଗେ କହିବୁ ଏସନ ଚରିତ
ସୈନ୍ୟ ତୁଲେ ପାଞ୍ଚଭାଇ ଆସିବେ ତୁରିତ ।
ହରି ଆଜ୍ଞାରେ ସାତ୍ୟକି ରଥ ସଜକଲା
ଦିବ୍ୟବେଶ ହୋଇ ଯାଇ ରଥରେ ବସିଲା ।
ଗୋବିନ୍ଦଙ୍କୁ ନମସ୍କାର କରି ଗଲା ଚଳି
ତକ୍ଷଣେ ବାରୁଣାବନ୍ତ ପୁରେ ଯାଇ ମିଳି ।
ଯୁଧିଷ୍ଠିର ସିଂହଦ୍ୱାରେ ବିଜେ ମହାବୀର
ରଥରୁ ଓହ୍ଲାଇ ପଡ଼ି ପଶଇ ଭିତର ।
ଦେଖିଲା ଆସ୍ଥାନ କରି ବିଜେ ପାଞ୍ଚଭାଇ
ଆସ୍ଥାନ ତଳେ ସାତ୍ୟକି ଉଭାହେଲା ଯାଇ ।
ଯୁଧିଷ୍ଠିଙ୍କୁ ଦେଖି ଦୂରୁ ଓଳଗି ହୋଇଲା
ନିସ୍ତରିଲି ନିସ୍ତରିଲି ବୋଲିଣ ଭାଷିଲା ।
ଯୁଧିଷ୍ଠିର ବୋଇଲେ ତୁ ଯାଅରେ ନକୁଳ
ଭୂମିରେ ପଡ଼ି ଶୋଇଛି ସାତ୍ୟକିକୁ ତୋଳ ।
ଆଜ୍ଞା ପ୍ରମାଣେ ନକୁଳ ବେଗେ ଚଳିଗଲେ
ସାତ୍ୟକିର କର ଧରି ତଳୁ ଉଠାଇଲେ ।
ଉଠି ସ୍ନେହେ କୋଳାଗ୍ରତ ହୋଇ ବେନି ବୀରେ
ଆସ୍ଥାନରୁ ଉପରକୁ ଉଠିଗଲେ ଖରେ ।

ସାତ୍ୟକି ଭୀମ ଅର୍ଜୁନ ଦେଖି ପ୍ରଣମିଲା
ଗଉରବ ପାଇ ଯାଇ ଆସ୍ଥାନେ ବସିଲା ।
ଯୁଧିଷ୍ଠି ବୋଇଲେ ଶୁଣ ଆହେ ମହାବୀର
କିମର୍ଥେ ଅଇଲୁ କହ ଚରିତ ଏଥିର ।
ତୋତେ ଶଙ୍ଖୋଳିକି ତୁହୋ ଅଇଲୁ ଆପଣେ
କିବା ମୋତେ ପଠାଇଣ ଦେଲେ ଭଗବାନେ ।
ଏଥିର ସନ୍ଦେଶ ବାବୁ କହ ମୋ ଅଗ୍ରତେ
ସର୍ବଶୁଭେ ଅଛନ୍ତି ତ ପ୍ରଭୁ ଜଗନ୍ନାଥେ ।
ବଳରାମଙ୍କ ସହିତେ ରାଜା ଉଗ୍ରସେନ
ସାତବଂଶ ଆଦି କରି କୁମର ପ୍ରଦ୍ୟୁମ୍ନ ।
ସାତ୍ୟକି କହଇ ଉଠି ଯୋଡ଼ି ବେନିକର
ମୋତେ ପଠାଇ ଅଛନ୍ତି ଦେବ ଦାମୋଦର ।
ସପତ ଦିନ ଅନ୍ତରେ ହେଲା ଯେଉଁ କଥା
ଶୁଣ ଏବେ କହୁଅଛି ତହିଁର ବ୍ୟବସ୍ଥା ।
କେହି ନ ଜାଣିଲେ କେଣେ ଗଲାକ ପ୍ରଦ୍ୟୁମ୍ନ
ବିକଳ ହୋଇ ଖୋଜିଲେ ରାଜା ଉଗ୍ରସେନ ।
ଦେବକୀ ବାସୁଦେବ ଯେ କାନ୍ଦିଲେ ବହୁତ
ରାମକୃଷ୍ଣ ସାତବଂଶ ଯାଦବ ସହିତ ।
ଏମନ୍ତବେଳେ ନାରଦମୁନି ତହୁଁ ମିଳି
ବୋଇଲେ କିମ୍ପା ଦ୍ୱାରକା ପୁରେ ହାଲହୋଲି ।
ଉଗ୍ରସେନ ବୋଇଲେ ହୋ ଶୁଣ ମୁନିବର
କେଣେ ଯାଇଛି କି ଜାଣ ପ୍ରଦ୍ୟୁମ୍ନ କୁମର ।
ନାରଦ ବୋଇଲେ ଶୁଣ ରାଜା ଉଗ୍ରସେନ
ଯେବଣ ସ୍ଥାନେ ଅଛଇ କୃଷ୍ଣର ନନ୍ଦନ ।
ଗୋବିନ୍ଦ କହିଲେ ମୁନି କହ ମୋତେ ତଥ୍ୟ
ଯେମନ୍ତେ ହୋଇବ ସ୍ଥିର ମୋର ପଞ୍ଚଭୂତ ।
ନାରଦ ବୋଇଲେ କୁର୍ମ ନାମେ ଗିରିବର
ସୁରନଦୀର ଯେ ଧାରେ ବହଇ ତହିଁର ।
ତାର ପଶ୍ଚିମରେ କରମଣ୍ଡଳ ଯେ ଦେଶ
କୃତଶେଖର ବୋଲିଣ ତହିଁର ନରେଶ ।
ମନ୍ତ୍ରୀବର ଅଛି ତାର ନାମ ବିରୁପାକ୍ଷ
ନୀଳଶେଖର ନାମରେ ତାର ଏକ ବତ୍ସ ।
ସୁରେଖା ବୋଲିଣ ତାର ଦୁହିତାର ନାମ
ଅତ୍ୟନ୍ତ ସୁନ୍ଦରୀ ତାକୁ କେହି ନୁହେଁ ସମ ।
ପ୍ରଦ୍ୟୁମ୍ନ ତା ରୂପଗୁଣ ଶୁଣି ତହୁଁ ଗଲା
ରଥରେ ବସାଇ ସେହି କନ୍ୟା ଆଣୁଥିଲା ।
ବାରତା ପାଇଣ କୃତଶେଖର ରାଜନ
ଧରାଇଣ ଘେନିଗଲା ଆପଣା ଭୁବନ ।
ବାନ୍ଧି ରଖିଅଛି ସେହି ନିଜ ଭୁଜବଳେ
ତେଣୁ ପ୍ରଦ୍ୟୁମ୍ନ ସେଠାରେ ପଡ଼ିଛି ଅକଳେ ।

ବାରତା ପାଇଣ ରାମକୃଷ୍ଣ କୋପ କଲେ
ଉଗ୍ରସେନ ରାଜା ଥାଟ ଘେନି ବାହାରିଲେ ।
ଏକାନ୍ତ କରିଣ ମୋତେ ହରି ଆଜ୍ଞା ଦେଇ
ପଣ୍ଡୁ କୁମରଙ୍କୁ ଘେନିଆସ ବେଗେ ଯାଇ ।
ସାତ ଅକ୍ଷୌହିଣୀ ବଳ ଘେନି ପାଞ୍ଚଭାଇ
ଏହିକ୍ଷଣି ଦ୍ୱାରକାକୁ ଯିବ ସଜ ହୋଇ ।
ଏହା ଶୁଣି ଯୁଧିଷ୍ଠିର ହରଷ ହୋଇଲେ
ସ୍ନାନ ଭୋଜନାଦି ଦେଇ ସାତ୍ୟକି ତୋଷିଲେ ।
ସାତ ଅକ୍ଷୌହିଣୀ ବଳ ଘେନି ପାଞ୍ଚଭାଇ
ଧନୁ ତୂଣୀର ସହିତେ ଗଲେ ରଥ ବାହି ।
ନେତର ନିମିଷ ଲେଖାଏ ଉଡ଼େ ପରହର
ଯାଇଣ ମିଳିଲେ ତୀରେ ଦ୍ୱାରାବତୀପୁର ।
ରାମଙ୍କୁ ଯୁଧିଷ୍ଠି ପାଞ୍ଚଭାଇ ଓଳଗିଲେ
କାମପାଳ ହିଁ ବହୁତ କଲ୍ୟାଣ ବାଞ୍ଛିଲେ ।
ଗୋବିନ୍ଦ ଯୁଧିଷ୍ଠି ପାଦେ କଲେ ନମସ୍କାର
ଚାରିଭାଇ ଓଳଗନ୍ତି ଶ୍ରୀହରି ପୟର ।
ଯୁଧିଷ୍ଠିର ମୁଖ ଚାହିଁ ଗୋବିନ୍ଦ ବୋଲନ୍ତି
କରକମଳ ଦେଶକୁ ଯିବା କି ସଂପ୍ରତି ।
ଯୁଧିଷ୍ଠି ବୋଇଲେ ଚାଲ ବିଳମ୍ବ ନ କର
ଚମକ ନିଶାଣ ଆଦି ବାଜେ ବୀରତୂର ।
ଜୟଶଙ୍ଖ ବଜାଇଣ ବାହାର ହୋଇଲେ
ପଞ୍ଚଦଶ ଅକ୍ଷୌହିଣୀ ବଳ ଘେନି ତୁଳେ ।
ସମସ୍ତ ଯାଦବମାନେ ଗଲେ ଆଗହୋଇ
ସାତ ଅକ୍ଷୌହିଣୀ ବଳ ଘେନି ପାଞ୍ଚଭାଇ ।
ପୁତ୍ରକୁ ସଙ୍ଗେ ଘେନିଣ ରାମକୃଷ୍ଣ ଗଲେ
କରମଣ୍ଡଳ ଦେଶରେ ଯାଇଣ ମିଳିଲେ ।
ଢୋଲ ଚମକ ଆଦି ଯେ ଉଡ଼ଇ ନିଶାଣ
ବାଦ୍ୟର ନାଦେ କମ୍ପଇ ତିନି ଯେ ଭୁବନ ।
ଉଛୁଳି ପଡ଼େ ସପତ ବ୍ରହ୍ମାଣ୍ଡ ମଧ୍ୟରେ
ଅଶ୍ୱଖୁରା ଧୂଳି ଯାଇ ଉଠେ ଆକାଶରେ ।
ଦିବସ ଅନ୍ଧାର ପ୍ରାୟ ହେଲା ବସୁମତୀ
ଦେଖି ପଚାରଇ କରମଣ୍ଡଳ ନୃପତି ।
ବିରୁପାକ୍ଷକୁ ବୋଲଇ କେବଣ ଚରିତ
ଅନ୍ଧକାର ପ୍ରାୟ କିମ୍ପା ଦିଶଇ ଜଗତ ।
ପରଥାଟ ଗୋଟାଏକ କାହୁଁ ଆସୁଅଛି
ଘୋର ତର ହୋଇ ବୀରତୂର ବାଜୁଅଛି ।
ଏଥିର ତଦନ୍ତ ଭଲକରି ବୁଝ ଯାଇ
କାହାର ସୈନ୍ୟ ସେ ଏଥେ କିମ୍ପାଇ ଆସଇ ।
ଏହାଶୁଣି ମନ୍ତ୍ରୀବର ଡଗରେ ରାଇଲା
ବିଶ୍ୱାସ କରିଣ ତାକୁ ବଚନ କହିଲା ।

କାହାର ଥାଟ ପଚାରି ଆସି ତୁ ହୋ ଯାଇ
ଯୁଦ୍ଧକୁ ଆସୁଥିଲେ ଯେ ଯୁଝିବାନା ରହିଁ ।
ପ୍ରୀତିପଣେ ଆସୁଥିଲେ କରିବା ଆଦର
ବନ୍ଧୁପଣେ ଆସୁଥିଲେ କରିବା ବିଚାର ।
ଗୁଣସାଗର ମନ୍ତ୍ରୀ ସେ ଜାଣେ ସର୍ବବିଧି
ତାକୁ ପଟାନ୍ତର ଦେବା ଅଛି କିସ ବୁଦ୍ଧି ।
ମନ୍ତ୍ରୀମୁଖୁ ଏସନକ ଡଗର ଶୁଣିଲା
ତତକ୍ଷଣେ ଯାଇ ସୈନ୍ୟ ମଧ୍ୟରେ ପଶିଲା ।
ଡଗର ପୁଚ୍ଛଇ ତୁମ୍ଭେ କାହିଁର ହୋ ରାଜା
ଆମ୍ଭ ରାଜ୍ୟରେ ପଶୁଛ କେବଣ ତରିଜା ।
ବୀରତୂର ବଜାଇଣ ଆମ୍ଭ ରାଜ୍ୟେ ପଶ
ଏଡ଼େ ଭରସା ତୁମ୍ଭର ବଡ଼ାଇ ସାହସ ।
ଡଗର ମୁଖୁଁ ଅକ୍ରୁର ଏସନକ ଶୁଣି
ଜଣାଇଲା ଉଗ୍ରସେନ ଆଗେ ମନ୍ତ୍ରୀମଣି ।
ବୋଇଲାକ ଅବଧାନ କର ମହାରାୟେ
କୃତଶେଖର ରାଜ୍ୟରୁ ଡଗରେକ ଆୟେ ।
ବୋଲେ କାହିଁର ନୃପତି ଥାଟସୈନ୍ୟ ଘେନି
ଆମ୍ଭର ରାଜ୍ୟରେ କିମ୍ପା ପଶୁଅଛ ପୁଣି ।
ବୋଲେ ଯେବେ ରଥେ ଆସିଅଛ ମୋତେ କହ
ପ୍ରୀତିପଣେ ଆସିଥିଲେ କହ ତ ସନ୍ଦେହ ।
ବନ୍ଧୁପଣେ ଆସିଥିଲେ କହ ପରିମାଣି
ଏଥକୁ କି ଆଜ୍ଞା ଦେବା ହେଉ ନୃପମଣି ।
ଉଗ୍ରସେନ କହଇ ଯେ କୃଷ୍ଣକୁ ପ୍ରଚାର
କେମନ୍ତେ କଥା ଏହାର ବୁଝିବା ବେଭାର ।
ଏହା ଶୁଣିଣ ଅକ୍ରୁର ବେଗହୋଇ ଗଲା
ରାମ କୃଷ୍ଣଙ୍କ ଛାମୁରେ ଯାଇଣ ମିଳିଲା ।
ପାଦେ ପଡ଼ି ଶୋଇକରି ଶିରେ କରଦେଇ
ଅବଧାନ କରି ଦେବ ଶୁଣିମା ବୋଲଇ ।
କୃତଶେଖର ରାଜାର ଡଗର ଆସିଛି
କେଜାଣି କେଉଁ ସନ୍ଦେଶ ଘେନି ସେ ଆସିଛି ।
ଏଥେ କିସ ଅବଦାନ କରିବା ଗୋସାଇଁ
ଗୋବିନ୍ଦ ବୋଇଲେ ଅଛି ସେ ଡଗର କାହିଁ ।
ଅକ୍ରୁର ବୋଲେ ଡଗର ଆଗ ଥାଟେ ରହି
ବଳରାମ ବୋଲନ୍ତି ତୁ ଘେନିଆସ ଯାଇ ।
ଆଜ୍ଞା ପ୍ରମାଣେ ଅକ୍ରୁର ବେଗେ ଚଳିଗଲା
କୃତଶେଖର ଦୂତକୁ ଘେନିଣ ଅଇଲା ।
ରାମ କୃଷ୍ଣଙ୍କ ଛାମୁରେ କଲା ତାକୁ ନେଇ
ବୋଲୁଛନ୍ତି ଭାବଗ୍ରାହୀ ଦୂତମୁଖ ଚାହିଁ ।
କିସ ଚରିତ କହରେ ଆମ୍ଭର ଛାମୁର
ଡଗର ଶୁଣି କହଇ ପୋଡ଼ି ବେନିକର ।
କେଉଁ ରାଜା ତୁମ୍ଭେ ପଶ ଆମ୍ଭର ରାଜ୍ୟରେ
ଯୁଦ୍ଧେ ଆସିଥିଲେ ଯୁଝ ଆମ୍ଭ ସଙ୍ଗତରେ ।
ପ୍ରୀତିପଣେ ଆସୁଥିଲେ କରିବା ପୀରତି
ଯାହା କି ଆଜ୍ଞା ଦେଇଛି ଆମ୍ଭର ନୃପତି ।
ବନ୍ଧୁପଣେ ଆସିଥିଲେ ତାହା ପଚାରିବା
ରାଜାଙ୍କ ଛାମୁରେ କହି ଆସି ଘେନିଯିବା ।
ଡଗର ମୁଖରୁ ବାଣୀ ଏସନକ ଶୁଣି
କମ୍ପନ୍ତି ଯେ ଥରହର ହୋଇ ହଳପାଣି ।
ବୋଇଲେ ତୁ ଶୁଣ ଶୁଣ ଏବେ ରେ ଡଗର
ସୁରେଖା କନ୍ୟାକୁ ହରୁଥିଲା ଯେଉଁ ବୀର ।
ସେହି ବୀରଟି ଆମ୍ଭର କୁମର ଅଟଇ
ତାକୁ ବନ୍ଦିକରି ରଖି ଅଛରେ କିମ୍ପାଇଁ ।
କରମଣ୍ଡଳ ରାଜ୍ୟକୁ ତାଡ଼ିବି ଲଙ୍ଗଳେ
ରକ୍ଷାକରି ନ ପାରିବେ ତାକୁ ଦିଗପାଳେ ।
କହୁଁ କହୁଁ କୋପେ ଥରହର ରାମହରି
ରାମ କୋପେ ଦଲ ଦଲ ହୁଏ ବସୁନ୍ଧରୀ ।
ଡଗରକୁ ବୋଇଲେ ତୁ ଯାଅ ବେଗହୋଇ
ତୁମ୍ଭର ରାଜାକୁ କହ ଆମ୍ଭ ଆଜ୍ଞା ଯାଇ ।
ବାରତା ପାଇଣ ଦୂତ ବେଗେ ଚଳିଗଲା
ମନ୍ତ୍ରୀବର ଛାମୁରେ ଯେ ଯାଇଣ କହିଲା ।
ମନ୍ତ୍ରୀ ପଚାରଇ କିସ ଚରିତ ବୁଝିଲ
ଡଗର ବୋଲେ କହିବା ଅବଧାନ କର ।
ସୁରେଖା କନ୍ୟାକୁ ଯେହୁ ନେଉଥିଲା ହରି
ତାଙ୍କ ପିତା ଆସିଛନ୍ତି ଏବେ ଯୁଦ୍ଧକରି ।
ବଡ଼ ପ୍ରତାପୀ ଅଟଇ ସେହି ନୃପବର
ଥାଟ ସଇନ୍ୟ ସଙ୍ଗରେ ଅଛଇ ଅପାର ।
ପାଦଭରେ ଥରହର କମ୍ପୁଅଛି ମହୀ
ବଡ଼ କୋପଭରେ ହସ୍ତେ ଲଙ୍ଗଳ ବୁଲାଇ ।
ବୋଇଲେ ତୁମ୍ଭ ରାଜ୍ୟ ମୁଁ ପକାଇବି ତାଡ଼ି
ବଜ୍ର ମୁଷଳେକ ସେହୁ କରେ ଛନ୍ତି ଧରି ।
ବୋଇଲେ କାହିଁର ତୁମ୍ଭେ ଅଟ ନୃପରାଣ
ସେ ବୋଇଲେ ଆମ୍ଭ ରାଜ୍ୟ ଦ୍ୱାରାବତୀପୁର ।
ଯଦୁ ଭୋଜବଂଶରେ ଯେ ଅଟୁ ଆମ୍ଭେରାୟେ
ଆମ୍ଭର ବନ୍ଦୀ ହୋଇଛି ଯେବଣ ତନୟେ ।
ଡଗର ମୁଖରୁ ବାଣୀ ଏସନକ ଶୁଣି
ତତ୍କ୍ଷଣେ ଚଳିଗଲା ମନ୍ତ୍ରୀ ଚୂଡ଼ାମଣି ।
ରାଜାଙ୍କ ଛାମୁରେ ଯାଇ ପ୍ରବେଶ ହୋଇଲା
ଶିର କରଦେଇ ପାଦେ ପଡ଼ିଣ ଶୋଇଲା ।
ଉଠି କରଯୋଡ଼ି ପୁଣି ବୋଲେ ନୃପବର
ଡଗର ଯାହା କହୁଛି ଅବଧାନ କର ।

ରାଜା ଆଜ୍ଞା ଦେଲାକ ସେ ଡଗରକୁ ଚାହିଁ
କାହିଁର ରାଜା ଅଟେ ସେ କାହିଁକି ଆସଇ ।
ଡଗର ବୋଲେ ଶୁଣିମା ହେଉ ନରନାଥ
ତୁମ୍ଭେ ଘରେ ରଖିଅଛ ବାନ୍ଧି ଯେଉଁ ପୁତ୍ର ।
ତାହାଙ୍କର ପିତା ଘର ଦ୍ୱାରାବତୀ ପୁର
ଯଦୁ ଭୋଜବଂଶର ସେ ଅଟେ ନୃପବର ।
ଦୂତ କହନ୍ତି ନୃପତି ମନ୍ତ୍ରୀକୁ ପୁଚ୍ଛିଲା
ଥାଟ ସଜକର ଆମ୍ଭେ ଯିବାକୁ ବୋଇଲା ।
କରପତ୍ର ଯୋଡ଼ି ମନ୍ତ୍ରୀବର ଯେ କହଇ
ପୁରୁଷାନୁକ୍ରମେ ମୁଁ ତୋ ସେବକ ଅଟଇ ।
ନ କହି ରଖିଲେ କଥା ହେବ ଅନୁଚିତ
କହିଲେ କ୍ଷମା କରିବୁ ଦୋଷ ନୃପନାଥ ।
ମନ୍ତ୍ରୀକି ବୋଇଲା ରାଜା ତୋର କିସ ଦୋଷ
ନିର୍ଭୟ ହୋଇଣ କହ ତୁ ମୋହର ପାଶ ।
ମନ୍ତ୍ରୀ ବୋଇଲା ଜାଣଇ ତହିଁର ବିଧାନ
ଏକମନ ହୋଇ ତୁ ହୋ ଶୁଣ ନୃପରାଣ ।
ମଥୁରା ନାମେ କଟକ ରାଜା ଉଗ୍ରସେନ
ଅସୁର ଅଂଶେ ଜନମ କଂସ ତା ନନ୍ଦନ ।
ବଡ଼ ପ୍ରତାପୀ ହୋଇ ସେ ଥିଲା ମହାରାୟ
ଦେବଗନ୍ଧର୍ବଙ୍କୁ ସେହି ନ କରଇ ଭୟ ।
ଦେବତାଙ୍କୁ ଖଟାଇଲା ଆଣି ପାଦତଳେ
ଦାନବ ବଳ ପାତାଳୁଁ ଆସି ସାହା ହେଲେ ।
ଏମନ୍ତ ରାଜ୍ୟ କରଇ କଂସ ନୃପବର
ଡରେ ପୃଥିବୀର ରାଜା ଆଣି ଦେଲେ କର ।
ନାରଦ ମୁନି କହିଲେ ତା ଆଗରେ ଦିନେ
ଆହେ କଂସରାଜା ତୁହୋ ଶୁଣ ଏକମନେ ।
ତୋର ଭଣଜା ହସ୍ତରେ ତୋହର ନିଧନ
ଜ୍ୟେଷ୍ଠ ଭଉଣୀ ଦେବକୀ ତାହାର ନନ୍ଦନ ।
ଉଗ୍ରସେନ ଏବେ ସେହୁ ଭଉଣୀକି ତୋର
ବସୁଦେବକୁ ଯେ ବିଭା କଲା ନୃପବର ।
ଏମନ୍ତ ଶୁଣି ସେ କଂସ ମହାଭୟ କଲା
ଦେବକୀର ଷଡ଼ପୁତ୍ର ସ୍ୱହସ୍ତେ ବଧିଲା ।
ପୁଣି ନାରଦ କହିଲେ ଆସି ଏକଦିନେ
ଏହି ଗର୍ଭୁ ଶତ୍ରୁ ତୋର ଉପୁଜିବ ଜାଣେ ।
ଏହାଶୁଣି ଭଉଣୀକି କଂସ ବନ୍ଦୀକଲା
ବନ୍ଦୀଘରେ ତାର ଏକ ପୁତ୍ର ଜନମିଲା ।
ବସୁଦେବ ଚୋରାଇଣ ତାକୁ ଘେନିଗଲା
ଗୋପପୁରେ ନନ୍ଦଘରେ ଛାଡ଼ିଣ ଅଇଲା ।
କନ୍ୟା ଏକ ପାଲଟାଇ ଆଣିଣ ରଖିଲା
ମରକତ ଶିଳାରେ ତା ନେଇ କଚାଡ଼ିଲା ।
ବୁଜୁଳୀ କନ୍ୟା ଯେ ଶାପ ପାଇ ଜନ୍ମିଥିଲା
ହସ୍ତରୁ ଖସି ଯାଇଣ ଶୂନ୍ୟରେ ରହିଲା ।
ଯେ ତୋତେ ମାରିବ ଗୋପପୁରେ ଜନ୍ମିଲାଣି
ଏତେ କହି ଅନ୍ତର୍ଦ୍ଧାନ ହେଲା ସେ ତରୁଣୀ ।
ତାହା ଶୁଣି କଂସରାଜା ବଡ଼ ଚିନ୍ତା କଲା
ଅଷ୍ଟମଲ୍ଲଙ୍କୁ ଗୁପତେ ଗୋପକୁ ପେଷିଲା ।
ରାମ କୃଷ୍ଣଙ୍କ ହସ୍ତେ ସେ ହୋଇଲେ ବିନାଶ
ତେଣୁ କଂସ ନୃପତିର ଉଡ଼ିଲା ସାହସ ।
ଅକ୍ରୁର ପେଷିଣ ରାମ କୃଷ୍ଣଙ୍କୁ ଅଣାଇ
ମଥୁରା କଟକେ ଧନୁ ଉତ୍ସବ ଭିଆଇ ।
କପଟେ ତାହାଙ୍କୁ ନାଶ କରିବା ନିମନ୍ତେ
କୁବଳୟା ଗଜ ଘେନି ରହିଲେ ମାହୁନ୍ତେ ।
ରାମ କୃଷ୍ଣ ଦେଖି କଂସ ହୋଇଲା ନିଧନ
ଦଇବର ମାୟାକୁ କେ କରିବଂ ବା ଆନ ।
ରାମ କୃଷ୍ଣଙ୍କର ମାତା ଦେବକୀ ଅଟଇ
ବସୁଦେବ ନାମେ ପିତା ତାହାଙ୍କର ହୋଇ ।
ବନ୍ଦୀ କରି ରଖିଥିଲା କଂସ ମହାରଥୀ
ତାଙ୍କୁ ମାରି ରାମକୃଷ୍ଣ ରୁହାଇଲେ କଥା ।
ମାତା ପିତାଙ୍କୁ ବନ୍ଦୀରୁ ମୁକୁଳାଇ ଦେଲେ
ଉଗ୍ରସେନକୁ ନୃପତି ତହିଁ କରାଇଲେ ।
ଏମନ୍ତ ପ୍ରକାରେ ତହିଁ କିଛିଦିନ ଗଲା
ମହାସୁଖେ ଉଗ୍ରସେନ ରାଜ୍ୟ କରୁଥିଲା ।
କଂସର ଭାରିଯା ଦୁଇ ହେତି ଯେ ପ୍ରହତି
ତାଙ୍କ ପିତା ଜରାସନ୍ଧ ନାମେ ନରପତି ।
ପିତା ଆଗରେ ଗୁହାରି କଲେ ସେହୁ ଯାଇ
ଶୁଣି ଜରାସନ୍ଧ ରାଜା ମନେ କୋପ ବହି ।
ମଥୁରାକୁ ଅଷ୍ଟାଦଶ ବେଳ ଧାଡ଼ଦେଲା
ରାମକୃଷ୍ଣଙ୍କୁ ତଥାପି ଜିଣି ନ ପାରିଲା ।
ରାମକୃଷ୍ଣ ବୋଲି ବସୁଦେବର କୁମର
ସାକ୍ଷାତେ ପରମବ୍ରହ୍ମ ନର ଅବତାର ।
ମାନବ ରୂପ ଦେବଙ୍କ ଛଳେ ଛନ୍ତି ବହି
ମଥୁରାପୁରେ ଜନମ ହେଲେ ଭାବଗ୍ରାହୀ ।
ଜରାସନ୍ଧ ବଳେ ତାକୁ କିସ କରିପାରି
ଦେବକାର୍ଯ୍ୟେ ତାହାକୁ ନ ମାଇଲେ ଶ୍ରୀହରି ।
ତହୁଁ ଯାଇ କୁଶସ୍ଥଳୀ ଦ୍ୱାରକା ରହିଲେ
ଉଗ୍ରସେନକୁ ନୃପତି ତହିଁ କରାଇଲେ ।
ଅଷ୍ଟକନ୍ୟା ତହୁଁ କୃଷ୍ଣ ହୋଇଲେକ ବିଭା
ଆଗ ଭାରିଯା ରୁକ୍ମିଣୀ ନାମେ ଅତି ଶୋଭା ।
ତାହାଙ୍କ ପୁତ୍ର ଅଟଇ ଏ ପ୍ରଦ୍ୟୁମ୍ନ ବୀର
କୃଷ୍ଣର ପ୍ରଥମ ପୁତ୍ର ଅଟେ ଏ କୁମର ।

ସେ ପୁଣି ତୋର ଝିଅକୁ ନେଉଥିଲା ହରି
ତୁ ତାହାକୁ ରଖିଅଛୁ ପୁଣି ବନ୍ଦୀକରି ।
ମୋ କଥା ମାନି ତୁ ବନ୍ଧୁ କରି ନୃପରାୟ
ସମର କଲେ ତୁ ରାଜା ନ ପାଇବୁ ଜୟ ।
ଯହିଁ ତହିଁ ଦୁହିତାକୁ ବିଭା ଦରାଇବା
ମୋହର ମତେ ତାହାକୁ ବିଭାକରି ଦେବା ।
ସ୍ୱଭାବେ ଦୁହିତା କନ୍ୟା ହୋଇଲା କୁମାରୀ
ଆନକୁ ଦେବାକୁ ବିଧି ନୁହଇ ଆମ୍ଭରି ।
ବିରୁପାକ୍ଷ ମନ୍ତ୍ରୀ ତହୁଁ ଏମନ୍ତ କହିଲା
କୃତଶେଖର ରାଜନ ଚକିତ ହୋଇଲା ।
ମନ୍ତ୍ରୀ ବୋଇଲା କଥାଏ ଅଛଇ ଗୋସାଇଁ
ହସ୍ତିନାର ରାଜା ତାଙ୍କ ସଙ୍ଗତେ ଅଛଇ ।
ସପତ କ୍ଷଉଣୀ ବଳ ସଙ୍ଗତେ ତାହାର
ସେ ରାଜାର ନାମ ଅଟେ ଧର୍ମ ଯୁଧିଷ୍ଠିର ।
ଭୀମ ଅର୍ଜୁନ ନକୁଳ ସହଦେବ ଚାରି
ଏମନ୍ତ ସେ ପାଞ୍ଚଭାଇ ସଙ୍ଗତେ ତାଙ୍କରି ।
ସଂଗ୍ରାମ ବଳେ ଯେ ଯଶ ଆମ୍ଭେ ନ ପାଇବା
ବିନା କାରଣରେ ଥାଟ ଯାକ ମରାଇବା ।
ଏମନ୍ତ ବଚନ ଯହୁଁ ସରବ କହିଲା
ଶୁଣିଣ କୃତଶେଖର ଆଶ୍ଚର୍ଯ୍ୟ ହୋଇଲା ।

—୦—

## ସୁରେଖା ବିବାହ

ଅଗସ୍ତି ବୋଲନ୍ତି ଶୁଣ ବିଲଙ୍କାର ରାୟ
ଅପୂର୍ବ ଆଖ୍ୟାନ ଏହି ସୁଧାରସ ମୟ ।
ପଢ଼ିଲେ ଶୁଣିଲେ ପ୍ରାଣୀ ଭବୁ ନିସ୍ତରନ୍ତି
ନାନାଦି ପାତକମାନ ଅଙ୍ଗରୁ ଖଣ୍ଡନ୍ତି ।
ରାଜାର ବିମନ କଥା ମନ୍ତ୍ରୀ ଯେ ଜାଣିଲା
କରପତ୍ର ଯୋଡ଼ିକରି ଚରଣ ନମିଲା ।
ଯେତେକ ବିଷୟ ଦେବ କହିଲି ଛାମୁରେ
ଅଇଲା କି ତୋ ମନକୁ ଏକଥା ବିଚାରେ ।
ରାଜା ବୋଇଲା ଏ ମୋତେ ସଂଶୟ ଲାଗିଲା
କି ବୁଦ୍ଧି କରିବି ବୋଲି ଚିନ୍ତାଭର ହେଲା ।
ଏମନ୍ତ ସମୟେ ଦେଖ ଦଇବ ଭବିଷ୍ୟ
ଯାଇଣ ମିଳିଲେ ତହିଁ ବ୍ରହ୍ମାଙ୍କର ଶିଷ୍ୟ ।
ନାରଦଙ୍କୁ ଦେଖି କୃତଶେଖର ଉଠିଲେ
ଭକତିଭରେ ଚରଣେ ପ୍ରଣମି ଶୋଇଲେ ।
ବୋଇଲେ ଭୋ ମୁନି ବଡ଼କଥା ଏ ହୋଇଲା
ମୋ ଭାଗ୍ୟରୁ ତୁମ୍ଭପାଦ ଏଠାରେ ପଡ଼ିଲା ।
ମୁନି ବୋଇଲେ ରାଜା ତୁ ହୁଅ ଭାଗ୍ୟବାନ
ଆଶୀର୍ବାଦ କରୁଅଛୁ ଆମ୍ଭେ ରାତ୍ରଦିନ ।

ରାଜା ବୋଇଲେ କଥାଏ ପଚାରିବି ମୁହିଁ
ଅବଧାନ କରି ତାହା ଶୁଣିମା ଗୋସାଇଁ ।
ରଖିଥାଅ ମୋ କନ୍ୟାକୁ ମେଢ଼ର ଭିତରେ
ପୁରୁଷ ମାତ୍ରକେ ପଶି ନ ପାରେ ତହିଁରେ ।
ଦ୍ୱାରାବତୀ ପୁରେ କୃଷ୍ଣ ପ୍ରଥମ କୁମର
ପ୍ରଦ୍ୟୁମ୍ନ ବୋଲିଣ ନାମ ଅଟଇ ତାହାର ।
ମେଢ଼ର ଭିତରେ ଆସି ଗୁପତେ ପଶିଲା
ସୁରେଖା କନ୍ୟାକୁ ମୋର ହରି ନେଉଥିଲା ।
ବାରତା ପାଇଣ ଧରି ଆଣିଲି ତାହାକୁ
ବନ୍ଦୀରେ ରଖିଛି ବାଟ ନ ପାଏ ଯିବାକୁ ।
ତାହାର ପିତାର ନାମ ଶ୍ରୀକୃଷ୍ଣ ଅଟଇ
ବାରତା ପାଇ ଉଠିଲେ କୃଷ୍ଣ ହଳସାଇଁ ।
ତାଙ୍କ ସଙ୍ଗେ ଉଗ୍ରସେନ ରାଜା ଆସିଛନ୍ତି
ଆବର ସଙ୍ଗେ ଅଛନ୍ତି ପଣ୍ଡୁର ସନ୍ତତି ।
ଉଗ୍ରସେନ ରାଜାବଳ ପନ୍ଦର କ୍ଷଉଣୀ
ପାଣ୍ଡବେ ଆସିଅଛନ୍ତି ସାତକ୍ଷୌଣୀ ଘେନି ।
ସଙ୍ଗେ ଅଛନ୍ତି ଶ୍ରୀରାମ କୃଷ୍ଣ ପୁତ୍ରଗଣ
ଆବର ଅଟନ୍ତି ସେହୁ ସ୍ୱୟଂ ନାରାୟଣ ।
ରାଜାର କହନ୍ତେ ତାହା ନାରଦ ଶୁଣିଲେ
ରାଜାଙ୍କୁ ନେଇ ଆପଣା ପାଶେ ବସାଇଲେ ।
ବୋଇଲେ ନୀଳଶେଖର ଆଣ ହକରାଇ
ମୁନି ଆଜ୍ଞା ପରମାଣେ କୁମର ଆସଇ ।
ନୀଳକୁ ବୋଇଲେ ମୁନି ବସ ହୋଇ ବେଗ
ଗୁପତ କଥାଏ ମୁହିଁ କହିବି ତୋ ଆଗ ।
ନୀଳଶେଖର କୁମର ମିଳିଲାକ ଆସି
ନାରଦ ମୁନି ଚରଣେ ନମଇଁ ବିଶେଷି ।
ମୁନିବର କୁମାରକୁ କଲ୍ୟାଣ ବାଞ୍ଛିଲେ
ଆଶ୍ୱାସନା କରି ତାକୁ ପାଶେ ବସାଇଲେ ।
କୃତ ଶେଖର ତା ପୁତ୍ର ଯେ ନୀଳଶେଖର
ବିରୁପାକ୍ଷ ମନ୍ତ୍ରୀବର ବସିଲା ଆବର ।
ନାରଦ ବୋଇଲେ ଆମ୍ଭେ କହିବୁ ହେ ଯାହା
ଅନ୍ୟଥା ନ କରିବ ତା କେଭେ ନରନାହା ।
ମୁନିଙ୍କ ବଚନେ ରାଜା କୃତ୍ୟ କୃତ୍ୟ ହୋଇ
ବିନୟ ହୋଇ ନାରଦ ମୁନିଙ୍କୁ ପୁଚ୍ଛଇ ।
ମୁନି ବୋଇଲେ ତୁ ରାଜା ଥାଟ ସଜକର
ପୁତ୍ର ତୋ ନୀଳଶେଖର ହୋଇବ ଆବର ।
ସୁରେଖା କନ୍ୟାକୁ ବେଶ ଭୂଷଣ କରାଇ
କୁମାର କୁମାରୀକୁ ଯେ ରଥରେ ବସାଇ ।
ଆଗ ପଛ ହୋଇ ପୁଣ ସମସ୍ତେ ଯେ ଥିବା
ନାନାବାଦ୍ୟ ବଜାଇଣ ତାଙ୍କ ପାଶେ ଯିବା ।

ବାଟରେ ରାମକୃଷ୍ଣଙ୍କୁ ଭେଟିବାକୁ ଯାଇ
ବଡ଼ୁତ ଯେ ପୁରୁଷାର୍ଥ ତେବେ ଉପୁଜଇ ।
କଳିଦ୍ୱନ୍ଦ୍ୱ ଏଥିରେ ଯେ ନୋହିବାକ କିଛି
ଏ କଥା ଆମ୍ଭ ମନକୁ ଭଲ ଆସୁଅଛି ।
ନାରଦ ମୁନି କହନ୍ତେ ରାଜା ଧ୍ୱନି ହେଲା
ନୀଳଶେଖର ପୁତ୍ରକୁ ପଚାରି ବୋଇଲା ।
ମୁନି ବୋଇଲା ତୁ କିସ କହିଲୁ କୁମର
ଭଲ ଦିଶୁଛି କି ତୋତେ ଆମ୍ଭର ବିଚାର ।
କୁମର ବୋଇଲା ତୁମ୍ଭେ ଶୁଣିମା ଗୋସାଇଁ
ଅବଶ୍ୟ ଏ କୁମାରୀକୁ ଦେବ ଯହିଁ ତହିଁ ।
ବିଷ୍ଣୁର କୁମର ସେ ତ ଅଟେ ମହାବୀର
ଆମ୍ଭର ଭାଗ୍ୟରେ ଯେବେ ମିଳିଅଛି ବର ।
ଏଥୁ ଅଧିକ ଖୋଜିଲେ ବର ଯେ ନ ପାଇ
ଦଇବ ପୁରୁଷ ଯାହା ଅଛଇ ଘଟାଇ ।
ବିଧାତା ବଶରୁ ଏବେ ଆମ୍ଭର ଦୁହିତା
ମହାସତୀ ହୋଇ କନ୍ୟା ହୋଇଲା ଦୂଷିତା ।
ଏ କନ୍ୟାକୁ ଏହି ବର ଦୁର୍ଲ୍ଲଭ ଅଟଇ
ମୋର ମନକୁ ଏ କଥା ଖଟିଲା ଗୋସାଇଁ ।
ବିନାଶ କାରଣେ କଳିଦ୍ୱନ୍ଦ୍ୱ ନ କରିବା
ପୁତ୍ରର କହନ୍ତେ କୃତଶେଖର ଉଠିଲା ।
କାଳେ ଏ କଥାକୁ ନିର୍ଭା କରି ନ ପାରିବା
ନୀଳ ତ କହିଲା ତାର ମନକୁ ଆସିଲା ।
ନାରଦ ବୋଇଲେ ରାଜା ନ କର ତୁ ଚିନ୍ତା
ଦୁର୍ଲ୍ଲଭ ବର ପାଇଲା ତୋହର ଦୁହିତା ।
ଏତେ ବୋଲିକରି ରାଜା ଭିତରକୁ ଗଲା
ଭାରିଯା ମାଳତୀକୁ ସେ ରାଇଣ ଆଣିଲା ।
ବୋଇଲା ଅପୂର୍ବ କଥା ରାଣୀ ତୁ ହୋ ଶୁଣ
ମେଢ଼ରୁ କନ୍ୟାକୁ ନେଇଥିଲା ଯେଉଁଜନ ।
ତାହାକୁ ଧରିଣ ଆମ୍ଭେ ବାନ୍ଧି ରଖିଥିଲୁ
ବଡ଼ ଘର ପୁଅ ବୋଲି ଏବେ ତା ଜାଣିଲୁ ।
ଦ୍ୱାରାବତୀ ନାମେ ପୁର ଶ୍ରୀକୃଷ୍ଣ କୁମର
ଘେନି ଯାଉଥିଲା ସେହୁ ଝିଅକୁ ଆମ୍ଭର ।
ବାରତା ପାଇଣ ରାମ-କୃଷ୍ଣ ଯେ ଅଇଲେ
ଉଗ୍ରସେନ ସଙ୍ଗେ ଥାଟ ସଇନ୍ୟ ବାହିଲେ ।
ଆବର ସଙ୍ଗେ ହସ୍ତିନା ଦେଶ ମହାରାୟେ
ଆମ୍ଭର ସଙ୍ଗେ ସମର କରିବାକୁ ଥାଏ ।
ନାରଦ ମୁନି ଥାଇଣ ଆମ୍ଭେ ବିଚାରିଲୁ
ତାକୁ କନ୍ୟା ବିଭା ଦେବା ବୋଲିଣ ବୋଇଲୁ ।
ରାଜାର କହନ୍ତେ ରାଣୀ ମନକୁ ରୁଚିଲା
ହେଉ ବୋଲି ରାଣୀ ତାହା ସନମତ କଲା ।

ଭିତର ନବରୁ ରାଜା ବାହାର ହୋଇଲେ
ନାରଦ ମୁନି ଛାମୁରେ ଆସିଣ ମିଳିଲେ ।
ସବୁରି ସନମତେ ତା କଲା ସୀଉକାର
ମନ୍ତ୍ରୀକୁ ଚାହିଁ ବୋଲଇ ପୁଣି ନୃପବର ।
ପ୍ରଦ୍ୟୁମ୍ନ କୁମର ବେଗେ ଘେନିଆସ ଯାଇ
ତତକ୍ଷଣେ ମନ୍ତ୍ରୀବର ଗଲାକ ଚଳାଇ ।
ବନ୍ଦୀଘରୁ ପ୍ରଦ୍ୟୁମ୍ନକୁ ଘେନିଣ ଆସିଲା
ନାରଦ ମୁନି ଛାମୁରେ ନେଇ ଉଭାକଲା ।
ନାରଦଙ୍କୁ ଦେଖି ବେଗେ ପ୍ରଦ୍ୟୁମ୍ନ କୁମର
ମୁନିଙ୍କ ଚରଣ ତଳେ କଲେ ନମସ୍କାର ।
ମୁନି ବୋଇଲେ କଲ୍ୟାଣ ହେଉ ବାବୁ ତୋତେ
ସୁରେଖାକୁ ଘେନି ଘର କର ତୁ ନିଶ୍ଚିନ୍ତେ ।
ସ୍ନାନ ମାର୍ଜ୍ଜନା କରାଇ କୁମରକୁ ନେଲେ
ନାନା ଅଳଙ୍କାର ତାର ଅଙ୍ଗେ ନାଇଦେଲେ ।
କଣ୍ଠେ ଲମ୍ବାଇଲେ ନେଇ ନବରତ୍ନ ମାଳ
ମଥାରେ ପାଗ ବାନ୍ଧିଲେ ଦିଶଇ ସୁଢ଼ଳ ।
ପିନ୍ଧିବାକୁ ଦେଲେ ଆଣି ନୂତନ ବସନ
ସୁଗନ୍ଧ ଚନ୍ଦନ କଲେ ଅଙ୍ଗରେ ଲେପନ ।
ବେଶକରି ବସାଇଲେ ରଥେ ତାକୁ ନେଇ
କୁମାରୀ ପାଖକୁ ଗଲେ ଦାସୀମାନେ ଧାଇଁ ।
ମେଢ଼ରେ ସେ କୁମାରୀକି ବେଶ କରାଇଲେ
କର୍ଣ୍ଣେ ତାଡ଼କୀ ନାସାରେ ବସଣୀ ଖଞ୍ଜିଲେ ।
ଗଳାରେ ସେ ଚାପସରୀ ସ୍ୱର୍ଣ୍ଣମାଳା ମୋତି
ପୟୋଧରେ କସ୍ତୁରୀରେ ଚିତ୍ରକୁ ଲେଖନ୍ତି ।
ହସ୍ତରେ ସୁବର୍ଣ୍ଣ ଚୂଡ଼ୀ ବାହାର ବାହୁଟି
ମୁଦ୍ରିକା ଖଞ୍ଜିଲେ ହସ୍ତ ପାଦର ଅଙ୍ଗୁଷ୍ଠି ।
କପାଳେ ସିନ୍ଦୂର ଚିତା ଟୋପି ନେଇ ଦେଲେ
ଅରୁଣ ଉଇଁଲା ପ୍ରାୟ ଶୋଭା ସେ ଦିଶିଲେ ।
ପୟରେ ଅଳତା ନେଇ ଲେପିଲେ ତରୁଣୀ
ଅମୂଲ୍ୟ ଯେଣୁ ଅଟେ ସେ ଅନଙ୍ଗ ଘରଣୀ ।
ଦେବାଙ୍ଗ ପାଟଶାଢ଼ୀରୁ ଖଣ୍ଡେ ପିନ୍ଧାଇଲେ
ସୁରଙ୍ଗ ପାଟକେ ତହିଁ ଉପରାଣ ଦେଲେ ।
ଦିବ୍ୟବେଶ କରି ଦାସୀ କୁମାରକୁ ନେଲେ
କୁମାର ପାଶରେ ନେଇ ପାଶେ ବସାଇଲେ ।
ଥାଟ ସଜକରି କୃତଶେଖର ବାହାର
ମନ୍ତ୍ରୀ ରଥକୁ ଚଳାଇଗଲେ ଧୀର ଧୀର ।
ନୀଳଶେଖର କୁମର ସଙ୍ଗତେ ଅଛଇ
ମନ୍ତ୍ରୀକୁ ପାଖରେ ରାଜା ଅଛନ୍ତି ଚଢ଼ାଇ ।
ଆଗରେ ବାଜଇ ବୀରତୂର ଯେ ଚହଳ
ଶଙ୍ଖ ମହୁରୀ ଶବଦେ ପୃଥ୍ୱୀ ଟଳ ଟଳ ।

ନାରଦ ମୁନି ଥୋକାଏ ଦୂର ସଙ୍ଗେ ଗଲେ
ରାଜାକୁ ରୁହାଇ ରାମ ଛାମୁରେ ମିଳିଲେ ।
ମୁନିଙ୍କୁ ଦେଖି ହସିଲେ ରାମ ବନମାଳୀ
ବୋଇଲେ କିସ ଚରିତ କଲ ତପଶାଳୀ ।
ନାରଦ ବୋଇଲେ ସବୁ ଭଲ ହୋଇଅଛି
ରାଜା ବରକନ୍ୟା ଘେନି ଶରଣ ପଶୁଛି ।
ଉଗ୍ରସେନକୁ ଗୋବିନ୍ଦ ରାଇଲେ ପାଶକୁ
ଆବର ରାଇଲେ ରାମ ପଞ୍ଚପାଣ୍ଡବଙ୍କୁ ।
ଏ ସମସ୍ତେ ଏକରୁଣ୍ଡ ହୋଇଣ ବସିଲେ
ନାରଦ ତହିଁ ସମସ୍ତ ଚରିତ କହିଲେ ।
ନାରଦଙ୍କ ମୁଖରୁ ଯେ ଏସନକ ଶୁଣି
ପଚାରନ୍ତି ଉଗ୍ରସେନ ରାଜା ପୁଣି ପୁଣି ।
ନାରଦ ବୋଇଲେ ରାଜା ଶରଣେ ଆସୁଛି
ଗଉରବ କରିବ ନା ତାକୁ ନନ୍ଦବସି ।
ବରକନ୍ୟା ଘେନି ଯେବେ ମାଗୁଛି ଶରଣ
ଏଥୁଁ ଅଧିକ କି ଯଶ ହେବ କଲେ ରଣ ।
ନାରଦ କହନ୍ତେ ସର୍ବେ ସନ୍ତୋଷ ହୋଇଲେ
ବୀଣା ବଜାଇ ନାରଦ ରାଜା ପାଶେ ଗଲେ ।
ଆସ ବେଗହୋଇ ଯିବା ବିଳମ୍ବ ନ କର
ମନ୍ତ୍ରୀ ଯେ ପୁତ୍ର ଅଛନ୍ତି ନୃପତି ସଙ୍ଗର ।
କୁମାର କୁମାରୀଙ୍କୁ ସେ ରଥରେ ବସାଇ
ରାମକୃଷ୍ଣଙ୍କ ଚାମୁରେ ମିଳିଲେକ ଯାଇଁ ।
ହସ୍ତରେ ଦେଖାଇ ଦେଲେ ବ୍ରହ୍ମାଙ୍କ ନନ୍ଦନ
ବୋଇଲେ ଏହି ଅଟନ୍ତି ରାମ ଭଗବାନ ।
ଯେତେ ପାପ ଅଙ୍ଗେ ଅଛି ଦେଖି କରଧ୍ୱଂସ
ପରମପୁରୁଷ ଏହି ଦେଖି ମଲା କଂସ ।
ଗୋବିନ୍ଦଙ୍କୁ ଯହୁଁ କୃତଶେଖର ଚାହିଁଲା
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀହସ୍ତେ ଦେଖିଲା ।
ପଦ୍ମ ପାଦତଳେ ପଡ଼ି ସାଷ୍ଟାଙ୍ଗେ ଶୋଇଲା
ପୁଣି ଉଠିକରି ରାଜା ନିଉଛାଳି କଲା ।
ସହସ୍ରେକ ଦଣ୍ଡବତ କଲେ ନୃପବର
ଉଠ ଉଠ ନୃପତି ହୋ ବୋଲି ଚକ୍ରଧର ।
ନାରାୟଣଙ୍କ ଆଜ୍ଞାରେ ଉଠିଲା ରାଜନ
କରପତ୍ର ଯୋଡ଼ି ଉଭାହେଲା ଛାମୁରେଣ ।
କୁମାର କୁମାରୀଙ୍କି ସେ ରଥରୁ ଓହ୍ଲାଇ
ଗୋବିନ୍ଦଙ୍କୁ ପାଦତଳେ ପକାଇଲା ନେଇ ।
ରାମକୃଷ୍ଣ ଦେଖି ବୀର ପ୍ରଦ୍ୟୁମ୍ନ ଉଠିଲା
ନମସ୍କାର କରି ଶିରେ କରକୁ ଯୋଡ଼ିଲା ।
କୁମାରୀ ଯେ ନମସ୍କାର କରେ ପାଦତଳେ
ଉଠ ଗୋ ବୋଲି ବୋଲନ୍ତି ହରିକାମପାଳେ ।
କରପତ୍ର ଯୋଡ଼ି ରାଜା ଉଭା ଖଣ୍ଡେଦୂର
ଗୋବିନ୍ଦ ବୋଇଲେ ଆସ ଆସ ନୃପବର ।
ଉଗ୍ରସେନ ଯୁଧିଷ୍ଠିଙ୍କ ଚରଣେ ନମଇଁ
କଲ୍ୟାଣ କରି ବୋଲନ୍ତି ଶୁଣ ନୃପସାଇଁ ।
ଏମନ୍ତ ସମୟେ ନୀଳଶେଖର ଆସିଲା
ନାରାୟଣଙ୍କୁ ଦେଖିଣ ଓଳଗି ହୋଇଲା ।
ତାର ପଛେ ବିରୁପାକ୍ଷ ମନ୍ତ୍ରୀ ହେ ନମଇଁ
ଉଠ ଉଠ ମନ୍ତ୍ରୀ ବୋଲି ହରି ଆଜ୍ଞା ଦେଇ ।
ବହୁତ ପ୍ରଶଂସା କଲେ ମନ୍ତ୍ରୀକି ଗୋବିନ୍ଦ
ଏହାଯୋଗୁଁ ନ ପଡ଼ଇ ରାଜ୍ୟକୁ ପ୍ରମାଦ ।
ମନ୍ତ୍ରୀ ବୋଇଲା ଗୋସାଇଁ ତୁମ୍ଭ କଲ୍ୟାଣରେ
ପୁରୁଷାନୁକ୍ରମେ ସେବା କରୁ ନୃପବରେ ।
ନାରଦ ମୁନି ବୋଲନ୍ତି ଶୁଣ ହେ କହ୍ନାଇ
ମନ୍ତ୍ରୀ ପ୍ରସାଦେ ଏ ରାଜ୍ୟେ ଅପଚୟ ନାହିଁ ।
ଯେ କାଳେ ପୁତ୍ରକୁ ରାଜା ଧରାଇଣ ନେଲା
ମାରିପକା ବୋଲି ରାୟେ ମନ୍ତ୍ରୀକି କହିଲା ।
ବଡ଼ ବିଜ୍ଞଜନ ଅଟେ ଏହି ମନ୍ତ୍ରୀବର
ରାଜାକୁ ବୋଇଲା ତୁମ୍ଭେ ଏହି ବୋଲକର ।
ବଡ଼କୂଳେ ଜନ୍ମିଅଛି ଏହାକୁ ରଖିବା
ଦଣ୍ଡ ଦେଇଣ ବିଚାରି କନ୍ୟା ବିଭା ଦେବା ।
କୁମରକୁ ନ ଦଣ୍ଡି ଏ ବନ୍ଦୀ କରିଥିଲା
ଏତେବେଳେ ସେ ସୁଲଭ କଥା ସିନା ହେଲା ।
ଗୋବିନ୍ଦ ଆଗରେ ମୁନି ଏମନ୍ତ କହିଲେ
ମନ୍ତ୍ରୀବରକୁ ବହୁତ ପରଶଂସା କଲେ ।
କୃତଶେଖର ନୃପତି କହେ ଯୋଡ଼ିକର
ସାବଧାନେ ଶୁଣିମା ହେ ଦେବ ଚକ୍ରଧର ।
ଆରତ ଭଞ୍ଜନ ତୁମ୍ଭେ ଅଟ ବ୍ରହ୍ମରାଶି
ଦୁଃଖୀଜନମାନର ବନ୍ଧୁ କ୍ଷୀରୋଦ ନିବାସୀ ।
ଅରକ୍ଷଜନମାନଙ୍କୁ ରଖିବା ନିମନ୍ତେ
ଶଙ୍ଖ ଚକ୍ର ଗଦା ପଦ୍ମ ଧନୁ ତୋର ହସ୍ତେ ।
ମୁହିଁ ଅରକ୍ଷିତ ଜନ ଅଟଇ ଗୋସାଇଁ
ତୋହର ଦୟା ନ ହେଲେ ମୋର ଗତି ନାହିଁ ।
ଯେତେ ଦୋଷ କରିଅଛ କରିବା ନା କ୍ଷମା
ନୀରକ୍ଷ ଲୋକର ସ୍ୱାମୀ ଅଟୁ ବଜ୍ର ସ୍ନେହା ।
ରାଜା ବିନୟ ଭକତି ଭାବମାନ ଦେଖି
ସୁଦୟା କରି କହନ୍ତି ହସି ପଦ୍ମ ଆଖି ।
ଶୁଣ ତୁ ହୋ ମହାରାୟ ଆମ୍ଭର ବଚନ
ଆଜିଯାଏ କନ୍ୟା ବିଭା ନ କଲୁ ରାଜନ ।
ତେଣୁ ଦୁହିତା ତୋହର ଦୁଷିତା ହୋଇଲା
ଆମ୍ଭ ପୁତ୍ରକୁ ସୁନ୍ଦର ଦେଖିଣ ବରିଲା ।

ତୁ ତାକୁ ବିଭା ନ ଦେଇ ରଖିଲୁ ବନ୍ଧନେ
ତେଣୁ ମହାକୋପ ଜାତ ହେଲା ଆମ୍ଭମନେ ।
ବଳରାମଙ୍କର କ୍ରୋଧ କହିଲେ ନ ସରେ
ତୋ ରାଜ୍ୟକୁ ତାଡ଼ିଥାନ୍ତେ ନିଶ୍ଚେ ଲଙ୍ଗଳରେ ।
ଜନ ପରଜା ତୋହର ଯାଇଥାନ୍ତେ ନାଶ
ନାରଦ ମୁନି ଯୋଗରୁ ରହିଲା ତୋ ବଂଶ ।
ଶ୍ରୀହରି କହନ୍ତି କୃତଶେଖର ଶୁଣଇ
କରପତ୍ର ଯୋଡ଼ି ପୁଣି ଚରଣେ ନମଇଁ ।
ଯେତେ ଦୋଷ କଲି ତାହା ମନରେ ନ ଧର
ଏ କୁମର କୁମାରୀକି ନିଅ ଦାମୋଦର ।
ରାଜା ବିନୟ ବିକଳ ଭାବ ମୁନି ଦେଖି
ଛାମୁରେ କହନ୍ତି ତହିଁ ମୁନି ବ୍ରହ୍ମଋଷି ।
ବୋଇଲେ ରାମକୃଷ୍ଣ ଯେ ଉଗ୍ରସେନ ଅଛ
ଅଛନ୍ତି ଆବର ପଣ୍ଡୁରାଜା ପାଞ୍ଚ ବସ ।
ଅମାତ୍ୟଗଣ ସମସ୍ତେ ଛାମୁରେ ଅଛନ୍ତି
କଥାଏ କହିବା ଆମ୍ଭେ ନ କରିବ ନାସ୍ତି ।
ହଳୀ ବୋଇଲେକ କିସ କହ ତପୋବନ୍ତ
ତୁମ୍ଭ ବଚନ ଆମ୍ଭର ଅଟେ ଶିରୋଗ୍ରତ ।
ନାରଦ ବୋଇଲେ କରମଣ୍ଡଳକୁ ଯିବା
କୁମର କୁମାରୀକି ଯେ ବିଭା କରାଇବା ।
ବର କନ୍ୟା ଘେନି ଦ୍ୱାରକାକୁ ଯିବା ଚଳି
ତେବେ ସରବ ସୁଲଭ ହେବ ବନମାଳୀ ।
ନାରଦ ବୋଇଲେ ଯହୁଁ ଏମନ୍ତ ବଚନ
ଶୁଣି ସନ୍ତୋଷ ହୋଇଲେ ପ୍ରଭୁ ଭଗବାନ ।
ହଳୀ ଚାହିଁଲେ ଯୁଧିଷ୍ଠି ଯେ ଉଗ୍ରସେନକୁ
କିସ ବିଚାର ମନରେ କହତ ଆମ୍ଭଙ୍କୁ ।
ଯୁଧିଷ୍ଠିର ଉଗ୍ରସେନ କରନ୍ତି ବିଚାର
ତେଣେ ବିଚାରନ୍ତି ବସି ହଳୀ ଚକ୍ରଧର ।
ସମସ୍ତେ ଏକତ୍ର ହୋଇ ବିଚାର କରନ୍ତି
ଯେ ଯାହାର ମନେ ସେହି କଥା ଭାଳୁଥାନ୍ତି ।
କୃତକେଶୀକୁ ଯୁଧିଷ୍ଠି ପାଶେ ହକାରିଲେ
ଆସ ମହାରାଜା ତୋତେ କହିବା ନା ଭଲେ ।
ଦଇବେ ତ କନ୍ୟାଗୋଟି ଆମ୍ଭର ହେଲାଣି
ହରି ନେଉଥିଲେ ତାକୁ ପୁତ୍ର ଚୂଡ଼ାମଣି ।
ଏବେ କେବଣ ବିଚାର କର ନର ନାଥ
ଆମ୍ଭର ଆଗରେ କହ ସ୍ୱରୂପ ସିଦ୍ଧାନ୍ତ ।
ରାଜା ବୋଇଲେ ମୋର କି ଦୋଷ ଅଛଇ
ମୁଁ ଯାହା କହଇ ଶୁଣ ସାବଧାନ ହୋଇ ।
ସମସ୍ତ ସୈନ୍ୟଙ୍କୁ ଘେନି ମୋ ରାଜ୍ୟକୁ ଯିବା
ମଙ୍ଗଳ ବିଧାନମାନ ମୋ ପୁରେ ସାରିବା ।

ଯୁଧିଷ୍ଠି ଦେବ ବୋଇଲେ ଶୁଣ ରାମହରି
କୃତଶେଖର ପୁରକୁ ସର୍ବେ ଯିବା ଚଳି ।
ଯୁଧିଷ୍ଠି କହନ୍ତେ ସର୍ବ ମନକୁ ଅଇଲା
ଯିବାପାଇଁ ସମସ୍ତଙ୍କ ସନମତ ହେଲା ।
ନାରଦ କୃତଶେଖର ରାଜାକୁ ରାଇଲେ
ଗୁପତ କରି ସମସ୍ତ କଥାକୁ କହିଲେ ।
ଉଗ୍ରସେନର ପନ୍ଦର ଅକ୍ଷୌହିଣୀ ବଳ
ସାତ ଅକ୍ଷୌହିଣୀ ଦଳ ଧର୍ମଦେବଙ୍କର ।
ଏତେ ସୈନ୍ୟକୁ ସମ୍ଭାଳି ପାରିବୁ କି କହ
ବିଚାର କରି ମୋ ଆଗେ କହ ମହାରାୟ ।
ରାଜା ବୋଇଲା ଗୋସାଇଁ ତୁମ୍ଭ ପରସାଦେ
କିସ ଅପୂର୍ବ ଅଛଇ କହ ମୋତେ ହାଦେ ।
ରାଜାର ବଚନେ ମୁନି ସନ୍ତୋଷ ହୋଇଲେ
ନଗରଯାକ ମଣ୍ଡାଅ ବୋଲିଣ ବୋଇଲେ ।
ବଳରାମ ବୋଇଲେ ତୁ ଶୁଣ ହୋ ରାଜନ
ଭିଆଣ କରାଅ ଯାଇ ବିଭାର ବିଧାନ ।
ଆଜ୍ଞା ପାଇଣ ତୁରିତେ ନରପତି ଗଲା
ପାତ୍ର ମନ୍ତ୍ରୀକି ରାଇଣ ରାଜା ଆଜ୍ଞା ଦେଲା ।
ନଗରଯାକ ଘୋଷଣା ଦିଆଇଲା ରାୟ
ସୁରେଖାର ବିଭାଘର ନଗର ମଣ୍ଡାଅ ।
ଶୁଣି ଯେ ଯାହାର ଘରଦ୍ୱାର ମଣ୍ଡାଇଲେ
ବିଚିତ୍ର ଲେଖାମାନ ଯେ କାନ୍ଥରେ ଲେଖିଲେ ।
ନାରୀମାନେ ହୁଳହୁଳି ଧ୍ୱନିରେ କମ୍ପନ୍ତି
ହଳଦୀ କୁଙ୍କୁମ ବୋଳି ପିଚିକା ମାରନ୍ତି ।
ବେଦୀ ଛାମୁଣ୍ଡିଆ ଆଦି ସଜକଲେ ବେଗେ
ଯେମନ୍ତେ ପ୍ରଶଂସା ପାଇ ରାମକୃଷ୍ଣ ଆଗେ ।
ଯଉତୁକ ସାମଗ୍ରୀ ଯେ ପୂର୍ବର ବିଧାନ
ସମସ୍ତ ଆଣି ଥୋଇଲେ ମନ୍ତ୍ରୀ ଗୁଣବାନ ।
ଶଙ୍ଖୁଆ ମହୁରିଆ ଯେ ବାଦ୍ୟକାରଗଣ
ରହିବା ପାଇଁକି ଗୃହ ହେଲା ବିଦ୍ୟମାନ ।
ଭିଆଇଲେ ଋଷିମାନଙ୍କ ପାଇଁ ଫଳମୂଳ
କୃଷ୍ଣ ଅର୍ଜୁନ ବସିବା ପାଇଁ ତପଶୀଳ ।
ରାଜାର ପାଇଁ ନବର ମନ୍ତ୍ରୀର ଉଆସ
ହାତୀଶାଳ ଅଶ୍ୱଶାଳ ଖାଦ୍ୟପାଇଁ ଘାସ ।
ପନ୍ତି ପନ୍ତି ଧାଡ଼ି ଧାଡ଼ି ରେଖା ରେଖା ହୋଇ
ବିଚିତ୍ର କଳସମାନ ରହିଅଛି ତହିଁ ।
ପତାକା ଚାମରମାନ ଉଡ଼େ ଫରହର
ଦୀର୍ଘ ପ୍ରତି ଚାରିକୋଣ ଛାମୁଣ୍ଡିଆ ଘର ।
ଦେଖିଣ କୃତଶେଖର ହରଷ ହୋଇଲା
ନାରଦ ମୁନିଙ୍କି ନେଇ ସବୁ ଦେଖାଇଲା ।

ଦେଖିଣ ମୁନି ବୋଇଲେ ସବୁକଥା ଭଲ
ବିଭାର ଉତ୍ସବ କର ଖୋଜି ଅନୁକୂଳ ।
ରାମକୃଷ୍ଣଙ୍କ ଛାମୁକୁ ଯିବା ବେଗେ ଆସ
ତେବେ ଯେ ଆମ୍ଭମନରୁ ଫିଟିବ ସନ୍ଦେଶ ।
ରାଜାକୁ ଘେନିଣ ମୁନି ହୋଇଲେ ବାହାର
ଯାଇଣ ମିଳିଲେ ରାମକୃଷ୍ଣଙ୍କ ଛାମୁର ।
କୃତଶେଖର ରାଜନ ଶ୍ରୀକୃଷ୍ଣଙ୍କୁ ଦେଖି
ଶିରେ କର ଦେଇ ପୁଣି କହେ ଉପଲକ୍ଷି ।
ବିଚାରେ ଚରଚା ଆଦି ସବୁ ଭିଆଇଲି
ଛାମୁରେ ଜଣାଇବାକୁ ଏଥକୁ ଅଇଲି ।
ରାଜାର ବିନୟଭାବ ଦେଖିଣ ଶ୍ରୀହରି
ବଳରାମଙ୍କୁ ବୋଲନ୍ତି ଯିବା ବେଗ କରି ।
ନାରଦ ବୋଲନ୍ତି ଉଠ ଦେବ ହଳଧର
ବିଳମ୍ବ ନ ସହେ ବିଭା ହେଉଛି ଉଚ୍ଛୁର ।
ରାଜା ଜଣାଇଲା ଦେବ ଶୁଣିବା ଗୋସାଇଁ
ଆଜ୍ଞା ହେଲେ ବରକନ୍ୟା ଯିବେ ବେଗହୋଇ ।
ଗୋବିନ୍ଦ ବୋଇଲେ ଆଗ ପଠିଆଇ ଦିଅ
ମଙ୍ଗଳ ବିଧାନ ତୁମ୍ଭେ ବେଗ କରି ଯାଅ ।
କୁମାର କୁମାରୀଙ୍କି ଯେ ଚଳାଇଣ ଦେଲେ
ପଛେ ଥାଟ ଘେନି ସର୍ବେ ବାହାର ହୋଇଲେ ।
ପନ୍ଦର କ୍ଷଉଣୀ ବଳ ଘେନି ଉଗ୍ରସେନ
ସାତ କ୍ଷଉଣୀ ଘେନିଣ ପଣ୍ଡୁର ସନ୍ତାନ ।
କୁତୂହଳେ ବୀରତୁର ନିଶାଣ ବାଜିଲା
କରମଣ୍ଡଳ ରାଜ୍ୟ ଯେ ଉଛୁଳି ପଡ଼ିଲା ।
ଦଜାଇ ଶଙ୍ଖମହୁରୀ ତୁରୀ ବିକଟାଳ
ଦମଦମ ଦମାଲୁ ଯେ ଢାଉଁ ଢାଉଁ ଢୋଲ ।
କାନଡ଼ା ରାଗରେ ତହିଁ ମହୁରୀ ବଜାଇ
ବୀଣା ଯନ୍ତ୍ର ବାଇ ମୁନି ନାରଦ ନାଚଇ ।
ଥାଟ ସଇନ୍ୟ ଘେନିଣ ଆପେ ଭାବଗ୍ରାହୀ
କରମଣ୍ଡଳ ରାଜ୍ୟକୁ ଯାଆନ୍ତି ଚଳାଇ ।
ହାତୀ ରଥ ପଦାତିର ନୁହଇ କଳନା
ଏକକୁ ଆରେକ ବାଦ୍ୟ ବାଜଇ ବାଜଣା ।
ଗ୍ରହପୁତ୍ରେ ଯେ ମଙ୍ଗଳ ଅଷ୍ଟକ ପଢ଼ନ୍ତି
ହୁଳହୁଳି ଯେ ଅହିଅ ନାରୀଏ ଦିଅନ୍ତି ।
ଶୁଭ ମଙ୍ଗଳ ଯୋଗରେ ରାଜ୍ୟରେ ପଶିଲେ
ସମ୍ମାନ ପାଇ ଯେ ଯାହା ଆସ୍ଥାନରେ ବସିଲେ ।
ଶୁଣ ବୈବସ୍ୱତ ମନୁ ବଦନ୍ତି ଅଗସ୍ତି
ସୁରେଖା ବିଭାର କଥା ଶୁଣ ଦିବ୍ୟରୀତି ।
ନବର ଦେଖିଣ ରାମଚନ୍ଦ୍ର ପ୍ରଶଂସନ୍ତି
ଧନ୍ୟ କୃତକେଶୀ ରାଜା ବୋଲିଣ ବୋଲନ୍ତି ।

ଏ ନବର ଦେଖି ଦେବତାଏ ତୋଷ ହେବେ
ଏକ ଦିବସରେ ଏହା ସମ୍ପାଦିଲୁ ଭାବେ ।
ଯେ ଯାହାର ଅନୁରୂପେ ସ୍ଥାନ ଆବୋରିଲେ
ନିଶ୍ଚିତ ହୋଇଣ ତହିଁ ସମସ୍ତେ ରହିଲେ ।
ରାଜର୍ଷି ମହର୍ଷି ଦେବରଷିଏ ଅଇଲେ
ସନମାନ ପାଇକରି ସମସ୍ତେ ବସିଲେ ।
ରାନ୍ଧଣା ବିଧାନ ସଞ୍ଚା ଯାହା ହୋଇଥିଲା
ତାହାଆଗେ ଆଣି କୃତଶେଖର ଥୋଇଲା ।
ରାମକୃଷ୍ଣ ଦୁଇଭାଇ ଯୁଧିଷ୍ଠି ସହିତେ
ଉଗ୍ରସେନ ମୂଳେ ଜାଣ ଯାଦବ ହିଁ ଯେତେ ।
ଷଡ଼ରସ ବ୍ୟଞ୍ଜନରେ ମଣୋହି ସାରିଲେ
ସୁବାସ ପାଣିରେ ବସି କର ପଖାଳିଲେ ।
କର୍ପୂର ବିଡ଼ିଆମାନ ମଣୋହି କରନ୍ତି
ସନ୍ତୋଷେ ସଇନ୍ୟଯାକ ଭୋଜନେ ତୃପତି ।
ହାତୀଘୋଡ଼ା ଓଟକୁ ଯେ ବିରିଘାସ ଦେଲେ
ଭୁଞ୍ଜିଣ ସକଳଜନ ହରଷ ହୋଇଲେ ।
ଉଗ୍ରସେନକୁ ଯୁଧିଷ୍ଠି ଘେନି ପାଞ୍ଚଭାଇ
ଆସ୍ଥାନ ପରେ ବସିଲେ ରାମକୃଷ୍ଣ ଯାଇ ।
ଫଳମୂଳ ମହାରଷିମାନେ ଗ୍ରାସ କଲେ
ମୃଗଛାଲ ମାଡ଼ି ସର୍ବେ ସଭାରେ ବସିଲେ ।
ଭୋଜନ ଚରଚା ଯହୁଁ ରାଜନ ସାରିଲା
ମଙ୍ଗଳ ବିଧିବିଧାନେ ତୃପତି ଲାଗିଲା ।
ଅଇଲେ ସାତ ଅହିଅନାରୀ ସଜହୋଇ
ସୁବର୍ଣ୍ଣ କୁମ୍ଭଉପରେ ନାରିକେଳ ଥୋଇ ।
ପାଣି ତୋଳିଯାନ୍ତି ଶଙ୍ଖମହୁରୀ ବଜାଇ
ଶୁଭ ହୁଳହୁଳି ନାଦେ ମହୀ ଉଛୁଳଇ ।
ସାତଘରୁ ପଶି ପାଣି ତୋଳିଣ ଆଣିଲେ
ମଙ୍ଗଳଗୀତ ଗାଇଣ ମନ୍ଦିରେ ପଶିଲେ ।
ନୂଆ ଉତ୍ତମ ମସୁଣି ଗୋଟିକ ଉପରେ
ବରକନ୍ୟାଙ୍କୁ ବସାଇ କୁଙ୍କୁମ ସଙ୍ଗରେ ।
ହଳଦୀଗୋଳି ଲଗାଇ ଦେଇ ତହୁଁ ଗଲେ
ସୁବର୍ଣ୍ଣର ଶିଳପୁଆ ମଥାରେ ଥୋଇଲେ ।
ଏମନ୍ତ ମଙ୍ଗଳ ବିଧିବିଧାନ ସରିଲା
ସୁବର୍ଣ୍ଣ ଥାଳିରେ ବସି ପ୍ରଦ୍ୟୁମ୍ନ ଭୁଞ୍ଜିଲା ।
ନିଶି ପାହାନ୍ତିରେ ବରକନ୍ୟା ଘେନିଗଲେ
ମଙ୍ଗଳ ପାଣି ଘେନିଣ ସ୍ନାନ କରାଇଲେ ।
ତହୁଁ ବରକନ୍ୟା ଘେନି ଅଇଲେ ନବର
କନକ ପିଢ଼ା ଉପରେ ବସାଇ କୁମର ।
କୁମାରୀକୁ ଘେନିଗଲେ ଭିତରପୁରକୁ
ବେଶ କରାଇଲେ ବେଗେ ତହିଁ ସୁରେଖାକୁ ।

କୁମାରକୁ ସଖୀଗଣେ କରିଛନ୍ତି ବେଶ
ବଜାଇ ଶଙ୍ଖମହୁରୀ ଦମା ବିଜିଘୋଷ ।
ମଙ୍ଗଳଗୀତ ଅହିଅସ୍ତିରୀମାନେ ଗାଇ
କୁମାର ଆଗେ ନାଚନ୍ତି ପରିହାସେ ଯାଇ ।
ବ୍ରାହ୍ମଣେ କର୍ମ କରନ୍ତି ଯେ ବିଧିବିଧାନେ
ମଙ୍ଗଳାଷ୍ଟକ ପଢ଼ନ୍ତି ଗ୍ରହପୁତ୍ରମାନେ ।
ଜ୍ୟୋତିଷେ ଜଣାଇଲେ ସେ ସଭାର ଛାମୁରେ
ସାବଧାନ ହୋଇ ଏବେ ଶୁଣ ନୃପବରେ ।
ଅନୁକୂଳ ବେଳ ଆସି ହୋଇଲା ଗୋସାଇଁ
ବେଦୀ ଉପରକୁ ବିଜେ କର ନୃପସାଇଁ ।
ଏତେ ଶୁଣି ମହାରାଜା ଆସ୍ଥାନକୁ ଗଲା
ଗୋବିନ୍ଦ ମୂଳକୁ ଚାହିଁ ଏମନ୍ତ ବୋଇଲା ।
ଅନୁକୂଳ ବେଳ ଆସି ହୋଇଲା ଗୋସାଇଁ
ବେଦୀ ଉପରକୁ ବିଜେ କଲେ ହଳସାଇଁ ।
ଦିବ୍ୟବେଶ ହୋଇ ପୁଣି ଆପେ ଭାବଗ୍ରାହୀ
ସଭାରୁ ଅର୍ଜୁନ ହସ୍ତଧରି ଉଠିଯାଇ ।
ରାଜାକୁ ବୋଇଲେ କଥା ଏକ ଯେ ବିଚାର
ଜ୍ୟୋତିଷ ହକାରିଆଣ ଆମ୍ଭର ଛାମୁର ।
ରାଜନ ଆଜ୍ଞାରେ ଗ୍ରହପୁତ୍ରେକ ଅଇଲା
ଗୋବିନ୍ଦ ଛାମୁରେ ଉଭା ହୋଇଣ ରହିଲା ।
ଜ୍ୟୋତିଷ ଜଣାଇଦେଲା ଏହା ଅନୁକୂଳ
ବେଦୀରେ ବିଜେ କଲେକ ମଦନଗୋପାଳ ।
ଗୋବିନ୍ଦ ମୁଖରୁ ଅନୁକୂଳ ବେଳ ଶୁଣି
ବସୁଦେବଙ୍କୁ ବୋଲନ୍ତି ପ୍ରଭୁ ଚକ୍ରପାଣି ।
ଆପଣ ବେଦୀଉପରେ ଯାଇ ବିଜେ କର
କୁମରକୁ କୋଳେ ଧରି ମଙ୍ଗଳ ସୁମର ।
ତାହା ଶୁଣି ବାସୁଦେବ ବହନ ଚଳିଲେ
ସୁବର୍ଣ୍ଣ ପିଢ଼ାଏ ତାଙ୍କୁ ବେଗେ ଆଣିଦେଲେ ।
ତହିଁର ଉପରେ ବିଜେ କଲେ ବାସୁଦେବ
ଦେଖି ଆନନ୍ଦ ହୋଇଲେ ଦେବ ବସୁଦେବ ।
ପୂର୍ବମୁଖେ ବସେ କୃତଶେଖର ନରେନ୍ଦ୍ର
ସଭାରେ ଆସି ବସିଲେ ସର୍ବ ଋଷିବୃନ୍ଦ ।
ବ୍ରହ୍ମଋଷି ରାଜଋଷି ସଭାରେ ବସିଲେ
ନାରଦ ମୁନି ହରଷେ ବୀଣାନାଦ କଲେ ।
ମଙ୍ଗଳ କୁମ୍ଭ ଥୋଇଲେ ବେଦୀର ଉପରେ
ସ୍ୱୀକାର ବିଧି କରନ୍ତି ବସି ନୃପବରେ ।
ଚୂତଡାଳ ନାରୀକେଳ କୁମ୍ଭରେ ଥୋଇଲେ
ବରୁଣ ପୂଜା ତହିଁରେ ବିପ୍ରମାନେ କଲେ ।
ବରବେଶ ହୋଇ ଆସୁ ବୋଇଲେ ବ୍ରାହ୍ମଣେ
ବେଦୀ ଉପରକୁ ବର ଆସିଲେ ତକ୍ଷଣେ ।

ବସୁଦେବ କୋଳେ ଯାଇ ବସିଲାକ ବର
ବେଦମନ୍ତ୍ର ଉଚ୍ଚାରନ୍ତି ଶୁଦ୍ଧ ଦ୍ୱିଜବର ।
ଅହିଅ ନାରୀମାନେ ଯେ ହୁଳହୁଳି ଦେଲେ
ମଙ୍ଗଳ ବିଧି ବିଧାନ ଗ୍ରହପୁତ୍ର କଲେ ।
ବିପ୍ରେ ବୋଇଲେ ଲବଣ ଚଉଁରୀ ବିଚାର
କନ୍ୟାହାତେ ଦେଇ ଘେନି ଆସ ନୃପବର ।
ଏତେକ ଶୁଣି ଅହିଅନାରୀମାନେ ଗଲେ
ସୁରେଖା ହସ୍ତେ ଲବଣ ଚାମରୀ ସେ ଦେଲେ ।
ବେଦୀରେ ବର ଉପରେ ଫିଙ୍ଗିଲେ ତା ନେଇ
ଅହିଅ ସ୍ତିରୀମାନେ ଯେ ହୁଳହୁଳି ଦେଇ ।
ଶଙ୍ଖ ମହୁରୀ ଶବଦେ ଉଚ୍ଛୁଳେ ନଗର
ଲବଣ ଚଉଁରୀ ବିଧିସାରି ଦ୍ୱିଜବର ।
ବୋଇଲେ ରାଜା ଆସୁ ଯେ ତୁମ୍ଭର ନନ୍ଦନ
ବର ପାଦ ଧୋଇଦେବ କଂସାରେ ଯେ ଜାଣ ।
ରାଜା ବୋଇଲେ ଡଗର ବେଗେ ଏଥୁ ଚଳ
ଡାକି ଘେନିଆସ ନୀଳଶେଖର କୁମର ।
ବେଦୀକୁ ନୀଳଶେଖର ଅଇଲା ବହନ
ବୋଲେ କିସ ଅବଧାନ ହେଉଛି ରାଜନ ।
ରାଜା ବୋଇଲେ କୁମର ବିପ୍ରଙ୍କୁ ପଚାର
ବିପ୍ର ବୋଲେ ପାଣି ଆଣ ସୁବର୍ଣ୍ଣ ଝରୀର ।
ବିପ୍ର ଆଜ୍ଞାରେ କୁମର ବେଗେ ଚଳିଗଲା
ସୁବର୍ଣ୍ଣ ଝରୀରେ ନୀର ପୂରାଇ ଆଣିଲା ।
ସୁବର୍ଣ୍ଣ ପଲମ ଆଣି ଦେଲେ ଭୃତ୍ୟଗଣ
ପ୍ରଦ୍ୟୁମ୍ନ ପାଦ ଧୋଇଲେ ପୁତ୍ର ନୀଳସେନ ।
ପାଣିଝରୀ ଘେନି ନୀଳଶେଖର ଚଳିଲା
ଗୋଡ଼ଧୁଆ ଆଧାନକୁ ତହିଁରେ ସାରିଲା ।
କଟର ନୂଆ ମସିଣା ଗୋଟାଏ ଉପରେ
ବସାଇଲେ ନେଇ ଭୃତ୍ୟ ପ୍ରଦ୍ୟୁମ୍ନ କୁମରେ ।
ପୂର୍ବମୁଖ ହୋଇ ବସି ରହିଲାକ ବର
କୋଳେ ବସାଇଲେ ଉଗ୍ରସେନ ନୃପବର ।
ସୁରେଖା କନ୍ୟାକୁ ବେଶ କରାଇ ଆଣିଲେ
କୃତଶେଖର ନୃପତି କୋଳେ ବସାଇଲେ ।
ମଙ୍ଗଳ ମହୁରୀ ବାଦ୍ୟ ବାଜେ ଘନ ଘନ
ବାଦ୍ୟ ନିଶାଣ ଶବଦ ଶୁଭେ ଗୁରୁଟାଣ ।
ପୂର୍ବମୁଖ ହୋଇ ତହିଁ କୁମର ବସିଲା
ଦକ୍ଷିଣ ହସ୍ତକୁ ତାର ବଢ଼ାଇଣ ଦେଲା ।
କୁମାରୀର ହସ୍ତ ନେଇ ତହିଁରେ ଥୋଇଲେ
ବେଦଧ୍ୱନି କରି ହସ୍ତ କୁଶରେ ବାନ୍ଧିଲେ ।
ଯେ ଯାହାର ଗୋତ୍ରମାନ କଲେ ଉଚ୍ଚାରଣ
ବେଦଧ୍ୱନି କଲେ ଥିଲେ ଯେତେକ ବ୍ରାହ୍ମଣ ।

କୁମାର କୁମାରୀ ହସ୍ତ ବନ୍ଧନ ପଡ଼ିଲା
କୃତଶେଖର ନୟନୁ ଲୋତକ ବହିଲା ।
ନାରଦ ବୋଇଲେ ଆହେ ଶୁଣ ନୃପବର
ଦାନ ଯଉତୁକମାନ ଅଣାଅ ତୋହର ।
ଶଙ୍ଖର ପାଣି ଦେଇଣ ରାଜା ହସ୍ତେ ଦେଲେ
ତୋଳିଦିଅ ବର ହସ୍ତେ ନାରଦ ବୋଇଲେ ।
ହସ୍ତେ ଶଙ୍ଖ କୁଶଜଳ ଘେନି ନରନାଥ
ପାଣି ତୋଳି ଦେଲେ ନେଇ କୁମରର ହସ୍ତ ।
ସହସ୍ରେକ ରଥେ ପାଣି ଦ୍ରବ୍ୟକୁ ପୂରାଇ
କୁମର ଆଗରେ ସବୁ ଥୋଇଦେଲେ ନେଇ ।
ଦୁଇସହସ୍ର ତୁରଙ୍ଗ ସହସ୍ରେକ ହାତୀ
ଛାମୁରେ ଆଣି ଥୋଇଣ ଦେଲେ ନରପତି ।
ବାଛି ବାଛି ଏକ ବର୍ଣ୍ଣ ଦୁଇଲକ୍ଷ ଗାଈ
ବାଛୁରୀ ସହିତ ଆଣି ଦେଲେ ନରସାଇଁ ।
ଥାଳି କଂସା ଆଦି ଗିନା ସବୁ ସୁବର୍ଣ୍ଣର
ଗଡୁ ଗଡ଼ିଅ ଆବର ଦିଶଇ ଅପାର ।
ଦାସୀ ପରିବାରୀ ରାଜା ଅନେକ ଯେ ଦେଲା
ଧନଦ୍ରବ୍ୟ ଦେଇ ରାଜା ସନ୍ତୋଷ ହୋଇଲା ।
ବହୁତ ବିନୟୀ ହୋଇ କହଇ ରାଜନ
ଅନେକ ପ୍ରଶଂସା କଲା ରାଜା ଉଗ୍ରେସନ ।
ବୋଇଲା ଯେ କୃଷ୍ଣଙ୍କର ଅଟଇ କୁମର
ଯଉତୁକ ଦେବାକୁ କି ଶକ୍ତି ଅଛି ମୋର ।
ଝିଅ ଗୋଟିଏ ଦେଇ ମୁଁ ଶରଣ ପଶିଲି
ଏଣେ ସପତ ପୁରୁଷ ମୁହିଁ ଉଦ୍ଧାରିଲି ।
ପରମବ୍ରହ୍ମ ଅଟନ୍ତି ଏଯେ ନାରାୟଣ
କୃତାର୍ଥ କଲେ ଏ ମୋର ଶରୀର ଜୀବନ ।
ଏହାଙ୍କର ପାଦ ରଜ ମୋ ରାଜ୍ୟେ ପଡ଼ିଲା
ଜନ ପ୍ରଜାଙ୍କର କଷ୍ଟ ଏତେକାଳେ ଗଲା ।
ଝିଅ ବଭାଦେଇ ରାଜା ପଶିଲୁ ଶରଣ
ଗୋବିନ୍ଦଙ୍କ ଶ୍ରୀଚରଣେ ନମୋ ପୁଣ ପୁଣ ।
ଶ୍ରୀହରି ବୋଲନ୍ତି ତୁମ୍ଭେ ଶୁଣ ନରରାଣ
ସପତ ପୁରୁଷ ଯାଏ ହେଲା ବନ୍ଧୁପଣ ।
କରପତ୍ର ଯୋଡ଼ି ରାଜା କହଇ ବଚନ
ବନ୍ଧୁପଣକୁ ମୁହିଁ ଯେ ନୁହଁଇ ଭାଜନ ।
କୃତ୍ୟ କୃତ୍ୟ ହୋଇ ରାଜା କହେ କରଯୋଡ଼ି
ଦୟା କରିଥିବ ମୋତେ ରାମ ନରହରି ।
ଏତେକ କହିଣ ରାଜା ବିନୟ ହୋଇଲା
ଅହିଅନାରୀ ବନ୍ଧନ ହସ୍ତୁ ଫେଡ଼ି ଦେଲା ।
ସୁବର୍ଣ୍ଣ କଉଡ଼ି ତାଙ୍କ ହସ୍ତେ ନେଇ ଦେଲେ
ବରକନ୍ୟା ଦୁଇ ଏକ ଆସନ ବସିଲେ ।
ଅହିଅସ୍ତିରୀଏ ଜୁତ ଖେଳାଇଲେ ବସି
ଖେଳିସାରି ବରକନ୍ୟା ଭିତରରେ ପଶି ।
ଭିତରକୁ ଘେନିଗଲେ ତାଙ୍କୁ ନାରୀଗଣ
ସୁବର୍ଣ୍ଣ ଦୀପାବଳିରେ ବନ୍ଦାଇଲେ ପୁଣ ।
ସୁବର୍ଣ୍ଣ ପଲମେ ଷଡ଼ରସର ବ୍ୟଞ୍ଜନ
ବରକନ୍ୟାଙ୍କ ଆଗରେ ବାଢ଼ିଲେ ତକ୍ଷଣ ।
ଏକପତ୍ରେ ବରକନ୍ୟା ବସିଣ ଭୁଞ୍ଜନ୍ତି
ଆନନ୍ଦରେ ହୁଳହୁଳି ନାରୀଏ ଦିଅନ୍ତି ।
ଭୋଜନ ସାରିଣ ତହୁଁ ଆଚମନ କଲେ
କର୍ପୂର ବିଡ଼ିଆମାନ ସନ୍ତୋଷେ ଭୁଞ୍ଜିଲେ ।
ଏସନ ପ୍ରକାରେ ବିଭା ବିଧାନ ସରିଲା
କୃତଶେଖର ସେ ସଭା ମଣ୍ଡପକୁ ଗଲା ।
ଆସ୍ଥାନ କରିଣ ବସିଛନ୍ତି ଭାବଗ୍ରାହୀ
କରପତ୍ର ଯୋଡ଼ି ଉଭାହେଲା ନରସାଇଁ ।
ସାବଧାନ ହୋଇ ଶୁଣ ଦେବ ଜନାର୍ଦ୍ଦନ
ସାରିବା ହେଉ ଯେ ସ୍ନାନ ନିତ୍ୟକର୍ମ ମାନ ।
ରାଜାର ମୁଖରୁ ଯହୁଁ ଶୁଣିଲେକ ଏହା
ଶ୍ରୀମୁଖରେ ଆଜ୍ଞାଦେଲେ ପ୍ରଭୁ ଜଗନ୍ନାହା ।
ବୋଧଲେ ତୈଳ କୁଙ୍କୁମ ଅଣାଅ ବହନ
ଗୋବିନ୍ଦ ଆଜ୍ଞା ପ୍ରମାଣେ ଚଳଇ ରାଜନ ।
ତଇଳ କୁଙ୍କୁମ ଆଦି ଘେନାଇ ଅଇଲା
ଥାଟ ସଇନ୍ୟ ଆଗରେ ନେଇ ଥୋଇଦେଲା ।
ତଇଳ କୁଙ୍କୁମ ଲେପିହୋଇ ସର୍ବଜନ
ସୁର ନଦୀ ତୀରେ ଯାଇ କରନ୍ତି ଯେ ସ୍ନାନ ।
ସ୍ନାନ ନିତ୍ୟ କର୍ମବିଧି ସାରିଣ ଅଇଲେ
ଭୋଜନ ଠାବରେ ଯାଇ ସର୍ବେ ବିଜେ କଲେ ।
ଅମୃତ ମଣୋହି ବିଧି ସାରିଲେ ତକ୍ଷଣ
ସୁବାସ ପାଣି ଘେନିଣ କଲେ ଆଚମନ ।
କର୍ପୂର ବିଡ଼ିଆ ଆଦି ମୁଖବାସ ଦେଲେ
ଆସ୍ଥାନ ଉପରେ ଯାଇ ସର୍ବେ ବିଜେ କଲେ ।
ଯେ ଯାହା ନିଯୋଗେ ଲୋକ ଲାଗିଲେକ ଯାଇ
ଧାଉଡ଼ି ବିବିଧ ଛନ୍ଦେ ବାଜଣା ବଜାଇ ।
ଶଙ୍ଖ ମହୁରୀ ବାଜଣା ବାଜେ କୁତୂହଳେ
କରମଣ୍ଡଳ ଉଛୁଳେ ଗହଳ ଚହଳେ ।
ଋଷିମାନେ ଫଳମୂଳ ଆନନ୍ଦେ ଭୁଞ୍ଜିଲେ
ବ୍ରାହ୍ମଣମାନେ ଆନନ୍ଦେ ବେଦଧ୍ୱନିକଲେ ।
ବୀଣା ବଜାଇ ନାରଦ ମୁନି ନାଚିଯାନ୍ତି
ନାରାୟଣଙ୍କର ମୁଖ ଚାହିଁଣ ହସନ୍ତି ।
ବିଭା ବଢ଼ିଲା ହୋ ଚାଲ ଦେଶେ ଏବେ ଯିବ
କିମ୍ପାଇଁ କରି ଏଠାରେ ଆମ୍ଭେ ରହିଥିବା

ରାମକୃଷ୍ଣ ବୋଲନ୍ତି ସେ ନୃପତିକି ରାଇ
ବରକନ୍ୟା ସଜକରି ଆଣ ବେଗେ ଯାଇ ।
ଦ୍ୱାରକାକୁ ଯିବା ସର୍ବେ ବେଗେ ସଜ ହୁଅ
ଆଗୁଆଣି ବଳ ସର୍ବେ ଆଗେ ଚଳିଯାଅ ।
ବିରୁପାକ୍ଷ ମନ୍ତ୍ରୀକି ଯେ ନାରଦ ରାଇଲେ
ରାଜାଙ୍କ ଛାମୁରେ ତୋର ଜଣାଅ ବୋଇଲେ ।
ଆଜ ନରହରି ଯିବେ ଦ୍ୱାରକା ଭୁବନ
ବିଳମ୍ବ ନ ସହଇ ଯେ ବାବୁ ଏହିକ୍ଷଣ ।
ଖରତର ହୋଇ ମନ୍ତ୍ରୀ ତହୁଁ ବେଗେ ଗଲା
ରାଜାର ଛାମୁରେ ଯାଇ ସବୁ ଜଣାଇଲା ।
ବୋଇଲେ କି ସାବ୍‌ଧାନେ ଶୁଣିମା ଗୋସାଇଁ
ଦ୍ୱାରକା ପୁରକୁ ଏବେ ଯିବେ ଭାବଗ୍ରାହୀ ।
ନାରଦ ମହର୍ଷି ମୋତେ ରାଇଣ କହିଲେ
ଏଥକୁ କିସ ବିଚାର କହ ମହୀପାଳେ ।
ମନ୍ତ୍ରୀକି ଚାହିଁଣ ରାଜା ଉଦ୍‌ଯୋଗ କରନ୍ତି
ବରକନ୍ୟାଙ୍କର ବେଶ କରାଅ ତଡ଼ତି ।
ବିଭାର ସାମଗ୍ରୀ ବେଗେ ଘେନାଇଣ ଆସ
ବରକନ୍ୟାକୁ ବୋଲିବ ହାନ୍ଦୋଳାରେ ବସ ।
ଏତେ ବୋଲି ମନ୍ତ୍ରୀବର ବହନ ଚଳିଲା
ଭିତରପୁରେ ବାରତା ବେଗେ ନେଇ ଦେଲା ।
ବରକନ୍ୟା ସଜକର ବୋଲିଣ ବୋଇଲେ
ବରକନ୍ୟାକୁ ଯେ ମାଏ ସଜା କରାଇଲେ ।
ହୁଳହୁଳି ଦିଅନ୍ତି ଯେ ଅହିଅ ସ୍ତିରୀଏ
ଶଙ୍ଖ ମହୁରୀ ବାଜଇ କଳଣା ନ ଯାଏ ।
ହାନ୍ଦୋଳା ଭିତରେ ନେଇ କନ୍ୟା ବସାଇଲେ
ଦିବ୍ୟ ସୁଖାସନରେ ଯେ ବର ବିଜେ କଲେ ।
ବରକନ୍ୟା ଦୁହେଁ ତହୁଁ ହୋଇଲେ ବାହାର
ଆସ୍ଥାନ ଉପରେ ବିଜେ କଲେ ନୃପବର ।
ବୋଇଲେ ହୋ ଅବଧାନ କର ଭାବଗ୍ରାହୀ
ସଜହୋଇ ବରକନ୍ୟା ସିଂହକନ୍ୟା ରହି ।
ଅକ୍ଷତ ବେଭାର ଯେତେ ସଭାକୁ ଆଣିଛି
ଜଣ ଜଣ କରି ଦିଅ ଆହୋ ଶିରୀବତ୍ସି ।
ହାତୀରଥି ପଦାତିକ ଯେତେ ଆସିଥିଲେ
ଶାଢ଼ୀ ପରସାଦ ସେହୁ ସମସ୍ତେ ପାଇଲେ ।
ମହୁରିଆ ଶଙ୍ଖୁଆଏ ଆଦି ବାଦ୍ୟକାର
ଶାଢ଼ୀ ପ୍ରସାଦ ତାହାଙ୍କୁ ଦେଲେ ନରବର ।
ବାଜିଲା ଟମକ ସଜ ହୋଇଲେ ସଇନି
ଚାଲ ଚାଲ ଶବଦରେ କମ୍ପଇ ମେଦିନୀ ।
ହୁଳହୁଳି ଶବଦ ଯେ ଶୁଭଇ ଅପାର
ଯେ ଯାହା ଯାନବାହନ ଚଢ଼ିଲେ ସତ୍ୱର ।

ରାମକୃଷ୍ଣଙ୍କର ଯେତେ ସୈନ୍ୟ ଆସିଥିଲେ
ଯେ ଯାହାର ମତେ ସଜହୋଇ ବାହାରିଲେ ।
ପନ୍ଦର କ୍ଷଉଣୀ ବଳ ଘେନି ଉଗ୍ରସେନ
ଆଗରେ ଥାଟ ଚଳାଇ ଚଳିଲେ ବହନ ।
ତାହାଙ୍କର ପଛେ ବରକନ୍ୟା ଚଳିଗଲେ
ଆଗପଛ ହୋଇ ଥାଟ ସୈନ୍ୟ ବାନ୍ଧିରିଲେ ।
କୃତଶେଖର ରାଜନ ପୁତ୍ରକୁ ରାଇଲା
ଝିଅସଙ୍ଗେ ଯାଅ ବୋଲି ତାହାକୁ ବୋଇଲା ।
ମନ୍ତ୍ରୀକି ବୋଇଲା ତୁହି ଯାଅ ଏବେ ବେଗେ
ଝିଅକୁ ନେଇଣ ତହିଁ ଛାଡ଼ିଆ ସୁଯୋଗେ ।
ଅନେକ ସଇନ୍ୟ ନେଲା ସେ ନୀଳ ଶେଖର
ଆଜ୍ଞା ମାନିଣ ଚଳଇ ବିରୁପାକ୍ଷ ବୀର ।
ଆଗରେ ଯେ ଉଗ୍ରସେନ ଚଳଇ ସଇନି
ବରକନ୍ୟା ମଧ୍ୟେ ତାର ପଛେ ପୁତ୍ରମଣି ।
ଅତି ସମାରୋହେ ତହୁଁ ଥାଟ ଚଳିଗଲା
ବୀରତୁର ଶବଦରେ ମହୀ ଉଛୁଳିଲା ।
ପଛେ ରାମକୃଷ୍ଣ ପଞ୍ଚପାଣ୍ଡବ ଗମନ୍ତି
ସାତ ଅକ୍ଷୌହିଣୀ ବଳ ସଙ୍ଗରେ ଅଛନ୍ତି ।
ଅକ୍ରୁର ଅନାଧିଷ୍ଟ ଯେ ସାତ୍ୟକି ସହିତେ
ରଥେ ରଥେ ଚଢ଼ିଯାନ୍ତି କୃଷ୍ଣଙ୍କ ସଙ୍ଗତେ ।
ବୀଣା ବଜାଇ ନାରଦମୁନି ଚଳିଯାନ୍ତି
ପଛରେ ଗୋଡ଼ାଇ କୃତଶେଖର ନୃପତି ।
ସାଷ୍ଟାଙ୍ଗେ ଗଡ଼ଘାଲି ଯେ ଶୁତିଲା ରାଜନ
କୃତ୍ୟକୃତ୍ୟ ହୋଇ ଧୀରେ ବୋଲଇ ବଚନ ।
ଦୁହିତା ଗୋଟିକି ମୁହିଁ ସମର୍ପିଲି ତୋତେ
ତାହାଠାରେ ଦୟା ରଖିଥିବ ଜଗନ୍ନାତେ ।
ଯେତେ ଦୋଷ କଲେ ତାର କରିବ ଯେ କ୍ଷମା
ତୁମ୍ଭେ ଯେ ପରମବ୍ରହ୍ମ ଦେବ ମହାତମା ।
ଅନେକ ପ୍ରକାରେ ରାଜା ବିନୟ ହୋଇଲା
ପାଦେ ପଡ଼ି ଗଡ଼ଘାଲି ସାଷ୍ଟାଙ୍ଗେ ଶୋଇଲା ।
ଆପଣେ ଶ୍ରୀଜଗନ୍ନାଥ ଶ୍ରୀ କରେ ତୋଳିଲେ
ସର୍ବଶୁଭେ ରାଜ୍ୟ ତୁମ୍ଭେ କରୁଥାଅ ଭଲେ ।
ଝିଅ ପଠିଆଇ ରାଜା ହୋଇଲା ବିକଳ
କୋହଭରେ ନୟନରୁ ବହେ ଅଶ୍ରୁଜଳ ।
ମେଲାଣି ମାଗିଣ ରାଜା ବାହୁଡ଼ି ଅଇଲା
ଭିତର ନଗରେ ଯାଇ ଖଟେ ବିଜେ କଲା ।
ରାଣୀ ମହାଦେଈମାନେ ଆସି ଗୋଳ କଲେ
ଝିଅର ନାମ ବାହୁନି ସକଳେ କାନ୍ଦିଲେ ।
ଦଇବ ପୁରୁଷ ଯାହା କରିଛି ଘଟନ
କର୍ମକୁ ଆଦରି ତହୁଁ ରହିଲେ ରାଜନ ।

ତୁଳସୀ ଦେବୀ ବଲ୍ଲଭ ଜଗତ ସୋଦର
ଅସୁର ନିବାରଣ ଯା ନାମ ଚକ୍ରଧର ।
ଅରକ୍ଷିତ ଜନ ଅଟେ ମୁଁ ଶାରଳା ଦାସ
ଏ ଭବନଦୀରୁ ପାର କର ପୀତବାସ ।

—0—

## କୁଠାରାସୁର ବଧ

କରପତ୍ର ଯୋଡ଼ି ପୁଣି ବିଲଙ୍କ ନୃବର
ଅଗସ୍ତି ମୁନିଙ୍କ ପାଦେ କରେ ନମସ୍କାର ।
ସୁରେଖାର ବିଭା ମୁହିଁ ଶୁଣିଲି ଶ୍ରବଣେ
କୋଟି ଜନ୍ମର ପାତକ ହରିଲି ତକ୍ଷଣେ ।
ଏଥି ଉତ୍ତାରେ ହୋଇଲା କହ କିସ କଥା
ପୁସ୍ତକ ଫେଡ଼ି କହନ୍ତି ମୁନି ବ୍ରହ୍ମବେତ୍ତା ।
ରାଜାର ବିନୟଭାବ ଭକତିକି ଦେଖି
ଚିତ୍ତେ ଦୟା ବସିବାରୁ ବ୍ରହ୍ମାଙ୍କର ବସି ।
ଏଥି ଉତ୍ତାରେ ହୋଇଲା ପୁଣି ଯେଉଁ ରୀତି
ଏକମନ ହୋଇ ଶୁଣ ତୁହୋ ନରପତି ।
ରାମକୃଷ୍ଣ ଥାଟ ଘେନି ତହୁଁ ଚଳିଗଲେ
ସେଦିନ ଯାଇ ସେ ଅଧବାଟରେ ରହିଲେ ।
ରନ୍ଧନ ଭୋଜନ କରି ରହିଲେ ସେଦିନ
ରଜନୀ ପ୍ରଭାତୁଁ ପୁଣି ଚଳାଇଲେ ସୈନ୍ୟ ।
ଲକ୍ଷେକ ଶଙ୍ଖଶବଦ ଶୁଭେ ଘନ ଘନ
କନଡ଼ା ରାଗେ ମହୁରୀ ସ୍ୱର ବିଦ୍ୟମାନ ।
ଢୋଲ ଟମକ ଦୁନ୍ଦୁଭି ବାଜେ ଗୁରୁଟାଣ
ଛିଡ଼ିଣ ପଡ଼ିବ କିବା ଆକାଶ ଭୁବନ ।
ସୈନ୍ୟବଳ ଘେନି ବାଟେ ଯାଉଛନ୍ତି ଚଳି
ମୁଖରାବ ଶବଦରେ କୁରୁମ ଉଛୁଳି ।
ଦଇବ ଭବିଷ୍ୟକଥା ଶୁଣ ହେ ରାଜନ
ମୃଗୟାକୁ ଆସିଥିଲା କୁନ୍ଦାଳ ନନ୍ଦନ ।
କୁଠାର ଗୋଟିଏ କାନ୍ଧେ ପକାଇଣ ଥାଇ
ଦେବଦାନବେ କାହାକୁ ସେହୁ ନ ଡରଇ ।
ବଡ଼ ପ୍ରତାପୀ ଯେ ସେହି ଦୁର୍ବାର ଅସୁର
ଦଇବେ ସେଦିନ ଆସିଥିଲା ମୃଗୟାର ।
ମୃଗ ହରିଣ ବହୁତ ଜୀବ ମାରିଅଛି
ଶ୍ରମେ ଗଛତଳେ ବସିଥିଲା ଦୈତ୍ୟବସି ।
ସୈନ୍ୟବଳ ସଙ୍ଗେ ତାର ଅଛଇ ଅପାର
ଆଗେ ଉଭା ହୋଇଅଛି ତାର ମନ୍ତ୍ରୀବର ।
ଆଲଟ ଚାମର ଢାଳୁଛନ୍ତି ବସି ଥୋକେ
ମହାଆଡ଼ମ୍ବରେ ବେଢ଼ିଛନ୍ତି ସର୍ବଲୋକେ ।
ବଡ଼ ସମ୍ଭାରେ ବସିଛି ସେ ଅସୁର ବୀର
ଚାରିଦିଗକୁ ଫେରାଇ ଚାହେଁ ଧୀର ଧୀର ।
ଯେଣେ ଚାହେଁ ତେଣେ ସସ୍ତ୍ର ଓଳଗି ପଡ଼ଇ
ଥାଟ ସଇନିକୁ ପ୍ରେମ ନୟନେ ଚାହିଁଇ ।
ଏସନ ବେଳେ ଶୁଭିଲା ତହିଁ ଘୋରନାଦ
ବିକରାଳ ହୋଇ ବାଜୁଅଛି ନାନାବାଦ୍ୟ ।
ଶଙ୍ଖ ମହୁରୀ ବାଜଇ ଅତି କୁତୁହଳେ
ମହୀ ଟଳମଳ ହେଉଅଛି ପାଦଭରେ ।
ଆକାଶମାର୍ଗେ ଉଡ଼ଇ ବହୁତର ଧୂଳି
ଶଙ୍ଖ ମହୁରୀ ଶବଦେ କୁରୁମ ଉଛୁଳି ।
ବୀରନାଦ ଟମକ ଯେ ବାଜେ ଦୂରୁଦୂର
ଘୋଡ଼ାମାନ ଧୂଆଇଁଣ ଧାମନ୍ତି ସୁଆର ।
ଉଗ୍ରସେନ ରାଜା ଆଗ ଥାଟେ ପାଏ ଚଳି
ପଛଥାଟରେ ବିଜୟ ରାମ ବନମାଳୀ ।
ମଧ୍ୟରେ ଯେ ବରକନ୍ୟା ହାନ୍ଦୋଳାରେ ବିଜେ
ପଛପଟୁ ଆରେଛନ୍ତି ପାଣ୍ଡବ ତନୁଜେ ।
ନିର୍ଭୟେ ଥାଟ ଚଳାଇ ଯାନ୍ତି ଧୀରେ ଧୀରେ
ଚିହ୍ନ ଚିରଳ ଉଡ଼ଇ ଶୂନ୍ୟେ ଫରଫରେ ।
ବାଦ୍ୟନାଦ ଶବଦକୁ ଶୁଣିଣ ଅସୁର
ଗୁପତେ ମନ୍ତ୍ରୀକି ପୁଛେ ରାଇ ସନ୍ନିଧିର ।
ବୀରତୂର ଶବଦରେ ମହୀ କମ୍ପୁଅଛି
ଆବର ଶଙ୍ଖମହୁରୀ ଶବଦ ଶୁଭୁଛି ।
ହୁଳହୁଳିର ଶବଦ ପଡୁଅଛି ଦେଖ
ଚାଲ ଚାଲ ଆସ ଆସ ପଡ଼େ ଡାକହାକ ।
ମନ୍ତ୍ରୀ ବୋଇଲେ ଅସୁରକୁଳ ନୃପସାଇଁ
ତହିଁର ବିଧାନ ତୋତେ କହଇ ବୁଝାଇ ।
ତୋହର ମନ୍ତ୍ରୀ ମୁହିଁ ସେ ପୁରୁଷାନୁକ୍ରମେ
ସାବଧାନ ହୋଇ ଶୁଣ ତୋର ବିଦ୍ୟମାନେ ।
କୁଶସ୍ଥଳୀ ଦ୍ୱାରକା ସେ ଅଛି ଏକପୁର
ରାମକୃଷ୍ଣ ବୋଲି ବସୁଦେବର କୁମର ।
ତାହାର ନନ୍ଦନ ନାମ ପ୍ରଦ୍ୟୁମ୍ନ ଯେ ବୀର
କୃଷ୍ଣର ଜ୍ୟେଷ୍ଠ ରମଣୀ ମାତା ଅଟେ ତାର ।
ତାହାଙ୍କ ଗର୍ଭରୁ ସେହି କୁମର ଜନ୍ମିଛି
ରୂପେ ପଞ୍ଚାନ୍ତର କାମଦେବକୁ ଯେ ଗଛି ।
ସେ କୁମର ବିଭାହୋଇ କନ୍ୟାକୁ ନେଉଛି
ବଡ଼ାଇ ସମ୍ଭାରେ ସେହୁ ଥାଟ ଚଳାଉଛି ।
ଅନେକ ଉତ୍ସବ କରି ରାମ ବନମାଳୀ
ବହୁତର ଆନନ୍ଦରେ ଯାଉଛନ୍ତି ଚଳି ।
ମନ୍ତ୍ରୀ କୁହନ୍ତେ କୁଠାର ଅସୁର ଶୁଣିଲା
ମନ୍ତ୍ରୀକି ଚାହିଁ ଏମନ୍ତ ବଚନ କହିଲା ।
ଥାଟ ବେଗେ ସଜକର ଯିବା ତହିଁ ଯାଏ
କେଡ଼େ ଉତ୍ସବେ ଯାଉଛି ଦେଖିବା ଥୋକାଏ ।

ରାଜାର ବଚନେ ମନ୍ତ୍ରୀ ବିନୟେ ଜଣାଇ
ସାବଧାନ ହୋଇ ଏବେ ଶୁଣିମା ଗୋସାଇଁ ।
ତାଙ୍କୁ ଦେଖିଲେ ଆମ୍ଭର କିସ କାର୍ଯ୍ୟ ହେବ
ମୋର କଥାରେ ତହିଁକି ନଯା ଦୈତ୍ୟଧବ ।
କୁଠାର ଅସୁର ବୋଲେ କି ବିରୋଧ ଅଛି
ଏଥିରେ ସନ୍ଦେଶ ମୋତେ କହ କିନା ବାଛି ।
କାହିଁର ନୃପତି ସେହି ରାଜ୍ୟ ତାର କାହିଁ
କେଉଁ ମତେ କାହା ଝିଅ କିଏ ବିଭାହୋଇ ।
ଥାଟ ସଇନ୍ୟ ତାହାର କେତେ ଅଛି ସଙ୍ଗେ
ଏଥିର ଚରିତ ମାନ କହ ମୋର ଆଗେ ।
ମନ୍ତ୍ରୀ ବୋଇଲେ ଭୋ ଦେବ ଅବଧାନ କର
କରମଣ୍ଡଳ ଦେଶର ଅଟଇ ନୃପବର ।
କୃତଶେଖର ନାମ ଯେ ଅଟଇ ତାହାର
ନୀଳଶେଖର ନାମରେ ତାହାର କୁମର ।
ମନ୍ତ୍ରୀର ନାମ ଅଟଇ ଜାଣ ବିରୁପାକ୍ଷ
ସାବଧାନ ହୋଇ ଶୁଣ ଦୈତ୍ୟକୁଳ ବସ୍ତ ।
ସୁରେଖା ନାମେ ଦୁହିତା ଗୋଟିଏ ତାହାର
ଗୁପତେ ତାକୁ ହରିଲା କୃଷ୍ଣର କୁମର ।
ନୀଳଶେଖର ତାହାକୁ ସମରେ ଜିଣିଲା
ବାନ୍ଧିଆଣି ତାକୁ ବନ୍ଦୀ କରିଣ ରଖିଲା ।
ନାରଦମୁନି ମୁଖରୁ ରାମକୃଷ୍ଣ ଶୁଣି
ଯାଦବବଳ ପାଣ୍ଡବବଳ ସଙ୍ଗେ ଘେନି ।
କରମଣ୍ଡଳ ରାଜ୍ୟରେ ପ୍ରବେଶ ହୋଇଲେ
ଭୟରେ କୃତଶେଖର ଶରଣ ପଶିଲେ ।
ଦୁହିତାକୁ ବିଭା କଲା ଯଉତୁକ ଦେଇ
ଯାଉଛନ୍ତି ବରକନ୍ୟା ଘେନି ଦୁଇଭାଇ ।
ଏମନ୍ତ ଶୁଣି ମନ୍ତ୍ରୀକି ପୁଚ୍ଛଇ ଅସୁର
ଯୁଦ୍ଧ କରିବା କି ଆମ୍ଭେ ତାହା ସଙ୍ଗତର ।
ବୀରତୁର ବଜାଇଣ ଯାଉଛି ମୋ ଆଗେ
ତା ଦେଖି ଦେବ ଅସ୍ଥିର ହେଉଅଛି ରାଗେ ।
ମନ୍ତ୍ରୀ ବୋଇଲା ଏ କଥା କେଭେ ତୁ ନ କର
ସ୍ୱୟଂ ପରଂବ୍ରହ୍ମ ସେହୁ ଅଟେ ଚକ୍ରଧର ।
ତାଙ୍କ ସଙ୍ଗେ ରଣ କଲେ ଯଶ ନ ପାଇବୁ
ବିନା କାରଣେ କିମ୍ପାଇଁ ସୈନ୍ୟ ମରାଇବୁ ।
ମନ୍ତ୍ରୀବର ବୋଲେ ଆଉ କଥା ଏକ ଅଛି
ନ କହିଲେ ମୋତେ ତୁହି କହିବୁଟି ବାଛି ।
ପିତୃ ପିତାମହ ଶତ୍ରୁ ଥିଲେ ତାଙ୍କ ତୁଲେ
ରଣ କରି ଯଶ ନ ପାଇଲେ ସେହୁ ଭଲେ ।
ମନ୍ତ୍ରୀ କହନ୍ତେ ଏସନ ଶୁଣି ବିଚାରଇ
କେଉଁ ପ୍ରକାରେ ସେ ପିତୃବଇରୀ ଅଟଇ ।

କାହିଁର ରାଜା ସେ ଅଟେ କାହିଁ ଆସିଥିଲା
କେବଣ ପ୍ରକାରେ ମୋର ପିତାକୁ ମାଇଲା ।
ଏହା ମୋତେ ବୁଝାଇଣ କହ ମନ୍ତ୍ରୀବର
ନୋହିଲେ ନିଶ୍ଚୟେ ତାର ପୂରାଇବି କାଳ ।
ମନ୍ତ୍ରୀ ବୋଇଲେ କୋପତୁ ନ କର ହୋ ଦୈତ୍ୟ
ତହିଁର କଥା ମୁହିଁ ଯେ କହଇ ତଦନ୍ତ ।
କୁଞ୍ଜଗଳର ରାଜନ ଯୁଧିଷ୍ଠି ନୃବର
ତାହାର ଭାଇ ନକୁଳ ନାମେ ମହାବୀର ।
ଦଇବ ବଶେ ମୃଗୟା ସେହି ଆସିଥିଲା
କୁଣ୍ଡଳିସିଂହ ସଙ୍ଗତେ ଭେଟ ଯେ ପଡ଼ିଲା ।
ଦୁହେଁ ଉଚ୍ଚବାଚ ହୋଇକରି କଳି କଲେ
ମହାଘୋର ସଂଗ୍ରାମ ଯେ ଦୁହେଁ ଆରମ୍ଭିଲେ ।
ଦୁହେଁ ମହାକ୍ଷତ୍ରୀ କେହି ନୁହେଁ ଉଚ୍ଚନୀଚ
ଦୁଇବୀର ଦୁହିଁଙ୍କି ଯେ ପୁଣି ସମକଚ୍ଛ ।
ସେ ଦିନର ସଂଗ୍ରାମ ଯେ ନୁହଁଇ ଗୋଚର
ରଣ କୁଣ୍ଡଳ ସିଂହକୁ ମାଇଲା ନକୁଳ ।
ସଂଗ୍ରାମରେ ମାରି ସେହୁ ବାହୁଡ଼ିଣ ଗଲା
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲା ।
ଏମନ୍ତ ଯେ ଥୋକାଏକ ଦିନ ବହିଗଲା
ତୋପିତା କୁଦ୍ଧାଳେଶ୍ୱର ରାଜା ଯେ ହୋଇଲା ।
ମୋତେ ଦିନେ ପଚାରିଲା ଜନକ ତୋହର
ଚୌଦଦିନ ହେଲା ପିତା ନଇଲା ତ ଘର ।
ମୁଁ ବୋଇଲି ପିତା ତୋର ସଂଗ୍ରାମେ ପଡ଼ିଲା
କୁଞ୍ଜଗଳ ଦେଶ ରାଜା ନକୁଳ ମାଇଲା ।
ଶୁଣିକରି ପିତା ତୋର ବହୁ କୋପ କଲେ
କାହିଁ ଛନ୍ତି ପାଣ୍ଡବେ ଭେଟାଅ ବୋଇଲେ ।
ଏତେ ବୋଲିକରି ଦିନେ ମୃଗୟାକୁ ଗଲା
ଦଇବ ବଶେ ପାଣ୍ଡବମାନଙ୍କୁ ଭେଟିଲା ।
ଯେ ଯାଇଥିଲେ ନୀଳେନ୍ଦ୍ର ହରଣକୁ ପୁଣି
ବିଭା ବଢ଼ାଇ ଘରକୁ ଫେରିବାର ଜାଣି ।
ପାଣ୍ଡବଙ୍କର ଅନୁଜ ସହଦେବ ବୀର
ତୋ ପିତା ତାହାର ସଙ୍ଗେ କଲା ରଣ ଘୋର ।
ଅନେକ ସଂଗ୍ରାମ ତହିଁ ମହାମନ୍ତ୍ରୀ କଲେ
କେହି କାହାକୁ ସଂଗ୍ରାମେ ଜିଣି ନ ପାରିଲେ ।
କରକୁ ଚାହିଁଣ ସହଦେବ ଯେ ଜାଣିଲା
ତୋ ପିତା ଯେମ୍ନେ ମରିବ ସେ ଭେଦ ଦିଶିଲା ।
ଭେଦ ଜାଣି ସହଦେବ ମାଇଲେକ ବଳେ
ପିତାକୁ ତୋହର ଛେଦି ପକାଇଲା ହେଳେ ।
ଏ ରୂପେ ପିତା ବଇରୀ ଅଟଇ ତୋହର
ଏକମନେ ଶୁଣ ତୁ ହୋ ଦଇତ୍ୟ ଈଶ୍ୱର ।

ଶୁଣିକରି କଉଣପ ବଡ଼କୋପ କଲା
ନିଶ୍ଚୟ ପାଣ୍ଡବଙ୍କର କାଳ ଯେ ପୂରିଲା ।
ମୋହର ପିତାକୁ ଯେବେ କରିଛନ୍ତି ନାଶ
ମୋହର ହାତରେ ତାଙ୍କ ପୂରିବ ଆୟୁଷ ।
କୁଠାର ଦୁଇଗୋଟି ଯେ କାନ୍ଧରେ ପକାଇ
ଅତି କୋପଭରେ ହୋଇ ଅସୁର ଧାମଇଁ ।
ମନ୍ତ୍ରୀବର ଡାକ ଦେଲା ରହକିନା କ୍ଷଣେ
ଏଡ଼େକ କୋପ କିମ୍ପାଇ କରୁ ଅକାରଣେ ।
ମନ୍ତ୍ରୀ ବୋଲେ ରାଜା ସ୍ଥିର ହୋଇଣ ରହିଲା
କିକି କରିବୁ ବୋଲିଣ ତାକୁ ପଚାରିଲା ।
ମନ୍ତ୍ରୀ ବୋଇଲା ହେ ଥାଟ ସଇନି ସାଜିବା
ଏକାହୋଇ କିମ୍ପା ଆମ୍ଭେ ସମର କରିବା ।
ରାଜା ବୋଇଲେ ତୁରିତେ ସାଜ ମୋର ସୈନ୍ୟ
ପାଣ୍ଡବଙ୍କ ପ୍ରାଣ ଆଜ ନେବ ଜନ୍ତୁରାଣ ।
ଥାଟ ଚଳାଇ ଅସୁରେ ତତକ୍ଷଣେ ଗଲେ
ପାଞ୍ଚଯୁଣେ ଯାଇ ରାମକୃଷ୍ଣଙ୍କ ବେଢ଼ିଲେ ।
ଉଗ୍ରସେନ ସାତବଂଶ ଯାଦବଙ୍କୁ ଘେନି
ଚଳାଇ ଯାଉଅଛି ସେ କରି ଶଙ୍ଖଧ୍ୱନି ।
କୃଷ୍ଣର କୁମରମାନେ ବରକନ୍ୟା ଘେନି
ମଧ୍ୟ ଥାଟରେ ରହିଣ ଯାଉଛନ୍ତି ପୁଣି ।
ତାହାଙ୍କର ପଛେ ରାମକୃଷ୍ଣ ବେନିଭାଇ
ଅକ୍ରୁର ସାତ୍ୟକି ଘେନିକରି ଭାବଗ୍ରାହୀ ।
ରଥର ଚିରାଳମାନ ଉଡ଼େ ଫରଫର
ଶଙ୍ଖ ମହୁରୀ ଶବଦ ବାଜେ ଘୋରତର ।
ତାହାଙ୍କର ପଛେ ସାତ କ୍ଷୌଣୀ ବଳ ଘେନି
ଚାରିଭାଇଙ୍କର ସଙ୍ଗେ ଯୁଧିଷ୍ଠି ନୃପମଣି ।
ମହାସମ୍ଭର୍ବ ହୋଇଣ ଯାଉଥାନ୍ତି ଥାଟ
ଚାଲ ଚାଲ ଧାଆଁ ଧାଆଁ ମୁଖର ଚହଟ ।
କୁଠାର ଅସୁର ବେଗେ ଧାଉଁଅଛି ଖରେ
ରହରେ ପାଣ୍ଡବ ବୋଲି ଡାକେ କୋପଭରେ ।
ମୁଖର ଚହଳେ ତା ନ ଶୁଣନ୍ତି ପାଣ୍ଡବେ
ହାତୀ ରଥ ଚଳାଇ ଯେ ଯାଉଛନ୍ତି ବେଗେ ।
ସମସ୍ତଙ୍କ ପଛେ ବୀର ସହଦେବ ଥିଲେ
କିଏ ସେ ଡାକୁଛି ବୋଲି ପଛକୁ ଚାହିଁଲେ ।
ଦେଖିଲେ ଅସୁର ସୈନ୍ୟ ଆସୁଛନ୍ତି ମାଡ଼ି
ସ୍ତମ୍ଭୀଭୂତ ହେଲା ଚାହିଁ ସହଦେବ ବଳୀ ।
ବିଚାରଇ ବିପରୀତ ହୋଇଲାକ ଏଥେ
ଥାଟ ଘେନିଣ ଚଳିଲେ ନିଜେ ଜଗନ୍ନାଥେ ।
ଥାଟ ସଇନ୍ୟ ଚଳାଇ ଯୁଧିଷ୍ଠି ଠାକୁର
ଚାଲିଯାଉଛନ୍ତି ସୈନ୍ୟ ନାହାନ୍ତି ପଛର ।

ସହଦେବଙ୍କୁ ଅସୁର ବେଢ଼ିଲେକ ଯାଇଁ
ରହରେ ପାଣ୍ଡବା ବୋଲି ଅସୁର ଡାକଇ ।
ସହଦେବ ବୋଇଲେ ତୁ ଅଟୁ କେଉଁ ବୀର
ବୃଥା କିମ୍ପା ଦ୍ୱନ୍ଦ୍ୱ କର ଆମ୍ଭର ସଙ୍ଗର ।
ମନ୍ତ୍ରୀକୁ ପୁଚ୍ଛଇ ଚାହିଁ ଦୈତ୍ୟକୁଳ ସାଇଁ
କୁହ ଆହୋ ମନ୍ତ୍ରୀ ପିତା ବଇରୀ କି ଏହି ।
ମନ୍ତ୍ରୀ ବୋଇଲା ଏହି ତୋ ପିତାକୁ ମାଇଲା
ଭଲକରି ଚିହ୍ନ ବୋଲି ମନ୍ତ୍ରୀ ଯେ ବୋଇଲା ।
କୁଠାରସୁର ବୋଇଲା ଶୁଣରେ ପାଣ୍ଡବା
ପିତୃ ପିତା ବଇରୀ ତୋ ମୁଖ ନ ଚାହିଁବା ।
ମୋହର ପିତାକୁ ତୁହି କରିଅଛୁ ନାଶ
ତୀକ୍ଷ୍ଣ ଶରେ ତୋର ପ୍ରାଣ କରିବି ମୁଁ ଶେଷ ।
ଦୈତ୍ୟ କ୍ରୋଧ ଦେଖି ସହଦେବ ଯେ କହଇ
ତୋ ପିତା ଅବା ଯଦ୍ୟପି ମୋ ହସ୍ତେ ମରଇ ।
ଏବେ ତୋହର ମରଣ ମୋ ହସ୍ତେ ଅଛଇ
ତୋହର ପ୍ରତିଜ୍ଞା କଲେ ମୋର କିସ ହୋଇ ।
ଯୁଦ୍ଧ କଲେ ତୁ କି ଏଥୁ ଯିବୁ ପ୍ରାଣ ଧରି
ଉଚ୍ଚବାଚ ହୋଇ ଦୁହେଁ ଆରମ୍ଭିଲେ କଳି ।
କହୁଁ କହୁଁ ଦୁଇବୀରେ କଲେ ଶରବୃଷ୍ଟି
ପ୍ରତିଶରେ ଦୁଇବୀରେ ପୁଣି ତାହା କାଟି ।
କୁଠାର ଦୁଇଗୋଟା ଯେ ଥୋଇଲେ ରଥରେ
ଧନୁ ଧରି ଯୁଝେ ସହଦେବଙ୍କ ସଙ୍ଗରେ ।
ଏକଜଣକୁ ସହସ୍ର ଜଣ ତ ବେଢ଼ିଲେ
ଯେ ଯାହାର ଶସ୍ତ୍ରମାନ ନିଠାଇ ବିନ୍ଧିଲେ ।
ଧନୁରୁ ନ ଫୁଟି ସହଦେବ ତା ଛେଦଇ
ଅସୁର ଉପରେ ଶସ୍ତ୍ର ପୁଣି ସେ ବିନ୍ଧଇ ।
ବେଳୁବେଳ ରଣଗୋଳ ହୋଇଲା ଅପାର
ଦେବମାନବରେ ତାହା ଅଟେ ଅଗୋଚର ।
ଅସୁର ସଇନ୍ୟ ସହଦେବ ବେଢ଼ିକରି
ଶସ୍ତ୍ରମାନ ବିନ୍ଧନ୍ତି ସେ ଉପରୋଧ ଛାଡ଼ି ।
ଏକକୁ ଆରେକ ଶର ବିନ୍ଧନ୍ତି କୋପରେ
ମହାଘୋର ସଂଗ୍ରାମ ଯେ ହୋଇଲା ସେଠାରେ ।
ଏକଶରେ ପ୍ରତିଶର ସହସ୍ରେକ ଶର
ପେଷିଣ ଛେଦଇ ତାହା ସହଦେବ ବୀର ।
କୋପଭରେ ସହଦେବ ବିନ୍ଧେ ତୀକ୍ଷ୍ଣଶର
ଶରେକ ପଡ଼ିଲେ ଦୁଇ ସହସ୍ର ଅସୁର ।
ମୁଣ୍ଡମାନ ଛିଡ଼ିଣ ଯେ ପଡ଼ିଲେ ମହୀର
ଦେଖି କୁଠାର ଅସୁର କମ୍ପେ ଥରହର ।
ବୋଇଲା ମାନବ ଆରେ ଏଡ଼େ ଶସ୍ତ୍ର କଲୁ
ଦୁଇସସ୍ର ଦୈତ୍ୟ ମୋର ଛେଦି ପକାଇଲୁ ।

ସେ ଚଇତ୍ରମାସ ଆସି ହୋଇଲା ପ୍ରବେଶ
ଭିଆଇବା ଯାହା କହିଛନ୍ତି ବ୍ରହ୍ମଶିଷ୍ୟ ।
ସମସ୍ତ ପଦାର୍ଥ ଆଗ ଲୋଡ଼ିଲେ ପାଇବା
କନକ ଚମ୍ପାଫୁଲ ଗୋ କେମନ୍ତେ ଆଣିବା ।
ଇନ୍ଦ୍ରର ରୋପିଲା ସିନା ଅଟଇ ନନ୍ଦନ
ସହସ୍ର ଗନ୍ଧର୍ବ ତୋଟା କରନ୍ତି ରକ୍ଷଣ ।
କେଉଁ ପରକାରେ ତହୁଁ ଫୁଲ ଆଣିବଇଁ
ପ୍ରତିଦିନ ଇନ୍ଦ୍ରଦେବ ତୋଟାରେ ବୁଲଇ ।
ଶୁଣିଣ ବୋଇଲେ ତହୁଁ ଚନ୍ଦ୍ରାବତୀ ବାଳୀ
କେଉଁପରି ମନାଇବ ପୂଜିଣ ଗଉରୀ ।
କୁମର ବୋଲଇ ଯିବି ସେହି ତୋଟାଯାଏ
ଦେମନ୍ତେ ପାରିବି ଫୁଲ ଆଣିବି ଗୁଡ଼ାଏ ।
ଏମନ୍ତ ବିଚାର କରି ତହୁଁ ସେ କୁମର
ଦିବ୍ୟ ଅଳଙ୍କାର କଲା ଭୂଷିତ ଶରୀର ।
କୁସୁମର ପାଗ ପିନ୍ଧି କୌଶେୟ ବସନ
ସୁବର୍ଣ୍ଣ ଉତ୍ତରୀ ଶିରେ ନାନାଦି ଭୂଷଣ ।
ଏମନ୍ତ ଯେ ଦିବ୍ୟବେଶ ହୋଇଣ କୁମର
ଦାରୁକକୁ ଚାହିଁ ବୋଲେ ରଥ ସଜ କର ।
ଆଜ୍ଞା ପ୍ରମାଣେ ଦାରୁକ ବେଗେ ଚଳିଗଲା
ଦିବ୍ୟରଥ ଗୋଟିଏ ଯେ ସଜାଡ଼ି ଆଣିଲା ।
ଧନୁ କମାଣେ ଭୂଷିତ ହୋଇଣ କୁମର
ରଥ ଉପରେ ବସନ୍ତେ ଦିଶଇ ସୁନ୍ଦର ।
ଦକ୍ଷିଣ ମୁଖେ ଦ୍ୱାରକାପୁରୁଁ ଚଳିଗଲେ
ପୁଣି ପୂର୍ବମୁଖ ହୋଇ ସେଠାରୁ ଗମିଲେ ।
ଅଶ୍ୱ ରୁହାଇଣ ସେହୁ ଗଲେ ଖର ହୋଇ
ନନ୍ଦନ ବନରେ ବୀର ପଶିଲାକ ଯାଇଁ ।
ତୋଟାଳମାନେ ତାହାକୁ ନ ଦେଖିଲେ କେହି
ଗୁପତରେ ତୋଟା ମଧ୍ୟେ ପଶିଲେ ସେ ଯାଇ ।
ଦଇବର କୃତ୍ୟ କିଏ କରିବ ତା ଆନ
ତାହା ଭିଆଇ ଅଛନ୍ତି ପ୍ରଭୁ ଭଗବାନ ।
ସେଦିନ ସୁରତସେନ ଗନ୍ଧର୍ବ ଦୁହିତା
ଯଉବନ ଭାରେ ଚାଲିବାକୁ ଅଶକତା ।
ସେ କନ୍ୟାର ନାମଗୋଟି ଅଟେ ଶୋଭାବତୀ
ତାହାକୁ ସେ ପଟାନ୍ତର ହେବ ଜାଣ ରତି ।
ଅବିବାହୀ ହୋଇ ସେହି ପିତାଘରେ ଥିଲା
ତା ସମ ବର ନ ପାଇ ସେ ବିଭା ନୋହିଲା ।
ସଖୀଗଣମାନଙ୍କୁ ସେ ସଙ୍ଗତେ ଘେନିଲା
ସ୍ନାନଅର୍ଥେ ସେ ଆକାଶ ଗଙ୍ଗାକୁ ଅଇଲା ।
ଗଙ୍ଗାରେ ସ୍ନାନ କରିଣ ନିତ୍ୟକର୍ମ ସାରି
ନାନାଦି ଅଳଙ୍କାର ସେ ଅଙ୍ଗେ ଅଛି ଭରି ।
ଦେବାଙ୍ଗ ପାଟେକ ସେହି ଉପରାଣ କଲା
ଦେବାଙ୍ଗ ପାଟେକ ପରିପାଟୀରେ ପିନ୍ଧିଲା ।
ଯତନେ କସ୍ତୁରୀ ଚିତା କପାଳେ ଘେନିଲା
ତଥି ଉପରେ ଚନ୍ଦନ ବିନ୍ଦୁ ଏ ରଚିଲା ।
ରତିକୁ ସମାନ ତାର ରୂପ ହେ ଦିଶଇ
ତାର ଉପମାକୁ ଆଉ ଜଗତରେ ନାହିଁ ।
ସିଂହ ମଝାଠାରୁ ସରୁ କଟୀ ଅଟେ ତାର
କୁରଙ୍ଗୀ ନୟନୀ ସେହି ଅଟେ ରାମାବର ।
ବିମ୍ବଫଳ ପ୍ରାୟ ତାର ଅଧର ଦିଶଇ
ହସି କହିଲେ ଅମୃତ ପ୍ରାୟ ବରଷଇ ।
ଦଇବତ ଲେଖନ କେ କରିପାରେ ଆନ
ସ୍ନାନସାରି ସେ ସୁନ୍ଦରୀ ବିଚାରଇ ମନ ।
ସଖୀଗଣ ମୁଖ ଚାହିଁ ପୁଣି ପଚାରଇ
ଏ କେଉଁ ତୋଟା ଗୋଟା ଗୋ ଦିଶୁଅଛି ସହି ।
ସଖୀଏ କହିଲେ ଅଟେ ଏ ନନ୍ଦନ ବନ
କିବା ଅଛି ତହିଁ ମୁହିଁ ଦେଖିବି ଭ୍ରମିଣ ।
ସଖୀଗଣ କହନ୍ତି ତୁ ଶୁଣ ଗୋ ସୁନ୍ଦରୀ
ସେ ତୋଟା ସମ ନାହିଁ ତୋଟା ତିନିପୁରୀ ।
ନାନା ଫୁଲ ଫଳମାନ ତହିଁରେ ଅଛଇ
ନ ଥିବାର ହୋଇ ତହିଁ ପଦାର୍ଥ କେ ନାହିଁ ।
ସ୍ତମ୍ଭନ ମୋହନ ଆଦି ଅମର ସହିତ
ଯାହା ତୁମ୍ଭେ ଲୋଡ଼ିବ ତା ମିଳିବ ସମସ୍ତ ।
ସେ ତୋଟାକୁ ଦେଖିଲେ ତୁ ମୋହ ହୋଇଯିବୁ
ଗୃହକୁ ଯିବା କଥା ତୁ ମନେ ନ ଧରିବୁ ।
ସେହି ତୋଟାରେ ପଶିଲେ କ୍ଷୁଧାତୃଷା ନାହିଁ
ମଳୟ ପବନ ସଦା ଧୀରେ ବହୁଥାଇ ।
ସର୍ବଦା ବସନ୍ତ ତହିଁ ଥାଏ ଆଗୋ ସଖୀ
ପିକ ଆଦି ପକ୍ଷୀମାନେ ହୁଅନ୍ତି ଯେ ସୁଖୀ ।
ପକ୍ଷୀ ଜନ୍ତୁମାନେ ତହିଁ ନିରନ୍ତରେ ମତ୍ତ
ନାନାରଙ୍ଗେ କ୍ରୀଡ଼ା କରୁଥାନ୍ତି ଅବିରତ ।
ଭ୍ରମରମାନେ ଗୋ ସହି ମତ୍ତଭର ହୋଇ
ପୁଷ୍ପମାନ ଚୁମ୍ବୁଥାନ୍ତି ମହାସୁଖ ପାଇ ।
ଆମ୍ବ ପଣସ କଦଳୀ ଗୁଆ ନାରୀକେଳ
ଟଭା ଲେମ୍ବୁ କରମଙ୍ଗା କମଳା ଜମ୍ବିଳ ।
ଏହି ଫଳମାନ ପାଚି ପଡ଼ନ୍ତି ଭୂମିରେ
କାହାର ଶକତି ନାହିଁ ତାହାକୁ ନେବାରେ ।
ଇନ୍ଦ୍ରର ସେ ତୋଟା କେହି ଦେଖି ନ ପାରନ୍ତି
ସହସ୍ର ଗନ୍ଧର୍ବ ଦିନ ରାତି ଜଗିଥାନ୍ତି ।
ଇତର ଜନ ପଶିବା ପାଇଁ ନୋହେ କ୍ଷମ
ଇନ୍ଦ୍ର ଯେ ତହିଁକି ଏକ ଅଟଇ ଭାଜନ ।

ଆଠଦିନେ ଦେଖିବାକୁ ତୋଟାକୁ ଆସଇ
ଦେଖିଣ ଶାଢ଼ୀ ପ୍ରସାଦ ରକ୍ଷକଙ୍କୁ ଦେଇ ।
ଗଙ୍ଗାଜଳ ଆଣି ବୃକ୍ଷ ମୂଳରେ ଢାଳନ୍ତି
କସ୍ତୁରୀ ଗୁଣ୍ଡକୁ ଖତ କରିଣ ଦିଅନ୍ତି ।
ପକ୍ଷୀଜନ୍ତୁ ମଳମୂତ୍ର ନ କରନ୍ତି ତହିଁ
ଏହିରୂପେ ସାବଧାନେ ତୋଟା ଗୋଟି ରହି ।
ଶୁଷ୍କପତ୍ର ଝଡ଼ି ଯେବେ ଭୂମିରେ ପଡ଼ନ୍ତି
ପବନ ଆଘାତେ ତହୁଁ ପୁଣି ଉଡ଼ିଯାନ୍ତି ।
ଶୁଣନ୍ତେ ସୁନ୍ଦରୀ ତାର ମନକୁ ରୁଚିଲା
ଏବେ ଗନ୍ଧର୍ବର ଝିଅ ଗର୍ବିତା ହୋଇଲା ।
ମତ୍ତଗଜ ଗମନୀ ସେ ଧୀରରେ ଚାଲଇ
ସତେ ଅବା ଯଉବନ ଭାରା ନ ସହଇ ।
ଡାଳିମ୍ବର ମଞ୍ଜି ପ୍ରାୟ ତାର ଦନ୍ତପନ୍ତି
ତିଳପୁଷ୍ପ ପ୍ରାୟ ତାର ନାଶିକାର କାନ୍ତି ।
ମୃଣାଳର ନାଡ଼ ପ୍ରାୟ କର ଭୂଜମାନ
ଦିଶଇ ଉଲଟ ରମ୍ଭା ପ୍ରାୟେ ତା ଜଘନ ।
ଅଙ୍ଗୁଷ୍ଠିମାନ ଦିଶଇ ଚମ୍ପାକଢ଼ି ପ୍ରାୟ
କପାଳରେ ଚିତା କିବା ଅରୁଣ ଉଦୟ ।
ତା ଚନ୍ଦ୍ରମା ବଦନକୁ ପଟାନ୍ତର ନାହିଁ
କଜ୍ଜ୍ୱଳ ରେଖା କୁରଙ୍ଗୀ ନେତ୍ରକୁ ଶୋଭଇ ।
ପଦ୍ମପତ୍ରେ ଜଳ ପ୍ରାୟେ ଝଳି ଦିଶେ କାନ୍ତି
ପଦ୍ମପୁଷ୍ପ ପ୍ରାୟ ତାର ହସ୍ତ ଶୋଭା ପାନ୍ତି ।
ତାହାର ଯେ ରୂପଗୁଣ କିଏ ବା କହିବ
କେତେକାଳ ବସି ତାକୁ ଗଢ଼ିଲା ଦଇବ ।
ସଖୀଗଣ ଘେନି ସଙ୍ଗେ ଚଳିଣ ଆସଇ
ତୋଟାର ଭିତରେ ଯାଇ ପଶିଲେକ ସେହି ।
ତୋଟା ଦେଖି ମୋହ ହୋଇ ଗଲାକ ସୁନ୍ଦରୀ
ମଦନର ପଞ୍ଚବାଣ ତାର ଅଙ୍ଗେ ଘାରି ।
ଏକେ ମଧୁମାସ ପୁଣି ବସନ୍ତର କାଳ
ନାନାଦି ଜୀବଜନ୍ତୁ ଏ ମଦନେର ଭୋଳ ।
ସେ ତୋଟାରେ ବୃଦ୍ଧଜନ ଯେବେଟି ପଶଇ
ନବଯୁବା ପ୍ରାୟ ତାର ଶରୀର ଦିଶଇ ।
ସଖୀଗଣ ଘେନି ସେହି ତୋଟାରେ ଭ୍ରମୁଛି
ଭ୍ରମର ସେ ମତ୍ତଭରେ ବିହ୍ୱଳ ହେଉଛି ।
କ୍ରୀଡ଼ା ରସରଙ୍ଗେ ନାନା ପୁଷ୍ପରେ ବସନ୍ତି
ଏକ ପୁଷ୍ପ ଛାଡ଼ି ଅନ୍ୟ ପୁଷ୍ପକୁ ଚୁମ୍ବନ୍ତି ।
ନୟନରେ ସୁନ୍ଦରୀ ଯେ ଏମାନ ଦେଖିଲା
ମଦନର ପଞ୍ଚବାଣ ଅଙ୍ଗରେ ଭେଦିଲା ।
ବିଚାରଇ ମୁହିଁ ଯେବେ ବିଭା ହୋଇଥାନ୍ତି
ବଲ୍ଲଭକୁ ଘେନି ଏଥେ କ୍ରୀଡ଼ା ମୁଁ କରନ୍ତି ।
ନାନା କଉତୁକେ ମୁହିଁ ବଞ୍ଚୁଥାନ୍ତି ଦିନ
ବିଧାତା ପୁରୁଷ ମୋତେ କରିଅଛି ହୀନ ।
ଏହି ଛାର ଜନ୍ତୁମାନେ ବଳବନ୍ତ ହୋଇ
ନାନା କଉତୁକେ କ୍ରୀଡ଼ା କରନ୍ତି ଚିତୋଇ ।
ଏହା ବିଚାରି ସୁନ୍ଦରୀ ବିମୁଖ ହୋଇଲା
ମନେ ମନେ ବଲ୍ଲଭକୁ ସେହି ଚିନ୍ତା କଲା ।
ଚୂତବୃକ୍ଷ ପରେ ବସି କୋକିଳ ଭାଷନ୍ତି
ଡାଳିମ୍ବ ବନରେ ଶାରୀ ଶୁଆ ରାବଦ୍ୟନ୍ତି ।
ଆମ୍ବ ଫଳମାନ ଲେଛ ଲେଛ କରି ହୋଇ
ପାଚିଣ ସେ ବୃକ୍ଷତାଳେ ସୁନ୍ଦର ଦିଶଇ ।
ରମ୍ଭା ବୃକ୍ଷମାନ ତହିଁ ପନ୍ତି ପନ୍ତି ହୋଇ
ଗୁଆ ବୃକ୍ଷମାନ ତାର ସନ୍ନିଧିରେ ଥାଇ ।
ବୁଲି ଶୋଭାବତୀ ତୋଟାଯାକ ଦେଖିଗଲା
ଚମ୍ପାବୃକ୍ଷ ତଳେ ଯାଇ ବିଶ୍ରାମ କରିଲା ।
ଜାଈ ଫୁଲରୁ ସୁନ୍ଦରୀ ଗୁଡ଼ିଏ ତୋଳିଲା
ତହିଁରେ ମଲ୍ଲୀ ମିଶାଇ ମାଳ ଯେ ଗୁନ୍ଥିଲା ।
ଶରଧା କରିଣ ମାଳା ଘେନିଲା ହସ୍ତରେ
ଅଳପ ବାସନା ନାକେ ଘେନଇ ସଧୀରେ ।
ଶୁଣ ଆହେ ମନୁରାଜା ଅପୂର୍ବ ଚରିତ
ରଥ ଘେନି ଶାମ୍ବ ତହିଁ ମିଳିଲା ତୁରିତ ।
ଶରଧାରେ ସେ କନକ ଚମ୍ପାଫୁଲ ତୋଳେ
ରଥର ଉପରେ ଥୁଏ ତାହା ନେଇ ଭଲେ ।
ନାନା ଫଳଫୁଲ ତୋଳେ ହରଷ ବଦନେ
ରଥର ଉପରେ ଥୁଏ କୃଷ୍ଣର ନନ୍ଦନେ ।
ଦଇବର ଘଟଣାକୁ ମେଣ୍ଟିଣ କେ କରେ
ସୁନ୍ଦରୀ ନେତ୍ର ପଡ଼ିଲା ଥାଇ ଖଣ୍ଡେ ଦୂରେ ।
ଦେଖିଲା କନ୍ୟାରତନ କୁମର ନନ୍ଦନ
ସାକ୍ଷାତେ କି ପଞ୍ଚବାଣ ହୋଇଛି ଘଟଣ ।
କୃଷ୍ଣର ନନ୍ଦନ ସେହି ଜାମ୍ବବତୀ ବଳା
ଜନମ ଲଭିଛି ଘେନି ଶ୍ରୀକୃଷ୍ଣଙ୍କ କଳା ।
ସୁନ୍ଦର ପଣରେ ତାକୁ ପଟାନ୍ତର ନାହିଁ
ଯୁବା ସ୍ତିରୀମାନଙ୍କର ଗରବ ଗଞ୍ଜଇ ।
ମଦନର ପାଶ କି ସେ ଧରିଅଛି କରେ
ଯୁବତୀ ସ୍ତିରୀମାନଙ୍କୁ ବାନ୍ଧଇ ସଧୀରେ ।
କୁମର ନୟନ ଯହୁଁ ପଡ଼ିଲାକ ଯାଇ
ମଦନ ଅନଳେ ବାଳା ହୋଇଲାକ ଦହି ।
ଗୁପତ ଭାବରେ କନ୍ୟା ତାକୁ ଚାହିଁଥିଲା
ସଖୀଗଣେ ଡାକି ପୁଣି ଏମନ୍ତ କହିଲା ।
ଅନଙ୍ଗ ପୁରୁଷ ଦେଖ ଏଥେ ଛନ୍ତି ରହି
ବୃକ୍ଷରୁ ଫୁଲ ତୋଳନ୍ତି ମନେ ଶ୍ରଦ୍ଧା ବହି ।

ଚାହିଁବା ଛଟକେ ଯୁବାସ୍ତିରୀଙ୍କୁ ଗଞ୍ଜାନ୍ତି
ଏହାଙ୍କୁ ଦେଖି ଚଞ୍ଚଳ ହୁଅଇ ମୋ ମତି ।
ଏହାଙ୍କର ରୂପ ମୁଁ ଗୋ ବାହୁନିବି କିସ
କାମଦେବ ଘେନିଛି କି କରେ କାମପାଶ ।
ଏସନ ମନେ ବିଚାର କରୁ କରୁ ବାଳୀ
ଏକ ସଖୀ ଆରେକକୁ କହଇ ଯେ ଭାଳି ।
କାହିଁର ପୁରୁଷ ଏ ଗୋ କାହୁଁ ଆସିଅଛି
ତାହାକୁ ଯେ ଦେଖି କିମ୍ପା ଦୁଃଖୀ ହେଉଅଛି ।
ଆଉ ଏକ ସଖୀ ତହୁଁ କହେ ଚିତାରିଣ
ପଚାରି ଜାଣିବା ସେହୁ କାହାର ନନ୍ଦନ ।
କାହାର କୁଳରେ ସେହୁ ହୋଇଅଛି ଜାତ
ପଚାରି ଜାଣିବା ଆମ୍ଭେ ତାର କୁଳଗୋତ୍ର ।
ସ୍ୱର୍ଗର ଗନ୍ଧର୍ବ କିବା ମଞ୍ଚରୁ ଆସିଛି
ଆମ୍ଭେମାନେ ଆସିବାନା ତାକୁ ଏବେ ପୁଛି ।
ଏହା ବିଚାରିଣ ତହୁଁ ସବୁ କୁମାରୀଏ
ଶୋଭାବତୀକି ବୋଧନ୍ତି ତହିଁରୁ ଥୋକାଏ ।
ଏମନ୍ତ ତୋଟାରେ ପଶି କୃଷ୍ଣଙ୍କ କୁମର
ଫଳ ଫୁଲ ତୋଳି ମନେ କରଇ ବିଚାର ।
ଗନ୍ଧର୍ବେ ଯେ ନ ଜାଣନ୍ତି ଯିବା ବେଗହୋଇ
ବୃଥାରେ ଅନର୍ଥଗୋଳ କରିବେ କିମ୍ପାଇଁ ।
ଏମନ୍ତେ ମନେ ବିଚାରି ରଥରେ ବସିଲା
କନ୍ୟାର ଉପରେ ତାର ନୟନ ପଡ଼ିଲା ।
ଶୋଭାବତୀର ବଦନ କମଳକୁ ଚାହିଁ
ମଦନ ବାଣ ଭେଦିଲା ଅଙ୍ଗରେ ନିଠାଇ ।
ରଥ ଉପରୁ କୁମର ଓହ୍ଲାଇ ପଡ଼ିଲା
ଶୋଭାବତୀ ସନ୍ନିଧିରେ ଯାଇଣ ମିଳିଲା ।
ଯତନରେ ସେ କୁମାରୀ ଲୋଡୁଥିଲା ଯାହା
ଦଇବ ଘଟାଇ ଦେଲା ଏବେ ନେଇ ତାହା ।
କୁମରକୁ ଦେଖି ତହୁଁ ଶୋଭାବତୀ ବାଳୀ
ସଲଜ୍ଜାରେ ମୁଖ ପୋତି ବସିଲା ଦୁଲାଳୀ ।
ସଖୀଗଣମାନେ ଶୋଭାବତୀ ପାଶେ ଥିଲେ
କୁମରକୁ ଚାହିଁ ସର୍ବେ ବଚନ ଭାଷିଲେ ।
ବୋଇଲେ କେଉଁଠାରୁ ଆସିଛ ଆପଣ
ଇନ୍ଦ୍ରର ତୋଟା ଏଥିରେ ପଶିଲେ କେସନ ।
ଗନ୍ଧର୍ବେ ଜାଣିଲେ ନିଶ୍ଚେ କୋପ ଯେ କରିବେ
ନାନା ପରକାରେ ଆସି ଦ୍ୱନ୍ଦ୍ୱ ଆରମ୍ଭିବେ ।
କୁମର ବୋଇଲା ଶୁଣ ଆଗୋ ସର୍ବବାଳୀ
ଦ୍ୱାରାବତୀପୁରୁଁ ଆମ୍ଭେ ଆସିଅଛୁଁ ଚଳି ।
ଆମ୍ଭ ପିତା ଅଟନ୍ତି ଯେ ପ୍ରଭୁ ଚକ୍ରଧର
ମାତା ନାମ ଜାମ୍ବବତୀ ଅଟଇ ମୋହର ।

ସୁନ୍ଦରୀ ବୋଇଲେ କିମ୍ପା ଏଥକୁ ଅଇଲ
କି ପଦାର୍ଥ ନେବ ବୋଲି ଏ ବନେ ପଶିଲ ।
କୁମର ବୋଲେ କନକ ଚମ୍ପା ନେବାପାଇଁ
ରଥ ଚଢ଼ି ଏ ନନ୍ଦନ ବନେ ଅଇଲଇଁ ।
କୁମାରୀମାନେ କହନ୍ତି ଶୁଣି ଏ ବଚନ
ଏ ପୁଷ୍ପରେ ବଳିଅଛି କିମ୍ପା ତୁମ୍ଭ ମନ ।
ଶୁଣିଣ ଶାମ୍ବକୁମର ବୋଇଲାକ ହସି
ଏକଦିନେ ଆମ୍ଭପୁରେ ଗଲେ ଦେବରଷି ।
କନକଚମ୍ପା ଗୋଟିଏ ହସ୍ତେ ଘେନିଥିଲେ
ଶରଧା କରିଣ ଆମ୍ଭ ଭାବିନୀକୁ ଦେଲେ ।
ସେହି ତ ରାଜକୁମାରୀ ବୟସରେ ଭୋଳ
ଶରଧାରେ ସୁନ୍ଦରୀର ମତି ଯେ ଚଞ୍ଚଳ ।
ଚନ୍ଦ୍ରାବତୀ ବୋଲି ଜାଣ ଅଟଇ ତା ନାମ
ସୁନ୍ଦରୀ ପଣେ ତାହାକୁ ରତି ନୁହେଁ ସମ ।
ନାରଦ ମୁନି ବୋଇଲେ ଓଷାଟିଏ କର
କନକ ଚମ୍ପାରେ ପୂଜା ଗଉରୀ ଶଙ୍କର ।
ତେଣୁ ଅତି ଶରଧା ଯେ ବଳିଛି ତାହାରି
ତେଣୁ ପୁଷ୍ପ ଲାଗି ଆମ୍ଭେ ଅଇଲୁ ସୁନ୍ଦରୀ ।
ତୁମ୍ଭେମାନେ କି ନିମନ୍ତେ ଆସିଛ ଏଥକୁ
ଏ କନ୍ୟାର ନାମ କିସ କହ ଗୋ ଆମ୍ଭଙ୍କୁ ।
କୁମାରୀ ବୋଇଲେ ଏହା ନାମ ଶୋଭାବତୀ
ସୁରସେନ ଗନ୍ଧର୍ବର ଦୁହିତା ଏ ସତୀ ।
ବିଭା ହୋଇନାହିଁ ଏହି ରମଣୀ ରତନ
ଏହାର ସମାନେ ବର ନୁହଇ ଘଟନ ।
ଶରଧାରେ ଗଙ୍ଗାକୁ ଏ ସ୍ନାନ ଆସିଥିଲା
ତୋଟା ଦେଖିବାକୁ ମନ ଏହାର ବଳିଲା ।
ତୋଟାକୁ ଦେଖିଲୁ ଏବେ ଯିବୁ ନିଜପୁର
ତୁମ୍ଭେ ଏଥୁ ବେଗହୋଇ ଯାଅ ହେ କୁମର ।
କୁମର ବୋଇଲା ଡର ମୋହର ଯେ ନାହିଁ
ମୋହର ପିତା ଅଟନ୍ତି ପ୍ରଭୁ ଭାବଗ୍ରାହୀ ।
ପୁଷ୍ପ ଘେନି ଏଥୁ ମୁହିଁ ଯିବି ଧୀରେ ଧୀରେ
କିମ୍ପାଇ ପଳାଇ ଯିବି ଏ ବନରୁ ଡରେ ।
କୁମର ମୁଖରୁ ଏହି ଦୃଢ଼ବାକ୍ୟ ଶୁଣି
ବିଚାର କରିଣ ତହୁଁ ଜାଣିଲେ ତରୁଣୀ ।
ନିଶ୍ଚେ ବଡ଼କୂଳରେ ଏ ହୋଇଛନ୍ତି ଜାତ
ତେଣୁ ଏମନ୍ତ କହୁଛି ଅଛି ସାମରଥ ।
ସେ ଶୋଭାବତୀକୁ ଚାହିଁ ବିଚାରନ୍ତି ବାଳୀ
ଏ ବରରେ ତୋର ମନ ରୁଚେ କି ସୁନ୍ଦରୀ ।
ଏହା ଶୁଣି ଶୋଭାବତୀ ବୋଲଇ ବଚନ
ଭାଲପଟେ ଦଇବ ଯା କରିଛି ଲେଖନ ।

ଏହୁ ଥିଲେ କାହିଁ ଅବା ଆମ୍ଭେ ଥିଲୁ କାହିଁ
ଦଇବ ପୁରୁଷ ଆଣି ଦେଇଛି ଘଟାଇ ।
କେମନ୍ତେ ପ୍ରକାରେ ମୁହିଁ ଏହାକୁ ବରିବି
ଏହାକୁ ମନକୁ ମୁହିଁ କେମନ୍ତେ ଜାଣିବି ।
ଖଣ୍ଡଦୂରେ ଥାଇ ତାହା କୁମର ଜାଣିଲା
କୁମାରୀର ମନ ମୋହଠାରେ ଯେ ବଳିଲା ।
ସଖୀଗଣଙ୍କୁ ଅନାଇ କହଇ କୁମର
ବଳିଲା କି ତୁମ୍ଭ ସଖୀ ମନ ରାମାବର ।
ଇଚ୍ଛାଥିଲେ ବରମାଳା ଦେଉ ମୋତେ ବାଳୀ
କୁମର ମୁଖୁଁ ଏମନ୍ତ ଶୁଣିଣ କୁମାରୀ ।
ଜାଇଫୁଲ ମାଳ ଏକ କରେ ଧରି ବାଳୀ
କୁମର କଣ୍ଠେ ଲମ୍ବାଇ ଦେଇ ଆସେ ଚଳି ।
କୁମାରୀକୁ କୋଳେ ତହୁଁ ଧରିଣ କୁମର
ବସାଇଣ ନେଇ ତାକୁ ରଥର ଉପର ।
ବିରୂପା ନାମରେ ଥିଲା ଏକଇ କୁମାରୀ
ଶୋଭାବତୀ ସଙ୍ଗାତୁଣୀ ଅଟଇ ସୁନ୍ଦରୀ ।
ଯେଣେ ଯାଇ ତାକୁ ସେହି ସଙ୍ଗତରେ ନେଇ
ତାହାରେ ଶୋଭାବତୀର ବଡ଼ ସ୍ନେହ ଥାଇ ।
ତାହାକୁ ଆଶ୍ୱାସ କରି ପାଶକୁ ରାଇଲା
ହସ୍ତ ଧରିଣ ତାହାକୁ ରଥେ ବସାଇଲା ।
କୁମରକୁ ଚାହିଁ ପୁଣି ବୋଲଇ କୁମାରୀ
ରଥ ବାହିଯିବା ଏବେ ଦ୍ୱାରାବତୀ ପୁରୀ ।
କୁମର ଯେ ଆଜ୍ଞା ଦେଲା ଦାରକକୁ ଚାହିଁ
ରଥ ବାହା ବାବୁ ଏଥୁ ଯିବା ବେଗହୋଇ ।
ତେଡ଼େ ବଡ଼ ରଥ ତହିଁ ଦାରୁକୁ ବାହିଲା
ଶୋଭାବତୀ ସଖୀଙ୍କୁ ଯେ ମେଲାଣି କରିଲା ।
କୁମାରୀକି ଘେନିକରି କୁମାର ଯେ ଗଲେ
ଗନ୍ଧର୍ବ ଦୁହିତାମାନେ ସେଠାରୁ ଫେରିଲେ ।
ସେଠାରୁ ବିରସମତି ହୋଇ ଗଲେ ଚଳି
ତୋଟା ଗନ୍ଧର୍ବମାନଙ୍କ ପାଶେ ଯାଇ ମିଳି ।
ବୋଇଲେ ପୁରୁଷ ଏକ ରଥେ ଚଢ଼ି ଆସି
ତୋଟାର ଭିତରେ ଥିଲା କେତେବେଳେ ପଶି ।
ଶୋଭାବତୀ ଘେନି ଆମ୍ଭେ ତୋଟା ବୁଲୁଥିଲୁ
ଏମନ୍ତ ସମୟେ ତହିଁ ତାହାକୁ ଦେଖିଲୁ ।
ଅନଙ୍ଗ ପରାୟେ ସେହି ଅଟଇ ସୁନ୍ଦର
ତିନି ଭୁବନରେ ନାହିଁ ତାକୁ ପଟାନ୍ତର ।
କନକ ଚମ୍ପା ବନରେ ପଶି ତୋଳୁଥିଲା
ଏ ସମୟେ ଶୋଭାବତୀ ତାହାକୁ ଦେଖିଲା ।
ମଦନ ଶରରେ ବାଳୀ ହୋଇଲା ବିକଳ
ତାହାର କଣ୍ଠରେ ବାଳୀ ଦେଲା ଫୁଲମାଳ ।
ହସ୍ତ ଧରିଣ କୁମର ରଥେ ବସାଇଲା
ବିରୂପା କନ୍ୟାକୁ ପୁଣି ସଙ୍ଗେ ଘେନିଗଲା ।
କହିଲା ସେ ତାହା ଘର ଦ୍ୱାରାବତୀପୁର
ତାହାର ପିତା ଅଟନ୍ତି ପ୍ରଭୁ ଚକ୍ରଧର ।
କନ୍ୟାକୁ ଘେନିଣ ସେହୁ ଗଲା ଏହିକ୍ଷଣି
ଆମ୍ଭମାନଙ୍କୁ ସେଠାରୁ ଦେଇଣ ମେଲାଣି ।
ଗନ୍ଧର୍ବେ ବୋଇଲେ କେତେବେଳୁ ସେ ଗଲାଣି
କନ୍ୟାକୁ ବୋଇଲେ ସେହୁ ଗଲା ଏହିକ୍ଷଣି ।
ବହୁଦୂର ହୋଇନାହିଁ ଯାଅ ତୁମ୍ଭେ ବେଗେ
ଗୋଡ଼ାଇ ଗଲେ ପାଇବ ଭେଟ ଏହିଲାଗେ ।
ଶୁଣିଣ ଗନ୍ଧର୍ବେ କୋପେ ଶାସ୍ତ୍ରକୁ ଧଇଲେ
ଧର ମାର ବୋଲିଣ ଯେ ଉଚ୍ଚରେ ଡାକିଲେ ।
ଧର ଧର କାହିଁଗଲା ବୋଲିଣ ବୋଲନ୍ତି
କନ୍ୟା ଚୋର କାହିଁଗଲା ବୋଲିଣ ଗୋଡ଼ାନ୍ତି ।
ଏମନ୍ତ ଯେ ଖଣ୍ଡେଦୂର ପରିଯନ୍ତେ ଗଲେ
ଥୋକାଏ ଦୂରକୁ ଯାଇ ରଥେକ ଦେଖିଲେ ।
ରହ ରହ ବୋଲି ସର୍ବେ ଡାକନ୍ତି ନିଠାଇ
ବାୟବେଗେ ରଥ ଗୋଟି ଯାଉଛନ୍ତି ବାହି ।
କୁମରକୁ ଚାହିଁ ତହୁଁ କୁମାରୀ ବୋଇଲା
ଗନ୍ଧବ ବଳରେ ରଥ ବେଢ଼ାରେ ପଡ଼ିଲା ।
କୁମର ବୋଇଲେ ଶତେ ଇନ୍ଦ୍ର ଏକ ହୋଇ
ମୋର ଦାଢ଼ରୁ ଉବୁରି ନ ଯିବେଟି କେହି ।
ସହସ୍ରକ ଛେଳି ଯେବେ ହୋଇ ଏକମେଳ
ମତ୍ତବ୍ୟାଘ୍ର ଛାମୁରେ କି ପଡ଼ି କରେ ଗୋଳ ।
ମୁହିଁ ମତ୍ତବ୍ୟାଘ୍ୟ ଜାଣ ଏ ସହସ୍ର ଛେଳି
ଏଥକୁ ତୁ ମନେ ଚିନ୍ତା ନ କର ଗୋ ବାଳୀ ।
ଗନ୍ଧର୍ବଙ୍କ ଡାକ ଶୁଣି ନ ଦେଇ ଉତ୍ତର
ଧନୁଶର ବେଗେ କରେ ଧଇଲା କୁମର ।
ବିକ୍ରମ ମୂରତି ଧରି ପାଲଟିଲା ବେଗେ
ଦାରୁକ ରଥ ଦେଖିଲା ଗନ୍ଧର୍ବଙ୍କ ଆଗେ ।
ସହସ୍ରେ ଗନ୍ଧର୍ବେ ତାକୁ ବେଢ଼ିଲେକ ଯାଇ
ଯେ ଯାହାର ଶସ୍ତ୍ର ସର୍ବେ ମାରନ୍ତି ନିଠାଇ ।
ବେଳୁବେଳ ସମର ଯେ ହେଲା ଅଗୋଚର
ମାରନ୍ତି ଭାଲ ଶକତି କୁନ୍ତ ମୁଦୁଗର ।
ଶସ୍ତ୍ରଦେହେ ଶସ୍ତ୍ର ବାଜି ଉଠଇ ଅନଳ
ସବୁଶସ୍ତ୍ର ନିବାରଇ ଜାମ୍ବବତୀ ବାଳ ।
କୁମର ଯେବଣ ଶର ଗନ୍ଧର୍ବଙ୍କୁ ମାରେ
ଦଶବିଂଶ ପଚିଶ ଯେ ପଡ଼ନ୍ତି ତହିଁରେ ।
କୁମର ବାଣେ ଅନେକ ଗନ୍ଧର୍ବ ଯେ ମଲେ
ଥୋକାଏ ଗନ୍ଧର୍ବ ତହୁଁ ଡରେ ପଳାଇଲେ ।

କୁମରକୁ ବେଢ଼ିକରି ଥୋକାଏ ଯୁଝନ୍ତି
ଥୋକେ ପଳାଇ ସୁଧର୍ମା ସଭାରେ ମିଳନ୍ତି ।
ଆସ୍ଥାନ କରିଣ ବସିଅଛି ଇନ୍ଦ୍ରରାୟେ
ତାଙ୍କ ସଙ୍ଗେ ବସିଛନ୍ତି ସବୁ ଦେବତାଏ ।
ବ୍ରହ୍ମା ଶଙ୍କର ଆବର ଗୁରୁ ବୃହସ୍ପତି
ଗନ୍ଧର୍ବ ନାଗ କିନ୍ନରଗଣ ବସିଛନ୍ତି ।
ଚିତ୍ର ସୁରସେନ ଆଉ ଅଙ୍ଗାରପନ୍ନଗ
ଅଛନ୍ତି ଯେ ଚଉଷଠି ଗନ୍ଧର୍ବ ତା ସଙ୍ଗ ।
ପବନ ବରୁଣ ଆଦି ଅନଳ କୁମର
ଯମ ଦେବତା ଆଦିତ୍ୟ ଅଶ୍ୱିନୀ କୁମାର ।
ଅପସରାମାନେ ଆଗେ କରୁଛନ୍ତି ନୃତ୍ୟ
ନାଟକୁ ଯେ ଅବଧାନ କରେ ପୁରୁହୁତ ।
ଏମନ୍ତ ବେଳେ ଗନ୍ଧର୍ବେ ପଳାଇ ମିଳିଲେ
ଦେବ ସଭାତଳେ ପ୍ରାୟେ ପଡ଼ିଣ ଶୋଇଲେ ।
ବୋଇଲେ ଗୋସାଇଁ ଏବେ ଅବଧାନ କର
ଅପୂର୍ବ ଚରିତ ତୋର ବନର ଭିତର ।
ମର୍ତ୍ତ୍ୟପୁରୁ ରଥ ଚଢ଼ି ପୁରୁଷେ ଅଇଲା
ଅଜାଣତେ କେଉଁବାଟେ ତୋଟାରେ ପଶିଲା ।
କନକଚମ୍ପା ତୋଳିଣ ରଥେ ନେଇ ଥୋଇ
ତୋଟା ଭିତରେ ସେ ଥିଲା ଫୁଲବନେ ରହି ।
ସୁରସେନ ଗନ୍ଧର୍ବର ଝିଅ ଶୋଭାବତୀ
ଗଙ୍ଗାସ୍ନାନେ ଯାଇଥିଲା କନ୍ୟାଙ୍କ ସଙ୍ଗତି ।
ସ୍ନାନସାରି ତୋଟାମଧ୍ୟେ ପଶି ବୁଲୁଥିଲେ
ସେହି ପୁରୁଷକୁ ବନ ଭିତରେ ଦେଖିଲେ ।
ଅନଙ୍ଗ ପ୍ରାୟେ ରୂପକୁ ପଟାନ୍ତର ନାହିଁ
ଶୋଭାବତୀ ବରିଲା ଯେ ଫୁଲମାଳ ଦେଇ ।
ହସ୍ତ ଧରି ତାଙ୍କୁ ନେଇ ରଥେ ବସାଇଲା
ବିରୂପା କନ୍ୟାକୁ ପୁଣ ସଙ୍ଗେ ଘେନିଗଲା ।
ଆଉ କନ୍ୟାକୁ ମେଲାଣି ନେଇ ଗଲେ ଚଳି
ବାରତା କହିଲେ ଆସି କନ୍ୟାମାନେ ମିଳି ।
ଆମ୍ଭେମାନେ ଅସ୍ତ୍ର ଧରି ଓହ୍ଲାଇଲୁ ଯାଇ
ନାରାଚମାନ ବିନ୍ଧିଲୁ ମନେ ରୋଷ ବହି ।
ନାରାଚ ବିନ୍ଧନ୍ତେ ତାର କିଛି ନ ହୋଇଲା
ତାର ନାରାଚେ ଗନ୍ଧର୍ବ ବଳ ନାଶଗଲା ।
ଏକା ଜଣକରେ ସେହୁ ଏଡ଼େ ସାମରଥ
କେତେ ଗନ୍ଧର୍ବ ମାଇଲା ନ ଜାଣୁ ତଦନ୍ତ ।
ଶୁଣି ଇନ୍ଦ୍ରରାୟେ ତହୁଁ ବ୍ରହ୍ମାମୁଖ ଚାହିଁ
କିମ୍ଭୁତ କାରଣ ଏହା ବୋଲି ପଚାରଇ ।
ବ୍ରହ୍ମାଏ ବୋଇଲେ ତାହା ଜାଣିବ କେମନ୍ତେ
ଧରାଇ ଆଣ ତଦନ୍ତ ବୁଝିବା ନା ଏଥେ ।
ଚିତ୍ରସେନ ଗନ୍ଧର୍ବଙ୍କୁ ରାଇ ଇନ୍ଦ୍ରରାୟେ
ବୋଇଲେ ତୁ ବେଗହୋଇ ଯାଅରେ ତନୟେ ।
ଶୋଭାବତୀ କନ୍ୟାକୁ କେ ନେଉଅଛି ଧରି
ବେଗେ ଘେନି ଆସ ତାକୁ ପ୍ରାଣରେ ନ ମାରି ।
କୁଳଗୋତ୍ର ପଚାରିଣ କରିବା ବିନାଶ
କାହାର ସେ ପୁତ୍ର ଅଟେ ବୁଝିବା ବିଶେଷ ।
ଆଜ୍ଞା ପରମାଣେ ଚିତ୍ରସେନ ଧାଇଁଗଲା
ବହୁତ ସୈନ୍ୟ ସେ ପୁଣି ସଙ୍ଗତରେ ନେଲା ।
ବାୟୁବେଗେ କୁମରକୁ ଭେଟିଲାକ ଯାଇଁ
ଶ୍ୟାମଳ ପକ୍ଷୀ ଯେସନେ ବଳକୁ ଭେଟଇ ।
ପୂର୍ଣ୍ଣିମାର ଚନ୍ଦ୍ରମାକୁ ଘୋଟିଲା କି ରାହୁ
ଅନର୍ଥ ହେଲା କି ବୁଦ୍ଧି କରିବା ଯେ ଆଉ ।
ଦଇବ ପୁରୁଷ ନିଶ୍ଚେ ବିପକ୍ଷ ହୋଇଲା
ମାର ମାର ଶବଦରେ ପୃଥ୍ୱୀ ଉଛୁଳିଲା ।
ଏହିରୂପେ କୁମରକୁ କହେ ଶୋଭାବତୀ
କୁମର ବୋଇଲା ତୁହି ନ ଭାଳ ଗୋ ସତୀ ।
କହୁ କହୁ ଗନ୍ଧର୍ବେ ଯେ ବେଢ଼ିଲେ କୁମରେ
ଜୀଅନ୍ତା ଧର ନ ମାରି ଏହାକୁ ପ୍ରାଣରେ ।
ଅନେକ ନାରାଚ ତାକୁ ଗନ୍ଧର୍ବେ ମାଇଲେ
କାଣ୍ଡ ମାରିଣ କୁମର ରଥ ଲୁଚାଇଲେ ।
କୁମର ହିଁ ଅନେକ ଯେ ନାରାଚ ବିନ୍ଧିଲା
ଗନ୍ଧର୍ବମାନଙ୍କ ଶିର କାଟି ପକାଇଲା ।
ଦେଖି ବିଚାରଇ ମନେ ମନେ ଚିତ୍ରସେନ
ଧନ୍ୟରେ ମାନବ ତୋର ପିତାମାତା ଧନ୍ୟ ।
ମାନବ ହୋଇ ଦେବଙ୍କ ସଙ୍ଗେ ଆସି ଯୁଝୁ
ଇତରଜନ ପରାୟେ ଆମ୍ଭଙ୍କୁ ତୁ ବୁଝୁ ।
ଭୟ ନ କରିଣ କନ୍ୟା ନେଉଅଛୁ ହରି
ଏକା ତୁ ଗନ୍ଧର୍ବ ବଳ ପକାଇଲୁ ମାରି ।
କହୁଁ କହୁଁ ଅନେକ ସେ ନାରାଚ ବିନ୍ଧିଲା
କୁମର ତାହାକୁ ଖଣ୍ଡେ ଦୂରୁ ନିବାରିଲା ।
ଦେଖି ଚିତ୍ରସେନ ମନେ ମହାକୋପ କରି
ତୀକ୍ଷ୍ଣ ଭାଲ କୁନ୍ତଶକ୍ତି ମାରେ କରେ ଧରି ।
କୁମର ଅଙ୍ଗେ ନାରାଚମାନ ଯେ ପଡ଼ଇ
ପବନ ବହିଲେ ଯେହ୍ନେ ଗିରି ନ ଟଳଇ ।
କୁମର ବିନ୍ଧଇ ଯେଉଁ ନାରାଚ ନିକର
ଗନ୍ଧର୍ବବଳ ଲୋଟିଣ ପଡ଼ନ୍ତି ଭୂମିର ।
ଏମନ୍ତେ ଦୁଇପ୍ରହର ସମର ହୋଇଲା
ଦୁହେଁ ମହାକ୍ଷତ୍ରୀ କେହି ଯୁଦ୍ଧେ ନ ହାରିଲା ।
ଅନେକ ଗୋଳ ସଂଗ୍ରାମ ପୁଣି ସେହି କଲେ
ଏକା ଜଣକୁ ବହୁତ ଆସିଣ ବେଢ଼ିଲେ ।

ବେଳୁ ବେଳ ସମର ଯେ ହେଲା ଅଗୋଚର
କେତେବେଳେ ଯୁଝିବ ସେ ଏକାକେ କୁମର ।
ବଳେ ବଳିୟାର ପୁଣି ଚିତ୍ରସେନ ହେଲା
ଅନେକ ଗନ୍ଧର୍ବ ବଳ ଘେନିଣ ଧାଇଁଲା ।
କୁମରର ନାରାଚକୁ ତାର ଭୟ ନାହିଁ
ରଥ ଉପରକୁ ସେହି ବେଗେ ଚଢ଼ି ଯାଇ ।
କୁମର ହସ୍ତରୁ ଧନୁ ଛଡ଼ାଇ ଆଣିଲା
କୃଷ୍ଣର କୁମର ତହିଁ ନିଶସ୍ତ୍ର ହୋଇଲା ।
ବେଗେ ଚିତ୍ରସେନ ଧରି କୁମରର ବାଳ
ନିର୍ଭୟେ ବାନ୍ଧିଲା ତାକୁ ଘେନି ପାଟ ଡୋର ।
ଆପଣାର ରଥେ ଧରି ନେଇ ବସାଇଲା
ଶୋଭାବତୀକି ଅନେକ ମନେ ଝିଙ୍ଗାସିଲା ।
କୁମାରୀ ବୋଇଲା ତୁମ୍ଭେ ମନ୍ଦକୃତ୍ୟ କଲ
ଯୁବାକନ୍ୟା ମୁହିଁ ମୋତେ ବିଭା ଯେ ନ ଦେଲ ।
ମୋହର ଇଚ୍ଛାରେ ଯେବେ ବରିଲି ମୁଁ ବର
ଏଥକୁ କୋପ କିମ୍ପାଇ କରୁଛ ଅପାର ।
କୁମର ବନ୍ଧନ ଦେଖି ବ୍ୟାକୁଳ ହୁଅଇ
ମନେ ମନେ ଶୋଭାବତୀ ଧର୍ମ ସୁମରଇ ।
ଜଗନ୍ନାଥ ଦେବଙ୍କୁ ଯେ କରଇ ଗୁହାରି
ବୋଲେ ଜଗନ୍ନାଥ ତୁମ୍ଭେ ପରା ଦଇତ୍ୟାରୀ ।
ମୁହିଁ ଅଟେ ଅରକ୍ଷିତ ସ୍ତିରୀ ମାତ୍ର ସିନା
ତୁମ୍ଭର ପରା ଉଡ଼ଇ ଜଗନ୍ନାଥ ବାନା ।
ଏ ଘୋର ଆତଙ୍କୁ ମୋତେ କରିବ ନା ତ୍ରାହି
ଯେମନ୍ତେ ଏ କୁମରକୁ ବାଧା ନ ଘଟଇ ।
ପୁଣି ସୁମରଇ ତହିଁ ଦେବୀ କମଳିନୀ
ତୁହି ମାତ ଜଗତର ଅଟୁ ଠାକୁରାଣୀ ।
ସ୍ତିରୀଙ୍କର ବେଦନା ତୁ ଜାଣୁ ଗୋସାମଣୀ
ଏ ଭବ ଭୟରୁ ମୋତେ ଉଦ୍ଧାର ଗୋ ପୁଣି ।
ଅନେକ ବିକଳ ହୋଇ କନ୍ୟା ଯେ କାନ୍ଦଇ
କୁରଙ୍ଗୀ ନୟନରୁ ଯେ ଲୋତକ ଗଳଇ ।
ଗୋଟି ଗୋଟି ମୁକୁତା କି ପଡୁଅଛି ତଳେ
ସେହିରୂପେ ନୟନରୁ ଅଶ୍ରୁ ବିନ୍ଦୁ ଗଳେ ।
କୁମରକ ବାନ୍ଧି ଘେନିଗଲା ଚିତ୍ରସେନ
ଦାରୁକକୁ ବୋଲେ ରଥ ବାହା ତୁ ବହନ ।
କୁମର ମୁଖକୁ ଚାହିଁ ବିଚାରେ ଗନ୍ଧର୍ବ
କୃଷ୍ଣର କୁମର ପ୍ରାୟ ଦିଶଇ ସ୍ୱଭାବ ।
ସୁଧର୍ମା ସଭାକୁ ସେହୁ ବେଗେ ଘେନିଗଲା
ସଭାର ତଳରେ ନେଇ କୁମରକୁ କଲା ।
ଦେଖି ତାକୁ ଇନ୍ଦ୍ରରାୟେ ବୋଇଲେ ବଚନ
ବାନ୍ଧି ରଖରେ କାହାର ଅଟଇ ନନ୍ଦନ ।

ସଭାମଧ୍ୟେ ନାରଦ ଯେ ଥିଲେ ଉଭା ହୋଇ
କୁମର ମୁଖକୁ ସେହି ଦେଲେକ ଅନାଇଁ ।
ବିଚାରିଲେ ଅଟଇ ଏ ଜାମ୍ବବତୀ ସୁତ
କନକଚମ୍ପା ନିମନ୍ତେ ହେଲା ଉପଗତ ।
ଶୋଭାବତୀ କନ୍ୟାକୁ ଏ ବଳେ ନେଇଥିଲା
ମୋତେ ଗୁପତେ ଏ କଥା କିମ୍ପା ନ କହିଲା ।
କିଛି ନ କହିଣ ମୁନି ତୁନି ହୋଇଗଲେ
ମନଦଣ୍ଡ ଚଢ଼ି ତହୁଁ ବାହାର ହୋଇଲେ ।
ଯାଇଣ ମିଳିଲେ ମୁନି ଦ୍ୱାରାବତୀ ପୁର
ସଭା କରି ବସିଛନ୍ତି ତହିଁ ଚକ୍ରଧର ।
ସେଠାରେ ମିଳିଲେ ଯାଇଁ ବ୍ରହ୍ମାଙ୍କ ନନ୍ଦନ
କୃଷ୍ଣ କୁମର ଆବର ରାଜା ଉଗ୍ରସେନ ।
ସାତବଂଶ ଯାଦବ ଯେ ବଳରାମ ଘେନି
ସଭାକରି ବସିଛନ୍ତି ଏ ସମୟେ ମୁନି ।
ପ୍ରବେଶ ହୋଇଲେ ଦେଖି ସର୍ବ ସଭାଜନ
ଆସନୁ ଉଠି ବନ୍ଦିଲେ ମୁନିଙ୍କ ଚରଣ ।
କୃଷ୍ଣ ପଚାରନ୍ତି ମୁନି ଥିଲ ତୁମ୍ଭେ କାହିଁ
କି ବାରତା ଆଣିଅଛ କହ ହେ ବୁଝାଇ ।
ନାରଦ ବୋଇଲେ ବାର୍ତ୍ତା ଶୁଣ ସାବଧାନେ
କନକଚମ୍ପା ନିମନ୍ତେ ଶାମ୍ବ ଗଲା ବନେ ।
ସୁରସେନ ଗନ୍ଧର୍ବର ଝିଅ ଶୋଭାବତୀ
ତାହାକୁ ଯେ ଆଣୁଥିଲା ଶାମ୍ବ ମହାକ୍ଷତ୍ରୀ ।
ଗନ୍ଧର୍ବେ ଜାଣିଣ ତାହା ବହୁତ ଯୁଝିଲେ
ଶାମ୍ବ କୁମାର ହସ୍ତରେ ଅନେକ ଯେ ମଲେ ।
ତହୁଁ ଇନ୍ଦ୍ରରାୟ ଚିତ୍ରସେନକୁ ପେଷିଲା
ସେହି ଆସି ଶାମ୍ବ ସଙ୍ଗେ ଘୋର ରଣ କଲା ।
ଅନେକ ପ୍ରକାରେ ମାରି ଘେନିଗଲା ବାନ୍ଧି
ବାସବ ଆଜ୍ଞାରେ ତାକୁ କରିଅଛି ବନ୍ଦୀ ।
ତାହା ଦେଖି ଆମ୍ଭେ ବଡ଼ ବିକଳ ହୋଇଲୁ
ବାରତା କହିବା ପାଇଁ ଏଥକୁ ଅଇଲୁ ।
ପାରିଲେ ତୁ କୁମାରକୁ ଅଣା ଯା ଛଡ଼ାଇ
ତାହା ଶୁଣି କୋପ କଲେ କମଳାର ସାଇଁ ।
ବୋଇଲେ କରିବି ଆଜ ସ୍ୱର୍ଗପୁର ନାଶ
ନୂଆ ଇନ୍ଦ୍ର ବସାଇବି ନେଇ ସ୍ୱର୍ଗବାସ ।
ଏତେକ ବଚନ ଯହୁଁ ଗୋବିନ୍ଦ କହିଲେ
କଳହପ୍ରିୟ ମୁନି ଯେ ହସିଣ ବୋଇଲେ ।
ଇନ୍ଦ୍ରତୁଲେ ଯୁଦ୍ଧ ତୁମ୍ଭେ ନ ପାରିବ କରି
କିମ୍ପା ଡରିବ ତୁମ୍ଭଙ୍କୁ ସେ ତ ବଜ୍ରଧାରୀ ।
ନାରଦଙ୍କ ବଚନରେ ଶ୍ରୀହରି ଉଠିଲେ
ଧାଡିକାରେ ବଳରାମ ଛାମୁରେ ମିଳିଲେ ।

ନମସ୍କାର କରି ତାଙ୍କୁ ବୋଲନ୍ତି ବଚନ
ଶୁଣ ଶୁଣ ସ୍ୱାମୀ ଏବେ ମୋହର ନନ୍ଦନ ।
ନନ୍ଦନବନେ କନକଚମ୍ପା ପାଇଗଲା
ଫୁଲ ଘେନି ଶାମ୍ବ ମୋର ରଥେ ଆସୁଥିଲା ।
ଦଇବବଶେ ଦେଖିଲା ଶରସେନ ଝିଅ
ତାକୁ ବଳେ ଘେନି ଆସୁଥିଲା ମୋର ପୁଅ ।
ଗନ୍ଧର୍ବବଳ ଆସିଣ ତାହାଙ୍କୁ ବେଢ଼ିଲେ
ଅନେକ ଯୁଦ୍ଧ କରିଣ ପୁତ୍ରେ ବାନ୍ଧିନେଲେ ।
ଏଥକୁ କି ଆଜ୍ଞା ମୋତେ କହ ହଳପତି
ଶୁଣି ବଳରାମ ତାଙ୍କୁ ବଚନ କହନ୍ତି ।
ଅନୀତ ଜିମ୍ପାଇ କଲା ତୋହର ନନ୍ଦନ
ବଳାତ୍କାରେ କଲା ପର ଝିଅକୁ ହରଣ ।
କେତେ କଳି ଦ୍ୱନ୍ଦ୍ୱ କାହା ସଙ୍ଗେ ଯେ କରିବ
ଜାଣି କେମନ୍ତେ ବାନ୍ଧିଲା ପୁତ୍ରକୁ ବାସବ ।
ଅମରପୁର କରିବି ଆଜ ମୁଁ ନିପାତ
ଦେବତାଙ୍କୁ କରିବଇଁ ନିଶ୍ଚେ ଭସ୍ମୀଭୂତ ।
ଏହାକହି ବଳରାମ କୋପଭର ହେଲେ
ବାତାଘାତେ ରମ୍ଭାପତ୍ର ପ୍ରାୟେକ ଥରିଲେ ।
ଥରହର ହୋଇ କମ୍ପୁଛନ୍ତି ହଳପାଣି
ସଉନନ୍ଦ ଗଦା ଦେବ ହସ୍ତେ ଘେନି ପୁଣି ।
କ୍ରୋଧଭରେ ବଳରାମ ବାହାର ହୋଇଲେ
ବାମକରେ ବେଗେ ସେହୁ ଲଙ୍ଗଳ ଧଇଲେ ।
ଆଜି ମୁଁ ଇନ୍ଦ୍ରକୁ ପଠାଇବି ଯମପୁର
ବନ୍ଦୀକରି ରଖିଛି ସେ ମୋହର କୁମର ।
ବଳରାମଙ୍କର କୋପ ଜାଣିଲେ ନାରଦ
ବୋଇଲେ ହୋଇବ ଏଥେ ବହୁତ ପ୍ରମାଦ ।
ଦ୍ୱନ୍ଦ୍ୱକଳି ହେ ଏଠାରେ ବହୁତ ହୋଇବ
କଳି କୁତୂହଳେ ଆମ୍ଭେ ଦେଖିବାକୁ ଭାବ ।
ବୋଇଲେ ଯେ ହଳପାଣି ସାବଧାନେ ଶୁଣ
ଥାଟ ସଜକର ବେଗେ ତହିଁ ଯିବା ପୁଣ ।
ଏହା ଶୁଣି ବଳରାମ ଲଙ୍ଗଳ ଧରିଲେ
ଗୋବିନ୍ଦ ଯେ ଉଦ୍ଧବକୁ ଡକାଇ ଆଣିଲେ ।
ଉଗ୍ରସେନ ଥାଟ ସଜକରି ଆସୁ ଆଗେ
ସାତବଂଶ ସଜହୋଇ ଆସନ୍ତୁ ଯେ ବେଗେ ।
ଆଜ୍ଞା ପାଇଣ ଉଦ୍ଧବ ତହୁଁ ବେଗେ ଗଲେ
ଉଗ୍ରସେନଙ୍କ ସଭାରେ ଯାଇଣ ମିଳିଲେ ।
ନମସ୍କାର କରି ତାଙ୍କୁ କହିଲେକ ପୁଣ
ସାବଧାନ ହୋଇ ଦେବ ଶୁଣ ମୋ ବଚନ ।
ଠାକୁରଙ୍କ ଆଜ୍ଞାଥାଟ ବେଗେ ସଜକର
ଇନ୍ଦ୍ରଦେବ ସହିତରେ ହୋଇବ ସମର ।
ନନ୍ଦନବନକୁ ଶାମ୍ବ ଦିନେ ଯାଇଥିଲା
କନକଚମ୍ପା ସେ ବନୁ ତୋଳିଣ ଆଣିଲା ।
ଇନ୍ଦ୍ରର ନାତୁଣୀ ସେହୁ ଶୋଭାବତୀ କନ୍ୟା
ନନ୍ଦନବନକୁ ଆସିଥିଲା ବରାଙ୍ଗନା ।
ସେ କନ୍ୟା ଶାମ୍ବ କୁମର ଭେଟ ଯେ ପାଇଲା
ତାହାକୁ ଦେଖି କୁମାରୀ ବିହ୍ୱଳିତ ହେଲା ।
କୁମାର କୁମାରୀ ତହୁଁ ସଂଯୋଗ ହୋଇଲେ
ରଥରେ ବସାଇ ଶାମ୍ବ କନ୍ୟାକୁ ଆଣିଲେ ।
ବାରତା ପାଇଣ ଇନ୍ଦ୍ର ଧରାଇଣ ନେଲା
ନେଇଣ ବନ୍ଦୀ ପ୍ରକାରେ ତାହାକୁ ରଖିଲା ।
ନାରଦ ମହର୍ଷି ଆସି ବାରତା କହିଲେ
ଶୁଣି କୃଷ୍ଣ ବଳରାମ ମହାକୋପ କଲେ ।
ବୋଇଲେ ଇନ୍ଦ୍ରର ତୁଲେ କରିବୁ ସମର
ସରଗପୁରକୁ କରିଦେବେ ନାରଖାର ।
ମୋତେ ପେଶିଲେ ତୁମ୍ଭର ପାଶେ ନାରାୟଣ
ରାଜାର ଛାମୁରେ କହ ସମସ୍ତେ ବିଧାନ ।
ଏହାଶୁଣି ଉଗ୍ରସେନ ରାଜା କୋପ କଲେ
ପଡ଼ିଆରୀ ସେବକଙ୍କୁ ରାଇ ଆଜ୍ଞାଦେଲେ ।
ସାତବଂଶ ଯାଦବ ହେ ସଜ ବେଗେ ହୁଅ
ଯାନବାହନ ଚଢ଼ିଣ ବେଗେ ହୋଇଯାଅ ।
ଶସ୍ତ୍ରଧରି ବେଗେ ଯାନବାହନ ସାଜିଣ
ଅନାଧୃଷ୍ଟ ସାତ୍ୟକି ଯେ ଅକ୍ରୂର ସଙ୍ଗେଣ ।
ତହୁଁ ଆଜ୍ଞା ପରମାଣେ ଦୂତେ ଚଳିଗଲେ
ବେଗେ ଦାଣ୍ଡରେ ଘୋଷଣା ସେହୁ ଦିଆଇଲେ ।
ବାରତା ପାଇଣ ସାତବଂଶର ଯାଦବେ
ସଜହୋଇ ଉଭାହେଲେ ଦାଣ୍ଡରେ ସମ୍ଭର୍ବେ ।
ଆପଣେ ଯେ ଦିବ୍ୟବେଶ ହେଲେ ଉଗ୍ରସେନ
ରଥ ସାଜିଣ ଅକ୍ରୂର ଆଣିଲା ବହନ ।
ସେ ରଥରେ ଉଗ୍ରସେନ ଯାଇ ବିଜେ କଲେ
ଧବଳ ଛତ୍ର ଗୋଟିଏ ଉପରେ ରଖିଲେ ।
ଉଦ୍ଦଣ୍ଡ ଯେ ପାଟଛତ୍ର ଉଡ଼ାଇ ଆଗରେ
ଶଙ୍ଖ ଯେ ମହୁରୀ ଆଦି ବଜାଇ ଉଚ୍ଚରେ ।
ବାଦ୍ୟନାଦ ଶବଦରେ କୁରୁମ ଉଛୁଳି
ଦଳଦଳ ହୋଇ କମ୍ପେ ଭୂମି କୁଶସ୍ଥଳୀ ।
ସୈନ୍ୟମାନେ ସଜହୋଇ ଆଗେ ଉଭାହେଲେ
ମାର ମାର ଶବଦରେ ମହୀ ପୂରିଗଲେ ।
ଶୁଣ ଆହୋ ମନୁରାଜା କହନ୍ତି ଅଗସ୍ତି
ଏ ମହାଭାରତ କଥା ଶୁଣ ଦେଇ ମତି ।
ହରି ବଳରାମ ବେନିଭାଇ ସଜହୋଇ
ରଥ ଚଢ଼ି ଦାଣ୍ଡରେ ଯେ ଉଭା ହେଲେ ଯାଇ ।

ଶ୍ରୀକୃଷ୍ଣଙ୍କ ପୁତ୍ରମାନେ ଉଭାହେଲେ ତହିଁ
ବଳରାମ ଦୁଇପୁତ୍ରେ ବାହାର ଯେ ହୋଇ ।
ଯେ ଯାହାର ଶସ୍ତ୍ରମାନ ଧରିଣ ଅଛନ୍ତି
ଆପେ ଦିବ୍ୟବେଶ ହୋଇ ଅଇଲେ ଶ୍ରୀପତି ।
ଗରୁଡ଼କୁ ସୁମରିଲେ ଦେବ ଚକ୍ରଧର
ରମ୍ୟକ ଦ୍ୱୀପୁଁ ଅଇଲା ବିନତା କୁମର ।
ଦ୍ୱାରାବତୀ ପୁରେ ସେହି ମିଳିଲାକ ଆସି
ହରିଙ୍କୁ ଦେଖିଣ ଶିରେ କରକୁ ନିବେଶି ।
କହିଲେ ସମସ୍ତ କଥା ତାକୁ ନାରାୟଣ
ବନ୍ଦୀ କରିଅଛି ମୋର ପୁତ୍ରେ ସୁରରାଣ ।
ମୋହର କୁମର ବୋଲି ନାରଦ କହିଲେ
ତଥାପି ଇନ୍ଦ୍ର ଦେବତା ତାକୁ ନ ଛାଡ଼ିଲେ ।
ଶୁଣି ଖଗବର କହେ କରଯୋଡ଼ି କରି
ତୋର ସଞ୍ଚାର ସିନା ଅଟେ ସ୍ୱର୍ଗପୁରୀ ।
ଆପଣାର ମହିମା ତୁ ଆପେ ନ ବିଚାରୁ
ଇନ୍ଦ୍ରଦେବତାଙ୍କୁ ଏଡ଼େ କୋପ କିମ୍ପା କରୁ ।
ନାରାୟଣ ବୋଇଲେ ସେ ଗରିଷ୍ଟ ହୋଇଲା
ଆପଣା ଇଚ୍ଛାରେ ନିଜେ ସମ୍ପଦ ହାରିଲା ।
ଆଜି ତାର ପୁରକୁ ମୁଁ କରିବଇଁ ନାଶ
ଆନ ଇନ୍ଦ୍ର କରି ବସାଇବି ସ୍ୱର୍ଗବାସ ।
ଶଙ୍ଖ ଚକ୍ର ଶାରଙ୍ଗ ଯେ ଗଦା ଧନୁ ଧରି
ଆପଣେ ସଜ ହୋଇଲେ ଦେବ ଦଇତ୍ୟାରି ।
ଗରୁଡ଼ ପିଠିରେ ଦେବ ଯାଇ ବିଜେ କଲେ
ବଳରାମ ତାଳଧ୍ୱଜ ରଥରେ ବସିଲେ ।
ଅନେକ ସଇନ୍ୟ ଘେନି ଉଗ୍ରସେନ ରାୟେ
ଆଗହୋଇ କରି ସେହୁ ବାହାରିଣ ଯାଏ ।
ଉଦ୍ଧଣ୍ଡ ଯେ ଏକଲକ୍ଷ ଉଡ଼ଇ ଆଗରେ
ପ୍ରଚଣ୍ଡ ହୋଇଣ ବାଦ୍ୟ ବାଜେ ବିକରାଳେ ।
ଶ୍ରୀକୃଷ୍ଣ ପୁତ୍ରମାନଙ୍କୁ ଘେନି ବଳରାମ
ଆପଣେ ବାହାର ଦେବ ହେଲେ ତତକ୍ଷଣ ।
ଥାଟ ଚଳାଇ ସରବେ ବାହାର ଯେ ହେଲେ
ଦେବ ଦାମୋଦର ପଛେ ବିଜେ କରିଗଲେ ।
ଗରୁଡ଼କୁ ଏକାନ୍ତରେ କହି ଭଗବାନ
ରାମ କୋପେ ନାଶ ହେବ ସରଗ ଭୁବନ ।
ସାତବଂଶର ଯାଦବ ଯହୁଁ ବାହାରିଲେ
ସୈନ୍ୟଙ୍କୁ ଦେଖି ନାରଦ ମନେ ବିଚାରିଲେ ।
ହରି ସହସ୍ରାକ୍ଷର ଯେ ହୋଇବ ସମର
କଳି କୁତୁହଳେ ପେଟ ପୂରିବ ଆମ୍ଭର ।
ଯତନେ ଯାହା ମନରେ ମୁହିଁ ଲୋଡୁଥାଇ
ଦଇବ ପୁରୁଷ ତାହା ଦେଲେକ ଘଟାଇ ।

ଏତେ ବିଚାରି ନାରଦ ଆନନ୍ଦେ ନାଚନ୍ତି
ବୀଣା ଧ୍ୱନି କରି ସେହୁ ଶୂନ୍ୟରେ ଗମନ୍ତି ।
କାଖରେ ଯାକିଣ କଳିଧୋକଡ଼ି ଯେ ମୁଣି
ଧୂଳି ମୁଠାଏ ବାହାର କଲେ ମହାମୁନି ।
ଲାଗୁ ଲାଗୁ ବୋଲିକରି ତହୁଁ ଡାକଦେଲେ
ତତପରେ ମନଦଣ୍ଡ ଚଢ଼ି ବାହାରିଲେ ।
ଯାଇଣ ମିଳିଲେ ମୁନି ଅଳକା ଭୁବନେ
ସୁରପତି ବସିଥିଲେ ସ୍ୱରଗ ଆସ୍ଥାନେ ।
ତାହାଙ୍କୁ ଦେଖି ବୋଇଲେ କାହିଁଥିଲ ମୁନି
ନାରଦ ବୋଇଲେ ତୁମ୍ଭେ ଶୁଣ ସୁରମଣି ।
ଯାହା ପଚାରିଲ ତାହା ଶୁଣ ସାବଧାନେ
ରହିଥିଲୁ ଆମ୍ଭେ ଇନ୍ଦ୍ର ମଞ୍ଚ ଯେ ଭୁବନେ ।
ଏହିକ୍ଷଣି ଦ୍ୱାରାବତୀ ପୁରେ ଆମ୍ଭେ ଥିଲୁ
ଅପୂର୍ବ କଥାଏ ତହିଁ ଦେଖିଣ ଅଇଲୁ ।
ଶ୍ରୀକୃଷ୍ଣର ପୁତ୍ର ସେ ଯେ ଶାମ୍ବକୁମରକୁ
ନ ଜାଣି ତୁ ଇନ୍ଦ୍ର ଧରି ରଖିଛୁ ତାହାକୁ ।
ସେହି ବାରତା ପାଇଣ ହରି ବଳରାମ
ଥାଟଘେନି ଆସୁଛନ୍ତି କରିବେ ସଂଗ୍ରାମ ।
ବହୁ କୋପ କରି ଆସୁଛନ୍ତି ହଳଧର
ବୋଇଲେ ଇନ୍ଦ୍ରକୁ ପେଶିବଇଁ ଯମପୁର ।
ଅଳକାପୁର କରିବି ଆଜି ଭସ୍ମରାଶି
ଗନ୍ଧର୍ବଗଣଙ୍କୁ ନିଜେ ପକାଇବି ନାଶି ।
ଗରୁଡ଼ ପୃଷ୍ଠେ ଚଢ଼ିଣ ଦେବ ନାରାୟଣ
ସେହି ବୋଇଲେକ ପୁଣି ଗାଢ଼ ଯେ ବଚନ ।
ଉଗ୍ରସେନର ପ୍ରତିଜ୍ଞା କହି ନ ସରଇ
ସାତବଂଶ ସହିତରେ ବାହାର ଯେ ହୋଇ ।
ସଙ୍ଗରେ ସଇନି ଘେନି ଆସେ ଅଗଣିତ
ଏକୁ ଆରେକ ପ୍ରତିଜ୍ଞା କରନ୍ତି ବହୁତ ।
ସମସ୍ତ ସୈନ୍ୟଙ୍କୁ ପେଶି ଆଗେ ନାରାୟଣ
ପଛପଟୁଆରେ ଆସୁଅଛନ୍ତି ଆପଣ ।
ଅନେକ ଗୋଳ କରିବେ ଏଥି ଦାମୋଦର
ଯାହା ଦେଖି ଅଇଲି ମୁଁ ବେନି ନୟନର ।
ଶୁଣି ବାସବ କମ୍ପଇଁ ହୋଇ ଥରହର
ବଜ୍ର ଝମକାଇ କୋପେ କରଇ ଉତ୍ତର ।
ଭୋ ମୁନି ନାରଦ ତୁମ୍ଭେ କହ ତଥ୍ୟକରି
ଗୋପାଳେ କି ଆସୁଛନ୍ତି ଏ ମୋହର ପୁରୀ ।
ମଞ୍ଚରାଜା ପ୍ରାୟ ସେହୁ ମୋତେ କି ମଣିଛି
ରାଜାଙ୍କର ଝିଅ ସବୁ ଯେପରି ହରୁଛି ।
ତେସନ ପ୍ରାୟେକ ସେହି ମଣିଅଛି ମୋତେ
ଏତେକ ବୋଲି ବହୁତ କୋପ ବହି ଚିତ୍ତେ ।

ଆଜ ସମର କରିବ ଯେବେ ମୋର ତୁଳେ
ଗଉଡ଼ର ବଡ଼ପଣ ଭାଙ୍ଗିଦେବି ଭଲେ ।
ଗଉଡ଼ ବାଉଡ଼ ସେହି ଅଟଇ କୁଜନ
ପ୍ରତିଜ୍ଞା ଯେ କରିଛନ୍ତି ନ ଜାଣିମା ପଣ ।
ବ୍ରହ୍ମାଙ୍କୁ ଚାହିଁ କହଇ ପୁଣି ପୁତ୍ରରାୟ
ଶୁଣିଲ ଯାହା କହିଲେ ତୁମ୍ଭର ତନୟ ।
ବଳେ ସ୍ୱର୍ଗପୁରେ ପଶି ହରେ ପରଝିଅ
ସେ ଦୁଷ୍ଟଜନ ବାନ୍ଧିଲି ଏ ମୋର ଅନ୍ୟାୟ ।
ତହିଁ ନିମନ୍ତେ ସ୍ୱର୍ଗକୁ ଆସେ ରାମ ହରି
ନ ବିଚାର ଏହା କିମ୍ପା ଆହେ କୁଶଧାରୀ ।
ପ୍ରଜାପତି ବୋଇଲେ ଯେ ଶୁଣ ସୁରରାଣ
କଥା ଏକ କହିବା ତୁ ସାବଧାନେ ଶୁଣ ।
ଆଗହୁଁ ପ୍ରତିଜ୍ଞା ତୁହି ନ କର ଯେ ଗାଢ଼େ
ଦେଖିଲେ ଜାଣିବା କେଡ଼େ ବଳିଷ୍ଟ ଗଉଡ଼େ ।
ଆମ୍ଭ ଦେବଗଣଙ୍କୁ ତୁ ବେଗେ ସଜକର
ଗଉଡ଼ର ସହିତରେ କରିବା ସମର ।
ସାତବଂଶ ଯାଦବଙ୍କୁ କରିବାକ ନାଶ
ଏଥକୁ ଚିନ୍ତା ନ କର ତୁହି ଦେବଈଶ ।
ବାସବ ବୋଇଲେ ସଜ ହୁଅ ଦେବସୈନ୍ୟ
ଆଜି ଗଉଡ଼ ଗରବ କରିବା ଭଞ୍ଜନ ।
ସୁରସେନ ଚିତ୍ରସେନ ଆଦିଙ୍କର ମୂଳେ
ଚଉଷଠି ଗନ୍ଧର୍ବ ଯେ ଇନ୍ଦ୍ରଙ୍କ କୁମରେ ।
ଅଶ୍ୱିନୀ କୁମାର ଆଦି ସକଳେ ଧାଇଁଲେ
ସମସ୍ତେ ଯାଇଁ ବାସବ ଛାମୁରେ ମିଳିଲେ ।
ଶସ୍ତ୍ର ଧରି ଦେବତାଏ ବେଗେ ଝମକାନ୍ତି
ଏକୁ ଆରେକ ପ୍ରତିଜ୍ଞା ବହୁତ କରନ୍ତି ।
ବରୁଣ ପବନ ଯମ ଚନ୍ଦ୍ର ସୂର୍ଯ୍ୟମେଳେ
ଦେବଗଣ ସଜହୋଇ ଆସି ବିଜେ କଲେ ।
ବାରତା ପାଇ ବାସୁକୀ ଥାଟ ଘେନି ଆସି
ଗ୍ରହ ନକ୍ଷତ୍ର ଆସିଣ ହେଲେ ମିଶାମିଶି ।
କଇଳାସ କନ୍ଦରୁ ଯେ ଆସିଲେ ଶଙ୍କର
ଶିବଗଣ ତାଙ୍କ ସଙ୍ଗେ ଅଛନ୍ତି ଅପାର ।
କାର୍ତ୍ତିକ ଗଣେଶ ନନ୍ଦୀ ଭୃକୁଟୀର ମୂଳେ
ସଜହୋଇ ଉଭାହେଲେ ଆସ୍ଥାନର ତଳେ ।
କଳ୍ପାନ୍ତକ ବୃଷଭରେ ଚଢ଼ି ମହାଦେବ
ସେହି ଆସି ମିଳିଲେକ ଦେବ ସଭା ଠାବ ।
ସଜହୋଇ ଉଭାହେଲେ ଆସ୍ଥାନର ତଳେ
ତେତିଶକୋଟି ଦେବତା ଗନ୍ଧର୍ବ ସକଳେ ।
ଈଶ୍ୱରଙ୍କୁ ଚାହିଁ କହେ ଦେବ ସୁରପତି
ଜାଣ ନାହିଁ କି ନୀଳେନ୍ଦ୍ରି ହରଣର ରୀତି ।
ତୁମ୍ଭ ପୁତ୍ର କାର୍ତ୍ତିକକୁ ବରିଲା ତା ମାତ
ଆମ୍ଭ ଆଜ୍ଞାନରେ କନ୍ୟା ନେଲା କୃଷ୍ଣପୁତ୍ର ।
ତହିଁରେ ଆବର ଯେତେ ଅନର୍ଥ ହୋଇଲା
ବ୍ରହ୍ମା ଥାଇଁ ତାହା ସବୁ ନିର୍ଭା ଯେ କରିଲା ।
ଏଡ଼େ ବଡ଼ କଳି କ୍ଷଣକରେ ନିବର୍ତ୍ତାଇ
କେତେ କେତେ ଲୋକ ଆସିଲେକ ପରିଘାଇ ।
ଏବେ ସେହୁ ପୁଣି କଳି ଆରମ୍ଭିଛି ଆସି
ସର୍ବ ଶୁଭେ ଥାନ୍ତୁ ଏକା ନାରଦ ମହର୍ଷି ।
ଈଶ୍ୱର କହନ୍ତେ ଇନ୍ଦ୍ରଦେବତା ହସିଲେ
ଖଣ୍ଡେ ଦୂରେ ଥାଇ ତାହା ନାରଦ ଶୁଣିଲେ ।
ବୋଇଲେ ଆମ୍ଭଙ୍କୁ ନିନ୍ଦା କଲେ ବିଶ୍ୱନାଥ
ଆମ୍ଭର ଯେ କିସ ଦୋଷ ହୋଇଲାକ ଏଥ ।
ଦେଖିଲା କଥାକୁ ସିନା କହୁ ଆମ୍ଭେ ଆସି
ଏଥିର ନିମନ୍ତେ ନିନ୍ଦାକଲେ ବିଶ୍ୱବାସୀ ।
ଶିବ ମୁଖୁଁ ଏହାଶୁଣି ନାରଦ ଉଠିଲେ
ମନଦଣ୍ଡ ଚଢ଼ି କୃଷ୍ଣ ଛାମୁରେ ମିଳିଲେ ।
ନାରଦ ମୁନିଙ୍କୁ ଦେଖି ଦେବ ନାରାୟଣ
ବୋଇଲେ ଅଇଲ କିସ ଦେଖି ମହାଶୂନ୍ୟ ।
ନାରଦ ବୋଇଲେ ଇନ୍ଦ୍ର ଯୁଝିବ ତୋ ତୁଳେ
ଈଶ୍ୱର ବୋଇଲେ ଗାଢ଼େ ତାହାର ଆଗରେ ।
ଈଶ୍ୱର କହନ୍ତେ ଆମ୍ଭେ ଖଙ୍ଗ ଯେ ପାଇଲୁ
ତୁମ୍ଭଙ୍କୁ କହିବା ପାଇଁ ଏଥକୁ ଅଇଲୁ ।
ନୀଳେନ୍ଦ୍ରି ହରଣର ଯେ ଯେତେକ ଚରିତ
ତାହା ସୁମରିଣ କୋପ କଲେ ଶୂଳହସ୍ତ ।
ନାରଦଙ୍କଠାରୁ ହରି ସମସ୍ତ ଶୁଣିଲେ
କ୍ରୋଧଭର ହୋଇ ଦେବ ବଚନ କହିଲେ ।
ସଦାଶିବଙ୍କ ବୁଝିବା ଆଜ ବଡ଼ପଣ
କେଡ଼େ ଗାଢ଼ରେ କରିବେ ଆମ୍ଭ ସଙ୍ଗେ ରଣ ।
ଏତେକ ବିଚାରି ତହୁଁ ଦେବ ନାରାୟଣ
କହନ୍ତି ଗୁପତେ ଦେବ ଅକ୍ରୂରେ ଡାକିଣ ।
ବାରୁଣାବନ୍ତକୁ ତୁମ୍ଭେ ଏହିକ୍ଷଣି ଯିବ
ଯୁଧିଷ୍ଠିର ଠାକୁରଙ୍କୁ ବାରତା କହିବ ।
ସାତ ଅକ୍ଷୌହିଣୀ ବଳଘେନି ପାଞ୍ଚଭାଇ
ଆଣିବେ ଅର୍ଜୁନେ ମଧ୍ୟ କହିବୁ ବୁଝାଇ ।
ବଳରାମ ବୋଇଲେ ତୁ ଯିବୁ ହସ୍ତିନାକୁ
କହିବୁ ଯାଇଁ ଏକଥା ମାନଗୋବିନ୍ଦକୁ ।
ନାରାୟଣ ଆଜ୍ଞାଘେନି ମନ୍ତ୍ରୀବର ପୁଣ
ଚଳିଲା ବାରୁଣାବନ୍ତେ ସେହୁ ତତକ୍ଷଣ ।
ବାରୁଣାବନ୍ତରେ ସେହୁ ପ୍ରବେଶିଲା ଯାଇଁ
ଆସ୍ଥାନେ ବସିଅଛନ୍ତି ଧର୍ମ ନରସାଇଁ ।

ଏହି ସମୟରେ ଯାଇ ଅକ୍ରୂର ମିଳିଲା
ଯୁଧିଷ୍ଠିଙ୍କୁ ଦେଖି ଶିରେ କର ନିବେଶିଲା ।
ଭୀମ ଅର୍ଜ୍ଜୁନକୁ ସେହୁ ଆଲିଙ୍ଗନ କଲେ
ନମିଲେ ନକୁଳ ସହଦେବ ତା ପୟରେ ।
ଯୁଧିଷ୍ଠି ଡାକିଲେ ଆସ ଆସ ହେ ଅକ୍ରୂର
ପରମ ଭାଗ୍ୟ ଯେ ଆଜ ହୋଇଲା ଆମ୍ଭର ।
ମୋତେ ସଙ୍ଖୋ କିଳି ତୁମ୍ଭେ ଆସିଅଛ ହାଦେ
ଆବର କି ପଠିଆଇଛନ୍ତି ଦେବରାଜେ ।
ଅକ୍ରୂର କହଇ ଦେବ ସାବଧାନେ ଶୁଣ
ମୋତେ ପଠାଇଣ ଦେଲେ ଦେବ ନାରାୟଣ ।
ଇନ୍ଦ୍ର ଗୋବିନ୍ଦଙ୍କର ସେ ହୋଇବ ସମର
ଏଥିପାଇଁକି ପେଷିଲେ ମୋତେ ଦାମୋଦର ।
ଯୁଧିଷ୍ଠି ବୋଇଲେ ଇନ୍ଦ୍ର ଗୋବିନ୍ଦେ କି ଗୋଳ
ଏକଥା ସଂକ୍ଷେପି ମୋତେ କହ ତୁ ଅକ୍ରୂର ।
ଅକ୍ରୂର ବୋଇଲା ରାୟେ ଶୁଣ ସାବଧାନେ
ନନ୍ଦନ ବନକୁ ଗଲା କୃଷ୍ଣର ନନ୍ଦନେ ।
କନକଚମ୍ପା ପୁଷ୍ପ ଯେ ଆଣିବାର ବେଳେ
କନ୍ୟା ଗୋଟିଏ ମିଳିଲା ଆସି ସେହିଠାରେ ।
ଶୂରସେନ ଗନ୍ଧର୍ବର ଅଟଇ ଦୁହିତୀ
ଅତ୍ୟନ୍ତ ସୁନ୍ଦରୀ ନାମ ତାର ଶୋଭାବତୀ ।
ସେ କନ୍ୟା ମାଳା ଦେଇଣ କୁମର ବରିଲା
ତାହାର ରୂପକୁ ଦେଖି ଶାମ୍ବ ବଶହେଲା ।
ଦୁଇଜଣଙ୍କର ମନ ଏକ ହେଲା ଯହିଁ
କନ୍ୟାକୁ ରଥେ ବସାଇ ଆସିଲାକ ସେହି ।
ବାରତା ପାଇ ଗନ୍ଧର୍ବେ ଆସି ଓଗାଳିଲେ
ଯୁଦ୍ଧକରି କୁମରକୁ ଧରି ଘେନିଗଲେ ।
ବନ୍ଦୀ ପରକାରେ ତାକୁ ଅଛନ୍ତି ରଖାଇ
ବାରତା ପାଇଣ କୋପ କଲେ ଭାବଗ୍ରାହୀ ।
ନାରଦ ମୁନି ଆସିଣ ବାରତା କହିଲେ
ଥାଟ ସୈନ୍ୟ ଘେନି ଉଗ୍ରସେନ ବାହାରିଲେ ।
ବଳରାମ ହରିପୁତ୍ର ସମସ୍ତଙ୍କୁ ଘେନି
ଯୁଦ୍ଧ କରିବାକୁ ଚଳିଗଲେ ଭାଇବେନି ।
ସମସ୍ତ ସଜ ହୋଇଣ ବାହାର ଯେ ହୋଇ
ଆଗ ଥାଟେ ଉଗ୍ରସେନ ରାଜନ ଚଳଇ ।
ପଛ ପଟୁଆରେ ଛନ୍ତି ଦେବ ଦାମୋଦର
ବାରତା ପାଇଣ ତେଣେ ଆସେ ବଜ୍ରସାର ।
ମୋତେ ହକାରି ବୋଇଲେ ଦେବ ନାରାୟଣ
ବେଗେ ଘେନିଆସ ପଣ୍ଡୁ ପୁତ୍ରକୁ ସଙ୍ଗେଣ ।
ସାତକ୍ଷୌଣୀ ବଳ ଘେନି ଆସୁ ବେଗହୋଇ
ଆବର ଆସନ୍ତୁ ଦୁର୍ଯ୍ୟୋଧନ ଶତେଭାଇ ।
ବେଗେ ସଜ ହୁଅ ଦେବ ଯିବାକୁ ବହନ
ଘୋର ସଂଗ୍ରାମ ତେଣେ ଯେ ହୋଇବଣି ପୁଣ ।
ଏହାଶୁଣି ଯୁଧିଷ୍ଠିର ଡଗରକୁ ରାଇ
ବୋଇଲେ ହସ୍ତିନାପୁର ଯାଅ ବେଗହୋଇ ।
ବଳରାମ ଠାକୁରଙ୍କୁ କହିବ ସନ୍ଦେଶ
ଏଗାର କ୍ଷଉଣୀ ବଳ ବେଗେ ଘେନିଆସ ।
ତକ୍ଷଣେ ହସ୍ତିନାପୁରେ ଡଗର ମିଳିଲା
ବଳରାମଙ୍କ ଆଦେଶ ବୋଲିଣ କହିଲା ।
ଏଗାର କ୍ଷଉଣୀ ଥାଟ ସଙ୍ଗତରେ ଘେନି
ବହନ ଆସିବା କହିଛନ୍ତି ହଳପାଣି ।
ଶୁଣି ଦୁର୍ଯ୍ୟୋଧନ ମନେ ଆନନ୍ଦ ହୋଇଲା
ଆଗହୁଁ ବାରତା ଯହୁଁ ପାଇଣ ସେ ଥିଲା ।
ଡଗର ମୁଖରୁ ରାଜା ସମସ୍ତ ଶୁଣିଲେ
ଏଗାର କ୍ଷଉଣୀ ବଳ ତକ୍ଷଣେ ସାଜିଲେ ।
ବାଜେ ଟମକ ନିଶାଣ ପୁଣି ବୀରତୂର
ବାଜଇ ଶଙ୍ଖ ମହୁରୀ ପୁଣି ଧୀର ଧୀର ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିଶ୍ରବାର ସହିତେ
ଜୟଦ୍ରଥ ଶକୁନି ଯେ ସାଜିଲେ ତୁରିତେ ।
ଜୟଶଙ୍ଖ ବଜାଇଣ ହୋଇଲେ ବାହାର
ସୈନ୍ୟ ଚାଲନ୍ତେ ପୃଥିବୀ ହେଲା ଦୁଲଦୁଲ ।
ସାତକ୍ଷୌଣୀ ବଳ ଘେନି ପଣ୍ଡୁର କୁମର
ବୀରତୁର ବଜାଇଣ ହୋଇଲେ ବାହାର ।
ଉଦଣ୍ଡ ଯେ ପାଟଛତ୍ର ଉଡ଼େ ଫରଫର
ମୁଖରାବ ଶବଦରେ କମ୍ପେ ବନ ଘୋର ।
ଜୟ ମଙ୍ଗଳ ଉଚ୍ଚାରି ବାହାର ହୋଇଲେ
ଯେ ଯାହା ମନ ଇଚ୍ଛାରେ ସଇନ୍ୟ ଧାଇଁଲେ ।
ବେଗ ବେଗ କରି ରଥ ଚଳାଇଣ ଯାଇ
ବାଟରେ ଭେଟିଲେ ସେହି କମଳାର ସାଇଁ ।
ଯୁଧିଷ୍ଠିରଙ୍କୁ ଦେଖିଣ ଦେବ ନାରାୟଣ
ନମସ୍କାର କଲେ ଆସି ତାହାଙ୍କ ଚରଣ ।
ଭୀମ ଅର୍ଜ୍ଜୁନ ପ୍ରମୁଖ ସେହି ଚାରିଭାଇ
ଗୋବିନ୍ଦ ଚରଣେ ନମସ୍କାର କଲେ ଯାଇ ।
ଯୁଧିଷ୍ଠି ଦେବ ବୋଇଲେ କିସ ଏ ଚରିତ
କମ୍ପା ଏତେ ଦ୍ୱନ୍ଦ୍ୱ ଅରଜିଲେ ପୁରୁହୁତ ।
ଦୁର୍ଯ୍ୟୋଧନ ବଳରାମ ଛାମୁରେ ମିଳଇ
ବଳରାମ କହନ୍ତି ଯେ ଶୁଣ କୁରୁସାଇଁ ।
ଶୁଣି ଅଛଟି କି ଇନ୍ଦ୍ରଦେବଙ୍କ ଚରିତ
ଅନୁବ୍ରତେ ଦ୍ୱନ୍ଦ୍ୱକଲେ ମୋହର ସଙ୍ଗତେ ।
ଆଜ ତାର ବଂଶେ ମୁହିଁ ନ ଥୋଇବି କାହିଁ
ଦେବ ଦାନବେ ରଖନ୍ତା ତାକୁ କେହି ନାହିଁ ।

ଦୁର୍ଯ୍ୟୋଧନ ଶୁଣି କୋପ ଅତିଶୟ କଲା
ଗଦା ବୁଲାଇଣ ସେହି ଚମକି ଉଠିଲା ।
ଯୁଧିଷ୍ଠିର ନାରାୟଣ କରନ୍ତି ବିଚାର
ଆକାଶରେ ଦୁନ୍ଦୁଭି ଯେ ବାଜେ ନିରନ୍ତର ।
ମାର ମାର ଶବଦରେ ମେରୁ ଚମକଇ
ଯେ ଯାହାର ଶସ୍ତ୍ରକରେ ଘେନିଣ ଧାମଇଁ ।
ସମସ୍ତଙ୍କ ଆଗଥାଟେ ଯଦୁବଳ ଥିଲେ
ଉଚ୍ଚବାଚ ହୋଇ କଳି ସେଠାବରେ କଲେ ।
ଯେ ଯାହାର ଶସ୍ତ୍ରେ ପୁଣି ହେଲେ ମରାମରି
ଅଙ୍ଗେ ନ ବାଜୁଣ୍ଡ କେହି ଆଗୁହୁଁ ନିବାରି ।
ତୀକ୍ଷ୍ଣ ଭାଲ ଶକତି ଯେ ନିଠାଇ ମାରନ୍ତି
ଶସ୍ତ୍ରେ ଶସ୍ତ୍ର ବାଜି କରି ଅଗ୍ନି ଝଲକନ୍ତି ।
ଦେବ ଦାନବ ଯେ ତହିଁ ଏକମୁଖ ହୋଇ
ଘୋର ତର ସମର ଯେ କରିଲେ ନିଠାଇ ।
ଦେବତାର ଶସ୍ତ୍ର ବାଜି ଯାଦବଙ୍କଠାରେ
ସମସ୍ତଙ୍କ ଅଙ୍ଗୁରକ୍ତ ଅବିରତ ଝରେ ।
ରକତେ କର୍ଦ୍ଦମ ତହିଁ ହେଲା ମହୀଆଳି
କୁଡ଼ କୁଡ଼ ହୋଇ ଯଦୁବଳ ଗଲେ ଢଳି ।
ତାହା ଦେଖିକରି ଉଗ୍ରସେନ କୋପ କଲେ
ଉଦବେଗେ ରଥ ସେହୁ ଚଳାଇ ଧାଇଁଲେ ।
ଉଗ୍ରସେନ ଧାଇଁବାର ଦେଖି ଚିତ୍ରସେନ
ଆସି କରି ଉଗାଳିଲେ ତାହାକୁ ବହନ ।
ଚିତ୍ରସେନ ସଙ୍ଗେ ବହୁତର ସୈନ୍ୟ ଥିଲେ
ଅନେକ ନାରାଚ ଉଗ୍ରସେନକୁ ବିନ୍ଧିଲେ ।
ଅଙ୍ଗରେ ବାଜନ୍ତେ ରାଜା ବଡ଼ କୋପ କଲା
ମନ୍ତ୍ରିଣ ନାରାଚ ସେହୁ ଅନେକ ବିନ୍ଧିଲା ।
ଦେବଗଣ ଅଙ୍ଗେ ଅସ୍ତ୍ର ବାଜିଲାକ ଯାଇ
କୁଡ଼ କୁଡ଼ ହୋଇ ଦେବେ ପଡ଼ିଲେକ ଶୋଇ ।
ଏହିରୂପେ ପ୍ରହରେକ ହୋଇଲା ସମର
ରକତର ନଦୀଗୋଟି ବହିଲା ସେଠାର ।
ଚିତ୍ରସେନ ବେଗେ ବେଗେ ନାରାଚ ପେଶଇ
ଉଗ୍ରସେନ ରାଜା ତାହା ସତ୍ୱରେ ଛେଦଇ ।
ଚିତ୍ରସେନ ଧାଇଁବାର ଦେଖି ଉଗ୍ରସେନ
ଧାଇଁଆସି ଆଗେ ଉଗାଳନ୍ତି ଯେ ବହନ ।
ଚିତ୍ରସେନ ଉଗ୍ରସେନ ବହୁ ଯୁଦ୍ଧ କଲେ
କେହି କାହାରିକୁ ତହିଁ ଜିଣି ନ ପାରିଲେ ।
କୋପେଣ ପେଶିଲେ ତୀକ୍ଷ୍ଣ ଭାଲ ଉଗ୍ରସେନ
ଚିତ୍ରସେନ ଅଙ୍ଗେ ତାହା ବାଜିଲା ତକ୍ଷଣ ।
ନାରାଚ ପଡ଼ନ୍ତେ ଚିତ୍ରସେନ ଘୁମାଇଲା
ମୋହଗତ ହୋଇ ଭୂମି ଉପରେ ପଡ଼ିଲା ।

ଚିତ୍ରସେନ ପଡ଼ିବାର ଦେଖି ଉଗ୍ରସେନ
କୋପେଣ ନାରାଚ ସେହି ବିନ୍ଧିଲା ବହନ ।
ଅଗ୍ନିର କଣିକା ପ୍ରାୟ ପଡ଼ିଲା ଯେ ଶର
ପ୍ରଳୟର ଅଗ୍ନି କିବା ଜଳର ଶରୀର ।
ସୁରସେନ ଅନେକ ସେ ନାରାଚ ବିନ୍ଧିଲା
ଉଗ୍ରସେନ ଦେହେ ବାଜି ରକତ ବହିଲା ।
ଦେଖି ଉଗ୍ରସେନ ବଡ଼ ହୋଇଲା କୁପିତ
କ୍ରୋଧଭରେ ଏକ ଗୋଟି ଧଇଲା ସେ କୁନ୍ତ ।
ସୁରସେନ ଉପରକୁ ନିଠାଇ ବିନ୍ଧିଲା
ସେ ଆଘାତେ ସୁରସେନ ମୋହରେ ପଡ଼ିଲା ।
ସୁରସେନ ଏହିରୂପେ ରଣେ ପଡ଼ିବାର
ଦେଖିଲା ତା ସହଚର ପନ୍ନଗ ଅଙ୍ଗାର ।
ଉଗ୍ରସେନ ରାଜାଙ୍କୁ ସେ ବେଢ଼ିଲାକ ଖରେ
ଅନେକ ନାରାଚମାନ ବିନ୍ଧେ କୋପଭରେ ।
ଉଗ୍ରସେନ ରାଜା ଅଙ୍ଗେ ବାଜିଲା ନାରାଚ
ଛେଦି ନ ପାରିଲେ ତାହା ଉଗ୍ରସେନ ରାଜ ।
ହତଜ୍ଞାନ ହୋଇଣ ସେ ପଡ଼େ ମହାରାୟେ
ଶରୀରେ ଚେତନା ନାହିଁ ପଡ଼ିଲେକ ମୋହେ ।
ଉଗ୍ରସେନ ମାରି କରି ଅଙ୍ଗାର ପନ୍ନଗ
ମନରେ ହୋଇଲେ ତହିଁ ବଡ଼ ବଇରାଗ ।
ବୋଲଇ ସେ ମାନବଙ୍କ ଏଡ଼େକ ଭରସା
ଦେବତାଙ୍କ ସଙ୍ଗେ ଯୁଝିବାକୁ ସେ ମନୀଷା ।
ଏତେକ ବିଚାରି କୋପେ ହୋଇ ଥରହର
ରଥ ଚମକାଇ ଚାଲଇ ସେ ଧୀର ଧୀର ।
ଛାମୁରେ ପଡ଼ିଲେ ତାଙ୍କ ଯେତେ ସୈନ୍ୟବଳ
ପଦାକଲେ ସେହି ମାରି ତହିଁ ତା ସକଳ ।
ଉଦ୍ଧବ ଅକ୍ରୂର ଆଉ ସାତ୍ୟକି ସହିତେ
ଘୋର ତର ଯୁଦ୍ଧକରି ପଡ଼ିଲେ ସମସ୍ତେ ।
ଏହାଙ୍କର ଗତି ଦେଖି ପ୍ରଭୁ ବଳରାମ
କ୍ରୋଧଭରେ ମୁଖ ସେହୁ କଲେ ତମ ତମ ।
ହଳ ଲଙ୍ଗଳକୁ ସେହୁ ଧରି ବାମକରେ
କୌମୋଦକୀ ଗଦାବର ଧରି ଡାହାଣରେ ।
କୋପେ ବଳରାମ ତାହା ଧଇଲେକ ବେଗେ
ଅଙ୍ଗାର ପନ୍ନଗକୁ ସେ ଓଗାଳିଲେ ଆଗେ ।
ଦୁହେଁ ମହାକ୍ଷତ୍ରୀଯୁଦ୍ଧେ ନୁହନ୍ତି ଯେ ନୀଚ
ଅନେକ ଶସ୍ତ୍ର ମାଇଲେ ଇନ୍ଦ୍ରରାଜା ବସ୍ତ ।
ଲଙ୍ଗଳ ପାତିଣ ବଳରାମ ସମ୍ଭାଳିଲେ
କୌମୋଦକୀ ଗଦା ତାହା ଉପରେ ପିଟିଲେ ।
ଗଦା ପଡ଼ନ୍ତେଣ ଇନ୍ଦ୍ର ବସ୍ତ ଘୁମାଇଲା
ରଥର ଉପରୁ ସେହି ଭୂତଳେ ପଡ଼ିଲା ।

ସାରଥି ଯେ ନେଇ ତାକୁ ରଥରେ ବସାଇ
ପଛକୁ ଲେଉଟାଇ ସେ ରଥକୁ ବାହଇ ।
ଅଙ୍ଗାର ପନ୍ନଗ ଦଶା ଦେଖି ସେ ଗନ୍ଧର୍ବେ
ଓଗାଳିଲେ ବଳରାମ ସକଳ ସମ୍ଭର୍ବେ ।
ମହାଘୋର ଯୁଦ୍ଧ ସେହିଠାରେ ଯେ ହୋଇଲା
ରକତର ନଦୀ ଗୋଟା ସେଠାରେ ବହିଲା ।
ବଳରାମ କୋପଭରେ ହୋଇ ଥରହର
ଲଙ୍ଗଳ ବୁଲାଇ ପିଟେ ଗନ୍ଧର୍ବ ଉପର ।
ସେ ଲଙ୍ଗଳ ବାଜନ୍ତେ ସେ ଗନ୍ଧର୍ବେ ପଡ଼ିଲେ
ଯଦୁବଂଶ ବହୁ ସୈନ୍ୟ କ୍ଷୟ ହୋଇଥିଲେ ।
ମଡ଼ାର ଉପରେ ମଡ଼ା କୁଢ଼ କୁଢ଼ ହୋଇ
ଯେତେ ଯେତେ ପଡ଼ିଗଲେ କଳନା ନ ଯାଇ ।
ଯଦୁବଂଶ ବଳ ସଙ୍ଗେ ଯେତେ ଆସିଥିଲେ
ଗନ୍ଧର୍ବଙ୍କ ହସ୍ତେ ସର୍ବ ବିନାଶ ହୋଇଲେ ।
ବଳରାମ ତହୁଁ ଘୋର ଯୁଦ୍ଧ ଆରମ୍ଭିଲେ
ଅନେକ ଗନ୍ଧର୍ବ ବଳ ବିନାଶ ସେ କଲେ ।
ଗନ୍ଧର୍ବଙ୍କ ମୃତ୍ୟୁ ଦେଖିକରି ଶଚୀପତି
ଐରାବତ ଗଜେ ଚଢ଼ି ଅଇଲେ ତଡ଼ତି ।
ବଳରାମ ଛାମୁରେ ସେ ପଡ଼ିଲାକ ଭେଟ
ଏକକୁ ଆରେକ ତହିଁ ହୋଇଲେ ମୁରାଟ ।
ଉଚ୍ଚବାଟ ହୋଇ ଦୁହେଁ କଳି ଆରମ୍ଭିଲେ
ରଥପରେ ବଳରାମ ଆୟୁଧ ଥୋଇଲେ ।
ଧନୁ କମାଣ୍ଡକୁ ନିଜ ହସ୍ତରେ ଧଇଲେ
ବହୁତର ନାରାଚ ସେ ମନ୍ତ୍ରିଣ ବିନ୍ଧିଲେ ।
ସେ ଇନ୍ଦ୍ରର ଅଙ୍ଗେ ଯାଇ ପଡ଼ିଲା ନାରାଚ
କୋପଭରେ ତନୁ କମ୍ପାଇଲା ସୁରରାଜ ।
ପଞ୍ଚାବନ ନାରାଚ ଯେ ଗୁଣରେ ବସାଇ
ବଳରାମ ଉପରକୁ ବିନ୍ଧେ କୋପବହି ।
ବାୟୁବେଗେ ନାରାଚ ଯେ ତହୁଁ ଚଳିଗଲା
ବଳରାମ ଅଙ୍ଗଦେଶେ ଯାଇ ସେ ପଡ଼ିଲା ।
ମେରୁପୃଷ୍ଠୁ ଯେଉଁପରି ଗଙ୍ଗା ବହିଯାନ୍ତି
ରକ୍ତନଦୀ ସେହିଠାରେ ହେଲା ସେହିମତି ।
ରାମସଙ୍ଗେ ଯହୁଁ ଇନ୍ଦ୍ର କଲେକ ସମର
ଖଣ୍ଡେଦୂରୁ ଦେଖିଲେ ତା କୃଷ୍ଣଙ୍କ କୁମର ।
ଯେ ଯାହାର ବାହନ ସେ ଚଢ଼ିଣ ଧାଇଁଲେ
ଶତେପୁର କରି ଇନ୍ଦ୍ର ଦେବଙ୍କୁ ବେଢ଼ିଲେ ।
ପୂର୍ଣ୍ଣିମା ଚନ୍ଦ୍ରକୁ ଯେହ୍ନେ ଘୋଟିଯାଏ ରାହୁ
ତେସନ ପ୍ରକାରେ ପୁଣି ଘୋଟିଲେକ ସେହୁ ।
ଏମନ୍ତ ଅପାର ବେଳ ହୋଇଲା ସମର
ବାଣବୃଷ୍ଟି ହୁଏ ଯଥା ଶ୍ରାବଣର ଧାର ।

ଇନ୍ଦ୍ରରାୟେ କୋପେ ଯେତେ ନାରାଚ ବିନ୍ଧିଲେ
ଶ୍ରୀକୃଷ୍ଣ କୁମରେ ତାହା ଦୂରୁ ନିବାରିଲେ ।
ଶ୍ରୀକୃଷ୍ଣ କୁମରେ ଯେଉଁ ନାରାଚ ବିନ୍ଧନ୍ତି
ସୁରରାଜ ପ୍ରତିଶରେ ଘଉଡ଼ାଇ ଦ୍ୟନ୍ତି ।
ଏମନ୍ତେ ଅନେକ ଘୋର ସଂଗ୍ରାମ ଯେ କଲେ
କୃଷ୍ଣ କୁମରକୁ ଇନ୍ଦ୍ର ଜିଣି ନ ପାରିଲେ ।
ଗନ୍ଧର୍ବଙ୍କ ସଙ୍ଗେ ବଳରାମଙ୍କ କୁମର
ତାହାଙ୍କର ପଛେ ଯୁଝେ ଗାନ୍ଧାରୀ କୁମର ।
ଊନଶତ ଭାଇଙ୍କୁ ସେ ସଙ୍ଗତରେ ଘେନି
ମାନଗୋବିନ୍ଦ ଯେ ଯୁଝୁଥାନ୍ତି ପରିମାଣି ।
ଏଗାର କ୍ଷଉଣୀ ବଳ ଅଛି ସଙ୍ଗତର
ବେଳୁବେଳ ଅନେକ ଯେ ହୋଇଲା ସମର ।
କୃଷ୍ଣର କୁମରେ ତହିଁ ଯେତେ ଯୁଝୁଥିଲେ
ଇନ୍ଦ୍ରଙ୍କର ଶରାଘାତେ ସର୍ବେ ନାଶଗଲେ ।
କୁଢ଼ କୁଢ଼ ହୋଇ ସେହୁ ପଡ଼ିଲେ ଭୂମିର
ଦେବ ମାନବେ ଯେ ତାହା ଅତି ଅଗୋଚର ।
ଶ୍ରୀକୃଷ୍ଣର କୁମରକୁ ମାରି ସସ୍ରଯୋନି
ବଳରାମ ସନ୍ନିଧିରେ ମିଳିଲେ ସେ ପୁଣି ।
ଐରାବତ ହସ୍ତୀକି ଯେ ଚମକାଇ ଦେଇ
ଦେଖିଲେ ମାନଗୋବିନ୍ଦ ଯୁଝେ ପରିଘାଇ ।
ବଳରାମଙ୍କର ସାହା ବଳ ସଙ୍ଗେ ଘେନି
ଗନ୍ଧର୍ବଙ୍କ ବଳଘେନି ଯୁଜେ ପରିମାଣି ।
ଐରାବତେ ଥାଇ ଚାହିଁଦେଲେ ସୁରପତି
ଦେଖିଲେ ସେ ମାନଗୋବିନ୍ଦର ଦୁଷ୍ଟମତି ।
ବୋଇଲେରେ ମାନବା ତୁ ଅନ୍ଧରାଜ ସୁତ
ଗୋଳକୁଣ୍ଡା ଅଟ ତୁମ୍ଭେ ପୁଣି ଜାରଜାତ ।
ମଞ୍ଚର ମାନବ ତୁହି ଯୁଝୁ ଆମ୍ଭ ତୁଲେ
ବଜ୍ରମାରି ଶିର ଛେଦିବଇଁ ଆଜ ଭଲେ ।
ଏତେ ବୋଲି ଐରାବତ ଚଳାଇଣ ଦେଲେ
ମାନଗୋବିନ୍ଦ ଉପରେ ବଜ୍ର ପ୍ରହାରିଲେ ।
ବଜ୍ର ପଡ଼ନ୍ତେଣ ଦୁର୍ଯ୍ୟୋଧନ ଘୁମାଇଲା
ମୋହଯାଇ ଭୂମିଗତେ ଢଳିଣ ପଡ଼ିଲା ।
ମାନଗୋବିନ୍ଦ ପଡ଼ିବା ଦେଖି ତାର ଭାଇ
ଶସ୍ତ୍ର ଧରି ଇନ୍ଦ୍ରକୁ ସେ ବେଢ଼ିଲେକ ଯାଇ ।
ତୁହାଇଣ ବାଣ ସେ ବିନ୍ଧନ୍ତି କୋପଭରେ
ଊନଶତଙ୍କର ଶରପଡ଼େ ଇନ୍ଦ୍ରପରେ ।
ଶର ପଡ଼ନ୍ତେଣ ଇନ୍ଦ୍ରଦେବ କୋପ କଲେ
ଏକଶତ ବଜ୍ର ଏକାବେଳେ ପ୍ରହାରିଲେ ।
ବଜ ପଡ଼ନ୍ତେଣ ଧୃତରାଷ୍ଟ୍ରର ତନୟେ
ଭୂମିରେ ଶୋଇଲେ ସର୍ବେ ପଡ଼ିଣ ଯେ ମୋହେ ।

ଊନଶତ ଭାଇସହ ଦୁର୍ଯ୍ୟୋଧନ ମଲା
ତାହା ଦେଖି ବଳରାମ ଶରୀର କମ୍ପିଲା ।
ହଳ ମୂଷଳ ବୁଲାଇ କୋପେ ହଳପାଣି
ବୋଇଲେ ତୁ ଶକ୍ର ପ୍ରାଣ ହାରିବୁ ଏକ୍ଷଣି ।
କୋପରେ ସେ ମୂଷଳକୁ ପ୍ରହାରିଲେ ଯହୁଁ
ଶକ୍ରରାୟ ଅଙ୍ଗରେ ତା ବାଜିଲାକ ତହୁଁ ।
ଐରାବତ ପରେ ଘୁମାଇଲେ ସୁରପତି
ମୋହଯାଇ ଇନ୍ଦ୍ରଦେବ ପଡ଼ିଲେ ତତ୍‌ପରି ।
ଇନ୍ଦ୍ର ପଡ଼ନ୍ତେଣ ସର୍ବ ଗନ୍ଧର୍ବ ଯେ ଧାଇଁ
ଆବର ଯମ ବରୁଣ କୋପଭର ହୋଇ ।
ସେ ସମସ୍ତେ ଯାଇ ବଳରାମଙ୍କୁ ବେଢ଼ିଲେ
ଅନେକ ଯେ ଘୋରଯୁଦ୍ଧ ସେହିଠାରେ କଲେ ।
ଶୁଣ ଆହେ ମନୁରାଜା ବୋଲନ୍ତି ଅଗସ୍ତି
ଏକମନେ ଶୁଣ ତୁମ୍ଭେ ମଧ୍ୟପର୍ବ ରୀତି ।
ବଳରାମେ ବହୁତର ସୈନ୍ୟ ଯେ ବେଢ଼ିଲେ
ଯେ ଯାହାର ଶସ୍ତ୍ରମାନ ମରାମରି ହେଲେ ।
ବଳରାମ ନ ପାରିଲେ ତାଙ୍କ ଶସ୍ତ୍ର ସହି
କୌମଦିକୀ ଗଦା ତହୁଁ ପ୍ରହାରିଲେ ନେଇ ।
ବଳରାମ ଗଦାଘାତେ ଗନ୍ଧର୍ବେ ପଡ଼ିଲେ
ତାହାଦେଖି ଯମ ଆଉ ବରୁଣ ଧାଇଁଲେ ।
ବଳରାମଙ୍କର ଅଙ୍ଗେ ସେ କୁନ୍ତ ପ୍ରହାରି
ଯମପାଶ ଜଳପାଶ ତାହାଙ୍କୁ ଯେ ମାରି ।
ସେ ପାଶକୁ ଛିଣ୍ଡାଇଲେ ରେବତୀ ରମଣ
ହଳ ମୂଷଳ ଘେନିଣ ମାଇଲେ ଆପଣ ।
କୋପେ ଯମ ଉପରେ ସେ ପ୍ରହାରିଲେ ନେଇ
ହଳ ବାଜନ୍ତେଣ ଯମ ଗଲେ ସେ ଘୁମାଇ ।
ଯମ ପଡ଼ନ୍ତେଣ ଦେଖି ବରୁଣ ଧାଇଁଲା
ବଳରାମ ଉପରେ ଯେ କୁନ୍ତେ ପ୍ରହାରିଲା ।
କୁନ୍ତ ସହିକରି ବଳରାମ ଯେ ଧାଇଁଲେ
ବରୁଣ ପରେ ମୂଷଳ ନେଇ ପ୍ରହାରିଲେ ।
ଖଣ୍ଡେ ଦୂରେ ଥାଇ ତାହା ଈଶ୍ୱର ଦେଖିଲେ
ଏହାଦେଖି ବଳରାମ ମହାକୋପ କଲେ ।
ବୃଷଭ ଧୂଆଇଁ ଧାଇଁଲେ ଯେ ମହେଶ୍ୱର
ସେ ବଳରାମଙ୍କୁ ଆସି ଓଗାଳି ଆଗର ।
ହର ବଳରାମ ଯହୁଁ ହୋଇଲାକ ଭେଟ
ଦୁହେଁ ମହାକ୍ଷତ୍ରୀ ତହିଁ ହୋଇଲେ ମୁରାଟ ।
ଆରେରେ ଗଉଡ଼ ବୋଲି ବଦନ୍ତି ଈଶ୍ୱର
କାଳେ କାଳେ ତୁମ୍ଭେ ପୁଣି ଅଟ ରତି ଚୋର ।
ଲାଜ ସଙ୍କୋଚ ତୁମ୍ଭଙ୍କୁ ଟିକେ ନ ମାଡ଼ଇ
ବଳେ ବଳେ କନ୍ୟାକୁରେ ନିୟ ଯେ ଚୋରାଇ ।
ମଞ୍ଚ ରାଜାଙ୍କର ଝିଅ ମଣିଲା ଏଠାର
ଶୋଭାବତୀ କନ୍ୟା ନେଇ ସରିଲା ବେଭାର ।
ଆଜ ପ୍ରାଣ ଘେନି କିରେ ଯିବ ବେନିଭାଇ
ଆଜ ତୁମ୍ଭଙ୍କୁ ହିଁ ନାଶ କରିବଇଁ ମୁହିଁ ।
ଶଙ୍କରଙ୍କ ମୁଖୁଁ ଏହିପରି ବାକ୍ୟ ଶୁଣି
କୋପକରି ବୋଲନ୍ତି ଯେ ତାଙ୍କୁ ହଳପାଣି ।
ତୁମ୍ଭେ ପରିଘାଉଅଛ ଇନ୍ଦ୍ରର ନିମନ୍ତେ
ନୀଳେନ୍ଦ୍ରି ହରଣ କଥା ଭୁଲି ବିଶ୍ୱନାଥେ ।
ତହିଁରେ ଯେତେକ ତୁମ୍ଭେ ପାଇଅଛ ଶାସ୍ତି
ଏତେ ଶୀଘ୍ର ପାଶୋରିଲ ତାହା ଶୂଳପତି ।
ବଳେ ବଳେ ତୁମ୍ଭେ ଆମ୍ଭ ସଙ୍ଗେ ଖଣ୍ଡୁଆଳି
ଇନ୍ଦ୍ରର ନିମନ୍ତେ ତୁମ୍ଭେ କରୁଅଛ କଳି ।
ଇନ୍ଦ୍ରକୁଟି ଯେବେ ତୁମ୍ଭେ ପାର ଆଜି ରଖି
ତେବେ ସେ ଜାଣିବ ତୁମ୍ଭ ଗାରିମା ଉପେକ୍ଷି ।
ବଳରାମଙ୍କ ମୁଖରୁ ଏସନକ ଶୁଣି
ମହାକୋପେ କମ୍ପନ୍ତି ଯେ ତହୁଁ ଶୂଳପାଣି ।
କ୍ରୋଧଭରେ ମହାଦେବ ହୋଇ ଥରହର
ବୃଷଭ ଉପରେ ଥାଇ ଦିଅନ୍ତି ଉତ୍ତର ।
ବୋଲନ୍ତି ଗଉଡ଼ ତୁମ୍ଭେ ବଡ଼ାଇ ସିଆଣ
ଦୁଧଭାର ବହି ତୁମ୍ଭେ କରୁଥାଅ ଟାଣ ।
ଗୋପପୁରେ ଥାଇ ଯେତେ ଯେତେ କୃତ୍ୟ କଲ
ଗଉରବ ମାନ୍ୟ ଗୋପସ୍ତିରୀଙ୍କୁ ହରିଲ ।
ବେଣୁସ୍ୱନେ ତୋର ଭାଇ ମୋହେ ଗୋପସ୍ତିରୀ
ବଳେ ଗୋପକନ୍ୟା ହରିଲା ଯେ ଚକ୍ରଧାରୀ ।
କ୍ଷଣେ କଚାଡ଼ିଲା ସେହି ପୁତନା ଶୋଷିଲା
ବଳେ ଯାଇ ଭୀଷ୍ମ ରାଜା ଦୁହିତା ହରିଲା ।
ଏକଲକ୍ଷ ରାଜାଙ୍କୁ ଯେ ଦିଆଇଲା ଲାଜ
ବେଳୁବେଳ ଅନ୍ୟାୟ ସେ କରେ ଦେବରାଜ ।
କୃତକେଶୀ ରାଜ୍ୟେ ତୋର ପ୍ରଦ୍ୟୁମ୍ନ ଯେ ଗଲା
ମେଢ଼ରେ ପଶିଣ ତାର ଦୁହିତା ବରିଲା ।
ସୁରେଖା କନ୍ୟାକୁ ବଳେ ଆଣୁଥିଲା ହରି
ତହିଁରେ ଯେ ଶାସ୍ତିଦେଲା ନ ଜାଣୁକି ହରି ।
ବଳେ ତୁମ୍ଭେ ଅନ୍ୟାୟରେ ଚକ୍ରଧର ପଶ
ଏବେ ନିନ୍ଦାକରେ ତୋରେ ଭାଇ ପୀତବାସ ।
ଆବର କଥାଏ ତୋତେ କହେ ଦାମୋଦର
ଏତେକଥା ସବୁ ପାସୋରୁଛ ଯେ ମନର ।
ଅନେକ ପ୍ରକାରେ ଯହୁଁ ଈଶ୍ୱର କହିଲେ
ଶୁଣି ବଳରାମ କୋପେ କରିଣ ଧାଇଁଲେ ।
ବୋଲନ୍ତି ଜଟିଆ ଆରେ କହଇ ତୋ ଆଗେ
ତୋହର ଯେ ଅବିଗୁଣ ପାଶୋରିଲୁ ବେଗେ ।

ବ୍ରହ୍ମହତ୍ୟା କରି ତୁହି ପାଶୋରିଲୁ ତାହା
ଆବର ଗୋହତ୍ୟା ଗୋଟି କରିଥିଲୁ ଯାହା ।
ମାତାକୁ ହରଣ ତୁହି କରିଅଛୁ ହାଦେ
ଅଲଘିତ ପାପ କରିଅଛୁ ସଦାନନ୍ଦେ ।
ଅର୍ଜିଲା କରମ ତୋର ନିଜ ଅଙ୍ଗେ ଥାଇ
ପର ଅବିଗୁଣ ବାଛିବାକୁ ନ ଯୋଗାଇ ।
ଏହୁଁ କହୁଁ ଦୁହେଁ କୋପଭର ଯେ ହୋଇଲେ
ବହୁତର ଅସ୍ତ୍ର ତହିଁ ମରାମରି ହେଲେ ।
ମହାମେରୁ ସେହି ପୃଥିବୀକି ଯେ ଧାରଣ
ପଦାଘାତେ ବସୁନ୍ଧରୀ କମ୍ପଇ ଯେ ପୁଣ ।
ଅନେକ ଘୋର ସଂଗ୍ରାମ ସେହୁ ଆରମ୍ଭିଲେ
କେହି କାହାରିକୁ ସମରରେ ନ ଘୁଞ୍ଚିଲେ ।
ଦୁହିଁଙ୍କର ସମର ଯେ ଅନେକ ହୋଇଲା
ସପ୍ତଦ୍ୱୀପା ପୃଥିବୀ ଯେ ଦଳଦଳ ହେଲା ।
ଅଗସ୍ତି କହନ୍ତି ଆହେ ମନୁରାଜା ଶୁଣ
ଶୋଭାବତୀ ଚରିତଟି ଅଟଇ ଏ ପୁଣ ।
ହର ବଳରାମ ଦୁହେଁ କରୁଛନ୍ତି ରଣ
କୃଷ୍ଣଙ୍କର ତୁଳେ ଯୁଝନ୍ତି ଯେ ଶିବଗଣ ।
ନାରାୟଣ ଚକ୍ରେ ଶିବଗଣ ଯେ ପଡ଼ିଲେ
ଗରୁଡ଼ ଗର୍ଜନ ଭୟେ ଆଉ ନ ଘୁଞ୍ଚିଲେ ।
ପୃଥିବୀ ଦିଶିଲା ତହୁଁ ଅନ୍ଧକାରମୟ
କେବଳ ଯେ ଶସ୍ତ୍ର ଦିଶେ ବିଦ୍ୟୁତର ପ୍ରାୟ ।
ଦେବଗଣ ପଳାଇଲେ ତହୁଁ ତତକ୍ଷଣେ
ନମସ୍କାର କଲେ ଯାଇ ବ୍ରହ୍ମାଙ୍କ ଚରଣେ ।
ସାବଧାନ ହୋଇ ଶୁଣ ଆହେ କୁଶଧର
ସ୍ୱର୍ଗପୁର ନିଶ୍ଚେ ନାଶ ଗଲାଟି ଏଥର ।
ସୁରସେନର ଦୁହିତା ନାମ ଶୋଭାବତୀ
ତାହାର ସକାଶେ ନାଶଗଲା ସୁରପତି ।
କୃଷ୍ଣ କୁମର ଚୋରାଇ ତାକୁ ନେଇଥିଲା
ବାରତା ପାଇଣ ଇନ୍ଦ୍ର ଧରି ଯେ ଆଣିଲା ।
ସେ କଥା ଶୁଣିଣ ରାମକୃଷ୍ଣ ଯେ ଅଇଲେ
ଘୋର ସମର ଆସିଣ ସ୍ୱର୍ଗପୁରେ କଲେ ।
ସାତବଂଶ ଯାଦବ ଯେ ଉଗ୍ରସେନ ସହ
ହତହୋଇ ଇନ୍ଦ୍ର ଶରେ ଗଲେ ଯମାଳୟ ।
ସୈନ୍ୟଙ୍କ ସହିତ କୁଞ୍ଜଗଳ ଦେଶରାୟେ
ଯୁଦ୍ଧକରି ନାଶଗଲେ ଇନ୍ଦ୍ର ଶରଘାଏ ।
ବଳରାମ ଶସ୍ତ୍ରେ ଶଚୀପତି ନାଶ ଗଲେ
ଅନେକ ଗନ୍ଧର୍ବ ଦେବ ସମରେ ପଡ଼ିଲେ ।
ଘୋରତର ସଂଗ୍ରାମ ଯେ କ୍ଷଣେ ନ ରହିଲା
ବହୁତର ଗୋଳ ତହିଁ କହୁଁ ନ ସରିଲା ।

ଶୁଣିକରି ବେଦବର ହୋଇଲେ ଚକିତ
ଏଡ଼େ ଗୋଳ ଅରଜିଲେ କିମ୍ପା ପୁରୁହୁତ ।
ଅବଶ୍ୟ ଝିଅକୁ ବିଭା ସେହୁ ଯେ କରାନ୍ତେ
ଅନର୍ଥ ଅର୍ଜିଲେ କିମ୍ପା ଶାମ୍ବର ନିମନ୍ତେ ।
କି ବୁଦ୍ଧି କରିବା ବୋଲି ବିଚାରନ୍ତି ମନେ
ହରିହରଙ୍କର ଯୁଦ୍ଧ ନ ରହେ ସେ କ୍ଷଣେ ।
ବିସ୍ମୟ ମନରେ ବ୍ରହ୍ମା ଏପରି ଭାଳିଲେ
ମରାଳ ପିଠିରେ ଯାଇ ସେହୁ ବିଜେ କଲେ ।
ଏଥୁ ଅନନ୍ତରେ ଶୁଣ ଆହେ ଦିବ୍ୟରସ
ହରିହର ଯୁଦ୍ଧେ ତହିଁ ହେଲେ ପରବେଶ ।
ହର ବଳରାମ ବହୁତର ଯୁଦ୍ଧ କଲେ
କେହି କାହାକୁ ସମରେ ଜିଣନ୍ତା ନୋହିଲେ ।
ବହୁତର ଶସ୍ତ୍ର ଦୁହେଁ ହେଲେ ମରାମରି
ରୁଧିର ବହନ୍ତେ ଶରାଘାତରେ ପ୍ରଜ୍ୱଳି ।
ଶିବଗଣ ସଙ୍ଗେ ଗୋବିନ୍ଦ ଯେ ଯୁଝୁଥିଲେ
କୃଷ୍ଣ ଶିବଗଣ ଯୁଦ୍ଧ ଅର୍ଜୁନ ଦେଖିଲେ ।
ଯେ ଯାହାର ସୈନ୍ୟ ଘେନି ଶୀଘ୍ର ଯେ ଧାମନ୍ତି
ସାତକ୍ଷୌଣୀ ବଳ ତାର ସଙ୍ଗରେ ଅଛନ୍ତି ।
ଶିବଗଣଙ୍କର ଆଗେ ଉଭାରିଲେ ଯାଇ
ଅର୍ଜୁନ ମୁଖକୁ ଶିବଗଣ ଦେଲେ ଚାହିଁ ।
ସୂର୍ଯ୍ୟର କିରଣ ଲାଗି ଯେହ୍ନେ କୁମୁଦିନୀ
ଅର୍ଜୁନକୁ ଦେଖି ଶିବଗଣ ହେଲେ ତୁନି ।
ଯେତେ ପ୍ରାକର୍ମରେ ସେହୁ ଯୁଦ୍ଧ କରୁଥିଲେ
ଅର୍ଜୁନକୁ ଦେଖି ସର୍ବେ ପଛଘୁଞ୍ଚା ଦେଲେ ।
ଶିବଗଣଙ୍କର ସେହୁ ନ୍ୟୂନଭାବ ଦେଖି
ମନରେ ବିଚାର କଲେ ପାଣ୍ଡବ ଶ୍ରୀବସି ।
ନିସତ ଲୋକଙ୍କୁ କେବେ ମାରି ନ ଯୋଗାଇ
ତାହାଙ୍କୁ ମାଇଲେ ନିଶ୍ଚେ ଅପରାଧ ହୋଇ ।
ପଛଘୁଞ୍ଚା ଦେଲେ ଏହାଙ୍କୁ ଯେ ନ ମାରିବି
ଈଶ୍ୱରଙ୍କ ସଙ୍ଗେ ଯାଇ ଯୁଦ୍ଧ ମୁଁ କରିବି ।
ଈଶ୍ୱରଙ୍କ ପରାକ୍ରମ ଜାଣିବା ଏଠାର
ନୀଳେନ୍ଦ୍ରି ହରଣ ଯୁଦ୍ଧ ପାସୋରିଲେ ହର ।
ଗଣ୍ଡା ମାରିବାର କାଳେ ମୁହିଁ ଯାହା କଲି
ବେକେ ଧନୁହୁଳ ଲଗାଇ ଯେ ବୁଲାଇଲି ।
ଚକ୍ରାକାରେ ବୁଲାଇଲି ମୁହିଁ ସାତଥର
ପ୍ରାଣର ବିକଳେ ମୋତେ ଯାଚିଦେଲେ ବର ।
ବେଳେବେଳେ ମୋହଠାରେ ପାନ୍ତି ଅପଚୟେ
ଜାଣନ୍ତି ସେ କୃଷ୍ଣଭୃତ୍ୟ ପଣ୍ଡୁ ପାଞ୍ଚପୋଏ ।
ଏତେକେ ବିଚାରି କରି ପଣ୍ଡୁର କୁମର
ରଥକୁ ଧୂଆଇଁ ଧାଇଁଗଲେ ତତପର ।

ହଳୀହର ଦୁହେଁ ଯହିଁ ଯୁଦ୍ଧ କରୁଥିଲେ
ତାହାଙ୍କର ସନ୍ନିଧିରେ ଅର୍ଜ୍ଜୁନ ମିଳିଲେ ।
ଦେଖିଲେକ ଘୋର ଯୁଦ୍ଧ ଦୁହେଁ କରୁଛନ୍ତି
କୋପଭରେ ପରାପର ସେହୁ ନ ଜାଣନ୍ତି ।
ବୃଷଭ ଉପରେ ଥାଇ ହର ଯୁଝୁଥିଲେ
ଅର୍ଜ୍ଜୁନର ମୁଖକୁ ସେ ଧୀରେ ଚାହିଁଦେଲେ ।
ଅର୍ଜ୍ଜୁନକୁ ଦେଖି ହର ଚକିତ ହୋଇଲେ
ଅନର୍ଥ ହୋଇବ ବୋଲି ମନରେ ଭାଳିଲେ ।
ମଉନବ୍ରତ ହୋଇଣ ରହିଲେ ଆପଣ
ଈଶ୍ୱରଙ୍କ ନିଉନକୁ ଦେଖି ବଳରାମ ।
ପଛକୁ ଚାହିଁଲେ ରଥ ଧୂଆଁଏ ଅର୍ଜ୍ଜୁନ
ଅର୍ଜ୍ଜୁନକୁ ଦେଖି ଶିବ ଘୁଞ୍ଚିଲେ ବହନ ।
ବଳରାମ ବୋଇଲେ ଯେ ଅର୍ଜ୍ଜୁନକୁ ଦେଖି
ନିଉନ ହୋଇଲେ ପାର୍ଥ ଦେଖି ତ୍ରୟଆଖି ।
କୌମୋଦିକୀ ଗଦା ସେହୁ ଧରିଥିଲେ କରେ
ଈଶ୍ୱରଙ୍କୁ ପିଟିଲେ ସେ ନେଇ କୋପଭରେ ।
ଈଶ୍ୱରଙ୍କୁ ନିଉନ ଯେ ଦେଖିକରି ହଳୀ
ଆପଣେ ସେ ଶାନ୍ତ ହେଲେ କୋପକୁ ସଂହାରି ।
ବଳରାମଙ୍କୁ ଯେ ତହିଁ ଦେଖିଣ ଅର୍ଜ୍ଜୁନ
ରଥରୁ ଉତୁରି ଯାଇଁ ନମିଲେ ଚରଣ ।
କଲ୍ୟାଣ କରିଣ ବଳରାମ ଯେ ଧଇଲେ
ଯୁଦ୍ଧର ଚରିତ ସବୁ ତାହାକୁ କହିଲେ ।
କରଯୋଡ଼ି ଅରଜୁନ ବୋଇଲେ ବଚନ
ସାବଧାନ ଚିତ୍ତେ ଶୁଣ ଆହେ ବଳରାମ ।
କ୍ରୋଧ ଶାନ୍ତକର ତୁମ୍ଭେ ନକର ସମର
ବଡ଼ପଣ ଜାଣିବଟି ବିଶ୍ୱନାଥଙ୍କର ।
ବଳରାମଙ୍କର ଯୁଦ୍ଧ ରୁହାଇ ଅର୍ଜ୍ଜୁନ
ଈଶ୍ୱରଙ୍କ ଛାମୁରେ ସେ ଚଳିଲେ ବହନ ।
ଈଶ୍ୱର ଯେ ଖଣ୍ଡେ ଦୂରେ ଥିଲେ ଉଭାହୋଇ
ଅର୍ଜ୍ଜୁନକୁ ଦେଖି ହାସ୍ୟ କଲେ ଉମାସାଇଁ ।
ବିଶ୍ୱନାଥଙ୍କ ହରଷ ଦେଖି ବୀରପାର୍ଥ
ପାଦଗାମୀ ହୋଇକରି ଚଳଇ ତୁରିତ ।
ବୃଷଭ ପରୁ ଈଶ୍ୱର ଦେବ ଓହ୍ଲାଇଲେ
ଭୂମିଗତେ ଉଭାହୋଇ କରିଣ କହିଲେ ।
ଅର୍ଜ୍ଜୁନ ନମିଲେ ଯାଇ ତାହାଙ୍କ ପୟର
ଭୂମିରେ ପାଏ ପଡ଼ିଣ ଶୁଏ ବୀରବର ।
ଈଶ୍ୱରଙ୍କ ପୟରେ ସେ ନମସ୍କାର କଲେ
କରଯୋଡ଼ି ଅରଜୁନ ଉଭା ଯେ ହୋଇଲେ ।
କର ପ୍ରସାରି ଈଶ୍ୱର କଲ୍ୟାଣ କରନ୍ତି
ଚିରକାଳ ବର୍ତ୍ତ ତୁମ୍ଭେ ପଣ୍ଡୁର ସନ୍ତତି ।

ଅର୍ଜ୍ଜୁନ ଯେ କରଯୋଡ଼ି ବୋଲଇ ଗୋସାଇଁ
ସାବଧାନେ ଶୁଣ ଯାହା କହୁଅଛି ମୁହିଁ ।
ଶାମ୍ବ କୁମର ଯେ କନ୍ୟା ବଳେ ହରିନେଲା
ହରି ବଳରାମ ସଙ୍ଗେ କିମ୍ପା ଦ୍ୱନ୍ଦ୍ୱ ହେଲା ।
ଆପଣେ ଯେ ବିଶ୍ୱନାଥ ଜଗତରନାଥ
ସକଳ ବ୍ରହ୍ମାଣ୍ଡ ଅଛି ତୁମ୍ଭ ଗର୍ଭଗତ ।
ଶାମ୍ବ କୁମରର ଯେବେ ଧୃଷ୍ଟତା ଦେଖିଲ
ଭଲ ମନ୍ଦ କାହିଁପାଇଁ ତୁମ୍ଭେ ନ ବୁଝିଲ ।
ଅନର୍ଥ କରିବା ପ୍ରଭୁ କେବେ ନ ଯୋଗାଇ
ଆପଣେ ଅନର୍ଥେ ପଶୁଅଛ କାହିଁପାଇଁ ।
ଅର୍ଜ୍ଜୁନ ବଚନେ ତାହା ଈଶ୍ୱର ଶୁଣିଲେ
କ୍ଷଣେ ତୁନିହୋଇ ପୁଣି ବଚନ ଭାଷିଲେ ।
ବୋଲନ୍ତି ଅର୍ଜ୍ଜୁନ ଆହେ ଶୁଣ ମନଦେଇ
ଆମ୍ଭର ଯେ ଅଧିକାରୀ ଅଟେ ସୁରସାଇଁ ।
ତାହା ଉପରୋଧେ ଆମ୍ଭେ ଅଇଲୁ ଏଠାଇଁ
ଇନ୍ଦ୍ରପାଇଁ କୃଷ୍ଣସଙ୍ଗେ ବିପକ୍ଷ ଯେ ହୋଇ ।
ତୋତେ ଦେଖିଣ ସଂଗ୍ରାମେ ଛାଡ଼ିଲୁଟି ଆମ୍ଭେ
ତୁ ଯେବେ ଅଇଲୁ ଭଲ ହୋଇଲାଟି ଏବେ ।
ଶଙ୍କର ଅର୍ଜ୍ଜୁନ ଦୁହେଁ ବିଚାର କଲନ୍ତେ
ସଂଗ୍ରାମକୁ ଛାଡ଼ିକରି ରହିଲେ ସମସ୍ତେ ।
ଶୁଣ ଆହୋ ମନୁରାଜା ବଦନ୍ତି ଅଗସ୍ତି
ମରାଳରେ ଚଢ଼ି ବ୍ରହ୍ମା ଆସିଣ ମିଳନ୍ତି ।
ବ୍ରହ୍ମାଙ୍କୁ ଅର୍ଜ୍ଜୁନ ଦେଖି ଭୂମିରେ ଶୋଇଲେ
ଶିରେ କରଦେଇ ଉଭାହୋଇ ସେ ରହିଲେ ।
ବଳରାମ ସେଠାବରୁ ଖଣ୍ଡେ ଦୂରେ ଥିଲେ
ବ୍ରହ୍ମାଙ୍କର ହସ୍ତ ଠାରିବାରେ ସେ ଅଇଲେ ।
ବ୍ରହ୍ମାଙ୍କୁ ଦେଖିଣ ହଳୀ ଶିରେ କରଦେଇ
ଈଶ୍ୱରଙ୍କୁ ବ୍ରହ୍ମା ତହିଁ ନମସ୍କାର ହୋଇ ।
ତିନିଜଣ ହୋଇଲେଟି ଯହୁଁ ଏକମେଳ
ବିଧାତା ବୋଇଲେ ବୃଥା କିମ୍ପା କର ଗୋଳ ।
ଆସ ଏବେ ଏକସ୍ଥାନେ ହୋଇଣ ବସିବା
କେମନ୍ତ ଚରିତ ଏଥି ଥାଇଣ ବୁଝିବା ।
ହର ବଳରାମ ବ୍ରହ୍ମା ଅର୍ଜ୍ଜୁନ ମିଳିଲେ
ସେ ନନ୍ଦନ ବନକୁ ସେ ସକଳେ ଚଳିଲେ ।
ତୋଟାର ମଧ୍ୟରେ ଯାଇ ସମସ୍ତେ ବସିଲେ
ନନ୍ଦୀର ବଦନକୁ ଯେ ବ୍ରହ୍ମାଏ ଚାହିଁଲେ ।
ବୋଇଲେ ହୋ ନନ୍ଦୀ ତୁହି ଏହିକ୍ଷଣି ଯିବୁ
ନାରାୟଣ ଯୁଧିଷ୍ଠିରେ ଘେନିଣ ଆସିବୁ ।
ଆମ୍ଭର ଏ ଆଜ୍ଞା କହି ବେଗେ ଘେନିଆସ
ସମସ୍ତେ ଥାଇ ବୁଝିବା ଏଥିର ସନ୍ଦେଶ ।

ଆଜ୍ଞା ପରମାଣେ ନନ୍ଦୀ ବେଗେ ଚଳିଗଲା
ଶ୍ରୀକୃଷ୍ଣ ଛାମୁରେ ଯାଇ ପ୍ରବେଶ ହୋଇଲା ।
ନମସ୍କାର କରି ନନ୍ଦୀ କହଇ ବଚନ
ସାବଧାନ ହୋଇ ଶୁଣ ଆହେ ନାରାୟଣ ।
ବ୍ରହ୍ମା ଆଜ୍ଞାଦେଲେ ଯେ ନନ୍ଦନବନ ଯାଏ
ଯୁଧିଷ୍ଠିଙ୍କୁ ଘେନି ତୁମ୍ଭେ କରିବା ବିଜୟେ ।
ଏହାଶୁଣି ବେଗେ ଉଠିଗଲେ ଭଗବାନ
ଯୁଧିଷ୍ଠିଙ୍କୁ ଘେନିକରି ଚଳିଲେ ଆପଣ ।
ନନ୍ଦନବନ ତୋଟାରେ ମିଳିଲେକ ଯାଇ
ଯୁଧିଷ୍ଠିର ନାରାୟଣ ଶିରେ କରଦେଇ ।
ଈଶ୍ୱରଙ୍କୁ ଦେଖି ଦୁହେଁ ନମସ୍କାର କଲେ
କଲ୍ୟାଣ ପାଇଁଣ ଦୁହେଁ ସେଠାରେ ବସିଲେ ।
ବ୍ରହ୍ମା ଯେ ବୋଲନ୍ତି ହରି ବଳରାମେ ଚାହିଁ
ଆପଣା ମଧ୍ୟରେ ଦ୍ୱନ୍ଦ୍ୱ କର ହେ କିମ୍ପାଇଁ ।
କାହିଁପାଇଁ ଏଡ଼େ ବଡ଼ ହୋଇଲା ଅନର୍ଥ
ବିଚାରିଣ ଏହା ମୋତେ କହ ଜଗନ୍ନାଥ ।
ଗୋବିନ୍ଦ ବୋଇଲେ ଏହା ମୁହିଁ ନ ଜାଣଇ
କେ କଳହପ୍ରିୟ ମୁନି ଅଛନ୍ତି ଭିଆଇ ।
କଳିଦ୍ୱନ୍ଦ୍ୱ ସବୁ ଯହୁଁ ହୋଇଲା ନିବର୍ତ୍ତ
ବୀଣା ବଜାଇ ଧାମନ୍ତି ବିଧାତାର ସୁତ ।
ନନ୍ଦନବନ ତୋଟାରେ ମିଳିଲେକ ଯାଇ
ବ୍ରହ୍ମାଙ୍କୁ ଦେଖିଣ ମୁନି ଶିରେ କରଦେଇ ।
ନାରଦଙ୍କୁ ଦେଖିକରି ସମସ୍ତେ ଉଠିଲେ
ଶିରେ କରଦେଇ ସର୍ବେ ନମସ୍କାର କଲେ ।
ନାରଦ ବୋଇଲେ କାହିଁଛନ୍ତି ଇନ୍ଦ୍ରରାୟେ
ତାହାଙ୍କୁ ପଚାର ସେହି ସମସ୍ତ ବୁଝାଏ ।
ଅର୍ଜୁନ ବୋଇଲେ ସେ ତ ଯୁଦ୍ଧେ ପଡ଼ିଛନ୍ତି
ଗନ୍ଧର୍ବ ଦେବତା ଆଦିଙ୍କର ପ୍ରାଣ କ୍ଷତି ।
ନାରଦଙ୍କୁ କହନ୍ତେ ଯେ ବ୍ରହ୍ମାଏ ଶୁଣିଲେ
ଆପଣେ ସେ ସଂଗ୍ରମର ଭୂମିକି ଉଠିଲେ ।
ସଂଗ୍ରାମ ଭୂମିରେ ଯାଇ ସମସ୍ତେ ମିଳନ୍ତି .
କମଣ୍ଡଳୁ ପାଣି ମନ୍ତ୍ରି ବ୍ରହ୍ମା ଯେ ସିଞ୍ଚନ୍ତି ।
ସଂଗ୍ରାମ ଭୂମିରେ ଯେତେ ପ୍ରାଣୀ ପଡ଼ିଥିଲେ
ମନ୍ତ୍ରପାଣି ପଡ଼ନ୍ତେଣ ଜୀଇଣ ଉଠିଲେ ।
ଇନ୍ଦ୍ର ସହିତରେ ସର୍ବେ ଉଠିଲେକ ଜୀଇଁ
ଆଉ ପାଣି ଏକମୁଠା ସିଞ୍ଚି କୁଶସାଇଁ ।
ଦୁର୍ଯ୍ୟୋଧନ ଉଗ୍ରସେନ ସୈନ୍ୟଙ୍କ ସହିତେ
ମନ୍ତ୍ରପାଣି ପଡ଼ନ୍ତେଣ ଉଠିଲେ ସମସ୍ତେ ।
ବ୍ରହ୍ମା ତହୁଁ ବୋଇଲେକ ସର୍ବେ ବେଗେ ଆସ
ନନ୍ଦନ ବନେ ବୁଝିବା ଏଥର ସନ୍ଦେଶ ।

ବ୍ରହ୍ମାଙ୍କ ଆଜ୍ଞାରେ ତହୁଁ ସମସ୍ତେ ଚଳିଲେ
ନନ୍ଦନବନ ତୋଟାରେ ଯାଇଣ ମିଳିଲେ ।
ଜୀବଦାନ ପାଇକରି ଉଠିଲେ ସମସ୍ତେ
ବ୍ରହ୍ମା ପଚାରନ୍ତି ତହୁଁ ଇନ୍ଦ୍ରଙ୍କ ଅଗ୍ରତେ ।
କାହିଁପାଇଁ ତୁମ୍ଭେ ଏଡ଼େ ବଡ଼ ଦ୍ୱନ୍ଦ୍ୱ କଲ
କି ନିମନ୍ତେ ତୁମ୍ଭେ ଏତେ କଳି ଆରମ୍ଭିଲ ।
ଇନ୍ଦ୍ରଦେବ କହନ୍ତି ଯେ ବ୍ରହ୍ମା ମୁଖ ଚାହିଁ
ସାବଧାନ ଚିତ୍ତେ ଶୁଣ ଆହେ କୁରୁସାଇଁ ।
ସୁରସେନ ଦୁହିତା ଯେ ନାମ ଶୋଭାବତୀ
କୃଷ୍ଣର କୁମର ତାକୁ ବଳରେ ହରନ୍ତି ।
ନନ୍ଦନବନେ ପଶିଣ କନ୍ୟା ନେଉଥିଲା
ଉଗାଳି ଧରନ୍ତେ ତାକୁ ମହାଯୁଦ୍ଧ କଲା ।
ଅନେକ ସୈନ୍ୟ ସେ ମୋର ହେଲେ ନାଶ କରି
ତାହା ଦୁଷ୍ଟପଣ ଦେବ ସହି ଯେ ନ ପାରି ।
କାଳେ କାଳେ କୃଷ୍ଣ ପୋଏ ଦୁଷ୍କାମୀ କରନ୍ତି
ବଳାତ୍କାରେ କନ୍ୟାମାନ ଚୋରାଇ ନିଅନ୍ତି ।
ଏବେ ଅମର ମଣ୍ଡଳେ ଆସି ଧାଡ଼ିଦେଲା
ବଳେ ମୋର ନାତୁଣୀ କି ଚୋରି କରୁଥିଲା ।
ସୈନ୍ୟ ପଠିଆଇ ମୁହିଁ ଧରାଇ ଆଣିଲି
ପରିଜନ କରେ ତାକୁ ବନ୍ଧାଇ ରଖିଲି ।
ଏ ବାର୍ତ୍ତା ନାରଦ ଯାଇ ତାହାଙ୍କୁ କହିଲେ
ଶୁଣି ରାମ କୃଷ୍ଣ ପରିଘାଇ ଯେ ଧାଇଁଲେ ।
ସାତବଂଶ ଯାଦବ ଯେ ବେନି ଦୁଇଭାଇ
ଆଠକ୍ଷୌଣଇ ବଳଘେନି ଆସେ କୁରୁସାଇଁ ।
ସାତକ୍ଷୌଣୀ ବଳଘେନି ପଣ୍ଡୁ ପାଞ୍ଚଭାଇ
ଜୟନ୍ତା ନଗରୁ ସେହି ଅଇଲେ ଚଳାଇ ।
ସମସ୍ତଙ୍କୁ ଘେନି ହରି ରାମ ଯେ ଧାଇଁଲେ
ଏଡ଼େ ଦ୍ୱନ୍ଦ୍ୱ ଆସିକରି ଅମରେ ସେ କଲେ ।
ତାହା ଶୁଣି ବେଦବର ଅଳପ ହସନ୍ତି
ଗୋବିନ୍ଦ ବୋଲନ୍ତି ଆହୋ ଶୁଣ ବେଦପତି ।
ଜାଣିବେ କାହାର ଏଥି ଅଟେ ଦୁଷ୍ଟପଣ
ବିଚାରିଣ ଏହା ତୁମ୍ଭେ ବୁଝ ତ ଆପଣ ।
ଯୁଧିଷ୍ଠି ବୋଇଲେ ଆମ୍ଭେ କଥାଏ କହିବା
ଆମ୍ଭ କଥା କୁଶହସ୍ତ ଯେବେଟି ଘେନିବା ।
ସେ କୁମର କୁମାରୀଙ୍କୁ ଏଥେ ଘେନିଆସ
ତାହାଙ୍କୁ ପଚାରି ଆମ୍ଭେ ବୁଝିବା ସନ୍ଦେଶ ।
ବ୍ରହ୍ମାଏ ବୋଇଲେ ଧର୍ମସୁତ ଯା କହିଲେ
ଯୁଧିଷ୍ଠିଙ୍କ ବଚନକୁ ସମସ୍ତେ ଘେନିଲେ ।
ଈଶ୍ୱର ବୋଇଲେ ତହୁଁ ଇନ୍ଦ୍ରମୁଖ ଚାହିଁ
କୁମର କୁମାରୀ ଘେନିଆସ ତୁମ୍ଭେ ଯାଇ ।

ଇନ୍ଦ୍ରର ବଚନେ ଚିତ୍ରସେନ ଯେ ଧାଇଁଲା
ଅମର ମଣ୍ଡଳେ ଯାଇ ଗନ୍ଧର୍ବ ମିଳିଲା ।
କୁମାର କୁମାରୀ ଦୁହେଁ ଯେଉଁପୁରେ ଥିଲେ
ତାହାଙ୍କୁ ଘେନଣ ଚିତ୍ରସେନ ଯେ ଅଇଲେ ।
ସଭାର ମଧ୍ୟରେ ଆଣି ତାଙ୍କୁ ଉଭାକରି
ବ୍ରହ୍ମାଙ୍କୁ ଦେଖି କୁମର ଶିରେ କରଯୋଡ଼ି ।
ବ୍ରହ୍ମା ପଚାରିଲେ ପୁଣି ଶାମ୍ବ ମୁଖ ଚାହିଁ
କେବଣ ଚରିତ କହ କୃଷ୍ଣର ତନୟୀ ।
ଶାମ୍ବ ବୋଲେ କୁମାରୀକୁ ଏକଥା ପଚାର
କାହାର ହେଉଛି ଦୋଷ ବୁଝ ବେଦବର ।
ବ୍ରହ୍ମା ଯେ ବୋଲନ୍ତି କୁମାରୀର ମୁଖ ଚାହିଁ
ଏଥିର ଚରିତ ତୁମ୍ଭେ କହତ ବୁଝାଇ ।
କୁମାରୀ ବୋଇଲା ଦେବ ଶୁଣ ସାବଧାନେ
ତୋଟା ବୁଲିବାକୁ ମୁହିଁ ଆସିଥିଲି ଦିନେ ।
ସଖୀଗଣମାନଙ୍କୁ ମୁଁ ଘେନିଣ ହେ ସଙ୍ଗେ
ନାନା କଉତୁକେ ବୁଲୁଥିଲି ତହିଁ ରଙ୍ଗେ ।
ଦୈବବଶେ ଏ କୁମର ଏଥି ଆସିଥିଲା
ବିଶେଷ କନକ ଚମ୍ପା ଗୁଡ଼ାଏ ତୋଳିଲା ।
ନାନାବର୍ଣ୍ଣ ଫୁଲଗୁଡ଼ା ଘେନି ରଥେ ଉଠି
ବସିବା ମାତ୍ରକେ ମୋର ପଡ଼ିଗଲା ଦୃଷ୍ଟି ।
ମନ ନୟନ ରହିଲା ୟାଙ୍କଠାରେ ମୋର
କାମଦେବ ପ୍ରାୟେ ମୋତେ ଦିଶିଲେ ସୁନ୍ଦର ।
ଏକେ ଯୁବାନାରୀ ମୁହିଁ ଅଳପ ବୟସ
ଦ୍ୱିତୀୟେ ଅଟଇ ପୁଣି ବସନ୍ତର ମାସ ।
ଏହାଙ୍କୁ ଦେଖିଣ ମନ ଦିଖଣ୍ଡ ହୋଇଲା
ହୃଦପଦ୍ମେ ମୋର ଏହି ଭାବନା ଯେ ହେଲା ।
ଅବିବାହୀ କନ୍ୟା ମୁହିଁ ବିଭା ଯେ ନ ଦେଲେ
ୟାହାକୁ ତାହାକୁ ନିଶ୍ଚେ ବିଭାହେବି ଭଲେ ।
ଏତକ ବିଚାରି ମୁହିଁ ଶ୍ରଦ୍ଧାଭାବ ବଳି
ଏହାଙ୍କର ରୂପ ଗୁଣ ଦେଖି ମୁଁ ଜାଣିଲି ।
ନିଶ୍ଚୟ ବଡ଼ କୁଳର ଜାତ ହୋଇଅଛି
ବଡ଼ ଜନଙ୍କର ଏହି ଅଟଇ ଯେ ବସି ।
ଏଥିରୁ ଦୁର୍ଲ୍ଲଭ ବର ଲୋଡ଼ିଲେ ଯେ ପାଇ
ମାଳାଦେଇ ତହୁଁ ୟାଙ୍କୁ ବରିଲି ଯେ ମୁହିଁ ।
ମାଳାଦେଇ ଏହାଙ୍କର ଗଳାରେ ତୁରିତ
ଦୁହିଁଙ୍କର ମନ ତହୁଁ ହୋଇଲା ଏକତ୍ର ।
ରଥରେ ବସାଇ ଏହୁ ନେଉଥିଲେ ମୋତେ
ସାବଧାନେ ଚିତ୍ତେ ଶୁଣ ଆହେ କୁଶନାତେ ।
ବ୍ରହ୍ମାଏ ବୋଇଲେ ଯୁଧିଷ୍ଠିଙ୍କ ମୁଖ ଚାହିଁ
କାହାର ଯେ ଦୋଷ ଏଥି କହ ଧର୍ମସାଇଁ ।

ତୁମ୍ଭର ତୁଣ୍ଡରେ ନିଶ୍ଚେ ନ ଆସିବ ମିଛ
ଆଉମାନେ ସଭାରେକ ହେବେ ପକ୍ଷାପକ୍ଷ ।
ଯୁଧିଷ୍ଠି ବୋଇଲେ ଏହି କଥା ତ ଗୋସାଇଁ
ନ ପଚାରି କନ୍ୟାକୁ ଯେ ଯୁଝ କାହିଁପାଇଁ ।
ତାହା ଶୁଣି ଶକ୍ରରାୟେ ଲଜ୍ଜାକୁ ପାଇଲେ
ମଥା ପୋତିକରି ଇନ୍ଦ୍ର ସଭାରେ ବସିଲେ ।
ହରି ବଳରାମ ମୁଖ ଦିଶେ ପଦ୍ମପ୍ରାୟେ
ଈଶ୍ୱର ଯେ ମୁଖ ତୋଳି ସଭାକୁ ନ ଚାହେଁ ।
ଦୁଇଦଣ୍ଡ ପରିଯନ୍ତେ ସଭା ମୌନ ହୋଇ
ରହିଲେ ହେ କାହାରିକୁ କଥା ଯେ ନ କହି ।
କ୍ଷଣକ ଉତାରେ ତହୁଁ ବ୍ରହ୍ମାଏ ବୋଲନ୍ତି
କିମ୍ପାଇ ବସିଲେ ମୌନହୋଇ ସୁରପତି ।
ଦୁଇଜଣ କଳିକଲେ ଜଣକେ ହାରନ୍ତି
ଏଥକୁ କିମ୍ପାଇଁ ଚିନ୍ତା କର ସୁରପତି ।
ହେ ପଣ୍ଡିତ ଜନମାନେ ବିଚାରିଣ ବୁଝ
ଆମ୍ଭେ ଯାହା କହୁଅଛୁ ଏକମନେ ହେଜ ।
ଅବିବାହୀ ଯୁବାକନ୍ୟା ଘରେ ନ ରଖିବ
ସେ କନ୍ୟାକୁ ରଖିଲେଟି ଆପଦ ପଡ଼ିବ ।
ଏହି କନ୍ୟା ଯେବେ ଯୁବା ହୋଇଣ ନ ଥାନ୍ତା
ଏଡ଼େ ବଡ଼ ଅନର୍ଥ ଯେ କିପରି ହୁଅନ୍ତା ।
ବିଭା ନୋହୁ ଝିଅ ବାପଘରେ ଯୁବା ହେଲେ
ତାର ରଜ ପିତୃଲୋକ ପାଆନ୍ତିଟି ଭଲେ ।
କେବେ ହେଁ ଯେ ବଂଶ ତାର ଉଜ୍ଜଳ ନୁହଇ
ବେଦବର ଏହା ନିଜେ ମୁଖରେ ଭାଷଇ ।
ସପ୍ତମ ବରଷେ କନ୍ୟା ବିଭା ଯେ ନ କରେ
ସେହି ଲୋକ ଦୋଷୀ ବୋଲି ଜାଣିବ ଏଥିରେ ।
ନବମ ବରଷେ କନ୍ୟା ନବଯୁବା ହୋଇ
ସପ୍ତମ ବରଷେ କନ୍ୟା ବିଭା ଯେ କରାଇ ।
ଯୁବାକନ୍ୟା ଇନ୍ଦ୍ର ତୁମ୍ଭେ ଘରେ ଯେ ରଖିଲ
ଏତେକ ଅନର୍ଥ ତୁମ୍ଭେ ଅର୍ଜିଣ ବସିଲ ।
କୁମରର ଏଥେ କିଛି ଦୋଷ ହେଉ ନାହିଁ
ପୁରୁଷ ହୋଇଲେ ଯୁବାସ୍ତିରୀ ନ ଛାଡ଼ଇ ।
ପୁରୁଷ ଭ୍ରମର ପ୍ରାୟ ଭୋଳମତି ହୋଇ
ନୂଆ ପୁଷ୍ପ ଦେଖିଲେ କି ନ ଚୁମ୍ବଇ ସେହି ।
ଏତେ କହିଣ ବିଧାତା ଇନ୍ଦ୍ରେ ପଚାରନ୍ତି
ଏବେ ନାତୁଣୀ ତୁମ୍ଭର କଲା ଦୁଷ୍ଟମତି ।
ଲୋକାଚାରେ କନ୍ୟା ତୋର ଦୂଷିତା ହୋଇଲା
ଅନ୍ୟଲୋକେ ପ୍ରଦାନଟି କରି ତ ନୋହିଲା ।
ଏ ବରକୁ ଆମ୍ଭେ ନିଶ୍ଚେ ଏହି କନ୍ୟା ଦେବା
ସମସ୍ତେ ବସିଣ ଏଣେ ବିଭା କରାଇବା ।

ବୃହସ୍ପତିଙ୍କୁ ଯେ ଡାକ କରିବେ ବିଚାର
ଶୁଭଲଗ୍ନେ ବିବାହଟି ଅଟଇ ବେଭାର ।
ବ୍ରହ୍ମାଙ୍କ କଥା ସମସ୍ତ ମନକୁ ଅଇଲା
ହେଉ ବୋଲିଣ ବାସବ ସନମତ କଲା ।
ଶୁଣ ଆହେ ମନୁରାୟ ବଦନ୍ତି ଅଗସ୍ତି
ଶ୍ରୀମହାଭାରତ ଏହା ଶୁଣ ଶୁଦ୍ଧମତି ।
ଇନ୍ଦ୍ରେ ସନମତ କରାଇଣ ବେଦବର
ହରି ବଳରାମଙ୍କୁ ସେ ପଚାରନ୍ତି ଧୀର ।
ବ୍ରହ୍ମାଙ୍କ ବଚନୁ କେହି ନୋହିଲେ ବାହାର
ଯାହା ସେ ଜଗତ ପିତା କରିଛି ବିଚାର ।
ଚିତ୍ରସେନ ସୁରସେନ ଆଦିଙ୍କୁ ଯେ ତାହିଁ
ବ୍ରହ୍ମା ପଚାରନ୍ତି ଏହା ହେବ କିବା ନାହିଁ ।
ଯେଉଁ କଥା ଆମ୍ଭେ କହିଥିଲୁରେ କୁମର
ଯୋଗାଏ କି ନାହିଁ ତାହା ତୁମ୍ଭର ମନର ।
କୁମର ବୋଇଲେ ଯାହା କରିଛ ଘଟଣ
ଆମ୍ଭ ବୋଲେ କେବେ ହେଁ ସେ ନୁହଁଇଟି ଆନ ।
ବ୍ରହ୍ମା ବୋଇଲେ ହେ ବୃହସ୍ପତି ଆଣ ଡାଇ
ବିଭାର ଚରିତ ବୁଝାଇଣ ଏହିଠାଇଁ ।
ଆଜ୍ଞା ପ୍ରମାଣେ ଅଙ୍ଗାର ପନ୍ନଗ ଯେ ଗଲା
ବୃହସ୍ପତି ଗୁରୁଙ୍କୁ ଯେ ହକାରି ଆଣିଲା ।
ନନ୍ଦନ ବନେ ଅଇଲେ ଗୁରୁ ବୃହସ୍ପତି
ବ୍ରହ୍ମାଙ୍କ ପାରୁଶେ ଯାଇ ଆପଣେ ବସନ୍ତି ।
ବ୍ରହ୍ମାଏ ବୋଲନ୍ତି ଶୁଣ ଆହେ ଦେବଗୁରୁ
କେତେ ଅନର୍ଥ ହେଲା ତୁ କିଛି ନ ପଚାରୁ ।
କେତେ ବଡ଼ ଦ୍ୱନ୍ଦ୍ୱ ହେଲା ଶୋଭାବତୀ ଘେନି
ତାର ବିଭାଲଗ୍ନ ଖୋଜି କହ ପରମାଣି ।
ଖଡ଼ିଧରି ବୃହସ୍ପତି ସମସ୍ତ ଜାଣିଲେ
ବିଭା ଅନୁକୂଳ ଆଦି ସବୁ ଠାବ କଲେ ।
ବୈଶାଖ ଶୁକଳ ତୃତୀୟା ଯେ ଶନିବାରେ
ନାଡ଼ୀ ନକ୍ଷତ୍ର ଯେ ଯୋଗ କରଣର ମୂଳେ ।
ତାର ବାରସବୁ ଗଣିକରି ଠାବ କଲେ
ଏହିଦିନ ଯୋଗ ହେଲା ବୋଲିଣ କହିଲେ ।
ବ୍ରହ୍ମାଏ ବୋଇଲେ ଅଛଇ ଯେ କେତେଦିନ
ବୃହସ୍ପତି ବୋଇଲେ ଯେ ଅଛି ତିନିଦିନ ।
ରାତ୍ରଶେଷେ ହେଲେ କାଲି ହେବ ମଙ୍ଗଳନ
ଶନିବାର ଦିନ ବିଭା ହୋଇବ ପ୍ରମାଣ ।
ବୃହସ୍ପତି କହନ୍ତେ ଯେ ବାସବ ଶୁଣିଲେ
ଏହିଦିନ ବିଭାହେବ ସନମତ କଲେ ।
ସୁରସେନ ଚିତ୍ରସେନ ଅଙ୍ଗାର ପନ୍ନଗ
ଏମାନଙ୍କୁ ଚାହିଁ ଆଜ୍ଞା ଦେଲାକ ବାସବ ।

ବିଭାର ଉତ୍ସବ ପାଇଁ ଯେତେକ ବିଧାନ
ସମସ୍ତ ଭିଆଣ ତୁମ୍ଭେ କର ହେ ବହନ ।
ଦାନ ଯଉତୁକ ଦ୍ରବ୍ୟ ଯେତେକ ଲାଗଇ
ସମସ୍ତ ଭିଆଣ ତୁମ୍ଭେ କର ବେଗେ ଯାଇ ।
ଇନ୍ଦ୍ର ଆଜ୍ଞା ପରମାଣେ କୁମରେ ମିଳିଲେ
ବିଭାର ବିଧାନ ସବୁ ଭିଆଣ ସେ କଲେ ।
ବେଦୀ ଛାମୁଣ୍ଡିଆ ଆଦି ସମସ୍ତ କରାଇ
ଯେ ସମସ୍ତ ଦ୍ରବ୍ୟ ଅବା ସ୍ୱର୍ଗେ ନ ମିଳଇ ।
ସେଦିନ ନନ୍ଦନ ବନେ ସମସ୍ତେ ରହିଲେ
ଫଳମୂଳ ଖାଇ ସେହି ରଜନୀ ବଞ୍ଚିଲେ ।
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ଈଶ୍ୱର ସହିତେ
ଯେ ଯାହାର ବାହନରେ ବସିଲେ ତ୍ୱରିତେ ।
ଗୋବିନ୍ଦ ବିନତା ପୁତ୍ର କନ୍ଧେ ବିଜେ କଲେ
ବଳରାମ ତାଳଧ୍ୱଜ ରଥ ଆରୋହିଲେ ।
ଯୁଧିଷ୍ଠି ରଥ ଉପରେ ବିଜେକଲେ ଯାଇ
ଚାରି ପାଣ୍ଡବେ ଯେ ଯାହାମତେ ସଜହୋଇ ।
ଅର୍ଜୁନ ହସ୍ତ ଧରିଣ ତହୁଁ ଇନ୍ଦ୍ରଦେବ
କୋଳରେ ବସାଇ ତାକୁ ଚଳିଗଲେ ଯମ ।
ଉଗ୍ରସେନ ଦୁର୍ଯ୍ୟୋଧନ ରଥ ଆରୋହିଲେ
ସୈନ୍ୟବଳ ଘେନି କୃଷ୍ଣ ପଛରେ ଚଳିଲେ ।
ଦୁନ୍ଦୁଭି ଶବଦ ଶୁଭେ ବାଜେ ବୀର ତୂର
ବାଦ୍ୟନାଦ ଶବଦରେ ମହୀ ଟଳମଳ ।
ଅମର ମଣ୍ଡଳେ ଯାଇ ପ୍ରବେଶ ହୋଇଲେ
ଉଗ୍ରସେନ ଦୁର୍ଯ୍ୟୋଧନ ମଣ୍ଡପେ ମିଳିଲେ ।
ହରି ବଳରାମ ବେନି ଯୁଧିଷ୍ଠିଙ୍କୁ ଘେନି
ଅମର ମଣ୍ଡଳେ ବିଜେ ସୁରପତି ଜାଣି ।
ବ୍ରହ୍ମା ବୃହସ୍ପତି ପୁଣି ଈଶ୍ୱର ସହିତେ
ସରବେ ବିଜୟ କଲେ ଦେବ ସଭାଗ୍ରତେ ।
ସମସ୍ତ ଦ୍ୱନ୍ଦ୍ୱ ଆବର ନିବର୍ତ୍ତିଣ ଗଲା
ରାମଙ୍କ ସଙ୍ଗେ ଇନ୍ଦ୍ରର ପୀରତି ହୋଇଲା ।
ଭିତର ବାରତା ପାଇ ଶଚୀ ଠାକୁରାଣୀ
ଭିତରକୁ ଡାକିନେଲେ ବୀର ଫାଲଗୁନି ।
ଶଚୀଙ୍କ ଚରଣ ତଳେ ପାର୍ଥ ପ୍ରଣମଇ
ବିନୟ ଭାବ ହୋଇଣ ଶିରେ କର ଦେଇ ।
ଶଚୀ ବୋଇଲେରେ ତୁହି ଶୁଣ ବୀରପାର୍ଥ
ତୁହି ଥାଉଁ କିମ୍ପା ଏଡ଼େ ହୋଇଲା ଅନର୍ଥ ।
ଅର୍ଜୁନ ବୋଇଲା ମାଏ ନ ଜାଣଇ କିଛି
ନାରଦ ମୁନି ସକଳ ଭିଆଇଣ ଅଛି ।
ବାରତା ପାଇଣ ମୁହିଁ ବହନ ଅଇଲି
ଏଡ଼େ ବଡ଼ ଦ୍ୱନ୍ଦ୍ୱଗୋଟା ନିବର୍ତ୍ତାଇ ଦେଲି ।

ଇନ୍ଦ୍ର ଶ୍ରୀକୃଷ୍ଣର ଏବେ ପୀରତି ହୋଇଲା
ଏକାଳେ ବିଭାଘରର ପ୍ରସଙ୍ଗ ପଡ଼ିଲା ।
ସମସ୍ତେ ସୁଧର୍ମାସଭା ତଳେ ବସିଛନ୍ତି
ଅର୍ଜୁନ ମୁଖୁ ଶୁଣିଲେ ଏହା ମହାସତୀ ।
ଆନନ୍ଦ ହୋଇଣ ଦେବୀ ଭିତରକୁ ଗଲେ
ଅର୍ଜୁନ ମଧ୍ୟ ତାହାଙ୍କ ସଙ୍ଗରେ ଚଳିଲେ ।
ଭିତରପୁରେ ଅର୍ଜୁନ ରହିଲେକ ଯହୁଁ
ମଙ୍ଗଳ ବିଧି ଭିଆଣ କଲେକ ସେ ତହୁଁ ।
ହାନ୍ଦୋଳାରେ ବସାଇଣ କନ୍ୟାକୁ ଆଣିଲେ
ଶଚୀଦେବୀ ହାନ୍ଦୋଳାକୁ ଭିତରକୁ ନେଲେ ।
ରାତ୍ରର ମଙ୍ଗଳକୃତ୍ୟ ବିଧାନକୁ ସାରି
ନାରୀମାନେ ମିଳିକରି ଦ୍ୟନ୍ତି ହୁଳହୁଳି ।
ହୁଳହୁଳି ଶବଦରେ ସ୍ୱର୍ଗ ଉଛୁଳଇ
ଏହିମତେ ସେ ରଜନୀ ପ୍ରଭାତ ଯେ ହୋଇ ।
ତହୁଁ ପରବେଶ କଲେ ଶ୍ରୀକୃଷ୍ଣ ନନ୍ଦନ
ଶୋଭାବତୀର ସେ କଲେ ବେଶର ବିଧାନ ।
ବରୁଣ ପୂଜାର ବିଧି ବହନ ସାରିଲେ
ବରକୁ ନେଇ ବେଦୀରେ ତହୁଁ ବସାଇଲେ ।
ସୁବର୍ଣ୍ଣ ପିଢ଼ା ଉପରେ ବସିଲେ କୁମର
ବରଣ ବିଧାନମାନ ସାରି ତତପର ।
ଲବଣ ଚାମର ଆଣି କନ୍ୟା ପକାଇଲା
ବାଦ୍ୟ ନାଦରେ ସ୍ୱରଗ ଭୁବନ କମ୍ପିଲା ।
ତହୁଁ ସେ କନ୍ୟାକୁ ବେଶ ଭୂଷଣ କରାଇ
ବେଦୀରେ ଉପରେ ତାକୁ ବସାଇଲେ ନେଇ ।
ପୂର୍ବମୁଖ ହୋଇକରି ବସିଲେ କୁମର
କୋଳେ ଘେନି କନ୍ୟା ବସିଲେକ ସୁନାସୀର ।
କୁମରକୁ ବସାଇଲେ କୋଳେ ନାରାୟଣ
ତହୁଁ ହୁଳହୁଳି ଦେଉଛନ୍ତି ନାରୀଗଣ ।
ବୃହସ୍ପତି ମଙ୍ଗଳ ଯେ ଉଚ୍ଚାରଣ କଲେ
ବର କନ୍ୟାଙ୍କର ତହୁଁ ହସ୍ତଗ୍ରନ୍ଥି କଲେ ।
ମନ୍ତ୍ର ଉଚ୍ଚାରିଣ କୁଶ ବନ୍ଧନ ଯେ କରି
ଆପେ ବୃହସ୍ପତି ଥାଇ ବିଭାବିଧି ସାରି ।
ପାରିଜାତ ପୁଷ୍ପ ନେଇ ମଥାରେଣ ଦେଲା
ଅମ୍ଳାନ ବସ୍ତ୍ର ବରକୁ ନେଇ ପିନ୍ଧାଇଲା ।
ବର କନ୍ୟାଙ୍କର ହସ୍ତ ବନ୍ଧନ ସେ କରି
ଶଙ୍ଖେ ପାଣି ଘେନି ବୃହସ୍ପତି ଯେ ପଚାରି ।
କି କି ଯଉତୁକ ବେଗେ ଦିଅ ସୁରନାଥ
ଶଙ୍ଖରେ ପାଣି ତୋଳିଣ ଦିଅ ତୁ ତୁରିତ ।
ତହୁଁ ସୁରପତି ପାଣି ଘେନିଣ ଶଙ୍ଖରେ
ମନରେ ଅନେକ ଯଉତୁକ ବାଞ୍ଛା କଲେ ।

ଲକ୍ଷେକ ସୁବର୍ଣ୍ଣ ଆଣି ଆଗରେ ସେ ଥୋଇ
ଐରାବତ ସମାନରେ ଲକ୍ଷେ ଗଜ ଦେଇ ।
ଉଚ୍ଚୈଃଶ୍ରବା ସମାନରେ ଲକ୍ଷେ ଅଶ୍ୱଦେଲା
ଆବର ଦ୍ରବ୍ୟମାନଙ୍କ କଳନା ନୋହିଲା ।
ଯଉତୁକ ଦେଲେ ଇନ୍ଦ୍ର ଆନନ୍ଦ ଯେ ହୋଇ
ବୃହସ୍ପତି ହସ୍ତୁ କୁଶ ବନ୍ଧନ ଯେ ଫେଇ ।
ଅପସରୀ ବୃନ୍ଦ ନେଇ ଶଚୀ ବିଜେ କଲେ
ରତ୍ନ ଦେଇଣ ସାମ୍ବକୁ ବନ୍ଦାପନା କଲେ ।
ଶୀତଳ ମଣୋହି ବେଗେ ଭୋଜନ ସାରିଣ
କର୍ପୂର ତାମ୍ବୁଳ ସର୍ବେ କରନ୍ତି ଭକ୍ଷଣ ।
ବିଭାର ବିନୋଦମାନ ସମସ୍ତ ସାରିଲେ
ଇନ୍ଦ୍ରର ମୁଖକୁ ଚାହିଁ ଶ୍ରୀକୃଷ୍ଣ ବୋଇଲେ ।
ବର କନ୍ୟାକୁ ତୁ ସଜକର ଯାଇ ବେଗେ
ଯିବା ଦ୍ୱାରାବତୀପୁର ବିଦାକର ବେଗେ ।
ଇନ୍ଦ୍ର ବୋଇଲା ଆଜକ ମୋରପୁରେ ରୁହ
ପ୍ରଭାତରୁ ବର କନ୍ୟା ଘେନି ଚଳିଯାଅ ।
ଇନ୍ଦ୍ରର ବଚନ ପ୍ରଭୁ ଭାଙ୍ଗି ନ ପାରିଲେ
ଭୋଜନ ସାରି ଯେ ଯାହା ସୁଖରେ ଶୋଇଲେ ।
ନିଶିଶେଷ ନିଦ୍ରା ତେଜି ସକଳ ଉଠିଲେ
ଯେ ଯାହା ରାଜ୍ୟେ ଯିବାକୁ ବାହାର ହୋଇଲେ ।
ଶଙ୍ଖ ମହୁରୀ ଶବଦ ଉଠେ ଘନ ଘନ
ବୀରତୁର ଶବଦରେ ଉଛୁଳେ ଭୁବନ ।
ବରକନ୍ୟା ଦୁହିଁଙ୍କୁ ଯେ ବନ୍ଦାପନା କଲେ
କନ୍ୟାକୁ ଘେନିଣ ହାନ୍ଦୋଳାରେ ବସାଇଲେ ।
କୁଶାସନର ଉପରେ ବସିଲା କୁମାର
ମାହେନ୍ଦ୍ର ସମୟ ଦେଖି ହୋଇଲା ବାହାର ।
ବ୍ରହ୍ମା ଇନ୍ଦ୍ର ଆଦି ଦେବେ ସରବେ ବସିଲେ
ଈଶ୍ୱର ଆସିଣ ତାଙ୍କ ସନ୍ନିଧେ ମିଳିଲେ ।
ସମସ୍ତଙ୍କୁ ନମସ୍କାର କରି ବୀର ପାର୍ଥ
ଇନ୍ଦ୍ରର ଛାମୁରେ ଯାଇ ହେଲା ଉପଗତ ।
କୃଷ୍ଣ ବଳରାମ ତହୁଁ ଯୁଧିଷ୍ଠିଙ୍କୁ ଘେନି
ସଭାରେ ଆସି ବିଜୟ କଲେ ଚକ୍ରପାଣି ।
ଉଗ୍ରସେନ ଦୁର୍ଯ୍ୟୋଧନ ସର୍ବେ ତହିଁ ବସି
ବୋଇଲେ ବ୍ରହ୍ମା ଭୋଦେବ ଶୁଣ ବ୍ରହ୍ମରାଶି ।
ବିଭା ଉତ୍ସବ ସମସ୍ତ ଏବେ ତ ସରିଲା
ଏବେ ତୁମ୍ଭର ମନ ଯେ ସାନନ୍ଦ ହୋଇଲା ।
ନାରାୟଣ ବୋଇଲେ ଯେ ଶୁଣ ବେଦବର
ଯିବୁ ଦ୍ୱାରାବତୀ ଚିତ୍ତ ହେଲାଣି ଅସ୍ଥିର ।
ବ୍ରହ୍ମା ବୃହସ୍ପତି ଇନ୍ଦ୍ର ରାୟେ ଯେ ଭାଳିଲେ
ଅକ୍ଷତ ବିଧି ସାରିଣ ବହୁ ବସ୍ତ୍ର ଦେଲେ ।

ପାଟପଟନୀ ଦେବାଙ୍ଗ ଝୀନବସ୍ତ୍ର ଶାଢ଼ୀ
ଗୌରବ କରି ଅନେକ ବସ୍ତ୍ର ବେଗେ କାଢ଼ି ।
ଶ୍ରୀକୃଷ୍ଣ ସଙ୍ଗେ ଯେତେ ଭାଇ ଆସିଥିଲେ
ଜଣପ୍ରତି ଏକ ବସ୍ତ୍ର ପ୍ରଦାନ ସେ କଲେ ।
ବାଦ୍ୟକାରଠାରୁ ଯେତେ ମହୁରିଆ ଯାଏ
ସମସ୍ତଙ୍କୁ ସୁରନାଥ ଅକ୍ଷତ ଯେ ଦିଏ ।
ବିଭାର ବିଧି ବିଧାନ ସମସ୍ତ ସରିଲା
ଶଙ୍ଖ ମହୁରୀ ସେଠାରେ ଅନେକ ବାଜିଲା ।
ବିକଟାଳ ଶବଦରେ ବାଜଇ ବାଜଣା
ଶଙ୍ଖ ମହୁରୀମାନ କେ କରିବ ଗଣନା ।
ଯେ ଯାହାର ଯାନମାନ ସର୍ବେ ଆରୋହିଲେ
ବରକନ୍ୟା ଦୁହିଁଙ୍କୁ ସେ ଆଗେ ଚଳାଇଲେ ।
ସରଗ ପୁରୁ ସମସ୍ତେ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଦ୍ୱାରାବତୀ ପୁର ।
ବାଦ୍ୟନାଦ ଶବଦରେ ପୃଥ୍ୱୀ ଚମକିଲା
ଦ୍ୱାରାବତୀ ପୁରେ ମହା ହାଲୋଳି ପଡ଼ିଲା ।
ବାରତା ପାଇଣ ବସୁଦେବଙ୍କ ଘରଣୀ
ଆବର ଆସନ୍ତି ଉଗ୍ରସେନଙ୍କର ରାଣୀ ।
ରୁକ୍ମିଣୀ ସତ୍ୟା କାଳିନ୍ଦୀ ତୁଳସୀଙ୍କୁ ଘେନି
ଜାମ୍ବବତୀ ସହିତରେ ଅଷ୍ଟ ଯେ କାମିନୀ ।
ସମସ୍ତ କନ୍ୟାଏ ସଜ ହୋଇଣ ଅଇଲେ
ବର କନ୍ୟାଙ୍କର ପାଶେ ଯାଇଣ ମିଳିଲେ ।
ଦୁର୍ବାକ୍ଷତ ତଣ୍ଡୁଳରେ ବନ୍ଦାପନା ସାରି
ବରକନ୍ୟା ନେଇଗଲେ ଭିତର ଯେ ପୁରୀ ।
ନିଜ ମନ୍ଦିରେ ଯାଇଣ ହୋଇଲେ ପ୍ରବେଶ
ତାହାଦେଖି ଚନ୍ଦ୍ରାବତୀ ମନରେ ବିରସ ।
ଶୋଭାବତୀ ରୂପକୁ ସେ ସମାନ ନୋହିଲେ
ଦିହୁଡ଼ି ଆଗରେ ଦୀପ ପ୍ରାୟେକ ଦିଶିଲେ ।
ଉଗ୍ରସେନ ଚଳିଗଲେ ଆପଣା ନବର
ନିଜ ମନ୍ଦିରକୁ ବେଗେ ଗଲେ ହଳଧର ।
ରେବତୀ ବଳଦେବଙ୍କ ସଙ୍ଗତରେ ଗଲେ
ବର କନ୍ୟା ବନ୍ଦାପନା ସାରି ଆସିଥିଲେ ।
ସାତବଂଶ ଯାଦବ ଯେ ଯାହାପୁରେ ଗଲେ
ପୁରବାସୀ ଜନେ ମହାଆନନ୍ଦ ହୋଇଲେ ।
ଉଦ୍ଧବ ଅକ୍ରୂର ଶୁଣି ସାତ୍ୟକି ସହିତେ
ନିଜ ନିଜ ମନ୍ଦିରକୁ ଗଲେ ଯେଝାମତେ ।
ଦୁର୍ଯ୍ୟୋଧନ ରାଜାକୁ ସେ ରାଇ ଦାମୋଦର
ବୋଇଲେ ହସ୍ତିନାପୁରେ ଚଳ ନୃପବର ।
ଆଜ୍ଞା ପରମାଣେ ମାନଗୋବିନ୍ଦ ଚଳିଲା
ଯାଇଁଣ ହସ୍ତିନାପୁରେ ପ୍ରବେଶ ହୋଇଲା ।

ଏଗାର କ୍ଷଉଣୀ ବଳ ଶତେଭାଇ ମୂଳେ
ଯେ ଯାହାର ମନ୍ଦିରକୁ ଗଲେ ତତକାଳେ ।
ଧୃତରାଷ୍ଟ୍ର ଏଥିରେ ଯେ ବାରତା ପାଇଲେ
ମାନଗୋବିନ୍ଦଙ୍କୁ ରାଇ ବାରତା ପୁଚ୍ଛିଲେ ।
ସବୁ ବୁଝାଇ କହିଲେ ମାନଗୋବିନ୍ଦାଇ
ଭାନୁମତୀ ରାଣୀକି ଯେ କହିଲେ ବୁଝାଇ ।
ଶ୍ରୀକୃଷ୍ଣ ବିଜୟ କଲେ ଆସ୍ଥାନ ଉପରେ
ସଙ୍ଗତରେ ଛନ୍ତି ତାଙ୍କ ସମସ୍ତ କୁମର ।
ଯେତେ ଯେତେ ଯଉତୁକ ଇନ୍ଦ୍ର ଦେଇଥିଲେ
ଭଣ୍ଡାରେ ନେଇ ସମସ୍ତ ରଖାଇଣ ଦେଲେ ।
ପାଣ୍ଡବେ ଦ୍ୱାରକାପୁରେ ରହି ଦିନ ସାତ
ଯୁଧିଷ୍ଠିରଙ୍କୁ ଚାହିଁ କହୁଛନ୍ତି ଜଗନ୍ନାଥ ।
ବାରୁଣା ଯାଇ ରହିଲେ ଅପାର ଯେ ଦିନ
ତହୁଁ ତାହାଙ୍କୁ ଅକ୍ଷତ ଦେଲେ ଜନାର୍ଦ୍ଦନ ।
ଆବର ତାହାଙ୍କୁ ଦେବ କଲେ ନମସ୍କାର
ଚାରିଭାଇ ନମିଲେ ଯେ ଗୋବିନ୍ଦ ପୟର ।
ମେଲାଣି ହୋଇ ପାଣ୍ଡବେ ଗଲେ ନିଜପୁର
ପ୍ରବେଶ ହୋଇଲେ ଯାଇ ବରୁଣାବନ୍ତର ।
କୋଇନ୍ତାଙ୍କୁ ପାଞ୍ଚଭାଇ କଲେ ନମସ୍କାର
ବିଭାର ଚରିତ ଦେବୀ ପୁଚ୍ଛିଲେ ସକଳ ।
ବିଧିମତେ ତାହାଙ୍କୁ ସେ ସମସ୍ତ କହନ୍ତି
ଶୁଣିଣ ପରମ ତୋଷ ସୁଭଦ୍ରା ଦ୍ରୌପଦୀ ।
ଶୁଣ ଆହେ ମନୁରାୟ ଅଗସ୍ତି କହିଲେ
ଶୋଭାବତୀ ଘେନି ଶାମ୍ବ ବହୁ ଭୋଗ କଲେ ।
ତାହାର ଗର୍ଭରୁ ପାଞ୍ଚପୁତ୍ର ଜନମିଲେ
ଚନ୍ଦ୍ରାବତୀଠାରୁ ଚାରିପୁତ୍ର ପ୍ରସବିଲେ ।
ପଚାରିଲୁ ଶୋଭାବତୀ ହରଣ ଚରିତ
ଏକ ମନରେ ଶୁଣିଲୁଟିକି ନରନାଥ ।
ଏମନ୍ତ ଶାମ୍ବର ବେନି ଅଟଇ ଭାରିଯା
କେବଣ ପୁତ୍ରର ତିନି କା ଚାରି ଭାରିଯା ।
କୃଷ୍ଣବଂଶ ପ୍ରାୟ କୃଷ୍ଣବଂଶ ଯେ ବଢ଼ଇ
ଅଣନାତି ପଣନାତି ଅନେକ ଯେ ହୋଇ ।
ଶ୍ରୀ ମହାଭାରତ ଏହି ସୁଧାମୟ ରସ
ଅମୃତପାନେ ଯେସନେ ଆଶା ହୁଏ ତୋଷ ।
ଶ୍ରୀ ମହାଭାରତ ଏହା କର୍ଣ୍ଣରେ ଶୁଣିଲେ
ଅମୃତପାନ ପ୍ରାୟେକ ଆତ୍ମତୋଷ ଭଲେ ।
ବନ୍ଦଇ ଶ୍ରୀ ନାରାୟଣ କମଳାର ପତି
ଯାହାର ହୃଦୟେ ସର୍ବ ପ୍ରାଣୀଙ୍କର ସ୍ଥିତି ।
ଅରକ୍ଷର ବନ୍ଧୁଦେବ ଦରିଦ୍ରର ଧନ
ଅଟନ୍ତି ଭକତଜନଙ୍କର ପଞ୍ଚପ୍ରାଣ ।

ଅରକ୍ଷ ଜନଙ୍କୁ ରକ୍ଷା କରିବାର ପାଇଁ
ଶୂନ୍ୟକୁ ଶ୍ରବଣ ଡେରିଥାଅ ଭାବଗ୍ରାହୀ ।
ମୁଁ ହେ ଅରକ୍ଷିତ ପୁଣି ଅଟେ ଅପଣ୍ଡିତ
ଶାସ୍ତ୍ର ପୁରାଣରେ ମୁହିଁ ନୁହେଁ ଉପଗତ ।
ଦୟାକଲେ ଶ୍ରୀ ଶାରଳା ଚଣ୍ଡୀଦେବୀ ମୋତେ
ତେଣୁ କରି ଶିର ମୋର ତବ ପଦାଗ୍ରତେ ।
ସେହି ଦେବୀ ତହୁଁ ମୋର କଣ୍ଠେ ବିଜେ କଲା
ତେଣୁ କରି ଏ ଗ୍ରନ୍ଥ ମୋ ହୃଦୟେ ସ୍ଫୁରିଲା ।
ଶ୍ରୀଚଣ୍ଡୀ ଶାରଳା ଦେବୀ ଚରଣକୁ ଧ୍ୟାୟି
ଅନ୍ତଃକାଳେ କପିଳା ସେ ଦେବେ ମହାମାୟୀ ।
ତୁଳସୀ ବଲ୍ଲଭ ଚରଣକୁ ମୋର ଆଶ
ଶାରଳା ଦାସକୁ ରଖ କମଳା ବିଳାସ ।



## ପ୍ରୌଢ଼ାସୁରର ବର ଲାଭ

ଏଥୁଅନ୍ତେ ସେ ବିଲଙ୍କ ଦେଶ ଚୂଡ଼ାମଣି
ମୁନିଙ୍କ ଚରଣେ ପୁଣି କରଇ ଦଇନୀ ।
ମଧ୍ୟପର୍ବ କଥା ମୁନି କହୁଅଛ ମୋତେ
ତହିଁପରେ କିସହେଲା କହ ତୋଷ ଚିତ୍ତେ ।
ମନୁ ପଚାରନ୍ତି ପୁଣି ଅଗସ୍ତି କହନ୍ତି
ଏକମନ ହୋଇ ତୁମ୍ଭେ ଶୁଣ ହେ ନୃପତି ।
କଇଳାସ କନ୍ଦରର ଉତ୍ତର ଦିଗରେ
ରୁଢ଼ାସୁର ବୋଲି ରାଜା ଅଛଇ ତହିଁରେ ।
କାଳେ ଅସୁର ଅନ୍ୟାୟ ପୁଣି ତହିଁ କଲା
ଦେବଦାନବ କାହାକୁ ସେହି ନ ଡରିଲା ।
ଏହିମତେ ସେ ଅନେକ କାଳ ରାଜ୍ୟକରି
ରାଜାମାନଙ୍କର ସଙ୍ଗେ କରେ ଖଣ୍ଡ ଆଳି ।
ନଉସହସ୍ର ନଅଶ ଛୟାଣୋଇ ରାଜା
ରୁଢ଼ା ସୁରର କରନ୍ତି ସର୍ବେ ପାଦପୂଜା ।
ମହିଷାସୁର ଅଂଶରେ ଅସୁର ଉପୁନ୍ନ
ପୃଥିବୀରେ ତାହାକୁ କେ ନୋହିଲେ ସମାନ ।
ଅଗମ୍ୟ ବନ ଦେଖିଣ ନଗ୍ର ଭିଆଇଲା
ଅଲମ୍ବୁଷା ବୋଲି ସେହି ନଗ୍ର ନାମ ଦେଲା ।
ଚଉଷଠି ପରବତ ଗଡ଼ ଚାରିପାଖ
ତହିଁ ମଧ୍ୟେ ନଗ୍ର କଲା ଅସୁର ପ୍ରତ୍ୟକ୍ଷ ।
ଏହିମତେ କେତେକାଳ ସେ ରାଜ୍ୟ କରଇ
ଅନ୍ୟାୟ ଆଚରି ସେହୁ ପୃଥ୍ୱୀରେ ବୁଲଇ ।
ଅତି ହିଁ ଅଧର୍ମପଣ କରି ଦିନ ନେଲା
ଦେବତା ବ୍ରାହ୍ମଣଙ୍କୁ ସେ ବହୁକଷ୍ଟ ଦେଲା ।
ଅନ୍ୟାୟ ବାନା ତାହାର ପୃଥ୍ୱୀରେ ଉଡ଼ଇ
ଏମନ୍ତେ ଅସୁରାଧିପ ରାଜ୍ୟକୁ କରଇ ।

ତାହାର ନନ୍ଦନ ପ୍ରୌଢ଼ା ନାମେଣ ଅସୁର
ତେଢ଼େ ବଡ଼ ରୁଢ଼ାସୁର ଗଲା ଯମପୁର ।
ସେ ରାଜ୍ୟେ ପ୍ରୌଢ଼ା ଅସୁର ନୃପତି ହୋଇଲା
ଏକାଳେ ସେ ସ୍ୱର୍ଗମର୍ତ୍ତ୍ୟ ପାତାଳେ ଭ୍ରମିଲା ।
ଭ୍ରମି ଭ୍ରମି ଆସି କଇଳାସରେ ପଶଇ
ଉତ୍ତର ଦୁଆରେ ଦ୍ୱାରୀ କାର୍ତ୍ତିକ ଅଛଇ ।
ତାହାଙ୍କ ଚରଣ ତଳେ କଲା ନମସ୍କାର
ବିନୟୀ ହୋଇଣ ତାଙ୍କୁ ଦିଅଇ ଉତ୍ତର ।
ଷଡ଼ମୁଖ ପଚାରନ୍ତି କାହିଁକି ଅଇଲୁ
ଏକାଙ୍ଗଚକ୍ରବର୍ତ୍ତୀ ତୁ ପୃଥ୍ୱୀରେ ହୋଇଲୁ ।
ତୋର ପିତା ରୁଢ଼ାସୁର ଥିଲା ମହାବଳୀ
ପୃଥିବୀ ରାଜାଙ୍କୁ ସେହି ପକାଇଲା ଦଳି ।
ସ୍ୱର୍ଗପୁରେ ପଶି ପୁରୁହୁତଙ୍କୁ ଜିଣିଲା
ସେହି ପୁଣି କାଳକ ଯେ ରହି ନ ପାରିଲା ।
ଅନ୍ୟାୟ କଲେ ବହୁତ କାଳ ନ ବଞ୍ଚଇ
ଧର୍ମେ ଥିଲେ କାଳେ ପୃଥ୍ୱୀଭୋଗ ସିନା ହୋଇ ।
ତୋହର ଯେ ପିତା କେବେ ଧର୍ମ ନ ଥାପିଲା
ସ୍ୱର୍ଗ ମଞ୍ଚ ପାତାଳରେ ଅନ୍ୟାୟ ସେ କଲା ।
ସେହି କାଳମୁଖେ ଗଲା ନ ରହିଲା ମହୀ
ଅପକୀର୍ତ୍ତି କଥା ଏବେ ତାର ଅଛି ରହି ।
ତୁହି ଏବେ ଧର୍ମମାର୍ଗେ ଆତଯାତ ହୁଅ
ଦେବ ଦାନବ ମାନବ ମଧ୍ୟେ ପୂଜାପାଅ ।
କାର୍ତ୍ତିକ କଥାକୁ ପ୍ରୌଢ଼ା ଅସୁର ଶୁଣଇ
ଭରସି ସେ ବିଶ୍ୱନାଥ ପୁତ୍ରେ ନ କହଇ ।
ଦୁଷ୍ଟଜନ ସଚ୍ଛଜନ ହୋଇ କେମନ୍ତେ
ଧର୍ମ ହୁଡ଼ି ଅଧର୍ମକୁ ଭାଳଇ ନିରତେ ।
ପ୍ରୌଢ଼ା ଅସୁର ବୋଲଇ ଶୁଣିବା ଗୋସାଇଁ
ତୁମ୍ଭ ଛାମୁକୁ ଅଇଲି ମୁହିଁ ଯହିଁପାଇଁ ।
ସାବଧାନ ହୋଇ ତୁମ୍ଭେ ଶୁଣ ଶୁଦ୍ଧଚିତ୍ତ
ତୁମ୍ଭର ଦୟା ହୋଇବ ଯେବେ ହୃଦଗତ ।
ଅମର ବରଟି ମୋତେ ଯେବେ ଦେଇପାର
କୀରତି ରହିବ ଚାରିଯୁଗରେ ତୁମ୍ଭର ।
ଦେବ ଦାନବେ ମାନବେ ନୋହିବ ବିକାଶ
ନାନା ଅସ୍ତ୍ରେ ଅଙ୍ଗେ ମୋର ପଡ଼ି ହେବ ଭସ୍ମ ।
ହୀନଜନ ହାତରେ ମୁଁ ନୋହିବି ନିଧନ
ତିନିପୁରେ ହୋଇବଇଁ ମୁହିଁ ବୀର ପୁଣ ।
ଏମନ୍ତ ବର ମୋତେ ତ ଦିଅ ଦେବସ୍ୱାମୀ
ଶୁଣିଣ କାର୍ତ୍ତିକେଶ୍ୱର ମନେ ଭାଳେ ପୁଣି ।
ପଞ୍ଚଭୂତ ଆତ୍ମାରେ ସେ ବିଚାର କରିଲେ
ଏକେତ ଅସୁର ଦୁଷ୍ଟ ଅଟଇ ସେ ଭଲେ ।

ବିନା ବରେ ଏ ଅସୁର ଭ୍ରମି ତିନିପୁର
ବର ପାଇଲେ ଏହି କି ରଖିବ ସଂସାର ।
ଏଡ଼େ ଦୁର୍ଗମ ବର ମୁଁ କେମନ୍ତ ଦେବଇଁ
ବର ପାଇଲେ ପୃଥିବୀ ରଖିବ କି ଏହି ।
କେମନ୍ତ ଏହାକୁ ମୁହିଁ ଏ ବର ଦେବଇଁ
କପଟ କଥା କହିଣ ଦେବି ବାହୁଡ଼ାଇ ।
ଏତେକ ବିଚାରି କରି ଈଶ୍ୱର କୁମର
ବୋଇଲେ ଶୁଣରେ ବାବୁ ତୁ ପ୍ରୋଢ଼ାଅସୁର ।
ଅମରବର ମାଗିଲୁ ଯେବେ ତୁରେ ମୋତେ
ଚ୍ରିଜୀବୀ ହୋଇଣ କେହି ନରହେ ଜଗତେ ।
ଅମର ବରରେ ବାବୁ ନୁହେଁ କିଛି ଭଲ
କାଳେ ଆପଣାର ହୃଦେ ହୁଅଇ ସେ ଶଲ ।
ଦେବ ଦାନବ ମାନବେ ନ ସହିବେ ତୋତେ
ଦୁଃଖୀଜନ ଉପୁଜିବ ସବୁଙ୍କର ଚିତ୍ତେ ।
ଧର୍ମକଥା କଲେ ବାବୁ ସବୁଦିନେ ଥିବୁ
ଅଧର୍ମ କଲେ ପୃଥ୍ୱୀରେ କ୍ଷଣେ ନ ବର୍ତ୍ତିବୁ ।
ତୁହି ଯେ ଅମରବର ମାଗୁଅଛୁ ମୋତେ
ଆମ୍ଭର ଦୟା ଅଛଇ ନ ଦେବୁ କି ତୋତେ ।
ଏ ମର୍ତ୍ତ୍ୟ ମଣ୍ଡଳେ ଜାଣ ଯେତେକ ଅଛନ୍ତି
ସମସ୍ତେ ହେ ରାଜା ତୋର ପାଦେ ବଶବର୍ତ୍ତୀ ।
ପିତା ତୋହର ତାହାଙ୍କୁ ଜିଣିଛି ସଂଗ୍ରାମେ
କାହାକୁ ଆଉ ଜିଣିବୁ ବୋଲି ଭାଳୁ ମନେ ।
ପାତାଳ ପୁରକୁ ତୋର ଯିବା ଶକ୍ତି ନାହିଁ
ରସାତଳେ ପଡ଼ିବଟି ଜାଣ ଏହି ମହୀ ।
ଏଣୁ ପାତାଳ ପୁରକୁ ନ କର ତୁ ମନ
ଆମ୍ଭର ଆଜ୍ଞାରେ ତୁହି ହୁଅ ସାବଧାନ ।
ଆବର କଥାଏ ତୁହୋ ଶୁଣ ମନଦେଇ
ଯମରାଜା ପୁରକୁ ନ ଯିବୁ ବାବୁ ତୁହି ।
ସବୁ ଜନ୍ତୁଙ୍କ ଉପରେ ଅଟେ ଅଧିକାରୀ
ତାକୁ ସଂଗ୍ରାମରେ କେହି ଜିଣି ତ ନ ପାରି ।
ଆମ୍ଭରି ଆଜ୍ଞାରେ ତୁହି ତାକୁ ନ ଜିଣିବୁ
ତାହା ତୁଲେ ଖଣ୍ଡିଆଳି କେବେ ଯେ ନୋହିବୁ ।
ଆକାଶରେ ଚନ୍ଦ୍ର ସୂର୍ଯ୍ୟ ହୁନ୍ତି ଆତଯାତ
ତାହାଙ୍କ ତୁଲେ ପୀରତି କରିଥିବୁ ଜାତ ।
ସୂର୍ଯ୍ୟଦେବ ଆକାଶରେ ଉଦୟ ନୋହିବ
ଏ ସଂସାର ଯେଉଁପରି ଆତଯାତ ହେବ ।
ଚନ୍ଦ୍ର ଯେବେ ରାତ୍ରକାଳେ ଉଦୟ ନୋହିବ
ପୃଥିବୀରେ ଶସ୍ୟ ସବୁ କେମନ୍ତ ହୋଇବ ।
ବିଷର ପଦାର୍ଥମାନ ଅମୃତ ହୁଅଇ
ସେ ସୁସ୍ୱାଦୁ ଫଳମାନ ପୃଥ୍ୱୀରେ ଫଳଇ ।

ଏ କାରଣୁ ଚନ୍ଦ୍ରସହ ବିବାଦୀ ନୋହିବୁ
ସବୁ କଥା ତୋତେ କହିଦେଲୁ ଆରେ ବାବୁ ।
କାର୍ତ୍ତିକେଶ୍ୱର ମୁଖରୁ ଏସନକ ଶୁଣି
ପ୍ରୌଢ଼ା ଅସୁର ସେଠାରେ ଏ ବଚନ ଭଣି ।
ଯାହା ତୁ କହିଲୁ ପ୍ରଭୁ ସମସ୍ତ ପାଳିବି
ତୋହର ବଚନ ମୁହିଁ ଆନ ନ କରିବି ।
ଆବର କଥାକୁ ବାବୁ କହିବି ଛାମୁର
ସାବଧାନେ ଶୁଣ ତୁମ୍ଭେ ଈଶ୍ୱର କୁମର ।
ତିନିପୁର ଜିଣିବି ମୁଁ ଦିଗବିଜେ କରି
ଏହି ଆଜ୍ଞା ଦେବୁ ମୋତେ ବାରତା ବଇରୀ ।
କାର୍ତ୍ତିକେଶ୍ୱର ବୋଇଲେ ଅସ୍ତୁ ହେଉ ତୋତେ
ଜିଣି ନ ପାରିବୁ ବାବୁ ଏକା ସୁରନାଥେ ।
ଗୁପତ କଥାକୁ ତୁହି ଜାଣିଥିବୁ ବୀର
ତୋହର ମୃତ୍ୟୁ ଅଛଇ ଇନ୍ଦ୍ରର ହସ୍ତର ।
ଅବଶ୍ୟ ତୁ ଇନ୍ଦ୍ର ବଜ୍ରେ ହୋଇବୁ ବିନାଶ
ଏଗୁପତ କଥାରେ ତୁ କରିବୁ ବିଶ୍ୱାସ ।
ଏମନ୍ତ ବଚନ ପ୍ରୋଢ଼ାସୁରକୁ କହିଲେ
କାର୍ତ୍ତିକେଶ୍ୱର ସେଠାରୁ ଅନ୍ତର ହୋଇଲେ ।
ତହୁଁ ପ୍ରୋଢ଼ାସୁର ଶୀଘ୍ର ହୋଇ ଚଳିଗଲା
ଅଳମ୍ଭୁଷ ରାଜ୍ୟେ ଯାଇ ପ୍ରବେଶ ହୋଇଲା ।
ମନ୍ତ୍ରୀକି ସଙ୍ଗରେ ଘେନି କରଇ ବିଚାର
କାର୍ତ୍ତିକେଶ୍ୱର ମୋତେ ନ ଦେଲେ ଏହି ବର ।
ତିନିପୁର ଜିଣି ବୋଲି ମୋତେ ଆଜ୍ଞା ଦେଲେ
ଦେବ ଦାନବରେ ମୋର ଭୟ ନ ରଖିଲେ ।
ଏବେ ମୋର ଥାଟ ତୁମ୍ଭେ ବେଗେ ସଜକର
ଦିଗବିଜେ କରି ମୁଁ ଜିଣିବି ନୃପବର ।
କୃପାଳୁ ମନ୍ତ୍ରୀ ବୋଇଲା ଶୁଣ ମହାରାୟେ
ତୋହର ଛାମୁରେ ମୁହିଁ କହିବି କଥାଏ ।
ମହା ମହାବଳୀରାଜା ଛନ୍ତି ମର୍ତ୍ତ୍ୟପୁର
ଏକକୁ ଏକ ଅଟନ୍ତି ମହା ବଳିୟାର ।
କୃପାଳୁ ମନ୍ତ୍ରୀ ମୁଖରୁ ଏସନକ ଶୁଣି
ପ୍ରୋଢ଼ାସୁର ପଚାରଇ ତାକୁ ପୁଣି ପୁଣି ।
କହ ଆହେ ମହାବୀର ରାଜାଙ୍କର ନାମ
କେବଣ ଦେଶମାନଙ୍କରେ କରଇ ବିଶ୍ରାମ ।
ଏହା ମୋତେ ସଂକ୍ଷେପିଣ କହ ମନ୍ତ୍ରୀବର
ତେବେ ସିନା ମୁହିଁ ପ୍ରତେ କରିବି ମନର ।
କୃପାଳୁ ମନ୍ତ୍ରୀ ବୋଇଲା ଶୁଣ ସାବଧାନେ
କୁଞ୍ଜଗଳ ଦେଶରେ ଯେ ରାଜା ଦୁର୍ଯ୍ୟୋଧନେ ।
ଏଗାର କ୍ଷଉଣୀ ତାର ଅଙ୍ଗ ଅଙ୍ଗବଳ
ତାହାର ମନ୍ତ୍ରୀ ଶକୁନି ଅଟେ ମନ୍ତ୍ରୀବର ।

ଆବର ଯେ ଭୀଷ୍ମ ଦ୍ରୋଣ କୃପକର୍ଣ୍ଣ ଶଲ୍ୟେ
ଶତେ ଭାଇ ଅଛନ୍ତି ଯେ ଦୁଃଶାସନ ତୁଲେ ।
ମାନେ ମାନଗୋବିନ୍ଦ ତା କନ୍ଧେ ଲକ୍ଷ୍ମୀ ଥାଇ
ପଦ୍ମନିଧି ଶଙ୍ଖନିଧି ହସ୍ତରେ ଅଛଇ ।
ଲକ୍ଷଣବନ୍ତ ପୁରୁଷ ଲକ୍ଷ୍ମୀ ନ ଛାଡ଼ଇ
ଲକ୍ଷେ ରାଜାର ମଉଡ଼ମଣି ସେ ଅଟଇ ।
ମନ୍ତ୍ରୀର ମୁଖରୁ ଶୁଣି ଏସନକ ବାଣୀ
ମହାକୋପରେ ଅସୁରକୁଳ ନୃପମଣି ।
ବୋଇଲା ମୋହର ଥାଟ ବେଗେ ସଜକର
ଅବଶ୍ୟ ଯିବଇଁ ମୁହିଁ ହସ୍ତିନା ନଗର ।
ମନ୍ତ୍ରୀ ଯେ ବୋଇଲା ରାୟେ ନ କର ତୁ କୋପ
ଦୁର୍ଯ୍ୟୋଧନର ଭାଇ ଯେ ଯୁଧିଷ୍ଠିର ନୃପ ।
ତନୟ ଅଟଇ ସେ ଯେ ପଣ୍ଡୁ ରାଜାଙ୍କର
ଚାରିଗୋଟି ଭାଇ ପୁଣି ଅଛଇ ତାଙ୍କର ।
ଭୀମ ଅର୍ଜୁନ ନକୁଳ ସହଦେବ ଚାରି
ଇନ୍ଦ୍ରର ପୁତ୍ର ଅର୍ଜୁନ ଅଟେ ଧନୁର୍ଦ୍ଧାରୀ ।
ହର ଉଦ୍ୟାନ ବନରେ ଶିବଙ୍କୁ ଜିଣିଲା
କିଞ୍ଚିତ ସେବାରେ ପାର୍ବତୀଙ୍କୁ ମନାଇଲା ।
ଅକ୍ଷୟ ତୂଣୀର ପାଶୁପତ ନେଲା ମାଗି
ମହାଦେବୀ ବୋଇଲେ ଯେ ଈଶ୍ୱରଙ୍କୁ ରାଗି ।
କୋଟିଏ ଈଶ୍ୱର ହେଲେ ନ ଜିଣିବେ ତୋତେ
ହିମବନ୍ତ ସୂତା ବର ଦେଲେ ଏହିମତେ ।
ଇନ୍ଦ୍ରର ଖାଣ୍ଡବବନ ଅନଳକୁ ଦେଲା
ଇନ୍ଦ୍ର ଦେବତା ଯୁଦ୍ଧରେ ତାହାଙ୍କୁ ହାରିଲା ।
ତୋଷେ ଦେବଶରମାନ ଦେଲା ବୈଶ୍ୱାନର
ହରି ବଳରାମଙ୍କୁ ସେ ଜିଣିଲେ ଆବର ।
ଦେବ ଦାନବ ମାନବେ ଅବଧ୍ୟ ଅଟନ୍ତି
ବନରେ ପଶିଣ ଦୁଷ୍ଟ ଦାନବ ମାରନ୍ତି ।
ସାକ୍ଷାତେ ଧର୍ମ ଦେବତା ଯୁଧିଷ୍ଠି ରାଜନ
ଭୀମସେନ ଅଟଇ ଯେ ପବନ ନନ୍ଦନ ।
ପବନ ପ୍ରାୟ ବଳିଷ୍ଠ ଅଟଇ ଯେ ବୀର
ଅପ୍ରମିତ ମହିମା ଯେ ଅଟେ ତାହାଙ୍କର ।
ମଗଧ ଦେଶର ରାଜା ଜରାସନ୍ଧ ରାୟେ
ଏକଲକ୍ଷ ରାଜାଙ୍କୁ ଯେ ବନ୍ଦୀକରି ଥାଏ ।
ରାମକୃଷ୍ଣ ବୋଲି ବସୁଦେବର ତନୟ
ମଥୁରାପୁରେ ଅଛଇ ଉଗ୍ରସେନ ରାୟ ।
ଉଗ୍ରସେନର ପୁତ୍ର ଯେ କଂସ ମହାରାଣ
ଅତି ଉତ୍ପାତ ହୋଇଣ ହୋଇଲା ରାଜନ ।
ଜରାସନ୍ଧର ଦୁହିତା ହେତି ଯେ ପ୍ରହେତି
ତାହାଙ୍କୁ ବିଭା ହୋଇଲା କାଂସ ନରପତି ।
ଉଗ୍ରସେନର ଦେବକୀ ନାମରେ କୁମାରୀ
ବସୁଦେବଙ୍କୁ ଯେ ବିଭା ହେଲା ଦଣ୍ଡିଧାରୀ ।
କଂସକୁ ନାରଦ କହେ ଗୁପତ ବଚନ
ଭଣଜାର ହସ୍ତେ ତୁହି ହୋଇବୁ ନିଧନ ।
ତାହା ଶୁଣି କଂସ ମନେ ବଡ଼ କୋପ କଲା
ଷଡ଼ଗୋଟି ଭଣଜାଙ୍କୁ ହାତେ କଚାଡ଼ିଲା ।
ରାମକୃଷ୍ଣ ବସୁଦେବ ଚୋରାଇଣ ନେଲା
ଗୋପପୁରେ ନନ୍ଦଘରେ ଛାଡ଼ିଣ ଅଇଲା ।
ଆଠ ବରଷ ବଢ଼ିଲେ ତହିଁ ରାମହରି
ତାଙ୍କୁ ଘେନାଇ ଅଇଲା କଂସ ଦଣ୍ଡଧାରୀ ।
ଧନୁ ଉତ୍ସବ ଯାତ୍ରା ସେ ଗୋଟିଏ ଭିଆଇ
ଗୁପତେ ଅକ୍ରୁର ପେଶି ଅଇଲା ଗେନାଇ ।
ଦେଖିଲା ମାତ୍ରକେ କଂସ ହେଲା ପ୍ରାଣେ ନାଶ
ଝିଅ କାନ୍ଦି କହିଲେ ଯେ ଜରାସନ୍ଧ ପାଶ ।
କ୍ରୋଧରେ ଅଠରବେଳ ଧାଡ଼ି ସେହୁ ଦେଲା
ମଥୁରାକୁ ରାମକୃଷ୍ଣ ଘେନି ପଳାଇଲା ।
ଡରେ ଲୁଚି ଅଛନ୍ତି ଯେ ଦ୍ୱାରାବତୀପୁର
ଜରାସନ୍ଧ ରାଜା ଗୋଟେ ଅଟେ ବଳୀୟାର ।
ତାହା ଶୁଣି ପ୍ରୋଢ଼ାସୁର ହସିଣ ଉଠିଲା
ସଖୀ ମୁଖ ଚାହିଁ କରି ବଚନ ଭାଷିଲା ।
ଏହିରୂପେ କଥାଯାକ ଶୁଣିଲେ ଶ୍ରବଣେ
ଆନ ରାଜାଙ୍କର କଥା କହ ଜଣେ ଜଣେ ।
କୃପାଳୁ ମନ୍ତ୍ରୀ କହଇ ତହୁଁ ଦିବ୍ୟବାଣୀ
ଗୋଟି ଗୋଟି କରି ରାଜାମାନଙ୍କୁ ବଖାଣି ।
ଶୁଣି ଥରହର ହୋଇ କମ୍ପିଲା ଅସୁର
ରାଜାଙ୍କର କଥା ଶୁଣି କୋପେ ଗୁରୁତର ।
ମନ୍ତ୍ରୀକି ବୋଇଲା ତୁହୋ ସବୁକଥା ଛାଡ଼
ମୋହର କଥାକୁ ତୁହି ମନେ କର ଦୃଢ଼ ।
ସୈନ୍ୟବଳ ମୋର ତୁହୋ ବେଗେ ସଜକର
କରିବି ମୁଁ ଦିଗବିଜେ ମର୍ତ୍ତ୍ୟମଣ୍ଡଳର ।
ଦାଣ୍ଡରେ ଦାଉଣ୍ଡି ମୋର ବାଜୁ ଏହିକ୍ଷଣ
ଶଙ୍ଖ ଯେ ମହୁରୀ ଆଦି ବାଜୁ ଘନ ଘନ ।
ଏହା ଶୁଣିକରି ମନ୍ତ୍ରୀ ବେଗେ ଚଳିଗଲା
ଦାଉଣ୍ଡି ଦିଆଅ ବୋଲି ଡଗରେ କହିଲା ।
ମନ୍ତ୍ରୀ ବଚନେ ଡଗରମାନେ ଚଳିଗଲେ
ଦାଉଣ୍ଡି ଦେବାକୁ ଯାଇଁ ରାଜ୍ୟରେ କହିଲେ ।
ବନ୍ଦଇ ଶ୍ରୀ ଗଣନାଥ ଗଉରୀ ନନ୍ଦନ
ଶରୀରକୁ ଶୋଭାପାଏ ଗଜର ବଦନ ।
ଉପାୟ ଝଟକେ ବିଶ୍ୱନାଥଙ୍କୁ ଭଣ୍ଡିଲୁ
ଅମୃତଲଡ୍ଡୁ ଗୋଟା ତୁ କୌଶଳରେ ନେଲୁ ।

ଉତ୍ସବ କାଳରେ ତୋତେ କରନ୍ତି ବନ୍ଦନା
ଯାତ୍ରାରକାଳେ କରନ୍ତି ତୋତେ ସୁମରଣା ।
ବାକ୍ୟଦେବୀ ସେହି ସର୍ବବିଦ୍ୟା ସାଧ୍ୟ କଲୁ
ତେଣୁ ଗଣନାଥ ନାମ ଗୋଟି ଯେ ପାଇଲୁ ।
ଶ୍ରୀ ଗୁରୀନନ୍ଦନରେ ଚରଣେ ମୋ ଆଶ
ବାକ୍ୟ ନ ସ୍ଫୁରୁଛି ଆଜ୍ଞା ଦିଅ ହରିଶିଷ୍ୟ ।
ତେଣୁ ତୋହର ଚରଣ ତଳେ ଜଣାଉଛି
କବି ଶାରଳା ଦାସକୁ ରଖ ହରବସି ।

—୦—

## ପୌଣ୍ଡ୍ରାସୁରର ଦିଗ୍‌ବିଜୟ

ଶୁଣ ଆହେ ମନୁରାଜା କହନ୍ତି ଅଗସ୍ତି
ଏକମନେ ଶୁଣ ତୁମ୍ଭେ ମଧ୍ୟପର୍ବ ରୀତି ।
ତୁହି ଯେବେ ପଚାରିଲୁ ପୌଣ୍ଡ୍ରାସୁର କଥା
ଏକ ମନେ ଶୁଣି ହୃଦୁ ଦୂରକଥା ବ୍ୟଥା ।
ଦାଉଣ୍ଡି ବାଜନ୍ତେ ଦୈତ୍ୟବଳ ଯେ ଶୁଣିଲେ
ଯେଯାହାର ମତେ ସୈନ୍ୟ ସକଳ ସାଜିଲେ ।
ହାଥୀ ରଥ୍ ଅଶ୍ୱ ଚଢ଼ି ହୋଇଲେ ବାହାର
ଊଲାଖ ଉଦ୍ଦଣ୍ଡମାନ ଉଡ଼େ ଫରହର ।
ଅଇଲେ ପୁଣି ପଦାତି ବଳ ସଜହୋଇ
ତାଙ୍କ ମୁଖ ଶବଦରେ ସିନ୍ଧୁ ଉଚ୍ଛୁଳଇ ।
ତେର ଲକ୍ଷ ରଥୀ ତହିଁ ହୋଇଲେ ବାହାର
ଚଉଦ କୋଟି ଯେ ଗଜ ଅତି ଚମକ୍ରାର ।
ଅଶ୍ୱ ଚଢ଼ିଲେ ଅଠର ଲକ୍ଷ ଅସୁଆର
ଅଶ୍ୱ ଧୂଆଁଇଣ ଉଭା ହେଲେ ସିଂହଦ୍ୱାର ।
ବାଇଶି ଲକ୍ଷ ପଦାତି ବଳ ହେଲେ ସଜ
ଅଦୃଶ୍ୟ ହେଲେ ଅସୁର ଛାଇରେ ସେ ସୂର୍ଯ୍ୟ ।
ଲକ୍ଷେ ବାଦ୍ୟକାର ତହିଁ ବଜାନ୍ତି ଯେ ବାଦ୍ୟ
ବାଦ୍ୟନାଦ ଘାତରେ ଯେ ପୃଥିବୀ ସ୍ତବଧ ।
ସହସ୍ରେକ ଶଙ୍ଖ ଆଉ ସହସ୍ରେ ମହୁରୀ
ଏହାଙ୍କର ଶବଦରେ ପୃଥ୍ୱୀ ଅଛି ପୂରି ।
ଆପେ ମନ୍ତ୍ରୀବର ରଥ ଗୋଟିଏ ସାଜିଲା
ଦିବ୍ୟବେଶ ହୋଇ ରାଜା ଛାମୁରେ ମିଳିଲା ।
ନମସ୍କାର କରି ମନ୍ତ୍ରୀ କହଇ ବଚନ
ସଜ ହୋଇଣ ଅଇଲେ ଏ ତୋହର ସୈନ୍ୟ ।
ସମସ୍ତ ସିଂହ ଦ୍ୱାରରେ ଛନ୍ତି ଉଭାହୋଇ
ଦିବ୍ୟରଥ ସଜ କରି ଅଛନ୍ତି ରଖାଇ ।
ଆପଣ ଯେ ବେଶ ହୋଇ ତହିଁ ବିଜେ କର
ଯହିଁକି ମନ ତହିଁକି ଯାଅ ନୃପବର ।
ମନ୍ତ୍ରୀର ମୁଖରୁ ରାଜା ଏସନକ ଶୁଣି
ଆପେ ସଜ ହୋଇ ଆସେ ଦୈତ୍ୟ କୁଳମଣି ।

କର୍ଣ୍ଣରେ କୁଣ୍ଡଳ କଣ୍ଠେ କଣ୍ଠମାଳ ନାଇ
ପାଗପାଛୋଟା ଗଣ୍ଠା ସେ ଦେହରେ ବେଢ଼ାଇ ।
ହୃଦରେ ପଦକ ସେହୁ ଲମ୍ୱାଇ ନୃବର
ଚନ୍ଦନରେ ତିଳକ ଯେ ଘେନିଲା ଶରୀର ।
ବୀର ଊଲାଖ ଉଦ୍ଦଣ୍ଡ ଉଡ଼ଇ ଆଗରେ
ଅନୁକୂଳ କରି ରାଜା ବସିଲା ରଥରେ ।
ଆଠ ଅଶ୍ୱ ନେଇ ପୁଣି ଯୋଚିଲା ରଥରେ
ମନ୍ତ୍ରୀକି ଘେନି ଅସୁର ବସିଲା ତହିଁରେ ।
ରାଜାଙ୍କୁ ଚାହିଁଣ ମନ୍ତ୍ରୀ ବୋଲଇ ବଚନ
କେବଣ ଦିଗକୁ ଏବେ କରିବା ଗମନ ।
ମନ୍ତ୍ରୀର ବଚନେ କହୁଅଛି ପ୍ରୌଣ୍ଡ୍ରାସୁର
ହସ୍ତିନା ରାଜ୍ୟଯିବାକୁ କରଇ ବିଚାର ।
ବେନି କରଯୋଡ଼ି ମନ୍ତ୍ରୀବର ଯେ କହଇ
ଦୋଷ କ୍ଷମାକର ମୁହିଁ ଛାମୁରେ ଜଣାଇ ।
ରାଜା ବୋଲେ ତୋର ଦୋଷ କଲି ମୁହିଁ କ୍ଷମା
ନିର୍ଭୟ ହୋଇଣ କହ ମନ୍ତ୍ରୀଙ୍କ ଉତ୍ତମା ।
କରଯୋଡ଼ି ମନ୍ତ୍ରୀ କହେ ରାଜାର ଛାମୁରେ
ସାବଧାନ ହୋଇ ତୁମ୍ଭେ ଶୁଣ ନୃପବରେ ।
କପିଳାସ କନ୍ଦରେ କେ ତୋତେ ଦେଲା ବର
ଏଥିର ଚରିତ କହ ମୋର ଅଗ୍ରତର ।
ମନ୍ତ୍ରୀର ବଚନେ ପୁଣ କହେ ନୃପରାଣ
ଈଶ୍ୱରଙ୍କ ପୁତ୍ରଙ୍କୁ ମୁଁ ସେବାରେ ତୋଷିଣ ।
ସେ ମୋତେ ପ୍ରସନ୍ନେ ବର ଦେଇଣ ଅଛନ୍ତି
ଦେବ ଦାନବ କେ ସରି ନୋହିବ ଏ ପୃଥ୍ୱୀ ।
ମନ୍ତ୍ରୀ ବୋଲେ ଯାହା ଏବେ କହଇ ଛାମୁରେ
ମୋହର କଥା ଏବେ ତୁ ଶୁଣ ନୃପବରେ ।
କଉରବ ବଳ ତୁହି ନ ପାରିବୁ ଜିଣି
ପାଣ୍ଡବ ଅର୍ଜୁନ ତହିଁ ଅଛି ବୀରମଣି ।
ଯାହାକୁ ଈଶ୍ୱର ଦେଇ ଅଛନ୍ତିଟି ବର
ତାହାକୁ ଜିଣନ୍ତା ନାହିଁ କେହି ତିନିପୁର ।
ଆବର କଥାଏ ଦେବ ଅଛଇ ତହିଁରେ
ଅକ୍ଷୟ ତୂଣୀର ପାଶୁପତ ଅଛି କରେ ।
ଆଗରୁ ତୁମ୍ଭ ଛାମୁରେ କହୁଅଛି ମୁହିଁ
ମୋ ବଚନ ନ ପାଶୋର ତୁହୋ ନୃପସାଇଁ ।
ସେ କାର୍ତ୍ତିକେଶ୍ୱର ସିନା ତାହାଙ୍କ କୁମର
ଯାହାକୁ ଏଡ଼େ ସୁଦୟା ଅଛି ପିତାଙ୍କର ।
ମୋହର ବୋଲ ତୁ ଯେବେ ନ କରିବୁ ରାୟ
କାର୍ଯ୍ୟ କିଛି ନୋହିବଟି ହୋଇବ ଅଜୟ ।
ପୁରୁଷାନୁକ୍ରମେ ଅଟେ ମୁଁ ସେବକ ତୋର
ହସ୍ତିନା ଯିବା ମନକୁ ନ ଯୋଗାଏ ମୋର ।

ମନ୍ତ୍ରୀର ବଚନ ରାଜା ମନରେ ଘେନିଲା
ହୃଦୟ ମଧ୍ୟରେ ତାର କଥାକୁ ଭାଳିଲା ।
ମନ୍ତ୍ରୀର ବୋଲଟି ଯେବେ ନ କରିବି ମୁହିଁ
କେମନ୍ତେ ମୁଁ ସୁଖେ ରାଜ୍ୟ ଭୋଗ କରିବଇଁ ।
କୁଞ୍ଜଗଳ ଦେଶକୁ ତ କରିଥିଲା ମନ
ପୁଣି ପଚାରେ ଅସୁର ମନ୍ତ୍ରୀକି ଚାହିଁଣ ।
କେଉଁଠାକୁ ଆମ୍ଭେ ଏବେ କରିବା ପଲାଣି
ଏଥିର ଉପାୟ ତୁହି କହ ମନ୍ତ୍ରୀମଣି ।
ମନ୍ତ୍ରୀ ଯେ ବୋଇଲା ଏବେ କଥାଏ କରିବା
ଦଣ୍ଡ ସାଜିକରି ଆମ୍ଭେ ଚଳାଇଣ ଥିବା ।
ଆମ୍ଭଙ୍କ ସନ୍ଧାନ ଆଣି ଯେଉଁଲୋକ ଦେବ
ତାହା ସଙ୍ଗେ ନ କରିବା କେବେ ଦ୍ୱନ୍ଦ୍ୱଭାବ ।
ଆମ୍ଭର ସଙ୍ଗତେ ଯେହୁ କରିବ ସମର
ଆମ୍ଭେ ଯେକରିବା ଦ୍ୱନ୍ଦ୍ୱଗୋଳ ତା ସଙ୍ଗର ।
ଏମନ୍ତ ବୋଲିଣ ମନ୍ତ୍ରୀ କହିଲା ମଣାଇଁ
ଥାଟ ଚଳାଇଣ ରାଜା ଯାଏ ବେଗହୋଇ ।
ଅଳମ୍ବୁଷା ରାଜ୍ୟରୁ ଏ ବାହାରିଣ ଗଲେ
କଇଳାସ କନ୍ଦରକୁ ପ୍ରଦକ୍ଷଣ କଲେ ।
ବାଦ୍ୟ ନାଦ ଶବଦରେ କମ୍ପେ ମହୀସ୍ଥଳୀ
ସ୍ୱର୍ଗ ମଣ୍ଡଳରେ ପଡ଼ିଗଲା ହାଲହୋଳି ।
ସ୍ୱର୍ଗପୁରେ ଦେବତାଏ ମହାଭୟ କଲେ
ରାକ୍ଷସ ସୈନ୍ୟ ବାହିଲା ବୋଲିଣ ଡରିଲେ ।
ନାରଦଙ୍କୁ ରାଇକରି ବୋଲେ ପୁରନ୍ଦର
ଦିଗବିଜେ କରି ତହିଁ ଯାଉଛି ଅସୁର ।
ନ ପୁଣ ସ୍ୱର୍ଗପୁରକୁ ଯେ ଧାଡ଼ି ଦିଅଇ
ତୁମ୍ଭେ ଯାଇଣ ତଦନ୍ତ ବୁଝ ନରସାଇଁ ।
ଇନ୍ଦ୍ର ବଚନେ ନାରଦ ମୁନି ଚଳିଗଲେ
ପ୍ରୌଢ଼ାସୁରର ଆଗରେ ଯାଇଣ ମିଳିଲେ ।
ନାରଦଙ୍କୁ ଦେଖି ପ୍ରୌଢ଼ା ରଥୁ ଓହ୍ଲାଇଲା
ଚରଣ ତଳରେ ପଡ଼ି ନମସ୍କାର କଲା ।
ବୋଇଲା ଗୋସାଇଁ ତୁମ୍ଭେ କେଉଁଠାରେ ଥିଲେ
ମୋହର ଭାଗ୍ୟକୁ ସିନା ଆସି ଦେଖାହେଲ ।
ନାରଦ ବୋଇଲେ ତୁମ୍ଭେ ଆମ୍ଭ କଲ୍ୟାଣରେ
ଯୁଗେ ଯୁଗେ ରହିଥାଅ ଆରୋଗ୍ୟ ଶରୀରେ ।
କଲ୍ୟାଣ କରିଣ ତାକୁ ପଚାରନ୍ତି ମୁନି
କି ନିମନ୍ତେ ଦିଗବିଜେ କରୁ ନୃପମଣି ।
ସ୍ୱର୍ଗକୁ ତୁ ଯିବୁ ଅବା ପାତାଳକୁ ଯିବୁ
ମଞ୍ଚ ଭୁବନରେ କିବା ରହି ଭ୍ରମୁଥିବୁ ।
ଏଥିରେ ସନ୍ଦେହ ତୁହି କହ ମୋର ଆଗେ
ଆମ୍ଭେ ତହିଁ ଥାଇ କିନା ତୋହର ଯେ ସଙ୍ଗେ ।

ନାରଦଙ୍କ ବଚନରେ କହେ ପ୍ରୌଢ଼ାସୁର
ଥରେ ମାତ୍ର ଭ୍ରମିବି ମୁଁ ମଞ୍ଚମଣ୍ଡଳର ।
ଏତେ କହି ରାଜା ଯାଇ ରଥରେ ବସିଲା
ନାରଦଙ୍କ ହାତ ଧରି ପାଖେ ବସାଇଲା ।
ସମଦଣ୍ଡ ଘେନି ରାଜା ଦକ୍ଷିଣ ଚଳଇ
ବିକଟାଳ ହୋଇ ବାଦ୍ୟନାଦ ଯେ ଶୁଭଇ ।
କନାଉଜ ଦେଶ ରାଜା ନାମ କାମେଶ୍ୱର
ବାରତା ପାଇଣ ସେହୁ କରଇ ବିଚାର ।
ପ୍ରୌଢ଼ାସୁର ବାହିବାର ଡଗର କହିଲା
ମନ୍ତ୍ରୀକୁ ପାଶେ ବସାଇ ରାଜା ପଚାରିଲା ।
ସମାଧାନ ହୋଇ ତାକୁ ଭକତି କରିବା
ତାହାର ସଙ୍ଗରେ ଦ୍ୱନ୍ଦ୍ୱ କଲେଟି ହାରିବା ।
ଧନଦେଇ ସନ୍ଧିକରି ବୋଧ ତାକୁ ଦେଇ
ନିଶ୍ଚିନ୍ତ ହୋଇ ରାଜ୍ୟରେ ଥିବା ଆମ୍ଭେ ରହି ।
ମନ୍ତ୍ରୀର ବଚନେ ରାଜା ସନମତ କଲା
ଏକଶତ ରଥ ପାଣି ଦ୍ରବ୍ୟ ପୂରାଇଲା ।
ଅନେକ କଲା ବିନୟ ଭକତି ତାହାକୁ
ଧନ ପାଇଣ ଅସୁର ଡକାଇ ପାଶକୁ ।
ଗଉରବ କରି ତହିଁ ଚଳାଇଲା ଥାଟ
ବିରାଳ ଦେଶେ ମିଳିଲା ଅସୁର ମୁକୁଟ ।
ଡଗର କହିଲା ଯାଇ ରାଜା ସନ୍ନିଧାନେ
ପ୍ରୌଢ଼ାଅସୁର ପଶିଲା ଆମ୍ଭର ଭୁବନେ ।
ଶୁଣିଣ କେଦାରେଶ୍ୱର ହୋଇଲା ଆରତ
କି ବୁଦ୍ଧି କରିବି ବୋଲି ବିଚାରିଲା ଚିତ୍ତ ।
ଏକାନ୍ତରେ ମନ୍ତ୍ରୀକି ସେ ପାଶକୁ ରାଇଲା
ପ୍ରୌଢ଼ାଅସୁର ଆମ୍ଭର ରାଜ୍ୟକୁ ବାହିଲା ।
କି ବୁଦ୍ଧି କରିବା ଏବେ କହ ତୁ ବିଚାରି
ରାଜା ବଚନେ କହଇ ମନ୍ତ୍ରୀ ଭାଳିକରି ।
ଧନ ଦେଇଣ ତାହାକୁ ପ୍ରବୋଧ କରିବା
ଯୁଦ୍ଧରେ ତାହାକୁ ଆମ୍ଭେ ଜିଣି ନ ପାରିବା ।
ମନ୍ତ୍ରୀର ବଚନେ ରାଜା ପାଣିଦ୍ରବ୍ୟ ଘେନି
ଅସୁର ଛାମୁରେ ଥୋଇଦେଇ ନୃପମଣି ।
ମସ୍ତକରେ ହସ୍ତ ଦେଇ କରଇ ବିନୟ
ସବୁଦିନେ ମୋହଠାରେ ଦୟା ରଖିଥାଅ ।
କେଦାରେଶ୍ୱର ମୁଖରୁ ଏସନକ ଶୁଣି
ପ୍ରୌଢ଼ାଅସୁର ଯେ ତହୁଁ ମନେ ମନେ ଗୁଣି ।
କେଦାରେଶ୍ୱର ଭକତି ହୋଇଲାକ ମୋତେ
ଏହାକୁ ଯେ କୋପ ମୁହିଁ କରିବି କେମନ୍ତେ ।
ଅନେକ ସମ୍ପତ୍ତି ରାଜା ପୌଢ଼ାସୁରେ ଦେଲା
ସେଠାବରୁ ପ୍ରୌଢ଼ାସୁର ବାହୁଡ଼ିଣ ଗଲା ।

ସେଠାବରୁ ପ୍ରୌଢ଼ାସୁର ବାହୁଡ଼ି ବହନ
ମଞ୍ଚପୁର ରାଜ୍ୟରେ ସେ କରଇ ପ୍ରୟାଣ ।
ବାରତା ପାଇଣ ମଞ୍ଚପୁର ରାଜାଗଣେ
ସମାଧାନ ଦେଇଣ ସେ ଭେଟନ୍ତି ତକ୍ଷଣେ ।
କେବଣଠାରେ ଅସୁର ଯୁଦ୍ଧ ନ ପାଇଲା
ସବୁଠାରେ ସମାଧାନ ଭକତି ପାଇଲା ।
ଏହିପରି ଚୌରାଅଶୀ ସସ୍ରରାଜା ଜିଣି
କାହାରିଠାରୁ ସେ ନ ପାଇଲା ଯୁଦ୍ଧବାଣୀ ।
ମଞ୍ଚମଣ୍ଡଳରେ ଛୟାଣୋଇ ସସ୍ର ରାୟେ
ଆଉ ରାଜାମାନେ କେତେ ବୋଲି କୋପେ କହେ ।
ମନ୍ତ୍ରୀକି ବୋଲେ ଛନ୍ତି ଯେଉଁ ବାରସସ୍ର ରାୟେ
ଆଉ ରାଜାମାନେ କେତେ ବୋଲି କୋପେ କହେ ।
ମନ୍ତ୍ରୀ ବୋଲେ ଜିଣିଲି ଏବେ ନୃପବର
ଆବର କେତେ ଅଛନ୍ତି କହ ମୋତେ ଧୀର ।
ମନ୍ତ୍ରୀ ବୋଲେ ଛନ୍ତି ଯେଉଁ ବାରସସ୍ର ରାୟେ
ଏହାଙ୍କୁ ଜିଣିଲେ ତୋତେ ପୃଥ୍ୱୀଭୋଗ ହୁଏ ।
ମନ୍ତ୍ରୀ ମୁଖୁଁ ଶୁଣି ବୋଲେ ଦୈତ୍ୟକୁଳ ବୀର
ତାହାଙ୍କ ରାଜ୍ୟ ତ ମୋତେ ନୁହଁଇ ଗୋଚର ।
ସେ ରାଜାମାନଙ୍କ ଘର କେବଣ ରାଜ୍ୟରେ
ନାମ ଧରି ମୋତେ କହୁ କିମ୍ପା ମନ୍ତ୍ରୀବରେ ।
ତୁହି ଯେ କୃପାଳୁ ମନ୍ତ୍ରୀ ଅଟୁ ଗୁଣବନ୍ତ
ତୋ ବଚନ ନ ଲଙ୍ଘଇ ମୁହିଁ କଦାଚିତ ।
ରାଜାର ବଚନେ ମନ୍ତ୍ରୀ କହେ କରଯୋଡ଼ି
ସାବଧାନ ହୋଇ ତୁମ୍ଭେ ଶୁଣ ଦଣ୍ଡଧାରୀ ।
ରାଜାମାନଙ୍କ କଥା ଯେ ପଚାରିଲୁ ମୋତେ
ଜଣ ଜଣ କରି କହେ ତୋହର ଅଗ୍ରତେ ।
ତାହାଙ୍କର ନାମ ଏବେ ଶୁଣ ଦୈତ୍ୟରାୟ
ଏକୁ ଏକ ବଳି ଏହି ଅଟନ୍ତି ଦୁର୍ଜ୍ଜୟ ।
ଦକ୍ଷିଣ ଦିଗରେ ମହୋଦଧିର ସେପାରି
ଲଙ୍କା ନାମରେ ଅଛଇ ସେହି ଏକ ପୁରୀ ।
ରାବଣ ନାମରେ ତହିଁ ରାଜା ଏକ ଥିଲା
ଦେବଙ୍କ ସହିତେ ସେହି ବିବାଦି ହୋଇଲା ।
ତାହାଙ୍କ ଭୟରେ ଦେବେ ସ୍ୱର୍ଗେ ନ ରହନ୍ତି
ଭୃତ୍ୟଭାବେ ରହି ସର୍ବେ ରାବଣେ ଖଟନ୍ତି ।
ଛପନକୋଟି ଯୁଗକୁ ଆୟୁଷ ତାହାର
ତୋଷେ କୁଶଧର ତାକୁ ଦେଇଥିଲେ ବର ।
ତାର ଉପଦ୍ରବ୍ୟ ଦେବେ ସହି ନ ପାରିଲେ
ବିଷ୍ଣୁର ଛାମୁରେ ଯାଇ ଗୁହାରି କରିଲେ ।
ମର୍ତ୍ତ୍ୟପୁରେ ନାରାୟଣ ଶ୍ରୀରାମ ରୂପରେ
ଜନମ ହୋଇଲେ ଯାଇ ଦଶରଥ ଘରେ ।
ଭାଇ ଭାରିଯାକୁ ଘେନି ରାଜ୍ୟ ଛାଡ଼ିଗଲେ
ଦଣ୍ଡକାରଣ୍ୟେ କୁଡ଼ିଆ କରିଣ ରହିଲେ ।
ଶ୍ରୀରାମ ଭାରିଯା ସୀତା ଅଟେ ମହାସତୀ
ବାରତା ପାଇ ଚୋରାଇ ନେଲା ଲଙ୍କପତି ।
ଋଷି କପିବଳ ଜୁଣ୍ଡ କରି ରାମ ଗଲେ
ବୃକ୍ଷ ପଥର ବୁହାଇ ସାଗର ପୋତିଲେ ।
ରାବଣର ଭାଇ ନାମ ଅଟେ ବିଭୀଷଣ
ସେ ଆସି ରାମର ପାଶେ ପଶିଲା ଶରଣ ।
ତାହାଙ୍କୁ ଶ୍ରୀରାମ ଲଙ୍କାରାଜ୍ୟେ ରାଜାକଲେ
ରାବଣର ବଂଶଯାକ ମାରି ପକାଇଲେ ।
ବାଆସ୍ତରୀ କୁମର ଯେ ତେରଶତ ନାତି
ଏକେ ଏକେ ତିନିପୁର ସାଧି ସେ ପାରନ୍ତି ।
କୁମ୍ଭକର୍ଣ୍ଣ ନାମେ ତାର ଥିଲା ଏକ ଭାଇ
ଚଉଦ ଭୁବନେ ବୀର ତା ସମାନ ନାହିଁ ।
ଇନ୍ଦ୍ରଜିତ ବୋଲି ତାର ଏକଇ କୁମର
ମେଘରେ ଲୁଚି କରଇ ସେ ବୀର ସମର ।
ସେ ବୀର ଗୋଟା ଲକ୍ଷ୍ମଣ ହାତେ ପ୍ରାଣଦେଲା
ରାବଣର ଦଶମୁଣ୍ଡ ଶ୍ରୀରାମ ଛେଦିଲା ।
ବୀଭୀଷଣଙ୍କୁ ଲଙ୍କାରେ କରିଣ ନୃପତି
ବୋଇଲା ତୁ ଯୁଗେ ଯୁଗେ ଥିବୁ ଏହିମତି ।
ସେ ରାଜାଙ୍କୁ ତହୁଁ ଜିଣି ନ ପାରିବୁ ଭଲେ
ବିଷ୍ଣୁର ଭକତି ସେହି ଅଛି କାଳେ କାଳେ ।
ଆବର ରାଜାଙ୍କ ନାମ କହୁଅଛି ଶୁଣ
କିଷ୍କିନ୍ଧ୍ୟା ରାଜ୍ୟରେ ଥିଲା ବାଳି ମହାରାଣ ।
ନାହିଁ ନୋହିବ ତା ତୁଲ୍ୟ ବଳବନ୍ତ କେହି
ସୁଗ୍ରୀବ ନାମେ ବାନର ତାର ସାନଭାଇ ।
ବାଳି ରାଜ୍ୟରୁ ବାହାର କରିଦେଲା ତାକୁ
ପଳାଇଗଲା ସେ ଋଷ୍ୟମୁକ ପର୍ବତକୁ ।
ଶ୍ରୀରାମ ସଙ୍ଗେ ମଇତ୍ର ହୋଇଲା ସେ ବୀର
ମିତ୍ରଛଳେ ବାଳି ବଧ କଲେ ରଘୁବୀର ।
ତାହାର ନନ୍ଦନ ନାମ ରାଜା ସରୋବନ୍ତ
ଶ୍ରୀରାମ ବଳେ ସେହି ମହାବଳବନ୍ତ ।
ତାହାତୁଲେ ଯୁଦ୍ଧକଲେ ନାହିଁ ତୋର ଜୟ
ଜୟଦ୍ରଥ ନାମେ ଅଛି ସିନ୍ଧୁଦେଶ ରାୟ ।
ଦମଘୋଷ ନାମେ ଏକ ନୃପତି ଅଛଇ
ସପତ ସମୁଦ୍ର ରାଜା ବରୁଣ ଅଟଇ ।
ପାତାଳପୁରେ ବାସୁକୀ ନାମେ ନାଗରାଜା
ସ୍ୱର୍ଗପୁରେ ଦେବରାଜା ଅଟଇ ବିଡ଼ୋଜା ।
କାର୍ତ୍ତିକ ଈଶ୍ୱର ତୋତେ ମନା କରିଛନ୍ତି
ଯମରାଜା ସହିତରେ ନୋହିବୁ ଅପ୍ରୀତି ।

ମଥୁରା କଟକେ ଅଛି ଉଗ୍ରସେନ ରାୟେ
ହରି ବଳରାମଙ୍କର ଅଜା ସେହୁ ହୁଏ ।
ଆବର ରାଜାଏ ଅଛି ନାମ ମୃଗସେନ
ବେଦବ୍ୟାସ ଋଷିଙ୍କର ଅଟନ୍ତି ନନ୍ଦନ ।
ବ୍ୟାସ ଚରିତ ଶୁଣିଣ ଦୈତ୍ୟ କୋପ କଲା
ମନ୍ତ୍ରୀକୁ ଚାହିଁଣ ସେହୁ ବଚନ ବୋଇଲା ।
ଅନ୍ୟ ରାଜାଙ୍କ ଚରିତ କହ ତୁହି ପଛେ
ମୃଗସେନ ରାଜା କଥା କହ ତୁ ପ୍ରତ୍ୟକ୍ଷେ ।
ଥାଟ ସୈନ୍ୟ ନାହିଁ ଏକା କରଇ ସମର
ଧନୁ ଏକ ନାରାଚେକ ଥାଇ ତାର କର ।
ମନ୍ତ୍ରୀର କହନ୍ତେ ପ୍ରୌଢ଼ା ହସିଣ ଉଠିଲା
ମୃଗସେନ ବୋଲି କିମ୍ପା ନାମ ସେ ବହିଲା ।
କୃପାଳୁ ମନ୍ତ୍ରୀ କହଇ ଶୁଣ ହେ ରାଜନ
ମୃଗୁଣୀକି ହରିଲା ସେ ବ୍ୟାସ ତପୋଧନ ।
ସଇନ୍ଦୁ ପୁତ୍ର ଜନମ ତା ଗର୍ଭୁ ହୋଇଲା
ତେଣୁ ଏହି ମୃଗସେନ ନାମ ବୋଲାଇଲା ।
ବ୍ୟାସ ପ୍ରସାଦେ କାହାକୁ ସେହି ନ ଡରଇ
ନିର୍ଭୟେ ହୋଇଣ ଗିରିଶିଖେ ରହିଥାଇ ।
ପ୍ରୌଢ଼ା ବୋଇଲା ତା ସଙ୍ଗେ ଯୁଦ୍ଧ ନ କରିବା
ଦଣ୍ଡ ଘେନି ପର୍ବତକୁ ଆମ୍ଭେ କି ହୋ ଯିବା ।
ମନ୍ତ୍ରୀ ବୋଇଲା ନୁହଇ ଏମନ୍ତ ବିଚାର
ଋଷିଅଂଶେ ଜାତ ହୋଇଅଛି ନୃପବର ।
ପ୍ରୌଢ଼ାସୁର ମନ୍ତ୍ରୀ ଘେନି ବିଚାର କରନ୍ତି
ଏମନ୍ତ ବେଳେ ମିଳିଲେ ନାରଦ ଯେ ଯତି ।
ନାରଦଙ୍କୁ ଦେଖି ପ୍ରୌଢ଼ା ଅସୁର ଉଠିଲା
ଗଉରବ କରି ତାଙ୍କୁ ପାଶେ ବସାଇଲା ।
ଦିଗବିଜେ କଲି ମୁନି କଲ୍ୟାଣେ ତୁମ୍ଭର
ସବୁ ରାଜାଏ ଖଟିଲେ ଚରଣେ ମୋହର ।
ଏବେ ମୃଗସେନ ରାଜା ସଙ୍ଗେ ଯୁଝିବଇଁ
ନାରଦ ମୁନି ବୋଇଲେ ହୋଇଲୁକି ବାଇ ।
ବୃଥା କିମ୍ପା ଅପମାନ ପାଇବୁ ତୁ ରାୟ
ସେହି ଯେ ଅଟେ ବ୍ୟାସଋଷିଙ୍କ ତନୟ ।
ତାହାର ସଙ୍ଗରେ ତୋର ପ୍ରୀତି କରାଇବା
ଆମ୍ଭର ବଚନେ ଗୋଟି ନ ଭାଙ୍ଗରେ ବାବା ।
ପ୍ରୀତିପଣ ସିନା କାଳେ କାଳେ ରହିଥିବ
ତିନିଯୁଗ ପରିଯନ୍ତେ ଏ କଥା ରହିବ ।
ନାରଦ ବଚନ ଶୁଣି ଅସୁର ହସିଲା
ହେଉ ବୋଲିଣ ଆବର ସନମତ କଲା ।
ପ୍ରୌଢ଼ାସୁର ସନମତ ନାରଦ ଉଠିଲେ
ମୃଗସେନ ରାଜ୍ୟରେ ସେ ପ୍ରବେଶ ହୋଇଲେ ।

ନାରଦଙ୍କୁ ଦେଖିକରି ମୃଗସେନ ରାୟେ
ମୁନିଙ୍କ ଚରଣତଳେ କରଇ ବିନୟେ ।
କି କାର୍ଯ୍ୟେ ହେ ମୁନି ତବ ଏଥେ ଆଗମନ
ସଙ୍ଖୋଳିବାକୁ କି ମୋତେ ଆସେ ତପୋଧନ ।
ନାରଦ ବୋଇଲେ ଆମ୍ଭେ ଆସୁ ଯହିଁପାଇଁ
ତହିଁର ଚରିତ ତୁହି ଶୁଣ ମନଦେଇ ।
ପ୍ରୌଢ଼ାସୁର ନାମେ ଅଛି ଦନୁଜ ଗୋଟିଏ
ଦିଗବିଜେ କରି ଜିଣିଲା ସେ ସବୁ ରାୟେ ।
ବଡ଼ାଇ ଦର୍ପିଷ୍ଠ ସେହି ଅଟଇ ଅସୁର
ଦୁଷ୍ଟପଣେ ଜିଣିଲା ସେ ସବୁ ନୃପବର ।
ଏବେ ସେ ଅସୁର ତୋର ପୁରେ ଆସୁଅଛି
ଏହା କହିବାକୁ ଆମ୍ଭେ ଆସୁ ବ୍ୟାସବଛି ।
ଶୁଣି ମୃଗସେନ ରାୟେ କୋପଭର ହେଲା
କାହିଁ ସେହି ଅଛି ବୋଲି ମୁନିଙ୍କୁ ପୁଛିଲା ।
ମୁନି ବୋଇଲେ ସେ ଅଛି ବହୁତ ଦୂରରେ
ତୋତେ କହିବାକୁ ଆମ୍ଭେ ଆସିଲୁ ସତ୍ୱରେ ।
ଏବେ ସେହି ଆସି ତୋର ନିକଟେ ହେଲାଣି
କିସ ବିଚାରି କରିବୁ ତୁହି ନୃପମଣି ।
ମୃଗସେନ ବୋଲେ ସୈନ୍ୟବଳ ତା ନାଶିବି
ଏକା ବାଣକେ ତାହର ହୃଦ ବିଦାରିବି ।
ସମସ୍ତ ସୈନ୍ୟ କାରିବି ତାର ଧୂଳିପାଂଶୁ
କେତେବଳ ତାହାର ଯେ ଅଛି ସେହି ଆସୁ ।
ମୃଗସେନ କୋପ ହେବା ଦେଖି ମୁନିବର
କୋମଳ କରି କହନ୍ତି ବଚନ ମଧୁର ।
ବାବୁ ସମସ୍ତ ରାଜାଏ ସମାଧାନ ହେଲେ
ଅନେକ ପ୍ରକାରେ ତାକୁ ବିନୟେ କହିଲେ ।
ତୁହି ଏବେ କଥା ଏକ କର ନୃପବର
ଆମ୍ଭର ବଚନ ରାଜା ତୁହି ପ୍ରତିପାଳ ।
ଦୁଷ୍ଟ ସଙ୍ଗରେ କରିବା କିମ୍ପା ଦ୍ୱନ୍ଦ୍ୱକଳି
ବଚନ କର୍ତ୍ତବ୍ୟରେ ସେ ଯିବେ ସିନା ଚଳି ।
ତାହାର ସହିତେ ତୋତେ ପ୍ରୀତି କରାଇବା
ଦୁଇଜଣଙ୍କୁ ମଇତ୍ର କରାଇଣ ଦେବା ।
ବିନା କାରଣରେ ଏଥେ ନୋହୁ ଦ୍ୱନ୍ଦ୍ୱଗୋଳ
ଏଥକୁ ଦ୍ୱନ୍ଦ୍ୱ କାହିଁକି କରୁ ମହୀପାଳ ।
ମୁନିଙ୍କ ବଚନେ ମୃଗସେନ ଯେ ବୋଇଲା
ତାହାଙ୍କ ବଚନ ପ୍ରତିପାଳନ ସେ କଲା ।
ଏମନ୍ତ ସେ ପ୍ରୌଢ଼ାସୁର ଥାଟକୁ ଚଳାଇ
ପର୍ବତର ତଳ ଦେଶେ ମିଳିଲାକ ଯାଇ ।
ଟମକ ନିଶାଣମାନ ବାଜେ ଗୁରୁଟାଣ
ଶୁଣି ମହାକୋପ କଲା ରାଜା ମୃଗସେନ ।

ନାରଦ ବୋଇଲେ କୋପ ନ କର ତୁ ରାୟ
ଶାନ୍ତହୁଅ ଆମ୍ଭବାକ୍ୟେ ବ୍ୟାସର ତନୟ ।
ତୁମ୍ଭ ଦୁହିଁଙ୍କୁ ମଇତ୍ର କରାଇବା ଆମ୍ଭେ
ଏ କଳି ଦ୍ୱନ୍ଦ୍ୱ ନ କର ଆମ୍ଭ ବୋଲେ ତୁମ୍ଭେ ।
ଏମନ୍ତ କହି ନାରଦ ତହୁଁ ଗଲେ ବେଗେ
ସକଳ କଥା କହିଲେ ପୌଢ଼ାସୁର ଆଗେ ।
ଏମନ୍ତ କହି ନାରଦ ତହୁଁ ବେଗେ ଗଲେ
ପ୍ରୌଢ଼ାସୁର ନିକଟରେ ଯାଇଣ ମିଳିଲେ ।
ମୁନିଙ୍କୁ ଦେଖିଣ ଦୈତ୍ୟ ନମସ୍କାର କଲା
କିସ ବିଚାର ହୋ ମୁନି କରିଲ ବୋଇଲା ।
ନାରଦ କହିଲେ ତାହା କହିବା ତୋ ଆଗେ
ସର୍ବଶୁଭ କଥାମାନ ଶୁଣ ତୁ ସୁହାଗେ ।
ଦ୍ୱନ୍ଦ୍ୱ ବିବାଦ ସେ ନ କରିବ ତୋର ସଙ୍ଗେ
ପ୍ରୀତି କଥାମାନ ସେହି କହିଲା ମୋ ଆଗେ ।
ବହୁତ ପ୍ରଶଂସା ସେହୁ ନାରଦଙ୍କୁ କଲା
ବିନୟ ହୋଇ ଚରଣେ ନମସ୍କାର କଲା ।
ମୁନି ବୋଇଲେ ହେ ବେନି ମଇତ୍ର ଯେ ହୁଅ
ଯୁଗେ ଯୁଗେ କଥା ପୁଣି ରୁହାଇଣ ଥାଅ ।
ଏତେ କହି ମୁନିବର ତକ୍ଷଣେ ଉଠିଲେ
ମୃଗସେନ ରାଜାପାଶେ ଯାଇଣ ମିଳିଲେ ।
ଦୁଇ ରାଜାଙ୍କୁ ଯେ ପ୍ରୀତି କରାଇବା ହାଦେ
କଳି ଦ୍ୱନ୍ଦ୍ୱ ନୋହୁ ଦୈତ୍ୟ ଯାଉ ଅପ୍ରମାଦେ ।
ମୁନିଙ୍କ ବଚନେ ରାଜା ସନମତ କଲା
ହେଉ ବୋଲିଣ ସେ ପୁଣ ମୁନିଙ୍କୁ ବୋଇଲା ।
ଅସୁରଙ୍କୁ ସଙ୍ଗେ ଘେନି ଗଲେ ମହାମୁନି
ସେ ଦୁଇ ରାଜାଙ୍କୁ ଭେଟ କରାଇଲେ ପୁଣି ।
ସ୍ୱୀକୃତ କରି ପୁଣି ସେ ମଇତ୍ର ହୋଇଲେ
ସବିଧିରେ ପୌଢ଼ାସୁର ତହୁଁ ବାହୁଡ଼ିଲେ ।
କାମେଶ୍ୱର ବନେ ଯାଇ ମିଳିଲା ଅସୁର
ସେ ଦେଶର ରାଜା ନାମ ଅଟେ କାମେଶ୍ୱର ।
ବାରତା ପାଇଣ ସେହି ମନ୍ତ୍ରୀକୁ ପଚାରେ
ପ୍ରୌଢ଼ା ଅସୁର ପଶିଲା ଆମ୍ଭର ରାଜ୍ୟରେ ।
ଯୁଦ୍ଧ କରିବା କି ଆମ୍ଭେ ପ୍ରୀତି ଆରମ୍ଭିବା
ତୁହୋ ମନ୍ତ୍ରୀବର ମୋତେ ବିଚାରି କହିବା ।
ମନ୍ତ୍ରୀ ବୋଇଲା ରାଜନ ଶୁଣ ସାବଧାନେ
କାର୍ତ୍ତିକ ବରେ ଗରିଷ୍ଠ ଅଟେ ତ୍ରିଭୁବନେ ।
ଯୁଦ୍ଧକଲେ ତାଙ୍କୁ ଆମ୍ଭେ ନ ପାରିବା ଜିଣି
କିମ୍ପା ଅକାରଣେ ଲୋକ ମରାଇବା ପୁଣି ।
ଜନପରଜାମାନେ ଯେ ହୋଇବେକ ଧ୍ୱଂସି
ଯୁଦ୍ଧ ଏବେ ନ କରିବା ଶୁଣ ମୃଗଶିଷି ।

ସମାଧାନ କରିଦେବା ବାହୁଡ଼ି ସେ ଯାଉ
ମୋହର ବିଚାରକୁ ଯେ ଯୋଗାଇଲା ଏହୁ ।
କାମେଶ୍ୱର ରାଜା ତହୁଁ ବୋଇଲା ଏସନ
ତୋହର ବଚନ ମନ୍ତ୍ରୀ ନ କରେ ମୁଁ ଆନ ।
ଏହି ସମୟେ ଚମକ ନିଶାଣ ଶୁଭିଲା
ଡଗରାଏ ଆସି ପୁଣ ବାରତା କହିଲା ।
ପ୍ରୌଢ଼ାସୁର ବାହି ଆସେ ତୁମ୍ଭର ରାଜ୍ୟକୁ
ଉପାୟ କର ଯେମନ୍ତେ ଆସଇ ମନକୁ ।
ଡଗର ମୁଖରୁ ଶୁଣି ମନ୍ତ୍ରୀକି ସେ କହି
ସାବଧାନ ଘେନିଯିବା ବେଗେ ତାର ତହିଁ ।
ଆଜ୍ଞା ପରମାଣେ ମନ୍ତ୍ରୀ ତତକ୍ଷଣ ଗଲା
ଶତେକ ରଥରେ ପାଣିଦ୍ରବ୍ୟ ପୂରାଇଲା ।
ଅଳପ ସଇନ୍ୟ ସଜକରି ମହାରାୟେ
ଅପେ ଦିବ୍ୟବେଶ ହୋଇ ରଥରେ ବିଜୟେ ।
ମନ୍ତ୍ରୀକି ସଙ୍ଗରେ ଘେନି ବେଗେ ଚଳିଗଲା
ପ୍ରୌଢ଼ା ଅସୁର ଛାମୁରେ ଯାଇଣ ମିଳିଲା ।
ଶିରେ କରଯୋଡ଼ି ରାଜା ବିନୟୀ ହୋଇଲା
ଶତେ ରଥ ପାଣିଦ୍ରବ୍ୟ ଛାମୁରେ ଥୋଇଲା ।
ଅନେକ ପ୍ରକାରେ ପୁଣି ବିନତି ସେ କଲା
ମୋର ଦୋଷ କ୍ଷମାକର ବୋଲି ସେ କହିଲା ।
କାମେଶ୍ୱର ରାଜାର ଯେ ଭକ୍ତିଭାବ ଦେଖି
ପ୍ରୌଢ଼ାସୁର ରାଜା ହେଲା ମନେ ମହାସୁଖୀ ।
ଏମନ୍ତେ ସେ ବାହୁଡ଼ିଲା ସମାଧାନ ପାଇ
ଥାଟ ସୈନ୍ୟ ଯେତେ ତାର ବାହୁଡ଼ିଣ ଯାଇ ।
ଏମନ୍ତ ଥୋକାଏ ଦୂର ଚଳିଯାନ୍ତେ ପୁଣ
ନଗରେକ ଦେଖିଲା ସେ ଅତି ବିଚକ୍ଷଣ ।
ଅମରାବତୀକି ଜିଣି ପଟାନ୍ତର ସେହି
ସେ ନଗରେ ଗୋଟି ନାମ ସୁଜାଣ ଅଟଇ ।
ତହିଁର ରାଜାର ନାମ ଅଟେ ଶୂରବର
ନଗ୍ରଗୋଟି ତାର ଅତି ସୁସଞ୍ଚ ସୁନ୍ଦର ।
ଅଟନ୍ତି ସେ ପ୍ରଜାମାନେ ତହିଁ ବଡ଼ ସୁଖୀ
ଧନବସ୍ତ୍ରେ କୁବେରର ସଙ୍ଗେ ତାକୁ ଲେଖି ।
ସେହି ଶୂରବର ରାଜା ଅଟେ ଭାଗ୍ୟବନ୍ତ
କାହାର ସଙ୍ଗତେ ସେହି ନ କରେ ଅନର୍ଥ ।
ଆପଣାର ସୁଖେ ସେହୁ ରାଜ୍ୟ କରୁଥାଇ
ଶତ୍ରୁ ବୋଲି ସେ ରାଜ୍ୟରେ ରାଜା ନ ଜାଣଇ ।
ଦାନୀପଣରେ ସେ ରାଜା କର୍ଣ୍ଣର ସମାନ
ନିରନ୍ତରେ ବିଷ୍ଣୁପାଦେ କରୁଥାଇ ଧ୍ୟାନ ।
ତାହାର ରାଜ୍ୟରେ ପ୍ରୌଢ଼ା ଅସୁର ପଶିଲା
ବାରତା ପାଇ ଡଗର ବେଗେ ଜଣାଇଲା ।

ସାବଧାନ ହୋଇ ଏବେ ଶୁଣିବା ଗୋସାଇଁ
ପ୍ରୌଢ଼ାସୁର ଦଣ୍ଡ ଘେନି ତୋ ରାଜ୍ୟେ ପଶଇ ।
ଶୁଣିଣ ସେ ବୀର ଅତି କାତର ହୋଇଲା
ଗୋବିନ୍ଦ ଚରଣେ ରାଜା ଚିତ୍ତ ନିବେଶିଲା ।
ଜଗତର ନାଥ ତୁମ୍ଭେ କର ମୋତେ ତ୍ରାହି
ତୋହର ଚରଣ ବିନୁ ଅନ୍ୟଗତି ନାହିଁ ।
ଭକତ ଭତ୍ସଳ ହରି କରୁଣା ସାଗର
ନାମଗୋଟି ଯାର ଅଟେ ସଂସାରରେ ସାର ।
ସେ ପ୍ରଭୁ ସର୍ବଦା ମୋତେ ଦୟା କରିଥାଇ
ଘୋର ବିପଦରୁ ବାରେ ବାରେ ଉଦ୍ଧାରଇ ।
କରୁଣା ସାଗର ପ୍ରଭୁ ଶୁଣ ଏକମନେ
ନିଶ୍ଚିନ୍ତ ହୋଇ ବସଇ ମୁହିଁ ସେ ଭୁବନେ ।
ଏବେ ଆସି ମୋତେ ପ୍ରଭୁ ପଡ଼ିଲା ବିପତ୍ତି
ବେଳକେ ଉଦ୍ଧରି ଧର ଆହେ ଶିରୀପତି ।
ଏମନ୍ତେ ଅନେକ ସ୍ତୁତି କଲା ଯହୁଁ ରାଜା
କଣ୍ଠେ ଆସି ବିଜେ କଲେ ବ୍ରହ୍ମାର ତନୁଜା ।
ବୁଦ୍ଧି ଏକ ପ୍ରସରିଲା ଆସି ତାର ମନେ
ସମାଧାନ କରିବି ମୁଁ ଯାଇ ତାକୁ ଧନେ ।
ଏତେକ ବିଚାରି ରାଜା ମନ୍ତ୍ରୀକି ଚାହିଁଲା
ଦେଖା ଦରଶନ ସଜ କର ହୋ ବୋଇଲା ।
ଆଜ୍ଞା ପରମାଣେ ମନ୍ତ୍ରୀବର ଯେ ଚଳଇ
ପଞ୍ଚଶତ ରଥେ ପାଣି ଦ୍ରବ୍ୟକୁ ପୂରାଇ ।
ଆପେ ମନ୍ତ୍ରୀବର ସଜହୋଇ ବେଗେ ଗଲା
ରାଜାର ଛାମୁରେ ଯାଇ ଦରଶନ କଲା ।
ରାଜା ବୋଲେ ଶୁଭ ଅନୁକୂଳେ ଘେନିଯିବା
ସମାଧାନ ଦେଇ ତାକୁ ପୀରତି କରିବା ।
ରଥେକ ଚଢ଼ିଣ ରାଜା ବାହାର ହୁଅଇ
ଡଗରେ କହିଲା ପ୍ରୌଢ଼ାସୁର ଆଗେ ଯାଇଁ ।
ସମାଧାନ କରିବାକୁ ଆସେ ବୀରବର
ଶୁଣିଣ ଅତି ଆନନ୍ଦ ହୋଇଲା ଅସୁର ।
ଶୁଣ ଆହେ ମନୁରାଜା ଅଗସ୍ତି କହନ୍ତି
ଶୁରବର ରାଜା ଗଲା ପ୍ରୌଢ଼ାସୁର କତି ।
ଶିର କରଦେଇ କହେ ବିନୟ ବଚନ
ଦୟାକଲ ମୋହ ରାଜ୍ୟେ ପଡ଼ିଲା ଚରଣ ।
ପଞ୍ଚାଶତ ରଥ ଦ୍ରବ୍ୟ ଛାମୁରେ ଥୋଇଲା
ଅନେକ ବିନୟେ ପୁଣି ବଚନ ଭାଷିଲା ।
ରାଜାର ବିନୟ ପୁଣି ଭକତିକି ଘେନି
ଦଣ୍ଡ ବାହୁଡ଼ାଇ ତହୁଁ ଗଲା ବୀରମଣି ।
ଏହିରୂପେ ବହୁରାଜ୍ୟ ଭ୍ରମିଣ ସେ ଗଲା
କଉଣସିଠାରେ ରାଜା ଦ୍ୱନ୍ଦ୍ୱ ନ ପାଇଲା ।

ସୁରବୀର ରାଜ୍ୟରୁ ସେ ଖଣ୍ଡେ ଦୂର ଯାଇ
ପ୍ରୌଢ଼ ଅସୁର ଯେ ମନେ ମନେ ବିଚାରଇ ।
ମର୍ତ୍ତ୍ୟମଣ୍ଡଳରେ ରାଜା ଅସାଧ୍ୟ ନୋହିଲେ
ପୃଥିବୀରେ ଚକ୍ରବର୍ତ୍ତୀ ହେଲି ଏବେ ଭଲେ ।
ଏବେ ଆମ୍ଭେ ଆପଣାର ରାଜ୍ୟେ ଫେରିଯିବା
ପ୍ରଜାଙ୍କୁ ପାଳି ସୁଖରେ ନୃପତି ହୋଇବା ।
ଏମନ୍ତେ ବିଚାରି ସେହି ଅସୁର ରାଜନ
ଦଣ୍ଡ ଘେନିଣ ରାଜ୍ୟକୁ କରଇ ଗମନ ।
ଶୂନ୍ୟରୁ ଆସି ଭେଟିଲେ ବ୍ରହ୍ମାଙ୍କର ଶିଷ୍ୟ
ବିଭୂତି ଲେପନ ଅଙ୍ଗେ ପିନ୍ଧି କଷାବାସ ।
କଳି ଧୋକଡ଼ି ମୁଣିକି କାଖେ ଯାକିଛନ୍ତି
ହରି ହରି ଶବ୍ଦ କରି ଶୂନ୍ୟରେ ଗମନ୍ତି ।
ସେ କଳହପ୍ରିୟ ମୁନି ଖୋଜୁଛନ୍ତି କଳି
ଦେଖିଣ ଅସୁର ବଳ ନୁଆଇଁ ମଉଳି ।
ରଥର ଉପରୁ ପୌଢ଼ାସୁର ଓହ୍ଲାଇଲା
ବିନୟ ଭକତି କରି ମୁନିଙ୍କୁ ବନ୍ଦିଲା ।
ବୋଇଲା ଏ ପୃଥିବୀଯାକ ବୁଲି ସାଧ୍ୟକଲି
ବହୁତର ରାଜ୍ୟ ମୁହିଁ ଭ୍ରମିଣ ଅଇଲି ।
ଏଠାରେ ବିଶ୍ରାମ ଆସି କରିଅଛି ଆଜ
ଏବେ ଲେଉଟିଣ ମୁହିଁ ଯିବି ନିଜ ରାଜ୍ୟ ।
ପ୍ରୌଢ଼ାଅସୁର ମୁଖରୁ ଏସନକ ଶୁଣି
ସେ କଳହପ୍ରିୟ ମୁନି ବଚନ ବଖାଣି ।
କଳି ନ ପାଇ ଭ୍ରମନ୍ତି ମୁନିଦେଶ ଦେଶ
ଏବେ ଯେ ମିଳିଲେ ଆସି ପ୍ରୌଢ଼ାସୁର ପାଶ ।
ହସିଣ ବୋଇଲେ ମୁନି ଶୁଣ ମହାରାୟେ
ଏବେ ତୋତେ କହିବାକୁ ଗୁପତ କଥାଏ ।
ସବୁନ୍ତି ଜିଣିଲୁ ଆଉ ଅଛି ଏକ ଜାଣ
ତାହାକୁ ଜିଣିଲେ ସିନା ବୀର ବିଚକ୍ଷଣ ।
କୃତକେଶୀ ବୋଲି ଏକ ରାଜ ଏ ଅଛଇ
ତାହାର ରାଜ୍ୟକୁ କେହି ପଶି ନ ପାରଇ ।
ତା ରାଜ୍ୟକୁ ବେଢ଼ିଅଛି ପର୍ବତର ମାଳ
ଆଡ଼ମ୍ବର ଲତାମାନ ହୋଇଛି ଗହଳ ।
ଆବର କଥାଏ ତହିଁ କରିଛି ଭିଆଣ
ଗଡ଼ ଚାରିପାଖେ ଖଣା ହୋଇଅଛି ଜାଣ ।
ସାତତାଳ ଯେ ଗଭୀର ଥଳକୂଳ ନାହିଁ
ଯମୁନା ନଦୀରୁ ଧାର ବୁହାଇଛି ତହିଁ ।
ନିଶ୍ଚିନ୍ତ ହୋଇଣ ରାଜ୍ୟ ପାଳୁଥାଇ ବସି
ଶତ୍ରୁ ଉପଗତ ହେଲେ ନ ପାରଇ ପଶି ।
ନାନା କୃଷି ଉପୁଜଇ ତାହାର ରାଜ୍ୟର
ତା ଦେଶର ଧନଧାନ୍ୟ ଉପୁଜେ ବିସ୍ତର ।

ଦଶସହସ୍ର ପଦାତି ରଥୀ ଦଶଲକ୍ଷ
ପଞ୍ଚାଶ ସହସ୍ର ହସ୍ତୀ ଅଛନ୍ତି ପ୍ରତ୍ୟେକ୍ଷ ।
ଏକଲକ୍ଷ ଅଶ୍ୱ ଜାଣ ଅଛଇ ତାହାର
ପଦାତିକ ବଳ କିଏ କରିବ ଗୋଚର ।
ଶୁଣଇ ଯେ ପ୍ରୋଢ଼ାସୁର କହେ ମହାମୁନି
ସେ ରାଜାକୁ କେବେ ତୁହି ନ ପାରିବୁ ଜିଣି ।
ତାହାର ରାଜ୍ୟକୁ ଯିବାପାଇଁ ବାଟ ନାହିଁ
ନଦୀ ପାର ହେବାପାଇଁ ଥଳକୂଳ ନାହିଁ ।
ମୁନିଙ୍କ ମୁଖରୁ ପ୍ରୋଢ଼ା ଏମନ୍ତ ଶୁଣିଲା
କୋପଭର ହୋଇକରି ଗର୍ଜିଣ ଉଠିଲା ।
ମନ୍ତ୍ରୀକି ଚାହିଁଣ ସେହୁ କହଇ ବଚନ
ଦଣ୍ଡ ସାଜ ଯିବା କୃତକେଶୀର ଭୁବନ ।
ନାରଦଙ୍କ କଥା ଶୁଣି ନ ସହଇ ଦେହୀ
ତାହାର ସଙ୍ଗତେ ଦ୍ୱନ୍ଦ୍ୱ କରିବଇଁ ମୁହିଁ ।
ଅଗସ୍ତିଙ୍କୁ ପଚାରଇ ମନୁରାଜା ପୁଣି
କୃତକେଶୀଠାରେ କୋପକଲେ କିମ୍ପା ମୁନି ।
ଏଥିର ଚରିତ ମୋତେ କହିବା ଗୋସାଇଁ
ତେବେ ଯେ ମନରୁ ମୋର ଭ୍ରାନ୍ତି ତୁଟିଯାଇ ।
ଅଗସ୍ତି କହନ୍ତି ଶୁଣ ଆହେ ନରଈଶ
ଦିନେ ଯେ ନାରଦ ମୁନି ତା ପୁରେ ପ୍ରବେଶ ।
ନାରଦଙ୍କୁ ଦେଖି କୃତକେଶୀ ନ ଉଠିଲା
ବସିକରି ମୁନିଙ୍କୁ ଯେ ନମସ୍କାର କଲା ।
ତାହାର ଅମାନ୍ୟ ଦେଖି କୋପେ ତପଚାରୀ
ମନେ ମନେ ଭାଳିଲେ ଏ ରାଜା ଅହଙ୍କାରୀ ।
ଭାଙ୍ଗିବି ୟା ଗର୍ବ ନିଶ୍ଚେଁ ଏମନ୍ତ ବିଚାରି
ପ୍ରୋଢ଼ାସୁର ଆଗେ ଯାଇ କହିଲେ ଏପରି ।
ଅସୁରକୁ ପ୍ରବର୍ତ୍ତାଇ ଗଲେ ମୁନିବର
ମିଳିଲେ ସେ କୃତକେଶୀ ନୃପତି ଛାମୁର ।
କୃତକେଶୀ ପଚାରିଲେ ମୁନି ଥିଲ କାହିଁ
ମୁନିଏ ବୋଇଲେ ସ୍ୱର୍ଗୁ ଆସୁଛୁ ପଳାଇ ।
ତୁହୁଁ ନୃପତି କହଇ ଶୁଣିମା ଗୋସାଇଁ
ମୋହଠାରୁ ବଳବନ୍ତ କେଉଁ ରାଜା ହୋଇ ।
ମୁନି ବୋଇଲେ ତୋଠାରୁ ବଳି ମହାରଥ
ବହୁତ ଅଛନ୍ତି ତୁ କି ଅଟୁ ସାମରଥ ।
ଏମନ୍ତ ଶୁଣିଣ ରାଜା ମନେ କୋପ କଲା
କଳହପ୍ରିୟ ମୁନିଙ୍କୁ ବହୁ ଗାଳିଦେଲା ।
କଳିର ନିମନ୍ତେ ମୁନି ବୁଲି ଦେଶ ଦେଶ
କଳି ପାଇଲେ ତୁମ୍ଭର ମନରେ ଉଲ୍ଲାସ ।
ଏବେ ଦ୍ୱନ୍ଦ୍ୱ ଲୋଡୁଅଛ ଆହେ ମୁନିବର
ସେ କଳି ଧୋକଡ଼ି ମୁଣି ଅଛଇ କାଖର ।
ତୁମ୍ଭେ ଏ ମନ୍ଦ ପ୍ରକୃତି କେବେ ହେଁ ନ ଛାଡ଼
କଳି ଦ୍ୱନ୍ଦ୍ୱ କଥାକୁ ଯେ ତୁମ୍ଭ ମନ ବଡ଼ ।
ଏମନ୍ତ ପ୍ରକାରେ ରାଜା ତାଙ୍କୁ ଗାଳିଦେଲା
ମୁନିଙ୍କ ହୃଦରେ ମହାକୋପ ଯେ ବସିଲା ।
କୋପେ ଥରହର ହୋଇ କମ୍ପେ ମହାମୁନି
କୃତକେଶର ଛାମୁରୁ ଗଲେ ତତକ୍ଷଣି ।
ପ୍ରୌଢ଼ାସୁର ଛାମୁରେ ସେ ପ୍ରବେଶ ହୋଇଲେ
ଏହିପରି ମୁନି ରାଜାଠାରେ କୋପ କଲେ ।
ଯେମନ୍ତେ ତାହାର ରାଜ୍ୟ କରିବଇଁ ନାଶ
ତେବେ ସେ ରହିବ ସିନା ମୋର ବଡ଼ ଯଶ ।
ମୋହର ଆଗରେ ସର୍ବ କଥା ସେ କହିଲା
ମୋତେ ଅପମାନ ଦେଇ ଗାଳି ପୁଣି ଦେଲା ।
ଗର୍ବ କଥାକୁ ତ ମୁହିଁ ସହି ନ ପାରଇ
ଅଭିଶାପ ଦେଲେ ଧର୍ମହାନି ଯେ ହୁଅଇ ।
ପରହାତେ ତାହାକୁ ମୁଁ ଦିଆଇବି ଦଣ୍ଡ
ଅନେକ ପ୍ରକାରେ ତାକୁ କରି ଲଣ୍ଡଭଣ୍ଡ ।
ପ୍ରୌଢ଼ା ଅସୁରକୁ ଯାଇ କହନ୍ତେ ବଚନ
କୃତକେଶୀକୁ ଜିଣିଲେ ହେବୁ ବଡ଼ ଜଣେ ।
ପୃଥିବୀ ବୁଲିଲି ସମ ନୋହିଲେ କେ ଜଣେ
ଆବର କିସ ପୁଣି ସେ କହ ମହାମୁନେ ।
କୃତକେଶୀ ସମାଧାନ ଦେଇଅଛି ଥରେ
ଏବେ ସେହି କେମନ୍ତେ ଯେ ହେଲା ବଳିୟାରେ ।
ମୁନି ବୋଇଲେ ସେ ସର୍ବ ରାଜାଙ୍କର ବୋଲେ
ସମାଧାନ ଦେଇ ପ୍ରୀତି କଲା ତୋର ତୁଲେ ।
ତାହାର ମହିମା ତୁହି ଶୁଣିନାହୁଁ ରାୟେ
ପୃଥ୍ୱୀର ରାଜାଙ୍କୁ କରେ ନାହିଁ ଗଣନାଏ ।
ତୁ ବା କେଉଁ ବଡ଼ ତୋତେ ଗଣନା କରିବ
ଅବଶ୍ୟ ତୋର ତୁଲେ ସେ ବାଦ ଆରମ୍ଭିବ ।
ତାହାର ରାଜ୍ୟକୁ ତୁହି ନ ପାରିବୁ ଯାଇ
ଥଳକୂଳ ନାହିଁ ଯିବୁ କେଉଁମତେ ତୁହି ।
ପ୍ରୋଢ଼ାସୁର ବୋଲେ ଯେଉଁ ମତେ ପାରିବଇଁ
ଅବଶ୍ୟ ତାହାର ତୁଲେ ଯୁଦ୍ଧ କରିବଇଁ ।
ମାୟା କୁଟ କପଟ ମୁଁ ଜାଣଇ ଅପାର
ପୃଥ୍ୱୀ ବୁଲି ନ ପାଇଲି ଦ୍ୱନ୍ଦ୍ୱ କେଉଁଠାର ।
ଏବେ ଆସି ପଥେ ମୁନି ଦ୍ୱନ୍ଦ୍ୱ ଯେ ମିଳିଲା
ଦଇବ ପୁରୁଷ ଆଣି କଳି ପୁଣି ଦେଲା ।
ନାରଦଙ୍କୁ ପ୍ରଶଂସା କଲା ସେ ବହୁତ
ମୋଠାରେ ତୁମ୍ଭର ଦୟା ଅଛି ତପୋବନ୍ତ ।
ଏହି ଅନୁକୂଳେ ଦେବ କରିବା ଗମନ
ତୁମ୍ଭର ଯେବଟି ଦୟା ଅଛି ତପୋଧନ ।

ମୁନି ବୋଇଲେ ହୋ ତୁହି ବେଗେ ହୁଅ ସଜ
ଯାଇଣ ମିଳିବା ଆମ୍ଭେ କୃତକେଶୀ ରାଜ୍ୟ ।
ଟମକ ନିଶାଣ ଢୋଲ ବାଜିଣ ଉଠିଲା
ମର୍ଦ୍ଦଳ କଂସାଳ ତହିଁ ଅନେକ ବାଜିଲା ।
ମୁଖରାବ ଶବଦ ଯେ ବଡ଼ ହିଁ ଚହଳ
ମାର ମାର ଶବଦରେ ପୃଥିବୀ ଗହଳ ।
ପୃଥ୍ୱୀ ଦେବୀ ଦଳ ଦଳ ହୋଇଣ କମ୍ପିଲା
ବାସୁକି ମହାରାଜା ଯେ ଶର ନ ଟେକିଲା ।
ସ୍ୱର୍ଗେ ଦେବତାଏ ଶୁଣି ବଡ଼ ଭୟ କଲେ -
ଅସୁର ସ୍ୱର୍ଗେ ବାହୁଛି ବୋଲିଣ ଭାଳିଲେ ।
ନିକଟ ରାଜାମାନଙ୍କୁ ଶୁଭିଲା ଶବଦ
ବିକଟାଳ ହୋଇ ଯେଣୁ ବାଜୁଥିଲା ବାଦ୍ୟ ।
ବନ ଗହନରେ ପୁଣି ନାନା ଜୀବ ଥିଲେ
ଅଗମ୍ୟ ବନସ୍ତେ ଯାଇ ସମସ୍ତେ ଲୁଚିଲେ ।
ନାରଦ ମୁନି କଢ଼ାଉଛନ୍ତି ଆଗେ ବାଟ
ଏତେକ ଅସୁର ପୁଣି ଅଟଇ ଗରିଷ୍ଠ ।
ପୃଥିବୀ ଦେବୀର ଭୟ କହି ନ ସରଇ
ସତେକି ବାସୁକି ମହୀଭାରକୁ ଛାଡ଼ଇ ।
ପାଦ ଘାତରେ ବାସୁକି କମ୍ପେ ଥରହର
ମୁଖବାଟେ ରୁଧିର ତା ହୁଅଇ ବାହାର ।
ଉଦ୍ଦଣ୍ଡ ଯେ ପାଟଛତ୍ର ଉଡ଼ଇ ଛାମୁର
ବୀରବେଶ ହୋଇ ଦୈତ୍ୟ ବସିଛି ରଥର ।
କର୍ଣ୍ଣରେ କୁଣ୍ଡଳ ପୁଣି ଲଲାଟେ ମୁକୁଟ
ସୁବର୍ଣ୍ଣର ମାଳା ଏକ ଲମ୍ବେ କଣ୍ଠତଟ ।
ଶୁକଳ ପାଟେକ ସେହୁ ମଥାରେ ବାନ୍ଧିଣ
ଶୁକଳ ତକ୍ଷପ ଏକ ଅଛଇ ପିନ୍ଧିଣ ।
କସ୍ତୁରୀ ତିଳକ ସେହୁ ଲଲାଟରେ ଘେନି
ନିଃଶ୍ୱାସ ବାରି ସେ ଅନୁକୂଳ କଲା ପୁଣି ।
ମୁନିଙ୍କୁ ଚାହିଁ ବୋଇଲା ସେ ପ୍ରୌଢ଼ା ଅସୁର
କୃତକେଶୀ ରାଜ୍ୟେ ଆମ୍ଭ ସଙ୍ଗେ ବିଜେ କର ।
ପ୍ରୌଢ଼ାସୁର ସଜ ହେବା ଦେଖିଣ ନାରଦ
ଆନନ୍ଦ ହୋଇଣ ମୁନି କଲେ ବୀଣା ନାଦ ।
ବୀଣା ବଜାଇଣ ମୁନି ଗଲେ ଶୂନ୍ୟମାର୍ଗେ
ଶୂନ୍ୟପଥେ ଯାନ୍ତି ପାଦ ନାହିଁ ଭୂମିଭାଗେ ।
ପଛରେ ପ୍ରୌଢ଼ାଅସୁର ଥାଟ ସୈନ୍ୟଘେନି
ଆପଣେ ଗମନ କରେ ଦୈତ୍ୟକୁଳମଣି ।
ପାଦଘାତେ ଧୂଳିମାନ ଉଠଇ ଗଗନେ
ଦେବତାମାନେ ଦେଖନ୍ତି ତାହା ରହି ଶୂନ୍ୟେ ।
ଦୈତ୍ୟ ଚଳନ୍ତେଣ ଗିରି ଧୂଳି ଉକୁଟଇ
ଯମୁନା ନଦୀର କୂଳେ ଯାଅନ୍ତି ଚଳାଇ ।
ତିନିଦିନେ ଯାଇ କୃତକେଶୀ ରାଜ୍ୟେ ହେଲେ
କୃତକେଶୀକୁ ଡଗର ଯାଇ ଜଣାଇଲେ ।
ଭୋ ଦେବ ଶୁଣିମା ହେଉ ସାବଧାନ ହୋଇ
ଦଣ୍ଡ ଘେନି ପ୍ରୌଢ଼ାସୁର ରାଜ୍ୟରେ ପଶଇ ।
ନାରଦ ମୁନି କଢ଼ାଉଛନ୍ତି ଆଗେ ବାଟ
ବନ ପର୍ବତ ପୂରିଛି ଅସୁରର ଥାଟ ।
ପୃଥିବୀ ଭ୍ରମିଲା ତାକୁ ନୋହିଲେ କେ ସମ
ବହୁତ ଜାଣଇ କୁଟ କପଟ ସଂଗ୍ରାମ ।
ନାରଦଙ୍କ କଥାରେ ସେ ଆସୁଅଛି ପେଲି
ତୋହର ରାଜ୍ୟକୁ ନାଶ କରିବ ସେ କାଲି ।
ବିଚାରିଣ କାର୍ଯ୍ୟ କର ଆହେ ନୃପବର
ପୃଥ୍ୱୀଦେବୀ ଭୟେ କମ୍ପେ ହୋଇ ଥରହର ।
ଉଦ୍ଦଣ୍ଡ ପାଟଛତ୍ର ଯେ ଉଡ଼େ ଫରଫର
ସଙ୍ଗତରେ ଘୋଡ଼ା ହାତୀ ଅଛନ୍ତି ଅପାର ।
ଡଗର ମୁଖୁଁ ଏମନ୍ତ ଶୁଣି ନୃପମଣି
ପ୍ରତିଜ୍ଞାମାନ କରଇ କୋପେ ଶିରଝୁଣି ।
ଆଜ ମୁହିଁ ଅସୁରର ଛେଦିବଇଁ ଶିର
ନ ଜାଣେ କି ସେ ଅସୁର ପ୍ରତିଜ୍ଞା ମୋହର ।
ଦେବ ଦାନବ ମାନବ କାହାକୁ ନ ଡରେ
ନିଶ୍ଚୟ ସେହି ଅସୁର ଯିବ ଯମପୁରେ ।
ନାରଦ ମୁନି କଥାରେ ଆସୁଅଛି ବାହି
ନିଶ୍ଚୟ ମୋର ହସ୍ତରେ ପ୍ରାଣଦେବ ସେହି ।
ପ୍ରୌଢ଼ାସୁର ଜୀବନ ମୁଁ ହରିବଇଁ ଆଜ
ସେ ନାରଦ ମୁନି ଆଜ ପାଇ ଯିବ ଲାଜ ।
ପ୍ରୋଢ଼ାସୁରର ମହିମା ସେହି ନ ଜାଣିଛି
ତୁଚ୍ଛ ଅସୁର ପରାୟ ତାହାକୁ ମଣିଛି ।
ତେଣୁ କୃତକେଶୀ କରେ ପ୍ରତିଜ୍ଞା ଅପାର
ଏ ମହାଭାରତ ରସ ଅମୃତ ଭଣ୍ଡାର ।
ବନ୍ଦଇ ଶ୍ରୀ ନାରାୟଣ କମଳାର ପତି
ଭକ୍ତଜନମାନଙ୍କର ହୃଦୟ ସମ୍ପତ୍ତି ।
ଏ ଜଗତ ଜନଙ୍କର ନିସ୍ତାରଣ ଅର୍ଥେ
ଦେହବନ୍ତ ହୁଅନ୍ତି ସେ ଆପେ ଆସି ମର୍ତ୍ତ୍ୟେ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶାରଙ୍ଗକୁ ବହି
ଗରୁଡ଼ ପକ୍ଷୀ ଯାହାର ବାହନ ଅଟଇ ।
ଅସୁର ନିସୂଦନ ଯା ନାମ ଦଇତ୍ୟାରି
ଲକ୍ଷ୍ମୀ ସରସ୍ୱତୀ ଯାର ଚରଣ କିଙ୍କରୀ ।
ଶାରଳା ଦାସ କବିକୁ ରଖ ଚକ୍ରପାଣି
ଗଉରୀ ନନ୍ଦନ ପାଦେ କରଇ ଦଇନି ।
ଉଦ୍ଧରି ଧର ଭୋ ଦେବ ବିଶ୍ୱନାଥ ସ୍ୱାମୀ
ମୂର୍ଖ ଶାରଳା ଦାସକୁ ରଖ ଅନ୍ତର୍ଯ୍ୟାମୀ ।

—୦—

## କୃତକେଶୀ ସହିତ ପ୍ରୋଢ଼ାସୁରର ଯୁଦ୍ଧ

ଏଥୁଅନ୍ତେ ଯେ ବିଲଙ୍କ ଦେଶ ମହାରାୟ
ମୁନିଙ୍କ ଚରଣେ ପଡ଼ି କରଇ ବିନୟ ।
ଭୋ ମୁନି କହିବା ପ୍ରୋଢ଼ା ଅସୁର ଚରିତ
କୃତକେଶୀ ନରପତି କଲା କେଉଁ କୃତ୍ୟ ।
ତହିଁର ଚରିତ ମୋତେ କହ ତୋଷମନେ
ନାରଦ କଢ଼ାଇ ନେଲେ ଅସୁର ରାଜନେ ।
ପ୍ରୋଢ଼ାସୁର ଯାଇ ଖଣା ବେଢ଼ିଣ ରହିଲା
ଭିତରକୁ ଡରେ ଆଉ ପଶି ନ ପାରିଲା ।
ଡଗର ମୁଖରୁ କୃତକେଶୀ ରାଜା ଶୁଣି
ମନ୍ତ୍ରୀକି ଡାକି ପାଶକୁ ପଚାରଇ ପୁଣି ।
ଥାଟ ବେଗେ ସଜକର ମନ୍ତ୍ରୀ ଯେ ଆମ୍ଭର
ଅସୁର ସଙ୍ଗତେ ମୁହିଁ କରିବି ସମର ।
ମନ୍ତ୍ରୀ ବୋଲେ ମନ୍ଦକୃତ୍ୟ କଲୁ କାହିଁପାଇଁ
ନାରଦଙ୍କୁ ଅପମାନ ଦେଲୁ ଗାଳିଦେଇ ।
ଆମ୍ଭଠାରୁ ଥରେ ଦୈତ୍ୟ ସାବଧାନ ପାଇ
ଥାଟସୈନ୍ୟ ତାର ନେଇଥିଲା ବାହୁଡ଼ାଇ ।
ଏବେ ନାରଦଙ୍କ ବୋଲେ ଆସିଛି ଅସୁର
ଆମ୍ଭର ତୁଲେ ସଂଗ୍ରାମ କରିବ ଅପାର ।
ତାହାକୁ ସଂଗ୍ରାମେ ଆମ୍ଭେ ନ ପାରିବା ଜିଣି
ଏ କଥାକୁ ମହାରାଜା ବୁଝ ପରିମାଣି ।
ମନ୍ତ୍ରୀ ମୁଖୁ କୃତକେଶୀ ଏମନ୍ତ ଶୁଣିଲା
କି ବୁଦ୍ଧି କରିବି ବୋଲି କଥାନ୍ତ ଭାବିଲା ।
ସମାଧାନ ଦେବା କିବା ଦ୍ୱନ୍ଦ୍ୱ ଆରମ୍ଭିବା
ଏ ବେନି କଥାରୁ ମନ୍ତ୍ରୀ କଥାଏ କହିବା ।
ମନ୍ତ୍ରୀ ବୋଲେ ସମାଧାନ କେବେ ସେ ନ ହେବ
ଅବଶ୍ୟ ତୋହର ତୁଲେ ସଂଗ୍ରାମ କରିବ ।
ପୃଥିବୀ ବୁଲି ଯେ କାହିଁ ନ ପାଇଲା ରଣ
ରଣରଙ୍କା ହୋଇ ମହୀ କରଇ ଭ୍ରମଣ ।
ନାରଦ ମୁନି ତାହାକୁ ତିଆରି ଅଛନ୍ତି
ତାର ସଙ୍ଗେ କରାଇବେ ତୋହର ଅପ୍ରୀତି ।
ଯୁଦ୍ଧ ନ କଲେଟି ତୋର ଗତି ଆଉ ନାହିଁ
ଅବଶ୍ୟଟି ଦ୍ୱନ୍ଦ୍ୱ ଏକ ଉପୁଜିବ ତହିଁ ।
ଶୁଣିଣ ସେ କୃତକେଶୀ ହରଷ ବିସ୍ମୟେ
ମନ୍ତ୍ରୀକି ବୋଇଲେ ଶୁଣ କହୁଛି କଥାଏ ।
ପ୍ରୋଢ଼ାସୁର ଖଣା ଚାରିପାଖ ଆବୋରିଛି
ଗଡ଼ ଭିତରକୁ ସେହି ପଶି ନ ପାରୁଛି ।
ଆମ୍ଭର ଯେ ଥାଟ ସୈନ୍ୟ ଘେନି ସଜ ହୁଅ
ଖଣା ଆବୋରିଣ ଏହି ପାଖେ ରହିଥାଅ ।
ପର୍ବତ ଆଡ଼କୁ ସବେ କରିଥିବେ ପିଠି
ସବୁଆଡ଼େ ଯେଉଁପରି ପଡୁଥିବ ଦୃଷ୍ଟି ।
ବଳବନ୍ତ ଆମ୍ଭରଟି ଖଣା ପାରିହୋଇ
ପର୍ବତକୁ ପିଠିକରି ମାରିବ ଗୋଡ଼ାଇ ।
ତେବେ ସେ ଅସୁରବଳ ହୋଇବେକ କ୍ଷୟ
ଏହିପରି ଆଜ୍ଞାଦେଲା କୃତକେଶୀ ରାୟ ।
ଶୁଣ ଆହେ ମନୁରାଜା ଦଇବର କୃତ୍ୟ
ଯହିଁ ବିପକ୍ଷ ନାରଦ ମୁନି ତପୋବନ୍ତ ।
ଖଣା ଚାରିପାଖ ଘେରି ରହିଲେକ ଥାଟ
ନଗରରେ ପଶିବାକୁ ନ ପାଇଲେକ ବାଟ ।
ନାରଦଙ୍କୁ ଚାହିଁ ପୁଣି ବୋଲନ୍ତି ଅସୁର
କି ବୁଦ୍ଧି କରିବା ଏବେ କହ ମୁନିବର ।
ଏତେ ଗଭୀର ତଦନ୍ତ ଜାଣି ନ ପାରିଲି
ଏ କୃତକେଶୀ ରାଜ୍ୟରେ ପଶି ନ ପାରିଲି ।
ନାରଦ ବୋଇଲେ କିଛି ନ ଭାବ ହେ ରାୟ
ମୋହର ତହିଁକି ଅଛି ଏକଇ ଉପାୟ ।
ଏହିକ୍ଷଣି ହରିବଇଁ ଏ ଗଭୀର ଜଳ
ଏକଥାକୁ ଚିନ୍ତା ତୁ ନ କର ମହୀପାଳ ।
ଶୋଷକ ମୁଖ ଗୋଟି ଯେ ନାରଦ ପଢ଼ିଲେ
କ୍ଷଣକ ମାତ୍ରକେ ସେହି ଜଳକୁ ଶୋଷିଲେ ।
ଶୁଖିଲା ସେ ଜଳଖଣା ହୋଇଲା ସେ ଥଳ
କୃତକେଶୀ ସୈନ୍ୟସବୁ ହୋଇଲେ ବିକଳ ।
ତାହା ଦେଖି ପୌଢ଼ାସୁର ଉସତ ହୋଇଲା
ନାରଦ ମୁନିଙ୍କୁ ବହୁ ପ୍ରରଶଂସା କଲା ।
ଆହେ ମୁନି ଏବେ ମୁହିଁ ତୁମ୍ଭର ପ୍ରସାଦେ
କୃତକେଶୀ ଜିଣିବି ମୁଁ ନପଡ଼ି ପ୍ରମାଦେ ।
ଘୋଷଣା ଯେ ଦିଆଗଲା ଥାଟର ମଧ୍ୟରେ
ସଜହୁଅ ବୋଲି ବାଦ୍ୟ ବାଜେ ବିକରାଳେ ।
ହାତୀ ରଥୀ ପଦାତିକ ସର୍ବେ ସଜହେଲେ
ଯୁଦ୍ଧ କରିବା ନିମନ୍ତେ ତହୁଁ ବାହାରିଲେ ।
ପାଇକ ମାହୁନ୍ତ ବଳ ଅଶ୍ୱାରୋହୀ ଯେତେ
ସଜହୋଇ ଉଭାହେଲେ ରାଜାର ଅଗ୍ରତେ ।
ସେ ନାରଦ ମୁନି ଆଗହୋଇ ଚଳିଗଲେ
ପଛରେ ଅସୁରଥାଟ କୋପେ ଗୋଡ଼ାଇଲେ ।
ଖଣା ପାରିହୋଇ ଆର ପାରିରେ ମିଳନ୍ତି
ମାର ମାର ଧର ଧର ଉଚ୍ଚେ ଡାକଦ୍ୟନ୍ତି ।
ମୁଖରାବ ଶବଦରେ କୂର୍ମ ଚମକିଲେ
ଯାଇଣ କୃତକେଶୀର ସୈନ୍ୟଙ୍କୁ ବେଢ଼ିଲେ ।
ପ୍ରୋଢ଼ାଅସୁର ଡାକିଲା ସୈନ୍ୟଙ୍କୁରେ ମାର
ଯେ ପଳାଇଯିବେ ତାଙ୍କୁ ନିର୍ବନ୍ଧରେ ଧର ।

ରାଜା ଆଜ୍ଞାରେ ଅସୁରସୈନ୍ୟ ଗୋଡ଼ାଇଲେ
ନାରାଚମାନ ଧନୁରେ ପୂରାଇ ବିନ୍ଧିଲେ ।
ଏକକୁ ଆରେକ ତହିଁ ହେଲେ ମରାମରି
ପର କେ ଆପଣା କେହି ବାରି ତନ ପାରି ।
ଉଭୟ ବଳ ସେଠାରେ ଏକମେଳ ହେଲେ
ଉଚ୍ଚବାଚ୍ଚ ହୋଇ କଳି ଯେ ଯାହାର କଲେ ।
ଅସୁର ସୈନ୍ୟ ଅଟନ୍ତି ବଳେ ବଳିୟାର
ଆବର ଗରିଷ୍ଠ ପୁରି ଅଟନ୍ତି ଅସୁର ।
କୃତକେଶୀ ସୈନ୍ୟ ତାଙ୍କୁ ନ ପାରିଲେ ଜିଣି
ପାଦଭରେ ଟଳ ଟଳ କମ୍ପଇ ଧରଣୀ ।
ଅନେକ ସୈନ୍ୟ ପଡ଼ିଲେ ମହୀପରେ ଲୋଟି
କଦଳୀବନ ଯେସନେ ବାତଘାତେ ତୁଟି ।
ହାତୀ ରଥି ପଦାତିକ ଲୋଟନ୍ତି ଭୂମିରେ
ଦଶବିଂଶ ପଡ଼ନ୍ତି ଯେ ଏକ ଏକ ଶରେ ।
ରକତେ କର୍ଦ୍ଦମ ହୋଇଗଲା ମହୀସ୍ଥଳି
ଅନେକ ଯେ ପଦାଘାତେ ଘୋଡ଼ାହାତୀ ଦଳି ।
କେଡ଼େ ବଡ଼ ସୈନ୍ୟଗୋଟା କଲବଲ ହେଲେ
କ୍ଷଣକ ଭିତରେ ନାରଖାର ହୋଇଗଲେ ।
କୃତକେଶୀ ଆଗେ ଚାର ଜଣାଇଲା ଯାଇ
ଅନେକ ଯେ ହାତୀ ରଥି ପଡ଼ିଲେ ଗୋସାଇଁ ।
ଅନେକ ଅସୁର ପ୍ରାଣେ ନିହତ ହୋଇଲେ
କେତେ ସୈନ୍ୟ ମଲେ ତାହା ନ ଜାଣିଲୁ ଭଲେ ।
ନାରାଚକେ ପଡ଼ନ୍ତେ ଯେ ଦଶ ପଞ୍ଚବିଂଶ
ବଡ଼ ହିଁ ଗରିଷ୍ଠ ତାର ବଡ଼ ହିଁ ସାହସ ।
କୃତକେଶୀ ପଚାରିଲେ କିପରି ଅଇଲେ
କେମନ୍ତ ପ୍ରକାରେ ସେହୁ ଖଣା ପାରିହେଲେ ।
ଡଗର କହିଲେ ସେ ତ ଅପୂର୍ବ ଚରିତ
ଉପାୟେକ ଭିଆଇଲେ ତହିଁ ତପୋବନ୍ତ ।
ଶୋଷକ ମନ୍ତ୍ରକୁ ମୁନି ଆପଣେ ପଢ଼ିଲେ
ତେଡ଼େ ଗଭୀର ଜଳକୁ କ୍ଷଣକେ ଶୋଷିଲେ ।
ଜଳ ଶୁଖନ୍ତେ ତହିଁର ଭୂମି ଯେ ଦିଶିଲା
ତେଣୁ ଥାଟ ପାରିହୋଇ ଏପାରି ଅଇଲା ।
ସେ ନାରଦମୁନି ତୋତେ ହୋଇଲେ ବିପାକ
ଏଣୁ ବଳିୟାର ହେଲା ସେହି ଦୁଷ୍ଟ ରକ୍ଷ ।
ତକ୍ଷଣେ ଆସି ତୋହର ସୈନ୍ୟଙ୍କୁ ବେଢ଼ିଲେ
ପର କି ଆପଣା କିଛି ସେହି ନ ମଣିଲେ ।
ଶୁଣି କୃତକେଶୀ ହେଲା ମନରେ ବିକଳ
ବୋଲେ ମୋତେ ନାଶକଲେ ମୁନି ତପଶୀଳ ।
ମନ୍ତ୍ରୀକି ଚାହିଁଣ ରାଜା ପଚାରଇ ଧୀରେ
ଏଥକୁ ଉପାୟ ମୋତେ କହ ମନ୍ତ୍ରୀବରେ ।

ମନ୍ତ୍ରୀ ଯେ ବୋଇଲେ ଆଉ ଅଛି କି ଉପାୟ
ନିସତ ହେବାର ବିଧି ନୁହଇଟି ରାୟ ।
ପାର ବା ନ ପାର ଯୁଦ୍ଧ କର ତାଙ୍କ ସଙ୍ଗେ
ଅକାରଣେ ସୈନ୍ୟ ନାଶ ନୋହୁ ରଣଙ୍ଗେ ।
ରାଜା ବିଚାରଇ ମନ୍ତ୍ରୀ ବୋଲ ମୁଁ ନ କଲେ
କାଳେ ମୋତେ ଅପକୀର୍ତ୍ତି ଉପୁଜିବ ଭଲେ ।
ଯେଉଁ ରାଜା ନ କରଇ ମନ୍ତ୍ରୀର ବଚନ
ସେହି ରାଜା ନ ପାଇଟି କାଳେ ଯଶ ପୁଣ ।
ମନ୍ତ୍ରୀର ବଚନ ଯେବେ ମୁହିଁ ନ ପାଳିବି
ତେବେ ଏଥି ଯଶକୀର୍ତ୍ତି କିଛି ନ ପାଇବି ।
ମନ୍ତ୍ରୀକି ବୋଇଲା କହ ଏଥିରେ ବିଚାର
ନାରଦଙ୍କ ହେତୁ ନାଶ ଗଲା ରାଜ୍ୟ ମୋର ।
ମନ୍ତ୍ରୀ ବୋଲେ ତାଙ୍କ ସଙ୍ଗେ ପୀରତି କରିବା
ଚରଣେ ଭକତି କରି ତାହାଙ୍କୁ ତୋଷିବା ।
ରାଜା ମନ୍ତ୍ରୀ ଦୁହେଁ ଏହା କରନ୍ତି ବିଚାର
ପ୍ରୋଢ଼ା ଅସୁରର ସୈନ୍ୟ ବଳ ବଳିୟାର ।
ମାର ମାର ଶବଦରେ ପୃଥିବୀ କମ୍ପଇ
ଧର ଧର ଶବଦ ଯେ କୂର୍ମ ଉଚ୍ଛୁଳଇ ।
କୃତକେଶୀ ରାଜା ଶୁଣି ବଡ଼ ଭୟ କଲା
ପଞ୍ଚଭୂତ ଆତ୍ମାରେ ସେ କଥାନ୍ତ ଭାବିଲା ।
ବୋଇଲା ମରଣ ମୋର ହୋଇଲା ନିକଟ
ବିପାକ କର୍ମର ବୁଦ୍ଧି ହୋଇଲା ମୋ ନଷ୍ଟ ।
କାହା ଆଗେ କହିବଇଁ କର୍ମର ଯେ ଦୋଷ
ତାହାକୁ ଭିଆଇ ଅଛି ଦଇବ ପୁରୁଷ ।
ଆହେ ଜଗନ୍ନାଥ ତୁମ୍ଭେ ଭକ୍ତ ପ୍ରାଣନିଧି
ଅରକ୍ଷିତ ଉଦ୍ଧାରଣ କରୁଣା ଜଳଧି ।
ଅରକ୍ଷଜନ ନିମନ୍ତେ ଶଙ୍ଖ ଚକ୍ରଧର
ଘୋର ଦୁର୍ଗତିରୁ ସନ୍ଥଜନଙ୍କୁ ଉଦ୍ଧାର ।
କୃତକେଶୀ ଯହୁଁ ନାରାୟଣ ସୁମରିଲା
ସଦ୍‌ବୁଦ୍ଧି ସଦ୍‌ଜ୍ଞାନ ହୃଦେ ବିକାଶିଲା ।
ବୋଇଲା ମରଣ କାଳେ ନୋହିବ ନିସତ
ତାହାର ସଙ୍ଗତେ ଯୁଦ୍ଧ କରିବା ଉଚିତ ।
ସଇନ୍ୟ ମୋର ସମସ୍ତ ଯୁଦ୍ଧରେ ପଡ଼ିଲେ
ମୋର ପ୍ରାଣ ରଖିବି ବା କିମ୍ପା ମୁହିଁ ଭଲେ ।
ଏତେକ ବିଚାରି ତହୁଁ ସେ କୃତକେଶରୀ
ମନ୍ତ୍ରୀକି ଘେନି ବାହାର ହେଲା ଦଣ୍ଡଧାରୀ ।
ସଇନ୍ୟଙ୍କ ନିକଟରେ ମିଳିଲାକ ଯାଇ
ଅନେକ ଶସ୍ତ୍ର ଅସ୍ତ୍ର ଯେ ମାରଇ ନିଠାଇ ।
ପ୍ରୋଢ଼ାସୁର ସୈନ୍ୟ ତହିଁ ପଡ଼ନ୍ତି ଯେ ଘାଏ
ଦେଖି ମହାକୋପ କଲା ପ୍ରୋଢ଼ାସୁର ରାୟେ ।

ମାର ମାରବୋଲି ରଥ ଲେଉଟାଇ ଗଲା
କୃତକେଶୀର ଆଗରେ ଯାଇଣ କହିଲା ।
ବୋଇଲାରେ ରାଜା ତୁହି ଅଟୁ ବଳିୟାର
ମୋହର ସଙ୍ଗରେ ଆଜ କରିବୁ ସମର ।
କହୁଁ କହୁଁ ନାରଦ ଯେ ବିନ୍ଧେ ଲକ୍ଷେ ଲକ୍ଷେ
ବାଜନ୍ତେ ରୁଧିର ଗଳି ପଡ଼ଇ ପ୍ରତ୍ୟକ୍ଷେ ।
ସେ ନାରଦ ତପୋଧନ ଶୂନ୍ୟରେ ରହିଲେ
କଳି ଧୋକଡ଼ିରୁ ଧୂଳି ମୁଠାଏ ବୁଣିଲେ ।
ଲାଗୁ ଲାଗୁ ବୋଲି ଉଚ୍ଚେ ଶବଦେକ ଦେଲେ
ବୀଣା ବଜାଇ ଖେମଟା ନାଚ ଆରମ୍ଭିଲେ ।
କଳିଦ୍ୱନ୍ଦ୍ୱ ଲାଗିଲା ଯେ ସେଠାରେ ଅସଂଖ୍ୟ
ବଚନରେ ତାହା କିଏ କହିବ ପ୍ରତ୍ୟକ୍ଷ ।
ଦୁହେଁ ମହାକ୍ଷତ୍ରୀ କେହି ନ ଘୁଞ୍ଚନ୍ତି ପାଏ
ଶସ୍ତ୍ରମାନ ମରାମରି ହୁଅନ୍ତି ଯେ ଦୁହେଁ ।
ଦେବ ଦାନବରେ ତାହା ଗୋଚର ନୁହିଁଇ
ଦୁଇ ରାଜାଙ୍କର ତହିଁ ସମର ହୁଅଇ ।
ଅନେକ ନାରାଚ ପ୍ରୋଢ଼ାସୁରକୁ ବିନ୍ଧିଲା
କୃତକେଶୀ ସେ ନାରାଚ ଛେଦି ପକାଇଲା ।
କୋପେ ଅସୁର ବାଣରେ ଛେଦେ ଧନୁଶର
ଶୂନ୍ୟହସ୍ତ ହେଲା କୃତକେଶୀ ନୃପବର ।
ରଥୁଁ ଓହ୍ଲାଇ ଅସୁର ବେଗେ ଧାଇଁଗଲା
କୃତକେଶୀ ନୃପତିର କେଶକୁ ଧଇଲା ।
ରଥର ଉପରୁ ତାକୁ ତଳେ ପକାଇଲା
ହାଣିବାକୁ ମନେ କରି ଖଡ୍‌ଗ ଉଠାଇଲା ।
ତାହା ଦେଖିଣ ନାରଦ ଶୂନ୍ୟୁ ଓହ୍ଲାଇଲେ
ଅସୁର ହସ୍ତକୁ ମୁନି ଯାଇଣ ଧଇଲେ ।
ଆମ୍ଭ ରାଣ ତୋତେ ତାକୁ ନକର ନିଧନ
ଦୋଷକୁ ଦଣ୍ଡ ପାଇଲା ଏବେ ସେହି ଜାଣ ।
ଏହାକୁ ଏଠାରୁ ଆମ୍ଭେ ଧରି ଘେନିଯିବା
ବନ୍ଦୀ ପ୍ରକାରେ ତାହାକୁ ବାନ୍ଧି ରଖିଥିବା ।
ନାରଦ ବଚନେ ପ୍ରୋଢ଼ା କ୍ରୋଧ ଶାନ୍ତି କଲା
ତାହାଙ୍କର ବଳେ କୃତକେଶୀ ଜୟ କଲା ।
ବାଳ ଛାଡ଼ିଲା ଅସୁର ନାରଦ ବଚନେ
ପାଟ ଡୋର କରି ତାକୁ ରଖିଲା ବନ୍ଧନେ ।
ରଥର ଦଣ୍ଡାରେ ନେଇ ତାହାକୁ ବାନ୍ଧିଲା
କୃତକେଶୀ ମନ୍ତ୍ରୀ ବଡ଼ ବିକଳ ହୋଇଲା ।
ରଣ ଜୟକରି ପ୍ରୋଢ଼ାସୁର ବାହୁଡ଼ଇ
ଖଣା ଡେଇଁଣ ତାହା ରାଜ୍ୟେ ବାହାରଇ ।
ନାରଦଙ୍କୁ ହସି ଚାହିଁ କହଇ ଅସୁର
ବିନାଶ କାରଣେ ଯୁଦ୍ଧ କଲା ମୋ ସଙ୍ଗର ।
ଅକାରଣେ ମୋହର ଏ ସୈନ୍ୟଙ୍କୁ ନାଶିଲା
ବେଳହୁଁ ଏ ମୋର ସଙ୍ଗେ ପୀରତି ନ କଲା ।
ସଇନ୍ୟ ନିହତ ହେବା ଦେଖି ପ୍ରୋଢ଼ାସୁର
ମନେ ମନେ ହୋଇଲା ସେ ବିକଳ ଅପାର ।
ପ୍ରୋଢ଼ାସୁର ମନକଥା ନାରଦ ଜାଣିଲେ
ଅସୁର ମୁଖକୁ ଚାହିଁ ବଚନ ଭଣିଲେ ।
ତୁହି ରଣ ଜୟ କଲୁ ବୋଲି ସେ କହିଲେ
କୃତକେଶୀ ରାଜାକୁ ହେ ଦେଖିଣ ହସିଲେ ।
ନ ମାନିବା ଫଳ ଏହି କୃତକେଶୀ ବୀର
ଏଡ଼େକ କର୍ମ ଭୁଞ୍ଜିଲା ଜାଣ ନୃପବର ।
ନାରଦଙ୍କ ମୁଖ ଚାହିଁ ବୋଲେ ପ୍ରୋଢ଼ାସୁର
ଏତେ ସୈନ୍ୟ ମୋର ସେହୁ କଲା ନାରଖାର ।
ଏ କୃତକେଶୀ ହେତୁ ମୋ ସୈନ୍ୟ ନାଶଗଲେ
ଏହାର ଜୀବନ ମୁହିଁ ହରିବଇଁ ଭଲେ ।
ପ୍ରୋଢ଼ାସୁର ବଚନରେ ନାରଦ କହନ୍ତି
ସଂଗ୍ରାମ କଲେ ଅବଶ୍ୟ ସଇନ୍ୟ ମରନ୍ତି ।
ଏଥକୁ କିମ୍ପା ତୁ କିଛି ନ କର ହୋ ରାୟେ
ଗୁପ୍ତକରି ତୋତେ ଆମ୍ଭେ କହିବା କଥାଏ ।
କୃତକେଶୀ ରାଜାକୁ ତୁ ସଂଗ୍ରାମେ ଜିଣିଲୁ
ଆମ୍ଭର କଲ୍ୟାଣ ଯଶ ମହୀରେ ପାଇଲୁ ।
ଶୁଣି ପ୍ରୋଢ଼ାସୁର ମୁନି ଚରଣେ ନମିଲା
ବିନୟ କରି ବଚନମାନ ପ୍ରକାଶିଲା ।
ତମ୍ଭର ବଚନେ ମୁନି ନ କରିବି ଯେବେ
ଏଡ଼େକ ସମ୍ପଦ ମୋର କାହା ଘେନି ତେବେ ।
ବିନୟେ ଭକତି ଭାବ ଅସୁରର ଦେଖି
ନାରଦ ବୋଲନ୍ତି ଆମ୍ଭ ବୋଲେ ହୁଅ ସୁଖୀ ।
ଦୋଷକୁ ଯେ ଦଣ୍ଡ ଏହି ପାଇଲା ବହୁତ
ତୋର ହୋଇଥାଉ କୃତକେଶୀ ନରନାଥ ।
ବନ୍ଧନ ଏହାର ବେଗେ ତୁହି ଫେଡ଼ିଦିଅ
ଆମ୍ଭର ବଚନ ଥରେ ପ୍ରତିପାଳି ଥାଅ ।
ମୁନିଙ୍କର ବଚନ ସେ ଅନ୍ୟଥା ନ କଲା
କୃତକେଶୀ ବନ୍ଧନକୁ ଶୀଘ୍ର ଫେଇଦେଲା ।
ନେଇ ବସାଇଲା ତାକୁ ଆପଣା ପାଶର
ନାରଦ ବୋଇଲେ ତୁହୋ ଶୁଣ ନୃପବର ।
ସମାଧାନ ଦିଅ ଏବେ ବାହୁଡ଼ିଣ ଯାଉ
କଳିଦ୍ୱନ୍ଦ୍ୱ ବାବୁ ସବୁ ଏଠାବରୁ ରହୁ ।
ଶୁଣି କୃତକେଶୀ ତାର ମନ୍ତ୍ରୀଙ୍କୁ ଚାହିଁଲା
ସମାଧାନ ସଞ୍ଚାମାନ ଭିଆଅ ବୋଇଲା ।
ଆଜ୍ଞା ପରମାଣେ ଚଳିଗଲା ମନ୍ତ୍ରୀବର
ଗନ୍ତାଘରେ ପଶି ଆସେ ସଜାଡ଼ି ସମ୍ଭାର ।

ସହସ୍ରେକ ରଥ ଦ୍ରବ୍ୟ ପାଣି ସଜାଡ଼ିଲା
ଏକଶତ ହସ୍ତୀ ସେହୁ ବେଗେ ସଜକଲା ।
ଦୁଇସସ୍ର ସୁନାରୂପା ବାଖର ସହିତେ
ସଜ କରି ଆଣିଦେଲା ମନ୍ତ୍ରୀ ଯେ ତୁରିତେ ।
ଏକଲକ୍ଷ ଦେବଅଙ୍ଗ ବସନ ଭିଆଇ
ସେ ସମସ୍ତ ଘେନି ମନ୍ତ୍ରୀ ଆସଇ ଚଳାଇ ।
ରାଜାର ଛାମୁରେ ନେଇ ସମ୍ଭାର ଥୋଇଲା
ଦେଖି ରାଜା ମନ୍ତ୍ରୀକି ସେ ବହୁ ପ୍ରଶଂସିଲା ।
ସେହି ସବୁ ଦ୍ରବ୍ୟ ଦେଖିକରି ପ୍ରୋଢ଼ାସୁର
ନାରଦଙ୍କ ମୁଖ ଚାହିଁ କରଇ ବିଚାର ।
ବହୁତ ଭକତି ମୋତେ ଏହି ରାଜା କଲା
ଅନେକ ପଦାର୍ଥ ସମାଧାନ କରିଦେଲା ।
ନାରଦ ବୋଇଲେ ତୁହୋ ସନ୍ତୋଷ ହେଲୁକି
ଏକଥା ଫେଡ଼ିଣ ମୋତେ କହ ଉପଲକ୍ଷି ।
ପ୍ରୋଢ଼ାସୁର ବୋଇଲା ମୁଁ ସନ୍ତୋଷ ହୋଇଲି
ଏହାର ସଙ୍ଗରେ ଆଜ ପୀରତି ମୁଁ କଲି ।
ଆଜଠାରୁ ଏ ମୋହର ମଇତ୍ର ହୋଇଲା
ପ୍ରୋଢ଼ାସୁର ଦୈତ୍ୟ ସତ୍ୟ ସତ୍ୟ ଉଚ୍ଚାରିଲା ।
କୃତକେଶୀ ରାଜା ସତ୍ୟ ସତ ଉଚ୍ଚାରଇ
ନାରଦ ମୁନି ଯେ ସାକ୍ଷୀ ଦେଲେ ତହିଁଥାଇ ।
ଦୁହେଁ ସତ୍ୟ ବାକ୍ୟେ ତହିଁ ମଇତ୍ର ହୋଇଲେ
କୋଳାଗ୍ରତ ହୋଇ ଦୁହେଁ ନିଶ୍ଚିନ୍ତେ ବସିଲେ ।
ବହୁତ ପ୍ରୀତି ବଢ଼ିଲା ଦୁହିଁଙ୍କର ତହିଁ
ଯିବା ବୋଲି ପ୍ରୋଢ଼ାସୁର ମେଲାଣି ମାଗଇ ।
ପୁଣିକଥା ଏକ ତାର ମନରେ ଭାଳିଲା
ଏତେ ସୈନ୍ୟ ଆଜି ମୋର ଅକାରଣେ ମଲା ।
ପ୍ରୋଢ଼ାସୁର ମନକଥା ନାରଦ ଜାଣିଲେ
ହସିଣ ଆପେଣ ତହିଁ ବଚନ ଭାଷିଲେ ।
ବୋଇଲେରେ ରାଜା ମନେ ନ ଭାଳ ତୁ କିଛି
ତାର ସୈନ୍ୟ ବଞ୍ଚିବାକୁ ଉପାୟେକ ଅଛି ।
ଏତେ ବୋଲି ମୁନି ପାଣି ମୁଠାଏ ମନ୍ତ୍ରିଲେ
ସୈନ୍ୟଙ୍କ ଉପରେ ନେଇ ତାହାକୁ ସିଞ୍ଚିଲେ ।
ଗତୁ ଶତେଗୁଣ ହୋଇ ସଇନ୍ୟ ଉଠନ୍ତି
ମାର ମାର ଧର ଧର ଶବଦ କରନ୍ତି ।
ପ୍ରୋଢ଼ାସୁର ବୋଲେ ତୁନି ହୁଅନ୍ତୁ ସମସ୍ତେ
ଏ ରାଜା ମଇତ୍ର ହେଲା ଆମ୍ଭର ସହିତେ ।
ରାଜାର କହନ୍ତେ ସୈନ୍ୟ ମଉନ ହୋଇଲେ
ଯେ ଯାହାର ମତେ ତୁନି ହୋଇଣ ରହିଲେ ।
କୃତକେଶୀ ନମିଲା ଯେ ମୁନିଙ୍କ ଚରଣ
ମୋର ସୈନ୍ୟ ବଞ୍ଚାଇଣ ଦିଅ ତପୋଧନ ।
ସେହିପରି ମନ୍ତ୍ରପାଣି ମୁନି ଯେ ସିଞ୍ଚିଲେ
କୃତକେଶୀର ସୈନ୍ୟଙ୍କୁ ଜୀଆଇଣ ଦେଲେ ।
ପୁଣି ଜଳ ଧରି ମନ୍ତ୍ର ପଢ଼ିଲେକ ମୁନି
ଖଣା ଯାହା ଶୁଖିଥିଲା ପୁରିଲାକ ପାଣି ।
ଦେଖିଣ ଉସତ ହେଲା ରାଜା କୃତକେଶୀ
ନାରଦଙ୍କୁ ମନେ ମନେ ବହୁତ ପ୍ରଶଂସି ।
ତୁମ୍ଭ ନିର୍ଦ୍ଦୟାରେ ମୁହିଁ ପାଇଲି ଏ କଷ୍ଟ
ଏବେ ଦୟାକର ମୋତେ ବ୍ରହ୍ମାଙ୍କର ଚାଟ ।
ଜୟ ତୁ କାଳିକା ମାଗୋ ଶଙ୍କର ଘରଣୀ
ଘୋର ଦୈତ୍ୟ ନାଶି ସ୍ୱର୍ଗ ରଖିଲୁ ତୁ ପୁଣି ।
ରକତବୀର୍ଯ୍ୟ ରୁଧିର ଦେଉ ମାଗୋ ଚାଟି
କ୍ଷଣକେ ଭିଆଇ ପାରୁ ତୁ ଗୋ ନବସୃଷ୍ଟି ।
କଟକ କାଳୀ ଚରଣେ ଶରଣ ମୋହର
ଶାରଳା ଦାସ ଝଙ୍କଡ଼ ପୁରେ ମୋର ଘର ।



## ପ୍ରୋଢ଼ାସୁର ବଧ

ଶୁଣ ଆହେ ମନୁରାଜା ବଦନ୍ତି ଅଗସ୍ତି
ଏସନକ ପ୍ରକାରେ ସେ ପ୍ରୋଢ଼ାସୁର ରୀତି ।
ଏବେ ସାବଧାନେ ଶୁଣ ହୋଇ ଏକଚିତ୍ତ
ଯେମନ୍ତେ ପାତକ ତୋର ନ ରହିବ ଗାତ୍ର ।
କୃତକେଶୀକୁ ରାକ୍ଷସ ମେଲାଣି ମାଗିଲା
ଥାଟପାକ ଘେନି ତହୁଁ ବେଗେ ଚଳିଗଲା ।
କୃତକେଶୀ ଗଲା ଚଳି ଆପଣା ନଗର
ପୂର୍ବ ବିଧିରେ ପାଳିଲା ରାଜ୍ୟର ବେଭାର ।
ଟମକ ନିଶାଣ ବାଇ ପ୍ରୌଢ଼ାସୁର ରାୟେ
ଶବଦରେ ମେଦିନୀକୁ ସେହି ଚମକାଏ ।
ପୃଥିବୀ ସେ ଟଳମଳ ଜଗତ ଅନ୍ଧାର
ସ୍ୱର୍ଗେ ଦେବତାଏ କମ୍ପି ହେଲେ ଥରହର ।
ପ୍ରୋଢ଼ାସୁର ଦିଗବିଜେ କରି ବାହୁଡ଼ିଲା
ଛୟାଶୋଇ ସହସ୍ର ଯେ ରାଜାଙ୍କୁ ଜିଣିଲା ।
ଏବେ ସ୍ୱର୍ଗକୁ ଅଇଲା ପ୍ରାୟେକ ଦିଶଇ
ନ ପୁଣ ଆମ୍ଭର ସଙ୍ଗେ ଯୁଦ୍ଧ ଆରମ୍ଭଇ ।
ଇନ୍ଦ୍ର ବୃହସ୍ପତି ବ୍ରହ୍ମା ସର୍ବେ ବସିଥିଲେ
ପ୍ରୋଢ଼ାସୁର ଦିଗବିଜେ ଶୁଣିଣ ଭାବିଲେ ।
ଇନ୍ଦ୍ର ପଚାରିଲେ ତହିଁ ବ୍ରହ୍ମା ମୁଖ ଚାହିଁ
ପ୍ରୋଢ଼ାସୁର ଭୟେ ସ୍ୱର୍ଗେ ନ ପାରିବା ରହି ।
ବଡ଼ଇ ଦୁର୍ଭାର ସେହୁ ଅଟଇ ଅସୁର
କହ ହେ ଜଗତ ପିତା ଏଥିର ବିଚାର ।
ପୃଥିବୀକୁ କାଳାନ୍ତକ ହୋଇଲା ଦର୍ପିଷ୍ଟ
ରାବଣହୁଁ ତହୁଁ ଦୁଷ୍ଟ ହୋଇଲା ଗରିଷ୍ଠ ।

ମର୍ତ୍ତ୍ୟ ପାତାଳ ରାଜାଙ୍କୁ ଜିଣିଲା ଏ ଭଳେ
ଆଉ ସ୍ୱର୍ଗ ନ ରହିବ ତାର ଧାଡ଼ି ଥିଲେ ।
ପୁଣି ଦେବରାଜ ତାକୁ କହଇ ବିଚାରି
କାହା ହସ୍ତେ ମରିବ ସେ କହ କୁଶଧାରୀ ।
ବ୍ରହ୍ମାଏ ବୋଇଲେ ତାହା ଗୁରୁଙ୍କୁ ପଚାର
ତେବେ ଜାଣିବା ତଦନ୍ତ କଥାର ବିଚାର ।
ଇନ୍ଦ୍ର ବ୍ରହ୍ମା ପଚାରନ୍ତେ ଗୁରୁ ଯେ କହନ୍ତି
ଖଡ଼ି ପକାଇଣ ସେହୁ ମନରେ ହସନ୍ତି ।
ଇନ୍ଦ୍ର ପଚାରନ୍ତି ଗୁରୁ ହସିଲ ତ ଆହେ
ସ୍ୱର୍ଗେ ରହି ପାରିବକି ଅସୁରର ଭୟେ ।
ବୃହସ୍ପତି ଭାଷିଲେ ମୁଁ ଜାଣିଲି କଥାନ୍ତ
ଅସୁର ଭୟ ନ ଭାଳ ଆହେ ସୁରନାଥ ।
ତୁମ୍ଭର ହସ୍ତରେ ସେହୁ ପାଇବ ମରଣ
ବଜ୍ରର ଆଘାତେ ନିଶ୍ଚେ ହେବ ନିବାରଣ ।
ଏହିଥର ଯେବେ ସେହୁ ସ୍ୱର୍ଗକୁ ଆସିବ
ତୋର ବଜ୍ରାଘାତେ ଜାଣ ନିଶ୍ଚେ କ୍ଷୟଯିବ ।
ବୃହସ୍ପତି କହିଲେ ସେ ବାସବ ଶୁଣିଲେ
ଆବର ଦେବତାମାନେ ସମସ୍ତ ଜାଣିଲେ ।
ଏଥୁଅନନ୍ତରେ ଦେବ ସଭା ମଉଳିଲା
ଦେବତାଙ୍କ ଗୋଷ୍ଠୀ ଯହୁଁ ସେଠାରୁ ଭାଙ୍ଗିଲା ।
ବ୍ରହ୍ମା ବୃହସ୍ପତି ଦୁହେଁ ଗଲେ ନିଜପୁରେ
ଦେବତାଏ ଗଲେ ତହୁଁ ଯେ ଯାହା ମନ୍ଦିରେ ।
ଶଚୀଙ୍କ ପୁରରେ ଇନ୍ଦ୍ର ବିଜେ କଲେ ଯାଇ
କହିଲେ ଶଚୀ ଆଗରେ ସକଳ ବୁଝାଇ ।
ପୌଢ଼ାସୁର ବୋଲି ଯେଉଁ ଅସୁର ଗରିଷ୍ଠ
ତାହାର ଭୟେ ଚମକି ପଡ଼େ ସ୍ୱର୍ଗରାଷ୍ଟ୍ର ।
ଜିଣିଲାଣି ଦିଗବିଜେ କରି ତିନିପୁର
ଏବେ ସେ ଜିଣିବ ବୋଲି ଆସେ ଆମ୍ଭପୁର ।
ଶଚୀ ବୋଲେ ପ୍ରାଣନାଥ ତାକୁ ବଧ କର
ଉଶ୍ୱାସ ହୋଇବ ତିନି ଭୁବନର ଭାର ।
ଇନ୍ଦ୍ର ବୋଲେ କିଛିଦିନ ଅଛଇ ଆୟୁଷ
ଅବଶ୍ୟ ବଜ୍ରେ ତାହାକୁ କରିବି ବିନାଶ ।
ଏଥୁଅନ୍ତେ ଶୁଣିବା ଭୋ ରାୟେ ଦିବ୍ୟରସ
ଶ୍ରୀ ମହାଭାରତ ଅଟେ ଅମୃତ ସଦୃଶ ।
କୃତକେଶୀ ରାଜାକୁ ଯେ ଜିଣି ପ୍ରୋଢ଼ାସୁର
ସ୍ୱର୍ଗକୁ ବାହିବ ବୋଲି କରଇ ବିଚାର ।
ପ୍ରୋଢ଼ାସୁର ନାରଦଙ୍କୁ ପୁଣି ପଚାରଇ
ମଞ୍ଚପୁର ରାଜାଙ୍କୁ ମୁଁ ହେଲେ ଜିଣିଲଇଁ ।
ମର୍ତ୍ତ୍ୟ ପାତାଳ ଏ ଦୁଇ ମୋହର ହୋଇଲା
ସ୍ୱର୍ଗପୁର କଥା ମୋତେ ଗୋଚର ନୋହିଲା ।
ଇନ୍ଦ୍ର ସଙ୍ଗତରେ ମୁହିଁ କରିବଇଁ ରଣ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ଏକ ହେବ ଜାଣ ।
ନାରଦ ବୋଇଲେ ତୁହି ଭ୍ରମିଲୁ ମଞ୍ଚରେ
ଥୋକାଏକ ଦିନ ଥାଅ ତୋହର ନବରେ ।
ଏବେ ଆସି ଚତୁର୍ମାସ୍ୟା ହେଲା ପରବେଶ
ଯୁଦ୍ଧର ସମୟ ନୁହେଁ ଏହି ଚାରିମାସ ।
ନାରଦଙ୍କ ବାକ୍ୟ ପ୍ରୋଢ଼ା ଅସୁର ମାନିଲା
ଥାଟ ଲେଉଟାଇ ସେହୁ ନିଜପୁରେ ଗଲା ।
ନିଶ୍ଚିନ୍ତ ହୋଇଣ ତାର ମନ୍ଦିରେ ରହିଲା
ଏହିମତେ ଚତୁର୍ମାସ୍ୟା ଆସି ଶେଷ ହେଲା ।
ନିଶ୍ଚିନ୍ତରେ ପ୍ରୋଢ଼ାସୁର ରାଜ୍ୟରେ ରହଇ
ଜନ ପ୍ରଜାମାନଙ୍କୁ ସେ ସୁଖରେ ପାଳଇ ।
ନାରଦ ମେଲାଣି ଘାଇ ସ୍ୱର୍ଗପୁର ଗଲେ
ପ୍ରୋଢ଼ାଅସୁର ଚରିତ ଦେବଙ୍କୁ କହିଲେ ।
ଶୁଣି ଦେବତାଏ ମହାଆନନ୍ଦ ହୋଇଣ
ନିଶ୍ଚିନ୍ତରେ ସ୍ୱର୍ଗପୁରେ ରହିଲେ ସେ ଜାଣ ।
ଚତୁର୍ମାସ୍ୟା ଅନ୍ତେ ମାର୍ଗଶିର ପ୍ରବେଶିଲା
ପ୍ରୋଢ଼ାସୁର ରାଜା ତାର ମନ୍ତ୍ରୀକୁ ପୁଚ୍ଛିଲା ।
ଥାଟ ସୈନ୍ୟ ମୋର ମନ୍ତ୍ରୀ ବେଗେ ସଜକର
ଇନ୍ଦ୍ର ସଙ୍ଗେ ଆଜ ମୁହିଁ କରିବି ସମର ।
ତାହାକୁ ଜିଣିଲେ ତିନିପୁର ମୋର ହେବ
ଯୁଗ ଯୁଗାନ୍ତରେ ଏହି କଥା ରହିଥିବ ।
ରାଜାର କହନ୍ତେ ମନ୍ତ୍ରୀବର ତ ଶୁଣିଲା
ରାଜା ଆଜ୍ଞାପାଇ ତାର ମନ୍ଦିରକୁ ଗଲା ।
ଡଗରକୁ ଚାହିଁ ମନ୍ତ୍ରୀ କହିଲା ଏମନ୍ତ
ରାଜ୍ୟରେ ଯାଇ ଘୋଷଣା ଦିଆଅ ତୁରିତ ।
ସୈନ୍ୟ ସଜ ହୁଅନ୍ତୁ ସେ ରାଜା ଆଜ୍ଞାଦେଲେ
ମନ୍ତ୍ରୀର ମୁଖରୁ ଏହା ଡଗର ଶୁଣିଲେ ।
ସିଂହଦ୍ୱାରେ ଏ ଘୋଷଣା ଯାଇ ଦିଆଇଲେ
ଥାଟ ସଜହୋଇ ଆସ ରାଜା ଆଜ୍ଞା ଦେଲେ ।
ମନ୍ତ୍ରୀ ମୁଖରୁ ଏମନ୍ତ ଶୁଣିଲେ ଡଗରେ
ଘୋଷଣା ଦିଆଇଲେ ସେ ଯାଇ ସିଂହଦ୍ୱାରେ ।
ଶୁଣି ତାହା ଥାଟ ସୈନ୍ୟ ହୋଇଲେକ ସଜ
ପଦାତି ଯେ ରଥ ଘୋଡ଼ା ମଦମତ୍ତ ଗଜ ।
ସମସ୍ତେ ସଜ ହୋଇଣ ହୋଇଲେ ବାହାର
ସବୁ ବଳ ମିଳିଲେକ ଆସି ସିଂହଦ୍ୱାର ।
ଚାରିଲକ୍ଷ ପଦାତି ଯେ ଅଶ୍ୱ ଦୁଇଲକ୍ଷ
ପାଇକ ତିନି କ୍ଷଉଣୀ ଅଇଲେ ପ୍ରତ୍ୟକ୍ଷ ।
ପାଞ୍ଚଲକ୍ଷ ଗଜ ପୁଣି ବାହାର ହୋଇଲେ
ଉଦଣ୍ଡ ଉଲ୍ଲେଖ ପାଟଛତ୍ର ଉଡ଼ାଇଲେ ।

ଏହିରୂପେ ସଇନ୍ୟ ଯେ ହୋଇଲେ ବାହାର
ଶଙ୍ଖ ମହୁରୀ ନିଶାଣ ଶବଦ ଯେ ଘୋର ।
ସ୍ୱର୍ଗେ ଥାଇ ଦେବତାଏ ବାରତା ପାଇଲେ
ପ୍ରୋଢ଼ା ଅସୁର ସ୍ୱର୍ଗକୁ ବାହିଲା ବୋଇଲେ ।
ଦିବ୍ୟବେଶ ହୋଇ ପ୍ରୋଢ଼ାଅସୁର ବାହାର
ରଥ ଏକ ସଜ କରିଥିଲା ମନ୍ତ୍ରୀବର ।
ଅନୁକୂଳ ଘେନି ତହିଁ ବସିଲାକ ଯାଇଁ
ମଙ୍ଗଳ ବନ୍ଦାପନା ଯେ ତହିଁରେ ସାରଇ ।
ବାହାର ହୋଇଣ ଥାଟ ଆଗେ ଆଗେ ଗଲେ
ପାଦରେଣୁରେ ତପନ ଅଦୃଶ୍ୟ ହୋଇଲେ ।
ରଥ ଚଳାଇଣ ରାଜା ପଛେ ପଛେ ଗଲା
ସ୍ୱର୍ଗପୁରକୁ ସେ ପୁଣି ଅନୁକୂଳ କଲା ।
ଦେବଙ୍କର ଡଗରେ ଯେ ବୁଲି ଯାଉଥିଲେ
ଅସୁରଙ୍କ ସଜ ଦେଖି ବେଗେ ବାହୁଡ଼ିଲେ ।
ସଭା ମଣ୍ଡାଇଣ ବସିଅଛି ସୁରପତି
ଦେବତାଏ ବସିଛନ୍ତି ଇନ୍ଦ୍ରଙ୍କର କତି ।
ଅପସରୀମାନେ ତହିଁ ନାଚନ୍ତି ହରଷେ
ସାବଧାନେ ଦେଖଇ ସେ କଶ୍ୟପର ଶିଷ୍ୟେ ।
ଏ ସମୟେ ଡଗରେ ଯେ ପ୍ରବେଶ ହୋଇଲେ
ପ୍ରାୟେ ପଡ଼ିକରି ସେହି ଶିରେ କର ଦେଲେ ।
ସାବଧାନ ହୋଇ ସର୍ବେ ଶୁଣିବା ଗୋସାଇଁ
ଦେବ ଆଜ ପ୍ରୋଢ଼ାସୁର ସ୍ୱର୍ଗକୁ ଧାମଇଁ ।
କି ବୁଦ୍ଧି କରିବା ଏବେ ଆହେ ସୁରରାଣ
ନିଶ୍ଚୟ ଦେବତାଙ୍କର ହୋଇଲା ମରଣ ।
ଶୁଣି ତାହା ସୁରପତି ପଚାରଇ ଦମ୍ଭେ
କି ବାରତା ବୁଝିଆସି କହୁଅଛ ତୁମ୍ଭେ ।
ସ୍ୱର୍ଗକୁ ଯେ ପ୍ରୋଢ଼ାସୁର ବାହିଲା ଗୋସାଇଁ
ଏଥକୁ ବିଚାର କର ସାବଧାନ ହୋଇ ।
ଶୁଣି ସୁରପତି ହୋଇ ଅତ୍ୟନ୍ତ ବିସ୍ମୟ
ଦେବତାଙ୍କୁ ଚାହିଁ ପୁଣ ବୋଲେ ସୁରରାୟ ।
ଅସୁର ସଙ୍ଗରେ ଆମ୍ଭେ କରିବା ସମର
ଯେ ଯାହାର ଅସ୍ତ୍ର ଶସ୍ତ୍ର ବେଗେ ଯାଇ ଧର ।
ଶୁଣି ଦେବଗଣ ଯାନ ବାହନ ଚଢ଼ିଲେ
ଯେ ଯାହା ଆୟୁଧମାନ ତୁରିତେ ଧରିଲେ ।
ମୃଦଙ୍ଗ ଦୁନ୍ଦୁଭି ଆଦି ବାଜେ ବୀରତୁର
ଶଙ୍ଖ ମହୁରୀ ମଙ୍ଗଳ ବାଦ୍ୟ କୁତୂହଳ ।
ଐରାବତ ଚଢ଼ି ଇନ୍ଦ୍ର ବାହାର ହୋଇଲେ
ସଜହୋଇ ଦେବତାଏ ଆଗଭର ହେଲେ ।
ମଙ୍ଗଳ ଆରତି ପୁଣି ବନ୍ଦାପନା ହୋଇ
ଆପଣେ ଅଇଲା ସଜହୋଇ ସୁରସାଇଁ ।
ଚିତ୍ରସେନ ସୁରସେନ ଆଦିଙ୍କର ମୂଳେ
ବେଗେ ଦେବଗଣ ସଜ ହେଲେ ଯେ ଯାହାରେ ।
ଥୋକାଏକ ଦୂର ତହୁଁ ଗଲେ ମେଳ ହୋଇ
ଅସୁର ଆସିବା ପଥ ନିରୋଧିଲେ ଯାଇଁ ।
ପ୍ରୋଢ଼ାସୁର ଯେ ଅସୁର ବଳ ସଙ୍ଗେ ଘେନି
ପାବନୀ ଗଙ୍ଗାକୂଳରେ ମିଳିଲା ତକ୍ଷଣି ।
ଦେବତାଏ ଆସି ସେହି ଠାବରେ ମିଳିଲେ
ବାଦ୍ୟର ଶବଦ ଶୁଭେ ତହିଁ କୁତୂହଳେ ।
ଦୁଇସୈନ୍ୟ ତହିଁ ଯହୁଁ ହୋଇଲେକ ଭେଟ
ଉଚ୍ଚବାଚ ହୋଇ ସର୍ବେ ଦେଖାଇ ମୁରାଟ ।
ଦେବାସୁର ସୈନ୍ୟ ଯହୁଁ ଏକମେଳ ହେଲେ
ଉଚ୍ଚବାଚ ହୋଇ ଘୋର କନ୍ଦଳ ସେ କଲେ ।
ମାର ମାର ଶବ୍ଦ କରି ଡାକନ୍ତି ଅସୁରେ
ଡାକ ଶୁଣି ଦେବଗଣ ଧାଉଁଛନ୍ତି ଖରେ ।
ମାରନ୍ତି ଭାଲ୍ଲ ଶକତି ଶୂଳ ତୀକ୍ଷଣ ଶର
ଯାଇଣ ପଡ଼ଇ ତାହା ଅସୁରଙ୍କ ଶିର ।
ମୁହଁ ମାଡ଼ି ହୋଇ ଆସି ଭୂମିରେ ପଡ଼ଇ
ଲିତାଏ ସେ ଅସୁରଙ୍କ ଅଙ୍ଗେ ନ ଭେଦଇ ।
ଘାତ ପାଇଣ ଅସୁର ହୋଇ କୋପମୁଖ
ଦେବତାମାନଙ୍କୁ ଗାଳି ଦିଅନ୍ତି ଅନେକ ।
ତୁମ୍ଭେ ଦେବତାଏ ଅଟ ଆମ୍ଭ ଭକ୍ଷ ପୁଣ
ତୁମ୍ଭମାଂସ ଖାଇ ତୋଷ ହୋଇବ ପରାଣ ।
କହୁ କହୁ ଶସ୍ତ୍ର ମରାମରି ସେ ହୁଅନ୍ତି
କେହି କାହାକୁ ସଂଗ୍ରାମେ ନୀଚ ସେ ନୁହନ୍ତି ।
ବେଳୁବେଳ ବଢ଼ିଲା ସେ ଯୁଦ୍ଧ ଅଗୋଚର
ଦେବତାଙ୍କ ଅସ୍ତ୍ରେ ଦୈତ୍ୟ ପଡ଼ିଲେ ଅପାର ।
ଯେସନେ କଦଳୀ ବନ ବାତାଘାତେ ଧ୍ୱଂସ
ଅସୁର ବଳ ତେସନେ ପଡ଼ିଗଲେ ନାଶ ।
ମଡ଼ାର ଉପରେ ମଡ଼ା କୁଢ଼ କୁଢ଼ ହୋଇ
ହାତୀ ଘୋଡ଼ା ପଦାତି ଯେ କ୍ଷୟ ପାଇଯାଇ ।
ରକତେ କର୍ଦ୍ଦମ ହୋଇଗଲା ମହୀସ୍ଥଳୀ
ରକ୍ତବହେ ଯେଉଁପରି ନଦୀ ଯେ ଉଛୁଳି ।
ରକତ ନଦୀରେ ମଡ଼ା ଯାଉଛନ୍ତି ଭାସି
ଗୃଧ୍ର ଶୃଗାଳେ ବସିଣ ମୁଖେ ମାଂସ ଭକ୍ଷି ।
ଅସୁରଙ୍କ ଘାତେ ଦେବଗଣ ଯେ ପଡ଼ିଲେ
ଆକାଶେ ଥାଇ ନାରଦ ମୁନି ଦେଖୁଥିଲେ ।
କଳି ଧୋକଡ଼ିରୁ ସେହି ମୁଠାଏ ବୁଣିଲେ
ଲାଗୁ ଲାଗୁ ବୋଲି ତହିଁ ନାଚ ଆରମ୍ଭିଲେ ।
ହରି ଧ୍ୱନି କରି ବୀଣା ନାଦ ସେ କରନ୍ତି
ମହାଆନନ୍ଦରେ ମୁନି ଯୁଦ୍ଧକୁ ଦେଖନ୍ତି ।

ଏହପରି ରାତ୍ରଦିନ ସଂଗ୍ରାମ ହୋଇଲା
ଅନେକ ଅସୁରବଳ ତହିଁ କ୍ଷୟ ଗଲା ।
ଅସୁରବଳ ବିନାଶ ଦେଖି ପ୍ରୋଢ଼ାସୁର
ବିଚାରଇ ଯଶ ମୋର ନୋହିବ ଏଥର ।
ମର୍ତ୍ତ୍ୟମଣ୍ଡଳରେ ମୁହିଁ ଦିଗବିଜେ କଲି
କାହାର ହାତରେ ଅପଚୟ ନ ପାଇଲି ।
କୃତକେଶ୍ରୀ ସଙ୍ଗେ ମୁହିଁ କଲଇଁ ସମର
ଅନେକ ସୈନ୍ୟବଳ ସେ ମାଇଲା ମୋହର ।
ନାରଦ ଥାଇଣ ତାହା ଜୀଆଇଣ ଦେଲେ
ଦେବତାଙ୍କ ହାତେ ଅପଚୟ ହେଲା ଭଲେ ।
ଏତେକ ବୋଲି ଅସୁରକୋପଭର ହୋଇ
ଧନୁରେ ନାରାଚମାନ ପୂରାଇଲା ନେଇ ।
କୋପେ ଦେବତାମାନଙ୍କୁ ମାରି ଗୋଡ଼ାଇଲା
ଏକ ଏକ ନାରାଚ ସେ ଜଣକେ ବିନ୍ଧିଲା ।
କୋଟି କୋଟି ମାରନ୍ତେ ସେ ଅସ୍ତ୍ର ଶସ୍ତ୍ରମାନ
ପଡ଼ିଲେକ କୁଢ଼ କୁଢ଼ ହୋଇ ଦେବଗଣ ।
ଦେଖି ତାହା ଶକ୍ରରାୟ କୋପେଣ ଧାଇଁଲା
ପ୍ରୋଢ଼ା ଅସୁରକୁ ଯାଇ ବାଟ ଓଗାଳିଲା ।
ବୋଇଲା ଅସୁର କିମ୍ପା ସୈନ୍ୟ ତୁହି ନାଶୁ
ଆଜ କରିବଇଁ ମୁହିଁ ତୋତେ ଧୂଳିପାଂଶୁ ।
ଏତେ ବୋଲି ଶକ୍ରରାୟ ନାରାଚ ପୂରାଇ
ଅସୁରର ଉପରକୁ ନିଠାଇ ବିନ୍ଧଇ ।
ଅଙ୍ଗେ ବାଜନ୍ତେ ନାରାଚମାନ ନ ଭେଦିଲା
ପ୍ରଜ୍ୱଳିତ ଅଗ୍ନିପରି ଜଳିଣ ଉଠିଲା ।
ଟହ ଟହ ହୋଇ କରି ହସିଲା ଅସୁର
ସହସ୍ରେ ନାରାଚ ପୁଣି ବିନ୍ଧଇ ପଛର ।
ଇନ୍ଦ୍ରର ଅଙ୍ଗରେ ତାହା ବାଜିଲାକ ଯାଇ
ହବୋଡ଼ା ଶରରେ ଶକ୍ର ଦେଲାକ ଉଡ଼ାଇ ।
କୋପେଣ ଅସୁର ତହୁଁ ଆଗଭର ହେଲା
ଲକ୍ଷେକ ନାରାଚ ପୁଣି ଗୁଣେ ବସାଇଲା ।
ତାହା ସବୁ ସମ୍ଭାଳିଣ ସହସ୍ରାଲୋଚନ
ପାଞ୍ଚଶତ ନାରାଚ ସେ ଚଢ଼ାଇଲା ପୁଣ ।
ଅସୁରର ଉପରକୁ ମନ୍ତ୍ରିଣ ବିନ୍ଧିଲା
ଅସୁର ଉପରେ ଯାଇଁ ସେ ଶର ପଡ଼ିଲା ।
ସ୍ନେହା ଫୁଟି ସେ ନାରାଚ ନିକଳିଣ ଯାଇଁ
ଖଳ ଖଳ ହୋଇ ରକ୍ତ ପଡ଼ିଲାକ ବହି ।
ରୁଧିର ବହିବାକୁ ସେ ନ କରଇ ଶଙ୍କା
ବାୟୁବେଗେ ରଥ ବାହେ ହୋଇ ରଣରଙ୍କା ।
ଦୁହେଁ ମହାକ୍ଷତ୍ରୀ କେହି ନ ଘୁଞ୍ଚନ୍ତି ରଣେ
ନାରାଚ ସେ ମରାମରି ହନ୍ତି ଜଣେ ଜଣେ ।

ଦୁଇରାତ୍ର ଦୁଇଦିନ ସମର ହୋଇଲା
ନାରାଚ ଘାତରେ ସ୍ନେହାମାନ ଯେ ଛିଡ଼ିଲା ।
ନାରାଚ ତେଜେ ଆକାଶ ଧୂମମୟ ହୋଇ
ଦିବସ ଯେ ଅନ୍ଧକାର ପ୍ରାୟେକ ଦିଶଇ ।
ବେଳୁବେଳ ସମର ଯେ ଅଧିକ ହୋଇଲା
କେହି କାହାକୁ ହିଁ ତହିଁ ଜିଣାନ୍ତା ନୋହିଲା ।
ଯେତେକ ଅସୁରବଳ ତହିଁ ଆସିଥିଲେ
ଦେବତାଙ୍କ ଶରଘାତେ ସର୍ବେ ନାଶଗଲେ ।
ହାତୀ ରଥୀ ଘୋଡ଼ା ଯେତେ ସବୁ ଗଲେ କ୍ଷୟ
ମନ୍ତ୍ରୀକି ଘେନି ରହିଛି ଏକା ଦୈତ୍ୟରାୟ ।
ରାତ୍ର ଦିବସ ସମରେ କ୍ଷଣେ ନ ରହଇ
ରକତରେ କର୍ଦ୍ଦମ ଯେ ହେଉଅଛି ମହୀ ।
ଦେବ ଦାନବରେ ସେହି ଯୁଦ୍ଧ ଘୋର ତର
ଶସ୍ତ୍ର ଭେଦେ ଅଙ୍ଗ ହେଲା ରକ୍ତେ ଜର ଜର ।
ନିଜବଳ ହତ ଦେଖି ପ୍ରୋଢ଼ାସୁର ରାୟ
ମନେ ବିଚାରଇ ଏଥି ହୋଇବ ଅଜୟ ।
ଏତେକ ଭାଳି ସେ କରେ ଗଦାଏ ଧଇଲା
ଶକ୍ରରାଜା ଅଙ୍ଗେ ନେଇ ବୁଲାଇ ପିଟିଲା ।
ଗଦା ବାଜନ୍ତେଣ ଇନ୍ଦ୍ର ଅଙ୍ଗକୁ ପାତିଲେ
ବିଭଙ୍ଗ ନ ହୋଇ ଟହ ଟହ ସେ ହସିଲେ ।
ରଥର ଉପରୁ ଦୈତ୍ୟ ଡେଇଁଣ ପଡ଼ଇ
ମୁଠେ ନେଇ ଇନ୍ଦ୍ରରାଜା ଉପରେ ମାରଇ ।
ବିଧା ଘାତ ପାଇ ଇନ୍ଦ୍ର ମନେ କୋପ କଲେ
ବଜ୍ରସୂଚୀ ଶର ସେହୁ ହସ୍ତରେ ଘେନିଲେ ।
ଅସୁର ଉପରେ ତାହା ନେଇ କଚାଡ଼ିଲେ
ସମ୍ଭାଳରେ ପୌଢ଼ାସୁର ଏମନ୍ତ ବୋଇଲେ ।
ବଜ୍ର ପଡ଼ନ୍ତେ ଅସୁର ପଡ଼େ ପ୍ରାଣହାରି
ଦେଖିଣ ନାରଦ ତାହା ହରିଧ୍ୱନି କରି ।
ରଥେ ଥାଇ ଦେଖିଲା ଯେ ତାହା ମନ୍ତ୍ରୀବର
ନିଜେ ନାଶ ହେବା ଭୟେ ହେଲା ଥରହର ।
ଏତେ ଭାଳି ମନରେ ସେ ମହାଭୟ କଲା
ତାର ଭୟ ଦେଖି ସୁରପତି ବିଚାରିଲା ।
ଏହାକୁ ମାଇଲେ ଅବା ହୋଇବ କି ଯଶ
ଏହୁ ଯେ ସେବକ ଜନ ସବୁରି ବିଶ୍ୱାସ ।
ଇନ୍ଦ୍ର ତାକୁ ବୋଇଲେ ହେ ଶୁଣ ମନ୍ତ୍ରୀବର
କିମର୍ଥେ ଭୟରେ ତୁହି ହେଉ ଥରହର ।
ତୋହର କି ଦୋଷ ଅବା ହୋଇଛି ଏଥିରେ
ତୁ ସେବକ ଲୋଭ ଭୟ ନ କର ମନରେ ।
ଏହି ରଥେ ଚଢ଼ି ତୁହି ତୋର ରାଜ୍ୟେ ଜାଇ
ରାଜା ମଲା ବୋଲି ବାର୍ତ୍ତା କହ ସାହି ସାହି ।

ମନ୍ତ୍ରୀ ବୋଲେ ପ୍ରଭୁ ତୁମ୍ଭ ଆଜ୍ଞା ପରମାଣେ
ବାରତା ଯାଇ କହିବି ରାଜ୍ୟେ ଏହିକ୍ଷଣେ ।
ଅନୁକ୍ଷଣେ ମୁଁ ସେବକ ପୁରୁଷ ଅଟଇ
ସବୁବେଳେ ତୋ ଚରଣେ ମୁହିଁ ଖଟିଥାଇ ।
ପୁଣି ଶକ୍ରରାୟ ତାକୁ ହସି ପଚାରିଲେ
ସତ କହିବୁ ଭୋ ମନ୍ତ୍ରୀ ଏ ମୋହର ତୁଲେ ।
ଏହାର ଯେ ବାପ ନାମ ଜାଣୁଚିକି ତୁହି
କି ନାମ ଅଟଇ ମୋତେ କହ ତ ବୁଝାଇ ।
ମନ୍ତ୍ରୀ ବୋଇଲା ଗୋସାଇଁ ସାବଧାନେ ଶୁଣ
ଏହାର ପିତାର ନାମ ଗୁଢ଼ାସୁର ଜାଣ ।
ବଡ଼ ଗରିଷ୍ଠ ଅଟଇ ସେ ଦୁଷ୍ଟ ଅସୁର
ଅପ୍ରୀତି ଅର୍ଜିଛି ସେହି ଦେବଙ୍କ ସଙ୍ଗର ।
ଇନ୍ଦ୍ର ବୋଲେ ସେ ଅସୁର କାହା ହସ୍ତେ ମଲା
ଏ କଥା ଗୋଟାକ ମୋତେ ସନ୍ଦେହ ଲାଗିଲା ।
ଅର୍ଜୁନର ହସ୍ତେ ସେହି ଅସୁର ମରିଛି
ପ୍ରୋଢ଼ାସୁର ପୁଅ କଥା ଶୁଣ ମୁଁ କହୁଛି ।
ମନ୍ତ୍ରୀ ବୋଲଇ ଏହାର ପୁତ୍ର ଏକ ଅଛି
ତାର ନାମ କିସ ବୋଲି ଶକ୍ରରାୟ ପୁଛି ।
ମନ୍ତ୍ରୀ ବୋଲଇ ତା ନାମ ଅଟେ ମୁଢ଼ାସୁର
ଏହାଶୁଣି ସହସ୍ରାକ୍ଷ ହସେ କର କର ।
ବାପ ନାମ ହୋଇଲାକ ପୁଣି ମୁଢ଼ାସୁର
ତାର ପୁତ୍ର ନାମ ଗୋଟା ହେଲା ପ୍ରୋଢ଼ାସୁର ।
ନାତି ନାମ ସେହିପରି ମୁଢ଼ାସୁର ହେଲା
ଏହିପରି ନାମ କାହିଁ ଶୁଣା ତ ନ ଥିଲା ।
ଏ ଉତ୍ତମ ନାମ କାହୁଁ ପାଇଲେ ସେ ହାଦେ
ମନ୍ତ୍ରୀକି ବହୁ ପ୍ରଶଂସା କରି ସୁରଇନ୍ଦ୍ରେ ।
ବୋଇଲେ ତୁହି ତୋହର ଯାଅ ନିଜ ଦେଶ
ମୁଢ଼ାସୁରକୁ ତୁ ଯାଇ କର ରାଜ୍ୟେ ଈଶ ।
ଆଜ୍ଞା ପରମାଣେ ତହିଁ ମନ୍ତ୍ରୀ ଚଳିଗଲା
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲା ।
ପ୍ରୋଢ଼ାସୁର ନାଶି ଇନ୍ଦ୍ରରାଜା ବାହୁଡ଼ିଲେ
ଅମର ପୁରରେ ଯାଇ ପ୍ରବେଶ ହୋଇଲେ ।
ବାରତା ପାଇ ତୁରିତେ ଶଚୀ ମହାଦେଈ
ଅର୍ଘ୍ୟଥାଳି ଘେନି ଆସି ଇନ୍ଦ୍ରଙ୍କୁ ବନ୍ଦାଇ ।
ବନ୍ଦାପନା କରି ଘେନି ଭିତରକୁ ଗଲେ
ସଭାକୁ ମଣ୍ଡାଅ ବୋଲି ଭୃତ୍ୟଙ୍କୁ ବୋଇଲେ ।
ସୁଧର୍ମା ସଭା ଯେ ତହୁଁ ମଣ୍ଡଣି ହୋଇଲା
କିସ ପଟାନ୍ତର ତାକୁ ଦେବଇଁ ମୁଁ ଭଲା ।
ଭିତରେ ସେ ଇନ୍ଦ୍ରରାୟେ ମଣୋହି ସାରିଲେ
ଅମୃତ ପାନରେ ସେହୁ ଆତ୍ମା ତୋଷ କଲେ ।

ସୁଧର୍ମା ସଭାରେ ସବେ ବିଜେ କଲେ ଯାଇ
ଈଶ୍ୱର ପବନ ଦୁହେଁ ତହିଁ ସଙ୍ଗ ହୋଇ ।
ଦେବତାଏ ଯେ ଯାହାର ଆସନେ ବସିଲେ
ଇନ୍ଦ୍ରର ମୁଖରୁ ଯୁଦ୍ଧ ବାରତା ଶୁଣିଲେ ।
ଅସୁର ବିନାଶ ଶୁଣି ସମସ୍ତେ ହରଷେ
ପୃଥିବୀର ଭାର ତହୁଁ ହୋଇଲା ଉଶ୍ୱାସେ ।
ନାଚନ୍ତି ସ୍ୱର୍ଗର ଅପସରା ସୁଖ ପାଇ
ସ୍ୱର୍ଗ ଭୁବନ ଆନନ୍ଦ କହି ନ ହୁଅଇ ।
ଅଗସ୍ତି କହନ୍ତି ଆହେ ମନୁରାୟେ ଶୁଣ
ଏ ପ୍ରକାରେ ପ୍ରୋଢ଼ାସୁର ପାଇଲା ମରଣ ।
ତାହା ଶୁଣିଣ ବିଲଙ୍କ ଦେଶ ଦଣ୍ଡଧର
ମୁନିଙ୍କୁ କରଇ ଶତବାର ନମସ୍କାର ।
ତାହାର ଯେ ପୁତ୍ର ସେହି ମୁଢ଼ାସୁର ଥିଲା
ପିତାର ମରଣ ଶୁଣି କିସ ବିଚାରିଲା ।
ରାଜା ପୁଛନ୍ତେ କହନ୍ତି ତାକୁ ମୁନିବର
ରାଜ୍ୟରେ ପ୍ରବେଶ ହେଲା ଯାଇ ମନ୍ତ୍ରୀବର ।
ସେ ରାଜ୍ୟରେ ଲୋକେ ତାକୁ ପଚାରନ୍ତି ତହିଁ
ତୁହି ତ ଅଇଲୁ ରାଜା ଅଛନ୍ତି ତ କାହିଁ ।
ମନ୍ତ୍ରୀ କହିଲା ଯେ ରାଜା ସମରେ ପଡ଼ିଲା
ସହସ୍ର ସଇନି ଇନ୍ଦ୍ର ଦେବତା ମାଇଲା ।
ଏକାହୋଇ ପ୍ରାଣଘେନି ମୁହିଁ ଅଇଲଇଁ
ମୁଢ଼ାଅସୁରକୁ ରାଜା କରିବାର ପାଇଁ ।
ପିତାର ମରଣ ପାଇଁ ସେହି ମୁଢ଼ାସୁର
ଅନେକ ରୋଦନ କଲା ମନ୍ତ୍ରୀର ଆଗର ।
ତହୁଁ ମନ୍ତ୍ରୀ ବୋଲେ ତାକୁ କ୍ରୋଧକରି ଶାନ୍ତି
ପାତ୍ର ମନ୍ତ୍ରୀ ଘେନି ତୁହି ହୁଅସି ନୃପତି ।
ପିତାର କ୍ରିୟା ମାନସେ ସାରିଣ ତତ୍ପତି
ଅଳମ୍ବୁଷା ରାଜ୍ୟରେ ସେ ହୋଇଲା ନୃପତି ।
ପାତ୍ର ମନ୍ତ୍ରୀ ସାମନ୍ତ ଯେ ଘେନି ରାଜ୍ୟ କଲା
ବଡ଼ ଗରିଷ୍ଠ କାହାକୁ ତିଳେ ନ ଡରିଲା ।
ଅନେକ ସୁଖରେ ସେହୁ ରାଜ୍ୟ କରୁଥାଇ
ଦେବ ଦାନବ ମାନବ ତିଳେ ନ ଡରଇ ।
ଏବେ ଶୁଣିଲୁ କି ଆହୋ ମନୁ ନୃପରାଣ
ଏ ଯେ ମଧ୍ୟପର୍ବ ମହାଭାରତ ଆଖ୍ୟାନ ।
ବନ୍ଦଇ ଶ୍ରୀ ନାରାୟଣ ଜନ ଉଦ୍ଧାରଣ
ଭକତବତ୍ସଳ ଯୋଗୀଜନଙ୍କର ଧ୍ୟାନ ।
ଦୟାନିଧି ନାମ ପୁଣି ଅଟଇ ଯାହାର
ଯେ ଦରିଦ୍ର ଜନଙ୍କର ଅଟଇ ସୋଦର ।
ଅରକ୍ଷିତ ଲୋକଙ୍କର ଅଟନ୍ତି ଯେ ବନ୍ଧୁ
ତେଣୁ ତାହାଙ୍କର ନାମ ଅଟେ କୃପାସିନ୍ଧୁ ।

ପତିତପାବନ ବାନା ପତିତ ତାରଣ
ଭବଭୟ ଦୁର୍ଗତିରୁ ରଖ ନାରାୟଣ ।
ତୁଳସୀବଲ୍ଲଭ ପାଦପଦ୍ମେ ମୋର ଆଶ
କବି ଶାରଳା ମାଗୋ ବିଷ୍ଣୁ ପାଟରାଣୀ ।
ତୁ ଅଭୟ ବରଦାତ୍ରୀ ଦୁର୍ଗତି ତାରିଣୀ
ଦୁଃଖ ବିନାଶିନୀ ମାଗୋ ସିନ୍ଧୁର ଦୁହିତା
ସର୍ବଜନଙ୍କର ମାଗୋ ଅଟୁ ପଡ଼ିଦାତା ।
ନିତ୍ୟ ନିତ୍ୟ ଯେଉଁଜନ ତୋ ପାଦେ ବଦନ୍ତି
ତୁ ବିପୁଳ ଲକ୍ଷ୍ମୀ ତାଙ୍କୁ ଦେଉ ମହାସତୀ ।
ପଦ୍ମ ପୁଷ୍ପ ଜନ୍ମିବାରୁ ପଦ୍ମିନୀ ତୋ ନାମ
କମଳିନୀ ବୋଲି ନାମ କରନ୍ତି ବଖାଣ ।
ସେହି ଲକ୍ଷ୍ମୀ ନାରାୟଣ ଚରଣ କମଳେ
ଶୂଦ୍ରମୁନି ଶାରଳାର ଶିର ସଦା ଲୁଳେ ।



## ଉଷା ହରଣ

ଏଥୁଅନ୍ତେ କିସ ହେଲା କୁମ୍ଭଋଷି ଶିଷ୍ୟ
ଶୁଣନ୍ତେ ମୋର ପାତକ ହୋଇଯିବ ଧ୍ୱଂସ ।
ଅଗସ୍ତି ବୋଇଲେ ତୁହୋ ଶୁଣ ନୃପରାଣ
ଏଥୁ ଅନନ୍ତରେ ଦେବ ଉଷା ଯେ ହରଣ ।
ନମସ୍ତେ ଶାରଳା ଦେବୀ ଝଙ୍କଡ଼ର ବାସୀ
ଅଭୟ ବର ଦାୟିନୀ ସର୍ବ ଦୁଃଖ ନାଶି ।
କଳିକାଳ ବିଧ୍ୱଂସିନୀ କରୁଣା ବାରିଧି
କରିବା କରୁଣା ମୋତେ କୃପା ପୟୋନିଧି ।
ତୁ ଗୋ ସରସ୍ୱତୀ ହରିହର ପାଟରାଣୀ
ହୋଇବ ସଦୟ ମୋତେ ହରିର ଘରଣୀ ।
ଅନାଦି ଅପର୍ଣ୍ଣା ମାଗୋ ଅଟୁ ମାହେଶ୍ୱରୀ
କୋଟି ପ୍ରଳୟ ନିମିଷ ମାତ୍ର ତୋତେ ସରି ।
ଶୁଦ୍ଧ ସ୍ଫଟିକ ବରନ ଅଭୟା ହିଙ୍ଗୁଳା
ଦୁର୍ଗତି ନାଶିନୀ ମାଗୋ ସରବ ମଙ୍ଗଳା ।
ସଜ୍ଜନ ଜନମାନଙ୍କ ହୃଦେ ତୋର ବାସ
ଶାରଳା ଦାସର ତବ ପାଦେ ମାଗୋ ଆଶ ।
ଯହୁଁ ପରସନ୍ନ ମୋତେ ଶ୍ରୀଚଣ୍ଡୀ ଶାରଳା
ତେଣୁ ମୁଁ ସପତ ସିନ୍ଧୁ କରି ଲୋଡ଼େ ଗୋଳା ।
ବ୍ରହ୍ମାଙ୍କ ଅଗୋଚର ଯେ ଶ୍ରୀ ମହାଭାରତ
ସପତ ସମୁଦ୍ର ମୁହିଁ କରିବି ତଦନ୍ତ ।
ବ୍ୟାସ ମହାମୁନି ସେ ଯେ ଏଥିର କାରଣ
କରିବାକୁ ସାମରଥ ସେ ବିଷ୍ଣୁ ପୁରାଣ ।
କୋଟିଯୁଗ ବସି ସେହୁ ଅନ୍ତ ନ ପାଇଲେ
ମହାଭାଗ ହେତୁ ସେ ଭାରତ ନାମ ଦେଲେ ।

ବଦନ୍ତି ଅଗସ୍ତି ମୁନି ଶୁଣ ମନୁରାୟେ
ସଂକ୍ଷେପି କହିବାକୁ ଯେ କାର ଶକ୍ୟ ହୁଏ ।
ତୁ ଯେ ପଚାରିଲୁ ଏଥେ ଶୁଣ ନୃପରାଣ
ଉଷାହରଣ ହୋଇବ ଶୁଣିବାକ ପୁଣ ।
ଏହି ଯେ ମହାଭାରତ ମଧ୍ୟପର୍ବ କଥା
ହରଇ ନାନା ଦୁଷ୍କୃତ ପୁଣି ମନୋବ୍ୟଥା ।
ଅନ୍ତେ ବଇକୁଣ୍ଠେ ବାସ ଦ୍ୟନ୍ତି ଚକ୍ରପାଣି
ନାନାଦି ପାତକୁ ତରିଯାନ୍ତି ଭବେ ପ୍ରାଣୀ ।
ତୁ ଯେ ଧାର୍ମିକ ବିବେକୀ ଆଉ ଗୁଣବନ୍ତା
ଏକମନେ ଶୁଣ ଉଷା ହରଣର କଥା ।
ଶୋଣିକ ନାମରେ ପୁଣ ବୈତରଣୀ ତୀରେ
ବାଣାସୁର ନାମରେ ଯେ ତହିଁ ନୃପବରେ ।
ବଳିସୁତ ଈଶ୍ୱରଙ୍କଠାରୁ ପାଇ ବର
ଯୁଗେ ଯୁଗେ ଅମର ଯେ ସହସ୍ର ତା କର ।
ମହା ବୀରବର ସେହୁ ଅଟେ କଉଣପ
ଶିବ ପ୍ରିୟ ଆବର ତା ଭୟଙ୍କର ରୂପ ।
ତାର କୋଳେ ଜାତ ହେଲା ଏକଇ ଦୁଲଣୀ
ପାବର୍ତୀଙ୍କ ରୂପକୁ ଯେ ପାରଇ ସେ ଜିଣି ।
ଫାଲଗୁନ ଶୁକ୍ଳପଞ୍ଚମୀ ତିଥି ଗୁରୁବାର
ରୋହିଣୀ ବୃଷଚନ୍ଦ୍ର ଯେ ଅଟେ ସେଦିନର ।
ଗର ନାମେ କରଣ ଯେ ପ୍ରୀତି ନାମେ ଯୋଗ
କୁମ୍ଭ ସଂକ୍ରାନ୍ତିର ଯେ ବାଇଶଦିନ ଭୋଗ ।
ଏମନ୍ତ ସମୟେ ଜନ୍ମ ହୋଇଲା କୁମାରୀ
ସକଳ ମଙ୍ଗଳ ତାର ପଣ୍ଡିତେ ଉଚ୍ଚାରି ।
ଦୁହିତାକୁ ଦେଖି ତାର ଉଲ୍ଲସିଲା କାୟେ
ତେଣୁ କରି ଉଷା ନାମ ତାହାର ଯେ ଦିଏ ।
ଦିନକୁ ଦିନ ବାଳିକା ବଢ଼େ ଆନୁଆନ
ଶୁକଳ ପକ୍ଷରେ ଯେହ୍ନେ ଚନ୍ଦ୍ର ବର୍ଦ୍ଧମାନ ।
କେତେହେଁକ ଦିନେ କନ୍ୟା ହେଲା ନବଯୁବା
ଅତ୍ୟନ୍ତ ସୁନ୍ଦର ଦିଶେ ତାର କୁଚପ୍ରଭା ।
ନୟନ ନୀଳ ଉତ୍ପଳ ନାସା ତିଳଫୁଲ
ଦନ୍ତ ରଜମୋତି ସମ ବନ୍ଧୁଲୀ ଅଧର ।
ରକତ କୁସୁମ ଜିଣି ପାଦତଳ ରଙ୍ଗ
ରାଜହଂସ ଗମନା ସେ ଅତି ଶୋଭା ଅଙ୍ଗ ।
କୋକିଳ ବଚନେ ବାଳୀଭାଷେ ମୃଦୁବାଣୀ
ଅପାଙ୍ଗ ଦୃଷ୍ଟିରେ କାମଦେବ ପାରେ ଜିଣି ।
କର୍ଣ୍ଣରେ ତା ହେମଚାପ ଗୁରୁ ଶୁକ୍ର ଗଞ୍ଜେ
ତହିଁରେ ମୁକୁତା ଜ୍ୟୋତି ମନଦର୍ପ ଭାଙ୍ଗେ ।
କଣ୍ଠତଟେ ଶୋଭାବନ ମୁକୁତାର ଚାପ
ବାହୁରେ ବାହୁଟି ତହିଁ ନାନାରତ୍ନ ଧାପ ।

ପୟରେ ନୂପୁର ତାର ବାଜେ ଝମ ଝମ
ଅଙ୍ଗୁଷ୍ଠିରେ ମୁଦ୍ରିକା ତା ସୂର୍ଯ୍ୟ ଜ୍ୟୋତିସମ ।
ଦେବାଙ୍ଗ ବସନ ପରିଧାନ କରି ବାଳୀ
ନାନା କୁସୁମ ଦେଇଣ କେଶ ତା ସମ୍ଭାଳି ।
ସଙ୍ଗେ ସହଚରୀ ତାର ଚିତ୍ରରେଖା ଘେନି
କୁସୁମ ବନର ମଧ୍ୟେ ଭ୍ରମଇ କାମିନୀ ।
ନାନା କୁସୁମମାନ ସେ ତୋଳେ ମନଇଚ୍ଛା
ପୂଜେ ସଦାଶିବ ପୂରିବାକୁ ମନବାଞ୍ଛା ।
ମୃଗଧ୍ୱନି ଶୁଣିଣ ତା ଚମକଇ ତନୁ
ରତିଶାସ୍ତ୍ର ସୁମରିଣ ବିଚଳିତ ମନୁ ।
ପୁଣ ପୁଣ ତୋର ବାସ ଫେଡ଼ାଇ ସରାଗେ
ଦେଖଇ ତା ସୀମଷ୍ଠାନ ମନ ଉଦବେଗେ ।
ଯେଣୁ ସେହି ବିପିନ ଯେ ଅଟଇ ନିର୍ଜନ
ତେଣୁକରି ଫେଡ଼ିଣ ସେ ପିନ୍ଧଇ ବସନ ।
ଚନ୍ଦ୍ରକଳା ସୁମରିଣ ରତି ଇଚ୍ଛାକରି
ନାନା ପରିବନ୍ଧମାନ ମନରେ ସୁମରି ।
ମଣ୍ଡଭରେ ଦେଖି ବିଚାରଇ ସେ ମନକୁ
ସାତ୍ୱିକ ବିକାର ତାର ଭେଦିଲା ତନୁକୁ ।
ଖରତରେ ନିଃଶ୍ୱାସ ଯେ ଛାଡ଼େ ଘନ ଘନ
ତରଳିତ ତନୁ ପୁଣି ବିରସ ବଦନ ।
ଚରଣ ଚଳାଇ ସେହୁ ନ ପାରଇ ଯାଇ
ଦେଖି ଚିତ୍ରରେଖା ତାକୁ ବେଗେ ସମ୍ଭାଳଇ ।
ଆଶ୍ୱାସନା କରି ତହୁଁ ନିଜପୁରେ ଗଲା
ସୁବାସିତ ଜଳ ନେଇ ବଦନେ ସିଞ୍ଚିଲା ।
ସଖୀକୁ ନ କହେ କେବେ ମରମ ବଚନ
ନୁହଇ ସୁବେଶ ପୁଣ ନ ପିନ୍ଧେ ବସନ ।
ଚଞ୍ଚଳ ଚିତ୍ତ ତାହାର ଚିତ୍ରରେଖା ଜାଣି
ବହୁତ ମତେ ତାହାକୁ ବୋଧଇ ତରୁଣୀ ।
ନ ଘେନଇ ସଖୀର ସେ ହାସ ପରିହାସ
ଦିବସ ଅନ୍ତରେ ହେଲା ରଜନୀ ପ୍ରବେଶ ।
ଯେ ଯାହା ଘରେ ଶୋଇଲେ ଅଳସିତ ତନୁ
ପ୍ରଦୀପରେ ତେଜ ମଣେ ସେହି ବଳି ଭାନୁ ।
ଚନ୍ଦ୍ରଶାଳାପୁର ବୋଲି ନ ଜାଣିଲା ବାଳୀ
ନୟନରେ ନିଦ ନାହିଁ ସର୍ବଦା ବିକଳି ।
ଅନେକ କଷ୍ଟେ ହୋଇଲା ନେତ୍ରଦୋଷ ଜାଣି
ଅତିକଷ୍ଟେ ବଞ୍ଚିଲା ସେ ଦିବସ ରଜନୀ ।
ପ୍ରଭାତ ସମୟେ ବାଳୀ ଦେଖିଲା ସ୍ୱପନ
ଦିବ୍ୟପୁରୁଷ ଏକ ତା ମିଳେ ସନ୍ନିଧାନ ।
ପଲ୍ୟଙ୍କ ପରେ ବସିଣ ଅଳପ ଆଶ୍ୱାସି
କୁଚରେ ହସ୍ତ ଦେଇଣ ବିନୟରେ ଭାଷି ।
କୋଳେ ବସାଇଣ ତାର ଚୁମ୍ବଇ ବଦନ
ଏହି ସମୟରେ ତାର ହେଲା ନିଦ୍ରାଭଗ୍ନ ।
ହା ହା ନାଥବୋଲି ବାଳୀ ଉଚ୍ଚେ ଦେଲା ରାବ
ଶୁଣି ଚିତ୍ରରେଖା ଦାସୀ ବୋଲେ ମନଭାବ ।
ଶୁଣ ଗୋ ସୁନ୍ଦରୀ ତୁହି ମୋହର ଯେ ବାଣୀ
ବିପରୀତ କଥା ଏବେ କହୁ ଗୋ ମିତଣୀ ।
ବିକଶିତ ପୁଷ୍ପ ପ୍ରାୟ ସେହୁ ହୋଇଅଛି
ଭୃଙ୍ଗ ଲଭିଲା ପରାୟେ ପୁଂସ ମନେ ଇଚ୍ଛି ।
ସଖୀର ବଚନ ସେହୁ ଶୁଣି ମୃଦୁବାଣୀ
କହଇ ଯେ ଅଭିନବ ପୁରୁଷ ଏକ୍ଷଣି ।
ତାହାର ରୂପଗୁଣକୁ କହିବି ମୁଁ କିସ
କୋଟି କନ୍ଦର୍ପ ଅଟଇ ତାହାର ଯେ ବସ ।
ସେହି ପୁରୁଷ ଆସି ମୋ ଶଯ୍ୟାରେ ବସିଲା
ଅଧର ଚୁମ୍ବିଣ ଚାଟୁବଚନ ଭାଷିଲା ।
ଏହିକ୍ଷଣି ଥିଲା ଗଲା କେବଣ ଯେ କତି
ଏତେକ କହି ଭୂମିରେ ପଡ଼ିଲା ଯୁବତୀ ।
ତୋଳିଧରି ଚିତ୍ରରେଖା କହଇ ଆଶ୍ୱସ
ଅଦ୍‌ଭୁତେ କାହୁଁ ଏଥେ ଅଇଲା ପୁରୁଷ ।
ସଚେତ ହୋଇଣ ସଖୀ କହୁକିନା ମୋତେ
ତିନିପୁରେ ଥିଲେ ତାକୁ ଆଣିଦେବି ତୋତେ ।
ନୁହସି ଅଜ୍ଞାନ ତୁହି ସଙ୍କେତ ଯେ କହ
ସଖୀର ବଚନ ଶୁଣି ତେଜିଲା ସେ ମୋହ ।
ପାଦ ଧରିକରି କହେ ବହୁତ ବିନୟେ
ତୁ ମୋର ସଙ୍ଗାତ ଆଗୋ ହୁଅସି ସଦୟେ ।
ତୁ ଯେବେ ନିଶ୍ଚୟ ମୋର ଅଟୁ ଗୋ ମିତଣୀ
ଅବିଳମ୍ବେ ପତି ମୋତେ ନିଶ୍ଚେ ଦେବୁ ଆଣି ।
ସ୍ୱପନେ ଦେଖିଲି ମୁହିଁ ଯେସନେ ମୂରତି
ସେ ମୋହର ଜାଣ ସଖୀ ନିଶ୍ଚେ ପ୍ରାଣପତି ।
ତାହାର ବିହୁନେ ମୋର ନ ସରଇ ଦିନ
ସେହିରେ ସଖୀ ମୋହର ଜୀବର ଜୀବନ ।
ତାହାକୁ ତୁ ସଖୀ ଆଜି ଆଣିଦେବୁ ମୋତେ
ଅନେକ ବିନୟୀ ହୋଇ କହୁଅଛି ତୋତେ ।
ଏତେ ବୋଲି କରି ବାଳୀ ଧରଇ ଚରଣ
ମୁଁ ଅନାଥା ନାରୀ ମୋତେ କରସି କାରଣ ।
ଚିତ୍ରରେଖା ବୋଇଲା ଗୋ ଶୁଣ ପ୍ରାଣସହୀ
ମୋର ଆତ୍ମା ବଇକୁଲ୍ୟ ତୋର କଷ୍ଟ ଚାହିଁ ।
ଯେବଣ ପୁରୁଷକୁ ତୁ ଦେଖିଲୁ ସ୍ୱପନେ
ଚିତ୍ରପଟ ଲେଖୁଅଛି ଦେଖ ଗୋ ବଦନେ ।
ଯେ ତୋହର ଇଚ୍ଛା ମୁହିଁ ଆଣିଦେବି ତାହା
ଏହି ଚିତ୍ରପଟ ସଖୀ ନିରେଖିଣ ଚାହାଁ ।

ଏତେ ବୋଲି ଚିତ୍ରରେଖା ଚିତ୍ରପଟ ଫେଇ
ଜଣ ଜଣ କରି ନାମ ଧରିଣ କହଇ ।
ଏ ଯେ ସଖୀ ଦେଖ ସ୍ୱରଗର ଦେବରାଜ
ଦେଖ ଚିତ୍ରସେନ ବୀର ତାହାର ଆତ୍ମଜ ।
ଅଙ୍ଗାର ପନ୍ନଗ ଏହୁ ବରୁଣ କୁବେର
ତେତିଶକୋଟି ଦେବତା ଦେଖାଇ ପଟର ।
ଗନ୍ଧର୍ବ କିନ୍ନର ବିଦ୍ୟାଧରୀ ଯେ ମାନନ୍ତ
ଏକ ଏକକରି ସେହୁ ଦେଖାଏ ସମସ୍ତ ।
ନାଗଲୋକ ଦେବଲୋକ ବ୍ରହ୍ମଲୋକ ଯାଏ
ଚିତ୍ରପଟରେ ଲେଖିଣ ସଖୀଙ୍କୁ ଦେଖାଏ ।
ମଧ୍ୟଭୁବନେ ଅଛନ୍ତି ଲକ୍ଷେକ ନୃପତି
ଜଣ ଜଣ କରିଣ ସେ ଦେଖାଏ ଯୁବତୀ ।
ବ୍ରାହ୍ମଣ କ୍ଷତ୍ରୀୟ ବୈଶ୍ୟ ଶୂଦ୍ର ଅନ୍ୟ ଜାତି
ତହିଁ ନ ଦେଖିଣ ବାଳୀ ବିରସ ଯେ ମତି ।
ଦ୍ୱାରକାପୁରର ରାଜା ନାମ ଉଗ୍ରସେନ
ସାତବଂଶ ଯାଦବଙ୍କୁ ଲେଖେ ଆନୁଆନ ।
ରାମକୃଷ୍ଣଙ୍କୁ ଦେଖିଣ ହରଷ ଚତୁରୀ
ପ୍ରଦ୍ୟୁମ୍ନେ ଦେଖି ତଳକୁ ବାଳୀ ମୁଖ କରି ।
କୃଷ୍ଣର ଲକ୍ଷେ ଷାଠିଏ ସହସ୍ର ନନ୍ଦନ
ସମସ୍ତ ଦିଶନ୍ତି ଶ୍ରୀକୃଷ୍ଣଙ୍କ ଚିହ୍ନବର୍ଣ୍ଣ ।
ପୁଣି ଲେଖିଲାକ ସେହୁ ଅନିରୁଦ୍ଧ ବୀର
ଅତି ସୁକୁମାର ତନୁ ନାହିଁ ପଟାନ୍ତର ।
ଦେଖିଣ ତାକୁ ହରଷ ହୋଇଲାକ ବାଳୀ
ଦେଖିସାରି ଚିତ୍ରପଟ ରଖିଲାକ ତୋଳି ।
ଆନନ୍ଦରେ ଅଶ୍ରୁଜଳ ବହେ ନେତ୍ର ବେନି
ଚିତ୍ରରେଖା ବୋଇଲା ତୁ ଶୁଣ ଗୋ ସଜନୀ ।
ଶ୍ରୀକୃଷ୍ଣର ନାତି ସେହୁ କନ୍ଦର୍ପର ସୁତ
ରତି ମହାସୁତ ଅଟେ ଏହାଙ୍କର ମାତ ।
ଶତେ ବର୍ଷ ସେହୁ ଗଙ୍ଗାଜଳେ ଝାସିଥାଇ
କୋଟି ଲିଙ୍ଗ ପୂଜିଥିଲେ ଏହାଙ୍କୁ ଯେ ପାଇ ।
ଏ ଯେ ସଖୀ ଅଟନ୍ତି ଯେ ପୁରୁଷରେ ସାର
ଧନ୍ୟ ଜୀବନ ଅଟଇ ସଖୀରେ ତୋହର ।
ବୋଲଇ କୁମାରୀ ତୁରେ ଶୁଣ ଗୋ ମିତଣୀ
ମୋହଠାରେ ତୋର ଦୟାଅଛି ଯେବେ ପୁଣି ।
ତେବେ ସଖୀ ମୋରେ ଆଣିଦିଅ ଏହି ପତି
ଏହାବିନୁ ଆନେ ମୋର ନ ବଳଇ ମତି ।
ପୁଣ ପୁଣ ବିମତି ମୁଁ କରୁଅଛି ତୋତେ
ଏ ମହାକଷ୍ଟରୁ ସଖୀ ପାରିକର ମୋତେ ।
ଉଠି ଉଭା ହୋଇକରି ଧରଇ ଚରଣ
ବହୁ ବିନତି କରିଣ କରଇ କାରୁଣ୍ୟ ।

ଚିତ୍ରରେଖା ବୋଇଲେ ଗୋ ନୁହସି ବିକଳ
ଆଜ ଆଣିଦେବି ତୋତେ ପ୍ରଦ୍ୟୁମ୍ନର ବାଳ ।
ମୋହର ଆସିବା ଯାଏ ଧୈର୍ଯ୍ୟ ଧରି ଥାଅ
ଆଜ ଦେଖାଇବି ତୋତେ କନ୍ଦର୍ପର ପୁଅ ।
ନାରଦଙ୍କ ମନ୍ତ୍ର ସ୍ମରି ହୋଇଲେ ବାହାର
ଅର୍ଦ୍ଧରାତ୍ରେ ମିଳିଲା ସେ ଦ୍ୱାରାବତୀ ପୁର ।
ଦେଖେ ଅନିରୁଦ୍ଧ ପଲ୍ୟଙ୍କରେ ଅଛି ବସି
ଦିବ୍ୟ ବିଳାସିନୀଗଣ ନୃତ୍ୟରଙ୍ଗେ ତୋଷି ।
ଦିବ୍ୟବେଶ ହୋଇଅଛି ବିରସ ବଦନ
ଚିତ୍ତ ଉଦ୍‌ବେଗେ ତାର ମନ ଛନ୍ନ ଛନ୍ନ ।
ଆପଣା ସମବଲ୍ଲଭୀ ଯହୁଁ ତାର ନାହିଁ
ଚଞ୍ଚଳ ଚିତ୍ତ ତା ଚଉଦିଗରେ ଭ୍ରମଇ ।
ଉଠଇ ବସଇ ପୁଣ ଚାପଇ ଚରଣ
କ୍ଷଣେ ଚେତା କ୍ଷଣେ ନିଦ୍ରାଭରେ ଅଚେତନ ।
ଚିତ୍ରରେଖା ଜାଣିଲା ଯେ ମଦନର ରୀତି
ମନ୍ତ୍ରି ସୁମରି ପଲ୍ୟଙ୍କ ଘେନିଲା ତଡ଼ତି ।
ପବନର ବେଗଦେଇ କରଇ ଗମନ
ପ୍ରବେଶ ହୋଇଲା ଯାଇ ସତୀ ସନ୍ନିଧାନ ।
ଦେଖିଲା ଯେ ବିହ୍ୱଳିତ ହୋଇଛି କୁମାରୀ
ଚିତ୍ରପଟକୁ ଚାହିଁଣ ବସିଛି ସୁନ୍ଦରୀ ।
ଏମନ୍ତ ସମୟେ ପରବେଶ ଚିତ୍ରରେଖା
ପଲ୍ୟଙ୍କ ରଖିଣ ଯାଇଁ ତାକୁ କଲା ଦେଖା ।
ସଖୀକୁ ଦେଖି କୁମାରୀ ଉଠିଲା ଆସନୁ
ଧାଇଁଯାଇଁ କୋଳକଲା ଅସୁରର ସୁନୁ ।
ବହୁ ବିନୟ ହୋଇଣ କହେ ପୁରଃସରି
ଆଜହୁଁ ମୁଁ ସଖୀ ତୋର ହେଲି ପରିଚାରୀ ।
ଦେଖିଲା କୁମର ପଲ୍ୟଙ୍କରେ ଅଛି ଶୋଇ
ନିର୍ମଳ ଆକାଶରେ ଯେ ଚନ୍ଦ୍ର କିବା ଉଇଁ ।
ଲେପଇ ଯେ ଚତୁଃସମ ଗୋଳି ଚିତ୍ରରେଖୀ
ନିଦ୍ରା ଉପେକ୍ଷି କୁମର ଚକ୍ଷୁଫେଇ ଦେଖି ।
ଅପୂର୍ବ କାମିନୀ ଏକ ଅଛି ଉଭାହୋଇ
କିଞ୍ଚିତରେ ସେ କୁମର ଚଉଦିଗେ ଚାହିଁ ।
ଚିତ୍ରରେଖା କହଇ ଯେ ଯୋଡ଼ି ବେନି କର
ଏ ଯେ ଅଟଇ ଶୋଣିତ ନାମେ ଦେବପୁର ।
ଏଥିରେ ନରପତି ଯେ ବାଣାସୁର ରାୟେ
ଏହି କନ୍ୟା ନାମ ଯେ ଉଷା ଛାମୁରେ ଥାଏ ।
ଅବିବାହିତା ଏ ବାଳୀ ଅଟେ ନବଯୁବା
ସାଦୃଶ୍ୟ ବର ନ ପାଇ ନୋହିଲାକ ବିଭା ।
ରାଜାର ଡଗରେ ବୁଲୁଛନ୍ତି ଚଉକତି
କାହୁଁ ଆସି ଏଥେ ତୁମ୍ଭେ ହେଲ ଉପସ୍ଥିତି ।

କେ ତୁମ୍ଭର ମାତା କିସ ନାମ ତୁମ୍ଭ ପିତା
ତମ୍ଭଙ୍କୁ ଦେଖିଣ ବଶ ଆମ୍ଭର ଦୁହିତା ।
କିସ ନାମ ତୁମ୍ଭର ଯେ କେଉଁ କୁଳେ ଜାତ
କେଉଁ କାର୍ଯ୍ୟେ ତୁମ୍ଭେ ଏଥେ ହେଲ ଉପଗତ ।
କୁମର ବୋଲେ ଦ୍ୱାରକା ଅଟେ ଆମ୍ଭ ପୁର
ଶ୍ରୀକୃଷ୍ଣ ପୁତ୍ର ପ୍ରଦ୍ୟୁମ୍ନ ଆମ୍ଭର ପିଅର ।
ଭ୍ରମନ୍ତେ ମୁଁ ବଣାହୋଇ ଅଇଲି ଏଠାକୁ
ତୁମ୍ଭେ କିମ୍ପାଇଁ ଗୋ ଭୟ ପାଉଛ ମନକୁ ।
ଚିତ୍ରରେଖା ବୋଲେ ବାବୁ ତମ୍ଭ ରୂପ ଦେଖି
ଶରୀର ତା କମ୍ପମାନ ହୋଇଲା ସେ ଦୁଃଖୀ ।
ଆମ୍ଭର ସଖୀକୁ ତୁମ୍ଭେ କରସି ସୁଦୟା
ବିଧାତା ଯେ ଘଟସୂତ୍ର କରିଛନ୍ତି ଏହା ।
କୁମର ବୋଇଲା ଆଜ ଦିନ ମୋର ଧନ୍ୟ
କେବଣ ତୀର୍ଥରେ କରିଥିଲି କେଉଁ ପୁଣ୍ୟ ।
ରଜନୀ ଦିବସେ ଯାହା କରିଥିଲି ଇଚ୍ଛା
ଦଇବ ପୁରୁଷ ପୂର୍ଣ୍ଣକଲା ମନୋବାଞ୍ଛା ।
ବିବିଧ ରସ ବିନୋଦେ ବେନିଜନ ତୋଷ
ଅରୁଣ ଉଦୟ ହେଲା ରଜନୀ ଯେ ଶେଷ ।
ନିତ୍ୟକର୍ମ ସାରି ପରବେଶ ଶୁଭବେଳେ
ଏତେ ବୋଲିଣ କୁମର ଉଠି ଧାତିକାରେ ।
କନ୍ୟା ଭୁଜ ଧରି ତାକୁ ବସାଇଲା କୋଳେ
ବାହୁଯୁଗଳ ଛନ୍ଦିଲା ଆଣି ତାର ଗଳେ ।
ବଦନକୁ ଚାହିଁ ତାର ଦିଅଇ ଚୁମ୍ବନ
କୋଳାଗ୍ରତ କରି ତାକୁ କଲା ଆଲିଙ୍ଗନ ।
ତହୁଁ ଟେରା ପାତି ଗୋପ୍ୟ ହେଲା ଚିତ୍ରରେଖା
ବିବିଧ କ୍ରୀଡ଼ା କରନ୍ତି ମନରେ ଯେ ଇଚ୍ଛା ।
ବିବିଧ କ୍ରୀଡ଼ା ବିନୋଦେ ବେନିଜନ ତୋଷ
ଅରୁଣ ଉଦୟ ତହୁଁ ରାତ୍ର ହେଲା ଶେଷ ।
ନିତ୍ୟକର୍ମ ସାରି ପରବେଶ ଶୁଭ୍ରକେଶୀ
ଅମୃତ ଭୋଜନ ବେନି କରନ୍ତି ଯେ ବସି ।
ଗୁପତ ପୀରତି ଏହା ନ ଜାଣନ୍ତି କେହି
କେବଳ ଜାଣଇ ଏହା ଚିତ୍ରରେଖା ସହୀ ।
ଏମନ୍ତ ପୁଣି କିଛି ହିଁ ଦିନର ଅନ୍ତରେ
ଡଗରେ ଜଣାଇଲେ ଯେ ନୃପତି ଛାମୁରେ ।
ଶୁଣ ସାବଧାନେ ତୁମ୍ଭେ ଦୈତ୍ୟକୁଳ ସାଇଁ
କନ୍ୟାପୁରେ ବିପରୀତ କଥା ଦେଖିଲଇଁ ।
ଡଗରେ କହିଲେ ଯହୁଁ ବିପରୀତ କଥା
ତୋଟାପୁରେ ଦେଖିଲୁ ଯେ ପୁଂସପାଦ ତଥା ।
ଚିତ୍ରରେଖା ଗତି ଦେଖିଲୁ ଯେ ଆନୁଆନ
ଏହି କଥାକୁ ଯେ ଦେବ ସାବଧାନେ ଶୁଣ ।

ରାଜା ଶୁଣି ମୁଦୁସୁଲୀ ଗଣକୁ ଯେ ରାଇ
କନ୍ୟାର ପୁରେ ତୁମ୍ଭେ ଲୋ ବେଗେ ଖୋଜ ଯାଇ ।
ଡଗରେ କହିଲେ ମୋତେ ବିପରୀତ କଥା
ତୁମ୍ଭେ ବୁଝିଆସି କହ ତଥ୍ୟ ଯେ ବାରତା ।
ଆଜ୍ଞାପାଇ ମୁଦୁସୁଲୀ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ତୋଟାପୁର ଦ୍ୱାର ।
ପ୍ରଥମ ଦ୍ୱାରେ ଦେଖିଲେ ଉଭା ଚିତ୍ରରେଖା
ତାହାର ସହିତେ ସର୍ବେ ହୋଇଲେ ଯେ ଦେଖା ।
କୁଶଳ ବାରତା ପଚାରିଲେ ଦୁହିତାର
ସେଠାକୁ ଶୁଭିଲା ବେନିଜନଙ୍କ ଉତ୍ତର ।
ପଶାକ୍ରୀଡ଼ା କରୁଛନ୍ତି ବେନିଜନେ ବସି
ଦାନ ପଡ଼ିବା ବେଳରେ ବଚନ ସମ୍ଭାଷି ।
ଶୁଣି ମୁଦୁସୁଲୀଗଣ ଅଇଲେକ ଖରେ
ବେଗେ ଜଣାଇଲେ ଆସି ନୃପତି ଛାମୁରେ ।
ଡଗର କହିବା କଥା ଅଟେ ଦେବ ସତ
ଶୁଣି ନରପତି ହେଲେ କୋପେ ପ୍ରଜ୍ୱଳିତ ।
ଧନୁଶର କରେ ଧରି ଉଠିଲା ବହନ
କ୍ରୋଧରେ ଅସୁରମଣି ଗର୍ଜେ ଘନ ଘନ ।
ଯାଇଁ ପଶିଲା ଧସାଇ କୁମାରୀର ପୁରେ
ଚିତ୍ରରେଖା ଅପସରି ଗଲା ଯେ ଭୟରେ ।
ଭିତର ପୁରକୁ ଦୈତ୍ୟ କରନ୍ତେ ଗମନ
ଦେଖିଲା ପଶା ଖେଳନ୍ତି ହସି ବେନିଜନ ।
ବୋଲଇ ନୃପତି ତୁହି କାହାର କୁମର
ମରଣକୁ ଭୟ କିରେ ନାହିଁକି ତୋହର ।
ଜ୍ୱଳନ୍ତା ଅଗ୍ନିରେ ତୁହି ପଶିଲୁ କିମ୍ପାଇଁ
ଯମର ଘରେ ଧାରଣା ଦେଲୁ କିସ ପାଇଁ ।
କହୁ କହୁ ପ୍ରଜ୍ୱଳିତ ଦୈତ୍ୟକୁଳ ରାୟେ
ଦେଖି କୁମର ଭୟରେ ସ୍ତବ୍ଧହୋଇ ରହେ ।
କୋପେଣ ଦାନବ ମାରିଲାତ ବଜ୍ରମୁଠେ
ଅଙ୍ଗଛଳେ କୁମର ତା ବଞ୍ଚାଇ ତୁରିତେ ।
ଦେଖିଣ ଅସୁର ଧନୁ ଅଧାନ ଯେ କରି
ଅନିରୁଦ୍ଧ କରେ ତାର ଧନୁଶର ଧରି ।
ଗର୍ଜନ ବାଣ ଅସୁର କାଳସର୍ପ ଜାଣି
ହାବୋଡ଼ା ଶର ଏକ ସେ ବିନ୍ଧିଲାକ ଟାଣି ।
ତା ଦେଖି କୁମରମଣି ପେଶେ ତୀକ୍ଷ୍ଣଶର
ବେନିଜନଙ୍କର କ୍ରମେ ବଢ଼ିଲା ସମର ।
ମହାଘୋର ଯୁଦ୍ଧ ବେଳୁଁ ବେଳୁ ଆନୁଆନ
ଅନର୍ଯ୍ୟାପ ଶର ବିନ୍ଧେ ଅସୁର ରାଜନ ।
କୁମର ହିଁ ପ୍ରତିଅସ୍ତ୍ର କରେ ଅସୁରକୁ
ଦେଖି ଚମତ୍କାର ଲାଗେ ବାଣା ଅସୁରକୁ ।

ହେଳାଯୁଦ୍ଧେ କୁମରକୁ ନ ପାରିଲା ଜିଣି
ଅହିଶର ବସାଇଲା ଧନୁରେ ସେ ପୁଣି ।
ମନ୍ତ୍ର ସୁମରିଣ କରି ପେଶିଲେ ନୃପତି
ଚଳିଗଲା ସେହି ଶସ୍ତ୍ର ପବନହୁଁ ଅତି ।
ଚରଣୁ ବେଢ଼ାଇଲା ତା କଣ୍ଠ ପରିଯନ୍ତେ
ଅହିଶରେ କୁମର ଯେ ପଡ଼େ ମୋହଗତେ ।
ଦେଖି ନରପତି ବାହୁଡ଼ିଣ ଗଲା ଧାତି
ଆପଣା ନବରେ ଯାଇ ମିଳିଲା ତଡ଼ତି ।
ଏଥୁଅନନ୍ତରେ ପୁଣି ନୃପତି ଦୁଲାଳୀ
ଅନିରୁଦ୍ଧ ସନ୍ନିଧିରେ ହୋଇଲାକ ବାଳୀ ।
ଆହା ପ୍ରାଣନାଥ ବୋଲି କରଇ ରୋଦନ
ନୟନରୁ ଅଶ୍ରୁଜଳ ବହେ ଘନ ଘନ ।
ମୁଖକୁ ଅନାଇ ତାର ବାହୁନଇ ବସି
କୋମଳ ଶରୀର ଗୋଟି ହୋଇଲାକ ଧର୍ଷି ।
ଆହା ମୋର ପ୍ରାଣନାଥ କେଣେ ଗଲ ଛାଡ଼ି
ମୁହିଁ ଏବେ ମରୁଅଛି ଶୋକଜଳେ ବୁଡ଼ି ।
ମୋହର ବିକଳେ କେହ୍ନେ ହୋଇଅଛ ମୋହ
କେମନ୍ତେ ଛାଡ଼ିଲ ନାଥ ଏଡ଼େକ ସେନେହ ।
ଏବେ ମୂର୍ଚ୍ଛିଲ କେବଣ କାରଣରୁ ମୋତେ
ଅନେକ ବିନତି କରି କହୁଅଛି ତୋତେ ।
ପଲ୍ୟଙ୍କେ ପଡ଼ିବାର ମୋ ନ ସହଇ ଦେହ
କେମନ୍ତେ ଛାଡ଼ିଲ ନାଥ ଏଡ଼େକ ସେନେହ ।
ଚଣ୍ଡାଳ ପିଅର ମୋର କଲା ଏତେକର୍ମ
କେମନ୍ତ ପ୍ରକାରେ ତାକୁ ସହିଲାକ ଧର୍ମ ।
ସୁକୁମାର ସୁନ୍ଦର ସେ ରୂପ ଦେଖିକରି
କେମନ୍ତ ସତ ବଳିଲା ପ୍ରାଣେ ଗଲା ମାରି ।
ବାବୁ ଦଇବ ପୁରୁଷ କଲୁ ପୁଣ ଏହା
ଜାଣିଲି ପାଷାଣଠାରୁ କଠିନ ତୋ ହିଆ ।
ଚିତ୍ରରେଖାକୁ ଚାହିଁଣ କରଇ ରୋଦନ
ଅଗ୍ନି ଆରୋପଣ କର ପଶିବି ବହନ ।
ଚିତ୍ରରେଖା କହଇ ଯେ ଶୁଣରେ ଯୁବତୀ
କେବେ ହେଁ ନ ମରଇ ସେ ତୋହର ଯେ ପତି ।
ଦ୍ୱାରକାପୁରେ ଅଛନ୍ତି ଏହାଙ୍କର ପିତା
ବେଗେଣ ଆସିବେ ସେହୁ ପାଇଣ ବାରତା ।
ଶ୍ରୀରାମ ଶ୍ରୀକୃଷ୍ଣ ଏଥେ କରିବେ ବିଜୟ
ତାହାଙ୍କ କ୍ରୋଧରେ ନରପତି ହେବ କ୍ଷୟ ।
ଉଷା ବୋଇଲା ତାହାଙ୍କୁ କେ କହିବ ଯାଇ
ମରୁ ପଛକେ ପିଅର ରହୁ ମୋର ସାଇଁ ।
ଏହି ସମୟରେ ପୁଣି ନାରଦ ମହର୍ଷି
ଅନ୍ତରୀକ୍ଷେ ଥାଇ ସେହୁ ବଚନ ସମ୍ଭାଷି ।

ନ କାନ୍ଦ ସୁନ୍ଦରୀ ଏବେ ମୋର ବୋଲ କର
ଶ୍ରୀକୃଷ୍ଣ ଅଟନ୍ତି ଯାଙ୍କ ପିତାଙ୍କ ପିଅର ।
ତାଙ୍କର ଆସିବା ଯାଏ ରଖ ଯତ୍ନ କରି
ଆମ୍ଭେ ଯାଉଅଛୁ ଏବେ ଦ୍ୱାରାବତୀ ପୁରୀ ।
ଏତେକ କହିଣ ମୁନି କଲେକ ଗମନ
ମନଦଣ୍ଡରେ ପ୍ରବେଶ ଦ୍ୱାରକା ଭୁବନ ।
ଉଗ୍ରସେନ ନରପତି ସମସ୍ତ ଯାଦବ
ନନ୍ଦ ବାସୁଦେବ ପୁଣି ଶ୍ରୀରାମ ମାଧବ ।
ମୁନିଙ୍କ ଚରଣ ତଳେ କଲେ ଦିବ୍ୟପୂଜା
ଆସନେ ବସାଇ ପଚାରନ୍ତି ଦେବରାଜା ।
ଭୋ ମୁନିବର ତୁମ୍ଭେ ଯେ ନକର ଗୁପତ
କେବଣ କାରଣେ କହ ଏଥି ଉପଗତ ।
କେବଣ ସନ୍ଦେହ ମୁନି ଅଛ ତୁମ୍ଭେ ଆଣି
ଆମ୍ଭ ସନ୍ଦେହ ଫିଟିବ ତମ୍ଭ ମୁଖୁ ଶୁଣି ।
ମୁନି ବୋଲେ ଶୁଣ ରାମକୃଷ୍ଣ ବେନିଭାଇ
ବାଣାସୁର ନୃପତିର ଉଷା ଯେ ତନୟୀ ।
ଅବିବାହୀ କନ୍ୟା ସେହୁ ପିତା ଘରେ ଥିଲା
ଅନିରୁଦ୍ଧ ତୁଲେ ତାର ପୀରତି ହୋଇଲା ।
ବାଣାସୁର ଶୁଣିପାରି ସମର ଯେ କଲା
ଅହିଶର ପେଶି କୁମରକୁ ବନ୍ଦି କଲା ।
ଆମ୍ଭେ ଭ୍ରମନ୍ତେ ଦେଖିଲୁ ତାହାକୁ ଯେ ଯାଇ
କରଇ ରୋଦନ ଉଷା କୁମରକୁ ଚାହିଁ ।
ଅଗ୍ନିରେ ପଶନ୍ତେ ନିଜ ପତିର ନିମନ୍ତେ
ସ୍ୱରୂପ କହିଲୁ ଆମ୍ଭେ ତୁମ୍ଭର ଅଗ୍ରତେ ।
ଶୁଣି ରାମକୃଷ୍ଣ ବେନି ମୂର୍ଚ୍ଛାଯାଇ ଶୋଇ
ପ୍ରଦ୍ୟୁମ୍ନର ଶରୀରରେ ଆଉ ଜ୍ଞାନ ନାହିଁ ।
ବସୁଦେବର ନନ୍ଦନ କରନ୍ତି ରୋଦନ
ଦେବକୀ ବସୁଦେବର ବିଚଳିତ ମନ ।
ରୁକ୍ମିଣୀ ସତ୍ୟଭାମା ଯେ ପୁଣି ଜାମ୍ବବତୀ
କାଳିନ୍ଦୀକୁ ଆଦିକରି ଯେତେକ ଯୁବତୀ ।
ଦ୍ୱାରକାପୁରେ ସମସ୍ତେ ପଡ଼ିଲେ ବୋବାଳି
ସମସ୍ତଙ୍କ ନୟନରୁ ଅଶ୍ରୁଜଳ ଗଳି ।
ବେନିଦଣ୍ଡ ପରିଯନ୍ତେ ଉଠିଲାକ କୋହ
ସଚେତ ହୋଇଲେ ରାମକୃଷ୍ଣ ତେଜି ମୋହ ।
ନାରଦ ବୋଇଲେ ତୁମ୍ଭେ ପ୍ରଦ୍ୟୁମ୍ନକୁ ଦେଖ
ଦେହରେ ତ ଜ୍ଞାନ ନାହିଁ ବିପରୀତ ମୁଖ ।
ଅନିରୁଦ୍ଧର ନିମନ୍ତେ କରନ୍ତେ ରୋଦନ
ପୁତ୍ରର ଶୋକରେ ମୋହ ହୋଇଛି ପ୍ରଦ୍ୟୁମ୍ନ ।
ଦେଖି ନାରାୟଣ ବେଗେ ପୁତ୍ରେ କୋଳ କରି
ମୁଖରେ ସିଞ୍ଚିଲେ ତାର ସୁବାସିତ ବାରି ।

ସଚେତ କରିବା ଲାଗି କୃଷ୍ଣ ପୁତ୍ରମାନେ
ଶାମ୍ବ ଫୁଙ୍କଇ ଯାଇଣ ପ୍ରଦ୍ୟୁମ୍ନର କର୍ଣ୍ଣେ ।
ବଳରାମ ଧରି କରି ଫୁଟାନ୍ତି ଅଙ୍ଗୁଷ୍ଠି
କେତେ ହେଁ ବେଳେ ସଚେତ ହୋଇ ପୁତ୍ର ଉଠି ।
କାନ୍ଦଇ ପ୍ରଦ୍ୟୁମ୍ନ ପୁତ୍ର ନାମ ଗୋଟି ଧରି
କେଣେ ଗଲୁ ବାବୁରେ ତୁ ମୋତେ ଛାଡ଼ିକରି ।
ଦରିଦ୍ରର ଧନ ତୁହି ଅନ୍ଧର ଲଉଡ଼ି
ମୁହିଁ ମରୁଅଛି ଏବେ ଶୋକ ଜଳେ ପଡ଼ି ।
ହା ମୋର ପୁତ୍ର ସୁନ୍ଦର ଆରେ ଅନିରୁଦ୍ଧ
ଦାନବ ହାତରେ ତୁହି ପ୍ରାଣେ ହେଲୁ ବଧ ।
ବଳରାମ ବୋଇଲେ ଯେ ଉଗ୍ରସେନେ ଚାହିଁ
ସାତବଂଶ ଯାଦବ ଯେ ଆସ ସଜହୋଇ ।
ପୁତ୍ରର ନିମନ୍ତେ ବାଣା ଅସୁରକୁ ମାରି
ତାଳଧ୍ୱଜ ରଥ ମୋର ଆଣ ସଜ କରି ।
ଶ୍ରୀହରି ବୋଇଲେ ବେଗେ ଦାରୁକରୁ ରାଇ
ନନ୍ଦିଘୋଷ ରଥ ମୋର ଆଣ ଆରେ ତୁହି ।
ସାଜ ସାଜ ବୋଲି କରି ପଡ଼ିଲାକ ଡାକ
ସଜହେଲେ ରଥ ଗଜ ଚତୁରଙ୍ଗ ଲୋକ ।
କରେ ଶସ୍ତ୍ର ଧରି ଗରଜନ୍ତି ବୀରମାନେ
ନାରାୟଣ ସୁମରିଲେ ବିନତା ନନ୍ଦନେ ।
ଖଗବର ଆସି ତହିଁ ମିଳିଲେ ତକ୍ଷଣ
ତା ପୃଷ୍ଠରେ ବିଜେ କଲେ ଦେବ ନାରାୟଣ ।
ତାଳଧ୍ୱଜ ରଥେ ବିଜେ କଲେ କାମପାଳ
ଆବର କରେ ଘେନିଲେ ସୌନନ୍ଦ ମୂଷଳ ।
ନନ୍ଦିଘୋଷ ରଥପରେ ବିଜୟ ପ୍ରଦ୍ୟୁମ୍ନ
ବାଜଇ ଶଙ୍ଖ ମହୁରୀ ନାନା ବାଦ୍ୟମାନ ।
ନିଶାଣ ପାଟଛତ୍ର ଯେ ଉଡ଼େ ପନ୍ତିପନ୍ତି
ରଥ ଉପରେ ପତାକାମାନ ଝଟକନ୍ତି ।
ସମୁଦ୍ର ନିର୍ଘୋଷ ଜାଣି ମୁଖରାବ ଗୋଳ
ଦ୍ୱାଦଶକ୍ଷୌଣୀ ଅଟନ୍ତି ଯାଦବଙ୍କ ବଳ ।
ଏଥୁ ଏକ ଆଗହୋଇ ଧାଉଁଛନ୍ତି ଖରେ
ରଥୁ ଥୁଆଇ ଗମନ କରନ୍ତି ଯେ ବୀରେ ।
ଚଳଇ ଯେ ତାଳଧ୍ୱଜ ରଥ ଘନ ଘନ
ନନ୍ଦିଘୋଷ ରଥ ଚଳୁଅଛି ବିତପନ ।
ବିନତା ପୁତ୍ର ଗମନ କରେ ଅତି ରୋଷେ
ସରବେ ମିଳିଲେ ଯାଇ ବାଣାସୁର ଦେଶେ ।
ଗ୍ରାମ ପାଟଣା ଜଗତୀ ପୁଣ ପୁରମାନ
ଯେ ମୁଖେ ପଡ଼ଇ ତାହା କରନ୍ତି ଦଳନ ।
ବାଳ ବୃଦ୍ଧ ଯୁବା ଆଦି ରାଜ୍ୟ ପ୍ରଜାଗଣ
ପ୍ରଦ୍ୟୁମ୍ନର ଶରାଘାତେ ସମସ୍ତେ ନିଧନ ।
ଜଣାଇଲେ ବାଣାସୁର ଆଗେ ଚାର ଯାଇଁ
ତୋହର ରାଜ୍ୟ ସମ୍ଭାଳ ବେଗେ ହେ ଗୋସାଇଁ ।
ରାମକୃଷ୍ଣ ବିଜେ କଲେ ଯଦୁକୁଳ ଘେନି
ନରପତି ଆଜ୍ଞା ଦେଲେ ସାଜହୋଇ ସଇନି ।
ରହୁବର ଆରୋହିଣ ଦୈତ୍ୟକୁଳ ସାଇଁ
ଦ୍ୱାଦଶ କ୍ଷଉଣୀ ବଳ ଘେନି ଓଗାଳଇ ।
ଦେଖି ପ୍ରଦ୍ୟୁମ୍ନ ମିଳିଲା ସୈନ୍ୟଙ୍କର ଆଗ
ଛେଳିକି ଦେଖିଣ ଯେହ୍ନେ ପଲାଶଇ ବ୍ୟାଘ୍ର ।
କୋପେ ରକ୍ତବର୍ଣ୍ଣ ନେତ୍ର ଶ୍ରୀକୃଷ୍ଣର ସୁତ
ହାବୋଡ଼ା ଶର ଗୁଣରେ ବସାଏ ତୁରିତ ।
ଆଗଭର ହୋଇ ସେହୁ ଶର ଦେଲେ ଛାଡ଼ି
ତିନିଶତ ରଥେ ପଡ଼େ ସେ ଶର ହାବୋଡ଼ି ।
ଶାରଙ୍ଗ ଧନୁ ଧରିଣ ବେଗେ ଦାମୋଦର
ନେଇ ବିନ୍ଧିଲେ ଅସୁରପରେ ତୀକ୍ଷ୍ଣଶର ।
ରେରେକାର ଶବ୍ଦକରି ଦେବ କାମପାଳ
କରେ ବୁଲାଇଲେ ସେହୁ ସୌନନ୍ଦ ମୂଷଳ ।
ଏକା ଏକା ପ୍ରହାରକେ କୋଟି କୋଟି ମାରି
ଶ୍ରୀକୃଷ୍ଣର ପୁତ୍ରମାନେ ରଣଗୋଳ କରି ।
ବାଣାସୁର ନରପତି କରଇ ସମର
କରେ ଧରିଅଛି ଶସ୍ତ୍ର ପୁଣି ଧନୁଶର ।
ଏକାବେଳକେ ନାରାଚ ପାଞ୍ଚଶତ ମାରି
ନିମିଷକେ ଶତେବାର ପେଶେ ଦଣ୍ଡଧାରୀ ।
ଗରୁଡ଼ ଉପରେ ପଡ଼ି ଉପୁଡ଼ଇ କାଣ୍ଡ
ଅସୁରର ଗରଜନେ କମ୍ପଇ ବ୍ରହ୍ମାଣ୍ଡ ।
ନନ୍ଦିଘୋଷ ରଥ ସେହୁ ଶରେ ଲୁଚାଇଲା
କୋଟି କୋଟି କରି ପୁଣି ନାରାଚ ବିନ୍ଧିଲା ।
ସଦାଶିବଙ୍କୁ ସେ ସେବି ପାଇଅଛି ବର
କାହାରିକୁ ଭୟ କରେ ନାହିଁ ସେ ଅସୁର ।
ମହାଘୋର ଯୁଦ୍ଧ ହେଲା ତହୁଁ ଅନ୍ୟୋଅନି
ବାରଣ ନ ଗଲା କିବା ଦିବସ ରଜନୀ ।
ଅନେକ ଯୁଦ୍ଧ କରନ୍ତି ରହି ଯଦୁବୀରେ
କେହି କାହାରିକୁ ଉଚ୍ଚ ନୁହନ୍ତି ସମରେ ।
ତାହା ଦେଖି ନାରାୟଣ ମନରେ ବିଚାରି
ସୁଦର୍ଶନ ଚକ୍ର କରେ ଧଇଲେ ମୁରାରୀ ।
ଯେତେଯେତେ ଶର ଦୈତ୍ୟ ବିନ୍ଧିଥିଲା ରହି
ସୁଦରଶନ ତେଜରେ ହୋଇଲାକ ଦହି ।
ସୁଦର୍ଶନ ଚକ୍ର ଦେଖି ପଳାଏ ଦନୁଜ
ବୋଇଲା ସଦାଶିବଙ୍କୁ କହିବଇଁ ଆଜ ।
ଏତେ ବିଚାରି ଅସୁର କରଇ ଗମନ
ନିମିଷକେ ମିଳିଲା ସେ କୈଳାସ ଭୁବନ ।

ସଦାଶିବ ପାଦେ ପଡ଼ି କହଇ ବିନୟୀ
ଶୁଣ ଦେବ ମହାପ୍ରଭୁ ଗଉରୀର ସାଇଁ ।
ପ୍ରଦ୍ୟୁମ୍ନର ସୁତ ନାମ ଅନିରୁଦ୍ଧ ବୀର
ବଳେ ନେଇ ଦୁହିତାକୁ ହରିଲା ମୋହର ।
କୋପେତାକୁ ଅହିଶରେ କଲଇଁ ବନ୍ଧନ
ଅଇଲେ ଶ୍ରୀରାମ କୃଷ୍ଣ ଘେନି ଯଦୁସୈନ୍ୟ ।
ଅଯୋଗେ ପଶି କଟକେ ମୋର କଲେ ନାଶ
ତେଣୁକରି ଅଇଲଇଁ ଦେବ ତୁମ୍ଭ ପାଶ ।
ଶଙ୍କର ବୋଇଲେ ଶୁଣ ଦୈତ୍ୟକୁଳେଶ୍ୱର
ଆମ୍ଭର ବଚନେ ତୁହି ହୋଇଲୁ ଅମର ।
ଅମର ବରପାଇ ତୁ ମରିବାକୁ ଡରୁ
ଶ୍ରୀକୃଷ୍ଣର ତୁଳେ ତୁ ଯେ ସମର ନ କରୁ ।
ମୁଁ ଏଥେ ବିଜେ କରିବି ବୃଷଭ ଆରୋହୀ
ଆଗେ ଯାଇଣ ସମର କର ବେଗେ ତୁହି ।
ଶୁଣି ଅସୁର ବିକ୍ରମି ଅଇଲାକ ବେଗେ
ସମର କଲା ଆବର ହୋଇଣ ବୈରାଗେ ।
ଯେତେବେଳେ ବାଣାସୁର ଗଲା ଆଡ଼ହୋଇ
ସୈନ୍ୟଗଣ ପଳାଇଲେ ମହାଭୟ ପାଇ ।
ମନ୍ତ୍ରୀବର ଦେଖିଣ ତା ବଇଦୁର୍ଯ୍ୟ କେତୁ
ସୈନ୍ୟଙ୍କୁ ବୋଇଲା ପଳାଅରେ ଦେଖି ଶତ୍ରୁ ।
କ୍ଷତ୍ରି ହୋଇକରି ତୁମ୍ଭେ ମରିବାକୁ ଡର
ମୋହର ତୁଳେ ଆସିଣ କରିବ ସମର ।
ଏତେ ବୋଲିଣ ଅସୁର ଉଠିଲାକ ଗର୍ଜି
ମେରୁ ଶୃଙ୍ଗ ଆବର କି ପଡ଼ିଲାକ ଭାଜି ।
କରେ ଶୂଳ ଘେନି ବେଗେ ହେଲା ଆଗୁସାର
ଆପଣାର ସୈନ୍ୟବଳ ଅଛଇ ସଙ୍ଗର ।
ସମର କରଇ ଦୈତ୍ୟ ଭୟଭ୍ରାନ୍ତି ଛାଡ଼ି
ଶୂଳଧରି ପିଟୁଅଛି ବଜ୍ରସମ ବାଡ଼ି ।
ତାହା ଦେଖି କାମପାଳ ଓଗାଳିଲେ ଯାଇଁ
ବିନ୍ଧନ୍ତି ନାରାଚମାନ କୋପଭର ହୋଇ ।
ମୁଣ୍ଡ ପାତିଣ ଦଇତ ରାମଶର ମେଣ୍ଟି
ଦେଖି କାମପାଳ ତାକୁ ମୁଷଳରେ ପିଟି ।
ଘାଏ ଘୁମାଏ ପଡ଼ିଲା ଦୈତ୍ୟ ମନ୍ତ୍ରୀବର
ଯୁଝନ୍ତି ବାଣା ଅସୁର ସଙ୍ଗେ ଚକ୍ରଧର ।
ବେଳକୁ ବେଳ ସମର ବଢ଼େ ରଣରଙ୍ଗ
ରକତ କର୍ଦ୍ଦମ ହେଲା ବେନିଜନ ଅଙ୍ଗ ।
ଗଦାଢେଲ ଶକତି ଯେ ଆବର ମୂଷଳ
ବରଷେଣ ପ୍ରାୟେ କରି ମାରଇ ଅସୁର ।
ଗରୁଡ଼ ଉପରେ ଯାଇ ପଡ଼େ ବାଣମାନ
ଜୁଳୁଜୁଳା ପୋକ କିବା ଉଡ଼ନ୍ତି ଗଗନ ।

ଏମନ୍ତ ସମୟେ ତହିଁ ବିଜେ କଲେ ହର
ଡିବିଡିବି ଡମ୍ବରୁ ଯେ ବାଜଇ ଶୂନ୍ୟର ।
ଶ୍ରୀକୃଷ୍ଣ ଜାଣିଲେ ଏବେ ବିଜେ କଲେ ହର
ବାଣାସୁର ପାଇଁକି ସେ କରିବେ ସମର ।
କ୍ରୋଧେ କମ୍ପମାନ ହେଲେ ଦେବକୀ ନନ୍ଦନ
ସୁଦର୍ଶନ ଚକ୍ରକୁ ସେ ସ୍ମରିଲେ ବହନ ।
ତକ୍ଷଣ ସେ ଚକ୍ର ଆସି ଶ୍ରୀକୃଷ୍ଣଙ୍କ କର
ଧାଡିକାରେ ପେଶିଲେ ତା ଦେବ ଦାମୋଦର ।
ଦୈତ୍ୟର ଭୁଜ ଉପରେ ପଡ଼ିଲାକ ଯାଇ
ଛିଡ଼ିଗଲେ କରମାନ ନ ରହିଲେ କେହି ।
ପୁଣି ତାର ବାମଭୁଜ ଉପରେଣ ପଡ଼ି
ତକ୍ଷଣେ ସେ ଭୁଜ ତାର ଭୂମିପରେ ଛିଡ଼ି ।
ମୁଣ୍ଡାବୃକ୍ଷ ପରାୟେକ ଦିଶଇ ଅସୁର
ପୁଣି ହିଁ ଧଇଲେ ସୁଦର୍ଶନ ନେଇ କର ।
ଈଶ୍ୱର ଭାଳନ୍ତି ବାଣାସୁର ନ ବର୍ତ୍ତିବ
ଆମ୍ଭ ବର ଦେବାର ଯେ ବିଅର୍ଥ ହୋଇବ ।
ଏତେ ବିଚାରି ଶଙ୍କର କୃଷ୍ଣପାଶେ ମିଳି
କହୁଛନ୍ତି ପୁରଃସରି ଶୁଣ ବନମାଳୀ ।
ମୋହର ବରରେ ସେହି ଅସୁର ଅମର
ତୁହି ଦେବ ଚକ୍ରପେଷି କାଟୁଛୁ ତା ଶିର ।
ତୋହର ମରନ୍ତେ ଏହି ଅସୁର ମରିବ
ଆମ୍ଭଙ୍କୁ ଈଶ୍ୱର କିମ୍ପା କଲୁ ବାସୁଦେବ ।
କ୍ରୋଧ ଶାନ୍ତ କର ଏବେ ଦେବ ଚକ୍ରଧର
ପ୍ରସନ୍ନ ହୋଇ ଏହାକୁ ଦିଅ ତୁମ୍ଭେ ବର ।
ସହସ୍ରେ ଭୁଜରୁ ଯାର ଦୁଇଭୁଜ ରହୁ
ଆମ୍ଭର ବର ଦେବାର ବିଅର୍ଥ ଯେ ନୋହୁ ।
ଈଶ୍ୱର କହନ୍ତେ ବାସୁଦେବ ହେଲେ ତୋଷ
ବଳରାମ ମନରୁ ଯେ ଛାଡ଼ିଲେକ ରୋଷ ।
ଶିବ ବୋଇଲେ ପାଇଲା ଦୈତ୍ୟ ଚାରିକର
ବିଜେ ରାମକୃଷ୍ଣ ହର ବାଣାସୁର ପୁର ।
ଗରୁଡ଼ର ପକ୍ଷାଘାତେ ଶରେ ଅହିଶର
ଭୟରେ ପଳାଇ ଗଲେ ବହୁତ ଯେ ଦୂର ।
ଅନିରୁଦ୍ଧ ଦେହ ଏବେ ହୋଇଲାକ ଶୂନ୍ୟ
ମୋହ ତେଜି ଉଠିଲା ସେ ପ୍ରଦ୍ୟୁମ୍ନ ନନ୍ଦନ ।
ଆସନ ପାଦାସନାଦି ବହୁତ ସମ୍ଭାର
ପୂଜଇ ଅସୁର ରାମ କୃଷ୍ଣଙ୍କ ପୟର ।
ଦିବ୍ୟ ଭୁବନ ମଣ୍ଡାଇ ଅସୁର ରାଜନ
ନେତ ଚିରାଳ ଆବର ଉଡ଼େ ବିପତନ ।
ରାମ କୃଷ୍ଣ ବିଜେ କଲେ ସାତବଂଶ ଘେନି
ବ୍ୟାସ ମାରକଣ୍ଡ ପୁଣି ଉଦ୍ଦାଳକ ମୁନି ।

ଭରଦ୍ୱାଜ ଋଷି ପୁଣି ଗଉତମ ଆୟେ
ଦୁର୍ବାସା ମହାମୁନି ଯେ ବିଜୟ ସଭୟେ ।
ନଗ୍ରପୁର ମୁଣ୍ଡାଇଣ ଶୁଭଧ୍ୱନି କରି
ଦ୍ୱାରେ ପୂର୍ଣ୍ଣକୁମ୍ଭମାନ ଆଣି ଯେ ଉଭାରି ।
ନଗ୍ର ନରନାରୀ ରତିକାମ ଯେ ସଞ୍ଜାତ
କରୁଛନ୍ତି ସଦାଶିବ ଆପଣେ ସମସ୍ତ ।
ପଣ୍ଡିତ କହିଲେ ଏବେ ଶୁଭ ଅନୁକୂଳ
ଆଢ଼ାଷ ଶୁକ୍ଳ ଦଶମୀ ତିଥି ଗୁରୁବାର ।
ବିଭାଘର ଲଗ୍ନବେଳ ହୋଇଲାକ ଆସି
ସଂକଳପ କରାବନ୍ତି ଗାର୍ଗବ ମହର୍ଷି ।
ବରୁଣ ପୂଜା କରିଣ ବରକନ୍ୟା ଆଣି
ମନ୍ତ୍ର କରିଣ ବନ୍ଧନ କଲେ କୁଶ ପାଣି ।
ଡାହାଣବର୍ତ୍ତକ ଶଙ୍ଖେ ଜଳତିଳ ଦେଇ
ଆନନ୍ଦରେ ବାଣାସୁର ଯୌତୁକ ଦିଅଇ ।
କୋଟିଏକ ରଥ ପୁଣି କୋଟିଏକ ହସ୍ତୀ
ଚାରିଗୋଟି ଅଶ୍ୱ ଦଶଗୋଟି ଯେ ପଦାତି ।
ଲକ୍ଷେକ ଗାଇ ଦେଲେ ସେ ବସ୍ତ୍ର ସହିତେ
ଶତେ ପରିବାରୀ ହେଲେ ଅଳଙ୍କାର ଯୁକ୍ତେ ।
ପାଟଛତ୍ର ଆବର ହିଁ ଖଟ ଯେ ସୁପାତି
ବହୁ ସମ୍ଭାରେ ଯୌତୁକ ଦେଲା ନରପତି ।
କୋଟିଏକ ରତ୍ନ ବଳରାମ ପାଦେ ଦେଇ
ଶରଣପଞ୍ଜର ନାଥ ମୋତେ କର ତ୍ରାହି ।
ନ ଜାଣି ମୁଁ ଅପରାଧ କଲଇ ଯେତେକ
କ୍ଷମାକର ଦୋଷ ମୋର ନ କର ଯେ କୋପ ।
ଆନନ୍ଦ ଭାବେ କହନ୍ତି ସେ ନନ୍ଦ ନନ୍ଦନ
ଆମ୍ଭରେ ତୋର ଦୁହିତା କରିଲୁ ପ୍ରଦାନ ।
ତେଣୁ ହିଁ ଆମ୍ଭ ବାନ୍ଧବ ହୋଇଲୁ ଯୁକତେ
ସଦାଶିବଙ୍କର ବର ପ୍ରାପ୍ତ ହେଉ ତୋତେ ।
ଯୁଗେ ଯୁଗେ ତୁ ଆମ୍ଭର ତନୁଥିବୁ ଧରି
ତେବେ ଏଠାରେ କୀରତି ରହିବ ଆମ୍ଭରି ।
ବର କନ୍ୟାଙ୍କୁ ଆଶିଷ ଦ୍ୟନ୍ତି ମୁନିମାନେ
ଦେଖନ୍ତି ନଗର ନର ନାରୀ ତୋଷମନେ ।
ବିଚାରନ୍ତି ସୁନ୍ଦର ଯେ ପୁତ୍ର ରୂପରାଶି
ବରେ କନ୍ୟା କନ୍ୟା ବରେ ମିଳିଲା ସାଦୃଶୀ ।
ବିଧାତାର ନିର୍ମାଣ ସେ ନୁହଇଟି ଆନ
ଯେମନ୍ତେ ଯାହାକୁ ସେହୁ କରଇ ଭିଆଣ ।
ଏଥୁଅନନ୍ତରେ ଅସୁରର ଯେତେ ରାଣୀ
ବନ୍ଦାନ୍ତି ବରକନ୍ୟାଙ୍କୁ କରେ ଅର୍ଘ୍ୟଘେନି ।
ଅନ୍ତଃପୁର ମଧ୍ୟକୁ ସେ ବର କନ୍ୟା ଗଲେ
ଧାଇ ମୁଦୁସୁଲୀ ଯେ ପହଣ୍ଡ ମଣାଇଲେ ।

ଏକପାତ୍ରେ ବସି ବେନି କରନ୍ତି ଭୋଜନ
ବେଢ଼ି ରହିଛନ୍ତି ତାକୁ ସର୍ବ ପରିଜନ ।
ଆଚମନ ସାରି ତହୁଁ ତାମ୍ବୁଳ ଯେ ଖାଇ
ଯିବାଲାଗି ଉଦବେଗ ହୋଇଲେକ ତହିଁ ।
ଆରୋହିଲେ ତାଳଧ୍ୱଜ ରଥେ କାମପାଳ
ନନ୍ଦିଘୋଷେ ବିଜେ କଲେ ମଦନ ଗୋପାଳ ।
ଦ୍ୱାରକାପୁରକୁ ସାତବଂଶ ଘେନି ବିଜେ
ଟମକ ନିଶାଣ ଶୁଣି ବିଜିଘୋଷ ବାଜେ ।
ରତ୍ନମୟ ରଥପରେ ବର କନ୍ୟା ବସି
ଚନ୍ଦ୍ରମା ପୃଥିବୀ ପରେ ପଡ଼ିଲାକ ଖସି ।
ହୁଳହୁଳି ଦେଉଛନ୍ତି ଅନେକ ବନିତା
ଅପର ଅପସରାବୃନ୍ଦ ନୃତ୍ୟ ଗୀତେମତ୍ତା ।
ଆଲଟ ପାଟଛତ୍ରୀ ଯେ ଉଡ଼େ ବିପତନ
ଉଗ୍ରସେନ ଚଳାବନ୍ତି ଯଉତୁକମାନ ।
ବାଟକୁ ପାଛୋଟି ଆସୁଛନ୍ତି ସଦାଶିବ
ଦ୍ୱାରକା ନଗରଯାକ ବହୁତ ଉତ୍ସବ ।
ମଙ୍ଗଳ ଉଚ୍ଚାରି ସର୍ବେ ଜୟ ଜୟ ଘୋଷି
ଅର୍ଘ୍ୟ ବନ୍ଦାନ୍ତି ସରବ ଦ୍ୱାରକାର ବାସୀ ।
ବରକନ୍ୟା ଦେଖିକରି ନଗ୍ରଲୋକେ ହର୍ଷ
ଶୁଭଲଗନ ବେଳରେ ନଗରେ ପ୍ରବେଶ ।
ଅଷ୍ଟପାଟବଂଶୀ ମୂଳେ ଶ୍ରୀକୃଷ୍ଣ ବାମା
ବରକନ୍ୟା ଦେଖି ସର୍ବେ ହରଷିତ ମନା ।
କନ୍ୟାକୁ ଯେ ପରଶଂସା କରନ୍ତି ବହୁତ
ଧନ୍ୟ ତୋହର ତାତ ଯେ ଧନ୍ୟ ତୋର ମାତ ।
ଧନ୍ୟ ଦ୍ୱାରକା ପୁରକୁ ଏହୁ ଶୋଭା ଦିଶି
ଧନ୍ୟ ବିଧାତା ତୋତେ ସେ ଗଢ଼ିଥିଲା ବସି ।
ଧନ୍ୟ ଆମ୍ଭେ ସର୍ବେ ଦେଖିଲୁ ଯେ ବେନି ଡୋଳେ
ଧନ୍ୟ ଅନିରୁଦ୍ଧ ଧଇଲୁ ଏ କନ୍ୟାକୁ କୋଳେ ।
ଧନ୍ୟ ଯେବଣ ରାଜ୍ୟରେ ହେଲୁ ଉତପତ୍ତି
ଧନ୍ୟ ଧନ୍ୟରେ ସୁନ୍ଦରୀ ଧନ୍ୟ ତୋର ମୂର୍ତ୍ତି ।
ଧନ୍ୟ କବରୀ ଚାମର ନୁହେ ତାକୁ ସରି
ଧନ୍ୟ ସୀମାନ୍ତ ତାହାକୁ ଅଛଇ ଆବୋରି ।
ଧନ୍ୟ ତୋହର ନାସିକା ତିଳଫୁଲ ଠାଣି
ଧନ୍ୟ ଦନ୍ତପନ୍ତି ଯେ ଡାଳିମ୍ବ ବୀଜଶ୍ରେଣୀ ।
ଧନ୍ୟ ଜାନୁ ସେ ଉଲଟ ରମ୍ଭାର ସଦୃଶ
ଧନ୍ୟ ସୁକୁମାରୀ ତୁହି ଧନ୍ୟ ତୋ ବୟସ ।
କେ ବୋଲେ ସାବିତ୍ରୀ ଏହୁ ବ୍ରହ୍ମାଙ୍କ ବନିତା
କେ ବୋଲେ ଏ ହିମବନ୍ତ ପର୍ବତ ଦୁହିତା ।
କେ ବୋଲଇ ଶଚୀ ଏହୁ ଇନ୍ଦ୍ର ପାଟରାଣୀ
କେହୁ ବୋଲେ ଛାୟା ଏହୁ ସୂର୍ଯ୍ୟଙ୍କ ଘରଣୀ ।

କେ ବୋଲଇ ବୃହସ୍ପତି ପତ୍ନୀ ଏହୁ ତାରା
ରମ୍ଭା ମେନକା ଉର୍ବଶୀ ଏହୁ ହେବ ପରା ।
କେ ବୋଲଇ ତୁମ୍ଭେମାନେ ନ ଜାଣ ହେ କିଛି
ଏହାର ରୂପକୁ ଏକେ ସମ କାହିଁ ଅଛି ।
ଦେବକୀ ଯେ ବସୁଦେବ ବହୁତ ହରଷ
ଘେନି ନାତି ନାତୁଣୀଙ୍କୁ ଗୃହରେ ପ୍ରବେଶ ।
ଅର୍ଘ୍ୟ ବନ୍ଧାଇବେ ଆସି ସକଳ କାମିନୀ
କଲ୍ୟାଣ କରୁଅଛନ୍ତି ସକଳ ଜନନୀ ।
ପୁରେ ପୁରେ ଚହଳ ଯେ କହିତ କେ ପାରି
ବରକନ୍ୟା ଦେଖି ଆସୁଛନ୍ତି ସର୍ବନାରୀ ।
ରାମକୃଷ୍ଣ ବିଜେ କଲେ ସମ୍ଭାବି ଆସନେ
ଅଛନ୍ତି ଯେ ଦେବଋଷି ବ୍ରହ୍ମାଋଷିମାନେ ।
ଅପସରୀ କିନ୍ନରୀଏ ଦିବ୍ୟ ବେଶ ହୋଇ
ତାଳ ମୃଦଙ୍ଗ ଆବର ବେଣୁ ବୀଣା ବାଇ ।
ଚତୁର୍ଥୀ ଦିନରେ ବିଧିମାନ ବେଗେ ସାରି
ଛାମୁଣ୍ଡି ପରେ ବିଜୟ ସର୍ବ ତପଚାରୀ ।
ଯଥାବିଧି ସାରିକରି ବରକନ୍ୟା ଗଲେ
ଅନେକ ଯୁବତୀ ମିଳି ହୁଳହୁଳି ଦେଲେ ।
ବିଭାବିଧି ଶେଷକରି ମୁନିମାନେ ଗଲେ
ଯେଯାହାର ଆଶ୍ରମରେ ପ୍ରବେଶ ହୋଇଲେ ।
ଶୁଣ ମନୁ ରାଜା ତୁହି ପୁଛାକଲୁ ଯାହା
ଥୋକାଏ କଥାନୁସାରେ ବଖାଣିଲୁ ତାହା ।
ଏ ମହାଭାରତ ମଧ୍ୟପର୍ବ ରସ ସାର
ପ୍ରାଣୀମାନେ ଶୁଦ୍ଧଚିତ୍ତେ ଶ୍ରବଣ ଯେ କର ।
କଳିକାଳ ଘୋର ଏବେ ହୋଇଲାକ ଆସି
ରାମ ନାମ ଧର ନ ବାଧୁ ଯେ କାଳପାଶି ।
ରାମ ନାମ ବ୍ରହ୍ମ ଅଟେ ବେନି ଯେ ଅକ୍ଷର
ସେହି ନାମ ଗୋଟି ମନୁ ନ କର ପାସୋର ।
ତୁଳସୀର ବଲ୍ଲଭ ମୋ ହୃଦୟରେ ଥାଉ
ଶାରଳା ଦାସେ ମୁକତି ଗତିକି ଯେ ହେଉ ।
ବନ୍ଦଇ କମଳା ମାଗୋ ବିଷ୍ଣୁ ପାଟରାଣୀ
ଦୁର୍ଗତୀ ଧ୍ୱଂସିନୀ ମାଗୋ ଦାରିଦ୍ର୍ୟ ଭଞ୍ଜନୀ ।
ପଦ୍ମ ଆସନୀ ଜଳଧି ରାଜାର ଦୁହିତା
ସର୍ବଜନଙ୍କର ମାତା ସଂସାର ରଖାନ୍ତା ।
ନିତ୍ୟ ନିତ୍ୟ ଯେହୁ ତୋର ଚରଣ ବନ୍ଦନ୍ତି
ବିପୁଳ ସମ୍ପତ୍ତି ତାକୁ ଦେଉ ମହାସତୀ ।
ପଦ୍ମ ପୁଷ୍ପରୁ ଜନ୍ମ ପଦ୍ମା ତୋର ନାମ
କମଳିନୀ ନାମ ତୋର କରନ୍ତି ବଖାଣ ।
ଲକ୍ଷ୍ମୀ ନାରାୟଣଙ୍କର ଚରଣ କମଳେ
ଶୂଦ୍ରମୁନି ଶାରଳା ତୋ ଭାବେ ସର୍ବକାଳେ ।

—o—

## ମୂଢ଼ାସୁରର ବର ଲାଭ, ଗଣେଶଙ୍କ ଜନ୍ମ

ବୈବସ୍ୱତ ମନୁ ପୁଣି ଅଗସ୍ତି ଚରଣେ
ସହସ୍ରେ ପ୍ରଣାମ କରି ଉଠେ କ୍ଷଣେ କ୍ଷଣେ ।
ଷଡ଼ଅର୍ଘ୍ୟେ ପୂଜାକରି କରଯୋଡ଼ି କହି
ମହାଭାରତ କହିଣ ମୋତେ କର ତ୍ରାହି ।
ଜନ୍ମେ ଜନ୍ମେ ମୁହିଁ ତୁମ୍ଭ ଦାସଙ୍କର ଦାସ
ମୁଢ଼ାସୁର ବଧ ମୋତେ କହ ବ୍ରହ୍ମଶିଷ୍ୟ ।
କେବଣ ଯୋଗରେ ସେହି ଦୈତ୍ୟ ଜନମିଲା
କେଉଁ କାରଣରୁ ଏତେ ଗରିଷ୍ଠ ହୋଇଲା ।
ଏହି ଚରିତ ବିସ୍ତାରି କହ ମୁନିବର
ତେବେ ସିନା ମନ ଶାନ୍ତି ହୋଇବ ମୋହର ।
ମନୁ ପୁଛନ୍ତେ ଅଗସ୍ତି ମୁନି ଯେ ହସନ୍ତି
ଆବର ସେ ରାଜା ମୁଖ ଚାହିଁଣ କହନ୍ତି ।
ରାଜାଙ୍କୁ ପ୍ରଶଂସା ସେହୁ କରନ୍ତି ବହୁତ
ଗୁଣବନ୍ତ ବୁଦ୍ଧିମନ୍ତ ଅଟୁ ତୁ ପଣ୍ଡିତ ।
ଏତେକ ସନ୍ଧିର କଥା ପଚାରୁ ତୁ ରାୟେ
ସାବଧାନେ ଶୁଣ ତାହା କହିବ ଥୋକାଏ ।
ଏକମନ ହୋଇ କରି ଶୁଣ ନୃପରାଣ
ସ୍ଥିର ଚିତ୍ତ ହୋଇ ତୁହି ଏକମନେ ଶୁଣ ।
ପୁରାଣ ପୁସ୍ତକ ଫେଡ଼ି କହନ୍ତି ଅଗସ୍ତି
ଏକମନେ ଶୁଣ ମୁଢ଼ାସୁରର ଯେ ରୀତି ।
କପିଳାସ କନ୍ଦରର ଉତ୍ତର କୋଣଲେ
ଅଳମ୍ବୁଷ ନାମେ ଅଛି ଏକଇ ନଗରେ ।
ମୁଢ଼ାସୁର ରାଜା ତହିଁ ରାଜ୍ୟ କରୁଥିଲା
ଅତି ବଡ଼ପଣରେ ସେ ଗରିଷ୍ଠ ହୋଇଲା ।
ତାହାର ନନ୍ଦନ ନାମ ପ୍ରୋଢ଼ାସୁର ବୀର
ସମସ୍ତ ରାଜାଙ୍କ ସଙ୍ଗେ ବିବାଦ ତାହାର ।
ସ୍ୱର୍ଗ ମଞ୍ଚପୁରେ ରାଜା ଭ୍ରମୁଥାଏ ନିତି
ସୁର ନର ସଙ୍ଗେ ଅନୁବ୍ରତେ ତା ଅପ୍ରୀତି ।
ନିରନ୍ତରେ ତାର ନାମ ଚମକ ପଡ଼ଇ
ଦେବତାମାନେ ସ୍ୱରଗେ ନ ପାରନ୍ତି ରହି ।
ସମରେ ତାହାକୁ ଇନ୍ଦ୍ର ଦେବତା ମାଇଲେ
ତହିଁ ନିଶ୍ଚିନ୍ତ ହୋଇଣ ସରବେ ରହିଲେ ।
ତାହାର ନନ୍ଦନ ନାମ ଅଟେ ମୁଢ଼ାସୁର
ଅତି ହିଁ ଗରିଷ୍ଠ ହେଲା ସେହି ନିଶାଚର ।
ମର୍ତ୍ତ୍ୟମଣ୍ଡଳରେ ଯେତେ ଯେତେ ରାଜା ଥିଲେ
ଭୟେ ଅସୁରର ସର୍ବେ ଅଧୀନ ହୋଇଲେ ।
ଏମନ୍ତ ରାଜ୍ୟ କରଇ ସେହି ମହାବଳ
ତାହାର ମନ୍ତ୍ରୀର ନାମ ଅଟେ କୁରୁପାଳ ।

ଦିନେ ଆସ୍ଥାନେ ବସିଣ ଥିଲା ବୀରବର
ମନ୍ତ୍ରୀର ମୁଖକୁ ଚାହିଁ ପଚାରେ ଅସୁର ।
ମର୍ତ୍ତ୍ୟମଣ୍ଡଳଯାକ ତ ମୋହର ହୋଇଲା
କହ ଏବେ କେଉଁସ୍ଥାନେ କିଏ ସେ ରହିଲା ।
ମନ୍ତ୍ରୀ କୁରୁପାଳ ବୋଲେ ଶୁଣ ରକ୍ଷସାଇଁ
ତୋହ ଛାମୁରେ କଥାଏ ମୁହିଁ କହିବଇଁ ।
ସମସ୍ତ ରାଜାକୁ ତୁହି ଜିଣିଲୁଟି ବଳେ
ଜିଣି ନ ପାରିବୁ ଏକା ସ୍ୱର୍ଗ ଆଖଣ୍ଡଳେ ।
ମନ୍ତ୍ରୀମୁଖୁ ଶୁଣି କୋପ କଲା ଦୁଷ୍ଟମତି
ମନ୍ତ୍ରୀର ବାଳ ଧଇଲା ଅସୁର ତଡ଼ତି ।
ଇନ୍ଦ୍ରକୁ ବଡ଼ ଗରିଷ୍ଠ ବୋଲୁ ମୋ ଛାମୁରେ
ଥାଟ ସଜକର ଏବେ ଯିବା ସ୍ୱର୍ଗପୁରେ ।
ମନ୍ତ୍ରୀ ଯେ ବୋଇଲା ତୁହି ଛାଡ଼ ମୋର କେଶ
ଗୁପତ କଥାଏ ତୋତେ କହିବା ବିଶ୍ୱାସ ।
ତୋହର ଯେ ବାପ ରାଜା ପ୍ରୋଢ଼ାସୁର ଥିଲା
ଦେବତାଙ୍କ ସଙ୍ଗେ ସେହି ବାଦ ଆରମ୍ଭିଲା ।
ଇନ୍ଦ୍ରର ସଙ୍ଗେ ସ୍ୱର୍ଗରେ କଲା ସେ ସମର
ତୋ ପିତାଙ୍କୁ ମାଇଲାକ ବଜ୍ରେ ସୁନାସୀର ।
ଏହି କଥାପାଇଁ ମୁହିଁ ତିଆରଇ ତୋତେ
ଏଥିରେ ବିଚାର ତୋର ଆସଇ ଯେମନ୍ତେ ।
ମନ୍ତ୍ରୀର ମୁଖରୁ ଏହିପରି କଥା ଶୁଣି
ପୁଣି ହିଁ ପଚାରେ ଧୀରେ ସେ ଅସୁରମଣି ।
ମୋ ବାପକୁ ମାରିଅଛି ଯେବେ ଇନ୍ଦ୍ରରାଣ
ନିଶ୍ଚେ ମୋର ହାତେ ତାର ହୋଇବ ମରଣ ।
କୁରୁପାଳ ମନ୍ତ୍ରୀ ବୋଲେ ଶୁଣ ରକ୍ଷରାୟେ
ମୋହର ବୋଲକୁ ଯେବେ କରିବୁ ଥୋକାଏ ।
ତୁ ମୋର ଠାକୁର ମୁହିଁ ତୋହର ସେବକ
ପୁରୁଷାନୁକ୍ରମେ ମୁହିଁ ଅଟେ ତୋର ଲୋକ ।
ତୁମ୍ଭର ଯେ ଭଲକଥା ମୋର ଶୁଭକର୍ମ
କେବେ ହେଁ ମୋର କଥାରେ ନୋହିବୁ ତୁ ଭ୍ରମ ।
ମନ୍ତ୍ରୀ କହନ୍ତେ ଅସୁର ଭ୍ରମ ଛାଡ଼ିଗଲା
ତକ୍ଷଣେ ମନ୍ତ୍ରୀର ବଳେ ସେହି ଛାଡ଼ିଦେଲା ।
କୋଳ କରି ବସାଇଲେ ନେଇ ସନ୍ନିଧିର
କି ବୁଦ୍ଧି କରିବା ଏବେ କହ ମନ୍ତ୍ରୀବର ।
ମୋହର ପିତାକୁ ଇନ୍ଦ୍ର ପ୍ରାଣେ କଲା ହତ
ପିତୃକାର୍ଯ୍ୟ ନ କଲେ ଏ ଜୀବନ ବିଅର୍ଥ ।
ଏତେକ ବଚନ ସେହି ଅସୁର କହନ୍ତେ
ମନ୍ତ୍ରୀ ବୋଲେ ଶୁଣ ପ୍ରଭୁ କଥାର ତଦନ୍ତେ ।
କଇଳାସ କନ୍ଦରେ ଯେ ଛନ୍ତି ବିଶ୍ୱନାଥ
ଗଣେଶ୍ୱର ବୋଲି ଅଛି ଏକ ତାଙ୍କ ସୁତ ।

ପାର୍ବତୀଙ୍କ ଗର୍ଭରୁ ସେ ପୁତ୍ର ଜନ୍ମିଛନ୍ତି
ଦକ୍ଷିଣ ଦ୍ୱାରପାଳେ ସେ ଦ୍ୱାରେ ବସିଛନ୍ତି ।
ତାଙ୍କୁ ଯେବେ ସେବାକରି ତୁହି ମନାଇବୁ
ତାହାଙ୍କର ପ୍ରସାଦୁ ତୁ ଇନ୍ଦ୍ରକୁ ମାରିବୁ ।
ଏସନ ବଚନ ମନ୍ତ୍ରୀବର ଯେ କହିଲା
ହୃଦପଦ୍ମ ମଧ୍ୟେ କଥା ଅସୁର ଭାଳିଲା ।
ମନ୍ତ୍ରୀ ଯାହା କହିଲା ସେ ସ୍ୱରୂପ ବଚନ
ସେବାରେ ମୁଁ ମନାଇବି ଈଶ୍ୱର ନନ୍ଦନ ।
ପ୍ରଭାତରୁ ସେ ଅସୁର ଉଠିଣ ବହନ
ତତକ୍ଷଣେ ସାରଇ ସେ ନିତ୍ୟକର୍ମମାନ ।
ମନ୍ତ୍ରୀକି ବୋଇଲା ଚାଲ କଇଳାସ ଯିବା
ସେବାକରି ଗଣନାଥ ଦେବ ମନାଇବା ।
ଥାଟ ନାହିଁ ମନ୍ତ୍ରୀ ଘେନିଗଲା ପ୍ରୋଢ଼ାଶିଷ୍ୟ
କଇଳାସର ଦକ୍ଷିଣ ଦୁଆରେ ପ୍ରବେଶ ।
ମନ୍ତ୍ରୀକି ଚାହିଁ ବୋଇଲା ଗଣନାଥ କାହିଁ
ହସ୍ତଠାରି ମନ୍ତ୍ରୀ ତାକୁ ଦେଲାକ ଦେଖାଇ ।
ବୋଇଲା ଏହି ଅଟନ୍ତି ଦେବ ଗଣପତି
ମନୁଷ୍ୟଙ୍କ ଶରୀର ଯେ ମୁକ ଗଜମୂର୍ତ୍ତି ।
ଏମନ୍ତ ବିଚାରି ମନେ ଅସୁର ହସିଲା
ପୁଣି ସେ ମନ୍ତ୍ରୀକି ଚାହିଁ ଏମନ୍ତ ପୁଛିଲା ।
ମନ୍ତ୍ରୀ ଯେ ବୋଇଲା ତୁହି ଶୁଣ ଏକମନେ
ବିସ୍ତାରି କହିବି ମୁହିଁ ଏଥିରେ ବିଧାନେ ।
ଏକଦିନକରେ ପ୍ରଭୁ କାଶୀ ବିଶ୍ୱନାଥ
ବୃଷଭ ଚଢ଼ିଣ ବୁଲିଗଲେ ଯେ ଜଗତ ।
ଭ୍ରମଣ କରି ମିଳିଲେ ଯାଇଁ ସ୍ୱର୍ଗପୁରେ
ଦେଖିଲେ ସର୍ବ ଦେବତା ଅଛନ୍ତି ସେଠାରେ ।
ଈଶ୍ୱରଙ୍କୁ ଦେଖି ଦେବଗଣ ଯେ ଉଠିଲେ
କରପଦ୍ମ ଯୋଡ଼ି ଶିରେ ସର୍ବେ କରଦେଲେ ।
ଦେବତାଙ୍କଠାରୁ ଶିବ ପାଇଣ ସମ୍ମାନ
ସେହିଠାରୁ ମହାଦେବ ଚଳିଲେ ବହନ ।
ପ୍ରବେଶ ହୋଇଲେ ଯାଇଁ ସାବର୍ଣ୍ଣି ଭୁବନେ
ଦେଖିଲେ ଯେ ବସିଛନ୍ତି ବ୍ରହ୍ମା ଯୋଗଧ୍ୟାନେ ।
ସେହିଠାରେ ବିଶ୍ୱନାଥ ଦେଖି ବେଦବର
ତତକ୍ଷଣେ ଧ୍ୟାନ ଭାଙ୍ଗିଗଲା ତାହାଙ୍କର ।
ବୋଇଲେ ସେ କାହିଁଥିଲ ତୁମ୍ଭେ ତ୍ରିପୁରାରି
ଈଶ୍ୱର ବୋଇଲେ ଆମ୍ଭେ ଥିଲୁ ସ୍ୱର୍ଗପୁରୀ ।
ତୁମ୍ଭଙ୍କୁ ସଙ୍ଗାଳି ଆମ୍ଭେ ଯିବୁ କଇଳାସ
କେବଣ ବେଦକୁ ତୁମ୍ଭେ କରୁଛ ଅଭ୍ୟାସ ।
ବ୍ରହ୍ମା ବୋଇଲେ ମୁଁ ଚାରିବେଦକୁ ଘୋଷଇ
ଋକ ଯଜୁ ସାମ ଆଉ ଅଥର୍ବ ପଢ଼ଇ ।

ଈଶ୍ୱର ବୋଇଲେ ପଞ୍ଚବେଦ ମୁଁ ପଢ଼ଇ
ପାଞ୍ଚଗୋଟି ମୁଖେ ତାହା ଅଭ୍ୟାସ କରଇ ।
ବ୍ରହ୍ମା ବୋଇଲେ ସେ ବେଦ ମୁହିଁକି ନ ପଢ଼ି
ଈଶ୍ୱର ବୋଇଲେ ମୁଖ କାହିଁ ଅଛି ବଢ଼ି ।
ଏହାଶୁଣି ବେଦବର ଧ୍ୟାନରେ ବସିଲେ
ଶିରର ଉପରେ ଶିର ଏକ ଦେଖାଇଲେ ।
ପାଞ୍ଚମୁଖ ଦେଖି ଶିବ ମହାକୋପ କଲେ
ବ୍ରହ୍ମାଙ୍କର ମୁଖରେ ଯେ ଚାପୋଡ଼େ ମାଇଲେ ।
ମୁଣ୍ଡ ଛିଡ଼ିଯାଇ ହସ୍ତେ ଲାଗିଲା ତାଙ୍କର
ହସ୍ତ ଛିଞ୍ଚାଡ଼ି ପକାନ୍ତେ ଦେବ ମହେଶ୍ୱର ।
ଛିଞ୍ଚାଡ଼ନ୍ତେ ବ୍ରହ୍ମାମୁଣ୍ଡ ହସ୍ତୁ ନ ଛାଡ଼ିଲା
ଈଶ୍ୱରଙ୍କ ମନରେ ଯେ ବିମୁଖ ହୋଇଲା ।
ଯଶୋବନ୍ତୀପୁରୁଁ ହର ବାହାର ହୋଇଲେ
ସେ ଲଜ୍ଜାରେ କଇଳାସ କନ୍ଦରେ ନ ଗଲେ ।
ହଟକେଶ୍ୱର ତୀର୍ଥକୁ ଗଲେ ତପ କରି
ଧ୍ୟାନରେ ଯାଇ ବସିଲେ ତହିଁ ତ୍ରିପୁରାରି ।
ଏହିପରି କେତେ କାଳ ତହିଁ ବହିଗଲା
ପାର୍ବତୀଙ୍କ ମନ ତହୁଁ ବିକଳ ହୋଇଲା ।
ବୋଇଲେ ଈଶ୍ୱର ଅବା ମୋର ଗଲେ କାହିଁ
ଧ୍ୟାନ କରି ବସିଲେ ସେ ତହିଁ ମହାମାୟୀ ।
ଧ୍ୟାନରେ ଜାଣିଲେ ହିମବନ୍ତର ଦୁଲଣୀ
ବୋଇଲେ ସେ ବ୍ରହ୍ମହତ୍ୟା କଲେ ଶୂଳପାଣି ।
ତପ କରନ୍ତି ହଟକେଶ୍ୱର ଠାରେ ରହି
ପାର୍ବତୀ ଦେବୀଙ୍କ ଚିନ୍ତା କହି ନ ସରଇ ।
ଥୋକାଏକ ଦିନ ଏହିମତେ ବହିଗଲା
ବସନ୍ତ ଋତୁ ଆସିଣ ପ୍ରବେଶ ହୋଇଲା ।
ସଖୀମାନଙ୍କୁ ସଙ୍ଗରେ ଘେନି ମହାସତୀ
ଦିନେ ଫୁଲବନେ ବିଜେ କଲେକ ପାର୍ବତୀ ।
ହସ୍ତାନକ୍ଷତ୍ର ସେ ଦିନ ସାଧକ ଯେ ତାର
ବୈଶାଖ ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର ।
ମେଷ ସଂକ୍ରାନ୍ତି ଚଉଦ ଦିନ ଯାଇ ଭୋଗ
ଦେଖି ବସିଲେ କୈଳାସ ଗିରି ପୂର୍ବଭାଗ ।
ଦେଖିଲେ ଅନେକ ଶୋଭାବନ ପାଉଅଛି
ନାନା କୁତୁହଳେ କ୍ରୀଡ଼ା କରୁଛନ୍ତି ପକ୍ଷୀ ।
ପୁଷ୍ପରେ ବସି ଭ୍ରମରେ କେଶର ଚୁମ୍ବନ୍ତି
ମତ୍ତଭରେ ସର୍ବେ ରତିରଙ୍ଗରେ ଉଡ଼ନ୍ତି ।
ଏକେ ମଧୁମାସ ପୁଣି ମଳୟ ପବନ
ସୁଗନ୍ଧ ଘେନି ବହଇ ବାର ଅନୁକ୍ଷଣ ।
ପକ୍ଷୀଙ୍କର କ୍ରୀଡ଼ା ଦେବୀ ନୟନେ ଦେଖିଲେ
ଶୋକଭରେ ଈଶ୍ୱରଙ୍କୁ ମନେ ସୁମରିଲେ ।

ଦେବୀଙ୍କର ଅଙ୍ଗେ କାମଜ୍ୱର ଯେ ଘୋଟିଲା
ଉଛୁଳିଣ ତାଙ୍କ ରଜ ଭୂମିରେ ପଡ଼ିଲା ।
ଦେଖିଣ ପାର୍ବତୀ ତାହା ହସ୍ତରେ ଧଇଲେ
ଈଶ୍ୱରଙ୍କ ବୀର୍ଯ୍ୟ ଯେବେ ମିଶନ୍ତା ବୋଇଲେ ।
ସଇନ୍ଦୁ ପୁତ୍ର ଗୋଟିଏ ଜନମ ହୁଅନ୍ତା
ବଳବନ୍ତ ରୂପବନ୍ତ ସମରେ ଶକତା ।
ଏମନ୍ତ ବିଚାରି ଦେବୀ ମନେ ସୁମରିଲେ
ଈଶ୍ୱର ବିଭୂତି ନେଇ ରଜରେ ଗୋଳିଲେ ।
ଦଇବର ଘଟଣା ଯେ ଶୁଣ ନୃପରାଣ
ପିତୁଳା ଏକ ଗଢ଼ିଲେ ଦେବୀ ତତକ୍ଷଣ ।
ଅତି ସୁକୁମାର ସେହି ପ୍ରତିମାକୁ ଦେଖି
ମନ୍ତ୍ରପାଣି ସିଞ୍ଚିଲେ ସେ ତହିଁ ଶଶୀମୁଖୀ ।
ଜୀବନ୍ୟାସ ପାଇ ବେଗେ ଉଠିଲେ କୁମର
ପାର୍ବତୀଙ୍କୁ ଦେଖି ସେହି କଲେ ନମସ୍କାର ।
କୋଳେ ବସାଇଣ ପୁତ୍ର ସ୍ନେହେ ମାହେଶ୍ୱରୀ
ସ୍ତନରୁ କ୍ଷୀର ତା ମୁଖେ ଦେଲେ ସ୍ଥିର କରି ।
ପାର୍ବତୀଙ୍କ ସ୍ତନୁ କ୍ଷୀର ପାଇ ପୁତ୍ରମଣି
ଅତିବଳେ ବଳୀୟାର ହେଲା ସେହିକ୍ଷଣି ।
ପାର୍ବତୀଙ୍କ ମୁଖ ଚାହିଁ ବୋଇଲା ବଚନ
କି କରିବି ମାତା ତୁମ୍ଭେ କର ଆଜ୍ଞାଦାନ ।
ପାର୍ବତୀ ବୋଲନ୍ତି ଶୁଣ ଶୁଣରେ କୁମର
ଦକ୍ଷିଣ ଦୁଆର ବାବୁ ହୋଇଲା ତୋହର ।
ନିଶ୍ଚିନ୍ତ ହୋଇଣ ତୁହି ଦ୍ୱାରେ ବସିଥିବୁ
ପୁରୁଷଙ୍କୁ ଭିତରକୁ ଛାଡ଼ି ତୁ ନ ଦେବୁ ।
ଏତେ କହି ଦେବୀ ତହୁଁ ଭିତରକୁ ଗଲେ
ଗଣନାଥ ସେ ଦକ୍ଷିଣ ଦ୍ୱାରେଣ ରହିଲେ ।
ହଟକେଶ୍ୱରେ ଈଶ୍ୱର କରୁଥିଲେ ତପ
ଯହୁଁ କ୍ଷୟ ହେଲା ତାଙ୍କ ବ୍ରହ୍ମହତ୍ୟା ପାପ ।
ବିଭୂତି ଭୂଷଣ ଅଙ୍ଗ ଡମ୍ବରୁ ହସ୍ତରେ
କୁଠାର ଧରିଅଛନ୍ତି ସେ ଦକ୍ଷିଣ କରେ ।
କଷା ବସନ ଖଣ୍ଡିଏ କଟିରେ ଭୂଷଣ
ଦିଗମ୍ବର ବେଶ ହୋଇ ଅଇଲେ ତକ୍ଷଣ ।
ଦକ୍ଷିଣ ଦୁଆରେ ଆସି ମିଳିଲେ ବହନ
ଦେଖିଲେ ସେ ଦ୍ୱାରେ ଅଛି ଏକଇ ନନ୍ଦନ ।
ଈଶ୍ୱର ବୋଇଲେ ଆରେ ଦ୍ୱାର ଛାଡ଼ ବାଳ
ଭିତରେ ଯିବୁ ନ ଥିଲୁ ବହୁତ ଯେ କାଳ ।
ଈଶ୍ୱର କଥା କୁମର ତିଳେ ନ ଘେନିଲେ
ବିଶ୍ୱନାଥ ଦେବଙ୍କୁ ସେ ଦ୍ୱାର ନ ଛାଡ଼ିଲେ ।
ଦ୍ୱାର ନ ଛାଡ଼ନ୍ତେ ହର ମହାକୋପ କଲେ
କୁଠାର ଗୋଟି ବାଳକ ଗଳେ ପ୍ରହାରିଲେ ।

ମୁଣ୍ଡ ଛିଡ଼ିଯାଇ ପୁଣି ପଡ଼ିଲେ ଭୂମିରେ
ତୁରିତେ ଈଶ୍ୱର ତହୁଁ ପଶିଲେ ଭିତରେ ।
କୁମର ମୁଣ୍ଡ ଯେ ତହିଁ ଛିଡ଼ି ପଡ଼ିଥିଲା
ଏକଇ ଅସୁରୀ ତାହା ଗିଳି ପକାଇଲା ।
ଈଶ୍ୱରଙ୍କୁ ଦେଖି ଦେବୀ ପାର୍ବତୀ ଉଠିଲେ
ମହାଦେବଙ୍କ ଚରଣେ ନମସ୍କାର କଲେ ।
ବୋଇଲେ ଅଇଲ ଏତେକାଳ ବିଶ୍ୱନାଥ
ଏତେ ବୋଲି ଦେବୀ ହେଲେ ମନରେ ଉଷତ ।
ଚରଣ ଧୋଇଲେ ତହୁଁ ବସିଲେ ଶଙ୍କର
ମଣୋହି କରନ୍ତି ଷଡ଼ରସ ଶୂଳଧର ।
କୁଠାର ଦେଖିଣ ପଚାରନ୍ତି ମହାମାୟୀ
କୁଠାରେ ରୁଧିର ଲାଗିଅଛି ତ ଗୋସାଇଁ ।
ଏହାଶୁଣି ହସିଲେକ ଦେବ ଶୂଳହସ୍ତ
ବୋଇଲେ ଶୁଣ ତୁ ଆଗୋ ପ୍ରାଣର ସଙ୍ଗାତ ।
ଦକ୍ଷିଣ ଦୁଆରେ ଏକ ଶିଶୁ ବସିଥିଲା
ଆମ୍ଭଙ୍କୁ ଯେ ଭୁବନକୁ ପୂରାଇ ନ ଦେଲା ।
କୋପେ ଆମ୍ଭେ ତାର ବେକେ ମାଇଲୁ କୁଠାର
ବେକ ଛିଡ଼ିଯାଇ ପୁଣି ପଡ଼ିଲା ଭୂମିର ।
ତେଣୁ ତାହାର ରୁଧିର ଲାଗିଛି କୁଠାରେ
ପାର୍ବତୀ ଶୁଣିଲେ ଯହୁଁ ଏମନ୍ତ ପ୍ରକାରେ ।
କୁମରର ହତ ଶୁଣି ଦେବୀ ମହାମାୟୀ
ଶୋକଭରେ ହୋଇଣ ସେ ଉଠିଲେ ବୋବାଇ ।
ଗଉରୀଙ୍କ ଶୋକ ତହୁଁ ଦେଖିଣ ଶଙ୍କର
ବୋଇଲେ କିସ ଚରିତ କହ ମୋ ଆଗର ।
ପଚାରନ୍ତେ ଶଙ୍କର ଯେ କହନ୍ତି ଗଉରୀ
ସେ ତୁମ୍ଭ କୁମର ଏବେ ଶୁଣ ଶୂଳଧାରୀ ।
ଈଶ୍ୱର ବୋଇଲେ କହ କେମନ୍ତେ କୁମର
ସନ୍ତୋଷ ମନରେ ତାହା ଆମ୍ଭ ସନ୍ନିଧିର ।
ଈଶ୍ୱର ଯେ ପଚାରନ୍ତି ପାର୍ବତୀ କହନ୍ତି
ସାବଧାନେ ଶୁଣ ଦେବ ଏଥିରେ ଯେ ରୀତି ।
କାମଦେବ ପୀଡ଼ା ମୋର ହୋଇଲା ଅଙ୍ଗରେ
ଯେଣୁ ତୁମ୍ଭେ ଥିଲ ପ୍ରଭୁ ହଟକେଶପୁରେ ।
ତକ୍ଷଣେ ମୋଠାରୁ ରଜ ସ୍ଖଳିତ ହୋଇଲା
ଆବର ତାହା ଯାଇଣ ଭୂମିରେ ପଡ଼ିଲା ।
ସେ ରଜରେ ମିଶାଇଲି ତୁମ୍ଭର ବିଭୂତି
ସଇନ୍ଦୁ ସେତୁ କୁମର ହେଲା ଉତପତ୍ତି ।
ଶୁଣି ବିସ୍ମୟ ହୋଇଲେ ଦେବ ବିଶ୍ୱନାଥ
ଏହା ମନେ ଭାବି ଦେବ ହେଲେ ସ୍ତମ୍ଭୀଭୂତ ।
ତତକ୍ଷଣେ ଦେବ ତହୁଁ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଦକ୍ଷିଣ ଦୁଆର ।
ଦେଖିଲେ ତହିଁ ପଡ଼ିଛି ପୁତ୍ର ଗଣ୍ଡି ଗୋଟି
ମୁଣ୍ଡଗୋଟି ତହିଁ ନାହିଁ ବିସ୍ମୟ ଧୂର୍ଜଟି ।
ଏ ସମୟେ ପାର୍ବତୀ ଯେ ମିଳିଲେକ ଯାଇ
ଦେଖିଣ ଅତି ବିକଳ ହେଲେ ମହାମାୟୀ ।

ବୋଇଲେ ଭୋ ବିଶ୍ୱନାଥ ଏଡ଼େ କର୍ମ କଲ
ଏହା ପରା ପୁତ୍ରଶିର କାଟି ପକାଇଲ ।
ସେ ମୁଣ୍ଡ ଭକ୍ଷି ଅସୁରୀ ତହୁଁ ପଳାଇଲା
ଉତ୍ତରକୁ ମୁଣ୍ଡ କରି ଗଜ ଶୋଇଥିଲା ।
ତାହା ମୁଣ୍ଡକୁ କୁଠାରେ ଶିବ ଛିଣ୍ଡାଇଲେ
କୁମର ବେକରେ ନେଇ ତାହା ଲଗାଇଲେ ।
ଗଣନାଥ ବୋଲି ନାମ ବିଶ୍ୱନାଥ ଦେଲେ
ତେଣୁ ସେହି ଗଣେଶ୍ୱର ନାମକୁ ବହିଲେ ।
କୁରୁପାଳ ମନ୍ତ୍ରୀ ଏହା ବିସ୍ତାରି କହିଲା
ମୁଢ଼ାସୁର ଶୁଣି ଅତି ସନ୍ତୋଷ ହୋଇଲା ।
ଗଣନାଥ ଛାମୁରେ ସେ ମିଳିଲାକ ଯାଇ
ଖଣ୍ଡେଦୂରୁ ଦେଖି ତାଙ୍କ ଚରଣେ ପଡ଼ଇ ।
ଶିରେ କରଦେଇ ଉଭା ହୋଇଣ ରହିଲା
ମନେ ମନେ ବହୁତର ସ୍ତୁତି ବଖାଣିଲା ।
ତାହାର ଭକତି ଦେଖି ଦେବ ଗଣନାଥ
ବୋଇଲେ ତୁ ବର ମାଗ ପ୍ରୋଢ଼ାସୁର ସୁତ ।
ଏହାଶୁଣି ମୁଢ଼ାସୁର ବୋଇଲା ବଚନ
ଯେବେ ଦୟାକଲ ମୋତେ ପାର୍ବତୀ ନନ୍ଦନ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଏ ତିନି ଭୁବନରେ
ଜିଣନ୍ତା ନୋହିବ କେହି ମୋତେ ସଂଗ୍ରାମରେ ।
ଦେବ ଦାନବ ମାନବ ଜିଣନ୍ତା ନୋହିବ
ଏହି ଶରୀର ମୋହର ଅକ୍ଷୟ ହୋଇବ ।
କାହାହସ୍ତେ ଶିରଚ୍ଛେଦ ନୋହିବ ମୋହର
ଗଣନାଥ ଦେବ ମୋତେ ଦ୍ୟନ୍ତୁ ଏହି ବର ।
ଅସ୍ତୁହେଉ ବୋଇଲେ ସେ ଦେବ ଗଣେଶ୍ୱର
ମୁଢ଼ାସୁର ନମେ ଗଣନାଥଙ୍କ ପୟର ।
ଉଠି କରପଦ୍ମ ଯୋଡ଼ି ପୁଣି ପଚାରଇ
କଥାଏ ମୁଁ କହିବଇଁ ଶୁଣ ହେ ଗୋସାଇଁ ।
ତୁମ୍ଭ ଆଜ୍ଞାରେ ଅମର ବର ମୁଁ ପାଇଲି
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ କାରଣ ହୋଇଲି ।
ଏବେ କଥା ଏକ ଦେବ ପଚାରିବି ମୁହିଁ
ଜନମ ହୋଇଲେ ମୃତ୍ୟୁଭୟ ତ ଅଛଇ ।
କେମନ୍ତ ପ୍ରକାରେ ମୋତେ ହୋଇବ ମରଣ
ସାବଧାନ କହିବା ତା ଗଉରୀ ନନ୍ଦନ ।
ମୁଢ଼ାସୁର ବାକ୍ୟେ ଗଣନାଥ ଯେ ହସିଲେ
ଭଲକଥା କହୁ ବୋଲି ସନ୍ତୋଷ ହୋଇଲେ ।
ଅସୁରକୁ ଚାହିଁ ଗଣନାଥ ଯେ କହନ୍ତି
ଶୁଣ ତୁ ଅସୁର କୁଳପତି ମହାମତି ।
ଯାହା ପଚାରିଲୁ ଏବେ କହିବା ବିଚାର
ଜନ୍ମ ହେଲେ ମରଣଟି ଅଛଇ ଆବର ।
ଯେମନ୍ତେ ମରିବୁ ତୁହି ତୋତେ କହିଦେବା
ଦୃଢ଼ କରି ମନେ ତାହା ଧରିଥିବୁ ବାବା ।
ଶିର ଯେ ହାଣିଲେ ତୋର ନୋହିବ ମରଣ
ହାଣୁଥିଲେ ଲାଗୁଥିବ ଶିର ପୁଣ ପୁଣ ।

ହସ୍ତଗୋଡ଼ ତୋର ଶିର କେବେ ନ ଛିଡ଼ିବ
ବୁକୁ ହୃଦୟରେ ତୋର ଶସ୍ତ୍ର ନ ଫୁଟିବ ।
ଏତେ କଥାରେ ତୋହର ନୋହିବ ମରଣ
ଅଗ୍ନିଶର ପେଷି ଯେବେ କରିବ ଦହନ ।
ଅଗ୍ନିଶରେ ଦହ୍ୟ ନିଶ୍ଚେ ହେବ ତୋର କାୟ
ଦୃଢ଼କରି ରଖିଥିବୁ ମନରେ ତୁ ରାୟ ।
ଯେ ଅଶ୍ୱିନୀକୁମାରଙ୍କ ହୋଇବ ଦନୁଜ
ସେହି ତୋତେ ଅଗ୍ନିଶର କରିବ ଦହିର୍ଯ୍ୟ ।
ଅଶ୍ୱିନୀକୁମାର ବୀର୍ଯ୍ୟେ ମାନବୀ ଗର୍ଭରେ
ଯେ ଜନମ ହୋଇଥିବ ତୋ ମୃତ ତା କରେ ।
ଏସନକ ବର ଯହୁଁ ଦେଲେ ଗଣେଶ୍ୱର
ଆନନ୍ଦେ ନିଜ ରାଜ୍ୟକୁ ଗଲାକ ଅସୁର ।
ନିର୍ଭୟ ହୋଇଣ ସେହୁ ରାଜ୍ୟ କରୁଥାଇ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ବୀର ନ ଗଣଇ ।
ପ୍ରତିଦିନ ନିଦ୍ରାରୁ ସେ ଉଠଇ ବହନ
ନିତ୍ୟକର୍ମ ବିଧିମାନ ସାରି ତତକ୍ଷଣ ।
ଗଣନାଥଙ୍କୁ ଯେ ସେହି ଦର୍ଶନ କରଇ
ଉଦକ ପ୍ରସାଦ ନିତ୍ୟ ସେଠାରେ ଭୁଞ୍ଜଇ ।
ଶତ ଅଷ୍ଟୋତ୍ତର ବାର କରଇ ପ୍ରଣାମ
ନବରକୁ ଆସଇ ସେ ପାଇଣ କଲ୍ୟାଣ ।
ଏରୂପେ ଗଣନାଥଙ୍କୁ କରୁଥାଇ ସେବା
ନ ଜାଣଇ ଗଣନାଥ ବିନୁ ଅନ୍ୟ ଦେବା ।
ନମସ୍ତେ କୌଶଲ୍ୟା ଦେବୀ ସୁତ ରଘୁବୀର
ଜାନକୀ ଛଳେ ଛେଦିଲ ରାଜା ଦଶଶିର ।
ଅସୁର ନିବାରଣେ ତୁ ବୀର ଚୂଡ଼ାମଣି
ନିରତେ ତୋହର ନାମ ବଖାଣନ୍ତି ମୁନି ।
ଦଶରଥ ନନ୍ଦନ ଯେ ନାମ ରାମଚନ୍ଦ୍ର
କବି ଶାରଳା ଦାସଙ୍କୁ ରଖ ଯେ ନରେନ୍ଦ୍ର ।
ତବ ଚରଣାରବିନ୍ଦେ ନିତ୍ୟେ ମୁହିଁ ଥାଇ
ଭବ ସାଗରୁ ଉଦ୍ଧାର ଜାନକୀର ସାଇଁ ।



## ମୁଡ଼ାସୁରର ସ୍ୱର୍ଗ ଆକ୍ରମଣ

ଏଥୁଅନ୍ତେ ସେ ବିଲଙ୍କା ଦେଶ ମହାରାୟ
ଅଗସ୍ତିଙ୍କ ଚରଣରେ କରଇ ବିନୟ ।
ଗଣେଶଙ୍କଠାରୁ ବର ପାଇ କିସ କଲା
ଏହା ସଂକ୍ଷେପିଣ ମୋତେ କହ ମୁନି ଭଲା ।
ଶୁଣ ଆହୋ ମନୁରାଜା ବଦନ୍ତି ଅଗସ୍ତି
ଏକମନ ହୋଇ ଶୁଣ ମଧ୍ୟପର୍ବ ରୀତି ।
ତୁ ଭାଗ୍ୟବନ୍ତ ଆବର ଅଟୁ ପୁଣ୍ୟଦେହୀ
ଯେଣୁ ନିରନ୍ତରେ କୃଷ୍ଣପାଦ ଥାଉ ଧ୍ୟାୟି ।
ଏହିପରି ଥୋକାଏ ଦିନ ବହିଗଲା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ବୀର ନ ଗଣିଲା ।
ମାର୍ଗଶିର ମାସରେ ଯେ ଶୁକ୍ଳ ତ୍ରୟୋଦଶୀ
ଆରର୍ଦ୍ଦା ନକ୍ଷତ୍ର ଚନ୍ଦ୍ର ମିଥୁନରେ ବସି ।
ବାଣିଜ୍ୟ ନାମେ କରଣ ବିଷ୍କୁମ୍ଭ ଯୋଗ
ଆସ୍ଥାନେ ବସି ପ୍ରତିଜ୍ଞା କରେ ବେଗ ବେଗ ।
ମନ୍ତ୍ରୀକି ଚାହିଁ ଅସୁର କହଇ ଉତ୍ତର
ଥାଟ ସଜ କର ମୋର ତୁ ହୋ ମନ୍ତ୍ରୀବର ।
ଏହିପରି ସ୍ୱର୍ଗପୁରେ ପଶି ବୁଝିବଇଁ
ସ୍ୱର୍ଗ ମଞ୍ଚ ପାତାଳରେ ମୋର ସମ ନାହିଁ ।
ଇନ୍ଦ୍ର ଦେବତାର ତୁଲେ କରିବି ସମର
ତେବେ ସିନା ପିତୃକାର୍ଯ୍ୟ ହୋଇବ ମୋହର ।
ସେ ଅସୁର ମୁଡ଼ାସୁର ଯହୁଁ ଆଜ୍ଞା ଦେଲା
ଶୁଣି କୁରୁପାଳ ମନ୍ତ୍ରୀ ବହନ ଚଳିଲା ।
ଥାଟ ସାଜ ସାଜ ବୋଲି ଦେଲା ସେ ଟମକ
ରାଜ୍ୟରେ ତାର ଉତ୍ସବ ହୋଇଲା ଅନେକ ।
ସାତଯୁଣ ଉତ୍ସବ ଯେ ପାଞ୍ଚଯୁଣ ପ୍ରତି
ସେ ନଗରେ ବିଂଶଲକ୍ଷ ଘର ଯେ ଅଛନ୍ତି ।
ଧନବନ୍ତ ପଣେ ଯେହ୍ନେ କୁବେର ସମାନ
ପ୍ରଜାମାନେ ସୁଖେ ତହିଁ ନେଉଛନ୍ତି ଦିନ ।
ଥାଟ ତାର କେତେ କେହି ନ ପାଇ କଳନା
ନିରନ୍ତରେ ବାଜୁଥାଇ ଅପୂର୍ବ ବାଜଣା ।
ତିନି ଲକ୍ଷ ହସ୍ତୀ ପାଞ୍ଚଲକ୍ଷ ଅଶ୍ୱ ଥାଇ
ଚଉଦ କୋଟି ଯେ ବଳ ତାହର ଅଛଇ ।
ରଥୀ ପଦାତି ତାହାର ଅଛଇ ଅପାର
ଏହିମତି ରାଜ୍ୟ କରେ ପ୍ରତାପୀ ଅସୁର ।
ଆଜ୍ଞାପାଇ ବେଗେ ତହୁଁ ମନ୍ତ୍ରୀବର ଗଲା
ଅସୁର ରାଜା ଛାମୁରେ ଯାଇ ଜଣାଇଲା ।
ବୋଲଇ ଶୁଣ ଅସୁରକୁଳ ନରସାଇଁ
ଆଜ୍ଞାଦେଲେ ଥାଟ ତୋର ଯିବେ ଆଗହୋଇ ।
ରାଜା ବୋଲେ କେତେ ସୈନ୍ୟ ସାଜିଲୁ ମୋହର
ହାତୀ ରଥୀ ସୈନ୍ୟ କେତେ ସାଜିଲୁ ଆବର ।
ମନ୍ତ୍ରୀ ବୋଇଲା ସେ ସାତ ସହସ୍ର ପଦାତି
ସଜ ହୋଇଲେ ତୋହର ଦଶଲକ୍ଷ ହାତୀ ।
ବାରକୋଟି ସୈନ୍ୟ ସଜହୋଇ ବାହାରିଲେ
ଆଗହୋଇ ସୈନ୍ୟ ଯିବେ ତୋର ଆଜ୍ଞା ଦେଲେ ।
ମନ୍ତ୍ରୀର ବଚନେ ମୁଡ଼ାସୁର ଯେ ବୋଲଇ
ଆଗୁଆଣି ଦଣ୍ଡ ତୁହି ଦିଅ ହୋ ଚଳାଇ ।
ଟମକ ନିଶାଣ ପୁଣି ଘୁମୁରା ବଜାଇ
ବାହାର ହୋଇଲେ ଥାଟ ଆଗଭର ହୋଇ ।
ବାଦ୍ୟ ଘୋର ନାଦେ ତାର କମ୍ପୁଛି ମେଦିନୀ
ଆକାଶ ଯେ ଉଚ୍ଛୁଳଇ ମୁଖରାବ ଧ୍ୱନି ।
ପ୍ରଳୟ ଜଳର ପ୍ରାୟ ସୈନ୍ୟ ଆସିବାର
ଭୟ କରି ବାସୁକି ଯେ ନ ଟେକଇ ଶିର ।
ଭୟେ ଉଦୟ ନୋହିଲେ ଦେବ ଦିବାକର
ମୁଖ ଶବଦେ କମ୍ପଇ ମେରୁର କନ୍ଦର ।

ଆଗ ହୋଇ ମନ୍ତ୍ରୀଥାଟ ଚଳାଇଣ ଗଲା
ଖଣ୍ଡେ ଦୂର ଯାଇ ସେହୁ ଥାଟ ରୁହାଇଲା ।
ପଛେ ମୁଢ଼ାସୁର ରଥ ଚଢ଼ିଣ ବାହାର
ଶସ୍ତ୍ରମାନ ହୋଇଅଛି ରଥର ଉପର ।
ଢୋଲ ମାଦଳ ଟମକ ନିଶାଣ ବଜାଇ
ସ୍ୱର୍ଗମର୍ତ୍ତ୍ୟ ପାତାଳ ସେ ନାଦେ ଉଛୁଳଇ ।
ଥାଟସୈନ୍ୟ ସଙ୍ଗେ ନେଇ ଚଳଇ ଅସୁର
ସ୍ୱର୍ଗପୁରଯାକ ଖୋଜି ନାଶିବଇଁ ସୁର ।
ଇନ୍ଦ୍ରର ଜାଣିବା ଆଜି କେଡ଼େ ବଡ଼ପଣ
ମୋହର ପିତାକୁ ସେହି ଦେଇଛି ମରଣ ।
ମୁଢ଼ାସୁର ଏହିମତେ ପ୍ରତିଜ୍ଞା କରଇ
ଦେବ ଗନ୍ଧର୍ବ କାହାକୁ ତିଳେ ନ ଡରଇ ।
ଧୀର ଧୀର କରି ସେହୁ ଚଳାଇଲା ଥାଟ
ମାର ମାର ଶବଦରେ କମ୍ପୁଅଛି ରାଷ୍ଟ୍ର ।
ଶୁଣ ଆହୋ ମନୁରାଜା ବିଲଙ୍କାର ରାୟ
ପବିତ୍ର ଆଖ୍ୟାନ ଏହି ସୁଧା ରସମୟ ।
ଯେତେବେଳେ ସେ ଅସୁର ସ୍ୱର୍ଗକୁ ବାହିଲା
ଅମର ମଣ୍ଡଳେ ମହା ଚମକ ପଡ଼ିଲା ।
ସଭା ମଣ୍ଡାଇଣ ବସିଥିଲେ ସୁରନାଥ
ଗନ୍ଧର୍ବଗଣ ଦେବତା ଅଛନ୍ତି ବହୁତ ।
ବ୍ରହ୍ମଋଷି ରାଜଋଷି ଅଛନ୍ତି ଆସ୍ଥାନେ
ଅଙ୍ଗାରପନ୍ନଗ ସୁରସେନ ଚିତ୍ରସେନେ ।
ଇନ୍ଦ୍ର ପୁତ୍ରମାନେ ସର୍ବେ ଅଛନ୍ତି ଯେ ବସି
ଅପ୍‌ସରୀ କିନ୍ନରୀଗଣ ନୃତ୍ୟରଙ୍ଗେ ରସି ।
ବିଶ୍ୱଦେବା ଅଷ୍ଟବସୁ ଅଶ୍ୱିନୀଙ୍କ ମୂଳେ
ପବନ ଯେ ଦିବାକର ଚନ୍ଦ୍ରଦେବ ମେଳେ ।
ବୃଷଭ ପିଠିରେ ଚଢ଼ି ଈଶ୍ୱର ମିଳିଲେ
ଆସ୍ଥାନ ଉପରେ ଯାଇ ସେହୁ ବିଜେ କଲେ ।
ହଂସ ପିଠିର ଉପରେ ଚଢ଼ି ବେଦବର
ସେ ଆସି ମିଳିଲେ ସେହି ଅମର ସଭାର ।
କାମଦେବ ସଜହୋଇ କରିଣ ଅଇଲେ
ବେଶ ଭୂଷଣ ହୋଇଣ ସଭାରେ ବସିଲେ ।
ସକଳ ଦେବତା ଯେଝାସ୍ଥାନେ ବସିକରି
ବାସବ ଦେବ ସଭାକୁ ଅଛନ୍ତି ଆବୋରି ।
ନାରଦ ଯେ ବୀଣାଯନ୍ତ୍ର ବଜାନ୍ତି ହରଷେ
ବୃହସ୍ପତି ବସିଛନ୍ତି ବାସବର ପାଶେ ।
ବ୍ରହ୍ମା ଈଶ୍ୱର ଏ ଦୁଇ ହେଲେ ଏକସ୍ଥାନ
କୁବେର ଯେ ରହିଛନ୍ତି ତାଙ୍କ ସନ୍ନିଧାନ ।
ଶଙ୍ଖନିଧି ପଦ୍ମନିଧି ବରୁଣ ଅଛନ୍ତି
ଏ ସମୟେ ମିଳିଲେ ଯେ ତହିଁ ବସୁମତୀ ।
ମୁଖରୁ ରୁଧିରର ତାର ବହେ ଝର ଝର
ଆସିଣ ମିଳିଲେ ଦେବସଭା ସନ୍ନିଧିର ।
ପାୟେ ପଡ଼ି ଶୋଇ ଯେ କହେ କରଯୋଡ଼ି
ସାବଧାନେ ଶୁଣ ତୁ ହୋ ଦେବ ବଜ୍ରଧାରୀ ।
ଅସୁରଙ୍କ ଭାରା ମୁହିଁ ନ ପାରିବି ସହି
ତୁମ୍ଭର ପୃଥିବୀ ତୁମ୍ଭେ ସମ୍ଭାଳହୋ ଯାଇ ।
ଏତେ କହି ବସୁମତୀ ମଉନ ହୋଇଲା
ବ୍ରହ୍ମାଙ୍କ ମୁଖକୁ ଇନ୍ଦ୍ର ଦେବତା ଚାହିଁଲା ।
ବୋଲଇ ହେ ବେଦବର ଅବଧାନ କର
ବସୁମତୀ କହଇ କି ଶୁଣ କୁଶଧର ।
ନ ସହଇ ଅସୁରଙ୍କ ଭାରା ମୋର ଶିର
ନିତିଦିନ ବଦନୁ ମୋ ବହଇ ରୁଧିର ।
ମୁଢ଼ାସୁର ବୋଲି ତହିଁ ଅସୁରେକ ଅଛି
ତା ପାଦ ପଡ଼ନ୍ତେ ମୁଖୁ ରୁଧିର ଗଳୁଛି ।
ବସୁମତୀ ମୁଖରୁ ସେ ଏହିପରି ଶୁଣି
ପୁଚ୍ଛନ୍ତି ବୃହସ୍ପତିଙ୍କି ଚାହିଁ କୁଶପାଣି ।
କହିବା ହେ ଗୁରୁ ସେହି କାହିଁର ଅସୁର
କାହାକୁଳେ ଜାତ ପୁଣି କାହାର କୁମର ।
ବେଦବ୍ରହ୍ମା ପଚାରନ୍ତେ ଗୁରୁ ଯେ କହନ୍ତି
ସାବଧାନ ହୋଇ ଶୁଣ ସାବିତ୍ରୀର ପତି ।
କଇଳାସ କନ୍ଦରର ଉତ୍ତର ପାରୁଶ
ଅଳମ୍ଭୁଷା ନାମେ ତହିଁ ଅଛି ଏକ ଦେଶ ।
ମୁଢ଼ାସୁର ବୋଲିଣ ସେ ରାଜ୍ୟକୁ ପାଳନ
ତାହାର ଭୟରେ ପୃଥ୍ୱୀ ଥରହର ହୋଇ ।
ତାହାର ତନୟ ଅଟେ ବୀର ପ୍ରୋଢ଼ାସୁର
ତାହାକୁ ମାଇଲେ ସ୍ୱର୍ଗପୁରେ ବଜ୍ରଧର ।
ମୁଢ଼ାସୁର ନାମେ ହେଲା ତାହାର ନନ୍ଦନ
ଗଣନାଥ ବରେ ସେହୁ ପ୍ରତାପୀ ରାଜନ ।
ତାହାର ଧାଡ଼ିରେ ଦେବେ ରହି ନ ପାରିବେ
ଗନ୍ଧର୍ବ ଦେବତାଗଣ ଅପସରି ଯିବେ ।
କାହାରି ହାତରେ ସେହୁ ନୋହିବ ବିନାଶ
ଦେବେ ଦାନବେ ସଂଗ୍ରାମେ ପାଇବେ ଯେ ଯଶ ।
ଇନ୍ଦ୍ର ବୋଲେ ତାହା ତୁଲେ ଯୁଦ୍ଧ କରିବଇଁ
ଅମରକୁ ନିଶ୍ଚେ ଯେବେ ଆସିବ ସେ ବାହି ।
ବୃହସ୍ପତି ବୋଇଲେ ତୁ ଶୁଣ ସୁରରାଣ
ତୋହରି ହସ୍ତରେ ତାର ନୋହିବ ମରଣ ।
ବୃହସ୍ପତି କହିବାର ବାସବ ଶୁଣିଲେ
ଯେ ଯାହାମତେ ମଉନେ ଯାଇଣ ରହିଲେ ।
ବସୁଧାକୁ ଚାହିଁ ବ୍ରହ୍ମା ତହିଁ ଆଜ୍ଞାଦେଲେ
ଥୋକାଏ କାଳକୁ ଥାଅ ପୁଣି ମହୀତଳେ ।
ଉପାୟ କରିଣ ତାକୁ କରିବା ବିନାଶ
ବର ଦେଇଛନ୍ତି ତାକୁ ପାର୍ବତୀଙ୍କ ଶିଷ୍ୟ ।
ବସୁମତୀକି ପ୍ରବୋଧ ଦେଇ ବେଦବର
ହଂସ ଚଢ଼ିଣ ସଭାରୁ ହୋଇଲେ ବାହାର ।
ଯଶୋବନ୍ତୀ ପୁରେ ଗଲେ ଚଳି କୁଶଧାରୀ
ଦେବତାଏ ଯେ ଯାହାର ପୁରେ ଯାଇ ମିଳି ।
ଈଶ୍ୱର ଯେ କଇଳାସ କନ୍ଦରକୁ ଗଲେ
ଦେବତାଙ୍କୁ ଘେନି ଇନ୍ଦ୍ରଦେବ ବର୍ତ୍ତିଥିଲେ ।

ଏମନ୍ତ ସମୟେ ଆସି ଦେବଙ୍କ ଡଗର
ସୁଧର୍ମା ସଭାରେ ମିଳି ବାସବ ଛାମୁର ।
ବୋଇଲା ଭୋ ସାବଧାନେ ଶୁଣ ନରସାଇଁ
ମୁଦ୍ଗାସୁର ସ୍ୱର୍ଗପୁରେ ଆସୁଅଛି ବାହି ।
ଥାଟ ସୈନ୍ୟ ତାର ଦେବ କଳନା ନ ଯାଇ
ହାତୀ ରଥ୍ ପଦାତି ଯେ ଅନେକ ଅଛଇ ।
ଏହିକ୍ଷଣି ଦେବ ସେହୁ ଅମରେ ପଶିବ
ସ୍ୱର୍ଗପୁରଯାକ ତୋର ଯୂର କରିନେବ ।
ଡଗର ମୁଖରୁ ଇନ୍ଦ୍ର ଏସନକ ଶୁଣି
ମନେ ମନେ ବଡ଼ ଚିନ୍ତା କରେ ବଜ୍ରପାଣି ।
ବୃହସ୍ପତି ବୋଲେ ସ୍ୱର୍ଗେ ରହି ନ ପାରିବା
ସ୍ୱର୍ଗ ଛାଡ଼ି ଚାଲ ଆମ୍ଭେ ପଳାଇଣ ଯିବା ।
ଭାଳୁ ଭାଳୁ ଆଉ ଏକ ଡଗର ଅଇଲା
ପାଏ ପଡ଼ି ଶୋଇ ସେହୁ କଥାଏ କହିଲା ।
ଶୁଣି ଦେବତାଏ ମନେ ମହାଭୟ କଲେ
ଘରଦ୍ୱାର ଛାଡ଼ି ସର୍ବେ ଡରେ ପଳାଇଲେ ।
ଯେ ଯହିଁ ପାଇଲେ ସେହୁ ତହିଁରେ ଲୁଚିଲେ
ଦେବ ଗନ୍ଧର୍ବଙ୍କୁ ଘେନି ଦେବ ଇନ୍ଦ୍ରଗଲେ ।
ଶଚୀ ସଙ୍ଗତେ କୁସୁମ ବନରେ ପଶଇ
ଅମର ମଣ୍ଡଳ ତୁଚ୍ଛା କରି ସୁରସାଇଁ ।
ଗୋପନ ହୋଇ ରହିଲେ ଯାଇ ଯେ ଯାହାରେ
ଅପସରୀଏ ଲୁଚିଲେ ନିମ୍ବ ବନିକାରେ ।
ସାବଧାନ ହୋଇ ଶୁଣ ବିଲଙ୍କାର ସାଇଁ
ଅମର ମଣ୍ଡଳରେ ଯେ ନ ରହିଲେ କେହି ।
ଥାଟ ଚଳାଇ ଅସୁରକୁଳ ମହାବୀର
ପ୍ରବେଶ ହୋଇଲା ଯାଇଁ ଅମର ନଗର ।
ଦେଖିଲା ସ୍ୱର୍ଗ ମଣ୍ଡଳେ କେହି ଲୋକ ନାହିଁ
ବୀରତୂର ବଜାଇଣ ସ୍ୱର୍ଗରେ ବୁଲଇ ।
ବୋଇଲା ସେ ସୁରଇନ୍ଦ୍ର ପଡ଼ିଲେ ଛାମୁରେ
ପ୍ରାଣ ପାଆନ୍ତା କି ଆଜ ମୋହର ହାତରେ ।
ଅମର ସଭାରେ ଯାଇଁ ଅସୁର ଉଠିଲା
ସ୍ୱର୍ଗର ମଣ୍ଡପମାନ ଭାଙ୍ଗି ପକାଇଲା ।
ବୋଇଲା ଇନ୍ଦ୍ରଭୁବନ ହୋଇଲା ମୋହର
ଦେବତାଏ ପଳାଇଣ ଗଲେ ଯେ ଯାହାର ।
ଅମର ସଭାରେ ବସି ପହିଳ କରିଲା
ନିଶେ ହାତଦେଇ ପୁଣ କ୍ରୋଧେ ଗରଜିଲା ।
କୃପାଳୁ ମନ୍ତ୍ରୀକି ଚାହିଁ ବୋଲେ କି କରିବା
ଥାଟ ଲେଉଟାଇ ଆମ୍ଭ ରାଜ୍ୟକୁ କି ଯିବା ।
ଭଲ ଭଲ ଦ୍ରବ୍ୟ ସ୍ୱର୍ଗେ ପାଇଲାକ ଯାହା
ଘେନିଣ ବାହାର ହେଲା ରକ୍ଷକୁଳ ନାହା ।
ବୀରତୂର ବଜାଇଣ ସ୍ୱର୍ଗୁ ବାହାରିଲା
ଯାଇଣ ଅସୁର ତାର ରଥରେ ବସିଲା ।
ସ୍ୱର୍ଗପୁର ଏବେ ମୋର ହୋଇଲାକ ଜୟ
ମନେ ବିଚାରି ଅସୁରକୁଳ ମହାଭୟ ।
ଅଳମ୍ବୁଷା ରାଜ୍ୟେ ଯାଇ ପ୍ରବେଶ ହୋଇଲା
ଗଣନାଥ ଦେବଙ୍କୁ ଯେ ବହୁ ସ୍ତୁତି କଲା ।
କୃପାଳୁ ମନ୍ତ୍ରୀକି ଡାକି ଗଉରବ କରି
ଶାଢ଼ୀ ପ୍ରସାଦ ବହୁତ ଦେଲେ ଦଣ୍ଡଧାରୀ ।
ସ୍ନାନ ନିତ୍ୟକର୍ମ ମାନ ସାରିଣ ଅସୁର
କଇଳାସ କନ୍ଦରକୁ ଗଲା ଖରତର ।
ଶତ ଅଷ୍ଟୋତ୍ତର ବାର ପ୍ରଣମି ହୋଇଲା
ଧୂପ ଦୀପ ଦେଇ ଗଣନାଥଙ୍କୁ ବନ୍ଦିଲା ।
ଶାଢ଼ୀ ପ୍ରସାଦ ପାଇ ସେ ଉଦକ ଭକ୍ଷଇ
ବହୁତ ସ୍ତୁତି କରିଣ ବାହୁଡ଼ି ଆସଇ ।
ଆପଣା ନବରେ ଆସି ହୋଇଲା ପ୍ରବେଶ
ଶାରଳା ଦାସକୁ ରଖ ତୁଳସୀ ବିଳାସ ।

—o—

## ମୁଦ୍ଗାସୁରର ଏକୋଇଶବାର ସ୍ୱର୍ଗ ଆକ୍ରମଣ ଓ ବିନାଶ

ଏଥୁଅନନ୍ତରେ ସେହି ବିଲଙ୍କ ନୃପତି
ଅଗସ୍ତିଙ୍କ ଚରଣରେ କରଇ ବିନତି ।
ସାବଧାନ ହୋଇ ଏବେ ଶୁଣିମା ଗୋସାଇଁ
ଦେବତାଏ କିସ କଲେ କହିବା ବୁଝାଇ ।
ରାଜାର ଭକତି ଘେନି କରି ମହାମୁନି
ବୋଇଲେ ଶୁଣ ତୁ ମଧ୍ୟପର୍ବର କାହାଣୀ ।
ଯେତେଥର ମୁଦ୍ଗାସୁର ସ୍ୱର୍ଗକୁ ବାହିଲା
ଦେବଗଣ ଘେନି ଇନ୍ଦ୍ର ପଳାଇଣ ଗଲା ।
ଅସୁର ବାହୁଡ଼ି ଯିବା ଦେବତା ଜାଣିଲେ
କ୍ରମେ କ୍ରମେ ଆସି ତହିଁ ସମସ୍ତେ ମିଳିଲେ ।
ଅମରମଣ୍ଡଳୁ ଇନ୍ଦ୍ର ପଳାଇଣ ଥିଲେ
ଶଚୀକି ଘେନି କୁସୁମବନୁ ବାହାରିଲେ ।
ଗନ୍ଧର୍ବ ଆଦି ଯେତେକ ସୁରଗଣ ଆସି
ସୁଧର୍ମା ସଭାରେ ସବୁ ଏକଠାବେ ବସି ।
ନବର ଭିତର ପୁରେ ଶଚୀଦେବୀ ଗଲେ
ନିମ୍ବ ବନିକାରୁ ଅପସରୀଏ ଅଇଲେ ।
ଇନ୍ଦ୍ର ବୃହସ୍ପତି ଆଦି ବସିଲେ ସଭାରେ
ନାରଖାର କରିଛନ୍ତି ପୁରକୁ ଅସୁରେ ।
ଭଲ ଭଲ ପଦାର୍ଥ ତ ନେଇଛନ୍ତି ହରି
ଦେଖି ମନେ ମହାଚିନ୍ତା କଲା ବଜ୍ରଧାରୀ ।
ଏଥୁଅନ୍ତେ ଦେବସଭା ତହୁଁ ମଉଳିଲା
ସୁରନାଥ ଦେବ ଅତି ବିକଳ ହୋଇଲା ।
ଥୋକାଏ ଦିନ ଏମନ୍ତ ତହିଁ ଗଲା ବହି
ନିଶ୍ଚିନ୍ତ ହୋଇ ଦେବତାମାନେ ତହିଁ ରହି ।
ଆସ୍ଥାନ ଉପରେ ଦିନେ ବସିଣ ଅସୁର
କୃପାଳୁ ମନ୍ତ୍ରୀକି ଡାକି ବସାଇ କତିର ।
ମକର ସଂକରାନ୍ତି ସେ ଦିନ ହୋଇଅଛି
ଆଜି ସ୍ୱର୍ଗପୁର ଯିବା ମନ୍ତ୍ରୀକି ଯେ ପୁଛି ।

ବୋଇଲା ଅସୁର ଆଟ ବେଗେ ସଜକର
ବାନ୍ଧି ଆଣିବା ନିଶ୍ଚୟ ଆଜ ସୁନାସୀର ।
ମନ୍ତ୍ରୀ ବୋଇଲା ଭୋ ଦେବ କିଛିଦିନ ଯାଉ
ଅମର ମଣ୍ଡଳେ ଇନ୍ଦ୍ର ନିଶ୍ଚିନ୍ତରେ ଥାଉ ।
ଗୋପନ ହୋଇ ଆମ୍ଭ ଯେ ସ୍ୱର୍ଗପୁରେ ଯିବା
ଦେବଗଣଙ୍କୁ ଜିଣିଣ ଇନ୍ଦ୍ରକୁ ବାନ୍ଧିବା ।
ମନ୍ତ୍ରୀ ବଚନ ରାଜା ସନମତ କଲା
ଅମର ମଣ୍ଡଳକୁ ସେ ସେଦିନ ନ ଗଲା ।
ମୃଗୟା ବିନୋଦେ ବନ ଯାଉଥାଏ ନିତି
ପାଦଘାତରେ ବସୁଧା କରେ ରକ୍ତବାନ୍ତି ।
ବଡ଼ଇ ଦୁର୍ଭାର ହେଲା ପ୍ରତାପୀ ଅସୁର
ଋଷିଗୁରୁ ବ୍ରାହ୍ମଣଙ୍କୁ କଲା ନାରଖାର ।
ଗଣନାଥ ପ୍ରସାଦେ ସେ କାହାକୁ ନଡ଼ରେ
ବାଦ ଆରମ୍ଭଇ ସେହି ଦେବଙ୍କ ସଙ୍ଗରେ ।
ତାର ଭୟେ ଦେବେ ସ୍ୱର୍ଗେ ନ ପାରନ୍ତି ରହି
ସ୍ୱର୍ଗକୁ ଆସଇ ପୁଣି ଯାଆନ୍ତି ପଳାଇ ।
ଏହିପରି ନିତ୍ୟେ ସ୍ୱର୍ଗେ ପଡୁଥାଇ ହୁରି
ପ୍ରତାପୀ ରାକ୍ଷସ ନିକି ଆସେ ସ୍ୱର୍ଗପୁରୀ ।
ନମସ୍ତେ ଶ୍ରୀଦୁର୍ଗା ମାଗୋ ସଙ୍କଟ ତାରିଣୀ
ବିପଦ ପଡ଼ିଲେ ରଖୁ ଶିବଙ୍କ ଘରଣୀ ।
ମହିଷାସୁର ମର୍ଦ୍ଦିନୀ ନାମ ତୋ ପାବର୍ତୀ
ସିଂହବାହିନୀ ଗୋ ଭ୍ରମୁ ତିନିପୁର ନିତି ।
କାତି ଖର୍ପର ଶୋଭଇ ମାତ ତୋର କର
ଶୁମ୍ଭ ନିଶୁମ୍ଭ ମାଇଲୁ ବିନ୍ଧ୍ୟ ପର୍ବତର ।
ବହିଲୁ ବିନ୍ଧ୍ୟବାସିନୀ ନାମ ମହାମାୟୀ
ମୁହିଁ ଅରକ୍ଷିତ ଜନ ଅଟେ ମୂର୍ଖବାଇ ।
ଦୁର୍ଗତି ତାରିଣୀ ବିନୁ ଅନ୍ୟ ନ ଜାଣଇ
କୃପାକର ମାଗୋ ମୋତେ ରକ୍ଷାକର ତୁହି ।
ତୋହର ଆଜ୍ଞାରେ ମୋତେ ହେଉଛି ସାଦୃଶ୍ୟ
ଜନ୍ମେ ଜନ୍ମେ ମୁଁ ଶାରଳା ଶ୍ରୀଚଣ୍ଡୀଙ୍କ ଦାସ ।
ଏଥୁଅନ୍ତରେ ବିଲଙ୍କ ଦେଶ ମହାରାଜା
ଅଗସ୍ତିଙ୍କ ଚରଣରେ କଲେ ଦିବ୍ୟପୂଜା ।
ବିସ୍ତାରିଣ କହ ମୁଢ଼ାସୁର କିସ କଲା
ଏହାଶୁଣି ମନ ମୋର ତୃପ୍ତହେଉ ଭଲା ।
କାହାର ହାତରେ ତାର ହୋଇବ ମରଣ
ସଂକ୍ଷେପି ଶୁଣିଲେ ଆତ୍ମା ତୋଷ ହେବ ଜାଣ ।
ରାଜା ପଚାରନ୍ତେ କହୁଛନ୍ତି ମହାମୁନି
ସାବଧାନ ହୋଇ ଶୁଣ ବିଲଙ୍କ ନୃମଣି ।
ସମୟ ସମ୍ଭାଳି ଦେବଗଣ ଯେ ରହିଲେ
ବୃହସ୍ପତି ଘେନି ଇନ୍ଦ୍ର ଦେବତା ଭାଳିଲେ ।
ବୃହସ୍ପତି ବୋଇଲେ ହେ ଶୁଣ ସୁରରାଣ
ଅସୁରର ଭୟ ହେଲା ଅମର ପୁରେଣ ।
ଇନ୍ଦ୍ର ବୃହସ୍ପତି ବେନି ବିଚାରନ୍ତି ବସି
ଏହି ସମୟେ ମିଳିଲେ ବେଦବ୍ରହ୍ମା ଆସି ।

ତାଙ୍କୁ ଦେଖି ଗୁରୁ ଇନ୍ଦ୍ର ଉଭୟ ଉଠିଲେ
ଶିରେ କରଦେଇ ବେନି ଉଭାଯେ ହୋଇଲେ ।
ଆଶିଷ ବହୁତ ତାଙ୍କୁ କଲେ ବେଦବର
ତିନିଜଣ ବସିଲେକ ଅମର ସଭାର ।
ଇନ୍ଦ୍ର ବୋଇଲେକ ଶୁଣ ପିତାମହ ତୁହି
ଅସୁର ଭୟେ ଏ ପୁରେ ନ ପାରିଲୁ ରହି ।
ଅମରପୁରେ ବାହିଲା ଦିନେ ମୁଢ଼ାସୁର
ପଳାଇ ଲୁଚିଲି ମୁହିଁ କୁସୁମ ବନର ।
ଯେ ଯହିଁ ପାରିଲେ ତହିଁ ଯାଇଣ ଲୁଚିଲେ
ଅମର ଭୁବନେ ଆସି ଅସୁରେ ପଶିଲେ ।
ଭଲ ଭଲ ଦ୍ରବ୍ୟମାନ ନେଲେ ଯୁର କରି
ଅମର ମଣ୍ଡଳଯାକ କଲେ ହୁରିଯୁରି ।
ମନ୍ତ୍ରୀର ପ୍ରବୋଧ ଘେନି ସେହୁ ବାହୁଡ଼ିଲା
ଅଳମ୍ବୁଷା ରାଜ୍ୟକୁ ସେ ବୋଲି ଘେନିଗଲା ।
ଏବେ ଅମର ମଣ୍ଡଳେ ଅସୁର ଆସଇ
ଡଗର ମୁଖୁ ବାରତା ପାଇଲଇଁ ମୁହିଁ ।
ବ୍ରହ୍ମା ପଚାରିଲେ ତୁମ୍ଭେ ଶୁଣ ସୁରଗୁରୁ
ଅସୁର ମରଣ କିମ୍ପା ବିଚାର ନ କରୁ ।
ଉପଦ୍ରବ କାଳ ତୋର ଇନ୍ଦ୍ର ହୋଇଅଛି
ଅମର ମଣ୍ଡଳୀ ଜିଣିପାରେ ସହସ୍ରାକ୍ଷି ।
ସ୍ୱରଗ ପୁରକୁ ଏକୋଇଶ ବେଳଯାଏ
ଅବଶ୍ୟ ଧାଡ଼ିଦେବସେ ଦୈତ୍ୟକୁଳ ରାୟେ ।
ବୃହସ୍ପତିଙ୍କ ମୁଖରୁ ଏସନକ ଶୁଣି
ଇନ୍ଦ୍ର ବେଦବର ବେନି ବିଚାରନ୍ତି ପୁଣି ।
କାହାର ହସ୍ତରେ ତାର ହୋଇବ ମରଣ
ବିଚାର କରିଣ ଏହା କହ ଗୁରୁ ପୁଣ ।
ଇନ୍ଦ୍ର ପଚାରନ୍ତେ ସୁରଗୁରୁ ଯେ ଦେଖିଲେ
ପୂର୍ବର ଭବିଷ୍ୟମାନ ଦେଖାଇ କହିଲେ ।
ବୋଇଲେ ହେ ସୁରରାୟେ କର ଅବଧାନ
ବୁଝାଇ କହଇ ତୋତେ ପୂର୍ବର ଆଖ୍ୟାନ ।
ମୁଢ଼ାସୁର ଦେବ ଗଣନାଥେ ପୂଜା କଲା
ମନାଇ ଅମରବର ତାହାଙ୍କୁ ମାଗିଲା ।
ପ୍ରସନ୍ନ ହୋଇଣ ଗଣନାଥେ ବର ଦେଲେ
ଅମର ତନୁ ତୁ ଧର ବୋଲିଣ ବୋଇଲେ ।
କାହାରି ହାତରେ ତୋର ନୋହିବ ମରଣ
ସମସ୍ତ ସୁର ଅସୁର ଜିଣିବୁ ରଣେଣ ।
ଆବର କଥାଏ ଶୁଣ ଦୈତ୍ୟ ଶିରୋମଣି
ମୁଣ୍ଡ କାଟିଲେ ତୁହି ଯେ ନ ମରିବୁ ପୁଣି ।
ବୁକୁ ଫୁଟିଲେ ଆବର ନୋହିବୁ ବିନାଶ
ଏମନ୍ତ ପ୍ରକାରେ ବର ଦେଲେ ହରଶିଷ୍ୟ ।
ବଜ୍ର ପ୍ରକାରେ ଶରୀର ଗୋଟି ତାର କଲେ
ଶୁଣ ଶୁକ୍ରରାୟେ ବୃହସ୍ପତି ଯେ କହିଲେ ।
ବର ପାଇଣ ଆବର ଦୈତ୍ୟ ମୂଢ଼ମତି
ଦଇବେ ଗଣନାଥଙ୍କୁ ପୁଛଇ ବିନତି ।

ଅମର କରି ରଖିଲେ ମୋହର ଯେ କାୟେ
କେମନ୍ତେ ମରିବି ତାର କହସି ଉପାୟେ ।
ଶୁଣିକରି ଗଣନାଥ ଆନନ୍ଦ ହସିଲେ
ପଞ୍ଚଭୂତ ଆତ୍ମାରେ ଏକଥା ବିଚାରିଲେ ।
ବୋଇଲେରେ ଭଲକଥା ପଚାରୁ ଅସୁର
ମୁକତି ଭାବ ଦେଖିଣ ଦେଲି ତୋତେ ବର ।
ମରଣ ଚରିତ ତୁ ଯେ ପଚାରିଲୁ ମୋତେ
ଏହିବେଳୁ କହିଥିବା ମରିବୁ କେମନ୍ତେ ।
ତହୁଁ ଅସୁରର ମୁଖ ଚାହିଁ ଗଣପତି
ବୋଇଲେ ଶୁଣ ତୋହର ମରଣର ରୀତି ।
ଅଶ୍ୱିନୀଙ୍କ ବୀର୍ଯ୍ୟେ ଯେଉଁ ପୁତ୍ର ଜନମିବ
ଅଗ୍ନି ଶରରେ ସେ ତୋତେ ଦହିର୍ଯ୍ୟ କରିବ ।
ଏମନ୍ତ ପ୍ରକାରେ ତୋର ହୋଇବ ମରଣ
ନୋହିଲେ ଆନରେ ତୋର ନୋହିବ ନାଶନ ।
ଏମନ୍ତ କଥା ଅସୁର ହେତୁକରି ମନେ
ସୁର ଅସୁରଙ୍କୁ ସେହୁ ନ ଗଣଇ ରଣେ ।
ବୃହସ୍ପତି କହିଲେ ଯହୁଁ ତତ୍ତ୍ୱବାଣୀ
ଇନ୍ଦ୍ର ରାଜା ଗୁରୁଙ୍କୁ ଯେ ପଚାରନ୍ତି ପୁଣି ।
ଅଶ୍ୱିନୀ କୁମାରଙ୍କର ପୁତ୍ର ଅଛି କାହିଁ
ବିଚାର କରିଣ ମୋତେ କହ ଗୁରୁ ତୁହି ।
ବୃହସ୍ପତି ବୋଇଲେକ ଅଛି ଏକ କଥା
ଏକମନେ ଶୁଣ ତୁହୋ ବାସବ ଦେବତା ।
ଏ ମର୍ତ୍ତ୍ୟ ମଣ୍ଡଳେ ପୁଣ ହସ୍ତିନା ନଗର
ତହିଁରେ ରାଜା ଅଟଇ ପଣ୍ଡୁ ନୃପବର ।
ସେହି ରାଜା ମୃଗୟାକୁ ଦିନେ ଯାଇଥିଲା
ଋଷି ମୃଗୁଣୀ ଶୃଙ୍ଗାର ନାରାଚ ବିନ୍ଧିଲା ।
ଋଷି ବୋଇଲେ ଯେବେ ତୁ ମାଇଲୁରେ ଶର
ତୋ ଶୃଙ୍ଗାରବେଳେ ପଡୁ ଶୂନ୍ୟ ଆସି ଶର ।
ଏହି ଶାପ ଯହୁଁ ତାଙ୍କୁ ଦେଲେ ବ୍ରହ୍ମଋଷି
ସେଦିନୁ ଶୃଙ୍ଗାର କରେନାହିଁ ନୃପବଂଶୀ ।
ତାହାଙ୍କ ପତ୍ନୀ ଅଟନ୍ତି କୁନ୍ତୀ ମହାଦେଈ
ବାଲ୍ୟକାଳେ ଦୁର୍ବାସାଙ୍କୁ ସେବା କରୁଥାଇ ।
ସେବାରେ ମନାଇଲେ ସେ ଦୁର୍ବାସା ଋଷିଙ୍କୁ
ମାଳା ଏକ ଦେଲେ ସେହୁ କୋଇନ୍ତା ଦେବୀଙ୍କୁ ।
ବୋଇଲେ ସ୍ତିରୀ ଇଚ୍ଛନ୍ତି ସୁନ୍ଦର ପୁରୁଷ
ଏ ମାଳା ଘେନି ଜପିଲେ ପାଇବୁ ଅବଶ୍ୟ ।
ସେହି ମାଳା ଘେନି କୁନ୍ତୀ ସୂର୍ଯ୍ୟଙ୍କୁ ପୂଜିଲେ
ସୁମରନ୍ତେ ଦିନକର ପ୍ରବେଶ ହୋଇଲେ ।
ମୁନିଙ୍କର ବର ପୁଣ ଅନ୍ୟଥା ନୋହିଲା
ଅନୂଢ଼ା ଥାଇଣ କୁନ୍ତୀ ଗର୍ଭବତୀ ହେଲା ।
ଲଜ୍ଜାରେ ସୁନ୍ଦରୀ ତହୁଁ ନ ଗଲା ଘରକୁ
କର୍ଣ୍ଣବାଟେ ଜନମ ସେ କଲା କୁମରକୁ ।

ସେ କୁମର ନାମ କର୍ଣ୍ଣବୀର ଯେ ଅଟଇ
ହସ୍ତିନାରେ ଦୁର୍ଯ୍ୟୋଧନ ରାଜାକୁ ଖଟଇ ।
ପଣ୍ଡୁରାଜା କୋଇନ୍ତାକୁ କାଳେ ହେଲେ ବିଭା
ଥୋକାଏକ ଦିନେ ପୁଣି ହେଲେ ନବଯୁବା ।
ଋଷିଙ୍କର ଶାପେ ପଣ୍ଡୁ ରମଣ ନ କଲେ
ମାଳା ଜପନ୍ତେ ଧରମ ଦେବତା ଅଇଲେ ।
ତାହାଙ୍କ ଶୃଙ୍ଗାରେ ଏକ ପୁତ୍ର ପ୍ରସବିଲା
ଯୁଧିଷ୍ଠିର ବୋଲି ତାହାଙ୍କର ନାମ ହେଲା ।
ପୁଣି କୁନ୍ତୀ ସୁମରଣା କଲେକ ମରୁତ
ଆସିଣ ମିଳିଲେ ତହୁଁ କଶ୍ୟପର ସୁତ ।
ତାହାଙ୍କ ଶୃଙ୍ଗାରେ ପୁତ୍ର ଜନମ ହୋଇଲା
ଭୀମସେନ ନାମଗୋଟି ତାହାର ରହିଲା ।
ପୁଣ ସୁରରାଏ ତୋତେ ସୁମରିଲେ ଦେବୀ
ତାହାଙ୍କ ସନ୍ନିଧେ ଯାଇ ହେଲେ ଜମ୍ଭଭେଦୀ ।
ତୁମ୍ଭ ଶୃଙ୍ଗାରେ ଯେବଣ ପୁତ୍ର ଉପୁଜିଲା
ଅର୍ଜ୍ଜୁନ ବୋଲିଣ ନାମ ତାହାର ହୋଇଲା ।
ପଣ୍ଡୁ କନିଷ୍ଠ ଭାରିଯା ନାମ ମାଦ୍ରୀଦେବୀ
ତାହାକୁ ଯେ ମାଳାଗୋଟି ଦେଲେ କୁନ୍ତି ଭାବି ।
ସେ ମାଳା ଘେନି ଅଶ୍ୱିନୀ କୁମାର ସ୍ମରିଲା
ତାହାର ଗର୍ଭୁ ପୁତ୍ରେକ ଜନମ ହୋଇଲା ।
ନକୁଳ ବୋଲିଣ ତାର ନାମଗୋଟି ଦେଲେ
ଇନ୍ଦ୍ରର ଆଗରେ ବୃହସ୍ପତି ଯେ କହିଲେ ।
ଦଇବ ବିଯୋଗରେ ସେ ପଣ୍ଡୁ ମହାରାୟେ
ମାଦ୍ରିର ସଙ୍ଗେ ଶୃଙ୍ଗାର ସେହୁ ଇଚ୍ଛା ଲୟେ ।
ବ୍ରହ୍ମଋଷିଙ୍କର ଶାପ ଅନ୍ୟଥା ନୋହିଲା
ଅକାଳ କାଣ୍ଡ ତାହାର ଉପରେ ପଡ଼ିଲା ।
ବାଣ ପଡ଼ନ୍ତେଣ ମାଦ୍ରୀ ପଣ୍ଡୁ ନାଶଗଲେ
ଆବର ସଇନ୍ଦୁ ପୁତ୍ର ଏକ ଉପୁଜିଲେ ।
ଦେଖି କୁନ୍ତୀଦେବୀ ପୁତ୍ରେ କୋଳ କରି ଧରି
ସହଦେବ ବୋଲି କରି ନାମ ତା ଉଚ୍ଚାରି ।
ଏହିମତେ ପଣ୍ଡୁଙ୍କର ପାଞ୍ଚପୁତ୍ର ହେଲେ
ଇନ୍ଦ୍ର ଆଗେ ବୃହସ୍ପତି ବିଚାର କହିଲେ ।
ନକୁଳ ନାମେ ଯେବଣ ପଣ୍ଡୁରାଜା ବଳା
ତାହାର ହାତେ ମରିବ ଦୈତ୍ୟ ମହାବଳା ।
ଏହା ଶୁଣି ଶକ୍ରରାୟ ହରଷ ହୋଇଲେ
ବୃହସ୍ପତିଙ୍କି ଯେ ବେଗେ କୋଳାଗ୍ରତ କଲେ ।
ବ୍ରହ୍ମା ଶୁଣି ଗୁରୁଙ୍କୁ ଯେ ପ୍ରଣାମ କରନ୍ତି
ନୋହିଲେ ତୁମ୍ଭଙ୍କୁ ଦେବଗୁରୁ କି ବୋଲନ୍ତି ।
ଏଥିଅନନ୍ତରେ ଯାହା ହେଲା ଶୁଣ ପୁଣି
ବ୍ରହ୍ମା ବୋଇଲେ ଭୋ ଶକ୍ର ଶୁଣ ଆମ୍ଭେ ବାଣୀ ।
ଦୂତ ପେଷିଣ ଅଣାଥ ସେ କୁମରମଣି
ଏତେ କହିଣ ଚଳିଗଲେ କୁଶପାଣି ।
ଦେବସଭା ମଉଳିଲା ସର୍ବଦେବ ଗଲେ
ନିଜପୁରେ ବୃହସ୍ପତି ପ୍ରବେଶ ହୋଇଲେ ।

ଇନ୍ଦ୍ରଦେବ ଶଚୀଦେବୀ ବିଜେ କରି ଗଲେ
ସକଳ ଚରିତ ଶଚୀ ଅଗ୍ରତେ କହିଲେ ।
ଏଥୁଅନନ୍ତରେ ତୁହୋ ଶୁଣ ମହାରାୟେ
ଶ୍ରୀ ମହାଭାରତ ଶୁଣି ପାପକର କ୍ଷୟେ ।
ନମସ୍ତେ ଶ୍ରୀ ନାରାୟଣ ଭକତ ବ୍ରତ୍ସଳ
ନ ସହୁ ତୁ ଭୃତ୍ୟ ଅଭିମାନ ଦାମୋଦର ।
ଚତୁର୍ଦ୍ଧାରୂପ ଦେବକୀ ଅଭିମାନ ଧାରୀ
ଶଙ୍ଖଚକ୍ର ଗଦାପଦ୍ମ ଧରି ଦଇତ୍ୟାରି ।
ଶ୍ରୀ ନୀଳକନ୍ଦରେ ପ୍ରଭୁ ବିଜେ କରିଅଛ
ଭକତ ଜନମାନଙ୍କୁ କରିବାକୁ ମୋକ୍ଷ ।
ଶ୍ରୀ ରଙ୍ଗାଅଧର ଦେବ ମନ୍ଦ ମନ୍ଦ ହସି
ଆରତଭଞ୍ଜନ ତୁମ୍ଭେ ଅଟ ବ୍ରହ୍ମରାଶି ।
କରୁଣା ଜଳଧିମୟ କୃପାମୟ ସିନ୍ଧୁ
ଦୀନଜନ ବାନ୍ଧବ ତୋ ନାମ ଦୀନବନ୍ଧୁ ।
ଶ୍ରୀ ଶାରଳା ଦାସ ଅରକ୍ଷିତ ହୀନଜନ
ନିରନ୍ତର ଭାବୁଅଛି ଶ୍ରୀରଙ୍ଗା ଚରଣ ।
ମନୁ ପଚାରଇ ପୁଣ ଚୈତନ୍ୟ କହଇ
ଏକମନ ହୋଇ ତୁହୋ ଶୁଣ ନରସାଇଁ ।
ଏଥୁଅନନ୍ତରେ ପୁଣି ସେ ମୁଢ଼ା ଅସୁର
ଆବର ସେ କିସ କଲା ଦୈତ୍ୟ ଦୁରାଚାର ।
ତାହାକଥା ମୋତେ କହ ଏବେ ମୁନିମଣି
ମୋର ମନ ସ୍ଥିରହେବ ତବ ମୁଖୁ ଶୁଣି ।
ଅଗସ୍ତି କହୁଅଛନ୍ତି ଶୁଣ ନାରାୟଣ
ମକର ସଙ୍କରାନ୍ତିରେ ବାହୁଡ଼ାଇ ସୈନ୍ୟ ।
ମନ୍ତ୍ରୀର ବଚନ ପକାଇଲା ନାହିଁ ତଳେ
ସେବା କରିଥାଇଁ ଗଣନାଥ ପାଦତଳେ ।
ମକର ମାସର ଊନବିଂଶ ଦିନ ଗଲା
ସେଦିନ ଅସୁର ମନ୍ତ୍ରୀବରେ ହକାରିଲା ।
ଇନ୍ଦ୍ରଦେବତା ତ ମୋତେ ଜାହିର ନୋହିଲା
ତୋ ପରା ମନ୍ତ୍ରୀ ଥାଇଣ ଏମନ୍ତ ହୋଇଲା ।
ଥାଟ ସଜକର ଏବେ ଯିବା ସ୍ୱର୍ଗପୁର
ଇନ୍ଦ୍ରକୁ ନ ଜିଣିଲେ ମୁଁ ନ ଆସିବି ଘର ।
କରପତ୍ର ଯୋଡ଼ିକରି ମନ୍ତ୍ରୀ ଯେ କହଇ
ସାବଧାନ ହୋଇ ଶୁଣ ଦୈତ୍ୟକୁଳ ସାଇଁ ।
ଯିବା ଏବେ ସ୍ୱର୍ଗପୁର କରିବା ସମର
ଅମର ମଣ୍ଡଳ କରିଦେବା ନାରଖାର ।
ମନ୍ତ୍ରୀର ବଚନେ ଦୈତ୍ୟ ହରଷ ହୋଇଲା
ତାହାଙ୍କୁ ଚାହିଁ ବହୁତ ପରଶଂସା କଲା ।
ମନ୍ତ୍ରୀବର ନମସ୍କାର କରିଣ ଚଳଇ
ସୈନ୍ୟ ସାଜିବା ପାଇଁ ସେ ଚମକ ଦିଅଇ ।
ହାତୀ ରଥ ପଦାତି ଯେ ସଜ କରାଇଲା
ଅଗଣିତ ସୈନ୍ୟ ତାହା ଗଣିତ ନୋହିଲା ।
ଥାଟ ସୈନ୍ୟ ସବୁ ସଜାଇଣ ମନ୍ତ୍ରୀବର
ରଥ ଚଢ଼ିଣ ନବରୁ ହୋଇଲା ବାହାର ।

ସୈନ୍ୟ ଆଗରେ ଚଳାଇ ପଛରେ ରହିଲା
ମୁଢ଼ାସୁର ରାଜାକୁ ସେ ଦରଶନ କଲା ।
ବୋଇଲା ଭୋ ଦେବ ସୈନ୍ୟ ଆଗେ ଚଳିଗଲେ
ଏବେ କିସ ବିଚାର ତୁ କର ନୃପବରେ ।
ମୁଢ଼ାସୁର ବୋଇଲା ମୁଁ ନ ରହିବି କ୍ଷଣେ
ରଥ ମୋର ସଜକର ଯିବି ଏହିକ୍ଷଣେ ।
ଚିତ୍ର ବିଚିତ୍ର କରିଣ ଆଣେ ରହୁବର
ସେହି ରଥେ ଯାଇ ବିଜେ କଲା ମୁଢ଼ାସୁର ।
ବୀର ତୂର ବଜାଇଣ ସୈନ୍ୟ ଶାଖା ଘେନି
ଆପଣେ ବାହାର ହେଲା ଦୈତ୍ୟକୁଳମଣି ।
ସେଦିନ ଶ୍ରବଣା ମକରରେ ଚନ୍ଦ୍ର ରହି
ପ୍ରୀତିନାମେ ଯୋଗ ତଇତିଳ କରଣ ହିଁ ।
ସେହିଦିନ ଧମ୍ବୁରକୁ ସାଧକ ଯେ ତାର
ଅମୃତ ଲଗନେ ଚଳିଯାଏ ମୁଢ଼ାସୁର ।
ଟମକର ଶବଦରେ ମେଦିନୀ କମ୍ପିଲା
ପାଦଭରେ ବସୁମତୀ ଦଲଦଲ ହେଲା ।
ପାଦରେଣୁ ଉଡ଼ନ୍ତେଣ ବ୍ୟୋମ ନ ଦିଶଇ
ମୁଖରାବ ଶବଦରେ କୁର୍ମ ଚମକଇ ।
ପୃଥ୍ୱୀ ଦେବୀ ଆକୁଳରେ ରୋଦନ କରଇ
ନ ପୁଣ ଅସୁର ମୋତେ ରସାତଳେ ନେଇ ।
ଏତେ ବୋଲି ବସୁମତୀ ନ ଟେକଇ ଶିର
ଭୟରେ ଶରୀର ତାର କମ୍ପେ ଥରହର ।
ସ୍ୱର୍ଗପୁରେ ଦେବତାଏ ବାରତା ପାଇଲେ
ଏଥକୁ ମୁଢ଼ା ଅସୁର ବାହୁଛି ବୋଇଲେ ।
ନାରଦଙ୍କୁ ହକାରିଣ ବୋଲେ ସୁରରାଣ
କେତେଦୂରେ ଦୈତ୍ୟ ଅଛି ଦେଖ ଯାଇ ପୁଣ ।
ଇନ୍ଦ୍ରଦେବଙ୍କ ବଚନେ ମୁନି ଚଳିଗଲେ
ଖଣ୍ଡେ ଦୂରେ ଅସୁରର ସୈନ୍ୟଙ୍କୁ ଦେଖିଲେ ।
ବୀଣା ବଜାଇ ଶ୍ରୀକରେ ନାରଦ ମହର୍ଷି
କରପତ୍ର ଯୋଡ଼ି ଦୈତ୍ୟ ପଚାରଇ ହସି ।
ଖଣ୍ଡେ ଦୂରେ ଥାଇ ତାଙ୍କୁ ଦେଖିଲା ଅସୁର
କୃପାଳୁ ମନ୍ତ୍ରୀକି କହେ ହକାରି ପାଶର ।
ବୀଣା ବଜାଇ ଆସଇ କେବଣ ସେ ଋଷି
ଏହାଙ୍କର ନାମ କିସ କହ ତୁ ବିଶେଷି ।
ମନ୍ତ୍ରୀ ବୋଲେ ଅଟନ୍ତି ଏ ବ୍ରହ୍ମାଙ୍କ କୁମର
ଯାଙ୍କୁ ଭକ୍ତି କଲେ ଯଶ ହୋଇବ ତୁମ୍ଭର ।
ଉଠିଣ ଏହାଙ୍କୁ ତୁହି ନମସ୍କାର କର
କଲ୍ୟାଣ କରନ୍ତୁ ତୋତେ ବ୍ରହ୍ମାଙ୍କ କୁମର ।
ମନ୍ତ୍ରୀ ବଚନେ ଅସୁର ରଥୁ ଓହ୍ଲାଇଲା
ନାରଦ ମୁନିଙ୍କ ପାଦେ ନମସ୍କାର କଲା ।
ନାରଦ ମୁନି ବୋଇଲେ ଉଠ ଉଠ ରାୟେ
ଆରୋଗ୍ୟ କଲ୍ୟାଣ ହେଉ ତୁମ୍ଭର ଯେ କାୟେ ।
କଲ୍ୟାଣ ବାଞ୍ଛିଲେ ଯହୁଁ ନାରଦ ମହର୍ଷି
କର ଯୋଡ଼ିଣ ଅସୁର ପଚାରଇ ହସି ।

ମୋତେ କି ସଙ୍ଖୋଳି ଅଇଲ ହେ ବ୍ରହ୍ମର୍ଷି
ସ୍ୱରୂପ କରିଣ ମୋତେ କହ ହେ ବିଶେଷି ।
ନାରଦ ବୋଇଲେ ମୋତେ ନ ଚିହ୍ନିକି ରାୟେ
ଆମ୍ଭେ ସେ କଲ୍ୟାଣ କରିଥାଉ ସର୍ବଦାୟେ ।
ମୁନିଙ୍କ ହସ୍ତ ଧରିଣ ରଥପରେ ନେଲା
ରଥର ଉପରେ ଦୈତ୍ୟ ଯାଇଣ ବସିଲା ।
ମୁନି ବୋଇଲେ ତୁ ଥାଟ ସୈନ୍ୟଙ୍କୁ ଚଳାଇ
କେଉଁ ଆଡ଼କୁ ଯାଉଛୁ ଦୈତ୍ୟକୁଳସାଇଁ ।
ନାରଦଙ୍କ ବାକ୍ୟ ଶୁଣି କହେ ଦୈତ୍ୟବୀର
ଥାଟ ଘେନି ସ୍ୱର୍ଗପୁରେ ଯାଏ ମୁନିବର ।
ଇନ୍ଦ୍ର ଦେବତାଙ୍କୁ ମୁହିଁ ଆଣିବଇଁ ଧରି
ସେହୁ ଅଟଇ ମୋହର ପିତାର ବଇରୀ ।
ଆଜ ମୁଁ ସୁରପତିକୁ କରିବି ଯେ ନାଶ
ଯେଣୁ ସେ ମୋର ପିତାକୁ କରିଛି ବିନାଶ ।
ନାରଦ ବୋଇଲେ ତୋତେ କହିବା କଥାଏ
ଏକମନେ ଶୁଣ ତୁହୋ ମୁଢ଼ାସୁର ରାୟେ ।
ତୁହି ଯେ ଆମ୍ଭର ବାବୁ ଅଟୁ ହିତକାରୀ
ଗୁପତେ କହିବା ତୋତେ କଥା ଦୁଇଚାରି ।
ମୁଢ଼ାସୁର ବୋଲେ ମୁନି ସାବଧାନ ହୁଅ
ତୁମ୍ଭେ ଯେ ସର୍ବଜ୍ଞ ଅଟ ଆହେ ମୁନିଦେହ ।
ନାରଦ ବୋଇଲେ ରହ ଥୋକାଏକ ଦିନ
ସମୟ ଦେଖିଣ ତୁହି କରିବୁ ସଂଗ୍ରାମ ।
ଏବେ ସମରେ ସ୍ୱରଗେ ତୋତେ ଯଶ ନାହିଁ
ଗୁପତେ ଏକଥା ତୋତେ କହିଲି ବୁଝାଇ ।
ନାରଦ ମୁନିଙ୍କ ବାକ୍ୟେ ଦୈତ୍ୟ ତୋଷ ହେଲା
ମନ୍ତ୍ରୀ ମୁଖ ଚାହିଁ ବୀର ବଚନ କହିଲା ।
ମନ୍ତ୍ରୀ ବୋଇଲା ନାରଦ ମୁନି ବୋଲ କର
ଥାଟ ଲେଉଟାଇ ଏବେ ଯାଅ ନିଜପୁର ।
ମନ୍ତ୍ରୀ ବୋଲେ ମୁନିଙ୍କର ବାକ୍ୟ ପ୍ରତେ ଗଲା
ସେହିଠାରୁ ଥାଟସୈନ୍ୟ ଘେନି ବାହୁଡ଼ିଲା ।
ଆପଣା ନବରେ ଯାଇ ହୋଇଲା ପ୍ରବେଶ
ନାରଦ ମୁନିଙ୍କ ବାକ୍ୟେ କଲାକ ବିଶ୍ୱାସ ।
ନାରଦ ବୋଇଲେ ଶୁଣ ଦୈତ୍ୟକୁଳ ସାଇଁ
ସ୍ୱର୍ଗପୁରେ ଯିବୁ ଏବେ ନ ପାରିବୁ ରହି ।
ଚଞ୍ଚଳ ପ୍ରକୃତି ଏକ ଠାବରେ ନ ରହୁ
ନିରନ୍ତର ଦେଶ ବିଦେଶରେ ଭ୍ରମୁଥାଉ ।
ଏତେ କହି ମୁନି ଚଳିଗଲେ ସ୍ୱର୍ଗପୁରେ
ମନଦଣ୍ଡ ଚଢ଼ି ବେଗେ ଗଲେ ଆକାଶରେ ।
ଅମର ମଣ୍ଡଳେ ତହୁଁ ମିଳିଲେକ ଯାଇ
ସଭା ମଣ୍ଡାଇଣ ବସିଅଛି ସୁରସାଇଁ ।
ଏମନ୍ତ ସମୟେ ମୁନି ସେଠାରେ ମିଳିଲେ
ନାରଦ ମୁନିଙ୍କୁ ଦେଖି ସମସ୍ତେ ଉଠିଲେ ।
ଶିରେ କରଦେଇ ତାଙ୍କୁ ବୋଲେ ସୁରରାଣ
କି ଚରିତ ଭିଆଇଛ ବ୍ରହ୍ମାଙ୍କ ନନ୍ଦନ ।
ନାରଦ ବୋଇଲେ ଆମ୍ଭେ ଯେତେବେଳେ ଗଲୁ
ଖଣ୍ଡେ ଦୂର ପଥ ଯାଇ ଅସୁର ଭେଟିଲୁ ।
ମନ୍ତ୍ରୀର ବଚନେ ଦୈତ୍ୟ ରଥୁ ଓହ୍ଲାଇଲା
ଆମ୍ଭର ଚରଣେ ଆସି ନମସ୍କାର କଲା ।
ଭକତି ଭାବ କରିଣ ବୋଲଇ ବଚନ
ବହୁ ପରକାରେ ଆମ୍ଭେ କରିଲୁ କଲ୍ୟାଣ ।
ଆମ୍ଭେ ପଚାରିଲୁ ତୁମ୍ଭେ କେଣେ ଯାଉଅଛ
ଅସୁର ବୋଲେ ଜିଣିବି ମୁହିଁ ସହସ୍ରାକ୍ଷ ।
ଏହା ଶୁଣିକରି ଆମ୍ଭେ କହିଲୁ ବଚନ
ଏହିକ୍ଷଣି ସ୍ୱରଗେ ତୁ ନ କର ଗମନ ।
ରିଷ୍ଟ ଗରିଷ୍ଠ ଅଟଇ ତୋହର ଯେ କାୟ
ଏହିକ୍ଷଣି ସ୍ୱର୍ଗେ ଗଲେ ନାହିଁ ତୋତେ ଜୟ ।
ଥୋକାଏ କାଳ ଏଠାରେ ଥାଅ ତୁହି ରହି
ପଛେ ସ୍ୱର୍ଗପୁର ଚଳିଯିବୁ ସୈନ୍ୟ ନେଇ ।
ଆମ୍ଭର କହନ୍ତେ ମନ୍ତ୍ରୀ ତାକୁ ତିଆରିଲା
ପ୍ରବୋଧ ବଚନ ଶୁଣି ଦୈତ୍ୟ ବାହୁଡ଼ିଲା ।
ନାରଦ ମୁନି ବଚନ ଇନ୍ଦ୍ରରାୟେ ଶୁଣି
ଆଚର ଯେ ଲେଉଟିବା ଶୁଣି ବଜ୍ରପାଣି ।
ସଭା ମଣ୍ଡାଇ ଆନନ୍ଦେ ବାହୁଡ଼ିଣ ଗଲେ
ଗନ୍ଧର୍ବ ଅପ୍‌ସରାଗଣ ନୃତ୍ୟ ଗୀତ କଲେ ।
ଅଗସ୍ତିଙ୍କ ବଚନରେ ବିଲଙ୍କ ନୃପତି
ବୋଇଲେ ମୁନିଙ୍କ ପାଦେ କରିଣ ଭକତି ।
ଏଥୁ ଉତ୍ତାରେ ଅସୁର କିସ ରୀତି କଲା
ଅଗସ୍ତି ବୋଲନ୍ତି ଶୁଣ ସେହି ଦିବ୍ୟଲୀଳା ।
ମକର କୁମ୍ଭ ଏ ଦୁଇମାସ ବହିଗଲା
ଚଇତ୍ର ମାସ ଆସିଣ ପ୍ରବେଶ ହୋଇଲା ।
ଏକଦିନେ ମୁଢ଼ାସୁର ଥାଟ ସୈନ୍ୟ ଘେନି
ମୃଗୟା ନିମନ୍ତେ କରେ ବନରେ ଭ୍ରମଣି ।
ମୃଗ ଶମ୍ବର ହରିଣ ବଧିଲା ଅପାର
ଆନନ୍ଦ ହୋଇ ବାହୁଡ଼ି ଆସି ନିଜପୁର ।
ଆରଦିନୁ ନିଶି ପ୍ରଭାତରୁ ସେ ଉଠିଣ
ନିତ୍ୟକର୍ମ ବିଧାନ ସେ ସାରି ତତକ୍ଷଣ ।
ମନ୍ତ୍ରୀକୁ ଘେନି କୈଳାସ କନ୍ଦରକୁ ଗଲା
ଗଣେଶ୍ୱର ଦେବଙ୍କୁ ସେ ନମସ୍କାର କଲା ।
ଶତ ଅଷ୍ଟଉତ୍ତର ସେ କଲା ଦଣ୍ଡବତ
ପୁଣ ପୁଣ ଚରଣରେ କରେ ପ୍ରଣିପାତ ।
ପ୍ରସନ୍ନ ହୋଇଣ ଗଣନାଥ ଆଜ୍ଞାଦେଲେ
କିସ ବର ତୁମ୍ଭେ ମାଗ ବୋଲିଣ କହିଲେ ।
ଅସୁର ବୋଇଲା ଶୁଣ ଦେବ ଗଣପତି
କେମନ୍ତେ ଜିଣିବି ମୁହିଁ ସ୍ୱର୍ଗ ସୁରପତି ।
ଏହା ଶୁଣି ବିଶ୍ୱନାଥ ତନୟ ହସିଲେ
ଇନ୍ଦ୍ରକୁ ଜିଣିବୁ ଏହିଥର ସ୍ୱର୍ଗେ ଗଲେ ।
ପ୍ରସାଦ ଘେନି ବାହୁଡ଼ି ଆସିଲା ଅସୁର
ପ୍ରବେଶ ହୋଇଲା ଆସି ଆପଣା ମନ୍ଦିର ।

ନାନାପ୍ରକାର ମର୍ଣୋହିମାନ ସେ ସାରିଲା
କୃପାଳୁ ମନ୍ତ୍ରୀକୁ ଏକାନ୍ତରେ ହକାରିଲା ।
ବୋଇଲା କରିବା ଏବେ କିସ ଯେ ଚରିତ
କହ ମନ୍ତ୍ରୀବର ଏହିକଥା ଆଦ୍ୟ ପ୍ରାନ୍ତ ।
ରାଜା ପଚାରନ୍ତେ ମନ୍ତ୍ରୀ ବହନ କହଇ
ଥାଟ ଘେନି ସ୍ୱର୍ଗପୁରେ ଯିବାକ ଗୋସାଇଁ ।
ସ୍ୱର୍ଗପୁରେ ପଶି ତହିଁ କରିବା ଅନର୍ଥ
ସମ୍ମୁଖେ ପଡ଼ିଲେ ମାରିବାକ ଶଚୀନାଥ ।
ଅପସରୀ କିନ୍ନରୀଙ୍କୁ ଆଣିବାକୁ ଧରି
ଗନ୍ଧର୍ବ ବିଦ୍ୟାଧରଙ୍କୁ ପକାଇବା ମାରି ।
ବିବିଧ ପଦାର୍ଥ ଯୂର କରିଣ ଆଣିବା
ଯେ ମୁଖେ ପଡ଼ିବ ଆମ୍ଭେ ତାହାକୁ ମାରିବା ।
ଏସନ ବାକ୍ୟ କହିଲା ଯହୁଁ ମନ୍ତ୍ରୀବର
ଅଙ୍ଗ ପୁଲକାଇଲା ସେ ଦୈତ୍ୟକୁଳ ବୀର ।
ଏସନ ବାକ୍ୟ କହିଣ ଶାଢ଼ୀ ବଳା ଦେଲା
ବେଗେ ସୈନ୍ୟ ସଜକର ବୋଲିଣ କହିଲା ।
ଶବଦ ଶୁଣି ସଇନ୍ୟ ହୋଇଲେ ବାହାର
ବୋଇଲେ ସ୍ୱର୍ଗକୁ ବିଜେ କରିବ ଅସୁର ।
ତିନିକ୍ଷଉଣୀ ପାଇକ ବେଗେ ସଜ ହୋଇ
ତିନିଲକ୍ଷ ଗଜ ଘେନି ସିଂହଦ୍ୱାରେ ରହି ।
ରଥ୍ ତିନିଶତ ପାଞ୍ଚଲକ୍ଷ ହୟବର
ସହସ୍ରେକ ଢୋଲ ବାଦ୍ୟ ବାଜେ ନିରନ୍ତର ।
କଡ଼ା ଘୁମୁରା ବାଜୁଛି ତହିଁ ଘନ ଘନ
ଦିବସେ ନ ଦିଶେ ଦିନକରର କିରଣ ।
ମଦିରାରସ ଖାଇଣ ଦୈତ୍ୟେ ମତୁଆଲ
ଦିବ୍ୟହୟ ଚଢ଼ି ସଜ ହେଲେ ମନ୍ତ୍ରୀବର ।
ହୟରୁ ଓହ୍ଲାଇ ମନ୍ତ୍ରୀ ନବରେ ପଶିଲା
ଅସୁର ରାଜାକୁ ଯାଇ ନିଉଛାଳି କଲା ।
ବୋଇଲା ହୋ ରଥେ ଯିବା ବସ ବେଗହୋଇ
ସଇନ୍ୟ ଅଛନ୍ତି ସିଂହଦ୍ୱାରେ ତୋର ରହି ।
ମନ୍ତ୍ରୀର ବଚନେ ମୁଢ଼ାଅସୁର ଉଠିଲା
ଶୁକ୍ଳବର୍ଣ୍ଣ ପାଗ ବୀର ମଥାରେ ବାନ୍ଧିଲା ।
ବୀରବେଶ ହୋଇ ସେହୁ ରଥରେ ବସଇ
ଅନୁକୂଳ ଘେନି ପୁଣି ବାହାର ହୁଅଇ ।
ଆକାଶ ମାର୍ଗକୁ ତାର ଶିଖା ଲାଗିଅଛି
ଝମକାଉଛି ଖଡ଼ଗ କରେ ଦୈତ୍ୟବସି ।
ଚଇତ୍ର କୃଷ୍ଣଅଷ୍ଟମୀ ତିଥ୍ ଗୁରୁବାର
ମାଘ ନକ୍ଷତ୍ର ଯେ ସିଂହଚନ୍ଦ୍ର ସେ ଦିନର ।
ବାଣିଜ୍ୟ ନାମେ କରଣ ବ୍ରହ୍ମ ନାମେ ଯୋଗ
ମୀନ ସଂକ୍ରାନ୍ତି ଯାଇ ତେରଦିନ ଭୋଗ ।
ମଙ୍ଗଳ ଅନୁକୂଳରେ ହୋଇଲେ ବାହାର
ସେଦିନ ତାହାକୁ ହୁଏ ସାଧକ ଯେ ତାର ।
ଆଗରେ ବାହାର ହୋଇଗଲେକ ଅସୁରେ
ହାତୀ ଘୋଡ଼ାମାନ ଗଲେ ତାହାଙ୍କ ପଛରେ ।

ଆଗୁଆଣି ଦଣ୍ଡ ମନ୍ତ୍ରୀ ଗଲାକ ଚଳାଇ
ଟମକ ନିଶାଣ ଆଦି ଘୋଷଣା ବଜାଇ ।
ରଥ ରଥ୍ ପଛିଆଣି ମଧ୍ୟେ ରାଜା ଅଛି
ପତାକା ଚିରାଳମାନ ଶୂନ୍ୟରେ ଉଡୁଛି ।
ପାଦଘାତର ରେଣୁରେ ଗଗନ ନ ଦିଶି
ମେଘ ଉହାଡ଼ିଲା ପ୍ରାୟ ଦିଶେ ରବି ଶଶୀ ।
ଥାଟ ଚଳାଇ ଅସୁର ବେଗେ ଚହୁଁ ଗଲା
ମେରୁ ବାୟବ୍ୟ କୋଣରେ ବାହାର ହୋଇଲା ।
ଡରେ ଥରହର ହୋଇ କମ୍ପଇ ମେଦିନୀ
ଶିର ଟେକି ନ ପାରଇ ବାସୁକି ଯେ ଫଣୀ ।
ନିକଟ ହୋଇଲା ଯହୁଁ ଅମର ମଣ୍ଡଳ
ଐରାବତ ଘେନି ଗୋପ୍ୟହେଲେ ଆଖଣ୍ଡଳ ।
ଅଙ୍ଗାର ପନ୍ନଗ ଚିତ୍ରସେନ ଦୁହେଁ ଥିଲେ
ଅସୁର ବଳ ସ୍ୱର୍ଗରେ ଝସାଇ ପଶିଲେ ।
ଅସୁର ଆସିବା କଥା ନ ଜାଣନ୍ତି ସେହି
ଦେବଗଣ ଘେନି ଇନ୍ଦ୍ର ଅଧାସ୍ୱର୍ଗେ ରହି ।
ଦକ୍ଷିଣ ସ୍ୱର୍ଗରେ ଲୁଚି ରହିଛି ଗୁପତେ
ଐରାବତ ହସ୍ତୀ ଅଛି ତାହାଙ୍କ ସଙ୍ଗତେ ।
ଏମନ୍ତକାଳେ ଅସୁର ରାଜା ଧାଡ଼ି ଦେଲା
ଅମରପୁର ମଣ୍ଡଳେ ଚମକ ପଡ଼ିଲା ।
ମାର ମାର ଧର ଧର ଶବଦ ଶୁଭଇ
ସପତସ୍ୱର୍ଗ ଭୟରେ ହାଲହୋଳି ହୋଇ ।
ଯେ ଯହିଁ ପାରିଲେ ତହିଁ ଦେବତା ଲୁଚିଲେ
ଅପସରୀ କିନ୍ନରୀଏ ପଳାଇଣ ଗଲେ ।
ଅପସରୀ ବିଦ୍ୟାଧରୀ ଘେନି ଶଚୀରାଣୀ
କୁଙ୍କୁମ ବନରେ ଯାଇ ଲୁଚିଲେ ତରୁଣୀ ।
ଅସୁର ବଳ ପେଶିଲେ ଯାଇ ସ୍ୱର୍ଗପୁରେ
ବାଟ ଓଗାଳିଲେ ଚିତ୍ରସେନ ଆଦି ବୀରେ ।
ଦେଖି ପଚାରିଲେ ତାଙ୍କୁ ସେ ଅସୁର ରାୟ
ତୁମ୍ଭେ ପରା ଅଟ ଆରେ ଇନ୍ଦ୍ରର ତନୟ ।
ଏମନ୍ତ ଶୁଣି କୁମରେ ମନେ କୋପ କଲେ
ଅନେକ ଶର ଅସୁର ଉପରେ ବିନ୍ଧିଲେ ।
ଅଙ୍ଗରେ ବାଜି ସମସ୍ତ ପଡ଼ଇ ଉପୁଡ଼ି
କୋପଭରେ ସେ ଅସୁର ଛାଡ଼େ ସିଂହରଡ଼ି ।
ଅନେକ ଶସ୍ତ୍ର ସେ ବୀର ଅସୁର ବିନ୍ଧିଲା
ଅଙ୍ଗାର ପନ୍ନଗ ଏକ ଶରେ ତା ଛେଦିଲା ।
ମନ୍ତ୍ର ପଢ଼ି ଏକ କୁନ୍ତ ବିନ୍ଧିଲା ଦୈତ୍ୟକୁ
ଉପୁଡ଼ି ପଡ଼ିଲା ମୁଖ କରିଣ ତଳକୁ ।
ଏମନ୍ତ ସମର ହେଲା ଜାଣି ଘଡ଼ିଏକ
ଦୁହେଁ ଦୁହିଁଙ୍କୁ ସେ ବାଣ ବିନ୍ଧନ୍ତେ ଅନେକ ।
ବେଳକୁ ବେଳ ସମର ହେଲା ଅଗୋଚର
ଅସୁରମାନେ ସ୍ୱର୍ଗକୁ କରୁଛନ୍ତି ଯୂର ।
ଯେ ଯାହା ଯହିଁ ପାଇଲେ ତାହା ସେ ଆଣିଲେ
ଅମର ମଣ୍ଡଳଯାକ ନାରଖାର କଲେ ।

ଅଙ୍ଗାରପନ୍ନଗ ସଙ୍ଗେ ସେହି ମୁଢ଼ାସୁର
ଘଡ଼ିଏକ ପରିଯନ୍ତେ କଲାକ ସମର ।
ଚିତ୍ରସେନ ସଙ୍ଗତରେ ଯୁଝେ ମନ୍ତ୍ରୀବର
ଶସ୍ତ୍ରକୁ ପ୍ରତିଶସ୍ତ୍ର ସେ କରଇ ପ୍ରହାର ।
ବିଜୁଳି ତେଜ ପରାୟ ନାରାଚ ଦିଶଇ
ଏମନ୍ତ ଦୁଇପ୍ରହର ସମର ହୁଅଇ ।
କେହି ଯେ କାହାକୁ ତହିଁ ଜିଣନ୍ତା ନୋହିଲା
ବିଚିତ୍ର ସମର ଦୁଇ ବୀରଙ୍କର ହେଲା ।
ଗଣପତିଙ୍କର ବରେ ବଳିଷ୍ଠ ଅସୁର
ମୁଢ଼ାସୁର ବସିଥିଲା ରଥର ଉପର ।
ଅଙ୍ଗାରପନ୍ନଗ ପରେ ଡେଇଁଣ ପଡ଼ିଲା
ବାମହସ୍ତେ ତାର ବାଳ ଦରାଣ୍ଡି ଧରିଲା ।
ବାଳକୁ ଧରି ରଥର ଉପରେ ଉଠଇ
ଅଖ ଦଣ୍ଡରେ ତାହାକୁ ନିବିଡ଼େ ବାନ୍ଧଇ ।
ସ୍ୱର୍ଗଜୟ ଟମକ ସେ ଦିଅଇ ଅସୁର
ଚିତ୍ରସେନ ସଙ୍ଗେ ଯୁଦ୍ଧ କରେ ମନ୍ତ୍ରୀବର ।
ଟମକ ଶୁଣି ତକ୍ଷଣେ ସମର ଛାଡ଼ିଲା
ଅପାର ଅସୁର ମଡ଼ା ବାଟରେ ଦେଖିଲା ।
ଅଙ୍ଗାରପନ୍ନଗ ବାଣେ ପଡ଼ିଲା ଅସୁର
ରକ୍ତନଦୀ ଗୋଟା ବହେ ଆକାଶ ଉପର ।
ଗୋଡ଼ାଇଣ ଚିତ୍ରସେନ ଅସୁର ନିବାରି
ଶକତି ଶର ମୁଦ୍‌ଗର କୋଟି କୋଟି ମାରି ।
ଅନେକ ଶିର ଭୂମିରେ ପଡ଼ିଲାକ ଛିଡ଼ି
ଅସୁର ମୁଣ୍ଡ ଭୂମିରେ ଯାଉଛନ୍ତି ଗଡ଼ି ।
ଦେଖିଣ ଅସୁର ରାୟ କ୍ରୋଧଭର ହେଲା
ଥାଟକୁ ଫେରାଅ ବୋଲି ମନ୍ତ୍ରୀକୁ କହିଲା ।
ରଥେ ଅଙ୍ଗାରପନ୍ନଗ ଦେଖି ମନ୍ତ୍ରୀବର
ଜୟହେଲା ବୋଲି ମନେ କରଇ ବିଚାର ।
ତେଣୁ ଥାଟ ନ ଫେରାଇ ଗଲା ଧୀରେ ଧୀରେ
ବାରତା ଦେଲେ ଡଗରେ ଇନ୍ଦ୍ରର ଛାମୁରେ ।
ସର୍ଗପୁରଯାକ ତୋର ହେଲା ହାଲ ହୋଲି
ଅଙ୍ଗାରପନ୍ନଗ ବାନ୍ଧିନେଲା ମହାବଳୀ ।
ଇନ୍ଦ୍ରରାୟେ ଏହା ଶୁଣି ବିକଳ ହୋଇଲେ
ବୃହସ୍ପତି ପାଶେ ରାଇ ବଚନ କହିଲେ ।
କି ବୁଦ୍ଧି କରିବା ଏବେ କହ ଦେବଗୁରୁ
ଅଙ୍ଗାର ପନ୍ନଗ ବାନ୍ଧିନେଲା କି ବିଚାରୁ ।
ବୃହସ୍ପତି ବୋଇଲେ ମୁଁ କହଇ କଥାଏ
ସାବଧାନ ହୋଇ ତୁ ହୋ ଶୁଣ ଦେବରାୟେ ।
ଉପାୟ କରି ଅଙ୍ଗାର ପନ୍ନଗ ଆଣିବା
ଅସୁର ମାରିବା କଥା ପରେ ବିଚାରିବା ।
ଆନ ଏଥେ ଅପଚୟ ପାଇଲା ଅସୁର
ଏ ଦିନଯାଏ ଅଜୟ ଥିଲାକ ଯେ ବୀର ।
ଏବେ ନାରଦ ମୁନିଙ୍କୁ ଆଣ ହକରାଇ
ଅଙ୍ଗାରପନ୍ନଗକୁ ସେ ଆଣନ୍ତୁ ଫେରାଇ ।

ବୃହସ୍ପତିଙ୍କ ବଚନ ବାସବ ଶୁଣିଲେ
ମାତଳିକୁ ଚାହିଁ ଇନ୍ଦ୍ର ବେଗେ ଆଜ୍ଞା ଦେଲେ ।
ନାରଦ ମୁନିଙ୍କୁ ତୁ ହୋ ଘେନି ଆସ ଯାଇ
ଏମନ୍ତ ଶୁଣି ମାତଳି ଗଲା ବେଗହୋଇ ।
ନାରଦଙ୍କ ଛାମୁରେ ସେ ମିଳିଲା ବହନ
ବୋଲେ ଇନ୍ଦ୍ର ଆଜ୍ଞାଦେଲେ ଚାଲ ଏହିକ୍ଷଣ ।
ମାତଳି ବଚନେ ମୁନି ନାରଦ ହସିଲେ
ଦେବରାଜା ଛାମୁରେ ସେ ଯାଇଣ ମିଳିଲେ ।
ବୋଇଲେ କାହିଁକି ଡାକୁ କହ ବଜ୍ରଧର
ଇନ୍ଦ୍ର ବୋଇଲେ ପୁତ୍ରକୁ ନେଲାକ ଅସୁର ।
ତୁମ୍ଭେଯାଇ ତାକୁ ବେଗେ କହି ଘେନି ଆସ
ତେବେ ସେ ମୋହର ହୃଦେ ପଶିବ ସାହସ ।
ତତକ୍ଷଣ ମନଦଣ୍ଡ ନାରଦ ଚଢ଼ିଲେ
ବୀଣା ବଜାଇ ଅସୁର ସନ୍ନିଧେ ମିଳିଲେ ।
ଅଧବାଟରେ ଯାଇଣ ଭେଟିଲେ ଅସୁର
ମୁନିଙ୍କୁ ଦେଖି ଅସୁର କଲା ନମସ୍କାର ।
କଲ୍ୟାଣ ବାଞ୍ଛା କରିଲେ ତହୁଁ ମୁନିମଣି
ବୋଇଲେ ଆରୋଗ୍ୟ ତୁହି ହୁଅ ନୃପମଣି ।
ଆବର ବୋଇଲେ ଯାହା କଲୁ ନୃପନାହା
ପୂରୁବେ ଏମନ୍ତ କେହୁ କରିନାହିଁ ଏହା ।
ଶୁଣିଣ ହସି ବୋଇଲା ଦୈତ୍ୟ ମହାବୀର
ଇନ୍ଦ୍ରର ମୃତ୍ୟୁ ରହିଲା ଏବେ ମୋର କର ।
ନାରଦ ବୋଇଲେ ଆମ୍ଭେ କଥାଏ ମାଗିବୁ
ସତ୍ୟମନେ ଯେବେ ରାଜା ଆମ୍ଭଙ୍କୁ ତୁ ଦେବୁ ।
ସତ୍ୟ କର ଯେବେ ତୁହି ନ କରିବୁ ନାହିଁ
ଆମ୍ଭର ଶରୀର ଛୁଇଁ କହ ନୃପସାଇଁ ।
ମୁନି ଅଙ୍ଗ ଛୁଇଁ କଲା ଅସୁର ନିୟମ
ମାଗ ମାଗ ମୁନିବର ଯାହା ତୁମ୍ଭ ମନ ।
ମୁନି ବୋଇଲେ ଅଙ୍ଗାର ପନ୍ନଗକୁ ଦେବୁ
ଏ ତୋର ପିତୃବଇରୀ ନୁହଇ ରେ ବାବୁ ।
ଏହାକୁ ମାଇଲେ ତୋର ହେବ କେଉଁ ଯଶ
ଆମ୍ଭ ବୋଲେ ଛାଡ଼ିଦିଅ ଯାଉ ନିଜ ଦେଶ ।
ଶୁଣିଣ ଅସୁର ରାଜା ମଉନ ହୋଇଲା
ପଞ୍ଚଭୂତ ଆତ୍ମାରେ ସେ ବସି ବିଚାରିଲା ।
ନ ଦେଲେ କୋପ କରିବ ଏହି ମୁନିବର
ଏତେ ବୋଲି ଫିଟାଇଲା ରଥରୁ କୁମର ।
ନାରଦ ମୁନିଙ୍କ ଶିରେ ସମର୍ପିଲା ନେଇ
ବୋଇଲା ପ୍ରାଣ ଏହାର ରଖିଲି ଗୋସାଇଁ ।
ନାରଦ ବୋଇଲେ ବାବୁ ଯାଉଅଛି ମୁହିଁ
ମୋର କଲ୍ୟାଣ ଆରୋଗ୍ୟ ହୋଇଥାଅ ତୁହି ।
କଲ୍ୟାଣ କରି ନାରଦ ହୋଇଲେ ବାହାର
ପ୍ରବେଶ ହୋଇଲେ ଯାଇ ଅମର ନଗର ।
ଅଙ୍ଗାରପନ୍ନଗକୁ ସେ ଇନ୍ଦ୍ର କୋଳେ ଦେଲେ
ନାରଦ ମୁନି ହରଷେ ବୀଣା ବଜାଇଲେ ।

ଶୁଣ ହେ ବିଳଙ୍କା ରାଜା କହନ୍ତି ଅଗସ୍ତି
ସାବଧାନ ହୋଇ ଶୁଣ ମୁଢ଼ାସୁର ରୀତି ।
ଥାଟ ଚଳାଇ ଅସୁର ବୀର ତହୁଁ ଗଲା
ଆପଣା ନଗରେ ଯାଇ ପ୍ରବେଶ ହୋଇଲା ।
ଥାଟ ସୈନ୍ୟକୁ ମେଲାଣି ଦେଲା ଅବଧାନ
ଯେ ଯାହାର ପୁରେ ଚଳି ଗଲେ ସର୍ବସୈନ୍ୟ ।
ମନ୍ତ୍ରୀମୁଖ ଚାହିଁ କହୁଅଛି ମୁଢ଼ାସୁର
କହ ମନ୍ତ୍ରୀ କରିବାକୁ କେବଣ ବିଚାର ।
ଏମନ୍ତ ବୋଲିଣ ମନ୍ତ୍ରୀବର ସଙ୍ଗେ ଘେନି
କପିଳାସ କନ୍ଦରକୁ ଗଲାକ ବହନି ।
ଗଣନାଥଙ୍କ ଚରଣେ ପୂଜାବିଧି କଲା
ଦରଶନ କରି ତହୁଁ ବେଗେ ବାହୁଡ଼ିଲା ।
ମନ୍ତ୍ରୀବରକୁ ମେଲାଣି ଦେଇ ନୃପବର
ପ୍ରବେଶ ହୋଇଲା ଯାଇ ନିଜ ଅନ୍ତଃପୁର ।
ଭୋଜନ ସାରିଣ ବେଗେ ଆଚମନ କଲା
ତାମ୍ବୁଳ ଲାଗି ହୋଇଣ ପଲ୍ୟଙ୍କେ ବସିଲା ।
ଯେ ଯାହାର ନିଜପୁରେ ଥାନ୍ତି ସର୍ବଜନ
ଏହିମତେ ବହିଗଲା ଥୋକାଏକ ଦିନ ।
ଏକଦିନେ ରାଜା ହକାରିଣ ମନ୍ତ୍ରୀବର
କି ବୁଦ୍ଧି କରିବା ବୋଲି କହେ ନୃପବର ।
ଏମନ୍ତ କହିଣ ମନ୍ତ୍ରୀବର ସଙ୍ଗେ ଘେନି
ରାଜା ବୋଲେ ମନ୍ତ୍ରୀବର ଶୁଣ ମୋର ବାଣୀ ।
ବିଂଶବାର ପରିଯନ୍ତେ ସ୍ୱର୍ଗେ ଧାଡ଼ିଦେଲି
ଇନ୍ଦ୍ର ଦେବତାର ଭେଟ ମୁହିଁ ନ ପାଇଲି ।
କେଉଁମତେ ଇନ୍ଦ୍ରଙ୍କୁ ଯେ ଭେଟିବଇଁ ମୁହିଁ
ତେବେ ସିନା ତାହାକୁ ମୁଁ ବନ୍ଦୀ କରିବଇଁ ।
ଶୁଣିଣ ମନ୍ତ୍ରୀ ତାହାର ବୋଲଇ ବଚନ
ସଇନ୍ୟ ସଜ କରିଣ ଯିବା ଆମ୍ଭେ ପୁଣ ।
ରାତ୍ର ଥାଉଁ ଥାଟ ଆମ୍ଭେ ଥିବାକ ଯେ ସଞ୍ଜି
କେହି କାହାରିକୁ ପୁଣ ନ କହିବେ କିଛି ।
ଗୁପତ ହୋଇଣ ଆମ୍ଭେ ଏହିଠାରୁ ଯିବା
ରାତ୍ର ଥାଉଁ ସ୍ୱର୍ଗପୁରେ ଯାଇଣ ମିଳିବା ।
ଆସ୍ଥାନ ନବରଯାକ ବେଢ଼ିବାକୁ ଯାଇ
ନିଃଶବ୍ଦେ ରହିବା ବାଜଣାଦି ନ ବଜାଇ ।
ଏହା ଶୁଣି ମୁଢ଼ାସୁର ମନକୁ ଅଇଲା
ଏହି କଥା କର ବୋଲି ଭିତରକୁ ଗଲା ।
ଏହା ଶୁଣି ମନ୍ତ୍ରୀବର ଗଲାକ ବହନ
ସିଂହଦ୍ୱାରେ ପ୍ରବେଶିଣ ବୋଇଲା ବଚନ ।
ଡଗରକୁ ପାଶକୁ ସେ ହକାରିଣ ନେଲା
ଗୁପତରେ ସୈନ୍ୟ ସଜ କର ଯା ବୋଇଲା ।
ଅମର ମଣ୍ଡଳ ହୋଇବ ଯେ କଟକାଇ
ସଜହୋଇ ସିଂହଦ୍ୱାରେ ସର୍ବେ ଥିଲେ ରହି ।
ଶୁଣି ଡଗର ସେଠାରୁ ବେଗେ ଚଳିଗଲା
ଦୋ ସାଧୁ ଆଗେ ବାରତା ଯାଇଣ କହିଲା ।

ସୈନ୍ୟ ସଜକରି ତୁମ୍ଭେ ବେଗହୋଇ ଆସ
ଏମନ୍ତେଣ ନରପତି ଦେଇଛି ଆଦେଶ ।
ଦୋସାଧୁ ବଚନ ଶୁଣି ଅସୁରଙ୍କ ବଳ
ସଜ ହୋଇଣ ବାହାର ହୋଇଲେ ସକଳ ।
ଅଶୀପଦ୍ମ ରଥ ଦ୍ୱାବିଂଶତି ପଦ୍ମ ହାତୀ
ପଞ୍ଚକୋଟି ଅଶ୍ୱ ଚୌଦକୋଟି ଯେ ପଦାତି ।
ଦଶକୋଟି ଯୋଦ୍ଧା ତହୁଁ ହୋଇଲେକ ସଜ
ସିଂହଦ୍ୱାରେ ଉଭାରିଲେ ହୋଇ ମହାତେଜ ।
ସୈନ୍ୟ ସଜାଇଣ ମନ୍ତ୍ରୀ ଭିତରକୁ ଗଲା
ମୁଢ଼ାସୁର ରାଜା ଆଗେ ବାରତା କହିଲା ।
ରାଜା ଆଗେ କହେ ମନ୍ତ୍ରୀ କରଯୋଡ଼ି କରି
ସିଂହଦ୍ୱାରେ ଥାଟ ବସି ରହିଲେ ଉଭାରି ।
ମନ୍ତ୍ରୀର ବଚନେ ରାଜା ଆନନ୍ଦ ହୋଇଲା
ରଥ ମୋର ସଜ କର ବୋଲି ଆଜ୍ଞାଦେଲା ।
ବୈଶାଖ ଶୁକ୍ଳପକ୍ଷ ଦଶମୀର ତିଥି
ବୃହସ୍ପତି ବାର ଚିତ୍ରା ନକ୍ଷତ୍ର ହୁଅନ୍ତି ।
ସମ୍ପଦ ତାର ଅମୃତ ଲଗ୍ନ ହୁଏ ବେଳ
ଏମନ୍ତ ସମୟେ ସ୍ୱର୍ଗେ ଚଳିଲେକ ବଳ ।
ଅମୃତ ବେଳରେ ଦୈତ୍ୟ ରଥରେ ବସିଲା
ଥାଟ ଚଳିଯାଅ ବୋଲି ପୁଣ ଆଜ୍ଞାଦେଲା ।
ଆଗୁଆଣି ଥାଟ ତାର ଗଲେ ତତପର
ପାଦଭରେ ବସୁନ୍ଧରା କମ୍ପେ ଥରହର ।
ଏହିମତେ ସୈନ୍ୟଗଣ ଚଳାଇଣ ଗଲେ
ଅଧା ସ୍ୱର୍ଗରେ ଯାଇଣ ପ୍ରବେଶ ହୋଇଲେ ।
ଦେବଙ୍କ ଡଗର ଏହା ଗୁପ୍ତେ ଦେଖୁଥିଲେ
ମୁଢ଼ାସୁର ବାହିବାର ସଭାରେ କହିଲେ ।
ଶୁଣ ସାବଧାନେ ପ୍ରଭୁ ଦେବ ପୁରନ୍ଦର
ଅମରପୁରେ ବାହିଲା ମୁଢ଼ାସୁର ବୀର ।
ବାଜଣା ତ ନ ବାଜଇ ତୁଣ୍ଡ ନ ଶୁଭଇ
ଗୁପତେ ଅମରପୁରେ ଆସୁଅଛି ବାହି ।
ଏହାଶୁଣି ଇନ୍ଦ୍ରଦେବ ମହାଭୟ କଲା
ବ୍ରହ୍ମା ବୃହସ୍ପତିଙ୍କୁ ସେ ଚାହିଁଣ ବୋଇଲା ।
ଭୋ ଗୁରୁ ଭୋ ପିତାମହ ଶୁଣ ସାବଧାନେ
ଏହା ନିଶ୍ଚେ ନାଶଗଲା ଅମର ଭୁବନେ ।
ଶୁଣି ପିତାମହ ଦେବ ଗୁରୁମୁଖ ଚାହିଁ
ମୁଢ଼ାସୁର ଚରିତ ତୁ ନ କହୁ କିମ୍ପାଇଁ ।
ଏହା ଶୁଣି ଦେବଗୁରୁ କହନ୍ତି ବଚନ
ଏହିଥର ମୁଢ଼ାସୁର ହୋଇବ ନିଧନ ।
ଏବେ ଦେବସୈନ୍ୟ ତୁମ୍ଭେ ବେଗେ ସଜ କର
ଆବର ହସ୍ତିନା ନଗ୍ରେ ପଠିଆଅ ଚାର ।
ନକୁଳ କୁମରକୁ ସେ ଘେନିଆସୁ ଯାଇ
ତେବେ ଅସୁର ମରିବ ମୁହିଁ କହିଲଇଁ ।
ଏହା ପୁଣି ଇନ୍ଦ୍ରରାୟେ ହରଷ ହୋଇଲା
ବଜ୍ର ଝମକାଇ ପରାକ୍ରମ ଦେଖାଇଲା ।

ବୋଇଲା ଦେବତାମାନେ ସାବଧାନେ ଶୁଣ
ଯେ ଯାହାର ସୈନ୍ୟ ଘେନିଆସ ହେ ବହନ ।
ଇନ୍ଦ୍ରରାଜା ଆଜ୍ଞାପାଇ ଦେବତା ସକଳ
ବିଳମ୍ବ ନ କରି ସର୍ବେ ସାଜିଲେକ ବଳ ।
ଚୌଷଠି କୋଟି ଗନ୍ଧର୍ବ ବଳ ସଙ୍ଗେ ଘେନି
ଅଙ୍ଗାରପନ୍ନଗ ମୂଳେ ଅଇଲେ ସଇନି ।
ତେତିଶକୋଟି ଦେବତା ବଳ ଯେ ଅଇଲେ
ହାହା ହୁହୁଙ୍କାର ମୂଳେ ଦଶ ଦିଗପାଳେ ।
ଚୌଦକୋଟି ଶିବଗଣ ଘେନି ତ୍ରିଲୋଚନ
ଆସିଣ ହୋଇଲେ ଇନ୍ଦ୍ରଦେବ ସନ୍ନିଧାନ ।
ମାତଳି ହକାରି ଆଜ୍ଞାଦେଲେ ପୁରନ୍ଦର
ବହନ ହୋଇଣ ଯାଅ ହସ୍ତିନା ନଗର ।
ଯୁଧିଷ୍ଠି ଦେବେ କହିବୁ ଆମ୍ଭର ଆଦେଶ
ବୋଲିବୁ ସ୍ୱର୍ଗ ବାହିଲା ସେ ମୂଢ଼ ରାକ୍ଷସ ।
ନକୁଳ କୁମର ଯେବେ ଆସିବ ଅମର
ତେବେ ଯେ ବଧ ହୋଇବ ସେ ମୁଢ଼ାଅସୁର ।
ଏତେ କହି ମାତଳିକି ପୁଷ୍ପଯାନ ଦେଇ
ହସ୍ତିନା ନଗରକୁ ଯେ ମାତଳି ଚଳଇ ।
ଏଥୁଅନ୍ତେ ଶୁଣ ହେ ବିଲଙ୍କେଶ ରାୟେ
ମୁଢ଼ାସୁର ଆସିକରି ଅଧାସ୍ୱର୍ଗେ ରହେ ।
ଗୁପତେ ଦେବସଭାକୁ ଡଗର ପଠାଇ
ଦେବତାଙ୍କର ଚରିତ ବୁଝିଆସ ଯାଇଁ ।
ଏମନ୍ତ ଡଗର ସ୍ୱର୍ଗପୁରେ ଯାଇଥିଲା
ଦେବତାଙ୍କ ସଜ ଦେଖି ବାରତା କହିଲା ।
ଏହା ଶୁଣିଣ ଅସୁର ଅଙ୍ଗ ପୁଲକାଇ
ଆଜ ଜାଣିମା ଗାରିମା ତୋର ସୁରସାଇଁ ।
ଯେବେ ସେ ଆଜ ଛାମୁରେ ପଡ଼ିବାକ ଭେଟ
ତେବେ ଜାଣିବାକ ଆମ୍ଭେ ଇନ୍ଦ୍ରର ମୁରାଟ ।
ଏତେ ବୋଲିକରି ରାୟେ ପରମାଣ ଦେଲା
ଅମର ମଣ୍ଡଳେ ଥାଟ ବେଢ଼ ହୋ ବୋଇଲା ।
ଆଦେଶ ପାଇ ଅସୁର ପବନହୁଁ ବେଗେ
ଯାଇ ମିଳିଲେ ଅମର ସ୍ୱରଗର ଲାଗେ ।
ଅମର ଆସ୍ଥାନେ ସର୍ବେ ମିଳିଲେକ ଯାଇ
ଏହା ଦେଖି ଶଚୀନାଥ ବିଚାର କରଇ ।
ମାର ମାର ଅସୁରକୁ ଉପ୍ରୋଧ ନ କର
ଅମରପୁର ମୋହର କରେ ନାରଖାର ।
ବେଳକୁ ବେଳ ଅସୁର ଧାଡ଼ି ଦେଉଅଛି
ଅନେକ ଉପଦ୍ରବ ସେ ଅମରେ କରୁଛି ।
ଶୁଣିଣ ଦେବତାଗଣ ଗରଜି ଉଠିଲେ
ବୀରବାଦ୍ୟ ଦୁନ୍ଦୁଭି ଯେ ବେଗେ ବଜାଇଲେ ।
ଦେବଗଣ ନାନାଶର କଲେକ ପ୍ରହାର
ଦେଖିଣ ଧାଇଁଲେ ବେଗେ ସର୍ବ ନିଶାଚର ।
ଛେଲ କୁନ୍ତ ଗଦା ଶକ୍ତି ଘେନି ପ୍ରହାରିଲେ
କୁନ୍ତ ଯଷ୍ଟ ଅସିବର ଘେନିଣ ମାଇଲେ ।

ଚିତ୍ରସେନ ଗନ୍ଧର୍ବ ଯେ ଧାଇଁ କୋପକରି
ଅସୁର ସୈନ୍ୟ ଉପରେ ସଶସ୍ତ୍ର ପ୍ରହାରି ।
ଧନୁରେ ନାରାଚ ସେହୁ ପୂରାଇଣ ଖରେ
କୋପେ ପ୍ରହାର କରଇ ଅସୁରଙ୍କ ପରେ ।
ଦେବଦଳ ସୈନ୍ୟ ସବୁ ପଡ଼ିଲେକ ମାଡ଼ି
କୋଟି କୋଟି ହୋଇ ଯୁଦ୍ଧେ ଦୈତ୍ୟବଳ ପଡ଼ି ।
ନିଶାକାଳରେ ସଂଗ୍ରାମ ହୋଇଲା ଅପାର
ରୁଧିର ନଦୀ ଗୋଟିଏ ବହେ ଖରତର ।
ଦେଖି ତାହା ମୁଢ଼ାସୁର କୋପଭର ହୋଇ
ତୀକ୍ଷ୍ଣମୁନା ନାରାଚକୁ ଗୁଣରେ ବସାଇ ।
ସୁରସେନ ଚିତ୍ରସେନ ଉପରେ ପେଷିଲା
ଶର ଯାଇଁ ଚିତ୍ରସେନ ଲଲାଟେ ବାଜିଲା ।
ରାଗେ ଥରହର ତାର କମ୍ପିଲା ଶରୀର
ମୋହେ ଚିତ୍ରସେନ ବୀର ପଡ଼ିଲା ଭୂମିର ।
ଏହା ଦେଖି ସଦାଶିବ କୋପେଣ ଧାଇଁଲେ
ରେରେକାର କରି ତାର ଆଗେ ଓଗାଳିଲେ ।
ମହାଘୋର ସଂଗ୍ରାମ ଯେ ହୋଇଲା ଅପାର
ରୁଧିର ନଦୀ ବହିଲା ହୋଇ ଖରତର ।
ମନୁ ପଚାରଇ ଏବେ ଚଇତନ୍ୟ ଶୁଣ
ମାତଳି ଯେ ଗଲା ପୁଣ ହସ୍ତିନା ଭୁବନ ।
ସେ ତହିଁ ଯାଇଣ ପୁଣି କିସ କୃତ୍ୟ କଲା
ଏକଥା ମୋତେ ବଡ଼ ହିଁ ସନ୍ଦେହ ଲାଗିଲା ।
ଏଥିର ଚରିତ ମୋତେ କହ ମୁନିବର
ତବ ମୁଖୁଁ ଶୁଣି ମୋର ଚିତ୍ତ ହେଉ ସ୍ଥିର ।
କହନ୍ତି ଅଗସ୍ତି ତୁହୋ ମନୁରାୟେ ଶୁଣ
ମାତଳି ପ୍ରବେଶ ହେଲା ହସ୍ତିନା ଭୁବନ ।
ଯୁଧିଷ୍ଠିରଙ୍କ ଆସ୍ଥାନେ ପ୍ରବେଶ ହୋଇଲା
ଦେଖିଣ ଯୁଧିଷ୍ଠି ଦେବ ଶିରେ କର ଦେଲା ।
ଭୋ ପିତା କହ ଏଠାକୁ କିମ୍ପାଇଁ ଆଗତ
କି ନିମନ୍ତେ ଆଗମନ କହ ସେ ଚରିତ ।
ଶୁଣିଣ ମାତଳି ତାକୁ କହଇ ବଚନ
ସାବଧାନ ହୋଇ ଶୁଣ ଧର୍ମଙ୍କ ନନ୍ଦନ ।
ମୁଢ଼ାସୁର ଦୈତ୍ୟ ସ୍ୱର୍ଗପୁରେ ଧାଡ଼ି ଦେଲା
ଏକବିଂଶ ବାର ସ୍ୱର୍ଗପୁର ଯୁର କଲା ।
ଗଜାନନ ପରସନ୍ନେ ଦେଇଛନ୍ତି ବର
କାହାରି ହାତରେ ବଧ ନୋହିବ ଅସୁର ।
ଦେବଗୁରୁ କହିଥିଲେ ଏଥିର ସନ୍ଦେଶ
ଅଶ୍ୱିନୀଙ୍କ ପୁତ୍ର ହସ୍ତେ ପ୍ରାଣେ ହେବ ନାଶ ।
ତେଣୁ ଏଥେ ପଠାଇଲେ ମୋତେ ସୁରସାଇଁ
ବହୁ ଉପଦ୍ରବ ସ୍ୱର୍ଗେ ଅସୁର କରଇ ।
ଶୁଣିଣ ଯୁଧିଷ୍ଠି ସହଦେବ ମୁଖ ଚାହିଁ
ଏଥିର ସନ୍ଦେସ ମୋତେ କହ ବାବୁ ତୁହି ।
ଏହା ଶୁଣି ମାଦ୍ରୀସୁତ କହଇ ବଚନ
ଏ କଥା ସ୍ୱରୂପ ଅଟେ ଧର୍ମଙ୍କ ନନ୍ଦନ ।

ଶୁଣିଣ ନୃପତି ନକୁଳର ମୁଖ ଚାହି
ଅମର ସ୍ୱର୍ଗକୁ ତୁହି ଯାଅ ବେଗହୋଇ ।
ଶୁଣିଣ ନକୁଳ ତାର ଶିରେ ହସ୍ତ ଦେଲା
ମାତଳି ସଙ୍ଗେ ପୁଷ୍ପକ ରଥେ ଆରୋହିଲା ।
ମାତଳିର ମୁଖ ଚାହିଁ ବୋଲଇ ନକୁଳ
ମୁଢ଼ାସୁର ପାଶକୁ ତୁ ବେଗକରି ଚାଲ ।
ମାତଳି ବୋଲଇ ଦେବ ଶୁଣିମା କୁମର
ଅମରପୁର ନାଶନ କରଇ ଅସୁର ।
ଶୁଣିଣ ନକୁଳ ବୀର କୋପଭର ହୋଇ
ଅସୁର ସନ୍ନିଧେ ରଥ ବାହା ବେଗହୋଇ ।
ଶୁଣିଣ ମାତଳି ରଥ ବାହେ ଘନ ଘନ
ପ୍ରବେଶ ହୋଇଲା ଯାଇ ସମରର ସ୍ଥାନ ।
ଦୈତ୍ୟକୁ ଦେଖି କୁମର କୋପଭର ହୋଇ
ଧନୁ ଧରିଣ ନାରାଚ ତହିଁରେ ବିନ୍ଧଇ ।
ନକୁଳର ଶରାଘାତେ ଦୈତ୍ୟ ସୈନ୍ୟବଳ
ବିମୁଖ ହୋଇଣ ସର୍ବେ ହୋଇଲେ ବିକଳ ।
ଦେଖି ମୁଢ଼ାସୁର ତାରମନେ ବିଚାରଇ
ଆଜଦିନ ବିପରୀତ ପରାୟେ ଦିଶଇ ।
କୃପାଳୁ ମନ୍ତ୍ରୀ ମୁଖକୁ ଚାହିଁଣ ବୋଇଲା
ଆଜଦିନ ଅପଚୟ ମୋତେ ତ ଦିଶିଲା ।
ଏହା ଶୁଣି ମନ୍ତ୍ରୀବର କହଇ ବଚନ
ସାବଧାନେ ଶୁଣ ତୁମ୍ଭେ ଅସୁର ରାଜନ ।
ନିଶ୍ଚେ ଅପଚୟ ଆଜ ହୋଇବାକ ତୋତେ
ତୋହର ମୃତ୍ୟୁ ଅଛଇ ଏହାର ଯେ ହସ୍ତେ ।
ଶୁଣିଣ ସେ ମୁଢ଼ାସୁର ବୋଲଇ ବଚନ
ମୋର ଦେଖୁଁଦେଖୁଁ ହସ୍ତେ ହେଉଅଛି ଶୂନ୍ୟ ।
ଏତେ ବୋଲି ମୁଢ଼ାସୁର ଉଠିଲାକ ଗର୍ଜି
ଦେବବଳ ସୈନ୍ୟ ସବୁ ପଳାଇଲେ ଭାଜି ।
ଘୋର ସମର କରିଲା ମୁଢ଼ାସୁର ବୀର
ଦେବଗଣ ଗନ୍ଧର୍ବ ଯେ ପଡ଼ିଲେ ଅପାର ।
କୁଢ଼ କୁଢ଼ ତହିଁ ହୋଇ ପଡ଼ିଲେକ ମଡ଼ା
ପଦାଘାତେ କରଦମ ହେଲା ବସୁନ୍ଧରା ।
ଘୋର ଯୁଦ୍ଧ ଦେଖିକରି ସୁରରାୟେ ଉଠି
ବଜ୍ର ଶକତି ଘେନିଣ ଦୈତ୍ୟ ଅଙ୍ଗେ ପିଟି ।
ବଜ୍ର ବାଜନ୍ତେ କିଛି ହିଁ ନୋହିଲା ଯେ ତାର
ଟହ ଟହ ହୋଇଣ ଯେ ହସିଲା ଅସୁର ।
ତା ଦେଖି ଇନ୍ଦ୍ର ଦେବର ନ ସ୍ଫୁରଇ କିଛି
ଅବହେଳା ହୋଇକରି ଦୈତ୍ୟ ରହିଅଛି ।
ଏହି ସମୟରେ ବୀର ନକୁଳ ଦେଖିଲା
ଆରେ ଆରେ ଦୈତ୍ୟ ବୋଲି କରି ଡାକ ଦେଲା ।
ଶତଧାର ଶକତି ଯେ ପ୍ରହାରିଲା ନେଇ
ଅସୁର ଅଙ୍ଗେ ପଡ଼ିଣ ଉପୁଡ଼ି ପଡ଼ଇ ।
ଦେଖି ଅସୁର ତୁମ୍ବର ଶକ୍ତି କରେ ଧରି
ନକୁଳ ଉପରକୁ ସେ ମାରେ କୋପ କରି ।

ତା ଦେଖି ନକୁଳବୀର ମୁଦ୍‌ଗର ମାଇଲା
ଅସୁରର ଶର ସବୁ ନିବାରଣ କଲା ।
ଏହିମତେ ପ୍ରହରେକ ଘୋର ଯୁଦ୍ଧ କଲେ
କେହି କାହାରିକୁ ତହିଁ ଜିଣି ନ ପାରିଲେ ।
ତା ଦେଖି ନକୁଳବୀର ମନେ ବିଚାରଇ
କେମନ୍ତେ ଏ ଅସୁରର ପ୍ରାଣ କ୍ଷୟ ହୋଇ ।
ନକୁଳ ବିଚାରିବାର ମାତଳି ଜାଣିଲା
ଅସୁର ମରଣ ଭେଦ ତା ଆଗେ କହିଲା ।
ଅଗ୍ନିଶର ଘେନି ପୋଡ଼ି ଦଇତ୍ୟର ବୁକୁ
ତେବେ ଏହି ଅସୁରର ହୋଇବ ଯେ ମୃତ୍ୟୁ ।
ଏହା ଶୁଣିଣ ନକୁଳ ଅଙ୍ଗ ପୁଲକାଇ
ଅଗ୍ନିଶର ଘେନି ବୀର ଗୁଣରେ ବସାଇ ।
ମନ୍ତ୍ରପଢ଼ି ସେହି ଶର ବେଗେ ଉଚ୍ଛୁଳିଲେ
ଆକର୍ଣ୍ଣ ଓଟାରି ସେହି ଶର ଛାଡ଼ିଦେଲେ ।
ବାଣ ଛାଡ଼ନ୍ତେ ଦିଶିଲା ସୂର୍ଯ୍ୟର କିରଣ
ଦଶଦିଗ ତାର ତେଜେ ହେଲା ଛନ୍ନ ଛନ୍ନ ।
ଏହା ଦେଖି ଦୈତ୍ୟମନ୍ତ୍ରୀ ରଥୁ ପଳାଇଲା
ନିଶ୍ଚୟ ଦୈତ୍ୟର ଏବେ ମରଣ ହୋଇଲା ।
ଗର୍ଜି ଉଠିଣ ନାରାଚ କଲା ଘୋର ରବ
ଯାଇଁ ପଡ଼ିଲା ଅସୁର କଟିର ଯେ ଭାଗ ।
କଟିଭାଗଠାରୁ ଦୈତ୍ୟ ବେନିଖଣ୍ଡ ହେଲା
ଶେଷରେ ଅସୁର ଦେହ ଦଗ୍ଧ ହୋଇଲା ।
ଏହାଦେଖି ଇନ୍ଦ୍ର ରାୟ ହରଷ ହୋଇଲେ
ଦେବଗଣଙ୍କୁ ଚାହିଁଣ ବେଗେ ଆଜ୍ଞାଦେଲେ ।
ମାରରେ ଅସୁର ସୈନ୍ୟ ନିସଂଶୟ କରି
ଏମନ୍ତ ବୋଲିଣ ଆଜ୍ଞାଦେଲେ ବଜ୍ରଧାରୀ ।
ଶୁଣିଣ ଦେବତାଗଣ ଧାଇଁଣ ପଡ଼ିଲେ
ଅସୁରଗଣମାନଙ୍କୁ ଗୋଡ଼ାଇ ମାରିଲେ ।
ପଳାଇଗଲେ ଅସୁର ଛିନ୍ନଛତ୍ର ହୋଇ
ଯେଣୁ ସେଠାରେ ଦେବଙ୍କୁ ଜିଣନ୍ତା କେ ନାହିଁ ।
ଅସୁର ସୈନ୍ୟ ନାଶିଲେ ସବୁ ଦେବତାଏ
ଅସୁର ସ୍ୱର୍ଗକୁ କଲେ ବାହୁଡ଼ା ବିଜୟେ ।
ଶୁଣିଲଟି ରାଜା ମୁଢ଼ା ବଧର ଚରିତ
କର୍ଣ୍ଣେ ଶୁଣି ଏବେ ତୋଷହେଲା କି ତୋ ଚିତ୍ତ ।
ଏହା ଯେ କର୍ଣ୍ଣେ ଶୁଣନ୍ତି ମୁଖେ ବଖାଣନ୍ତି
ସକଳ ପାପ ଭୟରୁ ସେହୁ ତରିଯାନ୍ତି ।
ଗୋହତ୍ୟା ସ୍ତ୍ରୀହତ୍ୟା ପୁଂସ ବ୍ରହ୍ମହତ୍ୟା ମାନ
ମାତୃହରଣରେ ଦୋଷ ପୁଣି ସୁରାପାନ ।
ଏସବୁ ପାତକମାନ ହୁଏ ବିମୋଚନ
ଏକମନେ ଶୁଣନ୍ତି ଯେ ଭାରତ ପୁରାଣ ।
ମୂର୍ଖ ଅପଣ୍ଡିତ ମୁଁ ଯେ ନ ଜାଣଇ କିଛି
ପ୍ରସନ୍ନେ ଅଭୟବର ଦେଲେ ସେ କାମାକ୍ଷୀ ।
ଶାରଳା ଦାସ କାମାକ୍ଷୀ ଚରଣର ଭୃତ୍ୟ
ଭବସାଗରୁ ଉଦ୍ଧର ଜଗତର ମାତ ।

ଝଙ୍କଡ଼ପୁର ବାସିନୀ ଶାରଳା ତୋ ନାମ
ଶୂଦ୍ରମୁନିର ତୋ ପାଦେ ସହସ୍ର ପ୍ରଣାମ ।
ନମୋ ନମୋ ନାରାୟଣ ଭକତବସ୍ଥଳ
ଭୃତ୍ୟ ଅଭିମାନ ସର୍ବସହ ଆଦିମୂଳ ।
ଶ୍ରୀନୀଳକନ୍ଦରେ ତୁମ୍ଭେ ବିଜେ କରିଅଛ
ମୋକ୍ଷ କରିବା ନିମନ୍ତେ ଯେତେକ ମେଳଛ ।
ଭକ୍ତ ନିସ୍ତାରଣ ଶଙ୍ଖ ଚକ୍ର ଅଛ ଧରି
ଚତୁର୍ଦ୍ଧାରୂପ ଧରୁ ତୁ ଦେବ ଦଇତ୍ୟାରି ।
ଶ୍ରୀରଙ୍ଗାଅଧରେ ତୁମ୍ଭେ ମନ୍ଦେ ମନ୍ଦେ ହସି
ଆରତ ଭଞ୍ଜନ ବାନା ବହ ବ୍ରହ୍ମରାଶି ।
କରୁଣା ଜଳଧି ତୁମ୍ଭ ନାମ କୃପାସିନ୍ଧୁ
ଦୀନଜନ ବାନ୍ଧବ ତୁ ଅଟୁ ଦୀନବନ୍ଧୁ !
ଅରକ୍ଷିତ ଏ ଶାରଳା ଦାସ ଦୀନଜନ
ନିରନ୍ତରେ ଭାବଇ ଯେ ଶ୍ରୀରଙ୍ଗାଚରଣ ।

—o—

## ନକୁଳର ଶରେ ପାଟ ବନ୍ଧନ

ଶୁଣ ହୋ ନକୁଳ ରାଜା ବଦନ୍ତି ଅଗସ୍ତି
ଏମନ୍ତେ ସେ ମୁଢ଼ାସୁର ହେଲା ବିନଶ୍ୟତି ।
ଅସୁର ମରିବା ଦେଖି ନାରଦ ଫେରିଲେ
ସୁଧର୍ମା ସଭାରେ ଯାଇ ବେଗରେ ମିଳିଲେ ।
ସଭା ମଣ୍ଡାଇ ବସିଛି ଅମରାଧ ନାଥ
ଏମନ୍ତ ବେଳେ ମିଳିଲେ ଯାଇ ତପୋବନ୍ତ ।
ନାରଦ ମୁନିଙ୍କୁ ଦେଖି ଉଠି ସୁରରାୟେ
କିସ ଚରିତ କରିଣ ଅଇଲ ମୁନି ହେ ।
ନାରଦ ବୋଇଲେ ବୀର ନକୁଳ କୁମାର
ଥାଟ ସଇନ୍ୟ ତାହାର ମାଇଲା ଅପାର ।
ଅଗ୍ନିଶର ମାରି ପୁଣି ତାହାକୁ ଦହିଲା
ତିନିଦିନେ ସେ ଅସୁର ବଳ ନାଶକଲା ।
ଶୁଣିଣ ସେ ଇନ୍ଦ୍ର ରାୟେ ଉଷତ ହୋଇଲେ
ନକୁଳ କୁମାରକୁ ସେ ବହୁ ପ୍ରଶଂସିଲେ ।
ସ୍ୱର୍ଗପୁରେ ଜୟ ଜୟ ଶୁଭିଲା ଶବଦ
ଅପସରୀ କିନ୍ନରୀଏ ବହୁତ ଆନନ୍ଦ ।
ପଦ୍ମପୁଷ୍ପ ପ୍ରାୟେ ଇନ୍ଦ୍ର ମୁଖ ବିକାଶଇ
ଅବସନ୍ତେ ଧୀରେ ଧୀରେ ବସନ୍ତ ବହଇ ।
ସଭା ମଣ୍ଡାଇଣ ଇନ୍ଦ୍ର ଦେବତା ବସିଲେ
ବୃହସ୍ପତିଙ୍କୁ ସେ ବେଗେ ହକାରି ଆଣିଲେ ।
ତେତିଶ କୋଟି ଦେବତା ଅଇଲେ ସମସ୍ତେ
ସୁଧର୍ମା ସଭାରେ ସର୍ବେ ବସିଲେ ଉଷତେ ।
ବୃଷଭ ବାହନେ ଶିବ ଡମ୍ବରୁ ବଜାଇ
କଇଳାସ କନ୍ଦରୁ ସେ ବିଜେ କଲେ ତହିଁ ।
ଯେ ଯାହାର ବିଧିମତେ ସଭାରେ ବସିଲେ
ଏମନ୍ତ ସମୟେ ତହିଁ ବିଧାତା ମିଳିଲେ ।

ହଂସରୁ ଓହ୍ଲାଇ ଗଲେ ଆସ୍ଥାନ ଉପର
ଦେଖି ଦେବତାଏ ଦେଲେ ଶିରେ ନେଇ କର ।
ବ୍ରହ୍ମା ପଚାରିଲେ ଇନ୍ଦ୍ରରାଜା ମୁଖ ଚାହିଁ
ଅସୁର ମଲାକି ସ୍ୱର୍ଗେ ତେଣୁ ଭୟ ନାହିଁ ।
ବେଦବର ମୁଖୁ ଶୁଣି ଏମନ୍ତ ବଚନ
ଆନନ୍ଦ ମନେ କହନ୍ତି ସହସ୍ର ଲୋଚନ ।
ଭୋ ଦେବ ହେ ପିତାମହ ଶୁଣ ମୋର ବାଣୀ
ନାଶିଲା ତାକୁ ନକୁଳ ବୀର ଚୂଡ଼ାମଣି ।
ଏମନ୍ତ ବଚନ ଯହୁଁ ବିଧାତା ଶୁଣିଲେ
ଧନ୍ୟରେ ନକୁଳ ବୋଲି ପରଶଂସା କଲେ ।
ବୃହସ୍ପତି ବୋଇଲେ ହେ ଶୁଣ ଇନ୍ଦ୍ରରାଣ
ନକୁଳ କୁମାରକୁ ତୁ ଡକାଇଣ ଆଣ ।
ଇନ୍ଦ୍ରରାୟ ବୋଇଲେ ଯେ ସୁରସେନ ଯାଉ
ଆମ୍ଭର ଆଜ୍ଞା ବୋଲି ସେ ନକୁଳକୁ କହୁ ।
ଆଜ୍ଞାପାଇ ସୁରସେନ ଗନ୍ଧର୍ବ ଚଳିଲା
ନକୁଳ ଛାମୁରେ ଯାଇ ପ୍ରବେଶ ହୋଇଲା ।
ବୋଇଲା ଇନ୍ଦ୍ରଙ୍କ ଆଜ୍ଞା ହୋଇଛି ତୁମ୍ଭଙ୍କୁ
ମୁହିଁ ଆସିଅଛି ଘେନି ଯିବାକୁ ସ୍ୱର୍ଗକୁ ।
ଏସନ ବାକ୍ୟ ଯେ ସୁରସେନ ମୁଖୁ ଶୁଣି
ମାତଳି ମୁଖକୁ ଚାହିଁ କହେ ବୀରମଣି ।
ଚାଲ ଆମ୍ଭେ ଯିବା ଆଗେ ଅସୁରର ପୁର
ଶଚୀ ଠାକୁରାଣୀ ଛନ୍ତି ଦାନବର ଘର ।
ରଥେ ବସି ତିନିଜଣ ଦୈତ୍ୟପୁରେ ଗଲେ
ଅଳମ୍ବୁଷା ରାଜ୍ୟେ ଯାଇ ପ୍ରବେଶ ହୋଇଲେ ।
ଆଗରେ ଯାଇ ଶଚୀଙ୍କି କହିଲା ଡଗର
ରଣେ ନକୁଳ କୁମାର ମାଇଲେ ଅସୁର ।
ତୁମ୍ଭଙ୍କୁ ସଙ୍ଗରେ ଘେନିଯିବେ ସ୍ୱର୍ଗପୁରେ
ଦର୍ଶନ କରିବେ ଦେବ ଇନ୍ଦ୍ରଙ୍କ ଛାମୁରେ ।
ଏହା ଶୁଣି ଇନ୍ଦ୍ର ପତ୍ନୀ ଉଷତ ହୋଇଲେ
ଧନ୍ୟରେ ନକୁଳ ବୋଲି ବହୁ ପ୍ରଶଂସିଲେ ।
ତୋର ହେତୁ ଆଜ ରକ୍ଷା ପାଇଲେ ଅମରେ
ମୋତେ ଉଦ୍ଧାରିଲୁ ଥିଲି ମୁଁ ଅସୁର ପୁରେ ।
ଏମନ୍ତ ବେଳେ ତିନିହେଁ ପ୍ରବେଶ ହୋଇଲେ
ଶଚୀ ଠାକୁରାଣୀଙ୍କୁ ସେ ଦରଶନ କଲେ ।
ପ୍ରାୟେ ପଡ଼ି ଶୋଇ ଶିରେ ଦୁଇକର ଦେଇ
ବୋଇଲେ ଗୋ ଅବଧାନ କର ମହାଦେଈ ।
ତୁମ୍ଭରି ଯୋଗୁ ଅସୁର ଆଜି ନାଶଗଲା
ତୁମ୍ଭରି ପ୍ରସାଦେ ମୋତେ ଯଶ ଉପୁଜିଲା ।
ଆସ ହୋ ମାତା ରଥରେ ବସ ବେଗହୋଇ
ଅମର ମଣ୍ଡଳେ ଭେଟ ହେବ ସୁରସାଇଁ ।
ନକୁଳ ବୋଲନ୍ତି ତୁମ୍ଭେ ସ୍ୱର୍ଗ ଠାକୁରାଣୀ
ତୋର ନ ଥିଲେ ଅଶୋଭା ସିନା ଗୋସାମଣି ।
ନକୁଳ ବାଣୀ ଶୁଣିଣ ଇନ୍ଦ୍ରାଣୀ ଉଠିଲେ
ଅପସରୀ କିନ୍ନରୀ ଘେନି ରଥରେ ବସିଲେ ।

ଚମକଇ ରଥ ବେଗେ ବାହାର ମାତଳି
ଧୀର ଧୀର ହୋଇ ରଥ ଯାଉଅଛି ଚଳି ।
ସ୍ୱର୍ଗପୁରେ ଯାଇ ସର୍ବେ ପ୍ରବେଶ ହୋଇଲେ
ଅମରାବତୀ ପୁରକୁ ଦେବେ ଚଳିଗଲେ ।
ଇନ୍ଦ୍ର ଭୁବନରେ ବିଜେ କଲେ ଠାକୁରାଣୀ
ଅପସରୀଏ ଖଟିଲେ ନିଜ ସେବା ଘେନି ।
ନକୁଳକୁ ସଙ୍ଗେ ଘେନି ମାତଳି ଚଳିଲା
ସୁଧର୍ମା ସଭାତଳରେ ଯାଇଣ ମିଳିଲା ।
ସାଷ୍ଟାଙ୍ଗେ ଶୁଣିଲେ ତହିଁ ମାଦ୍ରୀର କୁମର
ଇନ୍ଦ୍ର ବୋଇଲେ ଉଠ ହୋ ପାଣ୍ଡବ ସୁନ୍ଦର ।
ଇନ୍ଦ୍ର ବୋଲେ ଚିତ୍ରସେନ ନକୁଳେ ତୋଳିଲା
ପ୍ରଣମି ନକୁଳ ସଭାତଳରେ ରହିଲା ।
ଇନ୍ଦ୍ର ଆଜ୍ଞାଦେଲେ ନକୁଳକୁ ଘେନି ଆସ
ଧନ୍ୟରେ ନକୁଳ ତୁହି ପଣ୍ଡୁରାଜା ଶିଷ୍ୟ ।
ଆସ୍ଥାନର ଉପରକୁ ନକୁଳ ଉଠିଲେ
ଧାଇଁ ଅଶ୍ୱିନୀ କୁମାର ପୁତ୍ରେ କୋଳ କଲେ ।
ମୁଖରେ ଚୁମ୍ବନ ସେହୁ ଦିଅନ୍ତି ହରଷେ
ଶିର ଆଘ୍ରାଣିଣ ତାକୁ ବସାଇଣ ପାଶେ ।
କଲ୍ୟାଣ ବାଞ୍ଛା ସେ ବ୍ରାହ୍ମ ବୃହସ୍ପତି କଲେ
ସ୍ୱର୍ଗେ ଅଧିକାରୀ ହୁଅ ବୋଲିଣ ବୋଇଲେ ।
ଦେବତା ଗନ୍ଧର୍ବଗଣ ଯେତେ ଥିଲେ ବସି
ଯେ ଯାହାମନେ ନକୁଳେ କଲ୍ୟାଣ ଯେ ଭାଷି ।
ଦେବ ସଭାରେ ନକୁଳ ପ୍ରଶଂସା ପାଇଲେ
ଉଠି ଇନ୍ଦ୍ର ରାୟେ କୋଳ ନକୁଳକୁ କଲେ ।
ସ୍ୱର୍ଗପୁର ତୋରେ ରକ୍ଷା ହୋଇଲାରେ ବାବୁ
ଏ ଅମର ପୁର ତୋର ସରଜିଲା ସବୁ ।
ନକୁଳକୁ ଇନ୍ଦ୍ର ବହୁ ଗଉରବ କଲେ
ଆପଣା ଅଙ୍ଗଭୂଷଣ ନକୁଳକୁ ଦେଲେ ।
ଦେବାଙ୍ଗ ପାଟରୁ ଖଣ୍ଡେ ହସ୍ତରେ ଘେନିଲେ
ନକୁଳ ମଥାରେ ତାହା ସ୍ନେହରେ ବାନ୍ଧିଲେ ।
ଅଣାଇଲେ ଅଭିଷେକ ଦ୍ରବ୍ୟ ପୁରନ୍ଦର
ଅଭିଷେକ କରାନ୍ତି ଯେ ନକୁଳ କୁମାର ।
ଅତି ଉଲ୍ଲାସ ଚିତ୍ତରେ ଶଚୀ ଠାକୁରାଣୀ
ବେଗହୋଇ ଅଇଲେକ ସେ ଅର୍ଘ୍ୟଥାଳି ଘେନି ।
ନକୁଳକୁ ଦୀପାବଳୀ ଘେନି ବନ୍ଦାଇଲେ
ସ୍ୱର୍ଗପୁରେ ପାଟ ତୋର ରହିଲାକ ଭଲେ ।
ଯେତେବେଳେ ବନ୍ଦାପନା କଲେ ଠାକୁରାଣୀ
କଲ୍ୟାଣ କଲେ ଗନ୍ଧର୍ବ ଦେବାସୁର ମୁନି ।
କଲ୍ୟାଣ କରି ଆଶିଷ ଦେଲେ ବେଦବର
ଅମର ପୁରେ ତୋ ପାଟ ରହିଲା କୁମର ।
ଏମନ୍ତେ ସେ ଅଭିଷେକ ବିଧାନ ସାରିଲେ
ଅପସରୀ କିନ୍ନରୀଏ ଆନନ୍ଦେ ରଚିଲେ ।
ନାରଦ ବୀଣା ବଜାଇ ହରିଧ୍ୱନି କଲେ
ଅଶ୍ୱିନୀ କୁମାରେ ବହୁ କଲ୍ୟାଣ ବାଞ୍ଛିଲେ ।

ଶଚୀ ଠାକୁରାଣୀ ତହି ଗଲେ ଭିତରକୁ
ସ୍ୱର୍ଗପୁରେ ଗଉରବ କଲେ ନକୁଳକୁ ।
ଏଥିଅନନ୍ତରେ ଦେବସଭା ମଉଳିଲେ
ହଂସ ଚଢ଼ି ବ୍ରହ୍ମା ନିଜ ପୁରକୁ ଚଳିଲେ ।
ଈଶ୍ୱର ସେଠାରୁ ଗଲେ କୈଳାସ କନ୍ଦର
ଗନ୍ଧର୍ବ ଗଣ ଦେବତା ଗଲେ ନିଜପୁର ।
ନକୁଳ ଘେନି ଅଶ୍ୱିନୀ କୁମାର ଚଳିଲେ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲେ ।
ଇନ୍ଦ୍ର ବିଜେ କଲେ ଯାଇ ଅଳକା ପୁରକୁ
ଶଚୀ ମଥାପୋତି କଥା ନ କହେ ଇନ୍ଦ୍ରଙ୍କୁ ।
ଇନ୍ଦ୍ର ବୋଇଲେ କ୍ରୋଧ ନ କର ମହାମାୟୀ
ଏହିରୂପେ କେତେ ଦୁଃଖ ସ୍ୱର୍ଗେ ନ ପଡ଼ଇ ।
ଇନ୍ଦ୍ର କହନ୍ତେ ଇନ୍ଦ୍ରାଣୀ ସନ୍ତୋଷ ହୋଇଲେ
ନିଶ୍ଚିନ୍ତ ହୋଇଣ ସେହି ସ୍ୱର୍ଗରେ ରହିଲେ ।
କିଛିଦିନ ସ୍ୱର୍ଗପୁରେ ନକୁଳ ରହିଲା
ଯିବାପାଇଁକି କୁମର ଉଦବେଗ ହେଲା ।
ଇନ୍ଦ୍ର ଦେବତାଙ୍କୁ ଯାଇ କଲା ଦରଶନ
ଯିବି ହସ୍ତିନାକୁ ଆଜ୍ଞା ଦିଅ ମଘବାନ ।
ଶୁଣି ସହସ୍ର ଲୋଚନ ହସିଣ ବୋଇଲେ
ଯାଅ ବୋଲି ନକୁଳ କଲ୍ୟାଣ ବାଞ୍ଛିଲେ ।
ଚନ୍ଦ୍ରଶାଳା ପୁରରୁ ଯେ ନକୁଳ ଚଳଇ
ଶଚୀ ଦେବୀଙ୍କୁ ସେ ଯାଇ ମେଲାଣି ମାଗଇ ।
ଇନ୍ଦ୍ରାଣୀ ବୋଇଲେ ତୁହି ଯାଅ ବାବୁ ବେଗେ
କଲ୍ୟାଣ ହେଉ ତୁମ୍ଭର ଆମ୍ଭ ଅନୁରାଗେ ।
ବାସବ ବୋଇଲେ ତୁମ୍ଭେ ମାତଳି ହୋ ଯାଅ
ନକୁଳକୁ ହସ୍ତିନାରେ ନେଇ ଛାଡ଼ିଦିଅ ।
ଅଶ୍ୱିନୀ କୁମାର ପାଦ ବନ୍ଦି ବେଗ କରି
ରଥ ଉପରେ ବସିଲା ଯାଇଁ ମହାବଳୀ ।
ଧୀର ଧୀର ହୋଇ ରଥୁ ସ୍ୱର୍ଗ ଓହ୍ଲାଇଲା
ହସ୍ତିନା ନଗରେ ଯାଇ ପ୍ରବେଶ ହୋଇଲା ।
ରଥୁ ଓହ୍ଲାଇ ନକୁଳ ବହନ ଚଳିଲେ
ରଥ ଘେନିଣ ମାତଳି ସ୍ୱର୍ଗକୁ ଗମିଲେ ।
ନକୁଳ ବାରୁଣାବନ୍ତେ ମିଳିଲେକ ଯାଇ
ନମଇଁ ଯୁଧିଷ୍ଠି ଭୀମ ଅର୍ଜୁନକୁ ଚାହିଁ ।
ଯୁଧିଷ୍ଠି ବୋଇଲେ ଆରେ ଯାଅ ସହଦେବ
ନକୁଳକୁ ବହନ ତୁ ତୋଳିଦିଅ ଜବ ।
ସହଦେବ ନକୁଳର ଚରଣେ ନମଇଁ
ବୋଲେ ଠାକୁରଙ୍କ ଆଜ୍ଞା ଉଠ ବେଗହୋଇ ।
ତକ୍ଷଣେ ନକୁଳ ଉଠିକରି ଉଭାହେଲେ
କରଯୋଡ଼ି ଯୁଧିଷ୍ଠିଙ୍କ ନିକଟକୁ ଗଲେ ।
ବୋଇଲା କିସ ସ୍ୱର୍ଗରେ ହେଲାରେ ନକୁଳ
କର ଯୋଡ଼ିଣ କହଇ ମାଦ୍ରୀର ଦୁଲାଳ ।
ବୋଇଲା ଏଠାରୁ ମୁହିଁ ଯେତେବେଳେ ଗଲି
ବହୁତ ଯୁଦ୍ଧ ଅସୁର ସଙ୍ଗତରେ କଲି ।

ବାରକୋଟି ସୈନ୍ୟ ତାର ପକାଇଲି ହାଣି
ଅସୁରଙ୍କୁ ଦହିଲି ମୁଁ ଅଗ୍ନିଶର ଘେନି ।
ମନ୍ତ୍ରୀ ସହିତ ତାହାର ସବୁ ନାଶଗଲେ
ଯୁଧିଷ୍ଠିଦେବ ଶୁଣିଣ ଆନନ୍ଦିତ ହେଲେ ।
ଶଚୀଙ୍କୁ ଘେନିଣ ତହୁଁ ସ୍ୱର୍ଗକୁ ମୁଁ ଗଲି
ପୂଜାବିଧି ପାଇ ଶିରେ ପାଟେକ ବାନ୍ଧିଲି ।
ଇନ୍ଦ୍ର ଅଙ୍ଗରେ ଯେତେକ ଅଳଙ୍କାର ଥିଲା
ଗଉରବ କରି ଇନ୍ଦ୍ର ମୋ ଅଙ୍ଗେ ଖଞ୍ଜିଲା ।
ଦୀପାବଳୀ ଘେନି ଶଚୀଦେବୀ ବନ୍ଦାଇଲେ
ବ୍ରହ୍ମା ଯେ ତହିଁ ଅନେକ କଲ୍ୟାଣ ବାଞ୍ଛିଲେ ।
ନକୁଳ କହନ୍ତେ ସର୍ବେ ସନ୍ତୋଷ ହୁଅନ୍ତି
ଶୁଣ ହୋ ବିଲଙ୍କା ରାଜା ଅଗସ୍ତି କହନ୍ତି ।
ବୋଇଲେ ଶୁଣିଲ ମୁଢ଼ା ଅସୁରର ବଧ
ଯେହ୍ନେ ନକୁଳ ବାନ୍ଧିଲା ପାଟ ସ୍ୱର୍ଗ ମଧ୍ୟ ।
ବନ୍ଦଇ ଶ୍ରୀ ଜଗନ୍ନାଥ ବଇକୁଣ୍ଠ ବାସୀ
ବୌଦ୍ଧରୂପେ ନୀଳଗିରି ଶିଖେ ଅଛ ବସି ।
ବଳଭଦ୍ର ସୁଦର୍ଶନ ସୁଭଦ୍ରା ସହିତେ
ଚାରିରୂପେ ବିଜେ ନୀଳସୁନ୍ଦର ପର୍ବତେ ।
ଅବିଚାର ପାଟଣା ଯେ ବିଚାର ହିଁ ନାହିଁ
ସମସ୍ତେ ତ ଚତୁର୍ଭୁଜ ପ୍ରାୟ ଦେଖାଯାଇ ।
ସ୍ୱର୍ଗକୁ ନିଶୁଣି ଯେଉଁ ସ୍ଥାନ ପଡ଼ିଅଛି
ଚତୁର୍ଭୁଜ ସ୍ୱରୂପରେ ସ୍ୱର୍ଗକୁ ଧାମନ୍ତି ।
ଅପୂର୍ବ ସିଂହାସନକୁ ପଟାନ୍ତର ନାହିଁ
ଅଣାକାର ବ୍ରହ୍ମ ବିଜେ କରିଛନ୍ତି ଯହିଁ ।
ତହିଁର ମହିମା ଅନ୍ତ କେ କହି ପାରିବ
ନାମ ସୁମରନ୍ତେ ତାର ପାତକ ତୁଟିବ ।
ନିରନ୍ତର ସୁମରଇ ଶ୍ରୀରାମର ନାମ
ତବ ନାମେ ଭବଭୟ ହୋଇବ ଖଣ୍ଡନ ।
ତୁଳସୀର ବଲ୍ଲଭ ଶ୍ରୀଚରଣ ତଳରେ
ଶାରଳା ଦାସର ମଥା ଲୋଟେ ନିରନ୍ତରେ ।

—o—

## ଶାନ୍ତିପନି ମଠେ ହରି ବଳରାମଙ୍କର ବିଦ୍ୟାପଠନ ଓ ଯମପୁରୁ ଗୁରୁପୁତ୍ର ଆନୟନ

ବୈବସ୍ୱତ ମନୁ ପୁଚ୍ଛାକଲେ ଅଗସ୍ତିଙ୍କି
ଆହେ ମହାମୁନି ମୋତେ କହିବା ଏଣିକି ।
ଅଗସ୍ତି ବୋଇଲେ ହରି ଗଙ୍ଗା ଅବତାରେ
ଦ୍ୱାରକାରେ ଜନ୍ମିଲେ ସେ ଦେବକୀ ଉଦରେ ।
ରୋହିଣୀ ଉଦରେ ନୀଳାମ୍ବର ଉତପତ୍ତି
ବାଳୁତ ରୂପରେ କୃଷ୍ଣ ଗୋଗୋଷ୍ଠେ ରହନ୍ତି ।
ପାଠ ପଢ଼ିବାର ପାଇଁ ପ୍ରଭୁ ଯୋଗେଶ୍ୱର
ପ୍ରବେଶିଲେ ମହାପ୍ରଭୁ ଅବନ୍ତୀ ନଗର ।
ବିଦ୍ୟାବର ବ୍ରାହ୍ମଣ ଯେ ନାମ ଶାନ୍ତିପନ୍ତି
ପାଠ ପଢ଼ାନ୍ତି ସେ ଶିଷ୍ୟ ବାଳଖିଲ୍ୟା ଘେନି ।
ତାହାଙ୍କ ମନ୍ଦିରେ ପ୍ରବେଶିଲେ ବେନିଭାଇ
ନିରେଖିଣ ଶାନ୍ତିପନ୍ତି ବ୍ରାହ୍ମଣ ଯେ ଚାହିଁ ।
ପଚାରଇ ତୁମ୍ଭେମାନେ ଅଟ କେଉଁ ଦେଶୀ
ଦେବଙ୍କ କୁମର ପ୍ରାୟ ଅବୟବ ଦିଶି ।
ବିପ୍ରଙ୍କୁ ସମସ୍ୟା ତହୁଁ ଦେଲେ ନୀଳାମ୍ବର
ଆମ୍ଭ ଘର ଅଟେ ଦ୍ୱିଜ ଯେ ମଧୁବନର ।
ଆଦିଜନ୍ମ ଆମ୍ଭର ଯେ ଯଦୁବଂଶ ରଷି
ଯଦୁର ନନ୍ଦନ ବୋଲି ସୁରଥ ଯେ ଶିଷି ।
ସୁରଥ ନନ୍ଦନ ବଇଷ୍ଣବ ଚକ୍ରବର୍ତ୍ତୀ
ତାର ତୀଷ୍ଣ ବୋଲା ଅଟେ ତାଙ୍କର ସନ୍ତତି ।
ତାର ତୀଷ୍ଣ ପୁତ୍ର ନାମ ଅଟଇ ସୁଦେବ
ତାହାଙ୍କର ନନ୍ଦନ ଯେ ଅଟେ ବସୁଦେବ ।
ହେ ପଣ୍ଡିତ ତୁମ୍ଭେ ଏବେ ପଚାରିଲ ଯହିଁ
ବସୁଦେବ ନନ୍ଦନ ଯେ ଆମ୍ଭେ ବେନିଭାଇ ।
ନିରାକାର ବଂଶେ ଜାତ ଦେବକୀ ରୋହିଣୀ
ସୀତା ସାବିତ୍ରୀ ଅଟନ୍ତି ଯେ ବେନି ଭଉଣୀ ।
ଏହାଙ୍କର ଜନନୀ ଯେ କମଳା ପାର୍ବତୀ
ତାହାଙ୍କ ଉଦରୁ ପୁଣି ଆମ୍ଭେ ଉତପତ୍ତି ।
ପୃଥିବୀର ଭାରା ଆମ୍ଭେ ଉଦ୍ଧାରିବା ଅର୍ଥେ
ପୁନଃ ପୁନଃ ଉପୁଜୁ ଯେ ତାଙ୍କ ହୃଦଗତେ ।
ଗୋପାଳବେଶେ ଯେ ଥିଲୁ ମଥୁରା ଦେଶର
ଶାସ୍ତ୍ର ଯେ ସଙ୍ଗୀତ ନାହିଁ ଅପାଠ ସେ ପୁର ।
କୁସ୍ଥାନ ଦେଶରେ ବାସ କରିଲୁ କୁଜନେ
ବେଦବିଦ୍ୟା ନ ଶୁଣିଲୁ ଆମ୍ଭେ ବେନିକର୍ଣ୍ଣେ ।
ଧର ଧର ମାର ମାର ଛନ୍ଦମନ୍ଦ କଥା
କଡ଼ା ଘୁମୁରା ଖେଳରେ ନିରନ୍ତର ମତ୍ତା ।
କୁଜନ ହସ୍ତରେ ପଡ଼ିଲେଟି ପାଣିଦ୍ରବ୍ୟ
ମୂର୍ଖ ସ୍ୱଭାବରେ କାହିଁ ପଣ୍ଡିତ ସ୍ୱଭାବ ।
ଜ୍ଞାନ ଥାଉଁ ଥାଉଁ ମୂର୍ଖ ହେବୁ କେଉଁମତେ
ବୁଲି ଦେଶାନ୍ତରେ ପାଠ ପଢ଼ିବୁ ଆୟତ୍ତେ ।
ମାତାପିତା ତେଜିଲୁ ଯେ କୁଳଗୋତ୍ର ଗ୍ରାମ
ତୁମ୍ଭେ ଦୟାକଲେ ଆମ୍ଭେ ନେବୁ ଚାଟଧର୍ମ ।
ବିନୟ ଭାବରେ ଦେବ ବାକ୍ୟକୁ ଉଚ୍ଚାରୁ
ପୁଣି ଶାନ୍ତିହେବେ ତହୁଁ ଶାନ୍ତିପନି ଗୁରୁ ।
ପାଠ ପଢ଼ିବାକୁ ଯେବେ ଇଚ୍ଛାଟି ତୁମ୍ଭର
ଏହିଠାରେ ପାଠ ପଢ଼ ଯେତେଦିନ ପାର ।

ପଣ୍ଡିତେ ଯେ ଦୁଃଖୀ ଥିଲେ ପୁତ୍ରଙ୍କୁ ହରାଇ
ପୁତ୍ର କଷ୍ଟ ପାଶୋରିଲେ କୃଷ୍ଣମୁଖ ଚାହିଁ ।
ରହିଲେ ସେ ବେନିଭ୍ରାତେ ଶାନ୍ତିପନ୍ତି ଘର
ବିଦ୍ୟା ଆରୋପଣ କଲେ ସେହି ଦ୍ୱିଜବର ।
ପ୍ରଥମରେ ଲେଖିଦେଲେ ତାଙ୍କୁ ଯେ ଶ୍ରୀଫଳ
ନିଃଶ୍ୱାସକେ ଲେଖିଲେ ନା ଦେବକୀର ବାଳ ।
ଲେଖନ୍ତେ ସେ ଜାଣିଲେ ଯେ କୃଷ୍ଣ କଳେବର
ବାକ୍ୟ ଦେବୀ ପ୍ରାଣପ୍ରିୟା ଅଟନ୍ତି ଯାହାର ।
ଦ୍ୱିତୀୟରେ ଲେଖିଦେଲେ ସେହୁ ଏକ ଫଳା
ଘଡ଼ିକରେ ଶିଖିଲେ ତା ବସୁଦେବ ବଳା ।
ଚଉବିଂଶ ଅକ୍ଷର ଯେ ବାରୋଟି ମାତରା
ଶିଖିଲେକ ସେହି ଦୁହେଁ ହୋଇ ଅତି ତ୍ୱରା ।
ସିଦ୍ଧ ରସ୍ତୁ କ୍ୟକ୍ର କୃକ୍ଳ ଆଦି ଜାଣ
ଆହେ ଗୁରୁଦେବ ଶିଖି କରିଲୁ ପଠନ ।
ଆନୁସ୍ୱାର ବିସର୍ଗ ଯେ ଆଦି ସୁସଂଯୋଗ
ଏହିପରି ଅକ୍ଷର ଯେ ହୋଇଲାଣି ଭୋଗ ।
ଚଉତ୍ରିଂଶ ଅକ୍ଷର ଯେ ବାରଗୋଟି ଫଳା
ଏକଗୋଟି ଦିନରେ ସେ ମୁଖସ୍ଥ ହୋଇଲା ।
ମାତ୍ରା ଚାହିଁକରି ଦେବ ପକାଇଲେ ଚିହ୍ନି
ସାଧିଲେ ଶ୍ଳୋକ ସବୁକୁ କିଛି ହିଁ ନ ଜାଣି ।
ବେନି ଦିବସରେ ଏହା ସବୁ ସାଧ୍ୟକଲେ
ଶାନ୍ତିପନ୍ତି ଦ୍ୱିଜ ଦେଖି ଆଶ୍ଚର୍ଯ୍ୟ ହୋଇଲେ ।
ଓଡ଼ିଆ ତେଲଙ୍ଗୀ ଆଉ ନାଗରୀ ଦକ୍ଷିଣୀ
କନାଉଜ ଦ୍ରାବିଡ଼ ଯେ ଆଦି ଭାଷା ଘେନି ।
ଏହିପରି ଲେଖିଲେ ଯେ ଭାଷା ଚଉଷଠି
ନବଦିନେ ଲେଖିଲେ ଯେ ତାଳପତ୍ର ଚିଠି ।
ବତିଶ ଦିବସେ ଏହା ସବୁ ସେ ପଢ଼ିଲେ
ଦରିଦ୍ର ବ୍ରାହ୍ମଣ ତୁଳେ ପୀରତି ସେ କଲେ ।
ଶାନ୍ତିପନ୍ତି ବ୍ରାହ୍ମଣର ଅଟନ୍ତି ସେ ଶିଷ୍ୟ
ତାଙ୍କ ସଙ୍ଗେ ବହୁ ପ୍ରୀତିକଲେ ହୃଷୀକେଶ ।
ଅକ୍ଷର ବିଦ୍ୟାରେ ତହିଁ ଯେତେ କଷ୍ଟ ଥିଲା
ବତିଶ ସହସ୍ର ତାହା ସାଧ୍ୟ ଯେ ହୋଇଲା ।
ବେଦବାକ୍ୟ ଦେଖାନ୍ତି ଯେ ତହୁଁ ଶାନ୍ତିପନ୍ତି
ଦେଲେ ଗୁରୁ ପଢ଼ିଲେ ତା ଦୁହେଁ ହୃଦେ ଘେନି ।
ଋକ ବେଦ ଯଜୁ ଆଉ ସାମ ଯେ ଅଥର୍ବ
ମହାମନ୍ତ୍ର ପଢ଼ିଲେ ଯେ କୃଷ୍ଣ ବଳଦେବ ।
ନବଗ୍ରହ ମନ୍ତ୍ରଫଳ ଗ୍ରନ୍ଥ ଜାଣି ପାଞ୍ଜି
ଏହା ସବୁ ଶିଖିଲେ ଯେ ଦୁହେଁ ତାହା ମଜି ।
ତିଥିବାର ନକ୍ଷତ୍ର ଯେ ଗ୍ରହଙ୍କର କଳା
ରବି ଅଂଶ ଚନ୍ଦ୍ର ଆଉ ପବନର ମେଳା ।

କାମ ଲୋହାଣ ଯେ ଆଉ ରତିଶାସ୍ତ୍ର ବିଦ୍ୟା
ସ୍ତମ୍ଭନ ମୋହନ ଆଦି କି କହିବି ଅବା ।
ଯୋଗବ୍ରହ୍ମ ତ୍ରିକାଳ ଗାରେଡ଼ି ମହାମନ୍ତ୍ରେ
ଏମାନ ସେ ସାଧ୍ୟକଲେ ଏକଦିନ ଅନ୍ତେ ।
ଭୂତ ଭବିଷ୍ୟତ ବର୍ତ୍ତମାନ ଯେ ଅଶ୍ରୁତି
ବାଦବିଦ୍ୟା ଆଦି ଶିଖିଲେ ସେ ନବରାତ୍ରି ।
ଅଇଶ୍ୱର୍ଯ୍ୟ ବିଦ୍ୟା ଆଦି ଯେ ଚଉଠି ଜାଣ
ଧନୁସାୟକ ଯେ କୁନ୍ତ ଫଳା ଆଦି ପୁଣ ।
ଛେଦଭେଦେ ମନ୍ତ୍ରଭେଦି ଆଦି ଦେବଶର
ଉଦ୍ରେକେ ବିଦ୍ୟା ଯେ ସାଧ୍ୟକଲେ ଦୁଇବୀର ।
ଏହିମତ ପାଞ୍ଚଶତ ବିଦ୍ୟା ଚଉଷଠି
ଦେଖି ସାଧ୍ୟ କରିଲେ ସେ ବିଦ୍ୟା ନବଗୋଟି ।
ପୂଜାର ନିମିତ୍ତ ତପ ଧୃତିମାନ ଚିହ୍ନି
ଜଗନ୍ନାଥଙ୍କର ଗୁରୁ ହେଲେ ଶାନ୍ତିପନ୍ତି ।
ବୈବସ୍ୱତ ପୁଛାକଲେ ହେ ଅଗସ୍ତି ମୁନି
ଏ ବିଦ୍ୟା କାହୁଁ ପାଇଲେ ଦ୍ୱିଜ ଶାନ୍ତିପନ୍ତି ।
ସେ ମୁକୁଳ ଦ୍ୱିଜବର ସବୁ ବିଦ୍ୟା ସାଧି
ମର୍ତ୍ତ୍ୟେ ଜନ୍ମହେଲେ ହୋଇ କାହାସଙ୍ଗେ ବାଦୀ ।
ତାହାଙ୍କ ମହିମା ମୋତେ କହିବା ମୁନି ହେ
କୃଷ୍ଣଙ୍କର ଗୁରୁ ହେବା ଲାଗେ ସେ ସନ୍ଦେହେ ।
ଶୁଣ ତୁହୋ ଯୋଗେଶ୍ୱର ବୋଲି ତପୋବନ୍ତ
ପୂର୍ବେ ଶାନ୍ତିପନି ଯହୁଁ ହୋଇଛନ୍ତି ଜାତ ।
ବୃନ୍ଦାରକେ ସତ୍ୟଯୁଗେ କଉଶିବ ବ୍ରହ୍ମା
ରୁଦ୍ରଦେବ ବାଦୀ ହୋଇଥିଲେ ମହାତମା ।
ଯୋଗେଶ ବ୍ରହ୍ମା ଯେ ପୁରୁଷେକ ଜୀଆଇଁଲା
ସେଦେବ ଗୋଲୋକ ବୋଲି ନାମତାର ଦେଲା ।
ପ୍ରଚଣ୍ଡ ବ୍ରହ୍ମବେତ୍ତା ସେ ହେଲା ମନ୍ତ୍ରକଳା
ବେଦଶାସ୍ତ୍ର ଜାଣିଣ ସେ ଆକାଶକୁ ଗଲା ।
ଚନ୍ଦ୍ର ଦେବତାର ଭୟେ ନ ରହି ଆକାଶେ
ସ୍ୱର୍ଗ ମର୍ତ୍ତ୍ୟ ତେଜିଣ ସେ ସ୍ୱର୍ଗପୁରେ ପଶେ ।
ଦିନେ କଇଳାସ ଈଶ ଗଲେ ସ୍ୱର୍ଗବାସେ
ଦେବଇନ୍ଦ୍ର ଗୋଲୋକ ଯେ ହୋଇଛି ଆକାଶେ ।
ଈଶ୍ୱରଙ୍କୁ ବସ ବୋଲି ସେହୁ ନ ବୋଇଲା
ପରପଞ୍ଚ ଯୋଗୀ ବୋଲି ସେହୁ ଝିଙ୍ଗାସିଲା ।
ବ୍ରହ୍ମା ସେ ଅଟଇ ନବସୃଷ୍ଟିର କରତା
ଧାତା ଅର୍ଜିତ ପୁରୁଷ ବିହିତ ବିଧାତା ।
ଏକ ବିଧାତାଏ ବ୍ରହ୍ମା ସେହୁ ଯେ ଜାଣଇ
ଅନେକମତେ ଭର୍ତ୍ସନା ହରଙ୍କୁ ସେ ଦେଇ ।
ଆସ୍ଥାନୁ ଉଠନ୍ତେ ହର ଦେଲା ପୁଣି ପେଲି
କିଛି ହିଁ ତ ଈଶ୍ୱର ଯେ ନ କହିଲେ ବୋଲି ।

ଗଳାଧିକ୍କା ଦେଲା ସେହୁ ଭୁଜ ପରିତାଳେ
ପଡ଼ିଲେ ଈଶ୍ୱର ଉଡ଼ି ଯାଇକରି ଜଳେ ।
ଅସାଷ୍ଟମହୋନ୍ତେ ଇନ୍ଦ୍ରେ କୋପିଲେ ଯେ ଦେବ
ବ୍ରହ୍ମା ଦେବତାଙ୍କୁ କୋପ କଲେ ସଦାଶିବ ।
ବ୍ରହ୍ମା ଋଷି ନାହିଁ କଲେ ତାଙ୍କର କି ଦୋଷ
ଧାତାର ହେତୁରୁ ଆମ୍ଭେ ତେଜିଲୁ ଆକାଶ ।
ପିତାଙ୍କୁ ସେ ଶାପଦେଲେ ଗଉରବ ଲାଗେ
ତେଣୁଟି ବ୍ରହ୍ମା ପୂଜା ନ ପାନ୍ତି ମର୍ତ୍ତ୍ୟସ୍ୱର୍ଗେ ।
ଆକାଶରେ ଗୋଲୋକକୁ କଲୁ ତୁହି ରାଜା
ଦେବତାଏ ତୋର ହେତୁ ନ ପାଇଲେ ପୂଜା ।
ଏମନ୍ତ ପ୍ରକାରେ ତୁ ଯେ ସୋଦରଙ୍କୁ କଲୁ
ଦେବ ମାନବରେ ପୂଜା ନୋହିବ ବୋଇଲୁ ।
ମହାରାଗେ ଶାପ ତାକୁ ଦେଲେକ କପାଳୀ
ତେଣୁକରି ଅପୂଜ୍ୟ ସେ ହେଲା ନିତ୍ୟସ୍ଥଳୀ ।
ରୁଦ୍ରଙ୍କର ଶାପ ପାଇ ଜଗତର ପିତା
ଦେବ ଦାନବରେ ସେହି ନୋହିଲେ ପୂଜନ୍ତା ।
ମନୁକଳ୍ପ ପରିଯନ୍ତେ କାଳ ବହିଗଲା
ରୁଦ୍ରଙ୍କର ଶାପେ ବ୍ରହ୍ମା ଅପୂଜ୍ୟ ହୋଇଲା ।
ପୂଜା ପାଇବାର ନିମିତ୍ତରେ ବେଦପତି
ସୁଦେବଙ୍କ ଘରେ ସେହୁ ହେଲେ ଉତପତ୍ତି ।
ଶାନ୍ତିନାମେ ତାହାର ଯେ ଅଟଇ ଜନନୀ
ତେଣୁକରି ନାମ ତାର ଦେଲେ ଶାନ୍ତିପନ୍ତି ।
ବିଚାରଇ ଧାତା ମୋତେ ଶିବ ଶାପ ଗରୁ
ଜଗନ୍ନାଥ ପୁରୁଷଙ୍କ ହୋଇବି ମୁଁ ଗୁରୁ ।
ତୋଷ କରି ମନାଇବି ମୁହିଁ ଦେବରାଜା
ଅନୁଗ୍ରହେ ମୋତେ ନାରାୟଣ କରୁ ପୂଜା ।
ଯାହା ପଚାରିଲୁ ମହାତମା ତୁ ଯୁକତି
ଶାନ୍ତିପନୀ ବ୍ରାହ୍ମଣର ଅଟଇ ଏ ରୀତି ।
ବିଚାରିଲେ ରୁଦ୍ର ବିଷ୍ଣୁ ଅଟନ୍ତି ଏ ବେନି
ଅଂଶାବତାର ଅଟନ୍ତି ଏହି ଦେହ ଘେନି ।
ରୁଦ୍ରାବତାର ଅଟନ୍ତି ପୁଣି ବଳରାମ
ଶାନ୍ତିପନ୍ତି ଶିଷ୍ୟ ଏହୁ ହେଲେ ଶାସ୍ତ୍ରଧର୍ମ ।
ପରମ ଆନନ୍ଦ ନାଥ ଭକ୍ତ ବାରାନିଧି
ଚଉଷଠି ଜନ ମଧ୍ୟେ ସର୍ବେ କଲେ ସିଦ୍ଧି ।
ଦେଖି ଆଶ୍ଚର୍ଯ୍ୟ ହୋଇଲେ ଦ୍ୱିଜ ଶାନ୍ତିପନ୍ତି
ବିଚାରଇ ରୁଦ୍ରବିଷ୍ଣୁ ଅଟନ୍ତି ଏ ବେନି ।
ଗୁରୁ ବୋଲି ଅହର୍ନିଶି କରନ୍ତି ଯୁହାର
ପିତାମହ ନୋହିଲେ କି ଆନ ହୁଏ ପାର ।
ମନୁ ପଚାରନ୍ତି ଶୁଣ ଅଗସ୍ତି ମୁନି ହେ
କଥାଏକ ପଚାରିବି ମୁହିଁ ତୁମ୍ଭଙ୍କୁ ହେ ।

କଥାଗୋଟି ଆସି ମୋର ପଡ଼ିଲା ମନରେ
ତେଣୁକରି ତୁମ୍ଭଙ୍କୁ ମୁଁ ପୁଚ୍ଛଇ ଛାମୁରେ ।
ଗୋପପୁରେ ମଥୁରାରେ ଯାଇଁ ସେ ରହିଲେ
କଂସ ନାଶି ଉଗ୍ରସେନ ରାଜା ସେହି କଲେ ।
ବରଜକୁଳରେ ବଢ଼ି ନ ପଢ଼ିଲେ ପାଠ
ଯଦୁକୁଳେ ବଢ଼ି ପାଠେ ହେଲେ ସେ ଉଚ୍ଚାଟ ।
କଂସ ସୁନାଥ ଯେ ଉଗ୍ରସେନ ପୁତ୍ର ଦୁଇ
ଦଇବର ବଶେ ସେହି ଦୁହେଁ ନାଶଯାଇ ।
କଂସର ତନୟ ଅଟେ ହଂସ ଡିମ୍ଭ ଜାଣ
ସୁନାଥ ପୁତ୍ର ସୁରଥ ବୋଲିଣ ପ୍ରମାଣ ।
ହଂସ ଡିମ୍ଭକ ତ ଗଙ୍ଗାଗର୍ଭରେ ପୂରାଇ
ତାହାକୁ ସେ ମରାଇଲେ ଦେବ ଭାବଗ୍ରାହୀ ।
ସୁନାଥର ପୁତ୍ର ହେଲା ତାହାଙ୍କ ଭକତ
ତାହାଠାରେ ଦୟା କରିଥାଆନ୍ତି ଅଚ୍ୟୁତ
ପ୍ରାଣ ପଞ୍ଚଭୂତ ସେହି ତାହାଠାରେ ଦେଇ
ଅତ୍ୟନ୍ତ ବିଶ୍ୱାସ କରିଥାନ୍ତି ତାହାଠାଇଁ ।
ସଙ୍ଗେ ଘେନିଯାନ୍ତି ତାକୁ ଯେଣେ ସେ ଯାଆନ୍ତି
ରଥରେ ବସାଇ ତାକୁ ନଗ୍ରରେ ବୁଲାନ୍ତି ।
ପାଠ ପଢ଼ିବାର ପାଇଁ ଏବେ ସେହୁ ଗଲେ
ସୁରଥ ସେନାକୁ କିମ୍ପା ସଙ୍ଗତେ ନ ନେଲେ ।
ଭୋଜନେ ଶୟନେ ସେହୁ ନ ଛାଡ଼ନ୍ତି କ୍ଷଣେ
ଭିନ୍ନ ନ କରନ୍ତି ତାକୁ ପ୍ରଭୁ ଜନାର୍ଦ୍ଦନେ ।
ତାହାକୁ ସଙ୍ଗତେ ପ୍ରଭୁ କିମ୍ପାଇଁ ନ ନେଲେ
ଆପଣେ ପ୍ରଭୁ ବିଦ୍ୟା ସେ ପଢ଼ିବାକୁ ଗଲେ ।
ତାହାକୁ କିମ୍ପାଇ ବିଦ୍ୟା ସେ ନ ଶିଖାଇଲେ
ଏଥିର ଚରିତ କହ ମୁନି ମୋତେ ଭଲେ ।
ମନେ ମୋର ଏ ବିଷୟ ସଂଶୟ ଅଛଇ
ତେଣୁକରି ତୁମ୍ଭଙ୍କୁ ମୁଁ ପଚାରେ ଗୋସାଇଁ ।
ଶୁଣିକରି ହସିଲେ ସେ ଯେ ଅଗସ୍ତି ମୁନି
ଏତେ ଯେ ଗୁପତ କଥା ପୁଚ୍ଛୁ ପୁଣି ପୁଣି ।
ସାବଧାନେ ଶୁଣ ମୁହିଁ କହୁଅଛି ତୋତେ
ଏ ବଡ଼ ଗୁପତ କଥା ରଖିଥିଲୁ ଚିତ୍ତେ ।
ଯେତେବେଳେ ରାମକୃଷ୍ଣ ପାଠ ପଢ଼ି ଗଲେ
ସୁନାସ ସୁତକୁ ସେହୁ ସଙ୍ଗତରେ ନେଲେ ।
ରାମକୃଷ୍ଣଙ୍କ ସଙ୍ଗତେ ବିଦ୍ୟା ସେ ପଢ଼ିଲେ
ଏକହୁଁ ଅନେକ ବିଦ୍ୟା ସମସ୍ତେ ଶିଖିଲେ ।
ଖଡ଼ିପାଠ ଠାରୁ ଧନୁବିଦ୍ୟା ଯେତେ ଥିଲା
ତାହାଙ୍କ ସଙ୍ଗତେ ଥାଇ ସବୁ ସେ ସାଧିଲା ।
ରାମକୃଷ୍ଣ ସଙ୍ଗେ ଥାଇ ହେଲା ମହାଯୋଦ୍ଧା
ଏଥିରେ କଥା ଯେ ମୁହିଁ କହିଲି ସମ୍ବାଦି ।

ତୁ ଯେ ପଚାରିଲୁ ମୋତେ ନୃପତି ଶେଖର
ତାହା ଏବେ କହୁଅଛି ମନେ ଦୃଢ଼ ଧର ।
ଅଗସ୍ତି କହନ୍ତେ ମନୁରାଜା ଯେ ଶୁଣଇ
ଏଥୁଅନନ୍ତରେ ଯାହା କଲେ ଭାବଗ୍ରାହୀ ।
ମକର ଶୁକଳ ଏକାଦଶୀ ରାତ୍ରକାଳେ
ସ୍ନାନ କରିବାକୁ ଗୁରୁ ଆସେ ସିନ୍ଧୁଜଳେ ।
ବାଳୁତ ନନ୍ଦନ ନାମ ସଉତ ଯଜାସି
ସେହି ପିତା ସଙ୍ଗତରେ ଗୋଡ଼ାଇଣ ଆସି ।
ବାଳୁତ ପୁତ୍ରକୁ ବିପ୍ର କୂଳରେ ରଖାଇ
ସମୁଦ୍ର ସ୍ନାହାନେ ଦ୍ୱିଜପଣେ ଅବଗାହି ।
ଘୋର ନାଦେ ବାରାନିଧି ଲହଡ଼ି ଯେ ମାରି
ବାଳୁତ ପୁତ୍ର ଗୋଟିକି ସିନ୍ଧୁ ନେଲା ହରି ।
ବ୍ରାହ୍ମଣ ଦେଖନ୍ତି ଭେଟ ହୋଇ ବୁଡ଼େ ସୁତ
ସମୁଦ୍ରେ ପଡ଼ିଲା ଯାଇ ଲହରୀର ଘାତ ।
ଆହା ପୁତ୍ର ବୋଲି ବିପ୍ରେ ଡେଇଁପଡ଼େ ଜଳେ
ବ୍ରାହ୍ମଣକୁ ଲହରୀ ଯେ ପକାଇଲା କୂଳେ ।
ଅଗାଧ ଗଭୀରେ ପଡ଼ିଥିଲା ପୁତ୍ରଗୋଟି
ଆରେ ପୁତ୍ର ବୋଲି ବିପ୍ର ଗଡ଼େ ମହୀଲୋଟି ।
ରୋଦଇ ସେ ବିପ୍ରବର ପୁତ୍ରନାମ ଧରି
ଅଚେତ ହୋଇଣ ପଡ଼ି ଗଡ଼େ ବସୁନ୍ଧରୀ ।
ଭୂତଳେ ପଡ଼ି କାନ୍ଦନ୍ତି ବ୍ରାହ୍ମଣ ବ୍ରାହ୍ମଣୀ
ଆରେ ପୁତ୍ର କେଣେ ଛାଡ଼ିଗଲୁ ଗୁଣମଣି ।
ଗୁରୁଙ୍କ ବିକଳ ଦେଖି କାନ୍ଦି ସଙ୍କର୍ଷଣ
କୋଳ କରି ଗୁରୁଙ୍କୁ ଯେ ଧଇଲେ ଯାଇଣ ।
କେଶବ ଯେ ସମାର୍ଜନ୍ତି ଶୋକ ଛାଡ଼ ଗୁରୁ
ନାଶଗଲା କୁମରକୁ କିମ୍ପା ଶୋକ କରୁ ।
ଦେଖ ଦେଖ ପୁତ୍ର ପଡ଼େ ଅଗାଧ ଜଳର
ଅବୋଧ ଲିଙ୍ଗ ଏବେ ସେ ହୋଇଲେ କୁମର ।
ଦ୍ୱିଜବର ବୋଲେ ଶିଷ୍ୟ ମୁହିଁ ବଡ଼ ପାପୀ
ପାଞ୍ଚପୁତ୍ର ମୋର ନାଶଗଲେ ଯେ ଅଦ୍ୟାପି ।
ଅପୁତ୍ରିକ ଲକ୍ଷଣେ ମୁଁ ବଞ୍ଚିବି କେସନେ
ଛାଡ଼ିବି ଜୀବନ ମମ ପୁତ୍ରଙ୍କ ବିହୀନେ ।
ଗୋବିନ୍ଦ ବୋଇଲେ କାହାପାପେ ନାଶଗଲେ
ଯେ ଯାହାର କର୍ମ ଏଥି ଭୁଞ୍ଜିବାକ ଭଲେ ।
ଯେତେ ପୁଣ୍ୟ ଗୁରୁ ସେହୁ କରିଥିଲେ ପୂର୍ବେ
ତେତେଦିନ ଭୋଗ ପୁଣି କରିଲେଟି ଏବେ ।
ସଂସାର ସାଗରେ ଏହା ଦୈବର ରଚନା
ହିଂସା ଅପବାଦ ମୋହେ ଲୋକେ ବନ୍ଧସିନା ।
ଜଗନ୍ନାଥ ଅଟନ୍ତି ଏ ସର୍ବ ଅଧିକାରୀ
ପ୍ରବୋଧ ବାକ୍ୟରେ ସେହୁ ଗୁରୁଙ୍କୁ ତିଆରି ।

ଗୁରୁ ଗୁରୁପତ୍ନୀକି ଘେନି ଜଗନ୍ନାଥେ
ଚଳିଲେ ତାହାଙ୍କ ସହ ଗୁରୁ ଗୃହଗତେ ।
ଗୁରୁଙ୍କୁ ମାର୍ଜନା କରି ପ୍ରଭୁ ଦେବରାଜ
ଏଗାର ଦିନରେ ତହିଁ କଲେ ପ୍ରେତକାର୍ଯ୍ୟ ।
ଶାନ୍ତିପନି ବୋଲନ୍ତି ମୋ ଯେତେ ପାପ ଥିଲା
ତୁମ୍ଭଙ୍କୁ ଦେଖିଲା ମାତ୍ରେ ଦୂର ହୋଇଗଲା ।
ବସ୍ତ ମୁହିଁ ଅପୁତ୍ରିକ ଯିବି ବାରାଣସୀ
ପାତକ ମୁଁ ବିନାଶିବି ପ୍ରୟାଗରେ ଝାସି ।
ରାମକୃଷ୍ଣ ବୋଇଲେ ଯେ ଶୁଣ ଗୁରୁଦେବ
ହୃଦୟରୁ ଚିନ୍ତା ଏବେ ତ୍ୟାଗକର ଜବ ।
ଥୋକେଦିନ ଆଉ ତୁମ୍ଭେ ଏଥେ ଥାଅ ରହି
କିଛି ବିଦ୍ୟା ପଢ଼ିବାକୁ ମନ ଯେ ବଳଇ ।
ତୁମ୍ଭର ବିଦ୍ୟାରେ ଆମ୍ଭେ ହେଲୁ ଜ୍ଞାନବନ୍ତ
ଜାଣ ସ୍ୱାମୀ ଆମ୍ଭେ ଅଟୁ ତୁମ୍ଭ ଧର୍ମପୁତ୍ର ।
ଗୋବିନ୍ଦ କହନ୍ତେ ଶାନ୍ତିପନି ତୋଷ ହେଲେ
ପଞ୍ଚଭୂତ ଆତ୍ମାରେ ସେ କଥାକୁ ଭାଳିଲେ ।
ଏହାଙ୍କର ପୁତ୍ର କଷ୍ଟ ଯିବ ଅବା ମୋର
ଯେଣୁ ବଚନ ଯାଙ୍କର ଚନ୍ଦନୁ ଶୀତଳ ।
ଶ୍ରୀକୃଷ୍ଣ କହନ୍ତେ ଗୁରୁପତ୍ନୀ ଯେ ଶୁଣିଲେ
ଶାନ୍ତିପନି ବ୍ରାହ୍ମଣକୁ ଚାହିଁଣ ବୋଇଲେ ।
ପୁତ୍ରମାନେ ଏବେ ଯାହା କହିଲେ ତୁମ୍ଭଙ୍କୁ
ବିଚାରିଣ କାର୍ଯ୍ୟ ଦେବ କର ହେ ମନକୁ ।
ନ ଯିବ ତୀର୍ଥକୁ ଥିବ ଥୋକାଏକ ଦିନ
ଯେବେ ନିବର୍ତ୍ତାଇଲେ ଏ ବାଳୁତ ନନ୍ଦନ ।
ଶାନ୍ତିପନି ପତ୍ନୀଙ୍କର କହିବା ଘେନିଲେ
ପୁତ୍ର କଷ୍ଟ ପାସୋରିଣ ମନ ସ୍ଥିର କଲେ ।
ରାମକୃଷ୍ଣ ଘେନି ପାଠଶାଳାକୁ ଚଳିଲେ
ସବୁ ଚାଟ ଆସି ତାଙ୍କ ସନ୍ନିଧେ ମିଳିଲେ ।
ସହସ୍ରେ ଚାଟ ଯେ ସେହୁ ପଢ଼ାବନ୍ତି ନିତି
ଚାଟଙ୍କ ମଧ୍ୟେ ସରସ ହରି ହଳପତି ।
ଏହିମତେ କେତେହେଁକ ଦିନ ବହିଗଲା
ଗୁରୁଙ୍କର ମନରୁ ଯେ ଭ୍ରାନ୍ତି ନ ତୁଟିଲା ।
ଜଗତର ନାଥ ଯାର ଗୃହରେ ଅଛନ୍ତି
ତାହାର ମନେ ଆବର ଅଛି କିସ ଭ୍ରାନ୍ତି ।
ଆପଣେ ଶ୍ରୀକୃଷ୍ଣ ଦିନେ ବିଚାରିଲେ ମନେ
ଆମ୍ଭଙ୍କୁ ଏ ଦେଖି ଚିନ୍ତା ଛାଡ଼ିଲେ ବହନେ ।
ଏହାଙ୍କର ଭକ୍ତିରେ ମୁଁ ନ ପାରିଲି ଯାଇ
ଗୁରୁଦକ୍ଷିଣା ନ ଦେଇ ଯିବି କେମନ୍ତେ ହିଁ ।
ଏମନ୍ତ ବିଚାର କରି ପ୍ରଭୁ ବ୍ରହ୍ମରାଶି
ଗୁରୁପତ୍ନୀ ମନ ଭ୍ରମାଇଲେ ଗୋପଶିଷି ।

ଏକଦିନେ ଶାନ୍ତିପନି ପଣ୍ଡାଙ୍କୁ ଚାହିଁଣ
ଭାରିଯା କହନ୍ତି ତାଙ୍କୁ କର ଅବଧାନ ।
ଆଜ ଅନ୍ନ ରାନ୍ଧିବାକୁ ଘରେ ଜାଳ ନାହିଁ
ଏକଗୋଛା ଜାଳ ଆଣ ପୁତ୍ରଙ୍କୁ ପଠାଇ ।
କାଷ୍ଠ ଅଣାଅ ଯେ ତୁମ୍ଭେ ହୋଇଣ ବହନ
ତେବେ ସିନା ଅନ୍ନ ମୁହିଁ କରିବି ରନ୍ଧନ ।
ପତ୍ନୀଙ୍କର କହନ୍ତେ ଯେ ପଣ୍ଡାଏ ଶୁଣିଲେ
ପାଠପଢ଼ା ଘରେ ବେଗେ ଯାଇଣ ମିଳିଲେ ।
ଅନ୍ତର୍ଯ୍ୟାମୀ ନାଥ ତାହା ଆଗୁହଁ ଜାଣିଣ
ଭ୍ରମ କରାଇଲେ ଗୁରୁ ଗୁରୁପତ୍ନୀ ମନ ।
ଚାଟଶାଳୀ ଗୃହମଧ୍ୟେ ଗୁରୁ ଉଭାହୋଇ
ସମସ୍ତ ପୁତ୍ରମାନଙ୍କୁ ଚାହିଁଣ ସେ କହି ।
ତୁମ୍ଭେ ସର୍ବପୋଏ ଏବେ ବହନ ହୋ ଯିବ
କାଠଗୁଡ଼ିଏ ବନସ୍ତୁ ଭାଙ୍ଗିଣ ଆଣିବ ।
ଆମ୍ଭର ଗୃହରେ ଆଜ କିଛି କାଠ ନାହିଁ
ଗୁରୁ କହନ୍ତେ ଜାଣିଲେ ପ୍ରଭୁ ଭାବଗ୍ରାହୀ ।
ଶୁଣି ଆଗ କୁହନ୍ତି ଯେ ଦେବ ଦାମୋଦର
କାଷ୍ଠ ଆଣିବାକୁ ଆମ୍ଭ ଯିବୁ ତତପର ।
ସମସ୍ତ ଚାଟଙ୍କୁ ଘେନି କୃଷ୍ଣ ବାହାରିଲେ
ଆବର ହଳଧର ଯେ ସୁରଥ ଚଳିଲେ ।
ଘୋର ବନସ୍ତରେ ଯାଇ ସକଳେ ମିଳିଲେ
ଯେ ଯାହାର ମତେ କାଷ୍ଠ ଭାଙ୍ଗିଣ ଲାଗିଲେ ।
ତରତର ହୋଇକରି କାଷ୍ଠମାନ ଭାଙ୍ଗି
ଯେ ଯାହା ମନରେ ନିଜ ନିଜ ବୋଝ ସାଜି ।
ଗୁରୁଙ୍କର ଆଜ୍ଞା କେହୁ ମେଣ୍ଟିଣ ପାରିବ
ଯାହାଙ୍କର ଶିଷ୍ୟ ସ୍ୱୟଂ ପ୍ରଭୁ ବାସୁଦେବ ।
ଏହିମତେ ବେଳ ହେଲା ତୃତୀୟ ପ୍ରହର
ଗୁରୁ ଯେ ବାଟ ଚାହିଁଣ ଛନ୍ତି ଖଣ୍ଡେ ଦୂର ।
ଏହିକାଳେ ମାୟାବଳେ ଦେବ ନାରାୟଣ
ହରଣ କରିଲେ ସଙ୍ଗ ବାଳକଙ୍କ ମନ ।
ଶ୍ରୀକୃଷ୍ଣ ମାୟାରେ ସର୍ବେ ମୋହିତ ହୋଇଲେ
କେହି ତହିଁ ବ୍ରହ୍ମମାୟା ଜାଣି ନ ପାରିଲେ ।
ଚାରିମେଘ ଡକାଇଣ କୃଷ୍ଣ ସନ୍ନିଧାନ
ଗୁପତରେ କହନ୍ତି ଯେ ତାହାଙ୍କୁ ବଚନ ।
ଚାରିମେଘ ଘୋଟିକରି ବରଷିବ ପାଣି
ପବନକୁ କହନ୍ତି ସେ ଗୁପତରେ ବାଣୀ ।
ଅଳପ ଅଳପ ତୁହି ବହୁଥିବୁ ଧୀରେ
ଟୋପି ଟୋପି ହୋଇ ଜଳ ପଡ଼ିବ ଭୂମିରେ ।
ଦିଗମାନ ନ ଦିଶିବ ଅନ୍ଧକାର ହୋଇ
ମକରେ କୁହୁଡ଼ି ଯେଉଁପରି ଆଚ୍ଛାଦଇ ।

ଭୂମିକୁ ଧରିଣ ମେଘ ଗରଜୁଣ ଥିବ
ଚାଲିବାକୁ ପହଣ୍ଡ ଯେ ବାଟ ନ ଦିଶିବ ।
ଏହିପରି ଆଜ୍ଞାଦେଇ କରି ଜଗନ୍ନାଥେ
ରହିଲେ ଯେ ହଳଧର ସୁରଥଙ୍କ ସାଥେ ।
ଯେ ଯାହାର ମତେ ପୋଏ କାଷ୍ଠ ସଜାଡ଼ିଲେ
ଏହିକାଳେ ଗଗନରେ ମେଘ ଆଚ୍ଛାଦିଲେ ।
ଘୁ ଘୁ ଗରଜନ କରି ବରଷିଲେ ପାଣି
ଘନ ଘନ ବିଜୁଳି ଯେ ଚମକଇ ପୁଣି ।
ଚଡ଼କ ପଡ଼ଇ ସଦା ମାରେ ବଜ୍ରବାଣ
ସେ କାଳରୁ କଷ୍ଟ କିଏ କରିବ ଗଣନ ।
ମହା ଅନ୍ଧକାର ପୃଥ୍ୱୀ ତିଳେ ନ ଦିଶିଲା
କିଏ କେଉଁଠାରେ ଆଉ ଜାଣି ନ ପାରିଲା ।
ରାମକୃଷ୍ଣ ଦୁହେଁ ତହୁଁ ସୁରଥକୁ ଘେନି
ତରତରେ ପଳାବନ୍ତି ଡାକିହାକି ପୁଣି ।
ତାଙ୍କ ସଙ୍ଗେ ଏକଗୋଟି ଶିଷ୍ୟ ଗୋଡ଼ାଇଲା
ବ୍ରାହ୍ମଣର କୁଳେ ସେହୁ ଜାତ ହୋଇଥିଲା ।
ମାୟାଧର ସେ ବାଳକ ସଙ୍ଗେ ଘେନିଗଲେ
ଏକଗୋଟି ଗଛ କ୍ରୋଟ ଭିତରେ ରଖିଲେ ।
ବିପ୍ର ବାଳକକୁ ଚାହିଁ କୃଷ୍ଣ ପଚାରନ୍ତି
ତୁମ୍ଭ ନାମ କିସ ଅଟେ ବୋଲି ସେ ବୋଲନ୍ତି ।
ଭକତ ବତ୍ସଳ ସେହୁ କରୁଣା ସାଗର
ଭକତର ମନକଥା ଜାଣନ୍ତି ଶ୍ରୀଧର ।
ଛଦ୍ମ କରି ମହାପ୍ରଭୁ ପଚାରନ୍ତି ହସି
ସେହି ବିପ୍ର ବାଳକକୁ ବହୁତ ପ୍ରଶଂସି ।
ତାର ପୂର୍ବ ଭାଗ୍ୟବଳେ ବୁଦ୍ଧି ପ୍ରସରିଲା
ଏହିପରି କୃଷ୍ଣଙ୍କୁ ସେ ଉତ୍ତର ବହିଲା ।
ମୋର ନାମ ଗୋଟି ପ୍ରଭୁ ଅଟେ ଦାମୋଦର
କୃଷ୍ଣ କହନ୍ତି ସେ ନାମ ଅଟଇ ଆମ୍ଭର ।
ତୁମ୍ଭଙ୍କୁ ଦେଖିଣ ମୋର ଶରଧା ବଳିଲା
ତେଣୁ ମିତ୍ରପଣେ ମୋର ମନ ଯେ ସ୍ଫୁରିଲା ।
କୃତ୍ୟ କୃତ୍ୟ ହୋଇକରି କହେ ବିପ୍ରମଣି
କେହ୍ନେ ତୁମ୍ଭ ସଙ୍ଗେ ମିତ୍ର ହେବନି ଚକ୍ରପାଣି ।
ମିତର ଭକତିଭାବ ଦେଖି ଭାବଗ୍ରାହୀ
ବଳାତ୍କାରେ ତାର କର ଧଇଲେକ ଯାଇ ।
ଯହୁଁ ସେହି ବେନିଜନ ମଇତ୍ର ହୋଇଲେ
ଭକତବତ୍ସଳ ବୋଲି ପ୍ରଭୁ ବୋଇଲାରେ ।
ଶୁଣ ହୋ ମନୁ ନୃପତି କହନ୍ତି ଅଗସ୍ତି
ଭକତଙ୍କ ହିତେ ପ୍ରଭୁ ସର୍ବସ୍ଥାନେ ସ୍ଥିତି ।
ବୃକ୍ଷ କ୍ରୋଟରରେ ସେହି ରାତ୍ରକ ରହିଲେ
ରଜନୀ ପାହାନ୍ତେ ମେଘମାନଙ୍କୁ କହିଲେ ।

ଯେ ଯାହା ସ୍ଥାନକୁ ଏବେ ଯାଅ ମେଘମାନେ
ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ସେ ଚଳିଲେ ଗଗନେ ।
ସୂର୍ଯ୍ୟଙ୍କର କିରଣ ଯେ ପ୍ରକାଶ ହୋଇଲା
ଅନ୍ଧାର ଯାଆନ୍ତେ ତହୁଁ ଦିନ ପ୍ରକାଶିଲା ।
କାଷ୍ଠଗୋଛା ଘେନିବାକେ ବାହାର ହୋଇଲେ
ଏକ ବୃକ୍ଷ କ୍ରୋଟରରେ କୃଷ୍ଣ ରହିଥିଲେ ।
ସୁରଥକୁ ସଙ୍ଗେ ଘେନି କାଷ୍ଠ ଗୋଛା ଧରି
ହସି ହସି ଯାଆନ୍ତି ସେ ଦେବ ଦଇତ୍ୟାରୀ ।
ଶିଷ୍ୟଙ୍କୁ ବାଟରେ ଶାନ୍ତିପନି ଯେ ଭେଟିଲେ
ହରି ବଳରାମ ଯାଇ ଚରଣେ ନମିଲେ ।
ଉଠ ବୋଲି ଗୁରୁ ତାଙ୍କୁ ତକ୍ଷଣେ ଟୋଳନ୍ତି
କାଷ୍ଠ ଗୋଛାମାନ ପୁଣ ଓହ୍ଲାଇ ପକାନ୍ତି ।
ଏହିପରି କିଛିଦିନ ତହୁଁ ବିତିଗଲା
ପୁଣି ପୁତ୍ରଙ୍କର କଷ୍ଟ ମନରେ ପଡ଼ିଲା ।
ଶ୍ରୀକୃଷ୍ଣଙ୍କୁ ଚାହିଁ ଗୁରୁ କହନ୍ତି ବଚନ
ଏବେଯିବୁ ଆମ୍ଭେ କରି ତୀର୍ଥ ପର୍ଯ୍ୟଟନ ।
ମଣି କର୍ଣ୍ଣିକାରେ ସ୍ନାନେ ପ୍ରାଣ ଝାସଦେବୁ
ତେବେ ଆମ୍ଭେମାନେ ପୁତ୍ର କଷ୍ଟ ପାଶୋରିବୁ ।
ଏମନ୍ତ ବଚନ ଯହୁଁ ସେ ବେନି କହିଲେ
ଦେବ ଶିରୀପତି ମନେ ମନେ ବିଚାରିଲେ ।
ମୋକ୍ଷ ନ ମାଗିଣ ଗୁରୁ ପୁତ୍ରେ ମନ ଦେଲେ
ମୁହିଁ ଯେ ପରମବ୍ରହ୍ମ ମୋତେ ନ ଚିହ୍ନିଲେ ।
ଦଇବୀ ମାୟାରେ ଏବେ ଗୁରୁ ମୋହଗଲେ
କୋଟି ତୀର୍ଥ ଯାର ପାଦେ ତାକୁ ନ ଚିହ୍ନିଲେ ।
ଆଜ ଏ ବେନିଙ୍କୁ ମୁହିଁ କରିବି କାରଣ
ଗୁରୁଦକ୍ଷିଣା ସ୍ୱରୂପ ଦେବି ପୁତ୍ରଦାନ ।
ମାୟାରେ ଶ୍ରୀନାରାୟଣ ବୋଇଲେ ବଚନ
ଆମ୍ଭଙ୍କୁ ମେଲାଣି ଏବେ ଦିଅ ବେନିଜନ ।
ଶ୍ରୀହରି କହିଲେ ଶାନ୍ତିପନି ଗୁରୁ ଆଗ
ଏବେ ଦକ୍ଷିଣା ଆମ୍ଭଙ୍କୁ ଗୁରୁ ତୁମ୍ଭେ ମାଗ ।
ଦକ୍ଷିଣା ନ ଦେଲେ କେଉଁ କାର୍ଯ୍ୟ ନୁହେଁ ସିଦ୍ଧି
କଳ୍ପନା ବିନା ବି ପ୍ରାପ୍ତ ହୁଏ ଋଷି ସିଦ୍ଧି ।
ଗୁରୁ ବୋଇଲେ ଦକ୍ଷିଣା ଅଟେ ଦାନ ଧ୍ୟାନ
ତେବେ ମୋର କିସ ଅଛି ସାଧ୍ୟ ପ୍ରୟୋଜନ ।
କିସ ଧନ ସଞ୍ଚିବା ଯେ ପୁତ୍ର ଯେବେ ନାହିଁ
ଗୁରୁଙ୍କ ବଚନେ କହୁଛନ୍ତି ବେନିଭାଇ ।
ଦକ୍ଷିଣା ନ ଦେଲେ ବିଦ୍ୟା ପ୍ରାପତ ନୁହଇ
ଆଜ୍ଞାଦେଲେ ମୁକ୍ତହେବୁ ଦକ୍ଷିଣା ଯେ ଦେଇ ।
କିସ ଦକ୍ଷିଣା ମାଗ ହେ ଆମ୍ଭେ ତାହା ଦେବୁ
ଧନରେ ମୋ ପ୍ରୟୋଜନ ନାହିଁ ଆରେ ବାବୁ ।
ଗୁରୁ ନ କହୁଣୁ ଗୁରୁପତ୍ନୀ ଯେ କହନ୍ତି
ଯାହା ମୁଁ ମାଗିବି ତାହା ଦେବ କି ଶ୍ରୀପତି ।
ପାଞ୍ଚପୁତ୍ର ମୋର ଜଳେ ବୁଡ଼ିଣ ମରିଲେ
ଗୁରୁ ଦକ୍ଷିଣା ସ୍ୱରୂପ ଦିଅ ଆଣି ଭଲେ ।
କହୁଅଛି ନିରାଧାର ଏହା ଯେ ତୁମ୍ଭଙ୍କୁ
କହୁଁ କହୁଁ ଶୋକ କଲେ ବେଳୁ ଯେ ବେଳକୁ ।
ଯହୁଁ ଗୁରୁପତ୍ନୀ ଏହି ବଚନ କହନ୍ତି
ମନରେ ଭାବିଲେ ତାହା ରେବତୀର ପତି ।
ପୁଣି ଶାନ୍ତିପନି ତାଙ୍କୁ ବଚନ ବୋଲନ୍ତି
ସାବଧାନ ହୋଇ ଶୁଣ କମଳାର ପତି ।
କହିଅଛଇ ତୁମ୍ଭଙ୍କୁ ନିରାଧାର ବାବୁ
ଯେବେ  ପାରୁ ପଞ୍ଚପୁତ୍ର ଆଣି ମୋତେ ଦେବୁ ।
ଆନ ଦକ୍ଷିଣାରେ ମୋର ପ୍ରୟୋଜନ ନାହିଁ
ନୋହିଲେ ତୁମ୍ଭ ପୁରକୁ ଚଳ ବେନି ଭାଇ ।
ଗୋବିନ୍ଦ ବୋଇଲେ ତୁମ୍ଭେ ପରମ ଯେ ଗୁରୁ
ଅମାନୁଷ କଥା ଏହା କିମ୍ପା ନ ବିଚାରୁ ।
ଅଶୀବର୍ଷ ହେଲା ପୁତ୍ରେ ଗଲେ ନାଶ ହୋଇ
ଏବେ ଲୋଡ଼ିଲେ ସେମାନେ ଥିବେ କେଉଁଠାଇଁ ।
ଶାନ୍ତିପନି ବୋଲେ ଯେବେ ନୋହିବ ତୁମ୍ଭରେ
ତେବେ ବେନିଭାଇ ଏବେ ଚଳ ନିଜପୁରେ ।
ଗୋବିନ୍ଦ ବୋଇଲେ ଏହା ମାଗିଲ ଯେ ଗୁରୁ
ଯତନେ ଲୋଡ଼ିବୁ ଆମ୍ଭେ ଯେତେ ଦୂରୁ ପାରୁ ।
ଗୁରୁଙ୍କ ଆଜ୍ଞା ପାଇଣ ଗଲେ ଭାଇ ବେନି
ମହୋଦଧି ତୀରେ ଯାଇ ମିଳିଲେ ତକ୍ଷଣି ।
ଗୋବିନ୍ଦ ବୋଇଲେ ଭାଇ ଶୁଣ ବଳରାମ
ତୁମ୍ଭେ ଚଳିଯାଅ ଏବେ ମଧୁବନ ଶ୍ରମ ।
ସମୁଦ୍ର ଭିତରେ ମୁହିଁ ଖୋଜେ ଗୁରୁପୁତ୍ର
ଆମ୍ଭେ ଥାଉଁ ରତ୍ନାକର କଲାକ ଅନିତ୍ୟ ।
ବଳରାମ ବିଜେ କଲେ ନିଜର ଭୁବନ
ସମୁଦ୍ରେ ପଶିଲେ ଯାଇ ଶ୍ରୀମଧୁସୂଦନ ।
ରତ୍ନାକର ପୁରେ ପୁଣି ଖୋଜନ୍ତି ଶ୍ରୀବତ୍ସ
ଘରେ ଘରେ ପଶିଣ ସେ ଖୋଜନ୍ତି ଉଦ୍ଦେଶି ।
ଭ୍ରମନ୍ତେ ଦେଖିଲା ରତ୍ନାକର ଜଳନିଧି
ଅନେକ ପୂଜା କରିଣ ବରୁଣ ଜଳଧି ।
ଅତି କଠୋରେ ବୋଲନ୍ତି ଦେବ ମଧୁହାରୀ
ଗୁରୁଙ୍କର ପାଞ୍ଚପୁତ୍ର ଆଣିଅଛୁ ହରି ।
ବରୁଣ ବୋଲେ ବୁଡ଼ିଲେ ସେହି ମହାଜଳେ
ଆନେ ଆଖ୍ୟାତି ଦିଅଇ ଯମ ବୁଦ୍ଧି ବଳେ ।
ଯେବଣ ହିଁ ମତେ ନାଶଯାନ୍ତି ସର୍ବ ପ୍ରାଣୀ
ଯମର ବିନା ଆନକେ ନ ପାରନ୍ତି ଜାଣି ।

ସଂଯମନୀ ପୁରେ ଲୋଡ଼ ଯାଇଣ ଅନନ୍ତ
ସମସ୍ତ ଜନ୍ତୁ ଉପରେ ଅଟଇ କୃତାନ୍ତ ।
ରତ୍ନାକର ବାକ୍ୟେ ଦେବ ଗରୁଡ଼େ ସୁମରି
ଗରୁଡ଼ ପିଠିରେ ଦେବ ଯାଇ ବିଜେ କରି ।
ପାଞ୍ଚଜନ୍ୟ ଶଙ୍ଖ ଦେବ କରିଲେ ନିସ୍ୱନ
ସଂଯମନୀ ପୁରେ ଯାଇ ହେଲେ ନାରାୟଣ ।
ଅନେକ ପାପୀଙ୍କୁ ଯମ ଦେଉଥିଲା ଶାସ୍ତି
ଶ୍ରୀ ଜଗନ୍ନାଥ ଦର୍ଶନେ ସର୍ବେ ହେଲେ ମୁକ୍ତି ।
ଜଗନ୍ନାଥେ ଦେଖି ନାଶକର ଦଇବତ
ପାଦାର୍ଘ୍ୟ ଦେଇ ଚରଣେ ହେଲା ପ୍ରଣମିତ ।
ଚରଣ ପଖାଳି ତହୁଁ ଉଦକ ସିଞ୍ଚଇ
ଆସ୍ଥାନପରେ ବସାଇ ତାହାଙ୍କୁ ତୋଷଇ ।
ବହୁତ ବିନୟେ ନାଶକର ପରଣାମି
ଅନେକ ଯୁଗ ବିଜୟ କଲ ଦେବ ସ୍ୱାମୀ ।
ତୋର କାରଣେ ତରିବେ ବହୁତ ଯେ ପାପୀ
ସଂସାର ତାରଣ ନାଥ କହିଲି ଅଦ୍ୟାପି ।
ସ୍ୱାମୀ କି କାର୍ଯ୍ୟେ ବିଜୟ କିବା ଅନୁଗ୍ରହ
କହିବା ଭୋ ନାଥ ମୋତେ ବଡ଼ ଯେ ସନ୍ଦେହ ।
ଶୁଣ ହୋ କୃତାନ୍ତ କହୁଛନ୍ତି ଦାମୋଦର
ଅନୀତି କଥା ତ ଏବେ ଶୁଣିଲୁ ତୋହର ।
ଆୟୁ ପୂରିଲେ ହରିବୁ ପ୍ରାଣୀଙ୍କି ଯୁକତେ
ବାଳୁତ କୁମର ହରି ଆଣିଲୁ କେମନ୍ତେ ।
ତୁ ସିନା ଜନ୍ତୁମାନଙ୍କ ଅଟୁ ସିନା ଧର୍ମ
ତୁହି ଦଣ୍ଡଧାରୀ କରୁ ଅନୀତି ଯେ କର୍ମ ।
ନାଶ କର ବୋଲେ ପ୍ରଭୁ ମଣିମା ଶ୍ରୀପତି
ମୁହିଁ କିମ୍ପାଇଁ ଭୋ ଦେବ କରିବି ଅନୀତି ।
ପିତା ବିଚାରିଣ ଯେତେବେଳେ ଦିଏ ବୀର୍ଯ୍ୟ
ଆପଣେ ନାଶ କରଇ ଆପଣା ତନୁଜ ।
ଅଯୋଗେ ବୀର୍ଯ୍ୟ ଦିଅଇ ଯେବଣ ପୁରୁଷ
ଆପଣେ ନାଶ କରଇ ତାର ବାଳଶିଷ୍ୟ ।
ନାଶ କର ବୋଇଲା ଯେ ଶୁଣିମା ଶ୍ରୀପତି
ଯେତେବେଳେ ସ୍ତିରୀମାନେ ହୁଅନ୍ତି ରଜୋବତୀ ।
ସେ ସମୟେ ସଙ୍ଗ କରେ ଯେବଣ ପୁରୁଷ
ତାହାର ସନ୍ତତି ନାଶ ହୁଅଇ ଅବଶ୍ୟ ।
ଦିବସରେ ସ୍ତିରୀସଙ୍ଗ କରେ ନିଜ ଇଚ୍ଛା
ଅଳପ ଆୟୁଷ ତାର ଜନମଇ ବତ୍ସା ।
ଆହେ ସ୍ୱାମୀ ରାତ୍ର ଅଟେ ଷୋଡ଼ଶ ଯେ ଘଡ଼ି
ସାତଦଣ୍ଡ ପଡ଼େ କାଳ ପୁରୁଷଙ୍କ ଧାଡ଼ି ।
ପ୍ରଥମ ଘଡ଼ିରେ ଯେବେ ସ୍ତ୍ରୀ ସଙ୍ଗ କରଇ
ଜନମ ହୋଇଲାକ୍ଷଣି କୁମର ମରଇ ।

ଚାରିଦଣ୍ଡଠାରେ ଯେବେ ହୁଏ ସ୍ତିରୀସଙ୍ଗ
ବରଷକ ଶେଷେ ସେହି ମରେ ଭୋଗି ରୋଗ ।
ପାଞ୍ଚଦଣ୍ଡଠାରେ ସ୍ତିରୀ ସଙ୍ଗ ଯେ କରଇ
ତିରିଶ ବରଷେ ପୁତ୍ର ମରଣ ଲଭଇ ।
ଛଅଦଣ୍ଡ ମଧ୍ୟରେଟି ଯେବେ ଗର୍ଭୁ ରହେ
ତରୁଣ ବୟସେ କଲା ହରଷ ନିଶ୍ଚୟେ ।
ଯେଉଁ ବୀର୍ଯ୍ୟ ରହଇଟି ସାତଦଣ୍ଡ ମଧ୍ୟେ
ପଞ୍ଚାଶ ବର୍ଷେ ସେ ପୁତ୍ର ନାଶଯାଇ ହାଦେ ।
ଆଠଦଣ୍ଡ ମଧ୍ୟେ ଯେଉଁ ଉପୁଜଇ ବାଳ
ସେହି ପୁତ୍ର ପରମାୟୁ ସତୁରି ବର୍ଷର ।
ନବଦଣ୍ଡ ମଧ୍ୟରେ ଯେ ଉପୁଜେ ସନ୍ତତି
ସେ ସନ୍ତାନ ଅଶୀବର୍ଷ ପର୍ଯ୍ୟନ୍ତ ବଞ୍ଚନ୍ତି ।
କୃଷ୍ଣ ଶୁକଳ ଯେ ଯୁଗ ଅବଧୂତ ଲେଖା
ସପତାଙ୍ଗ ଭେଦ କରି ତିଥିବାର ଲେଖା ।
ପ୍ରଥମ ସପତ ଦଣ୍ଡେ ଯେ ହୁଏ ସନ୍ତତି
ଅଳ୍ପାୟୁଷ ହୋଇ ସେହୁ ବହୁକାଳ ବର୍ତ୍ତୀ ।
ମଧ୍ୟ ସପ୍ତଦଣ୍ଡେ ପୁଣ କାମ ଚନ୍ଦ୍ରକଳା
ସେବେଳେ ଉପୁଜାଇଣ ପଣ୍ଡିତ ଯେ ବଳା ।
ପୁରୁଷର ଦୋଷେ ନାଶ ଯାନ୍ତି ସିନା ପ୍ରାଣୀ
ମୋତେ ଦୋଷ ଦ୍ୟନ୍ତି ପ୍ରଭୁ ଏହା ଯେ ନ ଜାଣି ।
ସଂସାରକୁ ଦୋଷ ମୁହିଁ ଦେବଇଁ କେମନ୍ତେ
ସତ୍ୟର ଧରମ ଯୋଗ ଧର୍ମ ବେନି ଅର୍ଥେ ।
ଧର୍ମ ଲାଗି ଅବଚ୍ଛିନେ କଲ ପରଦାର
ଦ୍ୱାପରେ ହୋଇଣ ଦେବ ରଙ୍ଗା ଅବତାର ।
ତୁମ୍ଭ କଲା କୃତ୍ୟ ମୁହିଁ କାରେ ଦୋଷ ଦେବି
ରାତ୍ର ଦିବା ନ ଛାଡ଼ିଲ ମାନିତ ଗୌରବୀ ।
ଅନୁକ୍ଷଣ ରତି ତୁମ୍ଭେ କଲ ଯେ ଶ୍ରୀବତ୍ସି
ଆପଣେ ଲଙ୍ଘିଲ ଦେବ ଦୋଷ ଯେ ନ ବାଛି ।
ନିଷ୍ପାପର ପୁରୁଷ ଯେ କରିଲ ଅନୀତି
ପରମ ବିଷ୍ଣୁ ସମସ୍ତ ଦେହେ ଦେବ ସ୍ଥିତି ।
ଆପଣେ ନ ବିଚାରିଣ କୋପ କର ସବୁ
ସମସ୍ତ ଗୋଡ଼ାଏ ଦେବ ତୋହର କଥାକୁ ।
ନାରାୟଣ ଯେବେ ଦେବ ହେଲେ ଅତ୍ୟାଚାରୀ
କଳିଯୁଗ ଜନଙ୍କୁ କେ ପାରିବ ତିଆରି ।
କୃତାନ୍ତକ ବଚନରେ ବୋଲନ୍ତି ଅନନ୍ତ
ଅଳପ ହରୁ କଲଇଁ ଏମନ୍ତ ଯେ କୃତ୍ୟ ।
କଳିଯୁଗ ଜନଙ୍କୁ କେ ପାରିବ ତିଆରି
କୃତାନ୍ତ ବଚନ ଶୁଣି କହନ୍ତି ଶ୍ରୀହରି ।
କାଶୀନଦୀଠାରୁ ରୁଦ୍ର ନଦୀ ପରିଯନ୍ତେ
ନ ଲାଗିବ ପରଦାରା ଦୋଷ କଦାଚିତେ ।

ଏଥେଁ ପରଦାରା ଆମ୍ଭେ ଅରଜିଲୁ ପାପ
ଏତେ ଦୂରକୁ ଛାଡ଼ି ତୁ କରିବୁ ଯେ କୋପ ।
ପରଦାରା ହରଣ ଯେ ହେଲେ ଅନ୍ୟଠାର
ସେ ଦୋଷେ ଦଣ୍ଡିତ ହେବେ ପରାଣୀ ନିକର ।
ତହିଁର ଲୋକେ ତୁ ଶାସ୍ତି ଦେବୁ ଯମ ଯେବେ
ଏଥିର ଅନ୍ୟଥା ତୁହି ନ କରିବୁ କେବେ ।
ଚଉବିଂଶ କ୍ରୋଶ ଅଟେ ଦକ୍ଷିଣ ଦ୍ୱାରକା
ପରଦାରା ଦୋଷ ପୁଣ ଏଥେ ନାହିଁ ଏକା ।
ଆହେ ବୁଧଜନେ ମୋତେ ନ କରିବ କୋପ
ମଙ୍ଗଳା ଶାପେ ମୋହର ଏସନ ସ୍ୱରୂପ ।
ଯାହା ମୋତେ ପରସନ୍ନେ କହିଲେ ହିଙ୍ଗୁଳା
ଝଙ୍କଡ଼ପୁର ବାସିନୀ ଶ୍ରୀଚଣ୍ଡୀ ଶାରଳା ।
ସେ ରାତ୍ରେ କହନ୍ତି ମୁହିଁ ଲେଖଇ ଦିବସେ
ଯମର ସମ୍ବାଦ ମୁହିଁ କରିବଇଁ ଶେଷେ ।
ମାନବ କେ ମେଣ୍ଟିବ ହେ କରି ଭିଆଇଲେ
ଶୂଦ୍ରମୁନି କହିଲେ ଯେ ଶାରଳା ଆଜ୍ଞାରେ ।
କହନ୍ତି ଅଗସ୍ତି ପୁଣି କୁମ୍ଭ ଋଷି ବସି
ଭାତାଏ କାହିଁ ଅଛନ୍ତି ବୋଲିଣ ଶ୍ରୀବସି ।
ଅବନ୍ତୀପୁରର ଶାନ୍ତିପନି ଆମ୍ଭ ଗୁରୁ
ତାହାଙ୍କ କୁମର ଆମ୍ଭେ ନେବୁ ତୁମ୍ଭ ପୁରୁ ।
ଯମଦେବ ବୋଲେ ମୁହିଁ ଜାଣଇ ସମସ୍ତ
ଯହିଁପାଇଁ ଆଣିଲିଟି ଗୁରୁ ପାଞ୍ଚପୁତ୍ର ।
ସ୍ୱାମୀ ତ୍ରେତୟାରେ ରାଜା ଯେ ଜଳତରଙ୍ଗ
ତମ୍ବାଭାଣ୍ଡେ ପୁରାଇଣ ଜାଳେ ତାର ଅଙ୍ଗ ।
ନବବର୍ଷ ପରିଯନ୍ତେ ଦେଲା ଏଡ଼େ ଶାସ୍ତି
ସ୍ତିରୀହତ୍ୟା କଲା ସେହି କୌଣପ ନୃପତି ।
ତୋହର ଦର୍ଶନେ ଏବେ ମୁକ୍ତଦେବ ରାୟେ
ତାହାପାଇଁ ଆଣିଲି ମୁଁ ଗୁରୁଙ୍କ ତନୟେ ।
ଜଳତରଙ୍ଗ ନୟନେ ଦେଖିଣ ଅଚ୍ୟୁତ
ମୁକ୍ତହୋଇ ବଇକୁଣ୍ଠ ଚଳିଲା ତୁରିତ ।
କରପତ୍ର ଯୋଡ଼ିକରି ବୋଲେ ନାଶକର
ଭାଇମାନେ ତୋର ଯାଇ ଅଛନ୍ତି ଦେଶର ।
ବାରାଣସୀ ପୁରେ ବହେ କାଶୀନାମେ ନଦୀ
ଗୟାନଦୀରୁ ସେ ଅଇଶାନ୍ୟ ଭାଗେ ଭେଦୀ ।
ବଇଡୁର୍ଯ୍ୟ ପର୍ବତରୁ ବଡ଼ବା ଅନଳ
କାଶୀଶ୍ୱର ନାମେ ତହିଁ ଲିଙ୍ଗ ଯେ ସକଳ ।
ଗୁପତ ତୀର୍ଥ ତା ନାମ ଅଟେ ବାରାଣସୀ
ଅଭୟ ଲିଙ୍ଗ ବିଜୟ ଦକ୍ଷିଣ ଯେ କାଶୀ ।
ସେ ତୀର୍ଥ ଭିତରେ ପୁଣ ଛନ୍ତି ପଞ୍ଚଭ୍ରାତେ
ଚଉର୍ଯ୍ୟ କର୍ମରେ ସର୍ବେ ବଞ୍ଚନ୍ତି ନିରତେ ।

ଯେବଣ ଦ୍ରବ୍ୟ ସେମାନେ ନ୍ୟନ୍ତି ଚୋରିକରି
ବାଣ୍ଟନ୍ତି ସେହି ଧନକୁ ଷଡ଼ଭାଗ କରି ।
କାଶୀଶ୍ୱରକୁ ଦିଅନ୍ତି ଏକଭାଗ ଘେନି
ପାଞ୍ଚଭାଇ ପାଞ୍ଚଭାଗ ନିଅନ୍ତି ଯେ ପୁଣି ।
ଜଗବିପ୍ର ବୋଲିଣ ଯେ ବେନି ସେନାପତି
ରାଇ ତାଙ୍କୁ ଆଜ୍ଞାଦେଲେ କୃତାନ୍ତ ନୃପତି ।
ବ୍ୟାଘ୍ର ବାହନରେ ତୁମ୍ଭେ ଚଳ ଏହିକ୍ଷଣ
ଗୁରୁଙ୍କର ପାଞ୍ଚପୁତ୍ର ଆଣ ହେ ବହନ ।
ଆଜ୍ଞା ପରମାଣେ ଚଳିଗଲେକ ଡଗରେ
କୁମରଙ୍କୁ ଦେଖିଲେ ଯେ କାଶୀନଦୀ ତୀରେ ।
ମାୟାରେ ବାବଧରୂପ ହେଲେ ଯମଦୂତ
ବହୁ ଆବରଣ ପିନ୍ଧି ଯାଉଛନ୍ତି ପଥ ।
ତସକର ପାଞ୍ଚଭାଇ ଦେଖିଲେ ସେ ଦ୍ରବ୍ୟ
ଆବର ବିଂଶହସ୍ତ ସେ ବେନିଙ୍କର ଭାବ ।
ରହ ରହ ବୋଲି ଓଗାଳିଲେ ପାଞ୍ଚଭାଇ
ହସ୍ତରେ କୁଠାର ଧରି ବେଗେ ଗଲେ ଧାଇଁ ।
ବୋଲନ୍ତି ଯେ ଯମଦୂତେ ଅଟୁ ଆମ୍ଭେ ବିଦୁ
ବିଶେଷ ଦେବ ଆଜ୍ଞାରେ ଅଟୁ ବିପ୍ର ସାଧୁ ।
ତସ୍କରେ ବୋଇଲେ ଯେବେ ତୁମ୍ଭେ ହେ ସଜ୍ଜନ
ଆମ୍ଭେ ତସକର ନିତ୍ୟେ ନେଉ ପରଧନ ।
କୋପେ ଯମଦୂତେ ପ୍ରହାରିଲେ କରପତ୍ରେ
ବେନିଜନଙ୍କ ପ୍ରହାରେ ଛିଣ୍ଡି ପଞ୍ଚଭ୍ରାତେ ।
ଆକର୍ଷଣ କରିଣ ସେ ଧରି କୋପ କରି
ସପଦ ପଠିରେ ବସାଇଲେ ନେଇ ଧରି ।
ମୋହ ଶରେ ଗୁରୁ ପାଞ୍ଚପୁତ୍ର ବାନ୍ଧିକରି
ଆସି ପ୍ରବେଶ ହୋଇଲେ ସଞ୍ଜମନୀ ପୁରୀ ।
ନିର୍ଦ୍ଧୂମ ଅଗ୍ନିକି ଜିଣି ପୁତ୍ରଙ୍କର ବାୟେ
ଯମର ଛାମୁରେ ଯାଇଁ ପ୍ରଣମିତ ପୋଏ ।
କର ଧରି ନାରାୟଣ ଓହ୍ଲାଇ ତଳକୁ
ଦେଖିଲେ ତିନି ପାବଛ ତଳରେ ପଣ୍ଡୁଙ୍କୁ ।
ଶମନଙ୍କୁ ଚାହିଁ ପୁଣି ବୋଲନ୍ତି ଅଚ୍ୟୁତ
କେଉଁ ପାତକେ ଆସ୍ଥାନେ ନ ବସନ୍ତି ଏତ ।
କରପତ୍ର ଯୋଡ଼ି ତହିଁ କହୁଅଛି ଯମ
ବ୍ରହ୍ମହତ୍ୟା କଲେ ସ୍ୱାମୀ ନାଶି ତପୋଧର୍ମ ।
ଅଗ୍ନିକା ମହାଋଷିଙ୍କ ସଙ୍ଗମର ବେଳେ
ନାରାଚ ମାଇଲା ଏହୁ ଋଷିଙ୍କ ଉପରେ ।
ସ୍ୱାମୀ ଈଶ୍ୱର ଦେବତା ବ୍ରହ୍ମହତ୍ୟା କଲା
ତାହାଙ୍କର ହତ୍ୟାଦୋଷ ମେଣ୍ଟିଣ ନ ଗଲା ।
ଗୋବିନ୍ଦ କହନ୍ତି ଆମ୍ଭ ଅଟନ୍ତି ଏ ବାପ
ଆମ୍ଭଙ୍କୁ ଦେଖନ୍ତେ ଖଣ୍ଡିଗଲା ସର୍ବ ପାପ ।

ଯମ ବୋଇଲେ ଏବେ ଏ ହୋଇଗଲେ ମୋକ୍ଷ
କାରଣକୁ କଥା ଏକ କହିବା ଶ୍ରୀବତ୍ସ ।
କରନ୍ତୁ ଏ ଦୋଷ ପ୍ରତିକାର ପାଞ୍ଚଭାଇ
ଯୁଧିଷ୍ଠିଙ୍କ ଅଗ୍ରତରେ କହିଦେବ ଯାଇଁ ।
ଶ୍ରୀକୃଷ୍ଣ ବୋଇଲେ ଯମ କେଉଁ ତୀର୍ଥ ଗଲେ
ପିତା ମୋକ୍ଷ ହୁଏ ପୁଣ କେଉଁ ପୁଣ୍ୟ କଲେ ।
ଯମ ବୋଲେ ପୁତ୍ର ଯେବେ ଧରା ତୀର୍ଥ କରେ
ବଂଶରେ କଳଙ୍କ ଥିଲେ ସେହି ଦୋଷ ହରେ ।
ନୋହିଲେ ସେ ବ୍ରହ୍ମବିଦ୍ୟା ଯେବେ ପାରେ ସାଧି
ଆବର ପରାଜୟରେ ସର୍ବ ହୁଏ ସିଦ୍ଧି ।
ପଣ୍ଡୁ ବୋଇଲେ ଭୋ ସ୍ୱାମୀ ଅନୁଗ୍ରହ କର
ମୋହର ଅବସ୍ଥା କହ ଯୁଧିଷ୍ଠି ଆଗର ।
ରାଜସୂୟ ଯଜ୍ଞ କରି ଅନ୍ନଦାନ ଦେଉ
ରାଜଗଣେ ମୁନିଗଣେ ବଶବର୍ତ୍ତୀ ହେଉ ।
ହରି ବୋଇଲେ କହିବି ଯୁଧିଷ୍ଠିଙ୍କ ଆଗେ
ସେହି ପାତକ ଧ୍ୱଂସିବି କରି ମହାଯୋଗେ ।
ଆହେ ନାଶକର ଏ ଯେ ଯୁଧିଷ୍ଠିଙ୍କ ପିତା
ଆମ୍ଭର ପରମ ଗୁରୁ ଅଟନ୍ତି ଦେବତା ।
ଆଜ ଦିନଠାରୁ ଯାଙ୍କୁ ବସାଅ ଆସ୍ଥାନେ
ଭୃତ୍ୟ ପରାୟେ ତୁ ତାଙ୍କୁ ଖଟିବୁ ଆପଣେ ।
ଯମ ବୋଲେ ସ୍ୱାମୀ ଛାୟାମୋତେ ଶାପଦେଲା
ମୋହର ପାଦରେ ଯେଉଁ ବ୍ୟାଧି ଜାତ ହେଲା ।
ରାଜସୂୟ ଯାଗ କଲେ ପଣ୍ଡୁଙ୍କ ନନ୍ଦନ
ସେ ବ୍ୟାଧିରୁ ମୋକ୍ଷ ମୁହିଁ ହୋଇବିଟି ଜାଣ ।
ଆସ୍ଥାନେ ବିଜୟ କଲେ ଚିତ୍ରବୀର୍ଯ୍ୟ ପୁଅ
ପ୍ରତ୍ୟକ୍ଷରେ ଦିଶେ ସେହୁ ଦ୍ୱିତୀ ଇନ୍ଦ୍ର ପ୍ରାୟ ।
ଗୁରୁଙ୍କର ପାଞ୍ଚପୁତ୍ର ଘେନି ହୃଷୀକେଶ
ଅବନ୍ତୀ ନଗରେ ଯାଇ ହୋଇଲେ ପ୍ରବେଶ ।
ମକର ଶୁକଳ ଚନ୍ଦ୍ରବାର ଯେ ଚଉଠି
ରେବତୀ ନକ୍ଷତ୍ର ଅନ୍ତେ ଅଶ୍ୱିନୀ ଯେ ଭେଟି ।
ତୈତିଳ କରଣ ଶୁଭ ନାମରେ ହେ ଯୋଗ
ସଙ୍କରାନ୍ତିଠାରୁ ଚଉବିଂଶ ଦିନ ଭୋଗ ।
ଅଢ଼ାଇ ପ୍ରହର ବେଳ ପୁଣି ହୋଇଅଛି
ଗୁରୁଙ୍କର ପାଞ୍ଚପୁତ୍ର ଘେନିଣ ଶ୍ରୀବତ୍ସି ।
ମିଳନ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ ଶାନ୍ତିପନି
ଉଠି ବ୍ରାହ୍ମଣ ପୁତ୍ରଙ୍କୁ କୋଳରେ ସେ ଘେନି ।
ଗରୁଡ଼ ପୃଷ୍ଠରେ ତତକ୍ଷଣେ ଦଇତ୍ୟାରି
ଅନ୍ତରୀକ୍ଷେ ଚଳିଗଲେ ଗୁରୁଙ୍କୁ ସୁମରି ।
ବ୍ରାହ୍ମଣ ବୋଇଲେ ବ୍ରାହ୍ମଣୀର ମୁଖ ଚାହିଁ
ଏକଥା ତ ଅଗୋଚର ଲାଗିଲା ଗୋ ସହି ।
ମାୟା ମୋହେ ପଡ଼ି ମୁହିଁ ଅନ୍ଧ ଯେ ହୋଇଲି
ଜଗତନାଥଙ୍କୁ ମୁହିଁ ଚିହ୍ନି ନ ପାରିଲି ।
କର୍ମକୁ ଆଦରି ବିପ୍ର ହୋଇଲା ଯେ ତୁନି
ଜଗନ୍ନାଥ ପ୍ରସାଦରେ ଦୁଃଖ ନାଶି ପୁଣି ।
ଆହେ ବୁଧେ ଜଗନ୍ନାଥ ଦେବେ ସଦା ସେବ
ଯମର ଅର୍ଗଳ ଭାଙ୍ଗିବାକୁ ବାସୁଦେବ ।
ଯାବତ ଜୀବକୁ ଜଗନ୍ନାଥ ହିଁ ରଖନ୍ତା
ନାମମନ୍ତ୍ର ମୂଳ ସେହି ଅଟେ ବରଦାତା ।
ନାନାତୀର୍ଥ କରିବାକୁ ଦୂରଦେଶ ନ ଯା
ଜଗନ୍ନାଥ ନାମଗୋଟି ହୃଦେ କର ପୂଜା ।
ଯଶୋଦା ନନ୍ଦନ ହରି ଯଦୁବଂଶ ନାହା
ନୀଳଘନ ସୁନ୍ଦର ସେ ଶଙ୍ଖ ଚକ୍ରବାହା ।
ଦର୍ଶନେ ସ୍ପର୍ଶନେ ପାପ ହୁଅଇ ଯେ ଧ୍ୱଂସ
ବାଞ୍ଛା ସମ୍ପୂର୍ଣ୍ଣ କରନ୍ତି କମଳା ବିଳାସ ।
ଯାହାଙ୍କ ହେତୁରୁ ନାଶ ଗଲା ଯମଦର୍ପ
ମୃତପୁତ୍ର ଆଣିବାକୁ ଅଛି ଯାର ଧାପ ।
ସ୍ୱର୍ଗବାଟ ଦେଖାଇଲେ ସେହୁ ସତ୍ୟପଣେ
ସେବା କଲେ ଫଳଦ୍ୟନ୍ତି ଜାଣ ନାରାୟଣେ ।
କମଳାବଲ୍ଲଭ ସେ ଯେ କରୁଣା ବତ୍ସଳ
କରୁଣା କରିବା ପାଇଁ ସେହି ଆଦିମୂଳ ।
ଶ୍ରୀମଧ୍ୟପର୍ବଟି ଏହା ଶାସ୍ତ୍ରର ସଙ୍ଗତେ
ଆହେ ଜନ କହିଲି ମୁଁ ସଂସାରର ହିତେ ।
ତୁଳସୀ ବଲ୍ଲଭ ପଦ୍ମପାଦ ନିତ୍ୟ ସେବି
କୁବୁଦ୍ଧି କୁଜ୍ଞାନୀ ମୁହିଁ ଶ୍ରୀ ଶାରଳା କବି ।
ଜଗନ୍ନାଥଙ୍କର ପଦ୍ମପାଦ କର ଲୟେ
ଜଗନ୍ନାଥ ନାମ ମୂଳ ମହାମନ୍ତ୍ର ହୁଏ ।
ଜଗନ୍ନାଥ ଜପ କଲେ ଯାଇଟି ଦୁର୍ଗତି
ଜଗନ୍ନାଥ ପ୍ରାଣୀଙ୍କର ଅଟେ ମୋକ୍ଷଗତି ।
ଜଗନ୍ନାଥ ପ୍ରସାଦରେ ମଧ୍ୟପର୍ବ ଶେଷ
କରିଲା ଏଠାରେ ଆସି ଶ୍ରୀ ଶାରଳା ଦାସ ।
ଶ୍ରୀଚଣ୍ଡୀ ଶାରଳା ନାମ ହୃଦୟରେ ଘୋଷି
ମହାଭାରତ ଲେଖଇ ଅହର୍ନିଶି ବସି ।

**- ଇତିଶ୍ରୀ ମହାଭାରତ ମଧ୍ୟପର୍ବ ସମାପ୍ତ -**

ଟେକ୍ନୋସଫ୍ଟ କମ୍ପ୍ୟୁଟର ସର୍ଭିସ୍, ମହମ୍ମଦିଆ ବଜାର, ଫୋନ୍ - ୬୦୮୩୦୨

# ମହାଭାରତ






ପ୍ରକାଶକ-

ଧର୍ମଗ୍ରନ୍ଥ ଷ୍ଟୋର (TM)

ଅଲିଶା ବଜାର, କଟକ-୨

ଫୋନ୍ : (୦୬୭୧)୨୫୦୮୨୯୬

website : www.dharmagranthastore.com